# ମହାତ୍ମା ଗାନ୍ଧୀଙ୍କ ଜୀବନୀ



· ଲୁଇ ଫିସର ·     · ଚିନ୍ତାମଣି ମିଶ୍ର ·

# ମହାତ୍ମା ଗାନ୍ଧୀଙ୍କ ଜୀବନୀ

## ଦ୍ୱିତୀୟ ଭାଗ

ମୂଳ ଲେଖା :
ଲୁଇ ଫିଶର

ଓଡ଼ିଆ ଅନୁବାଦ
ଚନ୍ତାମଣି ମିଶ୍ର

ଗାନ୍ଧୀ ସାହିତ୍ୟ କମିଟୀ, ଓଡ଼ିଶାଙ୍କ
ଆନୁକୂଲ୍ୟରେ ପ୍ରକାଶିତ

ଓଡ଼ିଆ ସଂସ୍କରଣ ପ୍ରକାଶନ :
**ନବଜୀବନ ପୁସ୍ତକାଳୟ,**
ଗୃହଦାମାଚୌକ, କଟକ-୨

ମେ, ୧୯୭୯

ମୁଦ୍ରଣ :
**ନବଜୀବନ ପ୍ରେସ,**
ଗୃହଦାମାଚୌକ, କଟକ-୨

ମୂଲ୍ୟ :
**ଦଶଟଙ୍କା**

# THE LIFE OF MAHATMA GANDHI

## PART II

Louis Fischer

Oriya Translation :
Chintamani Misra

Published Under the auspices of the
Gandhi Sahitya Committee,
Orissa

Oriya Edition
Published by :
**Nabajivan Pustakalaya,**
Chandnichauk,
Cuttack-2

September, 1969

Ten Rupees.

Pink Sands.

Harbour Island, Bahamas.
At home.
42, South Stanworth Drive,
Princeton, New Jersey,
U.S.A.

Jan' 9, 1968

Dear Professor B. Misra,

Your letter of December 15, 1967 to Jonathan Cape was forwarded to me at this place where I am spending a brief vacation.

It would please me greatly to see a translation into Oriya of my book "The Life of Mahatma Gandhi".

I herewith grant you and your Committee the right to publish such a translation on the following conditions.

The Oriya translation must be made by a person in complete mastery of the English language who writes a good literary Oriya ;

there is to be a title page in English as well as in Oriya ;

I am to receive two copies of the book when published.

Please assure me that these conditions will be met.

Cordially.

Louis Fischer

Dr. B.Misra,
Secretary, Gandhi Sahitya Committee,
Orissa, Bhubaneswar-3

# ମୁଖବନ୍ଧ

ଭାରତବର୍ଷରେ ଇତିହାସର ଯେପରି, ସେହିପରି ମଧ୍ୟ ଜୀବନୀ ରଚନାର ଐତିହ୍ୟ ନ ଥିଲା । ତେଣୁ ଆମର ସମଗ୍ର ଅତୀତ ହୁଏତ ଏକାବେଳକେ ଅନ୍ଧକାରମୟ ବା ଅସ୍ପଷ୍ଟ ବା ଘୁଇ-ଘୁଇଆ । ଆମର ପରମ ଗର୍ବର ବସ୍ତୁ ବୁଦ୍ଧ, କୃଷ୍ଣ ବା କାଳିଦାସଙ୍କର ସତ୍ୟ ଜୀବନଚରିତ ଯେ ଆଜି ଆମକୁ ଦୁଷ୍ପ୍ରାପ୍ୟ ଓ ଅଜ୍ଞାତ, ଏହାଠାରୁ ବଳି ପରିତାପର ବିଷୟ ଥାଇ ନ ପାରେ । ଜୀବନ-ଚରିତ ବୋଲି ଯାହାକୁ କୁହାଯାଉଛି, ସେଥିରୁ ଅଧିକାଂଶ ଗାଳ-ଗଳ୍ପମୟ ଓ ଭୂତକଥା, ରୂପକଥା ଶ୍ରେଣୀର ।

ପୁଣି ଅଧିକ ଲଜ୍ଜା ଓ ପରିତାପର ବିଷୟ ଏହି ଯେ, ଦୁଇଶ ବର୍ଷର ପାଶ୍ଚାତ୍ୟ-ଶିକ୍ଷା-ସଭ୍ୟତାର ଘନିଷ୍ଠ ସମ୍ପର୍କ ମଧ୍ୟ, ଆମ ଭାରତୀୟଙ୍କ ରକ୍ତରୁ ଏହି ଗାଳ-ଗଳ୍ପ-ଗଠନ-ପ୍ରିୟତାକୁ ଲୋପ କରି ପାରି ନାହିଁ । ଏବେ ବି ଏବି ଲୋକଙ୍କର ଜୀବନୀ ଲେଖିଲେ ସେଥି ଭିତରେ ବହୁ ଅପ୍ରମାଣିତ ଓ ଅବିଶ୍ୱାସ୍ୟ ଆଧିଭୌତିକ ଉପାଖ୍ୟାନ ଆମେ ନିଃସଙ୍କୋଚରେ ପୂରାଇ ଦେଇଥାଉ ।

ବଙ୍ଗଳାରେ ଶ୍ରୀ ଚୈତନ୍ୟଚରିତାମୃତକୁ ଚୈତନ୍ୟଙ୍କର 'ଜୀବନୀ' ବୋଲି ଧରାଯାଏ, କିନ୍ତୁ ସେପରି ଧରାଯିବା ପାଇଁ, କେବଳ ଅନ୍ଧବିଶ୍ୱାସ ଛଡ଼ା ଅନ୍ୟ କିଛି ବିଶେଷ କାରଣ ଅଛି ବୋଲି, ମନେ ହେଉ ନାହିଁ । ଏହି ଅନ୍ଧବିଶ୍ୱାସ ଏପରି ପ୍ରବଳ ଏବଂ ଆମର ଜନଚେତନା 'ସତ୍ୟ'ର ସମ୍ମୁଖୀନ ହେବାପାଇଁ ଏପରି ଭୀରୁ ମନୋବୃତ୍ତିଶୀଳ ଯେ, ବଙ୍ଗୀୟ ସୁପଣ୍ଡିତ ଡକ୍ଟର ଅମୂଲ୍ୟଚରଣ ସେନ, ଅକୁତୋଭୟଚିତ୍ତରେ ସତ୍ୟାନୁସନ୍ଧାନ କରି କରି ପ୍ରକୃତ ଚୈତନ୍ୟଙ୍କୁ ତାଙ୍କର 'ଇତିହାସେର୍ ଶ୍ରୀ ଚୈତନ୍ୟ' ନାମକ ପୁସ୍ତକରେ ଯେତେବେଳେ ପ୍ରକାଶିତ କଲେ, କଂଗ୍ରେସ-(ପି. ସି. ସେନ)-ଶାସିତ ପଶ୍ଚିମବଙ୍ଗ ସରକାର ସେ ବହିକୁ ନିଷିଦ୍ଧ କରିଦେଲେ ଏବଂ ସେତେବେଳେ ଅନ୍ଧାନୁସରଣ ରୀତିରେ ଓଡ଼ିଶା ସରକାର ମଧ୍ୟ ସେ ବହିକୁ ନିଷିଦ୍ଧ କରିଦେଲେ । ଏ ବହି ଓଡ଼ିଶାରେ ବ୍ୟାନ ହେବାର କି ଜାତୀୟ ଆବଶ୍ୟକତା ଥିଲା ?

ସେ ଯାହା ହେଉ, ଆମର 'ସତ୍ୟ'ର ସମ୍ମୁଖୀନ ହେବା ପାଇଁ ଯେ ଏକ ଜାତୀୟ ଭୀରୁତା ଅଛି, ତାହା ନିକଟରେ ପ୍ରକାଶିତ ଓ ବହୁ ପ୍ରଚାରିତ ଏକ ରାମକୃଷ୍ଣ-ଜୀବନୀ ମଧ୍ୟ ସୁପ୍ରମାଣିତ କରି ଦେଉଛି । ଶାଣିତ-ବୁଦ୍ଧି ବିଶ୍ୱ-ବନ୍ଦ୍ୟ ଚିନ୍ତାନାୟକ ରମାଁରୋଲାଁ ରାମକୃଷ୍ଣ ଓ ବିବେକାନନ୍ଦଙ୍କ ଉପରେ ଯେଉଁ ତୀକ୍ଷ୍ଣ ବିଚାର-ପ୍ରତିଷ୍ଠ ଦୁଇଖଣ୍ଡ ଜୀବନୀ ଲେଖିଛନ୍ତି, ସେଥିରେ ଏହି ବିରାଟ ଗୁରୁ-ଶିଷ୍ୟଯୁଗଳ, ଉଭୟେ, ଯେ କୌଣସି ପାଠକ ଆଖିରେ "ପରମ ପୁରୁଷ" ରୂପେ ଯେ ଦେଖା ଦେବେ, ଏଥିରେ ସନ୍ଦେହ ନାହିଁ । ସେପରି ବିଶ୍ୱ-ପ୍ରସିଦ୍ଧ ବିଚାରପ୍ରତିଷ୍ଠ ସର୍ବଲୋକଗ୍ରାହ୍ୟ ଜୀବନୀ ପରେ, ରାମକୃଷ୍ଣଙ୍କ ଜୀବନ-କଥାକୁ ଗାଳ-ଗଳ୍ପମୟ ଏକ ପୁରାଣରେ ପରିଣତ କରିବା ଏବଂ ଏ ଦେଶରେ ତାହାର ମଧ୍ୟ ବନ୍ଦନା ହେବା ଦେଖିଲେ, ଆମେ ଆମର ଜାତୀୟ ଚେତନାରେ କେଉଁ ସ୍ତରରେ ଅଛୁ, ତାହା ସହଜରେ ଅନୁମେୟ ।

ନିଃସନ୍ଦେହରେ, ମୋହନଦାସ କରମଚାନ୍ଦ ଗାନ୍ଧି, ସମଗ୍ର ମାନବେତିହାସର ଏକ ବିରାଟ ପୁରୁଷ । ଏକ ବିଦେଶୀ ଶାସନ ବିରୁଦ୍ଧରେ ଠିଆ ହୋଇଥିବା ହେତୁ ଏବଂ କୌପୀନବନ୍ତ ସନ୍ନ୍ୟାସୀ ଥିବା ହେତୁ, ଭାରତୀୟ ଜନତା ତାଙ୍କ ପ୍ରତି ଅନୁରକ୍ତି ଦେଖାଇବା ବା ତାଙ୍କୁ ଏକାଧାରରେ ବୀର ଓ ମହାତ୍ମାର ସମ୍ମାନ ଦେବା, କିଛି ବିଚିତ୍ର କଥା ନୁହେଁ । କିନ୍ତୁ ଅସାଧାରଣ ସତ୍ୟ ଏହି ଯେ, ବାରିଷ୍ଟର ଗାନ୍ଧି ଯେଉଁମାନଙ୍କ ବିରୁଦ୍ଧରେ ଲଢୁଥିଲେ, ଯେଉଁ ସଭ୍ୟତା ଓ ସଂସ୍କୃତିର, ନିଜ ବେଶ-ବସନ, କର୍ମ ଓ ବଚନରେ ସେ ପ୍ରତିରୋଧ କରୁଥିଲେ, ସେହି ଇଂରେଜ ଓ ୟୁରୋପୀୟ ସମାଜର ଶ୍ରେଷ୍ଠ ଗୁଣୀ ଲୋକେ ହିଁ, ତାଙ୍କର ଜୀବନ-କାଳରେ ତାଙ୍କୁ ଜଗତର ଦ୍ୱିତୀୟ ଯୀଶୁଖ୍ରୀଷ୍ଟ ବୋଲି ସାଲ୍ୟୁଟ୍ ଜଣାଇଥିଲେ । ଗାନ୍ଧି ଯେ ଆଜି ବିଶ୍ୱମାନବ ମହାପୁରୁଷ, ତାହା କିଛି ବୁଝି ନ ଥିବା ମୂଢ଼ ଭାରତୀୟ ଜନତାର କରତାଳି ଯୋଗୁଁ ନୁହେଁ, ତାହା ସର୍ବଜନଗୃହୀତ କେବଳ ଏହି ୟୁରୋପୀୟ ସୁଧୀଜନଙ୍କ ତାଙ୍କ ପ୍ରତି ଅକୁଣ୍ଠ ଅଭିବାଦନ ଫଳରେ – ଆଇନ୍‌ଷ୍ଟାଇନଙ୍କ ପରି ମହାବିଜ୍ଞାନୀ ଓ ଆଲବର୍ଟ୍ ସ୍କୁଇଟ୍‌ଜରଙ୍କ ପରି ମହାନ୍ ମାନବସେବକ (ଉଭୟେ ନୋବେଲ ପୁରସ୍କାରପ୍ରାପ୍ତ) ମାନଙ୍କ ସ୍ପଷ୍ଟ ବାଣୀରେ ।

ୟୁରୋପୀୟ ସୁଧୀଜନଙ୍କ ହାତ ନ ଲାଗିଥିଲେ, ଗାନ୍ଧି-ଜୀବନୀ ଯେ ଶ୍ରୀକୃଷ୍ଣ-ଚରିତ ବା ଚୈତନ୍ୟଚରିତାମୃତ ପରି, ଏତେବେଳକୁ କେବଳ ଗାଳଗାଳ୍ପି କଥାରେ ହିଁ ଭରି ଯାଇଥାନ୍ତା, ଏଥିରେ କୌଣସି ସନ୍ଦେହ ନାହିଁ । ତାଙ୍କର ଜୀବନକାଳରେ ହିଁ, ଅହିଂସାର ଅବତାର ଗାନ୍ଧିଜୀ, ଆମ ଏଇ ଓଡ଼ିଶାରେ ଗାନ୍ଧି-ଠାକୁରାଣୀ ହୋଇ ଯାଇଥିଲେ ଓ ତାଙ୍କର ଉପଯୁକ୍ତ ପୂଜା ହେଉଥିଲା ଉଷ୍ଣ କୁକ୍କୁଟ-ରକ୍ତରେ । ଏ ସଂପର୍କରେ ଲେଖକର ବାଲ୍ୟ-କାଳର ଏକ ସ୍ମୃତି ଏଠାରେ ଉଲ୍ଲେଖ କରିବା ମଧ୍ୟ ଅପ୍ରାସଙ୍ଗିକ ହେବ ନାହିଁ ।

ଗାନ୍ଧିଜୀ ଅସହଯୋଗ-ଆନ୍ଦୋଳନରେ ଜେଲ୍ ଗଲେ, କିନ୍ତୁ ଦଣ୍ଡାଦେଶର ପୂର୍ଣ୍ଣକାଳ ନ ଯାଉଣୁ, ଆପେଣ୍ଡିସାଇଟିସ୍ ଅପରେଶନ୍ ପାଇଁ, ତାଙ୍କୁ ଖଲାସ କରି ଦିଆଗଲା ।

ଏହି ସତ୍ୟ ଘଟଣା ଭାରତୀୟ ଜନଚିତ୍ତରେ କି ଆଧିଭୌତିକ ରୂପ ଧାରଣ କରିଥିଲା ପାଠକେ ଦେଖନ୍ତୁ :

ଲେଖକ ଛାତ୍ର ଥାଏ ସେତେବେଳେ । ଛୁଟିରେ ଗାଁକୁ ଯାଇଥାଏ । ଲେଖକର ଗ୍ରାମଟି ଏବେ ବି ଏକ ଗ୍ରେଟ, ଦରିଦ୍ର, କୃଷକ ପଲ୍ଲୀ । ଗାଁର ଅଧିକାଂଶ ଲୋକ ମୂର୍ଖ । ଏବେ ବି କେହି ଖବରକାଗଜ ଦେଖନ୍ତିନି, ସେତେ-ବେଳେ, ପ୍ରାୟ ଚାଳିଶି ପଚିଶ ବର୍ଷ ତଳର କଥା ଅନୁମେୟ । କିନ୍ତୁ ଗାନ୍ଧି-ଇଂରେଜର 'ଲଢ଼େଇ' ଚାଲିଥାଏ । ମୂର୍ଖ ହେଲେ ହେଁ, ଖବରକାଗଜ ନ ପଢ଼ିଲେ ହେଁ, ସାଧାରଣ ମନୁଷ୍ୟ, ଯେ କୌଣସି 'ଲଢ଼େଇ'ର ଫଳାଫଳ ଜାଣିବା ପାଇଁ ଉଦ୍‌ଗ୍ରୀବ । ଏହା ମନୁଷ୍ୟ ଭିତରେ ଥିବା ଏକ ଜାନ୍ତବ ପ୍ରକୃତି । ଲେଖକର ଗାଁ ଲୋକେ ମଧ୍ୟ, ଭାରତର ୫୦ ଲକ୍ଷ ପଲ୍ଲୀ ପରି, ଗାନ୍ଧି-ଇଂରେଜ 'ଲଢ଼େଇ'ର ଖବର ରଖିଥାନ୍ତି । କିନ୍ତୁ ଗାନ୍ଧିଙ୍କର ଆପେଣ୍ଡିସାଇଟିସ୍ ଅପରେସନ୍ ପାଇଁ ଖଲାସ ପାଇଥିବା ଘଟଣା ଲୋକ-ଚିତ୍ତରେ ଅକଳ୍ପନୀୟ ମୂର୍ତ୍ତି ଧାରଣ କଲା । ଖରାବେଳ । ଚଷାମାନେ ମଧ୍ୟାହ୍ନ ଭୋଜନ ଓ ନିଦ୍ରା ପରେ, ପୁଣି ପାଇଟିକି ଯିବା ଆଗରୁ ନାନା ପ୍ରକାର ଗଳ୍ପ ଓ ତର୍କ କରୁଛନ୍ତି । ନାନା କଥା ଭିତରେ ଗାନ୍ଧି-ଇଂରେଜ ଲଢ଼େଇ କଥା ବି ଆସିଗଲା । କିନ୍ତୁ, ଖବରକାଗଜ ପଢ଼ୁଥିବା ଏହି ନବଶିକ୍ଷିତ ତରୁଣର ଉପସ୍ଥିତି ସତ୍ତ୍ୱେ, ଗାଁର ପ୍ରଜ୍ଞାବନ୍ତ ଜନନାୟକ ବଳଭଦ୍ରସିଂ ବୁଢ଼ା ପାଟିକରି ଉଠିଲେ, "ଆରେ ଶୁଣ ; ଶୁଣ, ପିଲେ । ଗାନ୍ଧି

କମିତି ଖଲାସ ହେଲା ଜାଣ ? ଗାନ୍ଧିଙ୍କ ଇଂରେଜ-ରଜା ବନ୍ଦୀ କରି ଦେଲା । ଯିମିତି ବନ୍ଦୀ କରି ଦେଇଛି, ଗାନ୍ଧୀର ବଡ଼ଭାଇ ବାରହାତ ଖଣ୍ଡା ଧରି, ଘୋଡ଼ା ଚଢ଼ି, ଇଂରେଜ ରଜା ଆଗରେ ଯାଇ ପହଞ୍ଚିଲା, ଏବଂ ପାଟିକରି କହିଲା—ମୋ ଭାଇକୁ ଛାଡ଼, ନ ହେଲେ, ଏଇକ୍ଷଣି ଏଇ ଖଣ୍ଡାରେ ତୋ ମୁଣ୍ଡ କାଟି କରିଦେବି ।

ଇଂରେଜ ରଜା ଆଉ କିଛି ନ କହି, କରପୁଟ ହୋଇ ଗାନ୍ଧିଙ୍କ ଛାଡ଼ି ଦେଲା !"

ଆଇନ୍‌ଷ୍ଟାଇନ୍ କହିଛନ୍ତି ଯେ ଗାନ୍ଧି ଯଦି ରକ୍ତମାଂସ ଦେହ ଧରି ଆମ ସମୟରେ ବଞ୍ଚି ନ ଥାନ୍ତେ, ତେବେ ପରେ ଭବିଷ୍ୟତର ମନୁଷ୍ୟ ସମାଜ, ତାଙ୍କର ଅଦ୍ଭୁତପୂର୍ବ ଜୀବନକାହାଣୀ ପଢ଼ି କେବେ ବିଶ୍ୱାସ କରନ୍ତେ ନାହିଁ ଯେ, ଏପରି ଏକ ଲୋକ ପ୍ରକୃତରେ ପୃଥିବୀରେ ବିଚରଣ କରୁଥିଲା । ସେହିପରି, ଉପର-ବର୍ଣ୍ଣିତ ଘଟଣା ଲେଖକର ନିଜ ଆଖି-କାନ-ଦେଖିବା-ଶୁଣିବା କଥା ନ ହୋଇଥିଲେ, ଏବର ପାଠକେ ଏହାକୁ ମନଗଢ଼ା ବୋଲି ହସି ଉଡ଼େଇ ଦେବା ଅତ୍ୟନ୍ତ ସମୀଚୀନ ହୋଇଥାନ୍ତା ।

କିନ୍ତୁ ସୁଖର କଥା, ଗାନ୍ଧିଜୀଙ୍କ ଜୀବନୀ ସଂବନ୍ଧରେ ଆଉ "ମନ-ଗଢା" କଥା ପାଇଁ ଆଦୌ ଅବକାଶ ନାହିଁ । କାରଣ, ସତ୍ୟ-ସନ୍ଧି ଗାନ୍ଧିଜୀ ପାଶ୍ଚାତ୍ୟାନୁକରଣରେ ନିଜର କୌଣସି କଥା ନ ଲୁଚାଇ ଏକ ବିଶ୍ୱବିଖ୍ୟାତ ଆତ୍ମ-ଗାଥା ଲେଖି ଯାଇଛନ୍ତି ଏବଂ ତାଙ୍କର ଜୀବନ-କାଳ ଭିତରେ ଓ ପରେ ପରେ ଏକାଧିକ ୟୁରୋପୀୟ ପଣ୍ଡିତ ତାଙ୍କ ଉପରେ ରୋଲାଁଙ୍କ ରାମକୃଷ୍ଣ-ବିବେକାନନ୍ଦଙ୍କ ଜୀବନୀ ପରି, ଖାସ୍‌ଣ-ବିସ୍ତର ଓ ବିଶ୍ଳେ-ଷଣାତ୍ମକ ଜୀବନୀ ସବୁ ଲେଖି ଯାଇଛନ୍ତି ।

ଠିକ୍ ଏହି କାରଣରୁ, ବିଶ୍ୱ-ପ୍ରସିଦ୍ଧ ଆମେରିକାନ୍ ସାମ୍ବାଦିକ ଲୁଇ ଫିଶରଙ୍କ ଗାନ୍ଧି-ଜୀବନୀ ସମଗ୍ର ଜଗତରେ ଅସାଧାରଣ ଜନପ୍ରିୟତା ଲାଭ କରିଛି । ଗାନ୍ଧିଜୀଙ୍କ ପ୍ରଥମ ଜୀବନୀ-ଲେଖକ ହେଉଛନ୍ତି ଜଣେ ୟୁରୋପୀୟ—ଜୋସେଫ ଜେ· ଡୋକ୍ † । ରୋମାଁରୋଲାଁ ମଧ୍ୟ ରାମକୃଷ୍ଣ-ବିବେକାନନ୍ଦଙ୍କ ପରି ଗାନ୍ଧିଜୀଙ୍କ ଜୀବନୀ ଲେଖିଛନ୍ତି । କିନ୍ତୁ ତାହା ଲେଖା

---

† ପ୍ରଥମ ଭାଗର ପ୍ରଥମ ସଂସ୍କରଣରେ ଏହା ଭୁଲ୍‌କ୍ରମେ ଏଇଚ୍. ଏସ୍. ପୋଲାକ୍ ହୋଇଛି ।

ହୋଇ ନ ଥିଲା ବେଳକୁ (୧୯୫୧) ଗାନ୍ଧିଜୀଙ୍କ ସମ୍ବନ୍ଧରେ ସବୁ କଥା ପରିସ୍ଫୁଟ ହୋଇ ବାହାରି ନ ଥିଲା । ଏପରିକି ତାଙ୍କର ଆତ୍ମ-ଜୀବନୀ ମଧ୍ୟ ସେତେବେଳକୁ ଲେଖା ହୋଇ ନ ଥିଲା । ତେଣୁ ରୋଲାଁଙ୍କ ଗାନ୍ଧି ଚରିତ, ତାଙ୍କର ରାମକୃଷ୍ଣ-ବିବେକାନନ୍ଦଙ୍କ ଜୀବନୀ ପରି, ପରିପୂର୍ଣ୍ଣତା ପାଇ ପାରିନି । କିନ୍ତୁ ସେ ଅଭାବ, ସେହି ପାଶ୍ଚାତ୍ୟଦେଶୀୟ ସୁଧୀଜନମାନଙ୍କଦ୍ୱାରା ହିଁ ବିଶେଷ ଭାବରେ ପୂରଣ ହୋଇଛି । ଏହି ଲୁଇ ଫିଶରଙ୍କ ବହି ହିଁ ତାର ପ୍ରମାଣ । କାରଣ, ଲେଖକର ଦୃଢ଼ ବିଶ୍ୱାସ, ଲୁଇ ଫିଶରଙ୍କର ଏ ବହି ପରି ବହି, ସାଧାରଣ ଭାରତୀୟ ଲେଖକଠାରୁ ଆଶା କରାଯାଇ ନ ପାରେ ।

ଓଡ଼ିଶାର ଗାନ୍ଧି-ଜନ୍ମ-ଶତ-ବାର୍ଷିକୀ-ଉତ୍ସବ-ସଭାର ଗାନ୍ଧି-ସାହିତ୍ୟ-ସମିତି, ତେଣୁ, ଏହି ପୁଣ୍ୟ ସମ୍ବତ୍ସରରେ ଗାନ୍ଧିଜୀଙ୍କ ପରମ ପବିତ୍ର ସ୍ମୃତି ପ୍ରତି ଏକ ଅର୍ଘ୍ୟ ଭାବରେ, ଏହି ଲୁଇ ଫିଶରଙ୍କ ଗାନ୍ଧି ଜୀବନୀଟିକୁ ଓଡ଼ିଆରେ ଅନୁବାଦ କରିବାକୁ ସ୍ଥିର କଲେ । ସମିତି ଅନୁବାଦର ଦାୟିତ୍ୱ ଦେଲେ 'ନବଜୀବନ'ର ସୁଯୋଗ୍ୟ ସମ୍ପାଦକ ଓ ସେଦିନର ସ୍ୱାଧୀନତା-ସଂଗ୍ରାମୀ ଶ୍ରୀ ଚିନ୍ତାମଣି ମିଶ୍ରଙ୍କୁ । ଶ୍ରୀ ମିଶ୍ରଙ୍କର ଅନବଦ୍ୟ ଓଡ଼ିଆ ଗଦ୍ୟ-ଶୈଳୀ, ନବଜୀବନର ପାଠକମାନଙ୍କ ନିକଟରେ ଜଣା କଥା । ଏହି ବିରାଟ ଗାନ୍ଧି-ଜୀବନୀ-ଗ୍ରନ୍ଥ ତାଙ୍କର ସେହି ଖ୍ୟାତିକୁ ସୁପ୍ରତିଷ୍ଠିତ କରିବ ବୋଲି ଆଶା । ଏପରି ଏକ ବିରାଟ ଗ୍ରନ୍ଥରେ କାହିଁ କାହିଁ ଭୁଲ୍ ଭ୍ରାନ୍ତି ରହିଯାଇଥିବା ସ୍ୱାଭାବିକ ଏବଂ ରହି ଯେ ଯାଇଛି, ଠାଏ ଠାଏ, ଏହା ଆମେ ମାନୁଛୁ । ଆଶା କରୁ, ଆଗାମୀ ସଂସ୍କରଣରେ ସେ ସବୁ ସଂପୂର୍ଣ୍ଣ ନିରାକୃତ ହୋଇଯିବ । କିନ୍ତୁ ମୋଟ ଉପରେ ଅନୁବାଦର ସ୍ୱଚ୍ଛନ୍ଦ ପ୍ରବାହଶୀଳତା ଓ ପ୍ରାଞ୍ଜଳତା ଫଳରେ, ଓଡ଼ିଶାର ପାଠକ ପାଠିକା ଏହି ବିରାଟ ଗାନ୍ଧି-ଜୀବନୀକୁ ଯେ ଏକ ଉପନ୍ୟାସ ପରି ପଢ଼ି ଚାଲିବେ ଓ ପଢ଼ୁ ପଢ଼ୁ ଯୁଗପତ୍ ସୁଖ ଭୋଗ କରିବେ ଓ ପବିତ୍ର ଅନ୍ତରାଲୋକ ପାଇ ଚାଲିବେ, ଏହା ବିଶ୍ୱାସ କରାଯାଉଛି । ଗାନ୍ଧି-ଜନ୍ମ-ଶତ-ବାର୍ଷିକୀ-ଉତ୍ସବ ବର୍ଷରେ ଏହି ଜୀବନୀ ଓଡ଼ିଶାର ଲୋକମାନଙ୍କ ଭିତରେ, ଏବଂ ବିଶେଷ କରି ତରୁଣ-ତରୁଣୀ ସମାଜରେ, ପବିତ୍ର ଗାନ୍ଧି-ଭାବଧାରାକୁ ଅଧିକ ପ୍ରତିଷ୍ଠିତ କରିବ ବୋଲି ଆଶା କରି କହିଲୁଁ ।

। ଇତି ।

**ମାୟାଧର ମାନସିଂହ**

# ଭୂମିକା

ଗାନ୍ଧିଜୀ ନିଜର ଜୀବିତାବସ୍ଥାରେ ଓ ମୃତ୍ୟୁ ପରେ ଏତେ ସମ୍ମାନର ଅଧିକାରୀ ହୋଇଛନ୍ତି ଯେ, ଆମେ ତାଙ୍କର ଶତବାର୍ଷିକୀ ପାଳନ କରି ତାଙ୍କୁ ଆଉ ଅଧିକ କିଛି ସମ୍ମାନ ଦେଖାଇ ପାରିବା ନାହିଁ ।

କିନ୍ତୁ ଦୁଃଖର କଥା ଯେ, ଯେଉଁ ଗାନ୍ଧିଜୀ ନିଜ କର୍ମଯୋଗରେ ଓ ଶୁଦ୍ଧ, ପବିତ୍ର ବିଚାରଧାରାରେ ସାରା ପୃଥିବୀର ମନକୁ କିଣି ପାରିଥିଲେ, ଆଜି ଆମେ ତାଙ୍କ ବିଚାରକୁ ଭୁଲି ତାଙ୍କୁ ଏକ ଦେବତା ରୂପେ ବିଭିନ୍ନ ଉପଚାରରେ ପୂଜା କରିବାରେ ଲାଗିଛୁ—ଏପରି କି ଏଥିପାଇଁ ସାମୂହିକ ଓ ସଂଗଠିତ ଉଦ୍ୟମ କରାଯାଉଛି । ଭାରତୀୟ ଜଳବାୟୁର କ'ଣ ଏକ ଦୋଷ ଅଛି ଯେ ଏଥିରେ ମହାମାନବମାନେ ଅତି ସହଜରେ ମୂକ ଓ ବଧିର ଦେବତା ପାଲଟି ଯାଉଛନ୍ତି ।

କିନ୍ତୁ ମହାମାନବ ଗାନ୍ଧିଜୀ ଦେବତା ହେବାକୁ ଚାହିଁ ନ ଥିଲେ । ସେ ଥିଲେ କର୍ମଯୋଗୀ, ବିପ୍ଳବୀ, ସେ ମଣିଷର ରକ୍ତ-ମାଂସ-ଶରୀରରେ ଆମ ଭିତରେ ରହି ସମାଜର ଦୋଷଦୁର୍ବଳତା ବିରୁଦ୍ଧରେ ଏକ ଅହିଂସ ସଂଗ୍ରାମ କରି ଏହାକୁ ପରିବର୍ତ୍ତନ କରିବାକୁ ଚାହିଁଥିଲେ । ଆଜି ଯେତେ-ବେଳେ ଶତବାର୍ଷିକୀ ପାଳନ କରାଯାଉଛି, ସେତେବେଳେ ଗାନ୍ଧିଜୀଙ୍କ ଆଦର୍ଶ ଓ ବିଚାରଧାରା ସହିତ ପରିଚିତ ହୋଇ, ସେହି ଆଦର୍ଶ ଓ ବିଚାର-ଧାରାନୁଯାୟୀ କିପରି ଆମର ବ୍ୟକ୍ତିଗତ ଓ ସାମାଜିକ ଜୀବନକୁ ପରିବର୍ତ୍ତନ କରିବା, ତାହାହିଁ ମୁଖ୍ୟ ଉଦ୍ଦେଶ୍ୟ ହେବା ଉଚିତ । ସେଥିପାଇଁ ଗାନ୍ଧି ଶତବାର୍ଷିକୀ-ସାହିତ୍ୟ-ସମିତି ତରଫରୁ ଗାନ୍ଧିଜୀଙ୍କ ବିଚାରଧାରାର ବିଭିନ୍ନ ବିଭାଗ ଉପରେ ଆଲୋଚନାମୂଳକ କେତେକ ପୁସ୍ତିକା ପ୍ରକାଶ କରାଯାଉଛି । ଏହା ଫଳରେ ପ୍ରଚଳିତ, ଗତାନୁଗତିକ ଚିନ୍ତାଧାରା ବିରୁଦ୍ଧରେ ଯଦି କିଛି ପ୍ରଶ୍ନ ଉଠେ, ତାହାହେଲେ ଲେଖକ ଓ ଉଦ୍ୟୋକ୍ତାମାନଙ୍କ ଶ୍ରମ ସାର୍ଥକ ହେଲା ବୋଲି ଧରାଯିବ ।

ଓଡ଼ିଶାର ଗାନ୍ଧି-ଜନ୍ମ-ଶତ-ବାର୍ଷିକୀ ଉତ୍ସବର ସାହିତ୍ୟ-ଶାଖା ଏହି ପୁଣ୍ୟ ସମ୍ବତ୍ସରରେ ଯେଉଁ ଭାବରେ ଗାନ୍ଧି-ସାହିତ୍ୟ ଓଡ଼ିଆରେ ପରିବେଷଣ କରିବାକୁ ବସିଛନ୍ତି, ତାହା ଏହିପରି—

(୧) ଗାନ୍ଧିଜୀଙ୍କ ସମସ୍ତ ନିଜ ରଚନା ।
(୨) ଗାନ୍ଧିଜୀଙ୍କ ଉପରେ ଅନ୍ୟମାନଙ୍କର ରଚନା ।
(୩) ଗାନ୍ଧିବାଦ ଉପରେ ପ୍ରବନ୍ଧ ଓ ପୁସ୍ତିକାବଳୀ ।
(୪) ଗାନ୍ଧି-ସୂକ୍ତି-ମୁକ୍ତାବଳୀ ।
(୫) ଗାନ୍ଧି ଓ ଉତ୍କଳ ।

ଏଥି ଭିତରୁ ପ୍ରଥମ ଶ୍ରେଣୀର ରଚନାବଳୀ ପ୍ରକାଶନ ଦାୟିତ୍ୱ ନେଇଛନ୍ତି ଶ୍ରୀ ଶରତ୍‌ଚନ୍ଦ୍ର ମହାରଣା, ଗାନ୍ଧି-ସ୍ମାରକ-ନିଧି ପକ୍ଷରୁ । ଏହା ପୂରା ଷୋଳ ଖଣ୍ଡରେ ପ୍ରକାଶିତ ହେବ ।

ଅନ୍ୟ ସବୁ ଶ୍ରେଣୀର ଦାୟିତ୍ୱ ନେଇଛନ୍ତି ଗାନ୍ଧି-ସାହିତ୍ୟ-ସମିତି ।

୧୯୬୯ ଅକ୍ଟୋବର ଦୁଇକୁ, ଏହି ସମିତି ଗାନ୍ଧି-ବାଦ-ଆଲୋଚନା-ମୂଳକ ଏକ ସ୍ମରଣିକା ପ୍ରକାଶ କରିବାକୁ ଆଶା କରନ୍ତି ।

'ଗାନ୍ଧି ଓ ଉତ୍କଳ'ର ଦାୟିତ୍ୱ ନେଇଛନ୍ତି, ଡକ୍ଟର ହରେକୃଷ୍ଣ ମହତାବ ।

ଆମ୍ଭମାନଙ୍କର ଉଦ୍ୟମ ପାଇଁ ଉତ୍କଳର ସମସ୍ତ ପାଠକ ପାଠିକାଙ୍କର ସହଯୋଗ ଭିକ୍ଷା କରୁଁ । ଇତି ।

**ଶ୍ରୀ ମାୟାଧର ମାନସିଂହ**
ସଭାପତି
ଗାନ୍ଧି-ସାହିତ୍ୟ-ସମିତି

**ଶ୍ରୀ ବୈଦ୍ୟନାଥ ମିଶ୍ର**
ସଂପାଦକ
ଗାନ୍ଧି-ସାହିତ୍ୟ-ସମିତି



# ସୂଚୀପତ୍ର



---

# ପ୍ରଥମ ପରିଚ୍ଛେଦ

## ଉପକ୍ରମ

ଗାନ୍ଧୀ ପ୍ରତ୍ୟକ୍ଷ ଯୁଦ୍ଧକୁ ବଡ଼ ଧୀରେ ଧୀରେ ଅଗ୍ରସର ହୋଇଥିଲେ । ସାଧାରଣତଃ ସାମ୍ରାଜ୍ୟଦ୍ରୋହୀ ନିଜର ପ୍ରତିପକ୍ଷ-ଦେଶର ରାଷ୍ଟ୍ରଠାରୁ ହିଁ ସଂଘର୍ଷ ସକାଶ ଅସ୍ତ୍ରଶସ୍ତ୍ର ସଂଗ୍ରହ କରି ପକାନ୍ତି । ଗାନ୍ଧୀଙ୍କୁ ସେଭଳି ଅସ୍ତ୍ର ରାଷ୍ଟ୍ରଠାରୁ ମିଳି ନ ଥିଲା । ତାଙ୍କ ନିଜର ତିଆରି ଅସ୍ତ୍ର—ଆଇନ୍ ଅମାନ୍ୟ ଆରମ୍ଭ କରି-ଦେବାକୁ ବ୍ରିଟିଶ୍ ସରକାର ତାଙ୍କୁ ଗୋଟିଏ ସୁଯୋଗ ମାତ୍ର ଦେଇଥିଲେ ; ତାହାହିଁ ଯଥେଷ୍ଟ ହେଲା ।

କଂଗ୍ରେସ ଜନତା, ଫେବ୍ରୁଆରି, ୧୯୨୨ରେ ଚଉରିଚଉରାଠାରେ ଅତି ନିଷ୍ଠୁର ଭାବରେ ପୁଲିସ୍‌ବାଲାଙ୍କୁ ହତ୍ୟା କରି ଦେବା ଫଳରେ ଗାନ୍ଧୀ ବାର୍ଦ୍ଦୋଲୀ ଜିଲ୍ଲାରେ ଆଇନ ଅମାନ୍ୟ ଆନ୍ଦୋଳନ ଆରମ୍ଭ କରିବା ଯୋଜ-ନାକୁ ମୁଲତବି ରଖିବା ସକାଶ ପ୍ରରୋଚିତ ହୋଇଥିଲେ । କିନ୍ତୁ କଳ୍ପନାଟି ସାର୍ଥକ ହୋଇ ନ ଥାଏ । ଛ' ବର୍ଷକାଳ ସଂଭାଳି ହୋଇ ରହି, ୧୯୨୮ ଫେବ୍ରୁଆରି ୧୨ ତାରିଖ ଦିନ ସେ ସେହି ବାର୍ଦ୍ଦୋଲୀରେ ସତ୍ୟାଗ୍ରହ ଆରମ୍ଭ କରିବାକୁ ଇଶାରା ଦେଇଦେଲେ ।

ଏ ଆନ୍ଦୋଳନର ପ୍ରତ୍ୟକ୍ଷ ନେତୃତ୍ୱ ସେ ନେଲେ ନାହିଁ ; ଦୂରରେ ରହି ସେ ଆନ୍ଦୋଳନର ଗତି ଲକ୍ଷ୍ୟ କରୁଥାନ୍ତି, ଯା ଉପରେ ଲମ୍ବା ଲେଖା ପତ୍ରିକାରେ ଲେଖୁଥାନ୍ତି, ଏବଂ ସ୍ଥୂଳ ଭାବରେ ନିର୍ଦ୍ଦେଶ ଓ ପ୍ରେରଣା ଦେଉଥାନ୍ତି । କାର୍ଯ୍ୟତଃ ଆନ୍ଦୋଳନକୁ ନେତୃତ୍ୱ ଦେଲେ ବଲ୍ଲଭଭାଇ ପଟେଲ; ତାଙ୍କର ସହକର୍ମୀ ଥାନ୍ତି ଜଣେ ମୁସଲମାନ, ଆବାସ୍ ତାୟେବଜୀ ।

୧୯୧୫ ଖ୍ରୀଷ୍ଟାବ୍ଦର କଥା । ସେତେବେଳେ ସର୍ଦ୍ଦାର ବଲ୍ଲଭଭାଇ ପଟେଲ ଥାନ୍ତି ଆହମଦାବାଦର ଜଣେ ନାମୁଆ ଓକିଲ । ସେ କ୍ଲବ୍‌ରେ ବସି ବ୍ରିଜ୍ ଖେଳୁଥାନ୍ତି, ଗାନ୍ଧୀ ସେଇ କ୍ଲବକୁ ଆସିଲେ । ପଟେଲ ନିଜ ଆଖିର ମାଂସଳ ପତା ଟେକି କାଣେଇ କରି କ୍ଷୁଦ୍ରକାୟ ଲୋକଟିକୁ ଚାହିଁଲେ—

ମୁଣ୍ଡରେ ଆଟିକା ପରି ଲମ୍ବା କନାରେ ଗୁଡ଼େଇ ଗୁଡ଼େଇ ଏଟେଡ ପଗଡ଼ି, ଦେହଟିରେ ଆଣ୍ଠୁ ପର୍ଯ୍ୟନ୍ତ ଲମ୍ବିଥିବା ଲମ୍ବା କାଥିଆବାଡ଼ି କୋଟ୍, ତାର ପୁଣି ହାତ ଦୁଇଟା ଗୁଡ଼ାଇ ଗୁଡ଼ାଇ ଟେକା ହୋଇଛି କହୁଣୀ ଯାଏଁ । ଥରଟାଏ ଚାହାଁଦେଇ ବଲ୍ଲଭଭାଇ ମୁହଁ ଫେରାଇ ନିଜ ଖେଳରେ ଲାଗିଲେ । ଦକ୍ଷିଣ ଆଫ୍ରିକାରେ ଗାନ୍ଧୀଙ୍କ କୃତିତ୍ୱ ବଲ୍ଲଭଭାଇ ପଟେଲ ଆଗରୁ ଶୁଣିଥିଲେ, କିନ୍ତୁ ପ୍ରଥମ କରି ଏଥର ଦେଖି ତାଙ୍କ ବିଷୟରେ ଭଲ ଧାରଣା ହୋଇ ନ ଥିଲା ।

କିନ୍ତୁ ହପ୍ତାକ ପରେ, ଗାନ୍ଧୀ ଡକାଇଥିବା ଗୋଟାଏ ସମ୍ମିଳନୀରେ ଦେଖିବାକୁ ଯାଇ ପହଞ୍ଚି, ପଟେଲ ଏ ନୂଆ ଲୋକଟିର ଯୁକ୍ତିଯୁକ୍ତ ଚିନ୍ତାଧାରା ଦେଖି ତାଜୁବ୍ ହୋଇଥିଲେ । କୃଷକମାନଙ୍କ ଉପରେ ବସୁଥିବା ଟିକସର ଯୁକ୍ତିଯୁକ୍ତତା ବିଷୟରେ ସମ୍ମିଳନୀରେ ଆଲୋଚନା ହେଉଥିଲା । ପଟେଲଙ୍କର ତୀକ୍ଷ୍ଣ ବୈଜ୍ଞାନିକ ରୀତିରେ ଯନ୍ତ୍ର ହୋଇଥିବା ବୁଦ୍ଧି । ପରବର୍ତ୍ତୀ କାଳରେ, ନିତ୍ୟ-କ୍ଷୁର ତାଙ୍କ ଫୁଲ୍କା ମୁହଁ, ନଡ଼ିଆ ପରି ଗୋଲ ଓ ପିଙ୍ଗଳବର୍ଣ୍ଣ ଚନ୍ଦା ମୁଣ୍ଡ, ଆଣ୍ଠୁ ପର୍ଯ୍ୟନ୍ତ ଲମ୍ବିଥିବା ଧଳା ଖଦଡ଼ର କୁରୁତା ଦେଖି, ମନେ ହୁଏ ସେ ପ୍ରାଚୀନ ଯୁଗର ଜଣେ ରୋମୀୟ ଶାସନ-ସଭାର ସଦସ୍ୟ । ଯଦି ବା ତାଙ୍କ ମନରେ କେଉଁଠି ଭାବପ୍ରବଣତା ଥିଲା, ସେ ତାକୁ ଏକାବେଳକେ ବାହ୍ୟ କଠୋରତାରେ ଚପାଇ ରଖିଥିଲେ । ଆମେରିକୀୟ ବିପ୍ଳବ ବେଳେ, ବିପ୍ଳବୀଙ୍କ ଦଳରେ ଜିମ୍ ଫାର୍ଲି ବୋଲି ଜଣେ ଥିଲେ । ଆମେରିକୀୟ ଲୋକେ ପଟେଲଙ୍କୁ କହୁଥିଲେ, ଭାରତୀୟ କଂଗ୍ରେସ ଦଳର 'ଜିମ୍ ଫାର୍ଲି' । ତାଙ୍କର ମନଟା ଗୋଟାଏ ଯନ୍ତ୍ର ବାକ୍ସ ପରି । ସମସ୍ତଙ୍କର ନାମ ଓ ପରିଚୟ ସେଥିରେ ନିର୍ଭୁଲ ହୋଇ ରହିଥାଏ ଓ ସେ ପୂର୍ଣ୍ଣ ଆତ୍ମବିଶ୍ୱାସରେ ଭାରତୀୟ ରାଜନୀତିକ ସମୁଦ୍ରରେ ମୁଣ୍ଡ ଟେକି ଉଠିଥିବା 'ବିଷମ' ଭିତରେ, ନିଜର ରାଜନୀତିକ ତରୀକୁ ନିରାପଦ ଭାବେ ଚଳାଇ ପାରୁଥିଲେ ।

ନିଜ ଚିନ୍ତାଧାରାର ନିରାଟ ଯୁକ୍ତିଯୁକ୍ତତାଦ୍ୱାରା ଗାନ୍ଧୀ ପଟେଲଙ୍କ ଆନୁଗତ୍ୟ ଆକର୍ଷଣ କରି ପାରିଥିଲେ । ଗାନ୍ଧୀଙ୍କର ଚିନ୍ତାଧାରା : ସ୍ୱାଧୀନତା ପାଇବାକୁ ହେଲେ କୃଷକମାନଙ୍କର ସହଯୋଗ ଦରକାର, କାରଣ ଭାରତର ବହୁ ଭାଗ, ଶତକଡ଼ା ଅଶି ଭାଗ, କୃଷକ । ପୁଣି କୃଷକମାନଙ୍କ ସହଯୋଗ ପାଇବାକୁ ହେଲେ, କୃଷକଙ୍କ ଭାଷାରେ କହିବାକୁ ହେବ, ତାଙ୍କର ପରି ଲୁଗା ପିନ୍ଧିବାକୁ ହେବ ଏବଂ ତାଙ୍କର ଆର୍ଥନୀତିକ ପ୍ରୟୋଜନ କ'ଣ ଉପଲବ୍ଧି କରିବାକୁ ହେବ ।

୧୯୨୮ରେ ପଟେଲ୍ ଆହମଦାବାଦର ମେୟର୍ ଥିଲେ । ଗାନ୍ଧୀଙ୍କ ନିର୍ଦ୍ଦେଶରେ ସେ ସେ ପଦ ଛାଡ଼ି ବମ୍ବେ ପ୍ରଦେଶର ବାର୍ଦ୍ଦୋଲିକୁ ଗଲେ । ସେଠାରେ ବ୍ରିଟିଶ୍ ସରକାର, ପ୍ରଚଳିତ ଖଜଣା ଶତକଡ଼ା ୨୨ ଭାଗ ବଢ଼ାଇ ଦେବାକୁ ହୁକୁମ କରିଥାନ୍ତି । ଏହାର ବିରୋଧରେ, ୮ ହଜାର କୃଷକଙ୍କୁ ମତାଇ ଶାନ୍ତିପୂର୍ଣ୍ଣ ଆନ୍ଦୋଳନ କରାଇବାର ଭାର ପଟେଲଙ୍କ ଉପରେ ନ୍ୟସ୍ତ ହେଲା ।

ପଟେଲଙ୍କ ନେତୃତ୍ୱରେ ସଂଘବଦ୍ଧ ହୋଇ ଗ୍ରାମବାସୀମାନେ ଖଜଣା ବନ୍ଦ ଆନ୍ଦୋଳନ ଆରମ୍ଭ କରିଦେଲେ । କଲେକ୍ଟର୍ ଖଜଣା ପାଇଁ, ହଳ କରୁଥିବା ପୋଢ଼ ଓ ଦୁଧ ଦେଉଥିବା ମଇଁଷି ସବୁ କ୍ରୋକ୍ କରି ବାଜ୍ୟାପ୍ତ କରି ଦେଲେ । କୃଷକମାନଙ୍କୁ ନିଜ ଜମିରୁ ବେଦଖଲ୍ କରି ଦିଆଗଲା । ଖଜଣା ନ ଦେବା କାରଣ, ସରକାରୀ ଲୋକେ କୃଷକଙ୍କ ହାଣ୍ଡିଶାଳରେ ପଶି କଂସାବାସନ ନେଇଗଲେ । ଶଗଡ଼ ଓ ଘୋଡ଼ା ସବୁ ମଧ୍ୟ ନେଇଗଲେ । ଏ ଉତ୍ତେଜନା ସତ୍ତ୍ୱେ କୃଷକମାନେ ଅହିଂସ ରହିଥାନ୍ତି ।

ଗାନ୍ଧୀ 'ୟଙ୍ଗ୍ ଇଣ୍ଡିଆ'ରେ ଲେଖିଲେ 'ଯେପରି ଢଙ୍ଗରେ ଜମି ବାଜ୍ୟାପ୍ତ କରାଯାଉଛି, ସେଥିରୁ ମନେହୁଏ ସମଗ୍ର ବାର୍ଦ୍ଦୋଲୀ ତାଲୁକା ଅଳ୍ପଦିନ ଭିତରେ ଖାସ୍ ସରକାରଙ୍କ ହାତକୁ ଚାଲିଯିବ । ବେଶିଙ୍କ ସରକାର ଯେଉଁ ଅପୂର୍ବ ଖଜଣା ବୃଦ୍ଧି କରିଛନ୍ତି, ସେତିକି କାହିଁକି ତାହାର ହଜାର ଗୁଣ ବୃଦ୍ଧି ହାରରେ ଖଜଣା ଆପଣାଠାରୁ ଆପେ ମହାସୁଖରେ ବସି ଆଦାୟ କରୁଥିବେ । ବାର୍ଦ୍ଦୋଲୀର ଲୋକେ ଯଦି ଦମ୍ଭ ଧରି ରହନ୍ତି, ତେବେ ଜମି ହାତରୁ ଚାଲି ଯିବାରୁ, ତାଙ୍କର କୌଣସି କ୍ଷତି ହେବ ନାହିଁ । ସଂପତ୍ତି ସିନା ଚାଲିଯିବ, ନରନାରୀଙ୍କର ସବୁଠାରୁ ବଡ଼ ସଂପତ୍ତି—ନିଜ ଇଜ୍ଜତର ଅଧିକାରରେ ସେମାନେ ସମୃଦ୍ଧ ହେବେ । ଯେଉଁମାନଙ୍କର ଦେହରେ ବଳ ଓ ମନରେ ଟାଣ ଅଛି, ସେମାନେ, ସଂପତ୍ତି ଚାଲିଗଲା ବୋଲି ଡରି ଯିବେ ନାହିଁ ।'

ମହାତ୍ମା ବିଚାରିଥିଲେ, ସତେ ଯେପରି କ୍ଷୁଧା-ପ୍ରପୀଡ଼ିତ ପ୍ରତ୍ୟେକ ଚାଷୀ ଜଣେ ଜଣେ ମହାତ୍ମା । ବଡ଼ ତାଜୁବ୍ କଥା, ତାଙ୍କର ଏ ବିଚାର ସତ ବୋଲି ପ୍ରମାଣିତ ହେଲା । ଗାନ୍ଧୀଙ୍କର ଟିକିଏ ଟିକିଏ ଛୁଆଁ ଲାଗି ପ୍ରତ୍ୟେକ କୃଷକ ତ୍ୟାଗଭାବରେ ଦୀକ୍ଷିତ ହୋଇଗଲେ ।

* ୪ *

ମାସ ପରେ ମାସ ଗ୍ଭଲଲା । ବାର୍ଦ୍ଦୋଲୀ ଟାଣ ଧର ରହିଥାଏ । ଶହ ଶହ ଲୋକ ଗିରଫ୍ ହେଉଥାନ୍ତି । ସରକାର ନିଜେ ଆଇନ୍ ଭାଙ୍ଗୁଛନ୍ତି ବୋଲି ଅଭିଯୋଗ ହେଲା ସିନା, ସରକାର ଆତଙ୍କ ଜାରି କରୁଛନ୍ତି ବୋଲି କେହି କହିଲେ ନାହିଁ , ଲୋକେ ତ ଆତଙ୍କିତ ହେଲେ ନାହିଁ, ଆତଙ୍କର ଅସ୍ତିତ୍ୱ ଆସିବ କୁଆଡ଼ୁ ?

ବାର୍ଦ୍ଦୋଲୀ ଉପରେ ସମଗ୍ର ଭାରତର ଦୃଷ୍ଟି ପଡ଼ିବା ଆରମ୍ଭ ହେଲା । ଆନ୍ଦୋଳନ ଚଳାଇ ରଖିବାକୁ ଲୋକଙ୍କ ଚାନ୍ଦାର ସ୍ରୋତ ଭାରତର ସବୁ ପ୍ରାନ୍ତରୁ ବାର୍ଦ୍ଦୋଲୀକୁ ବହିବାକୁ ଲାଗିଲା ।

ସରକାରୀ କର୍ମଚାରୀମାନେ ଗାଁ ଗହଳରେ ମଟରକାର ଚଢ଼ି ପଇଁତରା ମାରୁଥାନ୍ତି । କେତେଜଣ ଚାଷୀ ପଟେଲଙ୍କୁ ଆସି ଫୁସ୍‌ଫୁସ୍ କରି ଇଶାରା ଦେଲେ, 'ଚାଲନ୍ତୁ ସଡ଼କରେ କାଠ ପକେଇ ଦେବା, ନ ହେଲେ ସଡ଼କ ମଝିରେ ଠା ଠା କରି ଗୋଜମୁନା ପୋତି ଦେବା ଯେ ସରକାରୀ ଅଫିସର୍-ମାନଙ୍କର ମଟରର ଟାୟାର୍ ଫାଟି ଯିବ । ଏ ଗୁଡ଼ାକ ସାକ୍ଷାତ୍ ଭୂତ ପରି ଲୋକଙ୍କୁ ଡରେଇବାକୁ ବସିଛନ୍ତି, 'ଅହିଂସା'ର ଚେଙ୍କ ଖାଇ ଥଣ୍ଡା ହୋଇଯିବେ ।'

ପଟେଲ ସେମାନଙ୍କୁ ଡାକିଆଣି କହିଲେ, 'ନା, ନା, ତୁମର ଏ ଯେଉଁ ଲଢ଼େଇ ଚାଲିଛି ସେ ତ ଟଙ୍କା କେତେ ଲକ୍ଷ ପାଇଁ ଲାଗିନାହିଁ, ଏହା ଲାଗିଛି ଗୋଟାଏ ନୀତିର ପ୍ରତିଷ୍ଠା ପାଇଁ······ତୁମେ ଲଢ଼ୁଛ ନିଜର ଆତ୍ମମର୍ଯ୍ୟାଦା ପାଇଁ ; ଆତ୍ମମର୍ଯ୍ୟାଦା ପ୍ରତ୍ୟେକେ ଅର୍ଜି ପାରିଲେ, ପରିଣାମରେ ସ୍ୱରାଜ୍ୟର ପଥ ପରିଷ୍କାର ହୋଇଯିବ ।'

ଗୋଟାଏ ଗୋଟାଏ ଗାଁରୁ ବିଲ୍‌କୁଲ ସବୁଯାକ ଚଳନ୍ତି ସଂପତ୍ତି ସରକାର ବୋହି ନେଇଯିବାକୁ ଆରମ୍ଭ କଲେ । ସରକାରୀ ଲୋକେ ଆସିଲେ, ଚାଷୀମାନେ ନିଜର ପିଲା କବିଲା ଓ ଜନ୍ତୁ ଜୁନ୍ତାଙ୍କୁ ଘର ଭିତରେ ପଗାଇ ଦାଣ୍ଡ ଦୁଆର ବାଡ଼ିଦୁଆର କିଳି ଛପିଯାନ୍ତି । ସରକାରୀ ଲୋକେ ବାହାରେ ରଖା ହେଉଥିବା ଶଗଡ଼ ସବୁ ନେବାକୁ ଆରମ୍ଭ କଲେ । ସର୍ଦ୍ଦାର ନିର୍ଦ୍ଦେଶ ଦେଲେ, 'ଶଗଡ଼ ଭାଙ୍ଗି ଦେଇ, ଦଣ୍ଡା ଠାଏ ଓ ଚକଗୁଡ଼ାକ ଆଉ ଠାଏ ଠାଏ ପକାଇଦିଅ ; ଅଖଗୁଡ଼ାକ ମାଟିରେ ପୋତି ପକାଅ ।'

ସରକାର ନିଉଜ୍‌ରେ ଚିଠି ଜଣାଇ ଦେଲେ ଯେ, ବାଜ୍ୟାପ୍ତ ହୋଇ-ଥିବା କେତେକ ଜମି ନୂଆ ଲୋକଙ୍କୁ ପଟା ଦିଆଗଲାଣି ଏବଂ ଲୋକେ ଏହି

ତୁରନ୍ତ ଖଜଣା ଦାଖଲ ନ କରନ୍ତି ତେବେ ବାର୍ଦ୍ଦୋଲୀ ତାଲୁକାର ସମୁଦାୟ ଜମି ନିଲାମରେ ହସ୍ତାନ୍ତର କରିଦିଆଯିବ । ଲେଜିସ୍ଲେଟିଭ ଆସେମ୍ବ୍ଲିର ବାଚସ୍ପତି, ବଲ୍ଲଭଭାଇଙ୍କ ବଡ଼ଭାଇ ବିଠଲଭାଇ ଭାଇସ୍‌ରୟଙ୍କଠାରେ ଅଭିଯୋଗ କଲେ ଯେ, 'ବାର୍ଦ୍ଦୋଲୀରେ ସରକାର ପକ୍ଷରୁ ଯେଉଁ କାର୍ଯ୍ୟ ବିଧାନ ହେଉଛି ତାହା ବହୁ କ୍ଷେତ୍ରରେ, ଆଇନ୍, ଶୃଙ୍ଖଳା ଏପରିକି ସଦାଚରଣର ସୀମା ଲଙ୍ଘି ଯାଉଛି ।' କେବଳ ଲୋକ ସରକାର ବିରୋଧରେ ବାହାରିଲେ, ଅନ୍ୟମାନେ ଉଦାସୀନ ଭାବେ ନିରପେକ୍ଷ ରହିବାର 'ଯେଉଁ ଅନିଷ୍ଟକର ଦାସଭାବର ପରମ୍ପରା' ଚାଲି ଆସୁଛି, ତାହାକୁ ବିଠଲଭାଇଙ୍କର ଏ ଚିଠି ଭାଙ୍ଗିଲା ବୋଲି କହି ଗାନ୍ଧୀ ଏ ଚିଠିକୁ ସ୍ୱାଗତ କରିଥିଲେ ।

ଗାନ୍ଧୀଙ୍କ ନିର୍ଦ୍ଦେଶରେ, ବାର୍ଦ୍ଦୋଲୀ ସତ୍ୟାଗ୍ରହୀଙ୍କ ପ୍ରତି ଶ୍ରଦ୍ଧାର ନିଦର୍ଶନ ସ୍ୱରୂପ ସମଗ୍ର ଭାରତରେ ଜୁନ୍ ୧୨ ତାରିଖ ଦିନ ହରତାଳ ପାଳିତ ହେଲା । ଭାରତରୁ ଓ ଭାରତ ବାହାରେ ଥିବା ଭାରତୀୟଙ୍କଠାରୁ ବହୁତ ଟଙ୍କା ସର୍ଦ୍ଦାର ପଟେଲ୍‌ଙ୍କ ପାଖେ ଆସି ଅଜାଡ଼ି ହେଉଥାଏ ।

ଗାନ୍ଧୀ ଅଳ୍ପ କେତେଦିନ ପାଇଁ ବାର୍ଦ୍ଦୋଲୀ ବୁଲିବାକୁ ଯାଇଥିଲେ । ପ୍ରତ୍ୟେକ ସ୍ଥାନରେ କୃଷକମାନେ ଶୋଭାଯାତ୍ରା କରି ତାଙ୍କୁ ପାଛୋଟି ନେଉଥାନ୍ତି ।

ସ୍ୱନାମଧନ୍ୟ ସଂବିଧାନ-ଆଇନ୍ ବିଶାରଦ ସାର୍ ତେଜ୍ ବାହାଦୁର୍ ସାପ୍ରୁ ଏବଂ ବମ୍ବେ ଲେଜିସ୍ଲେଟିଭ କାଉନ୍‌ସିଲ୍‌ର ସଭ୍ୟ ଶ୍ରୀ କେ· ଏମ୍· ମୁନ୍‌ସି ଓ ସମଗ୍ର ଭାରତରେ ଖ୍ୟାତି ଅର୍ଜିଥିବା ଆଉ କେତେକ ଭାରତୀୟ ନେତା ବାର୍ଦ୍ଦୋଲୀର ସତ୍ୟାଗ୍ରହୀଙ୍କ ପ୍ରତି ଶ୍ରଦ୍ଧା ଜ୍ଞାପନ କଲେ, ଏବଂ ଏମାନଙ୍କ ପ୍ରତି ସରକାର ନ୍ୟାୟବିଚାର କରନ୍ତୁ ବୋଲି ଦାବୀ କଲେ । ସତ୍ୟାଗ୍ରହ ଆନ୍ଦୋଳନ ଚରମ ସୀମାରେ ପହଞ୍ଚିବା ଅବସ୍ଥାରେ, ଜୁଲାଇ ୧୩ ତାରିଖ ଦିନ ବମ୍ବେର ଗଭର୍ଣ୍ଣର୍ ଲର୍ଡ଼୍ ଆରଉଇନ୍‌ଙ୍କ ସଙ୍ଗେ ପରାମର୍ଶ କରିବାକୁ ସିମଲା ଆସିଥିଲେ । ପାଞ୍ଚଦିନ ପରେ ବମ୍ବେକୁ ଫେରି ସେ ବଲ୍ଲଭଭାଇ ପଟେଲ, ଅବାସ ତୟାବ୍‌ଜୀ ଓ ଗୁରଜଣ ନେତୃସ୍ଥାନୀୟ ସତ୍ୟାଗ୍ରହୀଙ୍କୁ ଗୋଟିଏ ସମ୍ମିଳନୀକୁ ଡାକିଲେ । ସମାଧାନ ପାଇଁ ପ୍ରତିପକ୍ଷ ସଙ୍ଗେ କଥାବାର୍ତ୍ତା କରିବାକୁ ଆଇନ୍-ଅମାନ୍ୟକାରୀ ସବୁବେଳେ ସ୍ୱାଗତ କରେ ; ଏପରି ଆଲୋଚନା ହେଉ ହେଉ ସାଲିସ୍ ହୋଇଯାଇପାରେ । କିନ୍ତୁ ଏଥରର କଥାବାର୍ତ୍ତା ଫଳରେ ବାର୍ଦ୍ଦୋଲୀସମସ୍ୟାର କୌଣସି ସମାଧାନ ସଂଭବ ହେଲା

ନାହିଁ । ଜୁଲାଇ ୨୩ ତାରିଖରେ ବମ୍ବେ ଲେଜିସ୍‌ଲେଟିଭ୍ କାଉନ୍‌ସିଲ୍‌ରେ ଉଦ୍‌ଘାଟନ-ଭାଷଣ ଦେଇ ସାର୍ ଲେସ୍‌ଲି ଉଇଲ୍‌ସନ୍ ଏ ସଂପର୍କରେ କହିଲେ, ବର୍ତ୍ତମାନ କଥା ହେଉଛି 'ମହାମାନ୍ୟ ସମ୍ରାଟ୍‌ଙ୍କ ସାମ୍ରାଜ୍ୟର ଗୋଟିଏ ଅଂଶରେ ତାଙ୍କର ଆଇନ୍ ଚାଲୁ ହେବ କି ନାହିଁ ।'

ବାର୍ଦ୍ଦୋଲୀ ବିଦ୍ରୋହ ବିଷୟରେ ଇଂଲଣ୍ଡର ଖବରକାଗଜମାନେ ସଚେତ ହେବାକୁ ଆରମ୍ଭ କଲେ । ବିଲାତର ଲୋକସଭାରେ ଏ ସଂପର୍କୀୟ ପ୍ରଶ୍ନମାନ ପଚରାଗଲା । ଲର୍ଡ୍ ଉଇଣ୍ଟର୍‌ଟନ୍ ଦୃଢ଼-ମତ ପ୍ରକାଶ କଲେ ଯେ, 'ଆଇନ୍‌ଶାସନ ଜବରଦସ୍ତି ଚାଲୁ କରିବାକୁ ହେବ ଓ ଏ ଆନ୍ଦୋଳନକୁ ଜବତ୍ କରିବାକୁ ପଡ଼ିବ···।' ପଟେଲ ଓ ବାର୍ଦ୍ଦୋଲୀର ସତ୍ୟାଗ୍ରହୀମାନେ ସରକାରର ଏ 'ଅସ୍ତ୍ର ଝଣତ୍‌କାର'କୁ ଅବଜ୍ଞାରେ ଉଡ଼ାଇଦେଲେ ।

ସମଗ୍ର ଭାରତରୁ ଗାନ୍ଧୀଙ୍କ ଉପରେ ଚାପ ପଡ଼ିଲା, ଅନ୍ୟ ପ୍ରଦେଶମାନଙ୍କରେ ଏହିପରି ଆଇନ୍ ଅମାନ୍ୟ ଆନ୍ଦୋଳନ ଆରମ୍ଭ କରାଯାଉ । ଧୈର୍ଯ୍ୟ ଧରି ଅପେକ୍ଷା କରିବାକୁ ଗାନ୍ଧୀ ପରାମର୍ଶ ଦେଉଥାନ୍ତି । 'ଅନ୍ୟତ୍ର ବାର୍ଦ୍ଦୋଲୀ ଲୋକଙ୍କ ପ୍ରତି ସହାନୁଭୂତି ଦେଖାଇ ସସୀମ ସତ୍ୟାଗ୍ରହ ବି କରିବାର ବେଳ ଏ ପର୍ଯ୍ୟନ୍ତ ଆସିନାହିଁ । ବାର୍ଦ୍ଦୋଲୀ ନିଜର ସାମର୍ଥ୍ୟ ପ୍ରମାଣ କରିବା ଅଦ୍ୟାପି ବାକି ଅଛି । ଶେଷ ମୁହୂର୍ତ୍ତରେ ଯେଉଁ ଚାପ ପଡ଼ିବ ତା'କୁ ଯଦି ବାର୍ଦ୍ଦୋଲୀ ସଂଭାଳି ପାରିବ, ସରକାର ଯଦି ତାଙ୍କର ସର୍ବାଧିକ ଦମନନୀତି ସେଠାରେ ଚାଲୁ କରିବାକୁ ବସିବେ, ତେବେ ମୁଁ ବା ବଲ୍ଲଭଭାଇ ଯେତେ ଚେଷ୍ଟା କଲେ ବି, ସତ୍ୟାଗ୍ରହ ଅନ୍ୟତ୍ର ବ୍ୟାପିବା ବନ୍ଦ କରି ପାରିବୁ ନାହିଁ ଓ ବାର୍ଦ୍ଦୋଲୀ ସତ୍ୟାଗ୍ରହ ପରି ସେ ସତ୍ୟାଗ୍ରହର ଲକ୍ଷ୍ୟ କ୍ଷୁଦ୍ର ପରିସରରେ ଆବଦ୍ଧ ରଖି ପାରିବୁ ନାହିଁ ।······। ସମଗ୍ର ଭାରତ ସେତେବେଳେ କେତେ ତ୍ୟାଗ ବରଣ କରିପାରିବ, କେତେ ଯନ୍ତ୍ରଣା ସହିପାରିବ, ତାହାରିଦ୍ୱାରା ସେତେବେଳର ସତ୍ୟାଗ୍ରହର ପରିସର ନିର୍ଣ୍ଣୀତ ହେବ ।' ସେ ପର୍ଯ୍ୟନ୍ତ ବାର୍ଦ୍ଦୋଲୀର କୃଷକମାନେ 'ଭଗବାନ୍‌ଙ୍କ ବଳୀଆରଭୁଜ ତଳେ ନିରାପଦ ହୋଇ ଥାନ୍ତୁ' ।

ପଟେଲ ଗିରଫ୍ ହେବେ ବୋଲି ପ୍ରତି ମୁହୂର୍ତ୍ତରେ ଆଶଂକା ହେଉଥାଏ । ତେଣୁ ଅଗଷ୍ଟ ୨ ତାରିଖରେ ଗାନ୍ଧୀ ନିଜେ ବାର୍ଦ୍ଦୋଲୀରେ ଯାଇ ରହିଲେ । ଅଗଷ୍ଟ ୬ ତାରିଖରେ କିନ୍ତୁ ସରକାର ମୁଣ୍ଡ ଲୁଆଁଇ ଦେଲେ, ବନ୍ଦୀ ହୋଇଥିବା ସମସ୍ତଙ୍କୁ ମୁକ୍ତି ଦେବାକୁ ଜବାବ୍ ଦେଲେ ;

ବାଜ୍ୟାପ୍ତ ହୋଇଥିବା ଜମି, ବାଜ୍ୟାପ୍ତ ହୋଇଥିବା ଜନ୍ତୁଜନ୍ତା ବା ସେମାନଙ୍କ ଉଚିତ ମୂଲ୍ୟ ଫେରାଇଦେବାକୁ ରାଜି ହେଲେ, ଏବଂ ମୂଳ କଥା, ବୃଦ୍ଧି ହୋଇଥିବା ଖଜଣା ପ୍ରତ୍ୟାହାର କରିଦେବାକୁ କହିଲେ । ପଟେଲ୍ ଜବାବ୍ ଦେଲେ ଯେ କୃଷକମାନେ ସାବେକ୍ ରେଟ୍‌ରେ ଖଜଣା ଅସୁଲ ଦେବେ । ଉଭୟ ପକ୍ଷ ନିଜର ପ୍ରତିଶ୍ରୁତି ଯଥାଯଥ ଭାବେ ପାଳନ କଲେ ।

ଆର୍‌ଉଇନ୍ ଓ ଭାରତକୁ ଗାନ୍ଧୀ ଦେଖାଇ ଦେଲେ ଯେ, ତାଙ୍କ ଅସ୍ତ୍ର କରାମତି ଅଛି ।

ସରକାର ଓ ଜନସାଧାରଣ ଉଭୟଙ୍କ ମନରେ ଏତେବେଳେ ଏକ ପ୍ରଶ୍ନ : ଏ ଅସ୍ତ୍ରକୁ ଗାନ୍ଧୀ ବ୍ୟାପକଭାବେ ପ୍ରୟୋଗ କରିବେ ନା ନାହିଁ ?

ଭାରତରେ ଗଣ୍ଡଗୋଳିଆ ଅବସ୍ଥା ଲାଗି ରହିଥାଏ । ସାଇମନ୍ କମିଶନ୍ ୧୯୨୮ ଫେବୃଆରୀ ୩ ତାରିଖରେ ବମ୍ବେରେ ପାଦ ଦେଲା ଦିନୁଁ ଭାରତ ତାକୁ ବଏକଟ୍ କରିଥାଏ । ଗାନ୍ଧୀ ଏଭଳି ନିରାଟ ଭାବେ ତା'କୁ ବାଏକଟ୍ କରିଥାନ୍ତି ଯେ, ସେ କମିଶନ୍‌ର ନାମ ସୁଦ୍ଧା ତୁଣ୍ଡରେ ଧରି ନ ଥାନ୍ତି କି ଲେଖି ନ ଥାନ୍ତି । ତାଙ୍କ ବିଚାରରେ, କମିଶନ୍‌ର ଅସ୍ତିତ୍ୱ ସୁଦ୍ଧା ନ ଥିଲା । କିନ୍ତୁ ଅନ୍ୟମାନେ କମିଶନ୍‌ର ଅସ୍ତିତ୍ୱ ସ୍ୱୀକାର କରି ତା' ବିରୁଦ୍ଧରେ ବିକ୍ଷୋଭ ପ୍ରଦର୍ଶନ କରୁଥାନ୍ତି । ଲାହୋରରେ ହୋଇଥିବା ଗୋଟାଏ ବିରାଟ ସାଇମନ୍-ବିରୋଧୀ ସଭାରେ ପଞ୍ଜାବର ସର୍ବଶ୍ରେଷ୍ଠ ରାଜନୈତିକ ନେତା ଲାଜପତ୍ ରାୟ—ବୟସ ୬୪, ଗାନ୍ଧୀ ୟାଙ୍କୁ ନାମ ଦେଇଥିଲେ 'ପଞ୍ଜାବକେଶରୀ'—ପୁଲିସ୍‌ର ଲାଠି ମାଡ଼ରେ ଆହତ ହୋଇ ଅଳ୍ପଦିନ ଭିତରେ ପ୍ରାଣ ହରାଇଲେ । (ଲାଠି ବୋଇଲେ ୪ଫୁଟ ଲମ୍ବା ବାଉଁଶ ଠେଙ୍ଗା ; ପୁଲିସ୍ ଜନତାକୁ ଆକ୍ରମଣ କଲାବେଳେ ୟାକୁ ବ୍ୟବହାର କରନ୍ତି । ) ପ୍ରାୟ ଏଇ ସମୟରେ, ଲକ୍ଷ୍ନୌରେ ହୋଇଥିବା ଗୋଟାଏ ସାଇମନ୍-ବିରୋଧୀ ସାଧାରଣ ସଭାରେ ଜବାହାରଲାଲଙ୍କ ଉପରେ ଲାଠିମାଡ଼ ହୋଇଥିଲା । ଡିସେମ୍ବର ୧୯୨୮ରେ, ଲାଜପତ୍ ରାୟଙ୍କ ମୃତ୍ୟୁର କେତେ ସପ୍ତାହ ପରେ, ଲାହୋରର ଆସିଷ୍ଟାଣ୍ଟ୍ ପୁଲିସ୍ ସୁପରିଂଟେଣ୍ଡେଣ୍ଟ୍ ସଣ୍ଡର୍ସ୍ ସାହେବଙ୍କୁ ହତ୍ୟା କରାଗଲା । ଏହି ହତ୍ୟାକୁ ଗାନ୍ଧୀ 'କାପୁରୁଷୋଚିତ କାର୍ଯ୍ୟ' ବୋଲି ନିନ୍ଦା କରିଥିଲେ । ହତ୍ୟା-କାଣ୍ଡ କରିଥିବାର ସନ୍ଦେହ ହୋଇଥିବା ଆସାମୀ ଭଗତ୍ ସିଂହ ଧରା ନ ଦେଇ ଆତ୍ମଗୋପନ କରିଥିଲେ ; ଅବିଳମ୍ବେ ସେ ଜାତୀୟ ବୀରର ଗୌରବ ପାଇଗଲେ ।

୧୯୨୮ରେ ଶରତ୍ କାଳରେ ବଢ଼ି ଉଠୁଥିବା ଶ୍ରମିକ ସଂଗଠନ ବିରୁଦ୍ଧରେ ସରକାର କାର୍ଯ୍ୟାନୁଷ୍ଠାନ ଆରମ୍ଭ କଲେ । ଶ୍ରମିକ ସଂଗଠନର ନେତା, ସାମ୍ୟବାଦୀ ଓ କମ୍ୟୁନିଷ୍ଟମାନେ ବହୁସଂଖ୍ୟାରେ ଗିରଫ୍ ହେଲେ । ଶ୍ରମିକମାନଙ୍କ ଭିତରେ ବିକ୍ଷୋଭ ଦେଖାଦେଲା । ଏ ବିକ୍ଷୋଭ ମୂଳରେ ନିଜ ଗୋଷ୍ଠୀର ସ୍ୱାର୍ଥ ଓ ଭାରତୀୟ ଜାତୀୟ ଆକାଂକ୍ଷା ମିଶିମାଶି ଥାଏ ।

ବଙ୍ଗ ପ୍ରଦେଶ ସବୁବେଳେ ଗଣ୍ଡଗୋଳର ପୀଠ ହୋଇଥାଏ । ସେଠାରେ ସରକାର ବିରୁଦ୍ଧରେ ବିଦ୍ରୋହ ଯେପରି ମୁଣ୍ଡ ଟେକୁଥାଏ, କଂଗ୍ରେସ ବିରୁଦ୍ଧରେ ସେହିପରି ବିକ୍ଷୋଭ ଦେଖାଯାଉଥାଏ । ବଙ୍ଗରେ ବିକ୍ଷୋଭର ପ୍ରତୀକ ସୁଭାଷ ଚନ୍ଦ୍ର ବୋଷ ଖୁବ୍ ଲୋକପ୍ରିୟ ହୋଇଥାନ୍ତି ଓ ବହୁ ସଦାଅଶାନ୍ତ ଯୁବକ ତାଙ୍କର ଅନୁଚର ହୋଇଥାନ୍ତି । ସୁଭାଷଙ୍କର ମତିବାଦ ଥାଏ, 'ମୋତେ ରକ୍ତ ଦେଲେ ମୁଁ ସ୍ୱାଧୀନତା ଦେବି ବୋଲି ଜବାବ ଦେଉଛି' ।

ଗାନ୍ଧୀ ରାଜନୀତିକ ବାୟୁମଣ୍ଡଳରେ ସଂକଟର ଲକ୍ଷଣ ବାରୁଥାନ୍ତି । ସେ କହୁଥିଲେ, ପ୍ରଚଳିତ ବ୍ରିଟିଶ୍ ଶାସନ ସଂସ୍ଥା 'ପୂରାପୂରି ମନ୍ଦ, ସେଥିରେ ଭଲ ବୋଲି ଲେଶମାତ୍ର ନ ଥାଏ' । ତାଙ୍କର ସାମାନ୍ୟ ଇଙ୍ଗିତରେ ସାରା ଭାରତରେ ହଜାରେ ବାର୍ଦ୍ଦୋଲୀ ନିମେଷ ମଧ୍ୟରେ ଫୁଟିଉଠିବ । କିନ୍ତୁ ଗାନ୍ଧୀ, ଯୁଦ୍ଧକ୍ଷେତ୍ରରେ ନିପୁଣ ସେନାପତି ପରି, ସମ୍ମୁଖ ସମର ପାଇଁ ଉପଯୁକ୍ତ ସମୟ ଓ ସ୍ଥଳ ଉପରେ ସବୁବେଳେ ଆଖି ରଖିଥାନ୍ତି । ଭାରତର ଶକ୍ତିକୁ ସେ ଯେତିକି ଜାଣିଥାନ୍ତି, ତା'ର ଦୁର୍ବଳତା ଓ କଂଗ୍ରେସର ଦୋଷାଦୋଷକୁ ମଧ୍ୟ ସେହିପରି ଜାଣିଥାନ୍ତି । ହୁଏତ, ସେ ଯଦି ଧୈର୍ଯ୍ୟ ଧରି ଅପେକ୍ଷା କରନ୍ତି ତେବେ ପ୍ରତ୍ୟକ୍ଷ ସଂଘର୍ଷ ଏଡ଼ିଦେବା ସଂଭବ ହୋଇପାରେ । ସଂଘର୍ଷର ସଂଭାବନା ଏଡ଼ିବା ପାଇଁ ସମସ୍ତ ଚେଷ୍ଟା କରିବା ପୂର୍ବରୁ, ଅହିଂସ ଉପାୟରେ ହେଲେ ବି, ବଳ କଷାକଷି କରିବାକୁ ବାହାରିବା ଉଚିତ ହେବନାହିଁ ବୋଲି ସେ ବିଚାରୁଥାନ୍ତି ।

ମନର ଏହିପରି ସନ୍ଦିହାନ ଅବସ୍ଥାରେ, ୧୯୨୮ ଡିସେମ୍ବର ମାସରେ କଲିକତାରେ ବସୁଥିବା କଂଗ୍ରେସ ଅଧିବେଶନରେ ଯୋଗ ଦେବାକୁ ସେ ବାହାରିଲେ । ବାଟରେ, ନାଗପୁର ଷ୍ଟେସନ୍‌ଠାରେ ଗାଡ଼ି ଅଟକିବା ଅବସରରେ କେତେକ ବନ୍ଧୁ ତାଙ୍କୁ କେତୋଟି ଅନ୍ତର୍ଭେଦୀ ଓ ତାତ୍ପର୍ଯ୍ୟପୂର୍ଣ୍ଣ ପ୍ରଶ୍ନ ପଚାରିଥିଲେ ।

ସେମାନେ ପଚାରିଲେ, 'ସ୍ୱାଧୀନତା ପାଇଁ ଗୋଟାଏ ରାଜନୀତିକ ସଂଘର୍ଷର ସୂତ୍ରପାତ ହେଲେ ଆପଣ କି ପନ୍ଥା ଧରିବେ ?'

ଗାନ୍ଧୀ ଉତ୍ତର ଦେଲେ, 'ମୁଁ ସେଥିରେ ଯୋଗ ଦେବାକୁ ମନାକରିବି ନାହିଁ ।'

'ତେବେ କ'ଣ ଜାତୀୟ ସୁରକ୍ଷା ପ୍ରକାଶ ବେସରକାରୀ ସେନା ଗଠନ ବିଷୟରେ ଆପଣଙ୍କର ମତ ନାହିଁ ?'

ଗାନ୍ଧୀ ଉତ୍ତର ଦେଲେ, 'ଧରି ବାନ୍ଧି ଲୋକଙ୍କୁ ଅହିଂସ କରାଇ ହେବ ନାହିଁ ବୋଲି ଉପଲବ୍ଧି କରୁଥିବାରୁ ମୁଁ ଏପରି ସେନାଗଠନର ସପକ୍ଷରେ ମତ ଦେବି ଯେ, ସ୍ୱାଧୀନତା ମିଳିବା ପରେ ଯାଇ ଏଭଳି ସେନା ଗଠିତ ହେବା ମୁଁ ଚାହେଁ । ତା'ର ବେଳ ବର୍ତ୍ତମାନ ନୁହେଁ, ଅହିଂସ ଭାବରେ ଜାତୀୟ ସଂକଟର କିପରି ସମ୍ମୁଖୀନ ହେବାକୁ ହେବ ତାହା ମୁଁ ଏବେ ଲୋକଙ୍କୁ ବତାଉଛି ।'

କିନ୍ତୁ କଂଗ୍ରେସ ଅଧିବେଶନରେ ସକ୍ରିୟ ଉଦ୍ୟମ ତୁରନ୍ତ ଆରମ୍ଭ କରିବାକୁ ଦାବୀ ହେଲା । ଅନୁଷ୍ଠାନର କାର୍ଯ୍ୟକାରିତା ଅଛି କି ନାହିଁ ଓ କଥାରେ ଯାହା କୁହାଯାଉଛି ତହିଁରେ ବାସ୍ତବତା କେତେ ଅଛି, ଗାନ୍ଧୀ ନିରୀକ୍ଷା କରୁଥାନ୍ତି । କଂଗ୍ରେସ ଯୁଦ୍ଧ କରିବାକୁ ଆହ୍ୱାନ କରିବ, କିନ୍ତୁ କଂଗ୍ରେସ କ'ଣ କାର୍ଯ୍ୟଦକ୍ଷ ସେନାବାହିନୀ ଅବସ୍ଥାରେ ଅଛି ? ଗାନ୍ଧୀ ଚାହୁଁଥାନ୍ତି, କଂଗ୍ରେସର 'ପୂର୍ଣ୍ଣ ସଂସ୍କାର' ହେଉ । ସେ ଲେଖିଥିଲେ, 'କଂଗ୍ରେସର ପ୍ରତିନିଧିମାନେ ପ୍ରାୟଶଃ ନିଜକୁ ନିଜେ ନିର୍ବାଚିତ କରୁଛନ୍ତି··· ଏଭଳି ଗଠିତ ଅନୁଷ୍ଠାନ ସମଗ୍ର ଦେଶକୁ ଏକଜୁଟ କରି ଦୁର୍ଦମନୀୟ ଭାବରେ ସଂଘର୍ଷ କରିବାକୁ ବାସ୍ତବ ସାମର୍ଥ୍ୟ ଅର୍ଜି ପାରିବ ନାହିଁ' ।

କିନ୍ତୁ ଏ ସବୁ ଆପତ୍ତି ସତ୍ତ୍ୱେ କଂଗ୍ରେସକୁ ରୋକି ହେଲାନାହିଁ । ଏଥର କଂଗ୍ରେସର କର୍ମସୂଚୀରେ କିଂକର୍ତ୍ତବ୍ୟବିମୂଢ଼ତାର ଅବସର ନ ଥାଏ । ସୁଭାଷଚନ୍ଦ୍ର ବୋଷ ଓ ଜବାହାରଲାଲ ନେହେରୁ କଂଗ୍ରେସର ଯୁବକ ଗୋଷ୍ଠୀଙ୍କୁ ହାତମୁଠାରେ ରଖିଥାନ୍ତି । ସେମାନଙ୍କର ଦାବୀ, ଆଉ ବିଳମ୍ବ ନ କରି ପୂର୍ଣ୍ଣ ସ୍ୱାଧୀନତା ଘୋଷଣା କରାଯାଉ; ତା'ପରେ ଆରମ୍ଭ ହେଉ ସ୍ୱାଧୀନତା ସଂଗ୍ରାମ । ସଂଗ୍ରାମ କଥା ସ୍ପଷ୍ଟାକ୍ଷରରେ ପ୍ରସ୍ତାବରେ ନ ଥିଲେ ହେଁ ଘୋଷଣା ପରେ ତାହା ଯେ ଅବଶ୍ୟମ୍ଭାବୀ ଏହା ବେଶ୍ ବୁଝାପଡୁଥିଲା । ଗାନ୍ଧୀ ପରାମର୍ଶ ଦେଲେ, ବ୍ରିଟିଶ୍ ସରକାରଙ୍କୁ ଦୁଇବର୍ଷ ସମୟ ଦିଆଯାଉ

କିନ୍ତୁ ଯୁବକମାନଙ୍କ ଗୁପ୍ତ ଫଳରେ ସେ ଦୁଇବର୍ଷକୁ କାଟି ଏକ ବର୍ଷ କଲେ । ୧୯୨୯ ଡିସେମ୍ବର ୩୧ ତାରିଖ ସୁଦ୍ଧା ଭାରତକୁ ଯଦି ଔପନିବେଶିକ ସ୍ୱାଧୀନତା ନ ମିଳେ, ତେବେ ଗାନ୍ଧୀ କହିଲେ, 'ମୁଁ ନିଜେ ପୂର୍ଣ୍ଣ ସ୍ୱାଧୀନତାର ପକ୍ଷପାତୀ ବୋଲି ଅବଶ୍ୟ ଘୋଷଣା କରିବି' ।

ଗାନ୍ଧୀ କଂଗ୍ରେସ ଅଧିବେଶନରେ ଜଣାଇ ଦେଲେ, 'ଆଉ ପଛକୁ ଫେରିବାର ବାଟ ମୁଁ ଆପେ ବନ୍ଦ କରି ଦେଇଛି ।'

୧୯୨୯ ଖ୍ରୀଷ୍ଟାବ୍ଦଟି ଅତି ସଙ୍କଟପୂର୍ଣ୍ଣ ଓ ଭାରତର ଭାଗ୍ୟନିର୍ଣ୍ଣାୟକ ହେବ ବୋଲି ସ୍ପଷ୍ଟ ଜଣାପଡ଼ିଲା ।

୧୯୩୦ ପାଇଁ କ୍ଷେତ୍ର ପ୍ରସ୍ତୁତ କରିବାକୁ ଗାନ୍ଧୀ ୧୯୨୯ରେ ସମଗ୍ର ଭାରତରେ ଗସ୍ତ କଲେ । ଏଥର ସେ ଆଉ ପ୍ରଥମ ବା ଦ୍ୱିତୀୟ ଶ୍ରେଣୀ ରେଲ ଡବାରେ ଆବଦ୍ଧ ହୋଇ ଯାତ୍ରା କରିବାକୁ ମଙ୍ଗିଲେ ନାହିଁ । ପୁଣି ତୃତୀୟ ଶ୍ରେଣୀରେ ଆରମ୍ଭ ହେଲା । ସେ ଦେଖିଲେ ପାଞ୍ଚ ବର୍ଷ ପୂର୍ବେ ତୃତୀୟ ଶ୍ରେଣୀ ଯାତ୍ରୀମାନେ ଯେପରି ବ୍ୟକ୍ତିଗତ ପରିଚ୍ଛନ୍ନତାକୁ ଦୃଷ୍ଟି ନ ଦେଇ ଅପରିଚ୍ଛନ୍ନ ଭାବରେ ଯାତ୍ରା କରୁଥିଲେ, ଏବେ ବି ସେହିପରି କରୁଛନ୍ତି ।

ଫେବୃଆରୀ ମାସରେ ସେ ଭାରତର ପଶ୍ଚିମପ୍ରାନ୍ତସ୍ଥ ସିନ୍ଧପ୍ରଦେଶରେ ଗସ୍ତ କରୁଛନ୍ତି, ଦିଲ୍ଲୀ କଂଗ୍ରେସର ବିଦେଶୀବସ୍ତ୍ରବର୍ଜନ କମିଟିର ସଭାପତିତ୍ୱ କରିବାକୁ ତାଙ୍କ ପାଖରେ ଡାକରା ଆସି ପହଞ୍ଚିଲା । ବ୍ରିଟିଶ ବହିପତ୍ର ଓ ଡାକ୍ତରି ଯନ୍ତ୍ରପାତି ବର୍ଜନ କରିବାକୁ ସେ ଇଚ୍ଛୁକ ନ ଥିଲେ । କେବଳ ବ୍ରିଟିଶ୍ ବସ୍ତ୍ରବର୍ଜନ ହେଉ ବୋଲି ମଧ୍ୟ ତାଙ୍କର ମତ ନ ଥିଲା । ଯେ କୌଣସି ବିଦେଶୀରାଷ୍ଟ୍ରରୁ ଆସୁଥିବା ବସ୍ତ୍ର ବଏକଟ୍ କରିବାକୁ ସେ ଇଚ୍ଛୁଥିଲେ ଓ ତତ୍‌ପରିବର୍ତ୍ତେ ଭାରତୀୟ ମିଲ୍‌ଲୁଗା ପ୍ରଚଳନ ନ ହୋଇ ଖଦିର ପ୍ରଚଳନ ହେଉ ବୋଲି ତାଙ୍କର ମତ ଥିଲା । ସେ ମନେ କରୁଥିଲେ, ୧୯୩୦ର ସଂଗ୍ରାମ ପାଇଁ ସର୍ବପ୍ରଧାନ ଅସ୍ତ୍ର ହେବ, ଖଦିର ଏକାନ୍ତ ବ୍ୟବହାର । ଭାରତରେ ସମସ୍ତେ ଖଦି ବ୍ୟତୀତ ଆଉ କିଛି ପିନ୍ଧିବେ ନାହିଁ । ୧୯୩୦ର ସଂଗ୍ରାମକୁ ହାତକଟା ସୂତାର ପୋଷାକ ପିନ୍ଧି ଭାରତୀୟମାନେ ଯାତ୍ରା କରିବେ ।

ଦିଲ୍ଲୀରେ ଯେଉଁ କେତେଦିନ ରହିବାକୁ ପଡ଼ିଲା ତା'ର ଭିତରେ ଗାନ୍ଧୀ ଗୋଟିଏ ଭୃ ଭୋଜିରେ ଯୋଗ ଦେଇଥିଲେ । ଏଇଥିରୁ ନାନାପ୍ରକାର

ଗୁଜବ ଉଠିଲା । ଏ ଭୋଜି ଦେଇଥିଲେ ଲେଜିସଲେଟିଭ ଆସେମ୍ବ୍ଲିର ବାଚସ୍ପତି ପଟେଲ । ନିମନ୍ତ୍ରିତ ଅତିଥିଙ୍କ ଭିତରେ ଥିଲେ ଗାନ୍ଧୀ, ଲର୍ଡ଼ ଆର୍‌ଉଇନ୍, ଜିନା, ମୋତିଲାଲ ନେହେରୁ, ପଣ୍ଡିତ ମାଲବ୍ୟ, ବିକାନିରର ମହାରାଜା ଓ କାଶ୍ମୀରର ମହାରାଜା । ୧୯୩୦ର ସଂଘର୍ଷ ଏଡ଼ିବା ସକାଶେ ଇଂରେଜ ଓ ଭାରତୀୟଙ୍କ ଭିତରେ କଥାବାର୍ତ୍ତା ଆରମ୍ଭ କରାଇବାକୁ ଏ ଗୃହ-ଭୋଜିର ଆୟୋଜନ ହୋଇଥିଲା ବୋଲି ଖବରକାଗଜବାଲା ଓ ରାଜନୀତିକଭାବାପନ୍ନ ଲୋକେ ଅନୁମାନ କଲେ, କରିବା ସ୍ୱାଭାବିକ । ଏ ବିଷୟରେ କଳ୍ପନା ଜଳ୍ପନା ଏତେ ମାତିଗଲା ଯେ, ୟଙ୍ଗ୍ ଇଣ୍ଡିଆର ଗୋଟିଏ ଅନୁପମ ଅନୁଚ୍ଛେଦରେ ଉଲ୍ଲେଖ କରିବାଦ୍ୱାରା ଗାନ୍ଧୀ ଏ ଭୋଜି-ସଭାକୁ ସମ୍ମାନିତ କରିଥିଲେ । ଗାନ୍ଧୀ ସ୍ୱୀକାର କରିଥିଲେ ଯେ, ସ୍ୱାଧୀନତା ଆନ୍ଦୋଳନର ପକ୍ଷଭୁକ୍ତ ପଟେଲ, ହୁଏତ 'ଭାରତ ଓ ଇଂରେଜଙ୍କ ମଧ୍ୟରେ ଉପୁଜିଥିବା ଅଚଳ ଅବସ୍ଥା ଭାଂଗି କଥାବାର୍ତ୍ତା ଚଳାଇବା ଉଦ୍ଦେଶ୍ୟରେ ଏ ଗୃହ ଭୋଜିର ଆୟୋଜନ କରିଥିଲେ । କିନ୍ତୁ ବ୍ୟକ୍ତିଗତ ଭାବରେ ଆୟୋଜିତ ଗୋଟିଏ ମାମୁଲି ଗୃହ ଭୋଜିରେ ଏ ଦିଗରେ ବିଶେଷ କିଛି ହେବା ସମ୍ଭବ ନୁହେଁ । ମୋ ବିଚାରରେ, ଉଭୟ ପକ୍ଷ ଏ ବିଷୟରେ ମୁକାବିଲା କରିବାକୁ ପ୍ରସ୍ତୁତ ନ ହେବା ପର୍ଯ୍ୟନ୍ତ, ସମାଧାନ ଦିଗରେ କୌଣସି ଅଗ୍ରଗତି, ଏ ଭଳି ଘରୋଇ ମିଳନ କାହିଁକି, ଆନୁଷ୍ଠାନିକ ମିଳନରେ ବି ହୋଇପାରିବ ନାହିଁ । ଆମେ ତ ଜାଣେ, ଆମ ପକ୍ଷ ଚୂଡ଼ାନ୍ତ ମୁକାବିଲା ସକାଶେ ଏ ପର୍ଯ୍ୟନ୍ତ ପ୍ରସ୍ତୁତ ନୁହେଁ । ନିତାନ୍ତ ବାଧ୍ୟ ନ ହେଲେ ଭାରତର ଆକାଂକ୍ଷା ପୂରଣ କରିବା ଦିଗରେ ଯେ ଇଂଲଣ୍ଡ ଅଗ୍ରସର ହେବ ନାହିଁ ଏ କଥା ସୁନିଶ୍ଚିତ । ଭାରତର ହିତ କରିବେ ବୋଲି ଇଂରେଜମାନେ ଏ ଦେଶରେ ଶାସନ କରୁ ନାହାନ୍ତି । ଏହା ତାଙ୍କର ଏକାନ୍ତ ସ୍ୱାର୍ଥସାଧକ ବ୍ୟବସାୟ, ଦିନ ପରେ ଦିନ ଏକନିଷ୍ଠ ବିଚାରବୁଦ୍ଧିର ପ୍ରୟୋଗରେ ସେ ଏହା ନିର୍ମମ ଭାବେ ଚଳାଇଛନ୍ତି । ବେଳେ ବେଳେ ନିଜ କାର୍ଯ୍ୟ ଉପରେ ଜନହିତୈଷଣା ଓ ବଦାନ୍ୟତାର ଯେଉଁ ଲେପ ବୋଳୁଛନ୍ତି ତଦ୍ଦ୍ୱାରା ତାଙ୍କ ପୀଡ଼ନର ଯନ୍ତ୍ରଣା ବହୁ ସମୟ ଧରି ରହିବା ସମ୍ଭବ ହେଉଛି । ମଝିରେ ମଝିରେ ଏଭଳି ଯେଉଁ ବନ୍ଧୁମିଳନ ହେଉଛି, ଏଥିରୁ ଏତିକିମାତ୍ର ଜଣା ପଡ଼ୁଛି ଯେ, ଉଭୟ ପକ୍ଷ ଅସଲ ବୁଝାପଡ଼ା ପାଇଁ ପ୍ରସ୍ତୁତ ହେଲେ, ଉଭୟଙ୍କୁ ଏକାଠି କରିବା କଷ୍ଟ ହେବ ନାହିଁ । ପାଠକ-

ମାନେ ଆଶ୍ୱସ୍ତ ହୁଅନ୍ତୁ ଯେ ଏ ସବୁ ଭୋକ ପଛରେ କୌଣସି ରାଜନୀତିକ ତାତ୍ପର୍ଯ୍ୟ ନାହିଁ । ଏହା ବାଚସ୍ପତି ପଟେଲ୍‌ଙ୍କର ପ୍ରଶଂସନୀୟ ଖିଆଲ୍‌ର ଗୋଟିଏ ଦୃଷ୍ଟାନ୍ତ ମାତ୍ର ।'

୧୯୨୯ର ପ୍ରଥମ ସପ୍ତମାସ ଗାନ୍ଧୀ କଲିକତାରେ ବିଦେଶୀ ଲୁଗାପଟା କୁଡ଼ରେ ନିଆଁ ଲଗାଉଥାନ୍ତି ଓ ବହୁଦିନରୁ ମଙ୍ଗୁବ୍ ଥିବା ବର୍ମା ଗସ୍ତରେ ଯାଇ ସେଠାର ବିଭିନ୍ନ ସ୍ଥାନରେ ବକ୍ତୃତା ଦେଉଥାନ୍ତି (ଏବେ ଆଉ ବର୍ମା ଭାରତର ଅନ୍ତର୍ଭୁକ୍ତ ନୁହେଁ) । ଏଇ ସମୟ ଭିତରେ, ଆର୍‌ଉଇନ୍‌ଙ୍କ ଜୀବନୀ-ଲେଖକ ଲେଖିଛନ୍ତି, ଆର୍‌ଉଇନ୍ 'ରାଜନୀତିକ ସନ୍ତ୍ରାସବାଦ ଓ ଶ୍ରମିକ ବିକ୍ଷୋଭ ଦବାଇବା ନିମନ୍ତେ ଶାସନଗତ ନୂତନ ବ୍ୟବସ୍ଥାର ଉଦ୍‌ଭାବନରେ ବ୍ୟସ୍ତ ଥାନ୍ତି' । ଦୁଃଖର ବିଷୟ, ଆର୍‌ଉଇନ୍ ବୁଝିପାରି ନ ଥିଲେ ଯେ, ଶାସନଗତ ବ୍ୟବସ୍ଥାର ପ୍ରଣୟନ ବା ସଂସ୍କାର ଭାରତର ସମସ୍ୟା ସମାଧାନ କରିବାର ଉପଯୋଗୀ ନ ଥିଲା । ରାଜନୀତିକ ବିଚକ୍ଷଣତାଦ୍ୱାରା ଏହା ହୋଇ ପାରିଥାନ୍ତା ।

ଏପ୍ରିଲ୍ ୮ ତାରିଖ ଦିନ, ୧୯୨୮ ଡିସେମ୍ବରରେ ଲାହୋରଠାରେ ଆସିଷ୍ଟାଣ୍ଟ ପୁଲିସ୍ ସୁପରିଂଟେଣ୍ଡେଣ୍ଟ ସଣ୍ଡର୍ସ୍‌ଙ୍କୁ ମାରି ଗାଏବ୍ ହୋଇଥିବା ଭଗତ୍ ସିଂହ ହଠାତ୍ ନୂଆଦିଲ୍ଲୀର ଲେଜିସ୍‌ଲେଟିଭ୍ ଆସେମ୍ବ୍ଲି ଭବନରେ ପଶିଗଲା । ସେତେବେଳେ ଆସେମ୍ବ୍‌ଲି, ତାହାର ଇଂରେଜ ଓ ଭାରତୀୟ ସଦସ୍ୟଙ୍କଦ୍ୱାରା ଭରପୂର ହୋଇଥାଏ । ଭଗତ୍ ସିଂହ ମେମ୍ବରଙ୍କ ମଝିକୁ ଦୁଇଟା ବୋମା ଫିଙ୍ଗି ଦେଲା ଏବଂ ଗୋଟାଏ ସ୍ୱୟଂକ୍ରିୟ ପିସ୍ତଲରୁ ଗୁଳି ଫୁଟାଇବାରେ ଲାଗିଲା । ବୋମା ଦୁଇଟା ତୋ'ଜନ ଫାଟିଲା କିନ୍ତୁ ଭାଗ୍ୟକୁ, ଗ୍ରେଟ ଗ୍ରେଟ ତୀକ୍ଷ୍ଣ ଟୁକୁଡ଼ାରେ ବିଭକ୍ତ ନ ହୋଇ, କେତେଟା ବଡ଼ ବଡ଼ ଖଣ୍ଡ ହୋଇ ବେଶି ବାଟ ଛିଟିକି ନ ଯାଇ ପଡ଼ିଲା ; ତେଣୁ ଜଣେ ମାତ୍ର ସଦସ୍ୟ ଗୁରୁତର ଆଘାତ ପାଇଥିଲେ । ଏତିକିବେଳେ ସାର୍ ଜନ୍ ସାଇମନ୍ ଆସେମ୍ବ୍‌ଲିର ଦର୍ଶକ ଗ୍ୟାଲେରୀରେ ଥିବାରୁ, ଏ ଘଟଣା ସ୍ୱଚକ୍ଷୁରେ ଦେଖି-ଥିଲେ । ଭାରତ ବିଷୟରେ ସର୍ବଶେଷ ଗୁରୁତ୍ୱପୂର୍ଣ୍ଣ ଧାରଣା ସେ ଏଇଥିରୁ ପାଇଥିବେ ; ସେଇ ମାସରେ କମିଶନ୍ ଭାରତରୁ ବିଦାୟ ନେଲେ ।

୧୯୨୯ ମେ ମାସରେ, ବ୍ରିଟେନ୍‌ରେ ସାଧାରଣ ନିର୍ବାଚନ ହେଲା ; କମନ୍‌ସ୍ ସଭାରେ ଶ୍ରମିକ ଦଳ ପୂର୍ଣ୍ଣ ସଂଖ୍ୟାଗରିଷ୍ଠତା ପାଇ ନ ଥିଲେ ହେଁ, ଏକକ-ସଂଖ୍ୟା ଗରିଷ୍ଠ ଦଳ ହୋଇଥିବାରୁ ସରକାର ଗଠନ କଲେ, ଏବଂ

ରାମ୍‌ସେ ମ୍ୟାକ୍‌ଡୋନାଲ୍‌ଡ୍ ପ୍ରଧାନ ମନ୍ତ୍ରୀ ହେଲେ । ନୂଆ ସରକାର, ବିଶେଷ କରି ନୂଆ ଭାରତସଚିବ ମିଷ୍ଟର ଉଏଜ୍‌ଉଡ଼୍ ବେନ୍‌ଙ୍କ ସହିତ ଭାରତ ବିଷୟରେ ଆଲୋଚନା କରିବାକୁ ଲର୍ଡ୍ ଆର୍‌ଉଇନ୍ ଜୁନ୍ ମାସରେ ବିଲାତ ଅଭିମୁଖେ ଜଳଯାତ୍ରା କଲେ । ଗାନ୍ଧୀ ତ କହୁଥିଲେ, 'ତୁମେ ତ ଜାଣ, ମୋର ଗୋଟିଏ ବିଶେଷତ୍ୱ ଯେ ମୁଁ ପ୍ରତ୍ୟେକ କଥାର ଭଲ ଦିଗଟା ଦେଖିବାକୁ ସୁଖ ପାଏ, ମନ୍ଦ ଦିଗଟା ଦେଖିବାକୁ ଚାହେଁନାହିଁ ।' ତଦନୁସାରେ ସେ, ବିଲାତ ସରକାର ଶ୍ରମିକ ଦଳ ହାତରେ ପଡ଼ିବାରେ, ଆଶା କଲେ ଯେ, ବ୍ରିଟିଶ୍ ସରକାରଙ୍କ ଭାରତନୀତି ବଦଳିବ, ଏବଂ ୧୯୩୦ରେ ଯେଉଁ ସଂଘର୍ଷ ହେବାର କଥା ତାହା ଏଡ଼ା ହୋଇଯିବ ।

ସୁଫଳର ଆଶା ରଖିଥିଲେ ହେଁ, ସେ ଅତି ଆଶାୟୀ ହୋଇ ମେଘକୁ ଉଠି ଯାଇ ନ ଥିଲେ ଭାରତର ମାଟିରେ ନିଜର ନଗ୍ନ ପାଦ ରଖି ରହୁଥାନ୍ତି । ସଂତ୍ରାସବାଦୀଙ୍କ ହିଂସାକାଣ୍ଡକୁ ନିରଙ୍କୁଶ ଭାବେ ନିନ୍ଦା କରି ସେ କହୁଥିଲେ, 'ଭାରତର ଜାତୀୟ ଦାବୀ ସ୍ୱଚ୍ଛମନରେ ଓ ଯଥାସମୟରେ ପୂରଣ କରି ସରକାର ଏ ସଂତ୍ରାସବାଦୀଙ୍କ କାଣ୍ଡ ବନ୍ଦ କରିପାରନ୍ତେ । କିନ୍ତୁ ଏଭଳି ଭାବିବା ଦୁରାଶା ମାତ୍ର । ଏଭଳି କରିବାକୁ ହେଲେ ସରକାରର ହୃଦୟପରିବର୍ତ୍ତନ ଦରକାର, ଖାଲି ନୀତି ପରିବର୍ତ୍ତନରେ ଏ ମନୋଭାବ ଆସିବ ନାହିଁ । ଦିଗବଳୟରେ ଯେଉଁ ଶକୁନ ଦେଖାଯାଉଛି ସେଥିରୁ ବିଶ୍ୱାସ କରି ହେଉନାହିଁ ଯେ, ନିକଟ ଭବିଷ୍ୟତରେ ବ୍ରିଟିଶ୍ ସରକାରର ହୃଦୟ ପରିବର୍ତ୍ତନ ହେବ ।'

ଗାନ୍ଧୀଙ୍କର ଆଶଂକା ଥାଏ ଯେ, ଭାରତୀୟଙ୍କ ସଙ୍ଗେ ବ୍ରିଟିଶଙ୍କର ଗୋଟାଏ ରକ୍ତାକ୍ତ ସଂଘର୍ଷ ହେବ । 'ୟଙ୍ଗ୍ ଇଣ୍ଡିଆ'ର ୧୯୨୯, ମେ ୯ ତାରିଖ ସଂଖ୍ୟାରେ ସେ ଲେଖିଥିଲେ, 'ଭାରତ ଯଦି ହିଂସାମୂଳକ ସଂଘର୍ଷରେ ସ୍ୱାଧୀନତା ପାଏ, ତେବେ ତାହା ମୋ ବିଚାରରେ ପ୍ରକୃତ ସ୍ୱାଧୀନତା ହେବ ନାହିଁ ଏବଂ ସେଭଳି ସ୍ୱାଧୀନତା ପାଇଥିବା ଭାରତ ମୋ ଗର୍ବର ପାତ୍ର ହେବ ନାହିଁ । ଭବିଷ୍ୟତକୁ ଦେଖିଲା ପରି ସେ ଭାରତର ଆଦର୍ଶକୁ ରୂପ ଦେଇ କହୁଥିଲେ, ଅହିଂସ ଉପାୟରେ ସ୍ୱାଧୀନତା ଆସିବ, 'ଭଦ୍ରଲୋକଙ୍କ ଭିତରେ ବୁଝାମଣା ହେଲାପରି ଗ୍ରେଟ ବ୍ରିଟେନ୍ ସଙ୍ଗେ ବୁଝାମଣା ହୋଇ ଭାରତ ଏହା ପାଇବ' । ସେ ପୁଣି କହୁଥିଲେ, 'ସାମ୍ରାଜ୍ୟବାଦୀର ଔଦ୍ଧତ୍ୟ ଧରି ପୃଥିବୀରେ ସର୍ବୋଚ୍ଚ କ୍ଷମତା ହାସଲ କରିବା ଉଦ୍ଦେଶ୍ୟରେ ବ୍ରିଟେନ୍ ଏଭଳି

ବୃଥାମଣା କରିବ ନାହିଁ ; ଯଦି କରିବ, ବର୍ତ୍ତମାନବିକଟାର ମହତ୍ ଉଦ୍ଦେଶ୍ୟ ପୂରଣ କରିବା ପାଇଁ ବିମାତଭାବେ ଏଥିପାଇଁ ଅଗ୍ରସର ହେବ ।'

ସେ ବେଳ ପାଖରେ ଆଖରେ ନ ଥାଏ ।

ବ୍ରିଟିଶ ସରକାର ସଙ୍ଗେ ବଳ କଷାକଷିର ଭୟାବହ ସମୟ ମାତ୍ର ମାସ କେତୋଟା ପରେ ଆସିବାକୁ ଥିଲେ ହେଁ, ସାଧାରଣତଃ ଯେଉଁ ସବୁ ଛୋଟ ଛୋଟ କଥାରେ ଗାନ୍ଧୀଙ୍କର ମନ ପ୍ରାୟ ଆବଦ୍ଧ ଥାଏ, ସେ ସେଇ ସବୁ ବିଷୟର ଆଲୋଚନାରେ ଲାଗିଥାନ୍ତି । 'ଜାତୀୟ ଦୋଷ' ବୋଲି ଶିରୋନାମା ଦେଇ ଗୋଟିଏ ସଂପାଦକୀୟ ପ୍ରବନ୍ଧରେ ସେ ପରିଷ୍କାର ପରିଚ୍ଛନ୍ନତା ବିଷୟରେ ଆଲୋଚନାକୁ ଫେରିଥାନ୍ତି । ମଫସଲ ଅଞ୍ଚଳରେ ମଟରରେ ଯାଉ ଯାଉ ସେ କୃଷ୍ଣାନଦୀ ପାର ହେଲେ । ସେଇ ବିଷୟରେ ସେ ଲେଖିଥିଲେ, 'ନଦୀ କୂଳରୁ ଅଳ୍ପ କେତେ ଗଜ ଦୂରରେ ଶହ ଶହ ପୁରୁଷ ସ୍ତ୍ରୀ ଝାଡ଼ା ଫେରି ବସିଥାନ୍ତି । ଆମ ଗାଡ଼ି ତାଙ୍କରି ମଝିରେ ଗଲା ବୋଲି କହିଲେ ଅତ୍ୟୁକ୍ତି ହେବ ନାହିଁ । ଏଇ ନଦୀରେ ଲୋକେ ସ୍ନାନ କରନ୍ତି, ପୁଣି ପାଣି ପିଅନ୍ତି । ଅଥଚ ଏଇଠାରେ ଲୋକେ ଏଇପରି ସଦାଚାରର ନିୟମ ଭଙ୍ଗ କରୁଥାନ୍ତି, ସ୍ୱାସ୍ଥ୍ୟରକ୍ଷାର ପ୍ରାଥମିକ ନିୟମ ଲଂଘନ କରି ସମାଜଠାରେ ଅପରାଧୀ ହେଉଥାନ୍ତି । ଏହା ବାଦ୍ ପୁଣି, ମୂଲ୍ୟବାନ୍ ସାରର ଅପବ୍ୟବହାରଦ୍ୱାରା ଆର୍ଥିକ କ୍ଷତି । ଏଇ ମଳତକ ଯଦି ଶସ୍ୟକ୍ଷେତ୍ରରେ ତ୍ୟାଗ କରୁଥାନ୍ତେ ଓ ତାହା ମୃତ୍ତିକାରେ ମିଶିଯାଉଥାନ୍ତା ତା'ହେଲେ କେତେ ଲାଭ ନ ହୁଅନ୍ତା ?······ମ୍ୟୁନିସିପାଲିଟିମାନେ ଏ ଦିଗରେ ଧ୍ୟାନ ଦେବା ଉଚିତ ।'

ଗସ୍ତବେଳେ ତାଙ୍କର ଓ ତାଙ୍କ ସହଯାତ୍ରୀମାନଙ୍କ ଖର୍ଚ୍ଚ ବିଷୟରେ ମଧ୍ୟ ସେ ମୁଣ୍ଡ ଘୂରାଉଥାନ୍ତି । ସେ ହିସାବ ମାଗି ଦେଖିଲେ ଯେ 'ଏ ଖର୍ଚ୍ଚ, ଗସ୍ତବେଳେ ଆଦାୟ ହେଉଥିବା ଚାନ୍ଦାର ଶତକଡ଼ା ୫ ଭାଗରୁ ବେଶି ହେଉନାହିଁ·····ଖର୍ଚ୍ଚ ଅଯଥା ଅଧିକ ହେଉନାହିଁ ବୋଲି ଏହା କହିବା ସଙ୍ଗେ ସଙ୍ଗେ, ମୋତେ ମାନିବାକୁ ହେଉଛି ଯେ, ବହୁତ ଚାନ୍ଦା ଆଦାୟ ହେଉଛି ବୋଲି ଗୁଡ଼ାଏ ମଟରଭଡ଼ା ଦେଇ ଠା'କୁ ଠା' ଉଡ଼ିବା ଆମ ପକ୍ଷରେ ଉଚିତ ନୁହେଁ ।' ( ଗାନ୍ଧୀ ଜୀବନରେ କେବେ ଉଡ଼ାଜାହାଜରେ ବସି ନ ଥିଲେ । ଏଠାରେ 'ଉଡ଼ିବା' ଅର୍ଥ ଦ୍ରୁତଗାମୀ ମଟରରେ ଯିବା ।)

ସରକାର-ବିରୋଧୀ ଲେଖା ପାଇଁ ସଂପାଦକମାନଙ୍କ ଅଫିସ୍ ଓ ଘର ଖାନତଲାସ ହେଉଥାଏ । ଏହି ଖାନତଲାସିର ସମ୍ବାଦ ବିଭିନ୍ନ ସ୍ଥାନରୁ

ଗାନ୍ଧୀ ପାଉଥାନ୍ତି । ତା'ଉପରେ ସେ ଟିପ୍ପଣୀ ଲେଖିଲେ, 'ପୁଲିସବାଲା ଯେ ଏତେ ଭଦ୍ରବ୍ୟବହାର ଦେଖାଇଛନ୍ତି ସେଥିପାଇଁ ଆମେ ତାଙ୍କୁ ଧନ୍ୟବାଦ ଦେବାର କଥା ।' ତା'ପରେ ସେ ଲେଖିଲେ, 'ଏଭଳି ଖାନତଲାସିର ଅସଲ ଉଦ୍ଦେଶ୍ୟ, 'ସମଗ୍ର ଜାତିଟାକୁ ଖାତଚସ୍ତ କରିବା ଓ ଅବମାନିତ କରିବା । ଆଗରୁ ବୁଟି ବଚ୍ଚା ଏଭଳି ଲୋକଙ୍କୁ ଅବମାନିତ କରିବା ଶାସକଜାତିର ଗୋଟିଏ ସୁ-ପରିକଳ୍ପିତ ଉପାୟ । ସେମାନେ ସଂଖ୍ୟାରେ ଲକ୍ଷେରୁ କମ୍ ହୋଇ ସୁଦ୍ଧା, ଭାରତର ୩୨ କୋଟି ଲୋକଙ୍କୁ କାବୁ କରି ରଖିବେ—ଏଥି ସକାଶ ଏଇ ଉପାୟ ଅବଲମ୍ବନ କରିବାକୁ ସେମାନେ ପ୍ରୟୋଜନ ମନେ କରିଛନ୍ତି । ଆମ ଦେଶର ଏ ଦୁର୍ଗତି ଦୂର କରିବା ପାଇଁ ଆମକୁ ଯଥାସାଧ୍ୟ ଚେଷ୍ଟା କରିବାକୁ ହେବ । ପ୍ରତିପକ୍ଷ ଆମକୁ ସମ୍ମାନ କରିବାକୁ ବାଧ୍ୟ ହେବ, ଏହାହିଁ ସ୍ୱରାଜ୍ୟର ପ୍ରଥମ ସୋପାନ ।'

ଗାନ୍ଧୀଙ୍କର ସବୁ କଥାରେ ଏଇ ଏକ ଘୋଷା : ମର୍ଯ୍ୟାଦା, ଶୃଙ୍ଖଳା ଓ ସଂଯମଦ୍ୱାରା ଭାରତୀୟଙ୍କର ଆତ୍ମସମ୍ମାନ ବଢ଼ିବ, ଫଳରେ ଅନ୍ୟଙ୍କଠାରୁ ମାନନା ମିଳିବ, ଓ ଶେଷରେ ଦେଶ ସ୍ୱାଧୀନତା ପାଇବ ।

୧୯୩୦ର ଜାନୁଆରୀ ପନ୍ଦର ତାରିଖ ଦୂରରେ ନ ଥାଏ ।

ଆର୍‌ଉଇନ୍ ବିଲାତରେ କେତେମାସ କଟାଇ ଅକ୍ଟୋବର୍ ମାସରେ ଭାରତକୁ ଫେରିଲେ । ତା'ଙ୍କ ଭିତରେ ସେ ଶ୍ରମିକ ସରକାରର ସଚିବମାନଙ୍କ ସଙ୍ଗେ, ତାଙ୍କ ପୂର୍ବବର୍ତ୍ତୀ ଭାଇସ୍‌ରୟ ଲର୍ଡ୍ ରିଡ଼ିଂ, ଲଏଡ୍ ଜର୍ଜ, ଚର୍ଚ୍ଚିଲ୍, ଷ୍ଟାନ୍‌ଲି ବାଲ୍‌ଡୁଇନ୍, ସାର୍ ଜନ୍ ସାଇମନ୍ ପ୍ରମୁଖ କେତେକ ବ୍ରିଟିଶ୍ ରାଜନୀତିକଙ୍କ ସଙ୍ଗେ ଭାରତ ବିଷୟରେ ଆଲୋଚନା କରିଥାନ୍ତି । ଭାଇସ୍‌ରୟ ମନେ କରୁଥାନ୍ତି, ଭାରତୀୟ ରାଜନୀତିକ ପରିସ୍ଥିତି 'ଘୋର ଆତଙ୍କପୂର୍ଣ୍ଣ ଅବସ୍ଥାର ଦାଡ଼'ରେ ଯାଇ ପହଞ୍ଚିଲାଣି । ୧୯୩୦ର ଯୁଦ୍ଧ ଡାକରା ପାଇଁ ସବୁ ଠିକ୍‌ଠାକ୍ ହୋଇ ରହିଥାଏ ।

ଅବସ୍ଥାକୁ ସମ୍ଭାଳିବା ସକାଶ ୧୯୨୯, ଅକ୍ଟୋବରର ଶେଷ ତାରିଖରେ ଆର୍‌ଉଇନ୍ ଏକ 'ଗୁରୁତ୍ୱପୂର୍ଣ୍ଣ ବକ୍ତୃତା' ଘୋଷଣା କଲେ । ଏଥିରେ ଗୋଟିଏ ଗୋଲଟେବୁଲ ବୈଠକର ପ୍ରସ୍ତାବ ଥାଏ । ଏହି ବୈଠକରେ ବ୍ରିଟିଶ୍ ସରକାରଙ୍କ ପ୍ରତିନିଧିଗଣ, ବ୍ରିଟିଶ୍‌ଶାସିତ ଭାରତର ନେତୃସ୍ଥାନୀୟ ବ୍ୟକ୍ତିମାନେ ଓ ଦେଶୀୟ ରାଜ୍ୟର ରାଜାମାନଙ୍କ ପ୍ରତିନିଧିମାନେ ଏକାଠି ବସିବାର ପରିକଳ୍ପନା ଥାଏ । (ଭାରତୀୟ ପ୍ରତିନିଧିମାନଙ୍କ ସହିତ

ବ୍ରିଟିଶ୍ ପ୍ରତିନିଧିମାନଙ୍କର ଏହିପରି ଗୋଟିଏ ଗୋଲଟେବୁଲ୍ ବୈଠକ ବସାଇବାକୁ ସାଇମନ୍ କମିଶନ୍ ନିଯୁକ୍ତ ହେବା ପୂର୍ବରୁ ପ୍ରସ୍ତାବ ହୋଇଥିଲା, କିନ୍ତୁ ଆର୍‌ଉଇନ୍ ଏ ପ୍ରସ୍ତାବକୁ ଅବଜ୍ଞା କରିଥିଲେ) । ବର୍ତ୍ତମାନର ଏହି ବିବୃତିରେ ପରିଷ୍କାର ଘୋଷଣା କରାଗଲା ଯେ, 'ଭାରତର ପ୍ରଶାସନିକ ଅଗ୍ରଗତି ଔପନିବେଶିକ ସ୍ୱାୟତ୍ତଶାସନରେ ପର୍ଯ୍ୟବସିତ ହେବ ହିଁ ହେବ ।'

ସାଇମନ୍ କମିଶନ୍ ତାଙ୍କ ସୁପାରିସ୍ ପେଶ୍ କରିବା ପୂର୍ବରୁ ଭାରତର ଭବିଷ୍ୟତ୍ ଶାସନସଂସ୍କାରର ରୂପରେଖ ପ୍ରକାଶ କରିଦେବାଦ୍ୱାରା ଆର୍‌ଉଇନ୍ ସୂଚାଇ ଦେଲେ ଯେ, କମିଶନ୍ ଯେଉଁ କଠିନ ପରିଶ୍ରମ କରିଥିଲେ ତାହା ବୃଥା ଓ ଏଇ ବିବୃତିରେ କମିଶନ୍‌ର ଆୟୁ ଶେଷ ହେଲା । ଷଣ୍ଢକୁ ନାଲି କନା ପରି, ସାଇମନ୍ କମିଶନ୍ ଭାରତୀୟଙ୍କୁ ଉତ୍ତେଜିତ କରିଥିଲା, ତେଣୁ ଭାଇସ୍‌ରୟଙ୍କ ବିବୃତିର ଏଇ ସୂଚନାଟି ଅନ୍ତତଃ ଭାରତୀୟମାନଙ୍କୁ ସୁଖ ଲାଗିବ ବୋଲି ଆଶା କରାଯାଇଥିଲା ।

ଏହାର ଅଳ୍ପଦିନ ପରେ, ଦିଲ୍ଲୀଠାରେ ଡକ୍ଟର୍ ଆନସାରୀ, ମିସେସ୍ ଆନିବେସାନ୍ତ, ମୋତିଲାଲ ନେହେରୁ, ସାର୍ ତେଜ୍ ବାହାଦୁର୍ ସାପ୍ରୁ, ପଣ୍ଡିତ ମାଲବୀୟ, ଶ୍ରୀନିବାସ ଶାସ୍ତ୍ରୀ ଓ ଅନ୍ୟମାନଙ୍କ ସଙ୍ଗେ ଗାନ୍ଧୀ ଦେଖା କରି, 'ନେତାମାନଙ୍କ ଇସ୍ତାହାର' ବୋଲି ଗୋଟିଏ ବିବୃତି ପ୍ରକାଶ କରାଇଲେ । ଭାଇସ୍‌ରୟଙ୍କ ଘୋଷଣା ଉପରେ ଦସ୍ତଖତକାରୀ ନେତାମାନେ ଅନୁକୂଳ ମତ ଦେଇଥିଲେ କିନ୍ତୁ କହିଥିଲେ ଯେ, 'ଶାନ୍ତିପୂର୍ଣ୍ଣ ପରିବେଶ ସୃଷ୍ଟି କରିବା ସକାଶେ ରାଜନୈତିକ ବନ୍ଦୀମାନଙ୍କୁ ମୁକ୍ତ କରାଯାଉ, ଏବଂ ଆସନ୍ନ ଗୋଲଟେବୁଲ୍ ବୈଠକକୁ ଭାରତୀୟ ଜାତୀୟ କଂଗ୍ରେସ ଯେପରି ସବୁଠାରୁ ଅଧିକ ପ୍ରତିନିଧି ପଠାଇ ପାରିବ, ତାହାର ବ୍ୟବସ୍ଥା ହେଉ । ନେତାମାନେ ଶେଷରେ ଭାଇସ୍‌ରୟଙ୍କ ଘୋଷଣା ଉପରେ ଟିକିଏ ଟିପ୍ପଣୀ ଯୋଡ଼ି ଦେଇଥିଲେ : ଭାଇସ୍‌ରୟଙ୍କ ଘୋଷଣାରୁ ସେମାନଙ୍କର ହୃଦ୍‌ବୋଧ ହୋଇଛି ଯେ, ଭାରତ ଔପନିବେଶିକ ସ୍ୱାଧୀନତା ପାଇବ କି ନାହିଁ, ପାଇଲେ କେବେ ପାଇବ, ଏ କଥା ନିର୍ଣ୍ଣୟ କରିବା ପ୍ରସ୍ତାବିତ ଗୋଲ୍‌ଟେବୁଲ୍‌ର ଉଦ୍ଦେଶ୍ୟ ନୁହେଁ; ଭାରତୀୟ ଔପନିବେଶିକ ଶାସନ ପାଇଁ ସମ୍ବିଧାନ ପ୍ରଣୟନ କରିବା ହିଁ ଗୋଲଟେବୁଲ୍ ବୈଠକର ମୂଳ ଉଦ୍ଦେଶ୍ୟ' ।

ଗାନ୍ଧୀ ଓ ବୟୋବୃଦ୍ଧ ନେତାମାନଙ୍କର ସରକାର ସଙ୍ଗେ ସଦ୍‌ଭାବ ରଖିବାର ମନୋବୃତ୍ତି ଦେଖି ରାଜନୈତିକ ବାୟୁମଣ୍ଡଳରେ ଗୋଟାଏ ଭୀଷଣ

ବିରୋଧର ଝଡ଼ ସୃଷ୍ଟି ହେଲା । ଏଥିରେ ମୁଖ୍ୟ ଅଂଶ ଗ୍ରହଣ କରିଥିଲେ ସୁଭାଷଚନ୍ଦ୍ର ବୋଷ ଓ ୧୯୩୦ କଂଗ୍ରେସ ପାଇଁ ସଭାପତି ନିର୍ବାଚିତ ହୋଇଥିବା ଜବାହାରଲାଲ ନେହେରୁ । ଗାନ୍ଧୀ ଏଥିରେ ଭଡ଼କି ଗଲେ ନାହିଁ ; ତାଙ୍କର ଦୃଢ଼ ବିଶ୍ୱାସ ଥାଏ ଯେ, ବ୍ରିଟିଶଙ୍କ ସଙ୍ଗେ ଶାନ୍ତିପୂର୍ଣ୍ଣ ସମାଧାନ ହେଲେ ଦେଶ ତାକୁ ସ୍ୱାଗତ କରିବ । ଗାନ୍ଧୀ ଓ ତାଙ୍କ ସହକର୍ମୀମାନେ ସରକାରଙ୍କ ଅସଲ ମତଲବ୍ ଜାଣିବା ପାଇଁ ଚେଷ୍ଟା ଚଳାଇ ରଖିଲେ । ଡିସେମ୍ବର ୨୩ ତାରିଖରେ ଏ ବିଷୟରେ ଲର୍ଡ଼ ଆରୱିଇନ୍‌ଙ୍କ ସହିତ ଅଧିକ ଆଲୋଚନା କରିବାକୁ ତାଙ୍କ ସଙ୍ଗେ ବାଇଦା କରା ହୋଇଥାଏ ।

ସେଇଦିନ ସକାଳେ ଆର୍‌ୱିଇନ୍ ଦକ୍ଷିଣଭାରତ ଗସ୍ତରୁ ରେଲ ଯୋଗେ ଫେରୁଥାନ୍ତି । ସକାଳ ୭ଟା ୪୦ ମିନିଟ୍‌ରେ ଭାଇସ୍‌ରୟଙ୍କ ସ୍ପେଶାଲ ଟ୍ରେନ୍‌ର ଧଳା ଡବାଗୁଡ଼ିକ କୁହୁଡ଼ି ଭିତରୁ ବାହାରି ନୂଆ ଦିଲ୍ଲୀ ଷ୍ଟେସନ୍ ଆଡ଼େ ଅଗ୍ରସର ହେଉଥାଏ । ତିନି ମାଇଲ୍ ଦୂରରୁ ଡବଲ୍ ଲାଇନ୍ ପରିବର୍ତ୍ତେ ସିଙ୍ଗଲ୍ ଲାଇନ୍ ନୂଆ ଦିଲ୍ଲୀ ଷ୍ଟେସନ୍‌କୁ ପଡ଼ିଥାଏ । ସ୍ପେଶାଲ୍ ଗାଡ଼ି ଏଇ ସିଙ୍ଗଲ୍ ଲାଇନ୍‌ରେ ଚକ ଦେଉଦେଉ ଟ୍ରେନ୍ ତଳେ ଗୋଟାଏ ବୋମା ଫୁଟିଲା । ଜଣେ ଲୋକ ମାତ୍ର ଆହତ ହେଲା । ବଡ଼ଲାଟଙ୍କ ଏଡିକଂ ତାଙ୍କୁ ଘଟଣାଟା ଜଣାଇବା ଯାଏଁ ବଡ଼ଲାଟ କିଛି ଜାଣି ପାରି ନ ଥିଲେ ।

ଏହାଠାରୁ ଆହୁରି ଭୟାନକ ବୋମା ବିଲାତର ୱେଷ୍ଟମିନିଷ୍ଟରସ୍ଥ ପାର୍ଲିଆମେଣ୍ଟ ଭବନରେ ଲର୍ଡ଼ ଆରୱିଇନ୍‌ଙ୍କ ପାଇଁ ତିଆରି ହୋଇଥାଏ । ଆର୍‌ୱିଇନ୍‌ଙ୍କ ପ୍ରତିଶ୍ରୁତ ଗୋଲଟେବୁଲ୍ ବୈଠକ ଓ ଔପନିବେଶିକ ସ୍ୱାୟତ୍ତ ଶାସନ ବିରୁଦ୍ଧରେ ଲର୍ଡ଼ ରିଡ଼ିଂ ଲର୍ଡ଼ ସଭାରେ ଆକ୍ରମଣ ଆରମ୍ଭ କଲେ, ଏବଂ କମନ୍‌ସ୍ ସଭାରେ ଜାତି ଓ ମାନ୍ଦା ଦଳର ମେମ୍ବରମାନେ ମିଶି ଲର୍ଡ଼ ଆର୍‌ୱିଇନ୍‌ଙ୍କ ଇସ୍ତାହାରର ତୀବ୍ର ନିନ୍ଦାବାଦ କଲେ । ୱେଜ୍‌ଉଡ୍ ବେନ୍ ଓ ଅନ୍ୟ ଶ୍ରମିକ ମେମ୍ବର୍‌ମାନେ ଭାଇସ୍‌ରୟଙ୍କୁ ସମର୍ଥନ କଲେ ହେଁ, କମନ୍‌ସ୍ ସଭାର ବିତର୍କରୁ ସ୍ପଷ୍ଟ ଜଣାପଡ଼ିଲା, ଔପନିବେଶିକ ଶାସନ ବିଷୟରେ କୌଣସି ନିର୍ଦ୍ଦିଷ୍ଟ ପ୍ରତିଶ୍ରୁତି ଦେବା ବିରୁଦ୍ଧରେ ଅଧିକାଂଶ ସଭ୍ୟ ଦୃଢ଼ ମତ ପୋଷଣ କରନ୍ତି ।

ଡିସେମ୍ବର ୨୩ତାରିଖ ଅପରାହ୍ଣରେ ଜିନ୍ନା, ଗାନ୍ଧୀ, ସାପ୍ରୁ, ମୋତିଲାଲ ନେହେରୁ ଓ ବିଠଲଭାଇ ପଟେଲ ଭାଇସ୍‌ରୟଙ୍କ ଅଫିସ୍-ଘରେ ପ୍ରବେଶ କରନ୍ତେ, ଗାନ୍ଧୀ ବୋମା-ଦୁର୍ଘଟଣାରୁ ରକ୍ଷା ପାଇଥିବାରୁ

ଭାଇସ୍‌ରୟଙ୍କୁ ଶୁଭେଚ୍ଛା ଜଣାଇଲେ ଓ ସଙ୍ଗେ ସଙ୍ଗେ ଲମ୍ବା ରସବଳିତା ଦିଆଥିବା ଯେଉଁ ଟର୍ପେଡ଼ୋ ବିଗତ ପାର୍ଲିଆମେଣ୍ଟ୍‌ରେ ଭାଇସ୍‌ରୟଙ୍କ ପାଇଁ ତିଆରି ହୋଇଥିଲା ତାକୁ ଫୁଟେଇବା ଆରମ୍ଭ କଲେ । ସାକ୍ଷାତ୍‌କାର ଅଡ଼େଇ ଘଣ୍ଟା କାଳ ଚାଲିଲା । କଥାବାର୍ତ୍ତାର ବଡ଼ ଭାଗ ଆର୍‌ଉଇନ୍ ଓ ଗାନ୍ଧୀଙ୍କ ମଧ୍ୟରେ ହିଁ ଚାଲିଲା ।

ଗାନ୍ଧୀ ପଚାରିଲେ : ପୂର୍ଣ୍ଣ ଔପନିବେଶିକ ସ୍ୱାୟତ୍ତଶାସନ ସାଙ୍ଗେ ସାଙ୍ଗେ ଦେବାକୁ ସମ୍ବିଧାନ, ପ୍ରସ୍ତାବିତ ଗୋଲଟେବୁଲରେ ଗଢ଼ାହେବ ଏବଂ ସେ ସମ୍ବିଧାନରେ ବ୍ୟବସ୍ଥା ରହିବ ଯେ, ଇଚ୍ଛା କଲେ ଭାରତ ସାମ୍ରାଜ୍ୟରୁ ବାହାରି ଯାଇପାରେ—ଏ ପ୍ରତିଶ୍ରୁତି ମହାମାନ୍ୟ ଭାଇସ୍‌ରୟ ଦେଇ ପାରିବେ କି ?

ପାର୍ଲିମେଣ୍ଟରେ ହୋଇଥିବା ବିତର୍କର ଅନୁରୂପ ଉତ୍ତର ଲର୍ଡ ଆର୍‌ଉଇନ୍ ଦେଲେ । ତାଙ୍କ ଜୀବନୀ-ଲେଖକ ଲେଖିଛନ୍ତି, ସେ କହିଲେ, ଗୋଲଟେବୁଲର ଆଲୋଚନା କି ରୂପ ଧରିବ ତାହା କହି ପାରିବେ ନାହିଁ, କି ଗୋଲ୍‌ଟେବୁଲ କେବଳ ଏତିକି ଆଲୋଚନା କରିବ ବୋଲି ତା'ର କାର୍ଯ୍ୟନିର୍ଘଣ୍ଟ ସୀମିତ କରି ପାରିବ ନାହିଁ ।

ଏହି ସବୁ ଘଟଣା ଡିସେମ୍ବର ଶେଷଭାଗରେ ଲାହୋରଠାରେ ବସିଥିବା କଂଗ୍ରେସର ଐତିହାସିକ ବାର୍ଷିକ ଅଧିବେଶନର ହେଲା ମୁଖବନ୍ଧ । ଅଧିବେଶନର ସଭାପତି ଆସନରେ ଥିଲେ ଜବାହାରଲାଲ । ବିଗତ ନଭେମ୍ବର ମାସରେ ତାଙ୍କୁ ଚାଳିଶ ବର୍ଷ ପୂରିଥାଏ ।

ଠିକ୍ ଯେଉଁ ସେକେଣ୍ଡ୍‌ରେ ୧୯୨୯ ସରିଲା ଓ ୧୯୩୦ ଆରମ୍ଭ ହେଲା ସେଇ ମୁହୂର୍ତ୍ତରେ କଂଗ୍ରେସ ସ୍ୱାଧୀନତାର ପତାକା ଉତ୍ତୋଳନ କଲା ଏବଂ ଅଖଣ୍ଡ ସ୍ୱାଧୀନତା ଓ ବ୍ରିଟିଶ ସାମ୍ରାଜ୍ୟରୁ ବିଚ୍ଛେଦ ଘୋଷଣା କରି ଏକ ପ୍ରସ୍ତାବ ସର୍ବସମ୍ମତିକ୍ରମେ ଗ୍ରହଣ କଲା । ଏ ନାଟକରେ ମଞ୍ଚନିର୍ଦ୍ଦେଶକ ଥାନ୍ତି ମହାତ୍ମା ଗାନ୍ଧୀ । ସେ ଘୋଷଣା କଲେ, 'ସ୍ୱରାଜ ବୋଇଲେ ଏଥର ବୁଝାଇବ ପୂର୍ଣ୍ଣ ସ୍ୱାଧୀନତା' । କଂଗ୍ରେସ ଅଧିବେଶନ କଂଗ୍ରେସ ମେମ୍ବରଙ୍କୁ ଓ କଂଗ୍ରେସ ସମର୍ଥକଙ୍କୁ, ବ୍ୟବସ୍ଥା ସଭା ଛାଡ଼ି ଚାଲି ଆସିବାକୁ ନିର୍ଦ୍ଦେଶ ଦେଲା ଏବଂ ଖଜଣା ବନ୍ଦ ଆନ୍ଦୋଳନ ସମେତ ଆଇନ୍ ଅମାନ୍ୟ ଆନ୍ଦୋଳନ ଚଳାଇବାକୁ ମଞ୍ଜୁର କଲା । ସତ୍ୟାଗ୍ରହ ଠିକ୍ କେଉଁଦିନ ଆରମ୍ଭ ହେବ ତାହା ସ୍ଥିର କରିବାକୁ କଂଗ୍ରେସ ନିଖିଳ ଭାରତ କଂଗ୍ରେସ କମିଟିକୁ ଅଧିକାର ଦେଲା । କିନ୍ତୁ ଗାନ୍ଧୀ ଯଥାର୍ଥ କହିଥିଲେ, 'ମୁଁ ଜାଣେ, ଏ କର୍ତ୍ତବ୍ୟଟା ମୁଖ୍ୟତଃ

ମୋତେ ଭୁଲାଇବାକୁ ପଡ଼ିବ ।' ସମସ୍ତେ ଉପଲବ୍ଧି କରିଥିଲେ ଯେ, ଆଇନ୍ ଅମାନ୍ୟ ଆନ୍ଦୋଳନ ଆରମ୍ଭ ହେବାର ହେଲେ, ତାହାର ମସ୍ତିଷ୍କ, ହୃଦୟ ଓ ପରିଚାଳନ-ହସ୍ତ ଗାନ୍ଧୀଙ୍କୁ ହିଁ ହେବାକୁ ପଡ଼ିବ; ତେଣୁ କେବେ, କେଉଁଠି, କେଉଁ ନିର୍ଦ୍ଦିଷ୍ଟ ଆଇନର ଅମାନ୍ୟ କରାଯିବ ତାହା ସ୍ଥିର କରିବାର ଦାୟିତ୍ୱ ତାଙ୍କର ଉପରେ ଛାଡ଼ି ଦିଆଗଲା ।

---

# ଦ୍ୱିତୀୟ ପରିଚ୍ଛେଦ

## ସମୁଦ୍ରକୂଳରେ ବିଚିତ୍ର ଲୀଳା

ମଣିଷର ଚରିତ୍ର ସଂଶୋଧନ କରିବାକୁ ଗାନ୍ଧୀଙ୍କର ସବୁବେଳେ ପ୍ରୟାସ । ତେଣୁ ଭାରତର ସ୍ୱାଧୀନତା ହାସଲ କରିବାକୁ କେଉଁ ପନ୍ଥା ଧରିବାକୁ ହେବ ତା'ର ଉପରେ ତାଙ୍କର ଏତେ ଚିନ୍ତା । ଯଦି ସ୍ୱାଧୀନତା ପ୍ରାପ୍ତି ପାଇଁ ଅବଲମ୍ବନ କରାଯିବା ପନ୍ଥାଦ୍ୱାରା ମଣିଷର ଚରିତ୍ର ନଷ୍ଟ ହୁଏ, ତେବେ ଲାଭକୁ କ୍ଷତି ବୋଲି ଧରିବ ।

ଗାନ୍ଧୀ ବେଶ୍ ଜାଣିଥିଲେ ଯେ, ଜାତୀୟ ଚରିତ୍ରକୁ ସଂଶୋଧନ କରିବା ବିଳମ୍ବ-ସାଧ୍ୟ କାର୍ଯ୍ୟ, ତେଣୁ ଘଟଣାଚକ୍ରରେ ଠେଲି ନ ହେଲେ, କିମ୍ବା ଏହି ଘଟଣାଚକ୍ରର ତାଡ଼ନାରେ ଉତ୍କ୍ରାନ୍ତ ଲୋକଙ୍କଦ୍ୱାରା ବାଧ୍ୟ ନ ହେଲେ, ସେ ନିଜ କାର୍ଯ୍ୟପନ୍ଥାକୁ ଅଯଥା ତ୍ୱରାନ୍ୱିତ କରୁ ନ ଥିଲେ । ସ୍ୱଇଚ୍ଛାରେ କାର୍ଯ୍ୟ କରିବାକୁ ସୁଯୋଗ ପାଇଥିଲେ ସେ ୧୯୩୦ରେ ପୂର୍ଣ୍ଣ ସ୍ୱାଧୀନତା ଦାବୀ ଉପରେ ଜୋର ଦେଇ ନ ଥାନ୍ତେ । କିନ୍ତୁ ତାଙ୍କ ଚେତାବନୀ ସତ୍ତ୍ୱେ ଏ ବିଷୟରେ ଚୂଡ଼ାନ୍ତ ନିଷ୍ପତ୍ତି ହୋଇ ଯାଇଥାଏ । ପୂର୍ଣ୍ଣ ସ୍ୱାଧୀନତା ପାଇଁ ଆନ୍ଦୋଳନ କରିବାକୁ ହେବ ବୋଲି କଂଗ୍ରେସ ସିଦ୍ଧାନ୍ତ କରି ସାରିଥାନ୍ତି । ନେତାଙ୍କୁ ଆଜ୍ଞାଧୀନ ସୈନିକ ହେବାକୁ ପଡ଼ିଲା ।

ନୂଆ ବର୍ଷ ଆରମ୍ଭ ହେବାର ଅବ୍ୟବହିତ ପୂର୍ବରୁ ପୂର୍ଣ୍ଣ ସ୍ୱାଧୀନତା ଘୋଷଣା କରିବାକୁ ଯେଉଁ ଉତ୍ତେଜନାପୂର୍ଣ୍ଣ ଉତ୍ସବ ହୋଇଥିଲି ତା'ପରେ ସପ୍ତାହ ପରେ ସପ୍ତାହ ଗ୍ଲଲିଗଲା, ଗାନ୍ଧୀ ଆଇନ୍ ଅମାନ୍ୟ ଆନ୍ଦୋଳନ ପାଇଁ ଏପରି ଗୋଟିଏ କାର୍ଯ୍ୟପନ୍ଥା ଖୋଜୁଥାନ୍ତି, ଯହିଁରେ ଲେଶମାତ୍ର ହିଂସାକାଣ୍ଡ ପାଇଁ ଅବସର ନ ମିଳିବ ।

ହିଂସା ପ୍ରତି ଗାନ୍ଧୀଙ୍କ ମନରେ ଗଭୀର ବିରାଗର କାରଣ, ତାଙ୍କ ହିନ୍ଦୁଧର୍ମରେ ଜୈନ ଓ ବୌଦ୍ଧ ମତବାଦ ଓତଃପ୍ରୋତ ଭାବେ ମିଶି ଯାଇ-ଥିଲି । ପୁଣି, ବିଶେଷ କରି ମାନବ ପ୍ରତି ତାଙ୍କର ପ୍ରେମ ଯୋଗୁଁ ଏହି ବିରାଗ ଗଭୀରତର ହୋଇଥିଲି । ପ୍ରତ୍ୟେକ ସଂସ୍କାରକ, ନ୍ୟାୟ ବା ଧର୍ମ ପାଇଁ ଅଭିଯାନକାରୀ, ଏପରିକି ଜନତାର ଏକଚ୍ଛତ୍ର ନେତା, ପ୍ରାୟଶଃ ଜନତା ପ୍ରତି ଚିରନ୍ତନ ମମତା ତାରସ୍ୱରରେ ଘୋଷଣା କରିଥାନ୍ତି । କିନ୍ତୁ ଏମାନଙ୍କ 'ଜନତା' ଅନିର୍ଦ୍ଦିଷ୍ଟ, ନାମରୂପହୀନ, କଥାର କଥା ମାତ୍ର । କିନ୍ତୁ ଗାନ୍ଧୀଙ୍କର ରୀତି ଥିଲି ଅଲଗା । ତାଙ୍କ ଜୀବନତମାମ ଯେଉଁ ପୁରୁଷ, ସ୍ତ୍ରୀ, ଓ ବାଳକ ବାଳିକାମାନେ ତାଙ୍କୁ ବେଢ଼ି ରହିଥିଲେ ତାଙ୍କ ଭିତରୁ ପ୍ରତ୍ୟେକଙ୍କଠାରେ ଗାନ୍ଧୀଙ୍କର ଅସରନ୍ତି ଶ୍ରଦ୍ଧା । ଅପରକୁ ଶ୍ରଦ୍ଧା କରିବାର ସାମର୍ଥ୍ୟ ତାଙ୍କଠାରେ ଅସୀମ ଭାବେ ଥିଲି ପରି ମନେ ହୁଏ । ପ୍ରତ୍ୟେକଙ୍କୁ ସେ ସ୍ନେହ ଓ ବାତ୍ସଲ୍ୟ ଦେଖାଉଥିଲେ ; ପ୍ରତ୍ୟେକଙ୍କର କ'ଣ କ'ଣ ବିଶେଷଭାବେ ପ୍ରୟୋଜନ ତାହା ସେ ମନେ ରଖୁଥିଲେ, ଏବଂ ତାଙ୍କର ଏସବୁ ପାଇଁ ସମୟ ଓ ଶକ୍ତିର ଏକାନ୍ତ ଅଭାବ ସତ୍ତ୍ୱେ, ସେଥିପ୍ରତି ଭ୍ରୂପେକ୍ଷ ନ କରି ପ୍ରତ୍ୟେକର ଅଭାବ ପୂରଣ କରିବାରେ ଆନନ୍ଦ ଅନୁଭବ କରୁଥିଲେ । ସଂବେଦନଶୀଳ ବ୍ରିଟିଶ୍ ସମାଜ-ବାଦୀ ଏଇଚ୍. ଏନ୍. ବ୍ରେଲସ୍‌ଫୋର୍ଡ଼୍ ଗାନ୍ଧୀଙ୍କ ପ୍ରକୃତିର ଏ ବିଭାବ ବିଶ୍ଳେଷଣ କରି କହିଛନ୍ତି, 'ଗାନ୍ଧୀଙ୍କ ପ୍ରକୃତିରେ ପୁରୁଷୋଚିତ ଶୌର୍ଯ୍ୟ, ଯେଉଁମାତ୍ରାରେ ଥିଲି, ଅନ୍ତତଃ ସେଇ ମାତ୍ରାରେ ନାରୀଜନସୁଲଭ କୋମଳତା ବି ଥିଲି । ପିଲିଙ୍କୁ ସ୍ନେହ କରିବାରେ, ସେମାନଙ୍କ ସଙ୍ଗେ ଖେଳ କୌତୁକ କରି ଆମୋଦିତ ହେବାରେ, ଏବଂ ରୋଗୀଙ୍କ ଶୁଶ୍ରୂଷା କରିବାରେ ମଜ୍ଜି ଯିବାଦ୍ୱାରା ସେ ଏହାର ପ୍ରତ୍ୟକ୍ଷ ପ୍ରମାଣ ଦେଇଛନ୍ତି । ଯେଉଁ ଚରଖାରେ ତାଙ୍କର ଏତେ ଶ୍ରଦ୍ଧା ତାହା ଚିରକାଳ ନାରୀମାନଙ୍କ ଯନ୍ତ୍ର ବୋଲି ପରିଚିତ । ପୁଣି ସତ୍ୟାଗ୍ରହ, ନିଜେ କଷ୍ଟ ସହି ଅନ୍ୟର ହୃଦୟ ପରିବର୍ତ୍ତନ କରିବାର ଯେଉଁ କର୍ମପନ୍ଥା, ତାହା ନାରୀମାନଙ୍କର ପ୍ରଧାନ ଅସ୍ତ୍ର ନୁହେ କି ?' ହୁଏତ ବ୍ରେଲସ୍‌ଫୋର୍ଡ଼୍‌ଙ୍କ

ଏ ବ୍ୟାଖ୍ୟାରେ ସତ୍ୟ ଅଛି । ହୁଏ ତ ବ୍ରେଲ୍‌ସ୍‌ଫୋର୍ଡ ପୁରୁଷମାନଙ୍କ ପ୍ରତି ଅତି କଠୋର ଓ କୋମଳାଙ୍ଗୀଙ୍କ ପ୍ରତି ଅତି କୋମଳ ହୋଇ ଏକଥା କହିଛନ୍ତି । ବ୍ରେଲସ୍‌ଫୋର୍ଡ ଯେପରି ନିଜର ଅନୁଭୂତି ଓ ଅଭିଜ୍ଞତା ଉପରେ ନିର୍ଭର କରି ଏକଥା କହିଲେ, ସେହିପରି ଅନ୍ୟମାନେ ନିଜର ରୁଚି ଓ ଅଭିଜ୍ଞତା ଅନୁସାରେ ଗାନ୍ଧୀଙ୍କ ସ୍ନେହମମତାପୂର୍ଣ୍ଣ ଦୟାର୍ଦ୍ର ଚରିତ୍ରର ବ୍ୟାଖ୍ୟା କରିବାକୁ ହକ୍‌ଦାର୍ । ସେ ଯାହା ହେଉ, ଏହି କୋମଳତା ଗାନ୍ଧୀଙ୍କ ଅନ୍ତରର କଠୋର ସଂକଳ୍ପ ଓ ନିଷ୍ଠାକୁ, ପକ୍ଷୀ ଦେହର କୋମଳ ପର ଘୋଡ଼ାଇ ରଖିଥାଏ । ଏହି କୋମଳତାର ଟିକିଏ ସ୍ପର୍ଶ ଲାଗିଗଲେ, ଅଧିକାଂଶ ଭାରତୀୟ ଗାନ୍ଧୀଙ୍କ ପ୍ରମାଦ, ଭୁଲତ୍ରୁଟି ଓ ଝୁଙ୍କିକୁ ମାଫ କରି ଦେଉଥିଲେ । ଏଇ କୋମଳତା ଯୋଗୁଁ, ଯେଉଁଥିରେ ହିଂସାର ଲେଶମାତ୍ର ସମ୍ଭାବନା ତାହାକୁ ତାଙ୍କର ସୀମାରେ ପୂରାଇ ଦେଉ ନ ଥିଲେ । ୧୯୨୮ରେ ବାର୍ଦୋଲୀରେ ଯେଉଁ ସଫଳ ସତ୍ୟାଗ୍ରହ ହେଲା ସେଥିରେ ଆଦୌ ହିଂସାକାଣ୍ଡ ଘଟି ନ ଥିଲା, କିନ୍ତୁ ଗାନ୍ଧୀଙ୍କର କର୍ତ୍ତୃତ୍ୱ ନ ଥିଲେ ହିଂସାକାଣ୍ଡ ଘଟିବାର ସଂଭାବନା ଥିଲା । ଉପରୁ ଚାପ ନ ଥିଲେ, ହୁଏତ କୃଷକମାନେ ହିଂସାକାଣ୍ଡ ଘଟାଇ ଦେଇଥାନ୍ତେ । ୧୯୩୦ରେ ହେବାକୁ ଥିବା ଆଇନ୍ ଅମାନ୍ୟ ଆନ୍ଦୋଳନରେ ହିଂସାର ସଂଭାବନା ମୂଳରୁ ଯେପରି ନିବାରିତ ହେବ ସେଥିପ୍ରତି ଗାନ୍ଧୀ ଆଗରୁ ସତର୍କ ଥିଲେ । ଦୈବାତ୍ ଯଦି ଆନ୍ଦୋଳନ ଅମଡ଼ା ମାଡ଼ିଯାଏ ତେବେ, ନିଜେ ସେ ବି ତାକୁ ଠିକ୍ ବାଟକୁ ଫେରାଇ ପାରିବେ ନାହିଁ ବୋଲି ଭୟ କରୁଥାନ୍ତି ।

ରବୀନ୍ଦ୍ରନାଥ ଠାକୁରଙ୍କ ପ୍ରତି ଗାନ୍ଧୀଙ୍କର ବିଶେଷ ଭକ୍ତି ଥାଏ । ସେ ଦୈବାତ୍ କାର୍ଯ୍ୟ ଉପଲକ୍ଷ୍ୟେ ସାବରମତୀ ଆଶ୍ରମର ନିକଟବର୍ତ୍ତୀ ଅଞ୍ଚଳକୁ ଆସିଥିବାରୁ, ଜାନୁଆରୀ ୧୮ ତାରିଖରେ ଗାନ୍ଧୀଙ୍କୁ ଭେଟିବାକୁ ଆସିଥିଲେ । ୧୯୩୦ରେ ଦେଶପାଇଁ ସେ କ'ଣ ଯୋଜନା କରୁଛନ୍ତି ବୋଲି ରବୀନ୍ଦ୍ରନାଥ ପଚାରିବାରେ ଗାନ୍ଧୀ ଉତ୍ତର ଦେଇଥିଲେ, 'ମୁଁ ରାତି ଦିନ ଅନବରତ ସେଇ କଥା ଭାବୁଛି, କିନ୍ତୁ ଚାରିଆଡ଼େ ଘୋଟିଥିବା ଅନ୍ଧାର ଭିତରେ ଆଲୋକର ରଶ୍ମି ଟିକିଏ ବି ଦେଖି ପାରୁନାହିଁ ।'

ଭାରତର ପରିସ୍ଥିତି ଦେଖି ଗାନ୍ଧୀ ଶଙ୍କି ଯାଇଥାନ୍ତି । ସେ କହି-ଥିଲେ, 'ବାୟୁମଣ୍ଡଳରେ ହିଂସାଭାବ ପୂରି ରହିଛି ।' ଲଙ୍କାଶାୟାର୍‌ରୁ ଭାରତ ଆହୁରି ବେଶୀ ଲୁଟାପଟା ଆମଦାନୀ କରିବ ବୋଲି ବ୍ରିଟିଶ ସରକାର ଭାରତୀୟ

ମୁଦ୍ରାରୁ ବନିମୟ ମୂଲ୍ୟ ବଦଳାଇ ଦେଇଥାନ୍ତି; ଭାରତର ମଧ୍ୟବିତ୍ତ ଲୋକେ ଏଥି ଯୋଗୁଁ କ୍ଷତିଗ୍ରସ୍ତ ହେଉଥାନ୍ତି । ୧୯୨୯ରେ ଆମେରିକାରେ ଆର୍ଥିକ ବିପର୍ଯ୍ୟୟ ହେବାରୁ, ଏବଂ ସମଗ୍ର ପୃଥିବୀରେ ଆର୍ଥିକ ମାନ୍ଦା ଅବସ୍ଥା ବଢୁଥିବାରୁ ଭାରତୀୟ କୃଷକମାନଙ୍କର ଅବସ୍ଥା ଖରାପ ହେଉଥାଏ । ଏହି କାରଣରୁ, ଏବଂ ସରକାର ଶ୍ରମିକ ସଂଗଠନକୁ ଦବାଇବାକୁ କାର୍ଯ୍ୟାନୁଷ୍ଠାନ କରିବାରୁ ଶ୍ରମିକମାନଙ୍କ ଭିତରେ ଅସନ୍ତୋଷ ବଢୁଥାଏ । ପୁଣି ୧୯୧୯ଠାରୁ ୧୯୨୧ରେ ଯେପରି ହୋଇଥିଲା, ସେଇ ରୀତିରେ ଦଳେ ଭାରତୀୟ ଯୁବକ ଏତେବେଳେ ବ୍ରିଟିଶଙ୍କ ରକ୍ତପାତ କରି ସ୍ୱାଧୀନତାର ଗତି ଆଗେଇ ଦେବାର ସୁଯୋଗ ପଡ଼ିଛି ବୋଲି ବିଚାରୁଥାନ୍ତି ।

ଏଇ ପରିସ୍ଥିତିରେ ଆଇନ୍ ଅମାନ୍ୟ ଆନ୍ଦୋଳନ ଆରମ୍ଭ କରି-ଦେଲେ 'ନିଶ୍ଚିତ ବିପଦର ଆଶଙ୍କା' ଥାଏ ; ଅପରପକ୍ଷେ ଆଇନ୍ ଅମାନ୍ୟ ଆନ୍ଦୋଳନ ନ କରି ପଛେଇଗଲେ, ସଶସ୍ତ୍ର ସଂଘର୍ଷ ଅବଶ୍ୟମ୍ଭାବୀ । ଏଭଳି ଦୋଦୁଲ୍ୟମାନ ପରିସ୍ଥିତିରେ ବି ଗାନ୍ଧୀଙ୍କ ଆତ୍ମବିଶ୍ୱାସ ଅଟଳ ଥାଏ ।

ନିଜ ଅନ୍ତର ଭିତରୁ ପ୍ରେରଣା ମିଳିବ ବୋଲି ସେ ଛ' ମାସ କାଳ ଅପେକ୍ଷା କରି ରହିଲେ । 'ଅନ୍ତରର ପ୍ରେରଣା' ବିଷୟରେ ବ୍ୟାଖ୍ୟା କରି ସେ କହିଥିଲେ, (ଫ୍ରାନ୍ସ୍‌ର) ଜୋନ୍ ଅବ୍ ଆର୍କଙ୍କ ଅନ୍ତର ଭିତରେ ଯେପରି ଭଗବାନ୍‌ଙ୍କ ବାଣୀ ଶୁଣାଯାଉଥିଲା, ସେ ସେଭଳି ଅନ୍ତର୍‌ବାଣୀର ପ୍ରତୀକ୍ଷାରେ ନ ଥିଲେ । ସେ ଏ ସମ୍ପର୍କରେ ଲେଖିଥିଲେ, 'ଅନ୍ତର ଭିତରେ ଭଗବାନ୍‌ଙ୍କ ବାଣୀ ଶୁଣାଯାଇପାରେ, ସଇତାନର ବାଣୀ ଶୁଣାଯାଇପାରେ । ମଣିଷର ହୃଦୟରେ ଉଭୟଙ୍କ ସଂଘର୍ଷ ନିରନ୍ତର ଚାଲିଛି । ମଣିଷ ଯେଉଁ କାର୍ଯ୍ୟ କରେ ସେଇଥିରୁ ଜଣାଯାଏ, ସେ ଭଗବାନ୍‌ଙ୍କ ବାଣୀ ଶୁଣିଥିଲା, କି ସଇତାନ୍‌ର ।'

ଅବିଳମ୍ବେ ସେ ଅନ୍ତରରେ ବାଣୀ ଶୁଣିଲାପରି ଜଣାପଡ଼ିଲା , ତା'ର ଏକମାତ୍ର ଅର୍ଥ, ସେ ଗୋଟିଏ ସିଦ୍ଧାନ୍ତରେ ଉପନୀତ ହୋଇଗଲେ । ତେଣୁ 'ୟଙ୍ଗ୍ ଇଣ୍ଡିଆ'ର ଫେବୃଆରୀ ୨୭ ତାରିଖ ସଂଖ୍ୟାର ଆରମ୍ଭରେ ପ୍ରକାଶ ପାଇଲା ସମ୍ପାଦକୀୟ ପ୍ରବନ୍ଧ - ଶିରୋନାମା, 'ମୁଁ ଗିରଫ୍ ହେଲେ'—ଏଥିରେ ଲବଣ ଟିକସ ବସାଇବାର ଅଯଥାର୍ଥତା ଓ ଅନ୍ୟାୟ ବିଷୟରେ ବହୁତ କରି ଲେଖା ହୋଇଥାଏ । ପତ୍ରିକାର ପରବର୍ତ୍ତୀ ସଂଖ୍ୟାରେ ଲବଣ ଆଇନ୍‌ର ଦଣ୍ଡବିଧାନ ଧାରାମାନ ଉଦ୍ଧୃତ ହୋଇଥିଲା, ଏବଂ ୧୯୩୦, ମାର୍ଚ୍ଚ ୨ ତାରିଖରେ ଗାନ୍ଧୀ ଭାଇସରୟଙ୍କ ପାଖକୁ ଗୋଟିଏ ଦୀର୍ଘ ପତ୍ର ପଠାଇଲେ ;

ଏଥିରେ ତାଙ୍କୁ ନୋଟିସ୍ ଦିଆ ହୋଇଥିଲା ଯେ, ନଅ ଦିନରେ ଆଇନ୍ ଅମାନ୍ୟ ଆନ୍ଦୋଳନ ଆରମ୍ଭ ହେବ ।

ଏଭଳି ଅଦ୍‌ଭୂତ ଚିଠି କୌଣସି ରାଜ୍ୟର ସର୍ବୋଚ୍ଚ କର୍ତ୍ତା ପୂର୍ବେ କେବେ ପାଇ ନ ଥିଲେ ।

ପ୍ରିୟ ବନ୍ଧୁ, ଆଇନ୍ ଅମାନ୍ୟ ଆନ୍ଦୋଳନ କରି, ବିଗତ ଏତେ ଗୁଡ଼ିଏ ବର୍ଷ ହେଲା ମୁଁ ଯେଉଁ ବିପତ୍ତିକୁ ଭୟ କରି ଆସିଛି ତାହା ବରଣ କରିବା ପୂର୍ବରୁ, ମୁଁ ଆପଣଙ୍କୁ ଆଶାର୍ଥୀ ପ୍ରାଣରେ ଏ ନିବେଦନ କରୁଛି ; ମୋର ଆଶା, ଯହା ଦ୍ୱାରା ଏ ବିପଦରୁ ଉଦ୍ଧାର ହେବାର ବାଟ ମୋତେ ମିଳିବ ।

ମୋର ନିଜ ମନର ବୃତ୍ତି ବିଷୟରେ ଅଛପା ହୋଇ ଡଳେ ମାସ ନାହିଁ । ମୁଁ ଜାଣି ଶୁଣି କୌଣସି ପ୍ରାଣୀକୁ ଆଘାତ କରି ପାରିବିନାହିଁ, ମଣିଷକୁ ଆଘାତ କରିବା ତ ବହୁ ଦୂରର କଥା । ମୋ ପ୍ରତି ବା ମୋର ଆତ୍ମୀୟମାନଙ୍କ ପ୍ରତି ଯତ୍‌ପରୋନାସ୍ତି ଅନିଷ୍ଟ କରିବା ଲୋକଙ୍କର ବି ମୁଁ ଅନିଷ୍ଟ କରିବାକୁ ସମର୍ଥ ନୁହେଁ । ତେଣୁ, ବ୍ରିଟିଶ ରାଜୁତିକୁ ଭାରତ ପ୍ରତି ଏକ ଅଭିଶାପ ବୋଲି ମୁଁ ମନେ କରୁଥିଲେ ହେଁ, ମୁଁ କୌଣସି ବ୍ରିଟିଶ୍ ଲୋକଙ୍କର ଅନିଷ୍ଟ କରିବାକୁ ଇଚ୍ଛା କରେ ନାହିଁ ; ଭାରତରେ ଇଂରେଜଙ୍କର ଥିବା କୌଣସି ନ୍ୟାୟସଙ୍ଗତ ସ୍ୱାର୍ଥରେ ଅନ୍ତରାୟ ହେବା ମଧ୍ୟ ମୋର ଉଦ୍ଦେଶ୍ୟ ନୁହେଁ ......ତେବେ ବ୍ରିଟିଶ୍ ରାଜୁତିକୁ ମୁଁ ଅଭିଶାପ ବୋଲି ମନେ କରୁଛି କାହିଁକି ?

ଶୋଷଣର କ୍ରମ-ବର୍ଦ୍ଧିଷ୍ଣୁ ପ୍ରଣାଳୀଦ୍ୱାରା, ଏବଂ ଏ ଦେଶର ସମ୍ବଳର ଅତିରିକ୍ତ ଶାସନସଂସ୍ଥା, ଏବଂ ଏ ଦେଶର ସର୍ବନାଶକର ଓ ବହୁବ୍ୟୟ-ସାପେକ୍ଷ ସେନା ନିଯୁକ୍ତ କରିବାଦ୍ୱାରା ବ୍ରିଟିଶ୍ ରାଜ୍ ଏ ଦେଶର ମୂକ ଜନତାକୁ ନିର୍ଦ୍ଧନ ଓ ନିସ୍ତେଜ କରି ପକାଇଛି ।

ରାଜନୀତିକ ଦୃଷ୍ଟିରୁ ଆମକୁ ଦାସ କରି ପକାଇଛି ; ଆମ ସଂସ୍କୃତିର ମୂଳଭିତ୍ତିକୁ ଦୋହଲାଇ ଦେଇଛି; ଏବଂ ନୃଶଂସଭାବେ ଆମକୁ ନିରସ୍ତ୍ର କରି ଆମ ମନର ବଳ ଭାଙ୍ଗି ଦେଇଛି...।

ମୋର ସନ୍ଦେହ......ନିକଟଭବିଷ୍ୟତରେ ଔପନିବେଶିକ ସ୍ୱାୟତ୍ତଶାସନ ଦେବାର ଇଚ୍ଛା ବ୍ରିଟିଶ ସରକାରର ନ ଥିଲା, ବର୍ତ୍ତମାନ ବି

ନାହିଁ । ଦାୟିତ୍ୱପୂର୍ଣ୍ଣ ବ୍ରିଟିଶ୍ ରାଷ୍ଟ୍ରନାୟକମାନେ, ଭାରତ ସଙ୍ଗେ ବ୍ରିଟିଶ୍ ବାଣିଜ୍ୟରେ ଆଞ୍ଚ ଲଗିଲା ଭଳି, ତାଙ୍କ ମତରେ କୌଣସି ପରିବର୍ତ୍ତନ କରାଇବାର ଯେ କଳ୍ପନା କରନ୍ତି ନାହିଁ, ଏହା ଦିବାଲୋକ ପରି ସ୍ପଷ୍ଟ ହୋଇଗଲାଣି ।......ଯଦି ବ୍ରିଟିଶ୍‌ରାଜର ଶୋଷଣ ପ୍ରକ୍ରିୟା ବନ୍ଦ କରିବାକୁ ତୁରନ୍ତ କିଛି ବ୍ୟବସ୍ଥା ନ ହୁଏ, ତେବେ ଆହୁରି କ୍ଷିପ୍ର ଗତିରେ ଭାରତ ରକ୍ତ-ଶୋଷଣ ଚାଲୁ ହେବ ।

ଭାରତର ଶୋଷଣ କିପରି ଚାଲିଛି ତାହାର କେତୋଟି ପ୍ରଧାନ ପ୍ରଧାନ ଦୃଷ୍ଟାନ୍ତ ଦେଉଛି ।

( ଭୂରାଜସ୍ୱ ନାମରେ ଯେଉଁ ଟିକସ୍ ଆଦାୟ କରାଯାଉଛି, ତାହା ସରକାରଙ୍କ ଆୟର ଗୋଟାଏ ବଡ଼ ଅଂଶ । ଏହାଦ୍ୱାରା ଲୋକେ ଅତିରିକ୍ତ ପେଷି ହୋଇ ଯାଉଛନ୍ତି । ସ୍ୱାଧୀନ ଭାରତରେ ଭୂରାଜସ୍ୱର ରୂପ ବିଶେଷ ଭାବେ କୋହଳ କରିବାକୁ ହେବ......। ସମଗ୍ର ଭୂ-ରାଜସ୍ୱ ମତରେ ଏଭଳି ପରିବର୍ତ୍ତନ କରିବାକୁ ହେବ ଯେପରି କି ଲୋକଙ୍କର ମଙ୍ଗଳ କରିବା ଏହାର ମୁଖ୍ୟ ଲକ୍ଷ୍ୟ ହୋଇପାରିବ । ବ୍ରିଟିଶ୍‌ଙ୍କ ଭୂରାଜସ୍ୱ ମତର ଲକ୍ଷ୍ୟ ଲୋକଙ୍କର ଅବଶିଷ୍ଟ ଜୀବନୀଶକ୍ତିଟି ଶୋଷିଦେବା ପରି ମନେ ହେଉଛି । ବଂଚି ରହିବାକୁ ଲୋକେ ଯେଉଁ ଲୁଣଟିକକ ଖାଇବାକୁ ବାଧ୍ୟ, ତାହା ଉପରେ, ନିର୍ମମ ଭାବେ, ସମସ୍ତଙ୍କ ପାଇଁ ସମାନ ହାରରେ ଟିକସ ବସିବାରୁ, ଲୋକଙ୍କୁ ସବୁଠାରୁ ବେଶୀ ବାଧୁଛି । ପୁଣି ଏ ପଦାର୍ଥଟି ଧନୀ ଲୋକଙ୍କ ଅପେକ୍ଷା ଗରିବ ଲୋକଙ୍କର ଅଧିକ ଖାଇବା ଦରକାର ହେଉଥିବାରୁ, ଲୁଣ-ଟିକସ ଗରିବ ଉପରେ ଆହୁରି ଗରୁ ବୋଝ ହୋଇ ପଡ଼ୁଛି......। ମଦ ଓ ଅଫିମ ଗଞ୍ଜେଇ ରାଜସ୍ୱ ମଧ୍ୟ ଦରିଦ୍ରଙ୍କଠାରୁ ଆଦାୟ ହେଉଛି । ଏହାଦ୍ୱାରା ତାଙ୍କର ସ୍ୱାସ୍ଥ୍ୟ ଭାଙ୍ଗି ଯାଉଛି ଓ ଚରିତ୍ର ନଷ୍ଟ ହେଉଛି ।

ଉପରେ ଯେଉଁ ଦୁର୍ନୀତିର ନମୁନା ଦିଆଗଲା, ସେ ସବୁ ଅବଲମ୍ବନ କରାଯାଉଛି ବିଦେଶୀ ଶାସନ ଚଳାଇବା ସକାଶ । ପୃଥିବୀରେ ଏ ଶାସନରେ ସବୁଠାରୁ ଅଧିକ ବ୍ୟୟ ହେଉଛି, ତାହା ସ୍ପଷ୍ଟ ପ୍ରମାଣ କରାଯାଇପାରେ । ଆପଣଙ୍କ ନିଜ ଦରମା ଉପରେ ଦୃଷ୍ଟି ଦିଅନ୍ତୁ । ଆପଣ ପାଉଛନ୍ତି ମାସକୁ ୨୧ ହଜାରରୁ ବେଶୀ (ପ୍ରାୟ ୧୭୫୦ ପାଉଣ୍ଡ) । ସ୍ୱାବାଦ୍ ଆହୁରି ପରୋକ୍ଷ ପ୍ରାପ୍ତି ବି ରହିଛି......। ଆପଣ ଦିନକୁ ପାଉଛନ୍ତି ୭୦୦ ଟଙ୍କାରୁ ବେଶୀ, ଅଥଚ ଭାରତୀୟର ହାରାହାରି ଦୈନିକ ଆୟ ଦୁଇଅଣା (ଦୁଇ ପେନ୍‌ସ୍)ରୁ

କମ୍ । ଅର୍ଥାତ୍, ଆପଣ ଭାରତୀୟର ହାରାହାରି ଆୟର ପାଞ୍ଚହଜାର ଗୁଣ ଦରମା ନେଉଛନ୍ତି । ବ୍ରିଟିଶ ଲୋକଙ୍କ ହାରାହାରି ଆୟର ମାତ୍ର ନବେଗୁଣ ବ୍ରିଟିଶ୍ ପ୍ରଧାନମନ୍ତ୍ରୀ ପାଆନ୍ତି । ମୁଁ ଜାନୁପାତ କରି ବିନୀତଭାବେ ପ୍ରାର୍ଥନା କରୁଛି, ଆପଣ ଏ ବିଷୟର ବିଚାର କରନ୍ତୁ । ଗୋଟାଏ ଦୁଃଖଦାୟକ ତଥ୍ୟର ପ୍ରମାଣ ଦେବାକୁ ମୁଁ ଆପଣଙ୍କ ନିଜ କଥା ଉତ୍ଥାପନ କଲି । ବ୍ୟକ୍ତିଗତ ଭାବେ ମୋ'ର ଆପଣଙ୍କ ପ୍ରତି ଏତେ ଶ୍ରଦ୍ଧା ଯେ, ମୁଁ ଆପଣଙ୍କ ମନରେ କଷ୍ଟ ଦେବାକୁ ଇଚ୍ଛା କରି ନ ପାରେ । ମୁଁ ଜାଣେ, ଆପଣ ଯେଉଁ ଦରମା ପାଉଛନ୍ତି ତାହା ଆପଣଙ୍କର ପ୍ରୟୋଜନ ନୁହେଁ । ହୁଏତ ଆପଣଙ୍କର ସମସ୍ତ ଦରମା ଦାନ ଖଇରାତରେ ସରିଯାଏ । ମୋର ଏ ବିଷୟ ଉଲ୍ଲେଖ କରିବାର ଏକମାତ୍ର ଉଦ୍ଦେଶ୍ୟ, ଯେଉଁ ଶାସନ ସଂସ୍ଥାରେ ଭାଇସରୟଙ୍କ ପାଇଁ ଏଭଳି ମୋଟା ଦରମାର ବ୍ୟବସ୍ଥା ଅଛି ସେ ସଂସ୍ଥା ଏକାନ୍ତ ନିନ୍ଦନୀୟ, ଏବଂ ଏହାର ମୂଳପୋଛ ହୋଇଯିବା ଉଚିତ । ଭାଇସ୍‌ରୟଙ୍କ ଦରମା ବିଷୟରେ ଯାହା ଉଲ୍ଲେଖ କଲି ସମଗ୍ର ଶାସନ ସଂସ୍ଥାପ୍ରତି ତାହା ହିଁ ପ୍ରଯୁଜ୍ୟ······। ସଂଗଠିତ ଅହିଂସା ବ୍ୟତୀତ ଆଉ କୌଣସି ଉପାୟ ବ୍ରିଟିଶ ସରକାରଙ୍କ ସଂଗଠିତ ହିଂସାମୂଳ ସଂସ୍ଥାକୁ ବି ରୋକି ପାରିବ ନାହିଁ····।

ଏହି ଅହିଂସା, ଆଇନ୍‌ଅମାନ୍ୟ ରୂପରେ ଆତ୍ମପ୍ରକାଶ କରିବ । ବର୍ତ୍ତମାନ ପାଇଁ ସତ୍ୟାଗ୍ରହ (ସାବରମତୀ ଆଶ୍ରମର ଅନ୍ତେବାସୀଙ୍କ ମଧ୍ୟରେ ଏ ଅମାନ୍ୟ ଆନ୍ଦୋଳନ ଆବଦ୍ଧ ରହିବ ; ପରେ ଏ ଆନ୍ଦୋଳନରେ ଯେଉଁମାନେ ଯୋଗ ଦେବାକୁ ଚାହିଁବେ ସେମାନଙ୍କୁ ଏହା ବ୍ୟାପିବ······।

ମୋର ଆକାଂକ୍ଷା, ମୁଁ ଅହିଂସା ମନ୍ତ୍ରରେ ସମଗ୍ର ବ୍ରିଟିଶ ଜାତିକୁ ଦୀକ୍ଷିତ କରିବି, ତାହାହେଲେ, ସେମାନେ ଭାରତ ପ୍ରତି ଯେଉଁ ଅନ୍ୟାୟ କରିଛନ୍ତି ତାହା ନିଜେ ବୁଝି ପାରିବେ । ମୁଁ ଆପଣଙ୍କ ଜାତିର ଲୋକଙ୍କର ଅନିଷ୍ଟ କରିବାକୁ ଚାହେଁ ନାହିଁ । ମୋ ନିଜ ଦେଶବାସୀଙ୍କ ମୁଁ ଯେପରି ସେବା କରିବାକୁ ଚାହେଁ, ଆପଣଙ୍କ ଜାତିର ମଧ୍ୟ ଠିକ୍ ସେହିପରି ସେବା କରିବାକୁ ଇଚ୍ଛା କରେ······।

(ଭାରତର) ଲୋକେ ଯଦି ମୋ ସଙ୍ଗେ ମିଶନ୍ତି (ମୋର ଆଶା ସେମାନେ ମିଶିବେ) ଓ ଆନ୍ଦୋଳନ ତେଜିବା ପୂର୍ବରୁ ଯଦି ବ୍ରିଟିଶ ଜାତି ନିଜର ନୀତି ନ ବଦଳାନ୍ତି, ତେବେ ମୋ ଦେଶର ଲୋକେ ଏତେ ଦୁଃଖ ଓ ଯନ୍ତ୍ରଣା ସହିବେ ଯେ, ତାହା ଦେଖି ଅତି ଟାଣ ପଥରର ହୃଦୟ ବି ତରଳିଯିବ ।

ପୂର୍ବରେ ମୁଁ ଯେଉଁ ଦୁର୍ନୀତିର ନମୁନା ଦେଇଛି ସେଇଭଳି ଦୁର୍ନୀତିକୁ ବିରୋଧ କରିବାକୁ ଆଇନ୍ ଅମାନ୍ୟର କଳ୍ପନା କରାଯାଇଛି । ···। ମୁଁ ସସମ୍ମାନେ ନିବେଦନ କରୁଛି, ଆପଣ ସେଇ ସବୁ ଦୁର୍ନୀତି ତୁରନ୍ତ ଦୂର କରିବା ସକାଶ ବ୍ୟବସ୍ଥା କରନ୍ତୁ । ସେପରି ହେଲେ ସମାନସ୍କନ୍ଧ ଦୁଇପକ୍ଷ ଭିତରେ ଫଳପ୍ରଦ ଆଲୋଚନାର ପଥ ପରିଷ୍କାର ହୋଇଯିବ···। ଅପରନ୍ତୁ, ଯଦି ଉଲ୍ଲିଖିତ ଦୁର୍ନୀତି ଦୂର କରିବା ଦିଗରେ ଆପଣ ଉଦ୍ୟମ ନ କରନ୍ତି, ଏବଂ ମୋର ଏ ନିବେଦନ ଯଦି ଆପଣଙ୍କ ହୃଦୟରେ ସଂବେଦନା ସୃଷ୍ଟି କରିବାକୁ ଅସମର୍ଥ ହୁଏ, ତେବେ ଏଇମାସର ଏକାଦଶ ଦିବସରେ, ମୋ ଆଶ୍ରମର ଯେତେ ଜଣ ସହକର୍ମୀଙ୍କୁ ସାଙ୍ଗରେ ନେଇପାରିବି, ନେଇ, ଲବଣ ଆଇନ୍ ଅମାନ୍ୟ କରିବାକୁ ମୁଁ ଯାତ୍ରା କରିବି···। ମୁଁ ଜାଣେ, ମୋର ଏ ପରିକଳ୍ପନା ଭଣ୍ଡୁର କରିବାକୁ ମୋତେ ଆପଣ ଗିରଫ୍ କରି ପାରନ୍ତି । କିନ୍ତୁ ମୋର ଆଶା, ମୋ ପଛରେ, ଏ କାର୍ଯ୍ୟ ସୁଶୃଙ୍ଖଳ ଭାବେ ଚଳାଇ ରଖିବାକୁ ହଜାର ହଜାର ଲୋକ ପ୍ରସ୍ତୁତ ଥିବେ ।······।

ଯଦି ମୋ ସଙ୍ଗେ ଏ ବିଷୟରେ ଆଲୋଚନା କରିବାକୁ ଆପଣଙ୍କର ମର୍ଜି ହୁଏ, ଏବଂ ସେଥି ଯୋଗୁଁ, ଏ ପତ୍ର ସର୍ବସାଧାରଣରେ ପ୍ରକାଶ ନ କରି ବନ୍ଦ ରଖିବାକୁ ଯଦି ଆପଣ ଚାହାନ୍ତି ତେବେ ଅନୁଗ୍ରହ କରି ଖଣ୍ଡିଏ ଟେଲିଗ୍ରାମ ପଠାଇବେ । ଟେଲିଗ୍ରାମ ପାଇଲେ ମୁଁ ଆନନ୍ଦର ସହିତ ଏ ପତ୍ରର ପ୍ରକାଶନ ବନ୍ଦ ରଖିବି···।

ପ୍ରତ୍ୟକ୍ଷ ବା ପରୋକ୍ଷ ଭାବେ ଆପଣଙ୍କ ସରକାରକୁ ଧମକାଇବା ଏ ପତ୍ରର ଉଦ୍ଦେଶ୍ୟ ନୁହେଁ । ଆଇନ୍ ଅମାନ୍ୟକାରୀ ସତ୍ୟାଗ୍ରହୀର ଏହା ଅଲଂଘନୀୟ, ପବିତ୍ର କର୍ତ୍ତବ୍ୟ ବୋଲି ମୁଁ ସରଳଭାବେ ଏ ପତ୍ରଟି ଲେଖିଛି । ମୋର ସଦିଚ୍ଛାର ପ୍ରମାଣ ସ୍ୱରୂପ ମୁଁ ଏ ଚିଠି ଖଣ୍ଡି, ଭାରତର ଦାବୀକୁ ଯୁକ୍ତିଯୁକ୍ତ ମନେ କରୁଥିବା ଜଣେ ଯୁବକ ଇଂରେଜବନ୍ଧୁଙ୍କ ହାତରେ ପଠାଉଛି । ସେ ଆପଣଙ୍କୁ ସାକ୍ଷାତରେ ଏ ପତ୍ରଟି ଅର୍ପଣ କରିବେ···।

ଆପଣଙ୍କ ସୁବିଚାରର ଅପେକ୍ଷାରେ ରହିଲି ।

ଆପଣଙ୍କ ପ୍ରକୃତ ବନ୍ଧୁ
ଏମ୍· କେ· ଗାନ୍ଧୀ ।

ପଦବାହକ ହୋଇଥିଲେ ରେଜନାଲ୍ଡ୍ ରେନୋଲ୍ଡ୍ସ୍—କ୍ୱେକର୍ ସମ୍ପ୍ରଦାୟର ଜଣେ ଇଂରେଜ ଲୋକ । ପରେ ସେହି 'ଦାଣ୍ଡୀ' ଉପରେ ଖଣ୍ଡିଏ ପୁସ୍ତକ ଲେଖିଥିଲେ । ଖଦୀ ପୋଷାକ ଓ ମୁଣ୍ଡରେ ସୋଲ୍ଲ ଟୋପି ପିନ୍ଧି ସେ ଭାଇସ୍‌ରୟ ଭବନରେ ପ୍ରବେଶ କଲେ ଏବଂ ଚିଠି ଖଣ୍ଡି ଆର୍‌ଉଇନ୍‌ଙ୍କ ସ୍ୱହସ୍ତରେ ଦେଲେ । ଏଇ ଚିଠି ଖଣ୍ଡି ଗ୍ରହଣ କରିବାକୁ ମିରଟ୍‌ରେ ହେଉଥିବା ପୋଲୋ ମ୍ୟାଚ୍ ଦର୍ଶନ ଛାଡ଼ି ଭାଇସ୍‌ରୟ ଉଡ଼ାଜାହାଜ ଯୋଗେ ରାଜଧାନୀକୁ ଫେରିଥିଲେ ।

କିନ୍ତୁ ଏ ଚିଠିର ଉତ୍ତର ନିଜେ ଦେବାକୁ ଆର୍‌ଉଇନ୍ ପସନ୍ଦ କଲେ ନାହିଁ । ତାଙ୍କ ସେକ୍ରେଟାରୀ ଗୃହଧାଡ଼ିରେ ପତ୍ରର ପ୍ରାପ୍ତି ସ୍ୱୀକାର କରି ଦେଲେ । ସେ ଲେଖିଥିଲେ, 'ଆପଣ ଏଭଳି ଗୋଟିଏ କାର୍ଯ୍ୟପନ୍ଥାର କଳ୍ପନା କରୁଛନ୍ତି, ଯାହା କି ନିଶ୍ଚିତଭାବେ ଆଇନ୍‌ର ବିରୋଧରେ ଯିବ ଏବଂ ଦେଶର ଶାନ୍ତିଶୃଙ୍ଖଳାକୁ ବିପଦ୍‌ଗ୍ରସ୍ତ କରିବ । ଆପଣଙ୍କ ଚିଠିରୁ ଆପଣଙ୍କ କର୍ମପନ୍ଥାର ସୂଚନା ପାଇ······ମହାମାନ୍ୟ ଭାଇସ୍‌ରୟ ଦୁଃଖିତ ।'

ଆଇନ୍ ଓ ଶାନ୍ତିଶୃଙ୍ଖଳା ପ୍ରତି ଦୃଷ୍ଟି ଆକର୍ଷଣ କରିଥିବା ଏହି ଚିଠିରେ ଇଂରେଜସରକାରଙ୍କ ଭାରତୀୟ ନୀତି ଓ ଭାରତବାସୀଙ୍କ ଦାବୀ ପ୍ରତି ନ୍ୟାୟବିଚାର କରିବା ବିଷୟରେ ପଦେ ବି କିଛି ନ ଥିଲା । ବଡ଼ଲାଟ ଏ ବିଷୟପ୍ରତି ଘୋର ଅବଜ୍ଞା ପ୍ରଦର୍ଶନ କରିବାର ଦେଖି ଗାନ୍ଧୀ କହିଥିଲେ, 'ଜାନୁପାତ କରି ବିନୀତଭାବେ ମୁଁ ରୋଟି ମାଗିଲି, କିନ୍ତୁ ରୋଟି ପରିବର୍ତ୍ତେ ମୋତେ ମିଳିଛି ପଥର ।' ଆର୍‌ଉଇନ୍ ଗାନ୍ଧୀଙ୍କ ସହିତ ଦେଖା କରିବାକୁ ନାସ୍ତି କରିଦେଲେ ସିନା, ତାଙ୍କୁ ଗିରଫ୍ କରିବାକୁ ଆଦେଶ ବି ଦେଲେ ନାହିଁ । ଗାନ୍ଧୀ କହିଲେ, 'ସରକାର ଗୋଲକଧନ୍ଦାରେ ପଡ଼ି ଯାଇଛନ୍ତି ; ଏତେବେଳେ କଣ କରିବାକୁ ହେବ ଠିକ କରି ପାରୁନାହାନ୍ତି ।' ବାସ୍ତବିକ ଗୋଲକଧନ୍ଦା ; ରାଜଦ୍ରୋହୀଙ୍କୁ ଗିରଫ୍ କଲେ ବିପଦ, ଗିରଫ୍ ନ କଲେ ବି ବିପଦ ।

ମାର୍ଚ୍ଚ ୧୧ ତାରିଖ ଯେତିକି ଯେତିକି ଆଗେଇଲା, ଭାରତ କୌତୂହଳ ଓ ଉତ୍ତେଜନାରେ ଅଥୟ ହେବାକୁ ଲାଗିଲା । ଦେଶର ଓ ବିଦେଶର ବହୁ ଖବରକାଗଜର ସମ୍ବାଦଦାତା ଆଶ୍ରମରେ ଗାନ୍ଧୀଙ୍କ ପିଚ୍ଛା ଧରିଲେ, ସେ ଠିକ୍ କି କାର୍ଯ୍ୟପନ୍ଥା ଅବଲମ୍ବନ କରିବେ ? ସମସ୍ତଙ୍କ ମନରେ ଏଇ ପ୍ରଶ୍ନ । ହଜାର ହଜାର ଲୋକ ସାବରମତୀ ଗ୍ରାମରେ ଜମି ଅପେକ୍ଷା କରି ରହିଥାନ୍ତି ।

ଉତ୍ତେଜନା ଭାରତ ବାହାରକୁ ମଧ୍ୟ ବ୍ୟାପିଗଲା । ବିଦେଶରୁ କେବଲ୍‌ଗ୍ରାମ୍ ଘନଘନ ଆସି ଆହମଦାବାଦ ପୋଷ୍ଟଅଫିସ୍‌କୁ ବିବାଗବି କର୍ମରତ ରଖିଲା । ନିଉୟର୍କ୍‌ରୁ ଡକ୍‌ଟର୍ ଜନ୍ ହେ'ନସ୍ ହୋମସ୍ ତାରବାର୍ତ୍ତାରେ ଆଶୀର୍ବାଦ ପଠାଇଲେ, 'ଭଗବାନ୍ ଆପଣଙ୍କୁ ରକ୍ଷା କରନ୍ତୁ ।'

ଗାନ୍ଧୀ ମନେ କରୁଥାନ୍ତି, 'ଜୀବନରେ ଗୋଟାଏ ଦୁର୍ଲ୍ଲଭ ସୁଯୋଗ ଆସି ପହଞ୍ଚିଛି ।'

ମାର୍ଚ୍ଚ ୧୨ ତାରିଖ ସକାଳେ ଉପାସନାଗୀତ ବୋଲା ହେବା ପରେ, ଆଶ୍ରମର ସତୁରିଜଣ ପୁରୁଷ ଓ ସ୍ତ୍ରୀ ସହଯାତ୍ରୀଙ୍କ ସହିତ ଗାନ୍ଧୀ ସାବରମତୀରୁ ଦାଣ୍ଡୀ ଅଭିମୁଖେ ଯାତ୍ରା ଆରମ୍ଭ କଲେ । ପୁଲିସ୍‌ଙ୍କ ଅବଗତି ନିମନ୍ତେ ପ୍ରତ୍ୟେକ ଯାତ୍ରୀଙ୍କ ନାମଧାମ 'ୟଙ୍ଗ୍ ଇଣ୍ଡିଆ'ରେ ପ୍ରକାଶିତ ହୋଇଥାଏ । ଦାଣ୍ଡୀ ଆହମଦାବାଦର ଠିକ୍ ଦକ୍ଷିଣରେ । ଗାନ୍ଧୀ ବାର୍ନିସ୍ ଦିଆହୋଇ ଚକ୍‌କଣ ହୋଇଥିବା ଗୋଟିଏ ବାଉଁଶ ଠେଙ୍ଗାରେ ଭର ଦେଇ ଚାଲୁଥାନ୍ତି—ଠେଙ୍ଗାଟି ଇଞ୍ଚେ ମୋଟା, ଓ ଚଉବନ ଇଞ୍ଚ ଲମ୍ବ, ଅଗରେ ଲୁହାର ଗୋଟିଏ ବଳା ବସିଥାଏ । ଅଙ୍କାବଙ୍କା କଦର୍ଯ୍ୟ ରାସ୍ତାରେ ଯାଇ ଗୋଟିକ ପରେ ଗୋଟିଏ ଗାଁ ପାର ହୋଇ ହୋଇ ଗାନ୍ଧୀ ଓ ତାଙ୍କର ଅଠସ୍ତରି ଶିଷ୍ୟ ଶିଷ୍ୟା ଚବିଶଦିନରେ ଦୁଇଶହ ମାଇଲ ଅତିକ୍ରମ କଲେ । ଗାନ୍ଧୀ କହୁ ଥାନ୍ତି, 'ଆମେ ଭଗବାନଙ୍କ ନାମରେ ଏ ଯାତ୍ରା କରୁଛୁଁ ।'

ଗାଁର ଚାଷୀ ଲୋକେ ରାସ୍ତାରେ ପାଣି ଛିଞ୍ଚି ପତ୍ର ବିଛେଇ ଦେଉଥାନ୍ତି । ବାଟରେ ପଡ଼ୁଥିବା ଗାଁମାନଙ୍କରେ ମାଳମାଳ ତୋରଣ ତିଆରି ହୋଇ ଭାରତର ଜାତୀୟପତାକା ଉଡ଼ିଆ ହୋଇଥାଏ । ବହୁ ଦୂରର ଗାଁ ଗହଳରୁ ଲୋକେ ଆସି ମହାତ୍ମାଜୀଙ୍କ ଯାତ୍ରାପଥର କଡ଼ରେ ଜମା ହୋଇଥାନ୍ତି, ତାଙ୍କୁ ମୁଣ୍ଡିଆ ମାରିବା ସକାଶ । ପ୍ରତ୍ୟହ ରାସ୍ତା ଉପରେ ଦୁଇ ଚାରିଟା ସଭାର ଆୟୋଜନ ହୋଇଥାଏ । ସେଠାରେ ଯାତ୍ରୀମାନେ ଟିକିଏ ଟିକିଏ ଅଟକନ୍ତି ; ମହାତ୍ମାଜୀ ଓ ଅନ୍ୟ ଯାତ୍ରୀମାନେ ସେ ସଭାମାନଙ୍କରେ ବକ୍ତୃତା ଦେଇ ଖଦଡ଼ ପିନ୍ଧିବାକୁ, ମଦ, ଅଫିମ ଗଞ୍ଜେଇ ଛାଡ଼ିବାକୁ, ପିଲାକନ୍ୟା ବିଭା ନ ଦେବାକୁ, ସଫାସୁତରା ରହି ସାଧୁ ଓ ସରଳ ଭାବରେ ଚଳିବାକୁ ଏବଂ ଶେଷରେ—ନିର୍ଦ୍ଦେଶ ମିଳିଲେ—ଲୁଣ ଆଇନ୍ ଅମାନ୍ୟ କରିବାକୁ ଲୋକଙ୍କୁ ବୁଝାଉଥାନ୍ତି ।

ଚାଲିବାରେ ମହାତ୍ମାଜୀଙ୍କୁ କିଛି କଷ୍ଟ ହେଉ ନ ଥାଏ । ସେ

କହୁଥାନ୍ତି, 'ଦିନକୁ ବାର ମାଇଲରୁ ବି କମ୍, ପୁଣି ମଝିରେ ବିଶ୍ରାମ, ଗଣ୍ଠିଲପଣ ବୋହିବାକୁ ନାହିଁ—ଏଭଳି ଚାଲିବା ତ ପିଲା ଖେଳ !' କିନ୍ତୁ ସହଯାତ୍ରୀଙ୍କ ଭିତରୁ କେତେକ କ୍ଳାନ୍ତ ହୋଇ ପଡ଼ୁଥାନ୍ତି, କେତେକଙ୍କର ଗୋଡ଼ ବଥେଇ ଯାଉଥାଏ ଯେ, ଶଗଡ଼ରେ ବସିବାକୁ ବାଧ ହେଉଥାନ୍ତି । ମହାତ୍ମାଙ୍କ ପାଇଁ ଗୋଟିଏ ଘୋଡ଼ା ବାଟସାରା ମହଜୁଦ୍ ରହିଥାଏ, କିନ୍ତୁ ସେ ମୁହୂର୍ତ୍ତେ ବି ଘୋଡ଼ାରେ ବସିବାକୁ ଲୋଡ଼ ନ ଥିଲେ । ଅନ୍ୟମାନଙ୍କର ଥକି ପଡ଼ିବାର ଦେଖି ସେ ଟିପ୍‌ପଣୀ କରୁଥାନ୍ତି, 'ଏ ଯୁଗର ପିଲାମାନେ ଅତି ସୁକୁମାର ହୋଇ ଯାଇଛନ୍ତି, ବଡ଼ ହେଲଟେଲ୍ ହୋଇ ଚଳୁଛନ୍ତି ।' ସେତେବେଳକୁ ଗାନ୍ଧୀଙ୍କୁ ଏକଷଠି ବର୍ଷ । ସେ ପ୍ରତିଦିନ ଘଣ୍ଟେ ସୂତା କାଟୁଥାନ୍ତି ; ପ୍ରତିଦିନ ନିୟମିତ ଡାଇରୀ ଲେଖୁଥାନ୍ତି ଏବଂ ସହକର୍ମୀମାନେ ସେହିପରି କରନ୍ତୁ ବୋଲି ଚାହୁଁଥାନ୍ତି ।

ଗାନ୍ଧୀ ଯେଉଁ ବାଟେ ପଦଯାତ୍ରା କଲେ ସେ ପାଖଆଖ ଗାଁର ତିନିଶହ ମୁଖିଆ ସେମାନଙ୍କ ସରକାରୀ ଚାକିରି ଛାଡ଼ିଦେଲେ । ଗାନ୍ଧୀ ଗୋଟିଏ ଗାଁରୁ ବାହାରିଲେ, ସେ ଗାଁର ଲୋକେ ଆର ଗାଁ ପର୍ଯ୍ୟନ୍ତ ତାଙ୍କ ସଙ୍ଗେ ଚାଲୁଥାନ୍ତି । ଯୁବକ ଯୁବତୀମାନେ ଯାତ୍ରୀମାନଙ୍କ ଦଳରେ ମିଶି ଯାଉଥାନ୍ତି । ଏପ୍ରିଲ୍ ୫ତାରିଖରେ ଗାନ୍ଧୀ ଦାଣ୍ଡୀର ସମୁଦ୍ର କୂଳରେ ପହଞ୍ଚିଲା ବେଳକୁ ଆଶ୍ରମରୁ ବାହାରିଥିବା କ୍ଷୁଦ୍ର ଦଳଟି ବଢ଼ି ବଢ଼ି ହଜାର ହଜାର ସଂଖ୍ୟାର ବିରାଟ ଅହିଂସା ସେନାବାହିନୀ ହୋଇ ଯାଇଥାଏ ।

ଏପ୍ରିଲ୍ ୬ ତାରିଖର ରାତିତମାମ ଆଶ୍ରମବାସୀମାନେ ଭଜନ ବୋଲିବାରେ କଟାଇଲେ ଏବଂ ପ୍ରଭାତ ହେଲା ମାତ୍ରେ ଗାନ୍ଧୀଙ୍କ ସଙ୍ଗେ ସମୁଦ୍ରକୂଳକୁ ଯାତ୍ରା କଲେ । ମହାତ୍ମାଜୀ ସମୁଦ୍ର ଭିତରେ ପଶିଯାଇ ବୁଡ଼ ପକେଇ ଫେରି ଆସି କୂଳରେ ଢେଉ ଆସି ଛାଡ଼ିଯାଇଥିବା ଲୁଣ ଟିକିଏ ହାତରେ ଧରିଲେ । ତାଙ୍କ ପାଖରେ ଠିଆ ହୋଇଥିବା ଶ୍ରୀମତୀ ସରୋଜିନୀ ନାଇଡୁ ଏତିକି ବେଳେ କହି ଉଠିଲେ, 'ଜୟ, ମୁକ୍ତିଦାତା !' ସମୁଦ୍ରକୂଳରୁ ଟିକିଏ ଲୁଣ ଗୋଟେଇବାଦ୍ୱାରା ଗାନ୍ଧୀ ବ୍ରିଟିଶ ସରକାରଙ୍କ ଆଇନ୍ ଅମାନ୍ୟ କଲେ । ବ୍ରିଟିଶ ସରକାର ଏକଚାଟିଆ ଭାବେ ମରାଉଥିବା ଲୁଣ ବ୍ୟତୀତ ଅନ୍ୟ ଲୁଣ ଟିପେ ବି ରଖିବା ବ୍ରିଟିଶ ସରକାରଙ୍କ ଆଇନ୍ ଅନୁସାରେ ଦଣ୍ଡନୀୟ ଅପରାଧ । ଗାନ୍ଧୀ ଛ ବର୍ଷ ହେଲା ଲୁଣ ଖାଇବା ଛାଡ଼ି ଦେଇଥାନ୍ତି । ବ୍ରିଟିଶ ସରକାରଙ୍କ ଲୁଣ କାରବାରକୁ ସେ 'ଅତି ଘୃଣ୍ୟ ଏକଚାଟିଆ

ବେପାର' ବୋଲି ନିନ୍ଦା କରୁଥାନ୍ତି । ଗାନ୍ଧୀଙ୍କ ମତରେ, ପାଣି ଓ ପବନ ପରି ଲୁଣ, ଲୋକଙ୍କର ଅତ୍ୟାବଶ୍ୟକ ଜିନିଷ । ଭାରତର ଦରିଦ୍ର ଶ୍ରମଜୀବୀ ଓ ସେମାନଙ୍କ ଭାରବାହୀ ପଶୁଙ୍କ ପାଇଁ ଏହାର ପ୍ରୟୋଜନ ଆହୁରି ଅଧିକ, କାରଣ ଏଠାରେ ଗ୍ରୀଷ୍ମକଟିବନ୍ଧର ଅତ୍ୟଧିକ ତାପରେ ପରିଶ୍ରମ କରୁଥିବା ଲୋକ ଓ ଜନ୍ତୁଙ୍କର ବହୁତ ଝାଳ ବୋହି ଦେହର ଲବଣାଂଶ ବିଶେଷଭାବେ କ୍ଷୟ ହୋଇଯାଏ ।

ପାଦରେ ନ ଯାଇ ରେଳ ବା ମଟର ଗାଡ଼ିରେ ଗାନ୍ଧୀ ଲୁଣ ମାରିବାକୁ ଯାଇଥିଲେ ତାଙ୍କ କାର୍ଯ୍ୟର ପ୍ରଭାବ ଲୋକଙ୍କ ଉପରେ ଯେ ଖୁବ୍ ପଡ଼ି ନ ଥାନ୍ତା ତାହା ନୁହେଁ । କିନ୍ତୁ ଚବିଶଦିନ ଚାଲି ଚାଲି ଯିବା, ଏତେ ଦିନ ସମଗ୍ର ଭାରତର ଦୃଷ୍ଟି ଏହି ଯାତ୍ରା ପ୍ରତି ଆକୃଷ୍ଟ କରି ରଖିବା, ବାଟରେ ଗାଁ ଗହଳର ଜନତାଙ୍କୁ ସତର୍କ କରି କହିବା, 'ଅପେକ୍ଷା କର, ମୁଁ ଦେଶକୁ ଗୋଟାଏ ଡାକ ଦେବି', ଶେଷରେ ସମୁଦ୍ରପଠାରୁ ଟିପେ ଲୁଣ ଗୋଟାଇ ପ୍ରବଳ ପରାକ୍ରାନ୍ତ ସରକାରଙ୍କର ଆଇନ୍‌କୁ ବାଇ ବଜେଇ ଲଙ୍ଘନ କରି ଅପରାଧୀ ହେବା—ଏ ଯୋଜନା କରିବା କମ୍ କଳ୍ପନା, ସଂଯମ ଓ ସଂଗଠନସାପେକ୍ଷ ନୁହେଁ ; ଏହା ଜଣେ ନିପୁଣ କଳାକାରର ଉଚ୍ଚ-କୋଟିର ଅଭିନୟକୁଶଳତା ବୋଲି ସ୍ୱୀକାର କରିବାକୁ ହେବ । ଦାଣ୍ଡି ଯାତ୍ରାର ଯୋଜନା ଖାଲି ଯେ ନିରକ୍ଷର ଗ୍ରାମ୍ୟ ଚାଷୀର ମନକୁ ଛୁଇଁଲା ତାହା ନୁହେଁ । ଆଧୁନିକ ଜ୍ଞାନବିଜ୍ଞାନରେ ପାରଂଗମ, ଗାନ୍ଧୀଙ୍କର ଦୋଷଦର୍ଶୀ ଓ ବହୁ କ୍ଷେତ୍ରରେ ତାଙ୍କର ନିର୍ମମ ପ୍ରତିରୋଧୀ ଶ୍ରୀଯୁକ୍ତ ସୁଭାଷଚନ୍ଦ୍ର ବୋଷ ଗାନ୍ଧୀଙ୍କର ଦାଣ୍ଡି ଯାତ୍ରାକୁ 'ଏଲ୍‌ବାରୁ ଫେରି ପ୍ୟାରିସ୍ ଅଭିମୁଖେ ନେପୋଲିଅନ୍‌ଙ୍କ ଯାତ୍ରା'ର ସମକକ୍ଷ ବୋଲି କହିଥିଲେ ।

କାର୍ଯ୍ୟଟି ଆରମ୍ଭ କରି ଦେଇ ଗାନ୍ଧୀ ରଙ୍ଗମଞ୍ଚରୁ ଆଡ଼େଇ ହୋଇଗଲେ । ଭାରତ କର୍ମ ନିର୍ଦ୍ଦେଶ ପାଇଗଲା । ବେଳାଭୂମିରୁ ଟିପେ ଲୁଣ ଗୋଟାଇ ଆଣି, ଆଗକୁ କ'ଣ କରିବାକୁ ହେବ ସେ ବିଷୟରେ ସାରା ଭାରତକୁ ସେ ସୂଚନା ଦେଇଦେଲେ ।

ତା' ପରେ ଆରମ୍ଭ ହେଲା ବିନା ଅସ୍ତ୍ରଶସ୍ତ୍ରରେ ଘୋର ବିପ୍ଳବ । ଭାରତର ଦୀର୍ଘ ସମୁଦ୍ରକୂଳ ଅଞ୍ଚଳର ପ୍ରତ୍ୟେକ ଗ୍ରାମବାସୀ ସମୁଦ୍ରକୂଳରୁ ଧାଡ଼ି ଧରି ଲୁଣ ଗୋଟେଇଲେ, କିଂବା ସମୁଦ୍ରରେ ପଶି କଡ଼େଇରେ ସମୁଦ୍ର ପାଣି ମୁନ୍ଦି ଆଣି ଲୁଣ ମାରିବାରେ ଲାଗିଗଲେ । ପୁଲିସ୍ ସଂଖ୍ୟା

ସଂଖ୍ୟା କରି ଲୋକଙ୍କୁ ଗିରଫ୍ କଲେ । ଗାନ୍ଧୀଙ୍କର ତୃତୀୟ ପୁତ୍ର ରାମଦାସ ଆଶ୍ରମର ବହୁ ସଂଖ୍ୟକ କର୍ମୀଙ୍କ ସଙ୍ଗେ ଧରା ହେଲେ । ପଣ୍ଡିତ ମାଳବ୍ୟ ଓ ତାଙ୍କ ପରି ଆଉ କେତେଜଣ ନରମପନ୍ଥୀ ସରକାରଙ୍କ ସଂଗେ ସହଯୋଗ କରୁଥିବା ନେତା ଲେଜିସ୍‌ଲେଟିଭ୍ ଆସେମ୍ବ୍ଲିର ମେମ୍ବର ପଦ ଛାଡ଼ି ଦେଲେ । ପୁଲିସ୍ ବଳପ୍ରୟୋଗ କରିବାକୁ ଆରମ୍ଭ କଲେ । ଆଇନ୍ ଅମାନ୍ୟକାରୀମାନେ ଗିରଫ୍ ହେବାବେଳେ ପ୍ରତିରୋଧ କରୁ ନ ଥିଲେ, କିନ୍ତୁ ସେମାନେ ମାରିଥିବା ଲୁଣ ତାଙ୍କଠାରୁ ଛଡ଼ାଇବାକୁ ପୁଲିସ୍ ଚେଷ୍ଟା କଲାବେଳେ ଛାଡ଼ୁ ନ ଥିଲେ । ମହାଦେବ ଦେଶାଇଙ୍କ ବିବରଣୀରୁ ପ୍ରକାଶ, ଲୁଣକୁ ହାତରୁ ନ ଛାଡ଼ିବାରୁ ଅନେକଙ୍କୁ ପୁଲିସ କନ୍‌ଷ୍ଟେବଲ୍-ମାନେ ମାଡ଼ ଚଢ଼ାଇଥିଲେ ଏବଂ ସତ୍ୟାଗ୍ରହୀଙ୍କ ଆଙ୍ଗୁଠି କାମୁଡ଼ି ପକାଇ-ଥିଲେ । କଂଗ୍ରେସ ସ୍ୱେଚ୍ଛାସେବକମାନେ ବେଆଇନ୍ ଲୁଣ ସହରର ବଡ଼ ରାସ୍ତା ଉପରେ ବିକିବାକୁ ଆରମ୍ଭ କଲେ । ଅନେକେ ଧରା ହୋଇ ଅଳ୍ପ ଅଳ୍ପ ଦିନର କାରାଦଣ୍ଡ ପାଇଲେ । ଦିଲ୍ଲୀରେ ପଣ୍ଡିତ ମଦନମୋହନ ମାଲବ୍ୟ ୧୫ ହଜାର ଲୋକଙ୍କର ଏକ ବିରାଟ ସଭାରେ ଭାଷଣ ଦେଇ ବିଦେଶୀ ବସ୍ତ୍ର ବର୍ଜନ କରିବାକୁ ଉଦ୍‌ବୋଧନ ଦେଲେ ଏବଂ ବକ୍ତୃତା ସରିବା ପରେ ସଭାସ୍ଥଳରେ କିଛି ବେଆଇନ୍ ଲୁଣ କିଣିଲେ । ବମ୍ବେରେ କଂଗ୍ରେସଦଳର ଅଫିସ୍ କୋଠାର ଛାତ ଉପରେ ଚୁଲିରେ କଡ଼େଇ ବସେଇ ଲୁଣ ମରା ହେଉଥିଲା ; ପୁଲିସ ଅଫିସ୍ ଉପରେ ଚଡ଼ାଉ କଲେ । ଷାଠିଏ ହଜାରର ବିରାଟ ଜନତା ଜମିଗଲେ । ଶହ ଶହ ଲୋକଙ୍କୁ ହାତ କଡ଼ି ଦେଇ ବା ହାତରେ ରସି ବାନ୍ଧି ଜେଲ୍‌କୁ ନିଆଗଲା । ଦାଣ୍ଡୀରେ ଲୁଣ ମରାହେବାର ହପ୍ତାକ ପରେ ଆହମଦାବାଦର ଦଶହଜାର ଲୋକ କଂଗ୍ରେସକର୍ମୀଙ୍କଠାରୁ ବେଆଇନ୍ ଲୁଣ ନେଲେ । ଯେ ଯେତେ ପାରିଲା ଦାମ ଦେଲା, ଯାହାଠାରେ ପଇସା ନ ଥିଲା ସେ ମାଗଣାରେ ଲୁଣ ପାଇଲା । ଦାଣ୍ଡୀଠାରେ ଗାନ୍ଧୀ ଯେଉଁ ଲୁଣ ଟିକକ ଗୋଟାଇଥିଲେ ତାହା ନିଲାମ ହେଲା । ସବୁଠାରୁ ଅଧିକ ଡାକ ଡକ୍ଟର୍ କାନୁଗା ୧୬ଶହ ଟଙ୍କାରେ ତାହା ନେଲେ । କଂଗ୍ରେସ ସଭାପତି ପଣ୍ଡିତ ଜବାହାର ଲାଲ ନେହେରୁ ଲବଣ ଆଇନ୍ ଭଙ୍ଗ କରିବା ଅଭିଯୋଗରେ ଆହ୍ଲାବାଦଠାରେ ଗିରଫ୍ ହୋଇ ବିଚାରରେ ଛ' ମାସ ଜେଲ ପାଇଲେ । ଜନଆନ୍ଦୋଳନ ଓ ଆଇନ୍ ଅମାନ୍ୟ ମହାରାଷ୍ଟ୍ର ଓ ବଂଗଳାର ଦୁର୍ଦ୍ଧାନ୍ତ ଅଞ୍ଚଳରେ ଖୁବ୍ ବ୍ୟାପିଲା ।

କଲିକତାରେ, ମେୟର୍ ଜେ. ଏମ୍. ସେନଗୁପ୍ତ ଗୋଟିଏ ସାଧାରଣ ସଭାରେ ସରକାର-ବିରୋଧୀ ଲେଖା ପଢ଼ି ଶୁଣାଇଲେ ଓ ବିଦେଶୀ ଲୁଗା ନ ପିନ୍ଧିବାକୁ ଉଦ୍‌ବୋଧନ ଦେଲେ । ତାଙ୍କୁ ଛ'ମାସ ଜେଲ୍ ଦଣ୍ଡ ହେଲା । ମଦଦୋକାନ, ବିଦେଶୀ ଲୁଗା ଦୋକାନ ଆଗରେ ପିକେଟିଂ ସାରା ଭାରତରେ ଲାଗିଲା । ପର୍ଦ୍ଦାନସୀନ୍ ହୋଇ ଘରୁ ନ ବାହାରୁଥିବା ସଂଭ୍ରାନ୍ତ ପରିବାରର ଝିଅ, ବୋହୂମାନେ ଦାଣ୍ଡକୁ ବାହାରି ସରକାର ବିରୋଧୀ ଶୋଭାଯାତ୍ରାରେ ଯୋଗ ଦେଲେ । ପୁଲିସ୍ ପ୍ରତିହିଂସାପରାୟଣ ହୋଇ ଆଇନ୍ ଅମାନ୍ୟକାରୀଙ୍କୁ ମର୍ମସ୍ଥାନରେ ଲାତ ମାରିଲେ । ବିହାର ପ୍ରଦେଶରେ ଆଇନ୍ ଅମାନ୍ୟ ଚାଲିଲା । ଲେଜିସ୍‌ଲେଟିଭ୍ କାଉନ୍‌ସିଲ୍‌ରୁ ଇସ୍ତଫା ଦେଇଥିବା ମେମ୍ବରଙ୍କ ସମେତ ୧୭ ଜଣ ସତ୍ୟାଗ୍ରହୀଙ୍କୁ ୬ମାସରୁ ୨ ବର୍ଷ ଯାଏଁ ଜେଲ୍ ଦଣ୍ଡ ମିଳିଲା । ଦକ୍ଷିଣ ଆଫ୍ରିକାରେ ପୂର୍ବେ ବାସ କରୁଥିବା ଜଣେ ସ୍ୱାମୀଙ୍କୁ ଅଢ଼େଇ ବର୍ଷ ଜେଲଦଣ୍ଡ ମିଳିଲା । ଶିକ୍ଷକ, ଅଧ୍ୟାପକ ଓ ଛାତ୍ର-ମାନେ ସମୁଦ୍ର କୂଳରେ ଓ ସମୁଦ୍ରଠାରୁ ଦୂରରେ ସ୍ଥଳଭାଗ ଭିତରେ ମଧ୍ୟ ଲୁଣ ମାରି ଦଳଦଳ ହୋଇ ଜେଲ୍‌କୁ ନିଆଗଲେ । ଗାନ୍ଧୀଙ୍କର ଜଣେ ବିଶ୍ୱସ୍ତ ଶିଷ୍ୟ କିଶୋରଲାଲ ମଶରୁୱାଲା, ଏବଂ ଗାନ୍ଧୀଙ୍କର ଅନ୍ୟତମ ଧନିକ ବନ୍ଧୁ ଯମୁନାଲାଲ ବଜାଜ୍ ଦୁଇବର୍ଷ ଲେଖାଏଁ ଜେଲଦଣ୍ଡ ପାଇଲେ । କରାଚୀରେ ଗୋଟାଏ ଶୋଭାଯାତ୍ରା ଉପରେ ପୁଲିସ୍ ଗୁଳି କରିବା ଫଳରେ ଦୁଇଜଣ ଅଳ୍ପବୟସ୍କ ସ୍ୱେଚ୍ଛାସେବକ ପ୍ରାଣ ହରାଇଲେ । ମହାଦେବ ଦେଶାଇ ଲେଖିଥିଲେ, 'ବିହାର ଏକରକମ ନେତାଶୂନ୍ୟ ହୋଇ ଯାଇଛି । ଏ ପ୍ରଦେଶର ନେତୃସ୍ଥାନୀୟ ସମସ୍ତେ ବର୍ତ୍ତମାନ ଜେଲଖାନା ଭିତରେ । କିନ୍ତୁ ଆନ୍ଦୋଳନ ଦବି ଯିବା ପରିବର୍ତ୍ତେ, ଆହୁରି ଅନେକ ଲୁଣମରା କେନ୍ଦ୍ର ସ୍ଥାପିତ ହୋଇ ପାରିଛି ।' ଲୁଣ ମାରିବାର ସରଳ ଉପାୟସମ୍ବଳିତ ପ୍ରଚୁର ପୁସ୍ତିକା କଂଗ୍ରେସ ତରଫରୁ ଛପା ହୋଇ ବଣ୍ଟା ହେଉଥାଏ । ଜାତୀୟ କଂଗ୍ରେସର ଦୁଇଜଣ ନେତା, ବି. ଜି. ଖେର୍ ଓ କେ. ଏମ୍. ମୁନ୍‌ସି ବମ୍ବେରେ ଗିରଫ୍ ହେଲେ । ଦିଲ୍ଲୀରେ, ଦେବଦାସ ଗାନ୍ଧୀ ତିନିମାସ ଜେଲ୍ ପାଇଲେ । ଲୁଣମରା ଆନ୍ଦୋଳନ, ଗିରଫଦାରି ଓ ଜେଲ୍‌ଦଣ୍ଡ ମାନ୍ଦ୍ରାଜ, ପଞ୍ଜାବ ଓ କର୍ଣ୍ଣାଟକକୁ ବ୍ୟାପିଲା । କଂଗ୍ରେସ ନେତାମାନେ ଗିରଫ୍‌ଦାର ହେଲେ । ବହୁ ସହରରେ ହରତାଳ ହେଉଥାଏ । ବିହାରର ପାଟଣାରେ ହଜାର ହଜାର ଲୋକ ସହର ବାହାରେ ଲୁଣ ମରା ହେଉଥିବା ଗୋଟିଏ ସ୍ଥାନକୁ

ଯିବାକୁ ବାହାରନ୍ତେ ପୁଲିସ୍ ସଦରରାସ୍ତା ଅବରୋଧ କଲେ । ଜନତା ଫେରି ନ ଯାଇ ସଡ଼କ ଉପରେ ଓ ଦୁଇକଡ଼ର ବିଲରେ ଚଉବିଶ ଘଣ୍ଟା-କାଳ ଶୋଇ ରହିଲେ । ଲୋକଙ୍କ ଭିତରେ ଶ୍ରୀ ରାଜେନ୍ଦ୍ର ପ୍ରସାଦ ଥିଲେ । ତାଙ୍କଠାରୁ ସେ ଦିନର ଖବର ଶୁଣିଛୁ । ଲୋକଙ୍କୁ ଭଙ୍ଗାଇ ଦେବାକୁ ପୁଲିସ୍ ଅଫିସର୍ ରାଜେନ୍ଦ୍ରବାବୁଙ୍କୁ ଆଦେଶ ଦେଲେ । ଏ ଆଦେଶ ମାନିବାକୁ ରାଜେନ୍ଦ୍ର ପ୍ରସାଦ ନାସ୍ତି କରିବାରେ, ପୁଲିସ୍ ଅଫିସର୍ ଘୋଷଣା କଲେ ଯେ, ସେ ଲୋକଙ୍କ ଉପରେ ଅଶ୍ୱାରୋହୀ ସୈନ୍ୟଙ୍କୁ ମଡ଼ାଇ ଦେବେ । ତଥାପି ଜନତା ଟଳିଲେ ନାହିଁ । ଅଶ୍ୱବାହିନୀ ମାଡ଼ି ଆସନ୍ତେ ଲୋକେ ରାସ୍ତା ଉପରେ ଲମ୍ବ ଲମ୍ବ ହୋଇ ଶୋଇଗଲେ । ଶୋଇଥିବା ଲୋକଙ୍କ ପାଖେ ପହଞ୍ଚି ଅଶ୍ୱମାନେ ସେମାନଙ୍କୁ ଚକଟି ନ ଦେଇ ଠିଆ ହୋଇ ରହିଲେ । ତା' ପରେ ପୁଲିସ୍ କନ୍‌ଷ୍ଟେବଲ୍‌ମାନେ ଆସି ଲୋକଙ୍କୁ ଗୋଟି ଗୋଟି କରି ଟେକି ଟ୍ରକ୍‌ରେ ପକାଇ ଜେଲ୍‌ଖାନାକୁ ବୋହି ନେବାକୁ ଆରମ୍ଭ କଲେ । ଜଣକୁ ଉଠାଇ ଟ୍ରକ୍‌କୁ ନେଇଯାନ୍ତେ, ଆଉ ଜଣେ ଆସି ସେ ସ୍ଥାନରେ ଶୋଇ ଯାଉଥାଏ । ବୋମ୍ବେ ବେଆଇନ୍ ଲୁଣ ବୋହି ଆଣୁଥିବା ବେଳେ ମହାଦେବ ଦେଶାଇ ଗିରଫ୍ ହେଲେ । ଗ୍ରାମମାନଙ୍କରେ ଲକ୍ଷ ଲକ୍ଷ ଲୋକ ନିଜର ବ୍ୟବହାର ପାଇଁ ଲୁଣ ମାରୁଥାନ୍ତି । ଏହା ରୋକିବାକୁ ବ୍ରିଟିଶ ସରକାର ମଫସଲର ସରକାରୀ କର୍ମଚାରୀଙ୍କ ଉପରେ ଚାପ ପକାଉଥାନ୍ତି । ଅନେକ କର୍ମଚାରୀ ଇସ୍ତଫା ଦେଇ ପକାଇଲେ । କେନ୍ଦ୍ର ଲେଜିସ୍‌ଲେଟିଭ୍ ଆସେମ୍ବ୍ଲିର ବାଚସ୍ପତି ବିଠଲଭାଇ ପଟେଲ୍ ଇସ୍ତଫା ଦେଲେ । ବହୁସଂଖ୍ୟକ ନେତୃସ୍ଥାନୀୟା ମହିଳା, ନିଶାଦ୍ରବ୍ୟର ବିକ୍ରୀ ବନ୍ଦକରି ଦେବାପାଇଁ ଲର୍ଡ଼ ଆର୍‌ଉଇନ୍‌ଙ୍କୁ ଗୋଟିଏ ନିବେଦନ ପଠାଇଲେ । ସମୁଦ୍ର କୂଳରେ ଲୁଣ ମରା ହେଉଥିବା ବେଳେ ପଚିଶ ହଜାର ଲୋକ ଦେଖଣାହାରୀ ହୋଇ ଚାରିପଟେ ଘେରି ଠିଆ ହୋଇଥାନ୍ତି । ଏତେ ଭିଡ଼ ହୋଇଥାଏ ଯେ, ପୁଲିସବାଲା ଲୁଣ ମାରିବାବାଲାଙ୍କୁ ଗିରଫ୍ କରିବାକୁ ପଶି ପାରିଲେ ନାହିଁ; ଓଲଟି ସେମାନେ ଲୋକଙ୍କ ଘେରରେ ପଡ଼ିଗଲେ । ଉତ୍ତେଜନା-ପ୍ରବଣ ଉତ୍ତର-ପଶ୍ଚିମ ସୀମାନ୍ତ ପ୍ରଦେଶର ପ୍ରବେଶଦ୍ୱାର ପେଶାବାରଠାରେ ଡେପୁଟି ପୁଲିସ୍ କମିସନର୍ ବସିଥିବା ଗୋଟାଏ ସାଞ୍ଜୁଆ ଗାଡ଼ି ପୂରା ଦମରେ ଜନତା ଭୁମଝି ପଶି ଯାଇ ଅଗୁନକ ଗୁଳିବର୍ଷଣ କରିବାରେ ଲାଗିଲା ; ସତୁରି ଜଣ

ମଲେ ଏବଂ ପ୍ରାୟ ଶହେ ଜଣ ଘାଉଡ଼ା ହେଲେ । ବଙ୍ଗ ପ୍ରଦେଶର କେତେକ ଅଞ୍ଚଳରେ, ଯୁକ୍ତ ପ୍ରଦେଶରେ ଓ ଗୁଜରାଟରେ କୃଷକମାନେ ଖଜଣା ବନ୍ଦ କରିଦେଲେ । ଜାତୀୟବାଦୀ ଖବରକାଗଜମାନଙ୍କ ଉପରେ ସଂବାଦ ଓ ସମ୍ପାଦକୀୟ ପ୍ରକାଶ କରିବା ବିଷୟରେ ନାନା ପ୍ରକାର କଟକଣା ଜାରି କରି-ବାକୁ ସରକାର ଚେଷ୍ଟା କଲେ । ଏହା ଫଳରେ ଅଧିକାଂଶ ଜାତୀୟବାଦୀ ଖବରକାଗଜ ଆପଣା ଆଡ଼ୁ ପ୍ରକାଶନ ବନ୍ଦ କରିଦେଲେ । କଂଗ୍ରେସର ପ୍ରାଦେଶିକ ଅଫିସମାନଙ୍କର ସମସ୍ତ ସମ୍ପତ୍ତି ଓ କାଗଜପତ୍ର ଜବତ୍ କରି ସରକାର ସେ ସବୁରେ ତାଲା ଠୁକି ଦେଲେ । ମାନ୍ଦ୍ରାଜରେ ରାଜ-ଗୋପାଳାଚାରୀ ଗିରଫ୍ ହୋଇ ନଅମାସ ଜେଲଦଣ୍ଡ ପାଇଲେ । ଉତ୍ତର-ପଶ୍ଚିମ ସୀମାନ୍ତର ଆଦିବାସୀ ଅଞ୍ଚଳର ହିଂସ୍ର ଆଫ୍ରିଦିମାନେ ବ୍ରିଟିଶ୍ ସରକାରଙ୍କ ସୀମାନ୍ତରକ୍ଷୀମାନଙ୍କୁ ଆକ୍ରମଣ କଲେ । ଚଟ୍ଟଗ୍ରାମ (ବଙ୍ଗଳା) ନଗରରେ ଦଳେ ସନ୍ତ୍ରାସବାଦୀ ଅସ୍ତ୍ରଶସ୍ତ୍ର ଲୁଟି ନେବା ସକାଶ ଅସ୍ତ୍ରାଗାର ଉପରେ ଚଢ଼ାଉ କଲେ । ଏଥିରେ କେତେଜଣଙ୍କର ପ୍ରାଣ ଗଲା ।

ଆର୍‌ଉଇନ୍‌ଙ୍କ ଜୀବନୀଲେଖକ ଲେଖିଛନ୍ତି, 'ଭାଇସ୍‌ରୟ ଭାରତୀୟ ଜେଲମାନଙ୍କରେ ଅନ୍ୟୂନ ଷାଠିଏ ହଜାର ରାଜନୈତିକ ବନ୍ଦୀଙ୍କୁ ଠୁଳ କରିଥାନ୍ତି ।' ସରକାରୀ ସୂତ୍ରରୁ ଜଣାଯାଏ ବନ୍ଦୀଙ୍କ ସଂଖ୍ୟା ଲକ୍ଷେ ଯାଏଁ ଉଠିଥାଏ । ଆର୍‌ଉଇନ୍‌ଙ୍କ ଜୀବନୀରେ କୁହାଯାଇଛି, 'ଏହି ସମୟରେ ଭାଇସ୍‌ରୟ ଯେଉଁ କାର୍ଯ୍ୟପନ୍ଥା ଗ୍ରହଣ କରିଥିଲେ ତାହାର ଉଲ୍ଲେଖ ମାତ୍ର କଲେ, ସ୍ପଷ୍ଟ ପ୍ରମାଣିତ ହେବ ଯେ, ସେ ଦୁର୍ବଳମନା ଲୋକ ବୋଲି ଯେଉଁ ଅପବାଦ ଉଠିଥିଲା ତାହା ଏକାବେଳକେ ଅମୂଳକ । ଭାଇସ୍‌ରୟଙ୍କ ଆଦେଶ କାର୍ଯ୍ୟକାରୀ କରିବାର ଦାୟିତ୍ୱ ଯେଉଁମାନଙ୍କ ଉପରେ ଥିଲା ସେମାନେ କହନ୍ତି, ତାଙ୍କର ଦୃଢ଼ ଧର୍ମଧାରଣା, ସତେ ଯେପରି ଆନ୍ଦୋଳନ ଦମନ କରିବା ପାଇଁ ତାଙ୍କର ନିର୍ମମ କଠୋରତାକୁ କଠୋରତର କରିଥିଲା·········।'

ଦାଣ୍ଡୀ ବେଳାଭୂମିରେ ଗାନ୍ଧୀ ଲବଣ ଗୋଟାଇବାର ମାସକ ପରେ ଭାରତ କ୍ଷୁବ୍ଧ ବିଦ୍ରୋହର ଉତ୍ତେଜନାରେ ଉତ୍ତପ୍ତ ହୋଇଥାଏ । କିନ୍ତୁ ଚଟ୍ଟଗ୍ରାମ ବ୍ୟତୀତ ଅନ୍ୟ କୌଣସିଠାରେ ଭାରତୀୟଙ୍କ ପକ୍ଷରୁ କୌଣସି ହିଂସାକାଣ୍ଡ ହୋଇ ନ ଥିଲା; କଂଗ୍ରେସ ପକ୍ଷରୁ ତ କୌଣସିଠି କୌଣସି ହିଂସାମୂଳକ କାର୍ଯ୍ୟ ହୋଇ ନ ଥାଏ । ୧୯୨୨ର ଚୌରିଚୌରା

ଘଟଣାରୁ ଭାରତ ପାଇଥିବା ଶିକ୍ଷା ପାସୋର ନ ଥାଏ । ଗାନ୍ଧୀ ଯାଦୁକର ପରି ଯେଉଁ ବିରାଟ ଗଣଆନ୍ଦୋଳନର ସୂତ୍ରପାତ କରିଥାନ୍ତି ଭାରତବାସୀ ତାହାକୁ ପୂର୍ଣ୍ଣ ପ୍ରାଣରେ ସ୍ୱାଗତ କରିଥାନ୍ତି ; ଟିକିଏ ମାତ୍ର ହିଂସାର ଲକ୍ଷଣ ଦେଖିଲେ କେଜାଣି ସେ ଆନ୍ଦୋଳନ ବନ୍ଦ କରିଦେବେ ଏଇ ଆଶଂକାରେ ସେମାନେ ହିଂସାରୁ ସଂପୂର୍ଣ୍ଣ ନିବୃତ୍ତି କରି ରହିଥାନ୍ତି ।

ମେ ମାସର ୪ତାରିଖ । ଦାଣ୍ଡୀ ନିକଟ କରାଡ଼ିନାମକ ଗ୍ରାମରେ ଗାନ୍ଧୀଙ୍କର ବସା ହୋଇଥାଏ । ଗୋଟିଏ ବୁଢ଼ା ଆମ୍ବଗଛର ଶାଖା ତଳେ ହୋଇଥିବା ଗୋଟିଏ ଝୋପଡ଼ିରେ ସେ ଖଟ ଖଣ୍ଡିଏ ପକାଇ ଶୋଇ ଯାଇଥାନ୍ତି । ତାଙ୍କ ପାଖେ ଆଉ କେତେଜଣ ଭକ୍ତ ବି ଶୋଇଥାନ୍ତି । ଆମ୍ବ ତୋଟାରେ ଖଣ୍ଡେ ଦୂରରେ ଅନ୍ୟ ଆଶ୍ରମବାସୀମାନେ ନିଘୋଡ଼ ନିଦରେ ଶୋଇଥାନ୍ତି । ମେ ୪ ଓ ୫ ତାରିଖର ରାତି ୧୨ଟା ୪୫ ମିନିଟରେ ଗରୁଆ ପାଦ ଶବ୍ଦ ଶୁଣାଗଲା । ରାଇଫଲ, ପିସ୍ତଲ୍ ଓ ବର୍ଚ୍ଛାରେ ସଜ୍ଜିତ ୩୦ଜଣ ଭାରତୀୟ ସଶସ୍ତ୍ର ପୁଲିସ୍ କନ୍‌ଷ୍ଟେବଲ୍, ଦୁଇଜଣ ଭାରତୀୟ ପୁଲିସ୍ ଅଫିସର୍, ଏବଂ ସୁରଟର ଗୋରା ଜିଲା ମାଜିଷ୍ଟ୍ରେଟ୍ ତାଳପତ୍ରମୟ ଗାନ୍ଧୀଙ୍କ ଛତାକୁ ଚଢ଼ାଉ କଲେ । ସଶସ୍ତ୍ର ପୁଲିସ୍ କନ୍‌ଷ୍ଟେବଲ୍ କେତେଜଣ ଗାନ୍ଧୀଙ୍କ କୁଡ଼ିଆରେ ପଶିଗଲେ ଏବଂ ଇଂରେଜ ଜିଲାମାଜିଷ୍ଟ୍ରେଟ୍ ଗାନ୍ଧୀଙ୍କ ମୁହଁ ଉପରେ ଟର୍ଚ୍ଚ-ଲାଇଟ୍ ପକାଇଲେ । ଗାନ୍ଧୀ ଉଠିପଡ଼ିଲେ, ଚାରିଆଡ଼େ ଆଖି ପକାଇ ଘଟଣାଟା କଳିନେଲେ ଏବଂ ସାହେବଙ୍କୁ କହିଲେ, 'ଆପଣ ମୋତେ ଚାହାଁନ୍ତି ?'

ମାମୁଲି ସରକାରୀ କାଇଦାରେ ମାଜିଷ୍ଟ୍ରେଟ ପଚାରିଲେ, 'ତୁମର ନାମ ମୋହନଦାସ କରମଚାନ୍ଦ ଗାନ୍ଧୀ ?'

ଗାନ୍ଧୀ ହଁ କଲେ ।

ମାଜିଷ୍ଟ୍ରେଟ୍ କହିଲେ, 'ମୁଁ ତୁମକୁ ଗିରଫ୍ କରିବାକୁ ଆସିଛି ।'

ଗାନ୍ଧୀ ନମ୍ର ଭାବରେ କହିଲେ, 'ଅନୁଗ୍ରହ କରି ମୋର ନିତ୍ୟକର୍ମ ସାରି ଦେବାକୁ କିଛି ସମୟ ଦିଅନ୍ତୁ ।'

ମାଜିଷ୍ଟ୍ରେଟ୍ ରାଜି ହେଲେ ।

ସେ ପର୍ଯ୍ୟନ୍ତ ପାଟିରେ ଥିବା ସାମାନ୍ୟ ଦାନ୍ତ କେତୋଟିକୁ ଘଷୁଘଷୁ ଗାନ୍ଧୀ ପଚାରିଲେ, 'ଜିଲା ମାଜିଷ୍ଟ୍ରେଟ୍ ମହାଶୟ, କେଉଁ ଧାରାରେ ମୁଁ ଗିରଫ୍ ହେଉଛି ଜାଣି ପାରିବି କି ? ବୋଧହୁଏ ୧୨୪ ଧାରା ?'

'ନା, ନା, ୧୨୪ ଧାରାରେ ନୁହେଁ । ମୋ ପାଖରେ ଲିଖିତ ଓ୍ୱାରେଣ୍ଟ ଅଛି ।'

ଏତେବେଳକୁ ଗାନ୍ଧୀଙ୍କ କୁଡ଼ିଆ ଗୃହପଟେ ହତା ଭିତରେ ଶୋଇ-ଥିବା ସମସ୍ତେ ଆସି ରୁଣ୍ଡ ହୋଇଥାନ୍ତି । ଗାନ୍ଧୀ ପଚାରିଲେ, 'ଓ୍ୱାରେଣ୍ଟଟା ପଢ଼ି ମୋତେ ଶୁଣାଇଦେବାକୁ ଅନୁରୋଧ କରି ପାରେ କି ? ଆଶାକରେ ଏଥିରେ ଆପଣ ବିରକ୍ତ ହେବେ ନାହିଁ ।'

ମାଜିଷ୍ଟ୍ରେଟ୍ ପଢ଼ିଲେ, 'ମୋହନଦାସ କରମଚାନ୍ଦ ଗାନ୍ଧୀଙ୍କ କାର୍ଯ୍ୟ-ଦ୍ୱାରା ବିପଦ ହୋଇପାରେ ବୋଲି ଏକ୍‌ଜିକ୍ୟୁଟିଭ୍ କାଉନ୍‌ସିଲ୍‌ର ପରାମର୍ଶାନୁସାରେ ଗଭର୍ଣ୍ଣର ମନେ କରୁଥିବାରୁ, ଗଭର୍ଣ୍ଣର ନିର୍ଦ୍ଦେଶ ଦେଉଛନ୍ତି ଯେ, ସେହି ମୋହନଦାସ କରମଚାନ୍ଦ ଗାନ୍ଧୀଙ୍କୁ ୧୮୨୭ ଖ୍ରୀଷ୍ଟାବ୍ଦର ୩୫ ନମ୍ବର ପ୍ରବିଧାନ ଅନୁସାରେ ଅଟକ କରାଯାଉ; ଗଭର୍ଣ୍ଣର୍ ଯେତେଦିନ ଉଚିତ ମନେ କରିବେ ସେ ପର୍ଯ୍ୟନ୍ତ ତାଙ୍କୁ ଜେଲ୍ ଦିଆଯାଉ; ତୁରନ୍ତ ତାଙ୍କୁ ୟେରବାଡ଼ା କେନ୍ଦ୍ର ଜେଲକୁ ନିଆଯାଉ ।'

ଗୋଟାଏ ବାଜିଲା, ତଥାପି ଗାନ୍ଧୀ ଦାନ୍ତ ଘଷୁଥାନ୍ତି । ତରତର ହେବାକୁ ହାକିମ କହିଲେ । ଗାନ୍ଧୀ କେତେକ ପ୍ରୟୋଜନ ଜିନିଷ ଓ କାଗଜ ପତ୍ର ଗୋଟିଏ ଥଳିଆରେ ପୂରାଇ ହାକିମଙ୍କ ଆଡ଼କୁ ଚାହିଁ କହିଲେ, 'ଆଉ ସାମାନ୍ୟ କେତୋଟି ମିନିଟ୍ ଉପାସନା କରିବାକୁ ଦିଅନ୍ତୁ ।'

ହାକିମ ମୁଣ୍ଡ ଲଡ଼ି ହଁ କଲେ । ଗୋଟିଏ ସୁପରିଚିତ ହିନ୍ଦୁ ସ୍ତୋତ୍ର ବୋଲିବାକୁ ଗାନ୍ଧୀ ପଣ୍ଡିତ ଖରେଙ୍କୁ ଅନୁରୋଧ କଲେ । ଆଶ୍ରମବାସୀମାନେ ପାଳି ଧରି ଗାଉଥାନ୍ତି, ଗାନ୍ଧୀ ବସି ମୁଣ୍ଡ ନୁଆଇଁ ଭଗବତ୍ ପ୍ରାର୍ଥନା କରୁଥାନ୍ତି । ଉପାସନା ସରିଲା ପରେ ସେ ଉଠି ମାଜିଷ୍ଟ୍ରେଟ୍‌ଙ୍କ ପାଖରେ ଠିଆ ହୁଅନ୍ତେ, ମାଜିଷ୍ଟ୍ରେଟ୍ ବାହାରେ ଅପେକ୍ଷା କରୁଥିବା ମଟରକୁ ତାଙ୍କୁ ବାଟ କଢ଼ାଇ ନେଲେ ।

ଗାନ୍ଧୀଙ୍କ ବିରୁଦ୍ଧରେ ହୋଇଥିବା ଅଭିଯୋଗର ବିଚାର ହେଲା ନାହିଁ କି ନିର୍ଦ୍ଦିଷ୍ଟ ଦଣ୍ଡ କିଛି ଦିଆଗଲା ନାହିଁ, କେତେ ଦିନ କାରାବାସରେ ରହିବେ ତାହା ମଧ୍ୟ ନିର୍ଦ୍ଦିଷ୍ଟ ହେଲା ନାହିଁ । ତାଙ୍କୁ ଯେଉଁ ଅର୍ଡ଼ିନାନ୍‌ସ୍ ବଳରେ ଗିରଫ କରାଗଲା ତାହା ଜାରି ହେଲା ବେଳେ ଭାରତରେ ବ୍ରିଟିଶ୍ ସରକାର ନ ଥିଲା । ସେତେବେଳେ ଇଷ୍ଟ ଇଣ୍ଡିଆ କଂପାନୀର ରାଜୁତି । କଂପାନୀ ଓ ଦେଶୀୟ ରାଜାମାନଙ୍କ ମଧ୍ୟରେ ସମ୍ପର୍କ ନିୟନ୍ତ୍ରଣ କରିବା ପାଇଁ ସେହି ସମୟରେ ଏ ପ୍ରବିଧାନର ପ୍ରଣୟନ ହୋଇଥିଲା ।

ଜେଲଖାନାର କର୍ତ୍ତୃପକ୍ଷ ଗାନ୍ଧୀଙ୍କର ଉଚ୍ଚତା ମାପି ଲେଖିଲେ—ପାଞ୍ଚଫୁଟ ପାଞ୍ଚ ଇଞ୍ଚ । ପରେ, ଦୈବାତ୍ ସେ ଜେଲଖାନାରୁ ଖସି ପଳାଇ ଧରା ପଡ଼ିଲେ ତାଙ୍କୁ ଚିହ୍ନଟ କରିବା ପାଇଁ ତାଙ୍କ ଦେହରେ ଥିବା ଚିହ୍ନ ଖୋଜି ଖାତାରେ ଦରଜ ହେଲା—ଡାହାଣ ପଟ ଜଂଘରେ ଗୋଟାଏ କଟା ଦାଗ, ଡାହାଣ ଆଖିର ତଳ ପତାରେ ଗୋଟିଏ ଗ୍ରେଟ କଳା ଜାଇ, ଏବଂ ବାଁ କହୁଣିର ତଳକୁ ଗୋଟିଏ ମଟର ଦାନା ଆକାରର ଦାଗ ।

କାରାଗୃହରେ ଗାନ୍ଧୀଙ୍କୁ ଖୁବ୍ ଆରାମ ଲାଗିଲା । ବନ୍ଦୀ ହେବାର ହପ୍ତାକ ପରେ ସେ ମିସ୍ ମଡ୍‌ଲିନ୍ ସ୍ଲେଡ୍‌ଙ୍କ ପାଖକୁ ଲେଖିଥିଲେ, 'ମୁଁ ଖୁବ୍ ଖୁସି ଅଛି, ବହୁ ଦିନରୁ ଯେଉଁ ନିଦ ବାକିଆ ପଡ଼ିଥିଲା ତା'କୁ ଭରଣା କରୁଛି ।' ଜେଲ୍‌ରେ ତାଙ୍କ ପ୍ରତି ଖୁବ୍ ଭଲ ବ୍ୟବହାର କରାଯାଉଥିଲା । ଜେଲଖାନାର ଛେଳୀ ତାଙ୍କ ଆଗରେ ଦୁହାଁ ହେଉଥିଲା । ତାଙ୍କ ମୌନ ଦିବସରେ ସେ ତାଙ୍କ ଆଶ୍ରମର ସାନ ପିଲାଙ୍କ ପାଖକୁ ଖଣ୍ଡିଏ ଚିଠି ଲେଖି ଥିଲେ ।

କୁନି ପକ୍ଷୀଟିମାନେ, ସତ ପକ୍ଷୀମାନେ ବିନା ପକ୍ଷରେ ଉଡ଼ିପାରନ୍ତି ନାହିଁ । ପକ୍ଷ ଥିଲେ ତ ସମସ୍ତେ ଉଡି ପାରନ୍ତି, ମାମୁଲି କଥା । କିନ୍ତୁ, ପକ୍ଷ ନ ଥାଇ ମଧ୍ୟ, ତୁମେମାନେ ଯଦି ଉଡ଼ିବାକୁ ଶିଖିବ ତେବେ ତୁମର ସବୁ ଦୁଃଖ ଓ ଅସୁବିଧା ଏକାବେଳକେ ଉଭେଇଯିବ । ବିନା ପକ୍ଷୀରେ କିପରି ଉଡ଼ି ହେବ ତୁମମାନଙ୍କୁ ଶିଖାଇବି ।

ଜାଣ ତ ମୋର ପକ୍ଷୀ ନାହିଁ , ତଥାପି ମୁଁ ପ୍ରତ୍ୟହ ମନେ ମନେ ତୁମ ପାଖକୁ ଉଡ଼ିକରି ଆସୁଛି । ହେଇଟି ମତେ ଦିଶୁଛି, କୁନି ବିମଳା, ହେଇଟି ହରି, ହେଇଟି ଧରମକୁମାର । ତୁମେମାନେ ବି ସେଇପରି ମନେ ମନେ ମୋ ପାଖକୁ ଉଡ଼ି ଆସିପାର··· । ପ୍ରଭୁଭାଇ ସନ୍ଧ୍ୟାବେଳେ ଉପାସନା କରାଇଲା ବେଳେ ତୁମମାନଙ୍କ ଭିତରୁ କିଏ କିଏ ଭଲ କରି ଉପାସନା ନ କରୁଛ ସେ କଥା ବି ମୋତେ କହିବାକୁ ପଡ଼ିବ ।

• ସମସ୍ତେ ଦସ୍ତଖତ କରି ମୋ ପାଖକୁ ଖଣ୍ଡିଏ ଚିଠି ଦେବ ; ଯେଉଁ-ମାନେ ଦସ୍ତଖତ କରି ନ ପାରିବ ସେମାନେ ଚିଠି ତଳେ ଗୋଟିଏ ଗୋଟିଏ ଛକି ପକାଇବ ।

ବାପୁର ଆଶୀର୍ବାଦ

ଗିରଫ୍ ହେବାର ଠିକ୍ ପୂର୍ବରୁ ଗାନ୍ଧୀ ଭାଇସ୍‌ରୟଙ୍କ ପାଖକୁ ଖଣ୍ଡିଏ ଚିଠି ଲେଖିଥିଲେ । ସେଥିରେ ସେ ନିଜର ଭବିଷ୍ୟତ କର୍ମ-ଯୋଜନାର ସୂଚନା ଦେଇଥିଲେ । ସେଥିରେ ସେ ଲେଖିଥିଲେ, 'ଭଗବାନ୍‌ଙ୍କର ମରଜି ହେଲେ', ସେ କେତେ ଜଣ ସହକର୍ମୀଙ୍କୁ ସାଙ୍ଗରେ ନେଇ ଧର୍ଷଣା ଲୁଣକାରଖାନା ଲୁଟି କରିବେ । ଆପାତତଃ ଭଗବାନଙ୍କର ମରଜି ହେଲା ନାହିଁ, କିନ୍ତୁ ଗାନ୍ଧୀଙ୍କ ସହକର୍ମୀମାନେ, ଗାନ୍ଧୀଙ୍କ ଅନୁପସ୍ଥିତିରେ ମଧ୍ୟ, ସେ କଳ୍ପନା କାର୍ଯ୍ୟରେ ପରିଣତ କରିବାକୁ ବାହାରିଲେ । ଧର୍ଷଣା ବମ୍ବେର ଦେଢ଼ଶହ ମାଇଲ ଉତ୍ତରରେ ଅବସ୍ଥିତ । ନାଇକବି ଶ୍ରୀମତୀ ସରୋଜିନୀ ନାଇଡ଼ୁ ପଚିଶ ଶହ ସ୍ୱେଚ୍ଛାସେବକଙ୍କୁ ଧରି ଧର୍ଷଣାରେ ଯାଇ ପହଞ୍ଚିଲେ । ସକାଳେ ଉପାସନା କରି ସାରି ସେମାନେ ଧର୍ଷଣା କାରଖାନା ଭିତରେ ପଶିବାକୁ ଯାତ୍ରା କଲେ । ଶ୍ରୀମତୀ ନାଇଡ଼ୁ ସ୍ୱେଚ୍ଛାସେବକମାନଙ୍କୁ ସାବଧାନ କରିଥାନ୍ତି ଯେ, ସେମାନଙ୍କୁ ମାଡ ହେବ ହିଁ ହେବ । କିନ୍ତୁ ସେ ତାଗିଦ୍ କରିଥାନ୍ତି, 'ମାଡ଼ ହେଲେ ତୁମେମାନେ ବାଧା ଦେବନାହିଁ ; ମାଡ଼ ରୋକିବାକୁ କେହି ହାତ ବି ଟେକିବ ନାହିଁ ।'

ୟୁନାଇଟେଡ୍ ପ୍ରେସ୍‌ର ସଂବାଦଦାତା ୱେବ୍ ମିଲର୍, ଯେ ଦ୍ୱିତୀୟ ମହାଯୁଦ୍ଧ ବେଳେ ଇଂଲଣ୍ଡରେ ପ୍ରାଣ ହରାଇଲେ ସେ ସେଦିନ ଏହି ଘଟଣାସ୍ଥଳରେ ଥିଲେ । ସମସ୍ତ ଘଟଣା ସେ ଆଦ୍ୟପ୍ରାନ୍ତ ବର୍ଣ୍ଣନା କରି ଯାଇଛନ୍ତି । ଅଭିଯାନକାରୀମାନଙ୍କର ନେତା ହୋଇଥାନ୍ତି ମଣିଲାଲ ଗାନ୍ଧୀ । ଏମାନେ ନିରବରେ ଲୁଣକିଆରୀମାନଙ୍କ ଆଡ଼କୁ ମାଡ଼ି ଆସିଲେ । ଲୁଣ କିଆରୀମାନଙ୍କ ଚାରିପଟେ ଗହିରିଆ ଖାଇ; ଖାଇ ଭିତର ପଟେ ତାରକଣ୍ଟାର ବାଡ଼, ଏ ବାଡ଼କୁ ଜଗି ରହିଥାନ୍ତି ଛ'ଜଣ ବ୍ରିଟିଶ୍ ଅଫିସର୍‌ଙ୍କ ଅଧୀନରେ ଚାରିଶହ ସୁରଟ୍‌ର ପୁଲିସ୍ କନ୍‌ଷ୍ଟେବଲ୍ । 'ଗାନ୍ଧୀବାଲାମାନେ ନିଃଶବ୍ଦରେ ଅଗ୍ରସର ହୋଇ ବାଡ଼ାର ଶହେ ଗଜ ଦୂରରେ ଆଗକୁ ଆସି-ବାକୁ ପ୍ରସ୍ତୁତ ହୋଇ ଠିଆ ହେଲେ । ଏମାନଙ୍କ ଭିତରୁ ବଛା ହୋଇ ଦଳେ ଧାଡ଼ି ଧରି ଆଗେଇଲେ ଓ ଖାଇ ପାରି ହୋଇ କଣ୍ଟା ବାହାରିଥିବା ଲୁହା-ତାରବାଡ଼ାର ପାଖରେ ପହଞ୍ଚିଲେ ।' ଫେରିଯାଅ ବୋଲି ପୁଲିସ୍ ଅଫିସର୍‌ମାନେ ହୁକୁମ ଦେଲେ । କିନ୍ତୁ ଏ ହୁକୁମ୍ ନ ମାନି ସତ୍ୟାଗ୍ରହୀମାନେ ଆହୁରି ଆଗେଇଥାନ୍ତି । ୱେବ୍ ମିଲର୍ ଲେଖିଛନ୍ତି, 'ଏତିକିବେଳେ, ଅଫିସର୍‌ଙ୍କଠାରୁ ଗୋଟିଏ ଆଦେଶବାକ୍ୟ ଶୁଣି ଅଗଣନ ଭାବେ କେତେ

କୋଡ଼ ଘରଣସ୍ପ ପୁଲିସ୍ କନ୍‌ଷ୍ଟେବଲ୍ ଅଗ୍ରସର ହେଉଥିବା ସତ୍ୟାଗ୍ରହୀମାନଙ୍କ ଉପରେ ମାଡ଼ ପଡ଼ିଲେ ଓ ଲୁହାଗୋବ ବସିଥିବା ଠେଙ୍ଗାରେ ସେମାନଙ୍କୁ ନିର୍ଭୁଲ ମାଡ଼ ଚଢ଼ାଇବାକୁ ଲାଗିଲେ । ବର୍ଷା ହେଲା ପରି ମୁଣ୍ଡରେ ମାଡ଼ ବସୁଥାଏ ; କିନ୍ତୁ ମାଡ ରୋକିବାକୁ ଜଣେ କେହି ବି ସ୍ୱେଚ୍ଛାସେବକ ହାତ ଉଠାଉ ନ ଥାନ୍ତି । ପିଲମାନେ, ଖେଳଲବେଳେ ମାଟିରେ ଗୁଡ଼ାଏ କାଠି ପୋତି ଯେପରି ଏକାପାହାରକେ ସେ ସବୁ ଶୁଆଇ ଦିଅନ୍ତି, ସେହିପରି ସ୍ୱେଚ୍ଛାସେବକମାନେ ପୁଲିସଙ୍କ ଲାଠିମାଡ଼ରେ ଶୋଇଗଲେ । ସ୍ୱେଚ୍ଛାସେବକଙ୍କ ମୁକୁଳା ମୁଣ୍ଡରେ ପୁଲିସ୍‌ଲାଠିର ଠୁ ଠୁ ଶବ୍ଦ, ମୁଁ ଯେଉଁଠାରେ ଠିଆ ହୋଇଥିଲି ସେଠାକୁ ଶୁଭୁଥାଏ । ଏ ଶବ୍ଦ ଶୁଣି ଦେହ ଶୀତେଇ ଯାଉଥାଏ । ଯେଉଁ ସ୍ୱେଚ୍ଛାସେବକମାନେ ଦୂରରେ ଠିଆ ହୋଇ ତାଙ୍କ ପାଳି ପଡ଼ିବାକୁ ଅପେକ୍ଷା କରି ରହିଥାନ୍ତି ସେମାନେ, ସହକର୍ମୀମାନଙ୍କ ମୁଣ୍ଡରେ ପଡ଼ୁଥିବା ପ୍ରତି ପାହାରରେ ନିଃଶ୍ୱାସ ରୋକି ସମବେଦନାରେ ଉହୁ ଉହୁ ହେଉଥାନ୍ତି । ଯେଉଁମାନଙ୍କ ମୁଣ୍ଡରେ ମାଡ଼ ବାଜୁଥାଏ ସେମାନେ ଭୂଇଁରେ ବେହୋସ ହୋଇ ଶୋଇଯାଉଥାନ୍ତି, କିମ୍ବା ତାଳୁ ଫାଟିଯିବା ଯନ୍ତ୍ରଣାରେ ନିଃଶବ୍ଦରେ ଦେହ ସାଙ୍କୁଡ଼ ଦେଉଥାନ୍ତି······। ଯେଉଁମାନେ ମାଡ଼ରୁ ବର୍ତ୍ତିଯାଇ ଚାଲିବାକୁ ସମର୍ଥ ଥାନ୍ତି ସେମାନେ ଧାଡ଼ି ନ ଭାଙ୍ଗି, ସଂକଳ୍ପ ନ ଛାଡ଼ି, ମାଡ଼ ଖାଇ ତଳେ ପଡ଼ିବା ପର୍ଯ୍ୟନ୍ତ ଆଗେଇଥାନ୍ତି ।' ପ୍ରଥମ ଧାଡ଼ି ବନିସୋଡ଼ି ତଳେ ଶୋଇଯିବା ପରେ, ଆଉ ଗୋଟିଏ ଧାଡ଼ି ଆଗେଇ ଆସୁଥାନ୍ତି । ଓ୍ୱେବ୍ ମିଲର୍‌ଙ୍କ ଭାଷାରେ, 'ପ୍ରତ୍ୟେକ ସ୍ୱେଚ୍ଛାସେବକ ଜାଣିଥିଲେ ଯେ, ମିନିଟ୍ କେତୋଟାରେ ସେ ମାଡ଼ ଖାଇ ତଳେ ପଡ଼ିବେ, ହୁଏତ ମାଡ଼ରେ ପ୍ରାଣ ଚାଲିଯିବ, ତଥାପି କାହାରି ମନରେ ଭୟ ବା ଦ୍ୱିଧା ମୁଁ ଲକ୍ଷ୍ୟ କରି ପାରି ନ ଥିଲି । ପ୍ରତ୍ୟେକେ ମୁଣ୍ଡ ଉପରକୁ କରି ଧୀର ସ୍ଥିରଭାବେ ଅଗ୍ରସର ହେଉଥାନ୍ତି । ରଣଗୀତ ବୋଲି କେହି ପ୍ରରୋଚିତ କରୁ ନ ଥାଏ, ବାହାବା କହି କେହି ଉତ୍ସାହ ଦେଉ ନ ଥାଏ, ଘୋର ମାଡ଼ ବା ମୃତ୍ୟୁରୁ କେହି ଜଣେ ଖସିଯିବେ ବୋଲି ଆଶା କରିବାର କୌଣସି କାରଣ ନ ଥାଏ । ପୁଲିସ୍ ମାଡ଼ ଆସି, ଯନ୍ତ୍ରଚାଳିତ ହେଲା ପରି, ଦ୍ୱିତୀୟ ଧାଡ଼ିର ସ୍ୱେଚ୍ଛାସେବକଙ୍କୁ ମାରି ଶୁଆଇ ଦେଲେ । କୌଣସି ଜଣେ ବି ଆକ୍ରମଣର ପ୍ରତିରୋଧ କଲେ ନାହିଁ କି ରକ୍ଷା ପାଇବାକୁ ଲେଶମାତ୍ର ଚେଷ୍ଟା କଲେ ନାହିଁ । ସ୍ୱେଚ୍ଛାସେବକମାନେ ବି ଯନ୍ତ୍ରଚାଳିତ ହେଲା ପରି, ମାଡ଼ ଖାଇ ଭୂଶାୟୀ ହେବା ପର୍ଯ୍ୟନ୍ତ ଆଗକୁ ଚାଲୁଥାନ୍ତି ।'

ତୃତୀୟ ଦଳରେ ପଚଶଜଣ ସ୍ୱେଚ୍ଛାସେବକ ପୁଣି ଆସି ପୁଲସ୍‌ଙ୍କ ସାମନାରେ ବସି ରହିଲେ । ଓ୍ୱେବ୍ ମିଲର୍ ପ୍ରତ୍ୟକ୍ଷ ଦେଖି ଲେଖିଛନ୍ତି, 'ପୁଲସ୍ ଅତି ବର୍ବର ଭାବେ ଏମାନଙ୍କ ତଳ ପେଟ ଓ ଜାଙ୍ଗୁଳରେ ଗୋଇଠା ମାରିବାକୁ ଲାଗିଲେ ।' ଯାଙ୍କ ପରେ ଆଉ ଦଳେ ସ୍ୱେଚ୍ଛାସେବକ ବି ଆସି ପୁଲସ୍‌ଙ୍କ ଆଗରେ ବସିଲେ । ପୁଲସ୍ ଅତିଶୟ ଉତ୍ତ୍ୟକ୍ତ ହୋଇ ଯାଙ୍କର ହାତ, ଗୋଡ଼ ଧରି ଘୋଷାରି ଘୋଷାରି ନେଇ ଖାଇ ଭିତରେ ପକାଇ-ଦେଲେ । ମିଲର୍ ଲେଖିଛନ୍ତି, 'ମୁଁ ଯେଉଁଠି ଠିଆ ହୋଇଥିଲି ତା'ର ପାଖରେ ପୁଲସ୍ ଜଣକୁ ଟାଣିଟାଣି ଆଣି ଖାଇକୁ ପେଲି ଦେଲେ । ସେ ବଚରା ପାଣିରେ ଭୁସ୍ କରି ପଡ଼ିବାରେ ପାଣି ଛିଟିକା ଆସି ମୋର ଲୁଗାପଟା ଓଦା ହୋଇଗଲା । ଆଉ ଜଣେ ସ୍ୱେଚ୍ଛାସେବକକୁ ଆଣି ଖାଇରେ ପକାଇ-ଦେଇ ତା' ମୁଣ୍ଡରେ ଜଣେ ପୁଲସ୍‌ବାଲା ନିର୍ଘାତ ପାହାରେ କଷିଦେଲା । ବହୁ ସମୟ ପର୍ଯ୍ୟନ୍ତ, ରକ୍ତସ୍ନାନ ହୋଇଥିବା ନିଶ୍ଚେଷ୍ଟ ଲୋକଙ୍କୁ ଖଟିଆରେ ପକାଇ ବୁହା ଲାଗିଥାଏ ।'

ଜଣେ ଇଂରେଜ ଅଫିସର୍ ଶ୍ରୀମତୀ ନାଇଡୁଙ୍କ ପାଖକୁ ଲାଗି ଆସି ତାଙ୍କ ଡେଣାରେ ହାତ ମାରି କହିଲେ, 'ସରୋଜିନୀ ନାଇଡୁ ! ତୁମକୁ ଗିରଫ୍ କରାଗଲା ।' ଶ୍ରୀମତୀ ନାଇଡୁ ଅଫିସର୍‌ଙ୍କ ହାତ ଛିଞ୍ଚାଡ଼ି ଦେଇ କହିଲେ, 'ଗିରଫ୍ କଲ ତ, ଚାଲ ଯିବି । କିନ୍ତୁ ମୋତେ ଛୁଅଁ ନାହିଁ ।' ମଣିଲାଲଙ୍କୁ ମଧ୍ୟ ଗିରଫ୍ କରାଗଲା ।

ଓ୍ୱେବ୍ ମିଲର୍ ଆହୁରି ଲେଖିଛନ୍ତି, 'ସକାଳ ଏଗାରଟା ବେଳକୁ ସୂର୍ଯ୍ୟ-ତାପ ୧୧୬ ଡିଗ୍ରୀ ପର୍ଯ୍ୟନ୍ତ ବଢ଼ିଯାଇଥାଏ । ଗାନ୍ଧୀବାଲାଙ୍କ ସତ୍ୟାଗ୍ରହ ବନ୍ଦ ରହିଲା ।' ମିଲର୍ ଅସ୍ଥାୟୀଭାବେ ଏହି ଉଦ୍ଦେଶ୍ୟରେ ହୋଇଥିବା ହାସପାତାଲକୁ ଯାଇ ଦେଖିଲେ ଓ ସେଠାରେ ଘାଉଡ଼ି ହୋଇ ପଡ଼ିଥିବା ୩୨୦ ଜଣଙ୍କୁ ଗଣିଲେ । ଏମାନଙ୍କ ଭିତରୁ ଅନେକେ ସେ ପର୍ଯ୍ୟନ୍ତ ବେହୋସ୍ ହୋଇ ଥାନ୍ତି, ଅନ୍ୟମାନେ, ଦେହରେ ଓ ମୁଣ୍ଡରେ ବାଜିଥିବା ମାଡ଼ ଯୋଗୁଁ ଯନ୍ତ୍ରଣା ଭୋଗୁଥାନ୍ତି । ଦୁଇ ଜଣ ପ୍ରାଣ ହରାଇଥାନ୍ତି । ଯା ପରେ ଆଉ କେତେ ଦିନ ପର୍ଯ୍ୟନ୍ତ ଏହି ଘଟଣାର ପୁନରାବୃତ୍ତି ଚାଲି ରହିଲା ।

ଭାରତ ଏଥର ହେଲା ମୁକ୍ତବନ୍ଧନ । ଅବଶ୍ୟ ଆଇନତଃ ଶାସନ-ସଂସ୍ଥାରେ କୌଣସି ପରିବର୍ତ୍ତନ ହୋଇ ନ ଥାଏ । ପୂର୍ବପରି ଭାରତ ଥାଏ ଇଂରେଜଙ୍କର ଗୋଟିଏ ଉପନିବେଶ ହୋଇ । ବସ୍ତୁତଃ ଭାରତର ଯେଉଁ

ବିରାଟ ପରିବର୍ତ୍ତନ ସଂଘଟିତ ହୋଇଥିଲା ତା'ର ସ୍ୱରୂପ ରବୀନ୍ଦ୍ରନାଥ ବର୍ଣ୍ଣନା କରି ଯାଇଛନ୍ତି । ୧୯୩୦, ମେ ୧୭ ତାରିଖରେ ସେ 'ମାଞ୍ଚେଷ୍ଟର ଗାର୍ଡିଆନ୍' ସମ୍ବାଦପତ୍ରକୁ ବିବୃତି ଦେଇ କହିଥିଲେ, 'ପ୍ରାଚ୍ୟଭୂଖଣ୍ଡର ବହୁ ଦୂରରେ ଯେଉଁମାନେ ଇଂଲଣ୍ଡରେ ଅଛନ୍ତି ସେମାନେ ଏଥର ବୁଝିବା ଉଚିତ ଯେ, ଏସିଆରେ ୟୁରୋପୀୟ ଲୋକଙ୍କର ଯେଉଁ ନୈତିକ ପ୍ରତିଷ୍ଠା ଥିଲା ତାହା ସେମାନେ ବର୍ତ୍ତମାନ ହରାଇ ସାରିଲେଣି । ନ୍ୟାୟ ଓ ମହତ୍ତ୍ୱର ଆଧାର ବୋଲି ସମଗ୍ର ପୃଥିବୀରେ ତାଙ୍କର ଯେଉଁ ସମ୍ମାନ ଥିଲା ତାହା ଆଉ ନାହିଁ । ବିଦେଶୀ ଲୋକଙ୍କ ଉପରେ ପ୍ରଭୁତ୍ୱ ବିସ୍ତାର କରି ସେମାନଙ୍କୁ ଶୋଷଣ କରିବା ଏମାନଙ୍କ ବୃତ୍ତି ବୋଲି ଲୋକେ ଇୟୁରୋପୀୟଙ୍କୁ ଚିହ୍ନିଲେଣି ।

'ୟୁରୋପୀୟଙ୍କ ପକ୍ଷରେ ଏହା ଗୋଟାଏ ମସ୍ତବଡ଼ ନୈତିକ ବିପର୍ଯ୍ୟୟ । ସ୍ୱୀକାର କରିବାକୁ ହେବ ଯେ ଏସିଆ ବର୍ତ୍ତମାନ ସୁଦ୍ଧା ଦୁର୍ବଳ ଏବଂ ୟୁରୋପୀୟଙ୍କ ଅଦୌତିରୁ ଆତ୍ମରକ୍ଷା କରିବାକୁ ଅସମର୍ଥ ; ଏସୀୟ ଲୋକଙ୍କ ଜୀବନମରଣ ସମସ୍ୟା ବର୍ତ୍ତମାନ ସୁଦ୍ଧା ୟୁରୋପୀୟଙ୍କ ହାତମୁଠାରେ ଅଛି । କିନ୍ତୁ ଏକଥା ସ୍ପଷ୍ଟ ଯେ ଏସୀୟ ଲୋକଙ୍କ ମନରେ ବିପ୍ଳବ ହୋଇଗଲାଣି । ଆଗେ ଏମାନେ ମହତ୍ ବୋଲି ୟୁରୋପୀୟଙ୍କ ଆଗରେ ମୁଣ୍ଡ ନୁଆଁଉଥିଲେ ; ଏବେ କିନ୍ତୁ ନୀଚ ଓ ସ୍ୱାର୍ଥାନ୍ଧ ବୋଲି ଏମାନେ ଇୟୁରୋପୀୟଙ୍କୁ ଅବଜ୍ଞା କଲେଣି ।' ଭାରତୀୟ ଲୋକଙ୍କ ମନର ଏ ପରିବର୍ତ୍ତନ ମହାତ୍ମା ଗାନ୍ଧୀଙ୍କ ଯୋଗୁଁ ହୋଇଛି ବୋଲି ରବୀନ୍ଦ୍ରନାଥ କହିଛନ୍ତି ।

୧୯୩୦ରେ ଗାନ୍ଧୀ ଦୁଇଟି କାର୍ଯ୍ୟ ସାଧନ କଲେ । ପ୍ରଥମତଃ, ସେ ବ୍ରିଟିଶ୍ ଲୋକଙ୍କୁ ଚେତାଇ ଦେଲେ ଯେ, ସେମାନେ ନିର୍ମମଭାବେ ଭାରତକୁ ପଦାନତ କରି ରଖିବାକୁ ବସିଛନ୍ତି । ଦ୍ୱିତୀୟରେ, ସେ ଭାରତବାସୀଙ୍କ ମନରେ ବିଶ୍ୱାସ ଜଗାଇଦେଲେ ଯେ, ସେମାନେ ଯଦି ଅଣ୍ଟା ଦମ୍ଭ ରଖି ମୁଣ୍ଡ ଟେକି ଉଠନ୍ତି, ତେବେ ସେମାନେ ନିଜ କାନ୍ଧରୁ ଦାସତ୍ୱର ଭାର ଉତାରି ଦେଇପାରିବେ । ଏ ବିଶ୍ୱାସ ଜାଗ୍ରତ ହେବା ପରେ, ହେଲେ ନା ହେଲେ, ବ୍ରିଟେନ୍ ବାଧ୍ୟ ହୋଇ ଭାରତ ଶାସନ କରିବାରୁ ଓହରି ଯିବ ଏବଂ ଭାରତ ପରାଧୀନ ହୋଇ ରହିବାକୁ ଅସ୍ୱୀକାର କରିବ ।

ବ୍ରିଟିଶ୍ ଭାରତୀୟ ଲୋକଙ୍କୁ ଲାଠିରେ ଓ ବନ୍ଧୁକ କୁନ୍ଦାରେ ଯେତେ ପିଟିଲେ ବି ଭାରତୀୟ ଲୋକେ ଶଙ୍କିଲେ ନାହିଁ, ଆପତ୍ତି କଲେ ନାହିଁ କି

ପଛଘୁଞ୍ଚା ଦେଲେ ନାହିଁ । ଫଳରେ ଇଂଲଣ୍ଡ ଅସହାୟ ହୋଇପଡ଼ିଲା ଓ ଭାରତ ଅଜେୟ ହୋଇ ଉଠିଲା ।

---

# ତୃତୀୟ ପରିଚ୍ଛେଦ

## ରାଜଦ୍ରୋହୀ ସଙ୍ଗେ ବୁଝାମଣା

ବ୍ରିଟିଶ୍ ଶ୍ରମିକ ଦଳର ବହୁ ମନ୍ତ୍ରୀ ଓ ସେମାନଙ୍କ ସମର୍ଥକ ଭାରତୀୟ ସ୍ୱାଧୀନତାର ସମର୍ଥନ କରୁଥିଲେ । ଭାରତ ସ୍ୱାଧୀନତା ପାଇବା ଉଚିତ ବୋଲି ପ୍ରଧାନମନ୍ତ୍ରୀ ରାମ୍‌ସେ ମ୍ୟାକ୍‌ଡୋନାଲ୍‌ଡ଼ ସ୍ପଷ୍ଟ ଭାବେ ପୂର୍ବେ ମତ ଦେଇଥିଲେ । ସେ ମତ ତାଙ୍କ ଆଗରେ ବର୍ତ୍ତମାନ ଉପସ୍ଥାପିତ କରାଯାଇ ପାରନ୍ତା । ଏପରି ସ୍ଥଳେ ଗାନ୍ଧୀଙ୍କ ସହିତ ହଜାର ହଜାର ଭାରତୀୟ ଜାତୀୟବାଦୀଙ୍କୁ ଜେଲରେ ଠୁକିବାଦ୍ୱାରା ବ୍ରିଟିଶ ଶ୍ରମିକ ଦଳ ବଡ଼ ହଇରାଣରେ ପଡ଼ିଥିଲେ । ଗାନ୍ଧୀଙ୍କୁ ଜେଲ୍‌ରେ ରଖି ଆର୍‌ଉଇନ୍ ଖାଲି ଯେ ହଇରାଣ ହେଉଥାନ୍ତି ତାହା ନୁହେ ; ତାଙ୍କର ଶାସନରେ ଏକରକମ ଅଚଳ ଅବସ୍ଥା ସୃଷ୍ଟି ହୋଇଥାଏ । ରାଜସ୍ୱ-ଆଦାୟ ଏକାବେଳକେ ଖସି ପଡ଼ିଲା ବେଳକୁ, ଜନତାର ଅଶାନ୍ତି ବହୁ ପରିମାଣରେ ବଢ଼ିଗଲା । ଗାନ୍ଧୀଙ୍କୁ ଗିରଫ୍ କରିବା ସମ୍ବାଦ ବମ୍ବେ ପ୍ରଦେଶର ଶିଳ୍ପାଞ୍ଚଳ ଶୋଲାପୁରରେ ପହଞ୍ଚିବାରେ, ସେଠାର ଶ୍ରମିକମାନେ ପୁଲିସଙ୍କୁ କାବୁ କରି, କଚେରି ଓ ଥାନା ପ୍ରଭୃତିରେ ଜାତୀୟପତାକା ଉଡ଼ାଇ ଦେଇ ବ୍ରିଟିଶ୍‌ରାଜଠାରୁ ସ୍ୱାଧୀନ ହୋଇଗଲେ ବୋଲି ଘୋଷଣା କରିଥିଲେ । ପେଶାବାରରେ ପୁଲିସ୍ ହାର ମାନି ଅହିଂସାବାଦୀ ‘ଲାଲ କୁର୍ତ୍ତାଦଳ’ ହାତରେ ସହରର କର୍ତ୍ତୃତ୍ୱ ଛାଡ଼ି ଦେଇଥିଲେ । ‘ଲାଲ କୁର୍ତ୍ତାଦଳ’ ସୀମାନ୍ତ ଗାନ୍ଧୀ ଖାଁ ଅବଦୁଲ ଗଫର ଖାଁଙ୍କଦ୍ୱାରା ସଂଗଠିତ ଇସ୍‌ଲାମଧର୍ମ-ଅନୁଗତ ଅଥଚ ଅହିଂସାପରାୟଣ ରାଜନୀତିକ

ଅନୁଷ୍ଠାନ । ତିନଦିନ ପରେ ସେନା ଏ ସହରରେ ପ୍ରବେଶ କରି ନିରସ୍ତ୍ର ଅଧିବାସୀଙ୍କ ଉପରେ ମେସିନ୍‌ଗନ୍ ଚଳାଇଥିଲେ । କିନ୍ତୁ ବ୍ରିଟିଶ୍ ସେନାର ଅଙ୍ଗୀଭୂତ ବିଖ୍ୟାତ ଗଡ୍‌ୱାଲ୍ ରାଇଫଲ ସେନା ଦଳ ନିଜେ ହିନ୍ଦୁ ହେଲେହେଁ, ପେଶାବାରର ମୁସଲମ୍ନଙ୍କ ଉପରେ ବନ୍ଧୁକ ଚଳାଇବାକୁ ନାରାଜ ହେଲେ । ଏମାନେ ବ୍ରିଟିଶ୍ ସେନାର ଗୋଟିଏ ବିଶିଷ୍ଟ ଅନୁଗତ ଅଙ୍ଗ ଓ ପ୍ରଥମ ମହାଯୁଦ୍ଧରେ ବିଶେଷ ଖ୍ୟାତି ଅର୍ଜିଥିଲେ । ସେନାଧ୍ୟକ୍ଷଙ୍କ ଆଦେଶ ଅମାନ୍ୟ କରିବା ଅପରାଧରେ ଫୌଜ ଆଇନ୍‌ରେ ବିଚାର ହୋଇ ଏମାନଙ୍କୁ ୧୦ ଠାରୁ ୧୪ ବର୍ଷ ଯାଏଁ ସଶ୍ରମ କାରାଦଣ୍ଡ ମିଳିଲା । ଜୁନ୍ ୩୦ ତାରିଖରେ ମୋତିଲାଲ ନେହେରୁ ଗିରଫ୍ ହେଲେ । କଂଗ୍ରେସର ପ୍ରଥମ, ଦ୍ୱିତୀୟ ଓ ତୃତୀୟ ପାହିଆର ନେତାମାନଙ୍କ ସମେତ ଲକ୍ଷକରୁ ଅଧିକ ଭାରତୀୟ ସତ୍ୟାଗ୍ରହ କରି କାରାଗୃହରେ ଆବଦ୍ଧ ହୋଇ ରହିଲେ ।

ରାଜନୀତିକ ଦୃଷ୍ଟିରୁ ଏ ଅବସ୍ଥା ମ୍ୟାକ୍‌ଡୋନାଲ୍ଡ ଓ ଆରୱଇନ୍‌ଙ୍କ ପକ୍ଷରେ ଅସହ୍ୟ ହେଲା । ଦାଣ୍ଡିଯାତ୍ରା ବାଟରେ, ଦାଣ୍ଡି ସମୁଦ୍ରକୂଳରେ ବା ସାବରମତୀ ଆଶ୍ରମରେ ତୁନି ହୋଇ ଥିଲାବେଳେ ଗାନ୍ଧୀ, ସେମାନଙ୍କର ଯେତେ ଉଦ୍‌ବେଗର କାରଣ ହୋଇଥିଲେ, ଜେଲ୍‌ଖାନାରେ ଆବଦ୍ଧ ରହି ମଧ୍ୟ ସେତିକି ଉଦ୍‌ବେଗର କାରଣ ହେଲେ ।

ବିଚାର ସଙ୍କଟରେ ପଡ଼ି ଏବଂ ଭାରତରେ ବିଦ୍ରୋହ ବଢ଼ୁଥିବାର ଉପଲବ୍ଧି କରି ବ୍ରିଟିଶ୍ କର୍ତ୍ତାମାନେ ସୁଶ୍ରୀ ଏବଂ ଲୋହିତ-ଶ୍ମଶ୍ରୁ ଜର୍ଜ ସ୍ଲୋକମ୍‌ଙ୍କୁ ଗାନ୍ଧୀଙ୍କ ସଙ୍ଗେ ସାକ୍ଷାତ୍ କରିବାକୁ ଅନୁମତି ଦେଲେ । ସ୍ଲୋକମ୍ ଲଣ୍ଡନର ଶ୍ରମିକମତବାଦୀ ପତ୍ରିକା 'ଡେଲି ହେରାଲ୍ଡ'ର ସମ୍ବାଦଦାତା । ସେତେବେଳକୁ ଗାନ୍ଧୀ ଜେଲ୍‌ରେ ରହିବାର ମାତ୍ର ଦୁଇ ସପ୍ତାହ ହୋଇଥାଏ । ସ୍ଲୋକମ୍ ମେ ୧୯ ଓ ୨୦ ତାରିଖରେ ଗାନ୍ଧୀଙ୍କ ସହିତ କଥାବାର୍ତ୍ତା ହେଲେ । ବ୍ରିଟିଶ୍ ସରକାରଙ୍କ ସଙ୍ଗେ କେଉଁ ସର୍ତ୍ତରେ କଥାବାର୍ତ୍ତା କରିପାରିବେ ତାହା ଗାନ୍ଧୀ ସ୍ଲୋକମ୍‌ଙ୍କୁ ଜଣାଇଲେ । ଭାଇସ୍‌ରୟଙ୍କ ସମ୍ମତିରେ ଜୁଲାଇ ମାସରେ ଉଦାରପନ୍ଥୀ ଦୁଇ ନେତା ସାର୍ ତେଜବାହାଦୂର ସାପ୍ରୁ ଓ ଏମ୍. ଆର୍. ଜୟକାର ଗାନ୍ଧୀଙ୍କ ଜେଲ୍-ଖୁଆଡ଼କୁ ଯାଇ କଥାବାର୍ତ୍ତା ଆରମ୍ଭ କଲେ । ସେମାନଙ୍କ ସଙ୍ଗେ ଆଲୋଚନା କରିବାକୁ ଗାନ୍ଧୀ ସମ୍ମତ ହେଲେ କିନ୍ତୁ କହିଲେ ଯେ, କଂଗ୍ରେସ କାର୍ଯ୍ୟକାରୀ କମିଟିର ବିନା ପରାମର୍ଶରେ ସେ ସାଲିସ୍ ପ୍ରସ୍ତାବ ଉପରେ କୌଣସି ମତ ଦେଇ ପାରିବେ ନାହିଁ ।

ଯେହେତୁ ପିତା ପୁତ୍ର ମୋତିଲାଲ ଓ ଜବାହାରଲାଲ,ଏବଂ କାର୍ଯ୍ୟକାରୀ ସଂପାଦକ ସୟଦ୍ ମାହମୁଦ୍‌ଙ୍କୁ ଗୋଟିଏ ସ୍ପେଶାଲ୍ ଟ୍ରେନ୍‌ରେ ସୁଖ ସ୍ୱାଚ୍ଛନ୍ଦ୍ୟରେ, ଖୁବ୍ ସମ୍ମାନ ଦେଖାଇ ଯୁକ୍ତପ୍ରଦେଶସ୍ଥ ସେମାନଙ୍କ ଜେଲରୁ ପୁନାରେ ଅବସ୍ଥିତ ଗାନ୍ଧୀଙ୍କ ଜେଲ୍‌କୁ ଅଣାଗଲା । ମିସେସ୍ ନାଇଡୁ, ଓ ବଲ୍ଲଭଭାଇ ପଟେଲ୍ ଗାନ୍ଧୀଙ୍କ ଜେଲ୍‌ରେ ଆଗରୁ ଥାନ୍ତି । ଜେଲଖାନାରେ ଥିବା ନେତାମାନଙ୍କୁ ସିନା ଏକାଠି କରାଗଲା, ଜେଲ ବାହାରେ ଥିବା କାର୍ଯ୍ୟକାରୀ ସମିତି ମେମ୍ବରମାନଙ୍କୁ ଜେଲଖାନାର କଥାବାର୍ତ୍ତାରେ ଯୋଗ ଦେବାକୁ ଆରଉଇନ ଅନୁମତି ଦେଲେ ନାହିଁ ।

(ଅଗଷ୍ଟ ୧୪ ଓ ୧୫ ତାରିଖ) ଦୁଇ ଦିନର ଆଲୋଚନା ପରେ କଂଗ୍ରେସନେତାମାନେ ସର୍ବସାଧାରଣରେ ଘୋଷଣା କଲେ ଯେ, ବ୍ରିଟିଶ୍ ସରକାରଙ୍କ ଇଚ୍ଛା ଓ ତାଙ୍କ ନିଜ ମତ ଭିତରେ ଗୋଟାଏ ବଡ଼ ଫାଙ୍କ ରହିଛି, 'ଏହା ଉପରେ ପୋଲ ପକାଇ ଉଭୟ ମତର ସଂଯୋଗ କରିବା ସଂଭବ ନୁହେଁ ।'

୧୯୩୦, ନଭେମ୍ବର ୧୨ ତାରିଖରେ ଲଣ୍ଡନଠାରେ ପ୍ରଥମ ଗୋଲଟେବୁଲ୍ ବୈଠକ ଆରମ୍ଭ ହେଲା । ଜିନା, ବିକାନିରର ମହାରାଜା, ଶ୍ରୀନିବାସ ଶାସ୍ତ୍ରୀ ଓ ଅନ୍ୟମାନେ ସେଥିରେ ଯୋଗ ଦେଲେ । କଂଗ୍ରେସର କୌଣସି ପ୍ରତିନିଧି ଯୋଗ ଦେଇ ନ ଥିଲେ । ଏ ବୈଠକରେ କୌଣସି କାର୍ଯ୍ୟ ସାଧିତ ହେଲା ନାହିଁ । କିନ୍ତୁ ବୈଠକର ଆରମ୍ଭରୁ ଶେଷ ଯାଏଁ ଯାହା କଥାବାର୍ତ୍ତା ହେଲା ସେଥିରୁ ସ୍ପଷ୍ଟ ଜଣାପଡ଼ିଲା ଯେ, ଶ୍ରମିକ ସରକାର ଭାରତ ସଙ୍ଗେ ବୁଝାପଡ଼ା କରିବାକୁ ଇଚ୍ଛା କରୁଛନ୍ତି । ଶେଷରେ ପ୍ରଧାନ ମନ୍ତ୍ରୀ ର୍ୟାମସେ ମ୍ୟାକ୍‌ଡୋନାଲ୍ଡ୍ ଆଶା ପ୍ରକାଶ କଲେ ଯେ, ଦ୍ୱିତୀୟ ଗୋଲଟେବୁଲ୍ ବୈଠକକୁ କଂଗ୍ରେସ ପ୍ରତିନିଧି ପଠାଇବ ।

ଏଥିରୁ ଇସରା ପାଇ, ବା ସ୍ୱତନ୍ତ୍ର ଆଦେଶ ପାଇ, ଭାରତର ସ୍ୱାଧୀନତା ଦିବସ ଜାନୁଆରୀ ୨୬ ତାରିଖରେ, ଲର୍ଡ଼ ଆରଉଇନ୍, ଗାନ୍ଧୀ, ନେହେରୁଦ୍ୱୟ, ଆଉ ୨୦ରୁ ଅଧିକ କଂଗ୍ରେସ ନେତାଙ୍କୁ ବିନା ସର୍ତ୍ତରେ ଜେଲ୍‌ରୁ ଖଲାସ କରି ଦେଲେ । ଏହି ସହୃଦୟ ଭାବର ଗ୍ରାହକତା କରି ଗାନ୍ଧୀ ବଡ଼ଲାଟଙ୍କ ସଙ୍ଗେ କଥାବାର୍ତ୍ତା କରିବାର ଇଚ୍ଛା ପ୍ରକାଶ କରି ପତ୍ର ଖଣ୍ଡିଏ ପଠାଇଲେ । ନିଜର ଦୁର୍ବଳତା ପ୍ରକାଶ ପାଇଯିବ ବୋଲି ଜିଗି ହେବାକୁ ଗାନ୍ଧୀ ପସନ୍ଦ କରୁ ନ ଥିଲେ । କାହାରି ସଙ୍ଗେ ସଂପର୍କ ସୁଧୁରି-

ଯିବାର ଆଶା ଥିବା ପର୍ଯ୍ୟନ୍ତ ସେ ସଂପର୍କକୁ ଏକାବେଳକେ ଛିଣ୍ଡାଇ ଦେବା ଉଚିତ ନୁହେଁ ବୋଲି ସେ ବିଶ୍ୱାସ କରୁଥିଲେ । ପ୍ରତ୍ୟେକ ସଂପର୍କକୁ ସୁଧାରି ହୋଇ ପାରିବ ବୋଲି ଅସରନ୍ତି ବିଶ୍ୱାସ ତାଙ୍କର ଥିବାରୁ, କୌଣସି ବ୍ୟକ୍ତିଗତ ବା ରାଜନୀତିକ ସଂପର୍କ ଏକାବେଳକେ କପରି ତୁଟି ନ ଯିବ ସେ ଦିଗରେ ସେ ସତତ ଚେଷ୍ଟିତ ଥିଲେ ।

ଫେବ୍ରୁଆରୀ ୧୭ ତାରିଖ ଅପରାହ୍ଣ ସାଢ଼େ ଦୁଇଟାରେ ଆର୍‌ଉଇନ୍ ଓ ଗାନ୍ଧୀଙ୍କର ପ୍ରଥମ ବୈଠକ ହେଲା ଓ ୬ଟା ୧୦ ମିନଟ୍ ପର୍ଯ୍ୟନ୍ତ ଚାଲିଲା । ଆର୍‌ଉଇନ୍‌ଙ୍କ ଜୀବନୀ-ଲେଖକ ଲେଖିଛନ୍ତି, 'ବ୍ରିଟିଶ ଶାସନର ଚିର ବିକ୍ଷୁବ୍ଧ ଇତିହାସରେ ଜଣେ ଭାଇସରୟ ଓ ଜଣେ ଭାରତୀୟ ନେତାଙ୍କର ନାଟକୀୟ ରୀତିରେ ମୁହାଁମୁହିଁ ହେବାର ରଙ୍ଗମଞ୍ଚ ଏଇପରି ଭାବରେ ପ୍ରଥମ ଥର ପାଇଁ ସଜ୍ଜିତ ହେଲା ।'

ଗାନ୍ଧୀଙ୍କ ସଙ୍ଗେ ଭାଇସ୍‌ରୟଙ୍କର ଏ ସାକ୍ଷାତ୍ ନାଟକଠାରୁ ଢେର ଗୁରୁତର କଥା । ଏପରି ସାକ୍ଷାତ ଯେ ହୋଇ ପାରିଲା ତାହା ବ୍ରିଟିଶ୍‌ରାଜର ଇତିହାସର ଗତି ବଦଳାଇ ଦେଲା ବୋଲି ବୁଝିବାକୁ ହେବ । ସର୍ବଦା ଦୂରଦର୍ଶୀ ଉଇନ୍‌ଷ୍ଟନ୍ ଚର୍ଚ୍ଚିଲ ଏ ସାକ୍ଷାତ୍‌ର ଗୁରୁତ୍ୱ ଅନ୍ୟମାନଙ୍କ ଅପେକ୍ଷା ଅଧିକ ବୁଝିପାରିଥିଲେ ବୋଲି ମନେହୁଏ । 'ଆଗେ ଇନର୍ ଟେମ୍ପଲ୍‌ର ଆଇନ୍‌ଜୀବିଟାଏ, ଏବେ ହୋଇଛି ରାଜଦ୍ରୋହୀ ଫକୀର । ସେ ପୁଣି ଅର୍ଦ୍ଧ-ଉଲଗ୍ନ ଦେହରେ ଉଦ୍ଧତ ଭାବେ ବଡ଼ଲାଟ ଭବନର ପାହାଚ ଉଠି ଯାଉଛି, ଇଂଲଣ୍ଡର ମହାମହିମ ସମ୍ରାଟଙ୍କ ପ୍ରତିନିଧିଙ୍କ ସଙ୍ଗେ ସମାନସ୍କନ୍ଧ ଭାବେ କଥାବାର୍ତ୍ତା ହୋଇ ସମାଧାନସୂତ୍ର ବାଢ଼ିବାକୁ ! ବ୍ରିଟିଶ୍ ଜାତି ପକ୍ଷରେ କି ଘୃଣ୍ୟ, ଅପମାନ-ଜନକ ଦୃଶ୍ୟ !' ଏହା ମନଶ୍ଚକ୍ଷୁରେ ଦେଖି ଚର୍ଚ୍ଚିଲ୍‌ଙ୍କ ହୃଦୟ ବିଦୀର୍ଣ୍ଣ ହୋଇ ଯାଇଥିଲା ।

ଚର୍ଚ୍ଚିଲ୍ ଉପଲବ୍ଧି କରିଥିଲେ, ଗାନ୍ଧୀଙ୍କର ବଡ଼ଲାଟଙ୍କ ସଙ୍ଗେ ଏ ସାକ୍ଷାତ୍ କିଛି ମାମୁଲି କଥା ନୁହେଁ, ବଡ଼ଲାଟଙ୍କ ସଙ୍ଗେ ସାଧାରଣତଃ ଯେଉଁମାନେ ଦେଖା କରିବାକୁ ଆସନ୍ତି, ସେମାନେ ପ୍ରାୟଶଃ ଆସନ୍ତି ଅନୁଗ୍ରହ ଭିକ୍ଷା କରିବାକୁ । ଗାନ୍ଧୀ ଅନୁଗ୍ରହ-ପ୍ରାର୍ଥୀ ହୋଇ ଆସି ନ ଥିଲେ । ଅନ୍ୟ ଗୋଟିଏ ଜାତିର ନେତାଙ୍କ ସଂଗେ ସମାନସ୍କନ୍ଧ ଭାବେ ସମାଧାନ-ଆଲୋଚନା କରିବାକୁ ସେ ନିଜ ଜାତିର ନେତା ଭାବେ ଆସି-ଥିଲେ । ଦାଣ୍ଡୀ ଯାତ୍ରା ଓ ତା'ର ପରବର୍ତ୍ତୀ ଘଟଣାମାନଙ୍କରୁ ସ୍ପଷ୍ଟ ଜଣା-

ଯାଇଥିଲା ଯେ, ଗାନ୍ଧୀଙ୍କ ବିରୁଦ୍ଧରେ ରହି ବା ଗାନ୍ଧୀଙ୍କୁ ଛାଡ଼ି ଇଂଲଣ୍ଡ ଆଉ ଭାରତକୁ ଶାସନ କରି ପାରିବ ନାହିଁ । ବ୍ରିଟିଶ୍ ସାମ୍ରାଜ୍ୟ ଅର୍ଦ୍ଧ-ଉଲଗ୍ନ ଫକୀରର କୃପାପ୍ରାର୍ଥୀ ହୋଇ ପଡ଼ିଲା । ଏହା ଚର୍ଚ୍ଚିଲ ହଜମ କରି ପାରୁ ନ ଥାନ୍ତି । ସେ ସ୍ପଷ୍ଟ ଦେଖି ପାରିଥାନ୍ତି, କାର୍ଯତଃ ବର୍ତ୍ତମାନ ପାଇଁ ସ୍ୱାଧୀନତା ନ ଦେଉଥିଲେ ହେଁ, ଗାନ୍ଧୀଙ୍କ ପ୍ରତି ଯେଉଁ ବ୍ୟବହାର ଦେଖାଇଲେ ତଦ୍ଦ୍ୱାରା ବ୍ରିଟିଶ ସରକାର ବସ୍ତୁତଃ ଭାରତକୁ ସ୍ୱାଧୀନତା ଅର୍ପଣ କରି ସାରିଲେଣି ।

ଗାନ୍ଧୀ ଓ ଆରଉଇନ୍‌ଙ୍କ ଭିତରେ ସମାଧାନ-କଥାବାର୍ତ୍ତା ହୋଇଥିଲା ବଡ଼ଲାଟଙ୍କ ନୂତନ ଭବନରେ । ପ୍ରତିଭାଶାଳୀ ବ୍ରିଟିଶ୍ ସ୍ଥପତି ସାର୍ ଏଡ୍‌ୱିନ୍ ଲଟ୍‌ୟେନ୍‌ସ୍‌ଙ୍କ ପରିକଳ୍ପନା ଅନୁସାରେ ଏ ଭବନ ନିର୍ମିତ ହୋଇଥିଲା । ଦିଲ୍ଲୀର ବିସ୍ତୀର୍ଣ୍ଣ ସମଭୂମିରେ ଏହା ହଠାତ୍ କାହିଁ କେତେ ଉଚ୍ଚକୁ ଅତି ଘାପ୍ରିମନ୍ତ ହୋଇ ଉଠିଛି । ବହୁ ବ୍ୟୟ-ସାପେକ୍ଷ ପରିକଳ୍ପନା । ମୋଗଲ କାଳର ମସ୍‌ଜିଦ୍ ଓ ଦୁର୍ଗମାନଙ୍କ ଧ୍ୱଂସାବଶେଷ ମଝିରେ ଏ ବିରାଟ ପ୍ରାସାଦ ଆଖିକୁ ଝଲସାଇ ଦିଏ । ବ୍ରିଟିଶରାଜର ପ୍ରବଳ ପ୍ରତାପର ପ୍ରତୀକ ସ୍ୱରୂପ ଏହାର ନିର୍ମାଣ ହୋଇଥିଲା । କିନ୍ତୁ ଚରମ ବିଡ଼ମ୍ବନାର କଥା ଯେ, ଏହି ନୂତନ ପ୍ରାସାଦର ପ୍ରକୋଷ୍ଠରେ ପ୍ରାୟଶଃ ସର୍ବପ୍ରଥମ କାର୍ଯ ହେଲା, ସେହି ପ୍ରତାପ ଚୂର୍ଣ୍ଣ ହେବାର ଉପକ୍ରମଣିକା ।

ଗାନ୍ଧୀ ଓ ଆର୍‌ଉଇନ୍ ଫେବୃଆରୀ ୧୮ ତାରିଖରେ ପୁଣି ତିନିଘଣ୍ଟା କାଳ ଆଲୋଚନା କଲେ; ୧୯ ତାରିଖରେ ବି ଅଧ ଘଣ୍ଟେ ଆଲୋଚନା ଚାଲିଲା । ପ୍ରତ୍ୟହ ଆଲୋଚନା ପରେ ଆର୍‌ଉଇନ୍ ଛ' ହଜାର ମାଇଲ ଦୂରସ୍ଥ ଲଣ୍ଡନକୁ ତାରବାର୍ତ୍ତା ପଠାଇ ନିଜର ଉପରିସ୍ଥ କର୍ତ୍ତୃପକ୍ଷଙ୍କ ପରାମର୍ଶ ନେଉଥାନ୍ତି, ଓ ଏଣେ ନୂଆଦିଲ୍ଲୀରେ ଗାନ୍ଧୀ କଂଗ୍ରେସ କାର୍ଯକାରୀ କମିଟିର ଦୀର୍ଘ ଅଧିବେଶନମାନଙ୍କରେ ଆଲୋଚନା କରୁଥାନ୍ତି । (ବିଖ୍ୟାତ ନେତା ମୋତିଲାଲଙ୍କର ଫେବୃଆରୀ ୬ତାରିଖରେ ଇହଲୀଳ ସାଂଗ ହୋଇଥାଏ । ) ଉଭୟ ପକ୍ଷରେ ସଂଯୋଗ କରି ସାପ୍ରୁ, ଜୟକାର ଓ ଶାସ୍ତ୍ରୀ ଆଲୋଚନାର ଅଚଳ ଅବସ୍ଥା କିପରି ନ ଘଟିବ ସେ ଦିଗରେ ଉଦ୍ୟମ ଚଳାଇଥାନ୍ତି ।

ଦିନେ ଆଲୋଚନା ଚାଲିଥିଲା ବେଳେ, ଆପଣ ଚା ଖାଇବେ କି ବୋଲି ଆର୍‌ଉଇନ୍ ପଚାରିବାରେ, 'ହଁ, ଧନ୍ୟବାଦ' ବୋଲି କହି ଗାନ୍ଧୀ ନିଜ ଶାଲ କାନିରେ ବନ୍ଧା ହୋଇଥିବା ଗୋଟିଏ ପୁଡ଼ିଆରୁ ଟିକେ ଲୁଣ

ବାହାର କଲେ; 'ମୋ ଗୃ'ରେ ଏ ଲୁଣରୁ ଟିକିଏ ପକାଇବ । ପ୍ରସିଦ୍ଧ ବୋଷ୍ଟନ୍ ଟି ପାର୍ଟି * କଥା ମନେ ପଡ଼ିବ ।' ଦୁହେଁ ହସିଲେ ।

କେତେକ କାରଣରୁ ଗାନ୍ଧୀ ଆରଉଇନ୍‌ଙ୍କ ଆଲୋଚନାରେ ଅଚଳ ଅବସ୍ଥା ଆସିଲା । ସାତ ଦିନ ଯାଏଁ କଥାବାର୍ତ୍ତା ଚାଲିଲା ନାହିଁ । ପୁଣି ୧୭ ତାରିଖରେ କଥାବାର୍ତ୍ତା ଆରମ୍ଭ ହେଲା । ମାର୍ଚ୍ଚ ପହିଲାରେ ଅପରାହ୍ନ ଦୁଇଟା ୩୦ ମିନିଟ୍‌ରେ ଗାନ୍ଧୀ ଭାଇସ୍‌ରୟଙ୍କ ପାଖକୁ ଆସିଲେ । କଥାବାର୍ତ୍ତା ହେଉ ହେଉ ଗାନ୍ଧୀଙ୍କର ଖିଆ ସମୟ ହୋଇଗଲା । ମିସ୍ ସ୍ଲେଡ୍ ଖାଦ୍ୟସାମଗ୍ରୀ ଆଣି ପହଞ୍ଚିଥାନ୍ତି —୪୦ଟି ଖଜୁରୀ ଓ ପାଣିଏ ଛେଳି ଦୁଧ । ଭାଇସ୍‌ରୟଙ୍କ ଆଗରେ ଗାନ୍ଧୀ ସେତକ ଖାଇଲେ । ୫ଟା ୫୦ ମିନିଟ୍‌ରେ ଗାନ୍ଧୀ ଭାଇସ୍‌ରୟଙ୍କଠାରୁ ବିଦାୟ ନେଲେ । କିନ୍ତୁ ପୁଣି ସେଇ ସନ୍ଧ୍ୟାରେ ଡକ୍ଟର୍ ଆନ୍‌ସାରୀଙ୍କ ଘରୁ ସେ ଏକୁଟିଆ ବଡ଼ଲାଟ ଭବନକୁ ଚାଲି ଚାଲି ଫେରିଲେ । ସେ ଡକ୍ଟର ଆନସାରୀଙ୍କ ଘରେ ରହିଥାନ୍ତି । ବଡ଼ଲାଟ ଭବନଠାରୁ ତାହା ୫ ମାଇଲ ଦୂର । ରାତି ଅଧ ଟପିଲା ଯାଏଁ ବଡ଼ଲାଟଙ୍କ ସଙ୍ଗେ ଏକାନ୍ତରେ ଆଲୋଚନା ଚାଲିଲା । ଅନ୍ଧାର ରାତିରେ ଗାନ୍ଧୀ ଚାଲି ଚାଲି ପୁଣି ସେତିକି ବାଟ ଫେରିବାକୁ ବାହାରିବାରେ ଆରୁଇନ୍ ତାଙ୍କୁ କହିଲେ, 'ଶୁଭରାତ୍ରି, ମିଷ୍ଟର୍ ଗାନ୍ଧୀ ! ମୁଁ ଆପଣଙ୍କ ପାଇଁ ଭଗବାନଙ୍କୁ ପ୍ରାର୍ଥନା କରୁଛି ।' ଗାନ୍ଧୀ ପାହାନ୍ତିଆ ୨ଟାରେ ଘରେ ପହଞ୍ଚିଲେ , କାର୍ଯ୍ୟକାରୀ କମିଟି ତାଙ୍କୁ ଅପେକ୍ଷା କରି ବସିଥାଏ ।

ଗାନ୍ଧୀ ଓ ଆର୍‌ଉଇନ୍ ଦୁହିଙ୍କ ଭିତରେ ଟଣାଟଣି ଚାଲିଥାଏ । ପ୍ରତ୍ୟେକେ ନିଜ ନିଜର ସହଯୋଗୀଙ୍କ ସଙ୍ଗେ ଟଣାଟଣି ହେଉଥାନ୍ତି ।

---

*ବ୍ରିଟିଶ୍ ସରକାର ଆମେରିକାକୁ ରପ୍ତାନି ହେଉଥିବା ଚା ଉପରେ ଟିକସ ବସାଇଥିଲେ । ଆମେରିକାର ଲୋକେ ଏହାର ବିରୋଧ କରିଥିଲେ । ଆମେରିକା ବ୍ରିଟେନ୍‌ଠାରୁ ସ୍ୱାଧୀନ ହେବା ପାଇଁ ଆନ୍ଦୋଳନ କରିବାର ଏହା ଅନ୍ୟତମ କାରଣ । ୧୭୭୩ ଖ୍ରୀଷ୍ଟାବ୍ଦରେ ବୋଷ୍ଟନ୍ ବନ୍ଦରରେ ପହଞ୍ଚିଥିବା କେତେକ ଜାହାଜରେ ଆମେରିକାର ଆନ୍ଦୋଳନକାରୀ ଦଳ ଛଦ୍ମ ବେଶରେ ପଶି, ଜାହାଜମାନଙ୍କରେ ଆସିଥିବା ସବୁତକ ଲୁଣା ଚା ପେଟି ସମୁଦ୍ରରେ ପକାଇଦେଲେ । ବିଦ୍ରୂପରେ ଯାହାକୁ 'ବୋଷ୍ଟନ ଟି ପାର୍ଟି' କୁହାଯାଏ । ଏ ସ୍ଥଳେ ଗାନ୍ଧୀ ବ୍ରିଟିଶ ସରକାରଙ୍କ ନିୟନ୍ତ୍ରଣରେ ପ୍ରସ୍ତୁତ ଲୁଣ ଖାଇବେ ନାହିଁ ବୋଲି ନିଜ କାନିରେ ଟିକିଏ ଲୁଣ ଆଣିଥିଲେ ।

ଯାହା ହେଉ, ଶେଷରେ ଗାନ୍ଧୀ-ଇର୍‌ଉଇନ୍ ଚୁକ୍ତିପତ୍ର ସ୍ୱାକ୍ଷରିତ ହେଲା । ଆର୍‌ଉଇନ୍‌ଙ୍କ ଜୀବନୀ-ଲେଖକ ଯାହାକୁ ଦିଲ୍ଲୀ-ଚୁକ୍ତିପତ୍ର ବୋଲି କହିଛନ୍ତି । ଏହା ସ୍ୱାକ୍ଷରିତ ହେଲା ମାର୍ଚ୍ଚ ୫ ତାରିଖର ପ୍ରତାରଣ ପରେ । 'ଗାନ୍ଧୀ-ଆରଉଇନ୍' ହେଉ ବା 'ଦିଲ୍ଲୀ' ହେଉ 'ଚୁକ୍ତିପତ୍ର' ଶବ୍ଦଟି ହିଁ ଏ ସ୍ଥଳରେ ପ୍ରଣିଧାନ-ଯୋଗ୍ୟ । ଦୁଇଟି ଜାତିର ଦୁଇଜଣ ପ୍ରବୀଣ ଜନନାୟକ ଏ ଚୁକ୍ତିପତ୍ର, ସନ୍ଧିପତ୍ର, ବା ରାଜିନାମାରେ ନିଜ ନିଜ ଜାତିପକ୍ଷରୁ ସଇ କଲେ । ଏହାର ପ୍ରତ୍ୟେକ ସର୍ତ୍ତ ଓ ଶବ୍ଦଯୋଜନା ବହୁତ ଟଣାଓଟରା ପରେ ସିଦ୍ଧାନ୍ତ ହୋଇଥାଏ । ବ୍ରିଟିଶ୍ ପକ୍ଷରୁ କୁହାଗଲା ଯେ, ଆର୍‌ଉଇନ୍‌ଙ୍କର ଜିତାପଟ ହେଲା ; ଏହା କହିବାର ଯଥେଷ୍ଟ ଯୁକ୍ତିଯୁକ୍ତ କାରଣ ଅଛି, ମାନିବାକୁ ହେବ । କିନ୍ତୁ ମହାତ୍ମା ଗାନ୍ଧୀ ଦୂର ଭବିଷ୍ୟତ ଉପରେ ଦୃଷ୍ଟି ରଖି ଏଥିରେ ସ୍ୱାକ୍ଷର କରିଥିଲେ । ଏହାଦ୍ୱାରା ଭାରତ ଓ ଇଂଲଣ୍ଡ ମଧ୍ୟରେ ସମାନତାର ଯେଉଁ ପାହିଆ ତତ୍ତ୍ୱତଃ ପ୍ରତିଷ୍ଠିତ ହେଲା ତାହା ବାସ୍ତବିକ ଗୁରୁତ୍ୱର ବିଷୟ । ତା' ତୁଳନାରେ ନଗ୍ଣେଡ଼ବନ୍ଧା ବ୍ରିଟିଶ୍ ସରକାରଠାରୁ ଗାନ୍ଧୀ କେତୋଟି ସୁବିଧା ହାସଲ କରି ପାରିଲେ ବା ନ ପାରିଲେ ତାହା କିଛି ନୁହେ । ଇତର ରାଜନୀତିକ ନେତା ଆହୁରି ଅଧିକ ରାଜନୀତିକ ସୁବିଧା ତକ୍ଷଣେ ପାଇବାକୁ ଅଡ଼ି ବସିଥାନ୍ତା । ଗାନ୍ଧୀ ଅସଲ ସାର କଥାଟି ପାଇ ସନ୍ତୁଷ୍ଟ ହେଲେ । ବ୍ରିଟିଶ୍ ସରକାରଙ୍କ ସଙ୍ଗେ ଭାରତର ନୂତନ ସମ୍ପର୍କର ଏହାହିଁ ମୂଳପୀଠ ବୋଲି ସେ ଯଥାର୍ଥ ଉପଲବ୍ଧି କରିଥିଲେ ।

ସହସ୍ରାଧିକ-ଶବ୍ଦ-ସମ୍ବଳିତ ଏହି ଚୁକ୍ତିପତ୍ର ଦଫା, ଧାରା, ଉପଧାରା, ଶିରୋନାମା ଓ ଉପଶିରୋନାମା ସହିତ ୧୯୩୧, ମେ ୫ ତାରିଖର ଗେଜେଟ ଅବ୍ ଇଣ୍ଡିଆ (ବିଶେଷ ସଂଖ୍ୟା)ରେ ଟିକିନଖି ପ୍ରକାଶିତ ହେଲା । ଯାହାର ଶବ୍ଦ ଭିତରେ ପଶି କୂଟତାର୍କିକ ବିଶ୍ଳେଷଣ ଓ ବ୍ୟବଚ୍ଛେଦ ନ କରି, ଭାରତର ଲକ୍ଷ ଲକ୍ଷ ଜନତା ବୁଝିଲେ, ଇତିହାସ ବି ଲିପିବଦ୍ଧ କଲା ଯେ, ଏହାଦ୍ୱାରା · ଆଇନ୍ ଅମାନ୍ୟ ଆନ୍ଦୋଳନ ବନ୍ଦ କରାଯିବ, ରାଜବନ୍ଦୀମାନେ ଖଲାସ ହେବେ, ସମୁଦ୍ର-ଉପକୂଳରେ ଲୁଣ ମାରିବା ସିଦ୍ଧ ହେବ ଓ କଂଗ୍ରେସ ଲଣ୍ଡନରେ ବସିବାକୁ ଥିବା ଦ୍ୱିତୀୟ ଗୋଲଟେବୁଲ ବୈଠକରେ ଯୋଗ ଦେବ । ଅବଶ୍ୟ ପୂର୍ଣ୍ଣ ସ୍ୱାଧୀନତାର ପ୍ରତିଶ୍ରୁତି ମିଳିଲା ନାହିଁ କି ଔପନିବେଶିକ ସ୍ୱାଧୀନତାର ବି ପ୍ରତିଶ୍ରୁତି ମିଳିଲା ନାହିଁ ।

ସେହି ଦିନ କେତେକ ଆମେରିକୀୟ ଓ ଭାରତୀୟ ସାମ୍ବାଦିକଙ୍କୁ ବିବୃତି ଦେଇ ଗାନ୍ଧୀ ଭାଇସ୍‌ରୟଙ୍କ ଉଚ୍ଚ ପ୍ରଶଂସା କରିଥିଲେ। ସେ କହିଲେ, 'ମୁଁ ଜାଣୁଛି, ଅବଶ୍ୟ ଅଜ୍ଞାତସାରରେ, ମୁଁ ନିଶ୍ଚେ ତାଙ୍କୁ ବିରକ୍ତ କରିଥିବି, ତାଙ୍କ ଧୈର୍ଯ୍ୟହାନି ହେବାର କାରଣ ହୋଇଥିବି। କିନ୍ତୁ ସେ କିଞ୍ଚିନ୍ ମାତ୍ର ବିରକ୍ତ ହେବାର ବା ଧୈର୍ଯ୍ୟହୀନ ହେବାର ସଂକେତ ମୁଁ ତାଙ୍କ କଥା ବା ଭାବଭଙ୍ଗୀରୁ ଲକ୍ଷ୍ୟ କରିଥିବାର ମୋର ମନେ ପଡ଼ୁନାହିଁ। ସେ ଆହୁରି କହିଲେ, ଭାଇସ୍‌ରୟଙ୍କ ସଙ୍ଗେ ଯେଉଁ ସମାଧାନ ହେଲା, ତାହା 'ଅସ୍ଥାୟୀ', 'କେତେକ ସର୍ତ୍ତସାପେକ୍ଷ', ଏହା 'ସାମୟିକ ସନ୍ଧି' ମାତ୍ର। ଭାରତର ଲକ୍ଷ୍ୟ ସ୍ଥିର ରହିଛି। ତାହା 'ପୂର୍ଣ୍ଣ ସ୍ୱାଧୀନତା······ ଏଥିରୁ ଟିକିଏ କିଛି କମ୍ ହେଲେ ଭାରତ ସନ୍ତୁଷ୍ଟ ହେବ ନାହିଁ······। କଂଗ୍ରେସ ଭାରତକୁ ରୋଗଗ୍ରସ୍ତ ଶିଶୁଟିଏ ବୋଲି ମନେ କରୁନାହିଁ ଯେ ଟିକିଏ ସେବା, ସାହାଯ୍ୟ ବା ବାହ୍ୟ ଆଶ୍ରା ପାଇଲେ ରୋଗମୁକ୍ତ ହୋଇଯିବ।'

ଗାନ୍ଧୀ ୧୯୩୦ରେ ଭାଇସ୍‌ରୟଙ୍କ ସଙ୍ଗେ ଯେଉଁ ବୁଝାମଣା କଲେ ତାକୁ ପଶ୍ଚାଦ୍‌ଦୃଷ୍ଟିରେ ଦେଖିଲେ ମନେ ହୁଏ, ଭବିଷ୍ୟତ୍‌ର କେତେ ଦଶନ୍ଧି ପରେ କ'ଣ ହେବ ତାରି ଉପରେ ଦୃଷ୍ଟି ରଖି ସେ ସେତେବେଳେ କଥାବାର୍ତ୍ତା କରୁଥିଲେ। ଚୁକ୍ତିପତ୍ରର ଦ୍ୱିତୀୟ ଦଫାରେ କି ଶର୍ତ୍ତ ଯୋଜନା ହୋଇଥିଲା, ତାହାର ମର୍ମ କ'ଣ ଥିଲା, ତାହା ବିଶ୍ଳେଷଣ କରିବାରେ ବର୍ତ୍ତମାନ ଲାଭ କ'ଣ? ଦିଲ୍ଲୀ ଚୁକ୍ତି-ପତ୍ରର ୧୭ ବର୍ଷ ପରେ ଭାରତ ପୂର୍ଣ୍ଣ ସ୍ୱାଧୀନ ହୋଇଗଲା। ଭାରତ ପରି ପୁରାତନ ଜାତିର ଜୀବନରେ ସତର ଟି ବର୍ଷ କେତେ ବା ସମୟ?

ମହାତ୍ମା ଗାନ୍ଧୀଙ୍କର ଜଣେ ସମାଲୋଚକ, ସୁଭାଷଚନ୍ଦ୍ର ବୋଷ, ଚୁକ୍ତିପତ୍ର ସ୍ୱାକ୍ଷରିତ ହେବା ପରେ ଗାନ୍ଧୀଙ୍କ ସଙ୍ଗେ ଗସ୍ତରେ ଯାଇଥିଲେ। ସେହି ଗସ୍ତବେଳେ ଗାନ୍ଧୀଙ୍କ ପ୍ରତି ଜନତାର ଉଚ୍ଛ୍ୱସିତ ଶ୍ରଦ୍ଧା ଦେଖି ସେ ଲେଖିଥିଲେ, 'ଜଣେ ନେତାଙ୍କୁ ଅନ୍ୟ କୌଣସିଠାରେ ଏତେ ସ୍ୱତଃସ୍ଫୂର୍ତ୍ତ ସଂବର୍ଦ୍ଧନା ମିଳିବା ବିସ୍ମୟକର ବୋଲି ମୁଁ ମନେ କରେ'। ବୋଷ ମଧ୍ୟ ସ୍ୱୀକାର କରିଛନ୍ତି ଯେ, ଆର୍‌ଉଇନ୍ 'ଜାତିଦଳର ଜଣେ ମୁଖ୍ୟ ସଦସ୍ୟ ହୋଇଥିବା ସତ୍ତ୍ୱେ···ଭାରତର ହିତାକାଂକ୍ଷୀ ବୋଲି ତାଙ୍କ କାର୍ଯ୍ୟରେ ପ୍ରମାଣିତ କରିଛନ୍ତି।' ଗାନ୍ଧୀ ବ୍ୟକ୍ତିଙ୍କ ପ୍ରତି ମନୋଭାବଦ୍ୱାରା ରାଜନୀତିରେ

ବହୁଗଣଃ ଗୃହୀତ ହେଉଥିଲେ । ଆରୱିନ୍‌ଙ୍କ ବ୍ୟକ୍ତିତ୍ୱ ଯୋଗୁଁ ହିଁ ସେ ଚୁକ୍ତିପତ୍ରରେ ସ୍ୱାକ୍ଷର କରିଥିବେ ।

ଚୁକ୍ତିପତ୍ର ସ୍ୱାକ୍ଷରିତ ହେବାର ଅବ୍ୟବହିତ ପରେ, ସରକାର ଚୁକ୍ତିପତ୍ରର ଅବମାନନା କରୁଛନ୍ତି ବୋଲି ଅଭିଯୋଗ ହେଲା ; ତେଣୁ ପୁଣି ଭାଇସ୍‌ରୟଙ୍କ ସଙ୍ଗେ କଥାବାର୍ତ୍ତା କରିବାକୁ ଗାନ୍ଧୀ ଦିଲ୍ଲୀ ଧାଇଁଲେ । ସେତେବେଳକୁ ଆରୱିନ୍‌ଙ୍କ ସ୍ଥାନରେ ଲର୍ଡ଼ ୱିଲିଂଡନ୍ ଭାଇସ୍‌ରୟ ହୋଇ ଆସିଥାନ୍ତି । ଅଭିଯୋଗମାନଙ୍କର ସୁସମାଧାନ ହୋଇଗଲା । କରାଚୀରେ ଯୁଦ୍ଧ ପରେ ବସିଥିବା କଂଗ୍ରେସର ବିଶେଷ ଅଧିବେଶନରେ ଗାନ୍ଧୀ ଦ୍ୱିତୀୟ ଗୋଲଟେବୁଲ୍ ବୈଠକକୁ ଏକମାତ୍ର ପ୍ରତିନିଧି ଭାବେ ଯୋଗ ଦେବାକୁ ନିର୍ବାଚିତ ହେଲେ । ସୁଭାଷଚନ୍ଦ୍ରଙ୍କ ଭାଷାରେ, 'ଏହି କରାଚୀ ଅଧିବେଶନ ହିଁ ମହାତ୍ମା ଗାନ୍ଧୀଙ୍କ ଲୋକପ୍ରିୟତା ଓ ଜନାନୁରାଗର ଶୀର୍ଷବିନ୍ଦୁ ।'

ଅଗଷ୍ଟ ୨୯ ତାରିଖର ମଧ୍ୟାହ୍ନରେ ଗାନ୍ଧୀ 'ରାଜପୁତାନା' ଜାହାଜରେ ବମ୍ବେଠାରୁ ବିଲାତ ଯାତ୍ରା କଲେ । ନାନା ଭାବରେ ତାଙ୍କର ସାହାଯ୍ୟକାରୀ ହୋଇ ଯାଇଥିଲେ ପଣ୍ଡିତ ମାଳବୀୟ, ଶ୍ରୀମତୀ ନାଇଡୁ, ତାଙ୍କ ପୁଅ ଦେବଦାସ, ମହାଦେବ ଦେଶାଇ (ଯେ କି ଗାନ୍ଧୀଙ୍କ କହିବା ଅନୁସାରେ, ବିଖ୍ୟାତ ଇଂରେଜ ପଣ୍ଡିତ ଜନ୍‌ସନ୍‌ଙ୍କ ସ୍ତାବକ ବସ୍‌ୱେଲ୍‌ଙ୍କୁ ଗାନ୍ଧୀଙ୍କ ସ୍ତାବକ ହେବାରେ ବଳିଯାଇଥିଲେ), ପ୍ୟାରେଲାଲ ନାୟାର୍ (ଅନ୍ୟତମ ସେକ୍ରେଟାରୀ ଓ ଶିଷ୍ୟ), ମିସ୍ ସ୍ଲେଡ଼୍ (ଯେ କି ଭାରତକୁ ନିଜର ସ୍ଥାୟୀ ବାସଭୂମି ଓ ଗାନ୍ଧୀଙ୍କୁ ନିଜର ଆଧ୍ୟାତ୍ମିକ ପିତା ବୋଲି ଗ୍ରହଣ କରିଥିଲେ), ଏବଂ ବିଶିଷ୍ଟ ଶିଳ୍ପପତି ଘନଶ୍ୟାମ ଦାସ ବିର୍ଲା । ଗାନ୍ଧୀ ଜାହାଜରେ ଚଢ଼ିଲା ବେଳେ କିନ୍ତୁ କହିଥିଲେ, 'ବିଲାତରୁ ମୁଁ ଶୂନ୍ୟ ହସ୍ତରେ ଫେରିବାର ପୂର୍ଣ୍ଣ ସମ୍ଭାବନା ଅଛି ।'

ଗାନ୍ଧୀ ନିର୍ଦ୍ଦେଶ ଦେଇଥିଲେ ଯେ, ସେ ଓ ତାଙ୍କ ଦଳର ସମସ୍ତେ ଜାହାଜର ସବା ତଳ କ୍ଲାସ୍‌ରେ ଯାତ୍ରା କରିବେ । ଜାହାଜ ଛାଡ଼ିବା ପରେ ଯେତେବେଳେ ସେ ଜାଣିଲେ ଯେ, ତାଙ୍କ ସାଙ୍ଗରେ ବହୁତ ଗୁଡ଼ାଏ ମାଲପତ୍ର ଆସୁଛି, ସେତେବେଳେ ସେ ବାଛିବାଛି କରି ସାତଟା ସୁଟ୍‌କେସ୍ ଓ ଟ୍ରଙ୍କ୍ ଏଡେନ୍‌ଠାରୁ ଫେରସ୍ତ କରିବାର ବ୍ୟବସ୍ଥା ନିଜ ତତ୍ତ୍ୱାବଧାନରେ କରିଥିଲେ । ସେ ଦିନ ଓ ରାତିର ସବୁତକ ସମୟ ଜାହାଜର ପଟତନ ଉପରେ

କଟାଉଥିଲେ । ସେଇ ମେଲରେ ସୂତାକଟା, ଲେଖାପଢ଼ା, ଶୁଆବସା, ଖିଆପିଆ, ଉପାସନା, ଗପସପ, ଏବଂ ଜାହାଜର ସାନ ପିଲାଙ୍କ ସଙ୍ଗେ ଖେଳ କୌତୁକ ଚାଲିଥାଏ । ପୃଥିବୀର ଅନ୍ୟ ବହୁ ସମୁଦ୍ରଯାତ୍ରୀଙ୍କ ପରି କୌତୂହଳୀ ହୋଇ ସେ ପଟତଳ ଉପରେ କ୍ୟାପ୍‌ଟେନଙ୍କ ମଞ୍ଚକୁ ଯାଇ ତାଙ୍କ ଅନୁମତିରେ ଜାହାଜର ସ୍ଥାନ ନିର୍ଦ୍ଦେଶକ ଯନ୍ତ୍ରକୁ ଚାହିଁଥିଲେ ଓ ମିନିଟିକ ପାଇଁ ନିଜେ ଜାହାଜ ଚଳାଇଥିଲେ ।

ଗାନ୍ଧୀ ସେପ୍‌ଟେମ୍ବର ୧୨ ତାରିଖରେ ଲଣ୍ଡନରେ ପହଞ୍ଚିଲେ ଏବଂ ଡିସେମ୍ବର, ୫ ପର୍ଯ୍ୟନ୍ତ ଇଂଲଣ୍ଡରେ ରହିଲେ । ଲଣ୍ଡନର ପୂର୍ବ ପ୍ରାନ୍ତରେ ସରକାରୀ ସାହାଯ୍ୟରେ ନୂଆ ହୋଇ ତୋଳା ହୋଇଥିବା ଗୋଟିଏ ଘରେ ସେ ରହିଲେ । ଘରଟିର ନାମ କିଙ୍ଗ୍‌ସ୍ଲି ହଲ୍ ; ମେରିଏଲ୍ ଲିଷ୍ଟର୍ ଏଥିରେ ବାସ କରୁଥିଲେ । ମିସେସ୍ ଲିଷ୍ଟର୍ ୧୯୨୭ ଖ୍ରୀଷ୍ଟାବ୍ଦରେ ତାଙ୍କ ସଙ୍ଗେ ଦେଖା କରିବାକୁ ଭାରତ ଆସିଥିଲେ । ଲଣ୍ଡନରେ ସେ ତାଙ୍କର ଅତିଥି ହେଲେ । କିଙ୍ଗ୍‌ସ୍ଲି ହଲ୍ ନଗରୀର ମଧ୍ୟଭାଗରେ ଥିବା ସେଣ୍ଟ୍ ଜେମ୍‌ସ୍ ପ୍ୟାଲେସ୍‌ଠାରୁ ପାଞ୍ଚମାଇଲ୍ ଦୂର । ଏଇଠାରେ ଗୋଲ୍‌ଟେବଲ୍ ବୈଠକ ବସୁଥାଏ ।

ବନ୍ଧୁମାନେ କହିଲେ, ସେ ଯଦି ସେଣ୍ଟ୍ ଜେମସ୍ ପ୍ୟାଲେସ୍‌ର ନିକଟବର୍ତ୍ତୀ କୌଣସି ହୋଟେଲରେ ରହନ୍ତି, ତେବେ ଶୋଇବାକୁ ଓ କାମ କରିବାକୁ ବହୁତ ସମୟ ମିଳିବ । ହୋଟେଲରେ ଅଧିକ ଖର୍ଚ୍ଚ ହେବ ବୋଲି ଗାନ୍ଧୀ ରାଜି ହେଲେ ନାହିଁ । ଲଣ୍ଡନର ମଧ୍ୟସ୍ଥଳରେ କେତେକ ଭାରତୀୟ ଓ ଇଂରେଜଙ୍କର ବଡ଼ ଘର ଥିଲା ; ସେଠାରେ ରହିବାକୁ ପ୍ରସ୍ତାବ ଆସିଲା, କିନ୍ତୁ ପଇସା ଦେବାକୁ ପଡ଼ିବ ନାହିଁ ବୋଲି ସେଥିରୁ କୌଣସିଟିରେ ସେ ରହିଲେ ନାହିଁ । ପ୍ରତ୍ୟହ ସଂଧ୍ୟାରେ ସେ କିଙ୍ଗ୍‌ସ୍ଲି ହଲକୁ ଫେରୁଥାନ୍ତି । ଅନେକ ଦିନ ଆସୁ ଆସୁ ଖୁବ୍ ଡେରି ହୋଇଯାଏ । କିନ୍ତୁ ସେ କହନ୍ତି, ତାଙ୍କ ନିଜ ଗୋଷ୍ଠୀ, ଦରିଦ୍ର ଲୋକଙ୍କ ଭିତରେ ରହିବାକୁ ତାଙ୍କୁ ସୁଖ ଲାଗୁଛି । ତାଙ୍କ ସଙ୍ଗେ ଦେଖା କରିବାକୁ ଚାହୁଁଥିବା ଲୋକଙ୍କୁ ପୂର୍ବ ପ୍ରାନ୍ତର ଏତେ ଦୂର ଆସିବା କଷ୍ଟ ଏଡ଼ିବା ସକାଶେ ସେ ନାଇଟ୍‌ସ୍ ବ୍ରିଜ୍‌ର ୮୮ ନମ୍ବର ଘରଟି ଭଡ଼ା ନେଇଥିଲେ । ଏତିକ ମଧ୍ୟ ବନ୍ଧୁମାନଙ୍କ ଚାପରେ ବାଧ୍ୟ ହୋଇ କରିଥିଲେ । (ଏ ଘରଟି ଦ୍ୱିତୀୟ ମହାଯୁଦ୍ଧରେ ଧ୍ୱଂସ ହୋଇ ଯାଇଛି) ।

ସକାଳେ ସେ କଙ୍ଗ୍ସ୍ଲି ହଲ ସମୀପସ୍ଥ ଦରିଦ୍ର ବସ୍ତିର ଗଳି-ମାନଙ୍କରେ ବୁଲନ୍ତି । ସକାଳୁ ଉଠି କାମକୁ ଯାଉଥିବା ନର-ନାରୀମାନେ ହସ ହସ ମୁହଁରେ ତାଙ୍କୁ ଗୁହାଁ ନମସ୍କାର ହୁଅନ୍ତି, କେହି କେହି ଟିକିଏ ଅଟକି ଯାଇ କଥାବାର୍ତ୍ତା ବି କରନ୍ତି । ବେଳେ ବେଳେ ସେମାନଙ୍କ ଭିତରୁ କାହାର କାହାର ଘରକୁ ଗାନ୍ଧୀ ଦେଖିବାକୁ ଯାନ୍ତି । ସେମାନେ ଯାଙ୍କୁ 'ଚଚା ଗାନ୍ଧୀ' ବୋଲି କହୁଥାନ୍ତି । ଥରେ ଗୋଟାଏ ବଗୁଲିଆ ଟୋକା ପାଟିକଲା, 'ଏ ଗାନ୍ଧୀ, ତୁମ ପାଇଜାମା କାହିଁ ?' ମହାତ୍ମାଜୀ ଆନନ୍ଦରେ ଖୁବ୍ ହସିଲେ ।

ଥରେ ଜଣେ ଖବରକାଗଜ-ସଂବାଦଦାତା ଗାନ୍ଧୀଙ୍କୁ ତାଙ୍କ ପୋଷାକ ବିଷୟରେ ପଚାରିଲେ; ଗାନ୍ଧୀ କହିଲେ, 'ତୁମେ ସବୁ ଆଣ୍ଠୁ ଲୁଚୁଥିବା ଲମ୍ବା ପାଇଜାମା (Plus fours) ପିନ୍ଧ; ଆମେ ପିନ୍ଧୁ ଆଣ୍ଠୁ ଦିଶୁଥିବା ଲୁଗା—[ତୁମର ପ୍ଲସ୍ (ଯୁକ୍ତ)କୁ ଆମର ମାଇନସ୍ (ବିଯୁକ୍ତ) ।] ଗାନ୍ଧୀଙ୍କ ପ୍ରତ୍ୟେକ କଥା ଓ କାର୍ଯ୍ୟ ଖବରକାଗଜ ପାଠକ ଅତି ଆଗ୍ରହରେ ପଢ଼ିବାକୁ ଚାହୁଥାନ୍ତି, ତେଣୁ ଖବରକାଗଜବାଲାମାନେ ତାଙ୍କ ବିଷୟରେ ଶ୍ରେଷ୍ଠ ଶ୍ରେଷ୍ଠ କଥା ବି ଛାପୁଥାନ୍ତି । ଇୟୁରୋପ ଓ ଆମେରିକାର ଦୈନିକ ଓ ସାପ୍ତାହିକ ସମ୍ବାଦପତ୍ରମାନେ ଗାନ୍ଧୀଙ୍କ ବିଷୟରେ ସ୍ୱତନ୍ତ୍ର ପ୍ରବନ୍ଧ ଯୋଗାଇବାକୁ ଆଗ୍ରହର ସହିତ ନିଜ ନିଜ ପ୍ରତିନିଧିଙ୍କୁ ବିଦାୟ କରୁଥାନ୍ତି । ଜର୍ଜ୍ ସ୍ଲୋକମ୍ ଗାନ୍ଧୀଙ୍କ ମହତ୍ତ୍ୱ ବିଷୟରେ ଗୋଟିଏ ପ୍ରବନ୍ଧ ତାଙ୍କ କାଗଜରେ ପ୍ରକାଶ କରାଇଥିଲେ ମହତ୍ତ୍ୱର ଉଦାହରଣ ଦେବାକୁ ଯାଇ ସେ ଲେଖିଥିଲେ ଯେ, ଇଂଲଣ୍ଡର ଯୁବରାଜ (Prince of Wales) ଭାରତ ଭ୍ରମଣରେ ଯିବା ସମୟରେ ଗାନ୍ଧୀ ତାଙ୍କୁ ସାଷ୍ଟାଙ୍ଗ ପ୍ରଣିପାତ କରିଥିଲେ । ପରେ ସ୍ଲୋକମ୍‌ଙ୍କ ସଙ୍ଗେ ଦେଖା ହୁଅନ୍ତେ, ଗାନ୍ଧୀ ତାଙ୍କୁ ହସି ହସି କହିଲେ, 'କାଓ, ମିଷ୍ଟର୍ ସ୍ଲୋକମ୍, ଯା ଯାହା ଲେଖିଲେ ଏଥିରୁ ଆପଣଙ୍କ କଳ୍ପନା-ଶକ୍ତିର ପରାକାଷ୍ଠା ପ୍ରମାଣିତ ହେଉନାହିଁ । ଶହ ଶହ ବର୍ଷ ତାକୁ ଚାପି ରଖିବାରେ ଭାଗୀଦାର ହୋଇଥିବା ଯୋଗୁଁ ମୁଁ ଭାରତର ଦରିଦ୍ରତମ ଅସ୍ପୃଶ୍ୟ ଆଗରେ ଆଣ୍ଠୁ ନୁଆଇଁ ତା' ପାଦର ଧୂଳି ମୁଣ୍ଡରେ ମାରି ପାରେ; କିନ୍ତୁ ଯୁବରାଜ କାହିଁକି, ନିଜେ ରାଜାଙ୍କ ଆଗରେ ବି ମୁଁ ପ୍ରଣିପାତ କରିବି ନାହିଁ—ତାହାର ଏକମାତ୍ର କାରଣ, ସେ ଦର୍ପ ଓ କ୍ଷମତାର ପ୍ରତୀକ ।' ରାଜା ପଞ୍ଚମ ଜର୍ଜ୍ ଓ ରାଣୀ ମେରୀଙ୍କ ସଙ୍ଗେ ଚା ଖାଇବାକୁ ଗାନ୍ଧୀ

ବକିଂହାମ ରାଜପ୍ରାସାଦକୁ ଯାଇଥିଲେ । ଏ ଦିନର ପୂର୍ବରୁ ସମଗ୍ର ଇଂଲଣ୍ଡ ଉତ୍ସୁକ ଭାବେ ଜାଣିବାକୁ ଚାହୁଥାଏ, ସେ କ'ଣ ପିନ୍ଧି ଯିବେ । ସେ ପିନ୍ଧିଥିଲେ ଖଣ୍ଡିଏ କଟିବସ୍ତ୍ର, ଦଳେ ଚପଲ, ଯୋଡ଼ା ହୋଇଥିଲେ ଖଣ୍ଡିଏ ଶାଲ, ଅଣ୍ଟାରୁ ତାଙ୍କ ପକେଟ୍ ଓ୍ୱାଚଟି ଝୁଲୁଥାଏ । ରାଜାଙ୍କ ପାଖକୁ ଗଲାବେଳେ ସେ ଯଥେଷ୍ଟ ପୋଷାକ ପିନ୍ଧିଥିଲେ କି ବୋଲି ପରେ ଜଣେ ପଚାରିଥିଲେ । ଗାନ୍ଧୀ ସାଙ୍ଗେ ସାଙ୍ଗେ ଉତ୍ତର ଦେଇଥିଲେ, 'ଆମ ଦୁହିଙ୍କୁ ଯଥେଷ୍ଟ ହେଲା ଭଳି ପୋଷାକ ଏକା ରାଜାଙ୍କ ଦେହରେ ଥିଲା ।'

ପ୍ରଥମ ମହାଯୁଦ୍ଧ ବେଳେ ବ୍ରିଟେନ୍‌ର ପ୍ରଧାନମନ୍ତ୍ରୀ ଥିବା ଡ୍ୟାଭିଡ୍ ଲଏଡ୍ ଜର୍ଜ ସରେ ଅଞ୍ଚଳର ଚର୍ଟ୍‌ଠାରେ ଥିବା ତାଙ୍କ କୃଷିଘରକୁ ଗାନ୍ଧୀଙ୍କୁ ନିମନ୍ତ୍ରଣ କରିଥିଲେ । ଦୁହେଁ ତିନିଘଣ୍ଟା କାଳ କଥାବାର୍ତ୍ତା ହେଲେ । ୧୯୩୮ରେ ମୁଁ (ଲୁଇ ଫିଶର୍) ଯେତେବେଳେ ସେଇ ଚର୍ଟ୍‌ଠାରେ ଲଏଡ୍ ଜର୍ଜଙ୍କ ସଙ୍ଗେ ସାକ୍ଷାତ କଲି, ସେ ଗାନ୍ଧୀ ସେଠାକୁ ଆସିଥିବା କଥା କହିଲେ । ସେ କହିଲେ, 'ସେ ଦିନ ମୋର ଚାକରମାନେ ଯାହା କଲେ, ସେପରି କରିବାକୁ, ଅନ୍ୟ କୌଣସି ଅତିଥି ତାଙ୍କୁ କେବେ ଅନୁପ୍ରାଣିତ କରି ପାରିନାହାନ୍ତି ।' ସେମାନେ ସମସ୍ତେ ସ୍ୱତଃ ବାହାରକୁ ଆସି ପୁଣ୍ୟାତ୍ମାଙ୍କୁ ଭେଟିଥିଲେ ।

ଏହାର ଚାରି ବର୍ଷ ପରେ ତାଙ୍କର ଚର୍ଟ୍ ଯିବା କଥା ଲଏଡ୍ ଜର୍ଜ କହୁଥିଲେ ବୋଲି ମୁଁ ଗାନ୍ଧୀଙ୍କୁ କହିଲି । ସେ ଆଗ୍ରହର ସହିତ ମୋତେ ପଚାରିଲେ, 'ହଁ ଯାଇଥିଲି ତ ; ସେ ଆଉ କ'ଣ କହୁଥିଲେ ?'

'ସେ କହିଲେ, ଆପଣ ତାଙ୍କ ସୋଫା ଉପରେ ଗୋଡ଼ ଟେକି ବସିବାର କିଛି ସମୟ ପରେ ଗୋଟାଏ କାଳ ବିରାଡ଼ି ଝରକା ବାଟେ ଆସି ଆପଣଙ୍କ ଗୋଡ଼ରେ ଶୋଇଲା । ସେ ବିରାଡ଼ିକୁ ଏଥି ପୂର୍ବରୁ ସେମାନେ କେହି କେବେ ଦେଖି ନ ଥିଲେ ।'

ଗାନ୍ଧୀ ମନେ ପକାଇ କହିଲେ, 'ହଁ, ସେ କଥା ଠିକ୍ ।'

'ପୁଣି ଲଏଡ୍ ଜର୍ଜ କହୁଥିଲେ, ଆପଣ ଚାଲି ଯିବା ପରେ ବିରାଡ଼ିଟା କୁଆଡ଼େ ଚାଲିଗଲା ।'

ଗାନ୍ଧୀ ବିସ୍ମିତ ହୋଇ କହିଲେ, 'ଏଁ, ଏକଥା ମୁଁ ଜାଣି ନ ଥିଲି ।'

ମୁଁ ଆହୁରି କହିଲି, 'ଲଏଡ ଜର୍ଜ କହିଲେ, ପୁଣି ଯେତେବେଳେ

ମିସ୍ ସ୍ଲେଡ୍ ତାଙ୍କ ସଙ୍ଗେ ଟ୍ରେନ୍‌ଠାରେ ସାକ୍ଷାତ କରିଥିଲେ, ସେତେବେଳେ ସେଇ ବ୍ଲାଉଜ୍ ଆଉ ଥରେ ଦେଖା ଦେଇଥିଲା ।'

ଗାନ୍ଧୀ କହିଲେ, 'ଯାହା ମଧ୍ୟ ମୁଁ ଆଜି ନୂଆ ଶୁଣୁଛି ।'

ଇଂଲଣ୍ଡରେ ପହଞ୍ଚିଲା ମାତ୍ରେ, ୧୯୨୪ରେ ତାଙ୍କ ଆପେଣ୍ଡିସାଇଟିସ୍ (ଉପାନ୍ତ ପ୍ରଦାହ) ଅପରେସନ୍ କରିଥିବା କର୍ଣ୍ଣେଲ ମ୍ୟାଡକ୍‌ଙ୍କ ଖବର ନେଲେ, ଏବଂ ଟିକିଏ ଫୁରସତ୍ ପାଇବାମାତ୍ରେ ସେ କର୍ଣ୍ଣେଲ ଓ ମିସେସ୍ ମ୍ୟାଡକଙ୍କ ଘରକୁ ଯାଇ ସେଠାରେ କେତେ ଘଣ୍ଟା କଟାଇଥିଲେ । ମ୍ୟାଡକ୍‌ଙ୍କ ଘର 'ରିଡ଼ି' ନିକଟରେ । ସେମାନେ ସୁନ୍ଦର ବଗିଚାରେ ବସି ପୂର୍ବ ସ୍ମୃତି କଥା ପକାଇଲେ । ଉଭୟେ ଉଭୟଙ୍କୁ କହିଲେ, 'ଆପଣ ସେ ଦିନଠାରୁ ବର୍ଷେ ବି ବଡ଼ ହେଲା ପରି ଦିଶୁ ନାହାନ୍ତି ।'

ଚାର୍ଲି ଚ୍ୟାପ୍‌ଲିନ୍ ଗାନ୍ଧୀଙ୍କ ସଙ୍ଗେ ସାକ୍ଷାତ କରିବାକୁ ଚାହିଁଲେ । ଯାହାଙ୍କ ନାମ ଗାନ୍ଧୀ ପୂର୍ବରୁ କେବେ ଶୁଣି ନ ଥିଲେ । ସେ ଦିନେ ବି ଚଳଚ୍ଚିତ୍ର ଦେଖି ନ ଥିଲେ । ଚ୍ୟାପ୍‌ଲିନ୍‌ଙ୍କ ପରିଚୟ ପାଇବା ପରେ ସେ କହିଲେ, 'ନା, ଅଭିନେତାମାନଙ୍କ ସହିତ କଥାବାର୍ତ୍ତା ହେବାକୁ ମୋର ବିଶେଷ ଆଗ୍ରହ ନାହିଁ ।' କିନ୍ତୁ ଚ୍ୟାପ୍‌ଲିନ୍ ଏଇ ଇଷ୍ଟ୍ ଏଣ୍ଡ୍‌ର ଗୋଟିଏ ଦରିଦ୍ର ପରିବାରରେ ଜନ୍ମ ହୋଇଥିଲେ ବୋଲି ଶୁଣି ସେ ତାଙ୍କୁ ସାକ୍ଷାତ କରିବାକୁ ରାଜି ହେଲେ । ଡକ୍‌ଟର କାଟିଆଲ୍‌ଙ୍କ ଘରେ ସାକ୍ଷାତ ହେଲା ; ସଙ୍ଗେ ସଙ୍ଗେ ଅଦାନ୍ତ ଓ ସୁଦାନ୍ତ ସାକ୍ଷାତକାରୀ ଦୁହିଙ୍କର ଲାଗିଲା ହସର ପ୍ରତିଦ୍ୱନ୍ଦ୍ୱିତା । ଚ୍ୟାପ୍‌ଲିନ୍‌ଙ୍କର ପ୍ରଥମ ପ୍ରଶ୍ନ ଥିଲା, ଗାନ୍ଧୀଙ୍କର ଯନ୍ତ୍ରସଭ୍ୟତା ଉପରେ ମତାମତ ବିଷୟରେ । ଏହାରି ଉପରେ ଦୀର୍ଘ ଆଲୋଚନା ହେବାର କଥା, ହେଲା । ପରେ ଅଭିନେତା ଚ୍ୟାପ୍‌ଲିନ୍ ଏ ବିଷୟରେ ଯେଉଁ ଚଳଚ୍ଚିତ୍ରଟିଏ କଲେ ସେଥିପାଇଁ ପ୍ରେରଣା ଗାନ୍ଧୀଙ୍କଠାରୁ ମିଳିଥିଲା ପରି ମନେହୁଏ ।

ଜର୍ଜ୍ ବର୍ଣ୍ଣାଡ୍ ଶ ମଧ୍ୟ ଦେଖା କରିଥିଲେ । ବିନୟ ତାଙ୍କର ସ୍ୱଭାବ-ସୁଲଭ ନ ହେଲେହେଁ ସେ ନିଜକୁ ଶ୍ରେଷ୍ଠ ମହାତ୍ମା ବୋଲି କହି ମହାତ୍ମାଜୀଙ୍କୁ ପ୍ରଥମ ସ୍ଥାନ ଦେଲେ । ସେ କହିଲେ, 'ମୁଁ ଓ ଆପଣ ଯେଉଁ ଗୋଷ୍ଠୀର, ସେ ଗୋଷ୍ଠୀର ସଂଖ୍ୟା ସମଗ୍ର ପୃଥିବୀରେ ଅତି କମ୍ ।' ବହୁ ବିଷୟରେ ଦୁହେଁ କଥାବାର୍ତ୍ତା ହେଲେ । ଶ'ଙ୍କ ଶ୍ଳେଷପୂର୍ଣ୍ଣ କଥାରେ 'ବଡ଼ ମହାତ୍ମା' ବିଶେଷ ଆମୋଦିତ ହୋଇଥିଲେ । କିନ୍ତୁ ଯେଉଁ ଭାଷା ଶ୍ରୋତା ବା ପାଠକର ମନରେ ଆଘାତ ଦିଏ, ସେପରି ଭାଷା ବ୍ୟବହାର କରିବାରେ ଶ'ଙ୍କ

ଧ୍ରବଣତା ଗାନ୍ଧୀଙ୍କୁ ସୁଖ ଲଗିଥିଲା ବୋଲି କୁହା ଯାଇ ନ ପାରେ । ଏ ଢଙ୍ଗ ଟଲଷ୍ଟୟଙ୍କୁ ବି ସୁଖ ଲାଗୁ ନ ଥିଲା ।

ଲର୍ଡ଼ ଆର୍‌ଉଇନ୍‌, ଜେନେରାଲ ସ୍ମଟସ୍‌, କ୍ୟାଣ୍ଟରବ୍ୟୁରିର ଆର୍କ ବିଶପ୍‌, କ୍ୟାଣ୍ଟରବ୍ୟୁରିର ଡିନ୍‌, ହ୍ୟାରୋଲ୍ଡ଼ ଜେ. ଲସ୍କି, ମାଞ୍ଚେଷ୍ଟର୍ ଗାର୍ଡ଼ିଆନ୍‌ର ଅବସରପ୍ରାପ୍ତ ସଂପାଦକ ସି. ପି. ସ୍କଟ୍‌, ଆର୍ଥର୍ ହେଣ୍ଡର୍‌ସନ୍‌ ପ୍ରଭୃତି ବହୁ ବିଶିଷ୍ଟ ଲୋକଙ୍କ ସଙ୍ଗେ ଗାନ୍ଧୀଙ୍କର ସାକ୍ଷାତ ହୋଇଥିଲା । ଚର୍ଚ୍ଚିଲ ଯାଙ୍କ ସଙ୍ଗେ ଦେଖା କରିବାକୁ ନାହିଁ କରିଦେଲେ । ସ୍ମଟସ ଦକ୍ଷିଣ ଆଫ୍ରିକା ବିଷୟ ଉଠାଇ କହିଲେ, 'ଆପଣ ମୋତେ ଯେତେ ହରବର କରିଥିଲେ, ମୁଁ ଆପଣଙ୍କୁ ସେତେ କରି ନ ଥିଲି ।'

ଗାନ୍ଧୀ କ୍ଷମା ମାଗି କହିଲେ, 'ମୁଁ ଏ କଥା ଜାଣି ପାରି ନ ଥିଲି ।'

ମଣ୍ଟେସୋରି ଟ୍ରେନିଂ କଲେଜରେ ସୁସ୍ଥ ଓ ପ୍ରଫୁଲ୍ଲ ବାଳକ ବାଳିକାମାନଙ୍କର ସୁନ୍ଦର ଓ ତାଳଲୟଯୁକ୍ତ ଶରୀରଚାଳନା ଓ ବ୍ୟାୟାମକୁ ସେ ଆନନ୍ଦରେ ପିଇଗଲା ପରି ଚାହିଁ ରହିଲେ । ସେମାନଙ୍କୁ ଦେଖି ତାଙ୍କର ମନେ ପଡ଼ିଲା ଭାରତୀୟ ଗ୍ରାମମାନଙ୍କର ଅର୍ଦ୍ଧଭୁକ୍ତ ଲକ୍ଷ ଲକ୍ଷ ପିଲାଙ୍କ କଥା । ଏମାନଙ୍କ କଥା ମନେ ପଡ଼ିବାରୁ ଗାନ୍ଧୀଙ୍କୁ ଦୁଃଖ ଲାଗିଲା । ଆମମାନଙ୍କର 'ମହାନ୍ ଉପଦେଷ୍ଟା' ବୋଲି ମ୍ୟାଡାମ୍ ମେରିଆ ମଣ୍ଟେସୋରି ଗାନ୍ଧୀଙ୍କର ପରିଚୟ ଦେଲେ । ସେ କହିଲେ, 'ବିଶ୍ୱସଭ୍ୟତା ଓ ବିଶ୍ୱର ବାଳକ ବାଳିକାଙ୍କ ବିଷୟରେ ଆମର ଚିନ୍ତା ଯୋଗୁଁ ଆମେ ସେମାନଙ୍କ ସଙ୍ଗେ ଏକ ହୋଇଥାଇଁ...... ।' ଗାନ୍ଧୀ ନିଜ ବକ୍ତୃତାରେ କହିଲେ, 'ମୁଁ ଅନ୍ତରର ସହିତ ବିଶ୍ୱାସ କରେ, କୌଣସି ଶିଶୁ ମା' ପେଟରୁ ବଗୁଲିଆ ହୋଇ ଜନ୍ମ ହୁଏ ନାହିଁ—ଖରାପ ଅର୍ଥରେ ବଗୁଲିଆ ବୋଲି କହିଲେ ଯାହା ବୁଝାଏ ମୁଁ ତା'କୁ ହିଁ କହୁଛି । ଶିଶୁର ମାନସିକ ବିକାଶ ହେଉଥିବା ସମୟରେ ପିତାମାତା ଯଦି ସଦାଚରଣ କରନ୍ତି ; ତେବେ ଶିଶୁ ସ୍ୱତଃପ୍ରବୃତ୍ତ ହୋଇ ସତ୍ୟ ଓ ଶ୍ରଦ୍ଧାର ପଥରେ ପଥିକ ହେବ... । ଶହ ଶହ - ହଜାର ହଜାର ବୋଲି କହିବାକୁ ଯାଉଥିଲି—ଶିଶୁଙ୍କର ଘନିଷ୍ଠ ପରିଚୟ ପାଇ ମୁଁ ଜାଣିଛି ତୁମ ଆମ ଅପେକ୍ଷା ସେମାନଙ୍କର ମହତ୍ତ୍ୱ ମର୍ଯ୍ୟାଦାର ଜ୍ଞାନ ଅଧିକ... । ଯିଶୁ କହିଛନ୍ତି, ଶିଶୁର ମୁହଁରୁ ପ୍ରକୃତ ପ୍ରଜ୍ଞାପୂର୍ଣ୍ଣ କଥା ବାହାରେ । ଏହାଠାରୁ ଉଚ୍ଚତର ଓ ମହତ୍ତର ସତ୍ୟ ମୁଁ ଶୁଣିନାହିଁ । ମୁଁ ଏହା ଯଥାର୍ଥ ବୋଲି ବିଶ୍ୱାସ କରେ ।'

ଅତି ସାହସରେ ଯେ କୌଣସି ଉଦ୍ୟମ ଆରମ୍ଭ କରିଦେବା ଆମେରିକୀୟ ଲୋକଙ୍କର ପ୍ରକୃତି ବୋଲି କୁହାଯାଏ । ତାହାର ପ୍ରମାଣ ଦେଇ, କଲମ୍ବିଆ ବେତାରବାର୍ତ୍ତା ପ୍ରଚାରର କଂପାନୀ, ଗାନ୍ଧୀ ଇଂଲଣ୍ଡରେ ଯାଇ ପହଞ୍ଚିବା ପରଦିନ ସେ ଆମେରିକା ଲୋକଙ୍କୁ ରେଡ଼ିଓ ଭାଷଣ ଦେବେ ବୋଲି ବ୍ୟବସ୍ଥା କରି ଦେଇଥାନ୍ତି । ଆଗରୁ ବକ୍ତବ୍ୟ ଲେଖି ତାକୁ ପଢ଼ିବାକୁ ଗାନ୍ଧୀ ନାହିଁ କଲେ । ସେ ତୁଣ୍ଡରୁ କହିବେ ବୋଲି ସ୍ଥିର ହେଲା । ବେତାର କେନ୍ଦ୍ରକୁ ଯାଇ, ସେ ମାଇକ୍ରୋଫୋନ୍ ଆଡ଼କୁ ଚାହିଁ କହିଲେ, 'କ'ଣ, ଏଇ ଯନ୍ତ୍ର ଆଗରେ କହିବି ?' ସେତେବେଳକୁ ଯନ୍ତ୍ର ଚାଲୁ ହୋଇଯାଇଥାଏ, ତେଣୁ ଏଇ ପ୍ରଶ୍ନ ହିଁ ହେଲା ତାଙ୍କ ବକ୍ତୃତାର ପ୍ରଥମ ବାକ୍ୟ ।

ଗାନ୍ଧୀ କହିଲେ ଭାରତୀୟ ଲୋକେ ସ୍ୱାଧୀନତା ପାଇଁ ଆନ୍ଦୋଳନ କରୁଛନ୍ତି ବୋଲି ଯେ ସମଗ୍ର ବିଶ୍ୱର ଦୃଷ୍ଟି ଭାରତର ସ୍ୱାଧୀନତା ଆନ୍ଦୋଳନ ଉପରେ ପଡ଼ିଛି ତାହା ନୁହେଁ । ଏଭଳି ଦୃଷ୍ଟି ପଡ଼ିବାର ପ୍ରକୃତ କାରଣ, 'ଭାରତ ଯେଉଁ ରୀତିରେ ଆନ୍ଦୋଳନ କରୁଛି ତାହା ଅନନ୍ୟସାଧାରଣ । ଇତିହାସରୁ ଯେତେଦୂର ଜଣାଯାଏ, ପୂର୍ବେ ସ୍ୱାଧୀନତା ପାଇବାକୁ କୌଣସି ଜାତି ଏ ପନ୍ଥା ଧରି ନାହାନ୍ତି······। ଆଜଯାଏଁ, ପଶୁବୃତ୍ତି ଅବଲମ୍ବନ କରି ଲୋକେ ସ୍ୱାଧୀନତା ପାଇଁ ଲଢ଼ି ଆସିଛନ୍ତି । ଯେଉଁମାନଙ୍କୁ ନିଜର ଶତ୍ରୁ ବୋଲି ମନେ କରିଛନ୍ତି, ତାଙ୍କ ବିରୁଦ୍ଧରେ ଲୋକେ ପ୍ରତିହିଂସା କରିଛନ୍ତି······। ଭାରତରେ ଆମେ ଏହାର ବିପରୀତ ଆଚରଣ କରିବାକୁ ଉଦ୍ୟମ କରୁଛୁ । ଆମେ ମନେ କରୁଛୁଁ, ପଶୁ ସମାଜରେ ଯେଉଁ ରୀତି ଚଳେ ତାହା ମାନବିକ ମହତ୍ତ୍ୱର ଅନୁକୂଳ ନୁହେଁ । ମୋର ବ୍ୟକ୍ତିଗତ ମତ, ପ୍ରୟୋଜନ ହେଲେ, ଆମେ ସ୍ୱାଧୀନତା ପାଇଁ ଯୁଗଯୁଗ ଧରି ଅପେକ୍ଷା ପଛେ କରିବୁଁ, ତୁରନ୍ତ ସ୍ୱାଧୀନତା ପାଇବାକୁ ରକ୍ତପାତ କରିବାକୁ ଯିବୁନାହିଁ । ମୁଁ ମୋ ଅନ୍ତରର ଗଭୀରତମ ପ୍ରଦେଶରେ ଅନୁଭବ କରୁଛି ଯେ······ ରକ୍ତପାତ କରି କରି ପୃଥିବୀ ଏତେ ବିରକ୍ତ ହୋଇଗଲାଣି ଯେ, ତା' ଅପେକ୍ଷା ସର୍ବନାଶକୁ ଶ୍ରେୟ ମନେ କରିବାକୁ ଆରମ୍ଭ କଲାଣି । ସମଗ୍ର ପୃଥିବୀ ଏ ରୀତିର ପ୍ରତିକାର ଖୋଜି ହେଉଛି । ମୋର ଧାରଣା, ପ୍ରତିକାର ପାଇଁ ସତୃଷ୍ଣଭାବେ ଚାହିଁ ରହିଥିବା ପୃଥିବୀକୁ ପୁରୁଣା ସଭ୍ୟତାର ଦେଶ ଭାରତବର୍ଷ ଏ ବିଷୟରେ ମାର୍ଗ ଦେଖାଇବ । ମୋ ଦେଶ ଏ ଭାଗ୍ୟର ଅଧିକାରୀ ହେବ ବୋଲି ବିଶ୍ୱାସ କରି ମୁଁ ଗର୍ବ ଅନୁଭବ କରୁଛି ।

'କିନ୍ତୁ ଭାରତରେ ଆମେ ସମସ୍ତେ ଏକମନ ନୋହୁଁ । ଏହା ସ୍ୱୀକାର କଲାବେଳେ ମୋର ଗର୍ବ ଖର୍ବ ହୋଇଯାଉଛି । ଆମ ଦେଶରେ ହିନ୍ଦୁ ଓ ମୁସଲମାନ ପରସ୍ପରକୁ ହିଂସା କରୁଛନ୍ତି । ଯାହାଠାରୁ ଆହୁରି ଅପମାନର କଥା ଯେ, ଆମେ ହିନ୍ଦୁମାନେ, ଆମ ନିଜ ଜାତିର କୋଟି କୋଟି ଲୋକଙ୍କୁ ଏତେ ନୀଚ ମନେ କରୁଛୁଁ ଯେ ତାଙ୍କୁ ଛୁଇଁଲେ ଛୁଆଁ ହେଉଛୁ ।'

ଯାହା ପରେ, ମଦ ଗଞ୍ଜେଇ ପ୍ରଚଳନର ଅନିଷ୍ଟ ବିଷୟ କହି, ବ୍ରିଟିଶ ଶିଳ୍ପପତିଙ୍କ ସ୍ୱାର୍ଥରେ, ଇଷ୍ଟ ଇଣ୍ଡିଆ କମ୍ପାନୀ ଭାରତର ଗ୍ରାମ୍ୟ ଉଦ୍ୟୋଗମାନ କିପରି ଧ୍ୱଂସ କରିଛନ୍ତି, ବର୍ଣ୍ଣନା କଲେ ।

ଏହି ସମୟରେ ତାଙ୍କ ହାତରେ ଖଣ୍ଡିଏ ଲେଖା ଦିଆହେଲା ଯେ, ତାଙ୍କ ପାଇଁ ନିର୍ଦ୍ଦିଷ୍ଟ ସମୟ ସରି ଆସିଲାଣି ଓ ନିୟୁୟର୍କ ତିନି ମିନିଟରେ ତାଙ୍କ ବକ୍ତୃତା କାଟି ଦେବ । ଏଥିରେ ବିବ୍ରତ ନ ହୋଇ ସେ ବ୍ରିଟିଶ ଶାସନରେ ଭାରତର କିପରି ଆର୍ଥିନୀତିକ ଅନିଷ୍ଟ ହେଉଛି ତାହାର ବିଶଦ ଆଲୋଚନା କଲେ ଏବଂ ଶେଷରେ ନିବେଦନ କଲେ, 'ଏପରି ଅବସ୍ଥାରେ, ଭାରତର ଅର୍ଦ୍ଧଭୁକ୍ତ କୋଟି କୋଟି ଜନତାଙ୍କର ସହାୟ ହେବାକୁ, ଯେଉଁ ସ୍ୱାଧୀନତା ଫେରି ପାଇବାକୁ ସେମାନେ ପ୍ରାଣପାତ କରୁଛନ୍ତି ସେଥିରେ ସାହାଯ୍ୟ କରିବାକୁ ପୃଥିବୀର ବିଚାରବନ୍ତ ଲୋକେ ଅଗ୍ରସର ହେବେ ବୋଲି ମୁଁ ନିବେଦନ କରିବା ବୋଧହୁଏ ଅଯଥାର୍ଥ ନୁହେଁ ।'

ବେତାର କଂପାନୀର ନିର୍ଦ୍ଦେଶକ, ବନ୍ଦ କରନ୍ତୁ ବୋଲି ସଂକେତ ଦେଲେ । ଗାନ୍ଧୀ କହିଲେ, 'ହଉ, ସେତିକିରେ ଥାଉ ।' ସେତେବେଳେ ବି ଯନ୍ତ୍ର ଚାଲୁ ରହିଥାଏ । ବେତାର ବକ୍ତୃତାର ଆଦ୍ୟପ୍ରାନ୍ତ ତାଙ୍କ ସ୍ୱର ପରିଷ୍କାର ଥିଲା ଓ ତାଙ୍କ ସ୍ୱର ଆମେରିକାରେ ବେଶ୍ ଭଲ ଭାବେ ଶୁଣା-ଯାଇଥିଲା ।

ଗାନ୍ଧୀ ଇଂଲଣ୍ଡରେ ଯେଉଁ ୮୪ ଦିନ କଟାଇଲେ ତା ଭିତରେ ସେ ଇଟନ୍, କ୍ୟାମ୍ବ୍ରିଜ୍ ଓ ଅକ୍ସଫୋର୍ଡ଼ ବୁଲି ଯାଇଥିଲେ । କ୍ୟାମ୍ବ୍ରିଜ୍‌ରେ ଭାବପ୍ରବଣତାର ସୂଚନା ଦେଇ ସେ, ଜବାହାରଲାଲ ନେହେରୁ ଓ ସି. ଏଫ୍. ଏଣ୍ଡ୍ରୁଜ୍ ପଢ଼ିଥିବା ଟ୍ରିନିଟି କଲେଜ୍‌କୁ ଯିବାକୁ ଚାହିଥିଲେ । ଇଂଲଣ୍ଡରେ ପୁରୁଷ ଓ ସ୍ତ୍ରୀମାନଙ୍କର ବହୁ ସାଧାରଣ ସଭାରେ ଭାଷଣ ଦେଇଥିଲେ । କ୍ୱେକର ସଂପ୍ରଦାୟର ସଭା, ଭାରତୀୟ ଛାତ୍ରଙ୍କ ସଭା, ଭାରତୀୟ ବଣିକ, ବ୍ରିଟିଶ୍ ଛାତ୍ର, ଶ୍ରମିକ ଦଳ ଓ ପାର୍ଲିମେଣ୍ଟ ମେମ୍ବରମାନଙ୍କ ସଭାମାନଙ୍କରେ

ସେ କହିଥିଲେ । ଲଣ୍ଡନ୍ ସ୍କୁଲ୍ ଅବ୍ ଇକନମିକ୍ସ୍‌ରେ ମଧ୍ୟ ଭାଷଣ ଦେଇଥିଲେ । ଆମେରିକୀୟ ସାଂବାଦିକ ସଂଘ ତାଙ୍କ ଖାଦ୍ୟାଭ୍ୟାସକୁ ସମ୍ମାନ ଦେଖାଇ, ସେଭୟ ହୋଟେଲରେ ତାଙ୍କ ପାଇଁ ଗୋଟିଏ ନିରାମିଷାଶୀ ଭୋଜସଭାର ଆୟୋଜନ କରିଥିଲେ । ଭାରତ-ବନ୍ଧୁ ସମିତି, ମଦ୍ୟ-ବର୍ଜକ ସମିତି ଓ ନିରାମିଷାଶୀ ସଙ୍ଘ ଇତ୍ୟାଦି ବହୁ ସଭା ସମିତିରେ ସେ ଯୋଗ ଦେଇଥିଲେ ।

ଅକ୍ସ୍‌ଫୋର୍ଡ଼ରେ ସେ ଯେଉଁ ଦୁଇଟି ହପ୍ତାନ୍ତ କଟାଇଥିଲେ ତାହା ସ୍ମରଣୀୟ । ସେ ବେଲିଅଲ୍ କଲେଜର ଅଧ୍ୟକ୍ଷ ପ୍ରଫେସର ଲିଣ୍ଡ୍‌ସେଙ୍କର ଘରେ ରହିଥିଲେ । ପ୍ରଫେସର୍ ଲିଣ୍ଡସେ ପରେ ବାର୍‌କର୍‌ର ଲର୍ଡ଼ ଲିଣ୍ଡ୍‌ସେ ଉପାଧି ପାଇଥିଲେ । ଲିଣ୍ଡ୍‌ସେ ୧୯୪୮ରେ ଲେଖିଥିଲେ, 'ମୁଁ ଓ ମୋର ପତ୍ନୀ ଉଭୟେ ତାଙ୍କୁ ଆମ ଘରେ ପାଇ ଜଣେ ମହାପୁରୁଷଙ୍କୁ ଅତିଥି କରି ପାରିଛୁଁ ବୋଲି ମନେ କରିଥିଲୁଁ । ତାଙ୍କଠାରେ ଆମେ ଜଣେ ମହତ୍ ଓ ସରଳ ଲୋକର ଲକ୍ଷଣ ଦେଖିଥିଲୁଁ ।' ପ୍ରଖ୍ୟାତ ଜନନାୟକ ହୁଅନ୍ତୁ ବା ଜଣେ ଅଜ୍ଞାତ ଛାତ୍ର ହେଉ, ଯେ ତାଙ୍କୁ ଦେଖା କରୁଥିଲେ ତାଙ୍କୁ ସେ ସମାନ ସୌଜନ୍ୟ ଓ ସମ୍ମାନ ଦେଖାଉଥିଲେ । ଯେ କେହି ଆନ୍ତରିକତାର ସହିତ କୌଣସି ପ୍ରଶ୍ନର ଉତ୍ତର ତାଙ୍କଠାରୁ ଚାହୁଁଥିଲେ, ତାଙ୍କୁ ସେ ନିଷ୍କପଟଭାବେ ଉତ୍ତର ଦେଉଥିଲେ ।

ଗାନ୍ଧୀଙ୍କ ବିଷୟରେ ଡକ୍ଟର୍ ଏଡ୍‌ଓ୍ୱାର୍ଡ଼ ଟମ୍ପ୍‌ସନ୍ ଅନ୍ୟ ଏକ ଦୃଷ୍ଟିକୋଣରୁ ମତ ଦେଇଥିଲେ । ଦ୍ୱିତୀୟ ବାର ଅକ୍‌ସଫୋର୍ଡ଼୍ ଯିବା ଥର ସେ କେତେ ଜଣ ପ୍ରବୀଣ ଅଧ୍ୟାପକ ଓ ରାଜନୀତିଜ୍ଞଙ୍କ ସହିତ ଡକ୍ଟର ଟମ୍ପ୍‌ସନଙ୍କ ଘରେ ଆଲୋଚନା କରିଥିଲେ । ବେଲିଅଲ୍ କଲେଜର ଅଧ୍ୟକ୍ଷ, ଗିଲବର୍ଟ୍ ମରେ, ପ୍ରଫେସର୍ ଏସ୍. କୁପ୍‌ଲ୍ୟାଣ୍ଡ, ସାର୍ ମାଇକେଲ୍ ସ୍ୟାଡ୍‌ଲର୍, ପି. ସି. ଲିଅନ୍ ପ୍ରମୁଖ ଶିକ୍ଷିତ ବୁଦ୍ଧିସମ୍ପନ୍ନ ବିଶାରଦମାନେ ଏ ଆଲୋଚନାରେ ଯୋଗ ଦେଇଥିଲେ । ଆଲୋଚନା ପରେ ପ୍ରଫେସର୍ ଟମ୍ପସନ୍ କହିଥିଲେ, 'ମଣିଷକୁ ସେ ଉତ୍ତ୍ୟକ୍ତ କରି ଦେଇ ପାରନ୍ତି ।'

ତାଙ୍କ ଘରେ ଗାନ୍ଧୀଙ୍କ ସଙ୍ଗେ ବୁଦ୍ଧିର ଯେଉଁ ଦ୍ୱନ୍ଦ୍ୱ ଚାଲିଲା ତାକୁ ବର୍ଣ୍ଣନା କରି ଟମ୍ପସନ୍ କହିଥିଲେ, 'ତିନି ଘଣ୍ଟାକାଳ ତାଙ୍କୁ ଖୁବ୍ ଧସ୍ତାଧସ୍ତି କଲୁଁ, ଖୁବ୍ ଜେରା କଲୁଁ...ବେଶ୍ ଗୋଟାଏ କଠୋର ପରୀକ୍ଷାରେ ସେ ପଡ଼ିଲେ, କିନ୍ତୁ ମୁହୂର୍ତ୍ତିକ ପାଇଁ ସୁଦ୍ଧା ସେ ବିବ୍ରତ ବା

ଉତ୍ତେଜିତ ହେଲେ ନାହିଁ । ମୋର ଦୃଢ଼ ବିଶ୍ୱାସ ହେଲା, ସକ୍ରେଟିସ୍‌ଙ୍କ କାଳରୁ ଆଜିଯାଏଁ ଆଉ କେହି ଏଭଳି ଆତ୍ମସଂଯମ ଓ ସ୍ଥୈର୍ଯ୍ୟର ପ୍ରମାଣ ଦେଇ ନାହିଁ । ଆଲୋଚନା ଭିତରେ ଥରେ ଦୁଇଥର, ସକ୍ରେଟିସ୍‌ଙ୍କ ଅଜେୟ ସ୍ଥୈର୍ଯ୍ୟ ଓ ଅବିଚଳିତ ଭାବର ଯେଉଁମାନେ ସମ୍ମୁଖୀନ ହୋଇଥିଲେ, ମୁଁ ନିଜକୁ ସେଇମାନଙ୍କ ସ୍ଥାନରେ ରଖି, ବୁଝି ପାରିଥିଲି, କି ଅବସ୍ଥାରେ ପଡ଼ି ଏଥେନ୍‌ସ୍‌ବାସୀ, ନିଜ ମତରେ ଦୃଢ଼, କୂଟତାର୍କିକ ସକ୍ରେଟିସ୍‌ଙ୍କୁ ବିଷ ଖୁଆଇବାକୁ ବାଧ୍ୟ ହୋଇଥିଲେ । ସକ୍ରେଟିସ୍‌ଙ୍କ ପରି ଯୀଙ୍କର ହୃଦୟରେ ଗୋଟାଏ ଅତି-ମାନବ ଜୀବ ଅଛି । ସେ ଜୀବ ସିଦ୍ଧାନ୍ତ ଦେଇ ସାରିଲା ପରେ, ଆଉ ଯାଙ୍କୁ ଯୁକ୍ତିରେ ବା ପ୍ରାଣଭୟ ଦେଖାଇ ହଲଚଲ କରି ହେବ ନାହିଁ ।’

ଆପାତତଃ ଏ ଆଲୋଚନାରେ ଯେଉଁମାନେ ଅଂଶ ଗ୍ରହଣ କରିଥିଲେ, ତାଙ୍କ ଭିତରୁ ସମସ୍ତଙ୍କର ସକ୍ରେଟିସ୍-ସୁଲଭ ସ୍ଥୈର୍ଯ୍ୟ ଓ ଅବିଚଳିତ ଭାବ ନ ଥିଲା । ପ୍ରଫେସର ଟମ୍‌ସନ୍ ଲେଖିଛନ୍ତି, ‘ପ୍ରେସ୍‌ବିଟେରିଆନ୍ ଧର୍ମଯାଜକମାନଙ୍କୁ କ୍ରମଓ୍ୱେଲ୍ ନିବେଦନ କରିଥିଲେ—“ଖ୍ରୀଷ୍ଟଙ୍କ ନାମ ଧରି ମୁଁ ଆପଣମାନଙ୍କୁ ଆକୁଳ ନିବେଦନ କରୁଛି, ଟିକିଏ ବିଚାରନ୍ତୁ ଯେ ଆପଣମାନଙ୍କର ମଧ୍ୟ ଭୁଲ୍ ହେବା ସଂଭବ ।” ଏହି କଥା ଉଦ୍ଧାର କରି ଲିଣ୍ଡ୍‌ସେ ଗାନ୍ଧୀଙ୍କୁ କହିଥିଲେ, “ମିଷ୍ଟର୍ ଗାନ୍ଧୀ, ଥରେ ମାତ୍ର ଭାବନ୍ତୁ ଯେ ଆପଣଙ୍କର ବି ଭୁଲ ହେବା ସମ୍ଭବ ।” ଲିଣ୍ଡ୍‌ସେଙ୍କ ନୈରାଶ୍ୟବ୍ୟଞ୍ଜକ ମିନତିପୂର୍ଣ୍ଣ ସ୍ୱର ଅଦ୍ୟାପି ମୋ କାନରେ ବାଜୁଛି । କିନ୍ତୁ ନିଜର ଯେ ଭୁଲ ହୋଇପାରେ ଏ କଥା ଗାନ୍ଧୀ ଭାବି ପାରିଲେ ନାହିଁ ।’

କିନ୍ତୁ ଏ ଆଲୋଚନା ବେଳେ ମହାଦେବ ଦେଶାଇ ଉପସ୍ଥିତ ଥିଲେ ଏବଂ ସବୁ ଦିନ ପରି ଗାନ୍ଧୀଙ୍କ ଉକ୍ତି ପ୍ରତ୍ୟୁକ୍ତି ଟିପି ରଖୁଥିଲେ । ତାଙ୍କ ଟିପାରେ ଅଛି, ‘ଗାନ୍ଧୀ ଭୁଲ କରିବାର ସ୍ୱାଧୀନତା ମାଗି ନେଇଥିଲେ ।’ ଅପର ପକ୍ଷେ ଗାନ୍ଧୀ ଆଇନ୍ ଅମାନ୍ୟର ଯଥାର୍ଥତା ବିଷୟରେ ଅଟଳ ଥିଲେ । ସେ କହିଥିଲେ, ଅହିଂସାପୂର୍ଣ୍ଣ ଆଇନ୍-ଅମାନ୍ୟ ସେ କଦାପି ଛାଡ଼ିବେ ନାହିଁ । ସେ ପ୍ରଫେସରମାନଙ୍କୁ କହିଲେ, ‘ଅହିଂସାକୁ ବଳିଦେଇ ମୋ ଦେଶର ସ୍ୱାଧୀନତା ଅର୍ଜନ କରିବାକୁ ମୁଁ ଚାହେଁ ନାହିଁ ।’ ପ୍ରଫେସର୍‌ମାନେ ଧରି ବସିଥାନ୍ତି ଯେ, ଆଇନ୍ ଅମାନ୍ୟ ଆନ୍ଦୋଳନ ଅହିଂସା ହୋଇ ନ ପାରେ । ସେମାନଙ୍କ ମତରେ ଏପଟ ସେପଟ ହୋଇପାରେ ବୋଲି

ସେମାନେ ମାନିବାକୁ ପ୍ରସ୍ତୁତ ନ ଥାନ୍ତି । ଗାନ୍ଧୀ ଶେଷରେ କହିଲେ, 'ଏ ଆନ୍ଦୋଳନ ଅହିଂସ ଭାବେ ଚଳାଇବାକୁ ହେଲେ ମୋତେ ଖୁବ୍ ସତର୍କ ରହିବାକୁ ପଡ଼ିବ; ଏକଥା କହିଲେ ମୁଁ ମାନିବି । କିନ୍ତୁ ମୋ' ମୌଳିକ ନୀତି ଅହିଂସାର ଉପଯୋଗିତା ଉପରେ ଯଦି ଆପଣମାନେ ବିରୋଧ କରିବାକୁ ଚାହାନ୍ତି ତେବେ ମୋ ମନ ମାନିଲାପରି ବୁଝାଇବାକୁ ହେବ ।' ଏହା ପ୍ରଫେସରମାନେ କରିପାରି ନ ଥିଲେ ।

ସାଧାରଣ ସଭା ବା ଘରୋଇ କଥାବାର୍ତ୍ତାରେ ସରକାରୀ ବା ବେସରକାରୀ ଭାବରେ ଗାନ୍ଧୀ ତାଙ୍କର ୮୪ ଦିନ ରହଣି ଭିତରେ ଯାହା ସବୁ କହିଲେ ସେଥିରେ ତାଙ୍କର ସବୁଠାରୁ ଅଧିକ ଚେଷ୍ଟା ଥାଏ, ଭାରତର ସ୍ୱାଧୀନତା ବିଷୟରେ ତାଙ୍କର ଧାରଣା କ'ଣ ସେଇ କଥା ପରିଷ୍କାର କରି ବୁଝାଇବା ।

ଗ୍ଲେ କ୍ଲବ୍‌ରେ ଶ୍ରୋତାମାନଙ୍କ ଭିତରୁ ଜଣେ ପଚାରିଥିଲେ, 'ବ୍ରିଟିଶ୍ ସାମ୍ରାଜ୍ୟରୁ ଭାରତକୁ କେତେ ଦୂର ବିଚ୍ଛିନ୍ନ କରିବାକୁ ଆପଣ ଚାହାନ୍ତି ?'

ଗାନ୍ଧୀ ଉତ୍ତର ଦେଲେ, 'ଯଦି ଭାରତ ପଶ୍ଚାତ୍ତାପ ନ କରି ଲାଭବାନ୍ ହେବ ବୋଲି ମୋର ଉଦ୍ଦେଶ୍ୟ, ତେବେ, ସାମ୍ରାଜ୍ୟଠାରୁ ସମ୍ପୂର୍ଣ୍ଣ ବିଚ୍ଛିନ୍ନ ହେଉ, କିନ୍ତୁ ବ୍ରିଟିଶ୍ ଜାତିଠାରୁ ଆଦୌ ବିଚ୍ଛିନ୍ନ ନ ହେଉ ବୋଲି ମୁଁ ଚାହେ । ଭାରତ ଉପରେ ବ୍ରିଟେନର ସମ୍ରାଟତ୍ୱ ନଷ୍ଟହୋଇ ଯିବା ଦରକାର ; ବ୍ରିଟେନ ସଙ୍ଗେ ଭାରତ ସମାନ ଭାଗିଦାର ରହି ତାହାର ସୁଖ ଦୁଃଖରେ ସମାନ ଅଂଶ ଗ୍ରହଣ କରିବ ଏବଂ ବ୍ରିଟିଶ ଡୋମିନିଅନ୍-ମାନଙ୍କ ସଙ୍ଗେ ସମକକ୍ଷ ହୋଇ ରହିବ, ଏହାହିଁ ମୋର ଇଚ୍ଛା । ମୋର ଏକମାତ୍ର ଦାବୀ, ଭାରତ ବ୍ରିଟେନ୍ ସଙ୍ଗେ ସମାନସ୍କନ୍ଧ ଭାବେ ଭାଗିଦାର ହୋଇ ରହିବ ।'

ଗାନ୍ଧୀ ଚାହୁଁଥିଲେ, 'ନିଜର ମର୍ଯ୍ୟାଦା ଅକ୍ଷୁଣ୍ଣ ରଖି ଅଂଶୀଦାର ହେବା··· । ଇଂଲଣ୍ଡ ଓ ଭାରତ ଅଂଶୀଦାର ହୋଇ ରହିଲେ ମୋର ଆପତ୍ତି ନାହିଁ··· । ମୋର ଅଦ୍ୟାପି ଅଭିଳାଷ, ସାମ୍ରାଜ୍ୟରେ ନୁହେଁ, ବ୍ରିଟିଶ୍ ରାଜ୍ୟଗୋଷ୍ଠୀରେ ମୁଁ ଜଣେ ନାଗରିକ ହେବି, ସଂଭବ ହେଲେ ଭାରତ ଓ ବ୍ରିଟେନ୍‌ର ମିଳିତ ଭାଗିଦାର ରାଷ୍ଟ୍ରର ନାଗରିକ ହେବି, ଭଗବାନଙ୍କ ଇଚ୍ଛାରେ, ଏ ଅଂଶୀଦାରିତ୍ୱ ଅବିଚ୍ଛିନ୍ନ ହୋଇ ରହିବ ।

କିନ୍ତୁ ଗୋଟିଏ ଜାତି ଅନ୍ୟକୁ ବାଧ୍ୟ କରି ଭାଗିଦାର କରି ରଖିବ, ଏଭଳି ଭାଗିଦାରୀ ମୁଁ ଚାହେଁ ନାହିଁ···। ଅନ୍ୟମାନଙ୍କଠାରୁ ବିଚ୍ଛିନ୍ନ ରହି ଭାରତ ସ୍ୱାଧୀନ ହେଉ ବୋଲି କଂଗ୍ରେସ ଚାହେଁ ନାହିଁ । ସେପରି ବିଚ୍ଛିନ୍ନ ସ୍ୱାଧୀନତା ସହଜରେ ବିଶ୍ୱଶାନ୍ତିର କଣ୍ଟକ ହୋଇପଡ଼ିବ··· । ମୋର ଆନ୍ତରିକ ଇଚ୍ଛା, ପ୍ରାଚ୍ୟ ଓ ପାଶ୍ଚାତ୍ୟ ମିଳନ ହୋଇଯାଉ ; ମୋର ଏକମାତ୍ର ସର୍ତ୍ତ ଏ ମିଳନ ମୂଳରେ ପଶୁବଳ ନ ରହୁ··· । ଇଂଲଣ୍ଡ ଓ ଭାରତ ପ୍ରେମର ପାଟସୂତାରେ ବାନ୍ଧିହେବା ଉଚିତ··· । ଭାରତ, ସ୍ୱାଧୀନ ହୋଇ ଯଦି ଇଂଲଣ୍ଡର ଭାଗିଦାର ହୁଏ ତେବେ ଯୁଦ୍ଧ ଓ ରକ୍ତପାତରେ ବିବଶ ହେଉଥିବା ପୃଥିବୀରେ ଶାନ୍ତି ଆଣିବାରେ ସେ ବିଶେଷ ଅଂଶ ଗ୍ରହଣ କରି ପାରିବ । ପୃଥିବୀରେ ମହାସମରର ସୂତ୍ରପାତ ହେଲେ ଭାରତ ଓ ଗ୍ରେଟବ୍ରିଟେନ୍ ସହଯୋଗ କରି ଯୁଦ୍ଧ ବନ୍ଦ କରିପାରିବେ, ଶସ୍ତ୍ରବଳରେ ନୁହେଁ, ନିଜ ଦୃଷ୍ଟାନ୍ତର ଅଲଂଘ୍ୟ ପ୍ରଭାବରେ ।'

ସ୍ୱାଧୀନ ଭାରତ ୧୯୪୮ରେ ସ୍ୱତଃପ୍ରବୃତ୍ତ ହୋଇ ବ୍ରିଟିଶ୍ ରାଜ୍ୟ-ଗୋଷ୍ଠୀରେ ଯେଉଁ ସ୍ଥାନ ବାଛି ନେଲା, ତାହା ୧୯୩୧ରେ ଇଂଲଣ୍ଡରେ ଦେଇଥିବା ଏହି ବିବୃତିମାନଙ୍କରେ ଗାନ୍ଧୀ ସଠିକ ଭାବେ, ଓ ଅଦ୍ଭୁତ ପୂର୍ବଦୃଷ୍ଟି ସହିତ ବ୍ୟାଖ୍ୟାନ କରିଥିଲେ । ଅଧିକନ୍ତୁ, ବ୍ରିଟିଶ୍ ରାଜ୍ୟ-ଗୋଷ୍ଠୀରେ ରହିବା ସପକ୍ଷରେ ୧୯୪୮ରେ ଯେଉଁମାନେ ମତ ଦେଲେ ସେମାନେ, ୧୭ ବର୍ଷ ପୂର୍ବେ ଗାନ୍ଧୀ ଦେଇଥିବା ଯୁକ୍ତିର, ଏପରିକି ତାଙ୍କ ବ୍ୟବହୃତ ଶବ୍ଦମାନଙ୍କର ହିଁ ପୁନରାବୃତ୍ତି କରିଥିଲେ । ଗାନ୍ଧୀ ସେକାଳରୁ ଦେଖି ପାରିଥିଲେ ଯେ, ଯେଉଁ ସ୍ୱାଧୀନତା ପରସ୍ପର ନିର୍ଭରଶୀଳତାକୁ ପ୍ରଶ୍ରୟ ଦିଏ ସେହି ସ୍ୱାଧୀନତା ହିଁ ଦେଶର ଲୋକଙ୍କ ମଙ୍ଗଳକାରକ ହୁଏ । ସେ କହିଥିଲେ, 'ବିଚ୍ଛିନ୍ନ ସ୍ୱାଧୀନତା ଆମର ଲକ୍ଷ୍ୟ ନୁହେଁ, ଆମେ ଚାହୁଁ ସ୍ୱେଚ୍ଛାରେ ଅନ୍ୟର ନିର୍ଭରଶୀଳ ରହିବୁ ।' ଆନ୍ତର୍ଜାତିକତା ବା ବିଶ୍ୱରାଷ୍ଟ୍ରର ଗହନତତ୍ତ୍ୱ ଆଲୋଡ଼ନ କରି ସେ ଏ ସିଦ୍ଧାନ୍ତରେ ପହଞ୍ଚି ନ ଥିଲେ । ଗାନ୍ଧୀ ଥିଲେ ପ୍ରେମର ପୂଜାରୀ ; ଅନ୍ୟମାନଙ୍କ ସଙ୍ଗେ ତାଙ୍କ ସମ୍ପର୍କର ଏହି ପ୍ରେମ ହିଁ ଥିଲା ମୂଳଭିତ୍ତି । ପ୍ରେମର ଅନ୍ୟ ନାମ ସୃଜନଶୀଳ ପରନିର୍ଭରଶୀଳତା । ଗାନ୍ଧୀ ବିଭିନ୍ନ ଜାତିଙ୍କୁ ପରସ୍ପର ନିରପେକ୍ଷ ଆଇନ୍‌ର ବେଡ଼ା ଭିତରେ ଆବଦ୍ଧ ବିଚ୍ଛିନ୍ନ ଏକକ ଗୋଷ୍ଠୀ ବୋଲି ମନେ କରୁ ନ ଥିଲେ । ସେ ପ୍ରତ୍ୟେକ ଜାତିକୁ ମନେ କରୁଥିଲେ ନାମ ରୂପ ଥିବା ସୁଖ ଦୁଃଖ ଅନୁଭବ କରି ପାରୁଥିବା ଚେତନ ମାନବ ଗୋଷ୍ଠୀ ବୋଲି । ରୂପ ଓ ସୁଖ ଦୁଃଖବୋଧ ମାନବର

ସମାନଧର୍ମୀ ହୋଇଥିବାରୁ, ସେ ବିଶ୍ୱାସ କରୁଥିଲେ ପ୍ରେମ, ଶ୍ରଦ୍ଧା ଓ ପରସ୍ପର-ନିର୍ଭରଶୀଳତାରେ ହିଁ ଆନ୍ତର୍ଜାତିକ ସମ୍ପର୍କ ଗଢ଼ି ଉଠିବ ।

୧୯୩୧, ମାର୍ଚ୍ଚ ୫ ତାରିଖରେ ସ୍ୱାକ୍ଷରିତ ଗାନ୍ଧୀ-ଆରୱିନ୍ ଚୁକ୍ତିପତ୍ରର ୨ୟ ଦଫାରେ ରାଜି ହୋଇଥିବା ଯୋଗୁଁ ଗାନ୍ଧୀଙ୍କର ଦୋଷ ବିଗ୍ଡ଼ି ଯାଇଥିଲା । ଏ ଦଫାରେ ଥିଲା ଯେ, ଭାରତ ପାଇଁ କଳ୍ପିତ ଶାସନ ସଂସ୍ଥାରେ ପ୍ରତିରକ୍ଷା, ବୈଦେଶିକ ବିଭାଗ, ସଂଖ୍ୟାଲଘୁ ସଂପ୍ରଦାୟଙ୍କ ସମସ୍ୟା, ଓ ବୈଦେଶିକ ଋଣ ପାଇଁ ଦାୟିତ୍ୱ ଇଂଲଣ୍ଡ ହାତରେ ରହିବ । ଏହା ବସ୍ତୁତଃ ସ୍ୱାଧୀନତାରେ କଠୋର କଟକଣା । ଏ ବିଷୟରେ ଯେଉଁ ସମାଲୋଚନା ହୋଇଥିଲା ତାହା ଗାନ୍ଧୀଙ୍କ ହୃଦୟରେ ଲାଗିଥିଲା । ବସ୍ତୁତଃ, ୧୯୩୧, ମାର୍ଚ୍ଚ ଶେଷଭାଗରେ କରାଚୀରେ ବସିଥିବା କଂଗ୍ରେସର ବିଶେଷ ଅଧିବେଶନରେ ଏ ବିଷୟର ଆଲୋଚନା ହୋଇ, ଏ ଗୁରୁତର ବିଷୟରେ ନିଜର ମତ ପରିବର୍ତ୍ତନ କରିବାକୁ ଗାନ୍ଧୀଙ୍କୁ ପରାମର୍ଶ ଦିଆ ହୋଇଥିଲା । ତଦନୁସାରେ ଗାନ୍ଧୀ ବ୍ରିଟେନ୍‌ରେ କହିଲେ ଯେ, 'କଂଗ୍ରେସ ମୋତେ ଯେଉଁ ନିର୍ଦ୍ଦେଶ ସବୁ ଦେଇ ପଠାଇଛି ତନ୍ମଧ୍ୟରେ ଅଛି, ଅର୍ଥ, ପ୍ରତିରକ୍ଷା ଓ ବୈଦେଶିକ ବିଭାଗମାନ ହାତରେ ନ ରହିଲେ ପୂର୍ଣ୍ଣ ସ୍ୱାଧୀନତା ନିରର୍ଥକ ହୋଇ ପଡ଼ିବ ।' ଗାନ୍ଧୀଙ୍କର ଏ ମତ ପରିବର୍ତ୍ତନ ଦେଖି ବ୍ରିଟିଶ୍ ଲୋକେ ଉତ୍ତ୍ୟକ୍ତ ହୋଇଗଲେ ; ସେ ହାତ କାଟି ଯହିଁରେ ସହି କରିଥିଲେ ତାକୁ ଅମାନ୍ୟ ହେବା ବ୍ରିଟିଶ୍ ଲୋକଙ୍କ ଆଖିରେ ବଡ଼ ଦୋଷିବାର କଥା । ଅବଶ୍ୟ ଗାନ୍ଧୀଙ୍କ ପକ୍ଷରେ ଗୋଟାଏ ଆନୁଷ୍ଠାନିକ କୈଫିୟତ ଦେବାର ବାଟ ଥିଲା ଯେ, କଂଗ୍ରେସ ଅନୁଷ୍ଠାନ ତାଙ୍କର ମାଲିକ ; ତେଣୁ ସେ ଯାହା କହିବ ସେଥିରେ ସେ କଂଗ୍ରେସର ଅନୁଗତ ସଭ୍ୟ ଭାବେ ରାଜି ହେବାକୁ ବାଧ୍ୟ । ସେ ଯାହାହେଉ, କାର୍ଯ୍ୟତଃ, ଗାନ୍ଧୀ ଦିଲ୍ଲୀ ଚୁକ୍ତିପତ୍ର ଉପରେ କୌଣସି ରାଜନୀତିକ ଗୁରୁତ୍ୱ ନ ଦେଇ, ତାହାର ଓଲଟା କଥା ଉପରେ ସେ ଲଣ୍ଡନରେ ଯେଉଁ ପ୍ରଚାର କରୁଥିଲେ ତାହାର ଗୁରୁତ୍ୱ ଅଧିକ ବୋଲି ଧରିନେଲେ । ଇଂଲଣ୍ଡ ତ ଯାଙ୍ଗେ ଯାଙ୍ଗେ କ୍ଷମତା ହସ୍ତାନ୍ତର କରୁନାହିଁ । ଅସଲ କଥା ସେଇଟି । କ୍ଷମତା ହସ୍ତାନ୍ତର ଭବିଷ୍ୟତ ଗର୍ଭରେ ଥିବା ସ୍ଥଳେ କାହା ପାଖେ କେଉଁ ଅଧିକାର ରହିବ ସେ ବିଷୟରେ ଖୁଣ୍ଟିନାଟି ଆଲୋଚନା କରିବା ନିରର୍ଥକ ।

ତାଙ୍କର ବିଚାରଧାରା ଏହିପରି ହୋଇଥିବାରୁ ଗୋଲଟେବୁଲ୍

ବୈଠକରେ ବ୍ରିଟିଶ ସରକାର ସଙ୍ଗେ ଝଗଡ଼ା ଓଟରେ କରିବା ଅପେକ୍ଷା, ଭାରତୀୟ ଦାବୀ ବିଷୟରେ ବ୍ରିଟିଶ୍ ଲୋକଙ୍କ ହୃଦ୍‌ବୋଧ କରାଇବା ଉପରେ ସେ ଅଧିକ ମନୋଯୋଗ ଦେଲେ । ଗୋଟିଏ ସଭାରେ ସେ କହିଥିଲେ, 'ମୁଁ ଦେଖୁଛି, ମୋର ଅସଲ କାମ ଗୋଲଟେବୁଲ୍ ବୈଠକ ବାହାରେ, ଆପଣମାନଙ୍କ ପାଖେ ।' ଭାରତର ଆଶା ଆକାଂକ୍ଷା ବିଷୟରେ ଇଂଲଣ୍ଡ ଲୋକଙ୍କୁ ବୁଝାଇବାର ପ୍ରୟୋଜନୀୟତା କଥା ଉଲ୍ଲେଖ କରି ସେ କହିଲେ, 'ମୋର ଅସଲ ଗୋଲଟେବୁଲ୍ ଏହିଠାରେ······। ବର୍ତ୍ତମାନ ଯେଉଁ ମଞ୍ଜି ପୋତା ହେଉଛି ତାହା ବ୍ରିଟିଶ୍ ମନୋଭାବକୁ କୋମଳ କରିବ······ଏବଂ ମନୁଷ୍ୟଙ୍କୁ ପଶୁପରି ଆଚରଣ କରିବାରେ ବାଧା ଦେବ ।' ତାଙ୍କ କଥାର କୁହୁକ, ନିଷ୍କପଟତା, କୋମଳ ବ୍ୟବହାର ଓ ମିଶାଣ ଢଙ୍ଗ ଯୋଗୁଁ ସେ ସମସ୍ତଙ୍କୁ ବନ୍ଧୁ କରି ପାରିଥିଲେ । ଇଂଲଣ୍ଡର ଖ୍ରୀଷ୍ଟିଆନ୍-ଭାବାପନ୍ନ ଲୋକଙ୍କର ସେ ହୃଦୟ ଜୟ କଲେ ; ସେମାନେ ତାଙ୍କୁ ବଡ଼ ଭାଇ ଓ ହିତୈଷୀ ବୋଲି ଗ୍ରହଣ କଲେ । ଇଂଲଣ୍ଡବାସୀଙ୍କ ବିଷୟ ବୁଦ୍ଧିରେ ଗାନ୍ଧୀଙ୍କ କଥାର ପ୍ରତିଧ୍ୱନି ହେଲା । ଗାନ୍ଧୀଙ୍କର ଏହି ଲଣ୍ଡନଯାତ୍ରା ପରେ, ପରିଷ୍କାର ଜଣାପଡ଼ିଲା, ଦିନେ ନା ଦିନେ, ଯେତେ ଦିନରେ ବୋଲି କେହି କେହି ବିଚାରୁଥିଲେ ତହିଁର ଯଥେଷ୍ଟ ଆଗରୁ, ଯେତେ ବିଳମ୍ବରେ ବୋଲି ଚର୍ଚ୍ଚିଲ ଆଶା କରୁଥିଲେ ତହିଁର ଢେର ପୂର୍ବରୁ, ଭାରତ ନିଶ୍ଚୟ ସ୍ୱାଧୀନ ହେବ । ଅନେକେ ମନେ କରୁଥିଲେ ସେ ଦୁଷ୍ପ୍ରୋଷ୍ୟ ; ବାସ୍ତବରେ ସେ ବେଳେ-ବେଳେ ଅକଡ଼ବାଗିଆ ହୁଅନ୍ତି । କିନ୍ତୁ ନିଜର କଥା ଓ ବ୍ୟବହାରରେ ସେ ସବୁଠାରୁ ଅକଡ଼ବାଗିଆ ଲୋକଙ୍କ ବିରୋଧର ଦାଡ଼ ମାରି ଦେଇ ପାରିଥିଲେ । ଏପରି କି ସେ 'ସିଂହର ଗୁହା' ଭିତରେ ପଶି ମଧ୍ୟ ନିରାପଦରେ ଫେରିଥିଲେ—ସେ ଲଙ୍କାଶାୟାର୍ ଯାଇଥିଲେ ; ଏଇଠାରେ ଇଂଲଣ୍ଡର ଅଧିକାଂଶ ଲୁଗାକଳ । ଗାନ୍ଧୀଙ୍କର ଖଦି ପ୍ରଚାର ବିଦେଶୀ ଲୁଗା ବର୍ଜନ ଆନ୍ଦୋଳନ ଯୋଗୁଁ ଲୁଗାକଳମାନଙ୍କର ଆୟ କମିଥାଏ, ବହୁ ଶ୍ରମିକ ବେକାର ହୋଇଥାନ୍ତି । ସେଠାର ଗୋଟିଏ ସଭାରେ ଜଣେ କହିଲା, 'ମୁଁ ଜଣେ ବେକାର ଶ୍ରମିକ, କିନ୍ତୁ ମୋ' ଘର ଯଦି ଭାରତରେ ହୋଇଥାନ୍ତା, ମିଷ୍ଟର୍ ଗାନ୍ଧୀ ଯାହା କହୁଛନ୍ତି ମୁଁ ଠିକ ସେଇଆ କହନ୍ତି ।' ଏଇ ସମୟର ଗୋଟିଏ ହୃଦୟଗ୍ରାହୀ ଫଟୋଗ୍ରାଫ୍ ଦେଖିଛି । ତାହା ଲଙ୍କାଶାୟାରର ଡାରଓ୍ୱେନ୍ ସହରର ଗ୍ରୀନ୍‌ଫିଲ୍ଡ୍ ମିଲ୍ ଆଗରେ ନିଆ ହୋଇଥିଲା ।

ଏଥିରେ ଗାନ୍ଧୀ ଲଜ ଲଜ ହୋଇ ଠିଆ ହୋଇଛନ୍ତି ; ବେକଠାରୁ ଆଣ୍ଠୁ ପର୍ଯ୍ୟନ୍ତ ଧଳା ଲୁଗାରେ ଆବୃତ ହୋଇ, ଲୁଗାକଳ ଶ୍ରମିକ ଶ୍ରମିକାଙ୍କ ଭିତରେ ସେ ଚପି ହେଲା ପରି ରହିଛନ୍ତି—ବେଶିଭାଗ ଶ୍ରମିକା—ଜଣେ ଗାନ୍ଧୀଙ୍କ ହାତକୁ ଧରିଛି ଓ ସମସ୍ତେ ଯୁବକ ଯୁବତୀ, ବୁଢ଼ାବୁଢ଼ୀ, ଟୋକା ଟୋକୀ ହସି ହସି ତାଙ୍କର ଜୟନାଦ କରୁଛନ୍ତି । ଯେଉଁମାନେ ତାଙ୍କ ଯୋଗୁଁ କଷ୍ଟ ପାଉଥିଲେ, ସେମାନଙ୍କୁ ମଧ୍ୟ ସେ ଆପଣାର କରି ପାରିଥିଲେ ।

ବ୍ରିଟିଶ୍ ସରକାର ଗାନ୍ଧୀଙ୍କ ସୁରକ୍ଷା ପାଇଁ ସ୍କଟ୍‌ଲଣ୍ଡ୍ ୟାର୍ଡ଼୍‌ର ଦୁଇଜଣ ଡିଟେକ୍‌ଟିଭ ଅଫିସରଙ୍କୁ ମୁତୟନ କରିଥିଲେ । ସେ ଦୁହିଁଙ୍କ ନାମ ସର୍ଜେଣ୍ଟ୍ ଇଭାନସ୍ ଓ ସର୍ଜେଣ୍ଟ ରୋଜର୍ସ୍ । ସେ ଦୁହେଁ ବିଶିଷ୍ଟ ପୁଲିସ୍ ଅଫିସର୍, ଅସୁର ପରି ଉଚ୍ଚ, ରାଜାମାନଙ୍କ ସୁରକ୍ଷା ପାଇଁ ସାଧାରଣତଃ ନିଯୁକ୍ତ ହୁଅନ୍ତି । 'ଏ କ୍ଷୁଦ୍ର ଲୋକଟି' ପ୍ରତି ସେ ଦୁହିଁଙ୍କର ମାୟା ହୋଇଗଲା । ଏପରି କ୍ଷେତ୍ରରେ, ଅନ୍ୟ ପ୍ରଧାନ ପୁରୁଷମାନେ ଏମାନଙ୍କୁ ଦୂରଛଡ଼ା କରି ରଖନ୍ତି ଓ ଅବଜ୍ଞା କରନ୍ତି । ଗାନ୍ଧୀ ସେପରି କଲେ ନାହିଁ । ସେ ଏ ଦୁହିଁଙ୍କ ସଙ୍ଗେ ଖୁସିଗପ କରୁଥିଲେ ଓ ଏ ଦୁହିଁଙ୍କ ଘରକୁ ବୁଲି ଯାଇଥିଲେ । ଇଂଲଣ୍ଡ ଛାଡ଼ିବା ପୂର୍ବରୁ ଗାନ୍ଧୀ, ବ୍ରିଟିଶ୍ ସରକାରଙ୍କୁ ଅନୁରୋଧ କଲେ ଏ ଦୁହିଁଙ୍କୁ ଇଟାଲୀର ବ୍ରିଣ୍ଡିସି ବନ୍ଦର ଯାଏଁ ତାଙ୍କ ସଙ୍ଗେ ଯିବା ସକାଶ ଅନୁମତି ଦେବାକୁ । ଏ ଭଳି ଅପୂର୍ବ ଅନୁରୋଧର କାରଣ କ'ଣ ବୋଲି ପୁଲିସ ବିଭାଗର ଉପରିସ୍ଥ ହାକିମ ପଚାରିଲେ ।

ଗାନ୍ଧୀ ଉତ୍ତର ଦେଲେ, 'ସେମାନେ ମୋ ପରିବାରର ଅନ୍ତର୍ଭୁକ୍ତ ।'

ଭାରତରେ ପହଞ୍ଚି ସେ ପ୍ରତ୍ୟେକଙ୍କ ପାଖକୁ ଗୋଟିଏ ଗୋଟିଏ ଘଣ୍ଟା ପଠାଇଥିଲେ । ସେଥିରେ ଖୋଦିତ ହୋଇଥିଲା 'ଏମ୍. କେ. ଗାନ୍ଧୀର ଶ୍ରଦ୍ଧା ସହିତ' ।

ବ୍ୟାଖ୍ୟାନ, ବକ୍ତୃତା, ଆଲୋଚନା, ପ୍ରେସ୍ ପ୍ରତିନିଧିଙ୍କୁ ବିବୃତି, ବିଭିନ୍ନ ସ୍ଥାନକୁ ଗସ୍ତ, ଅସଂଖ୍ୟ ଲୋକଙ୍କ ସଙ୍ଗେ ଦେଖା ସାକ୍ଷାତ ଅହରହ ଚାଲିଥାଏ ; କୁଡ଼ କୁଡ଼ ଚିଠିର ଉତ୍ତର ଦିଆ ହେଉଥାଏ—ଏ ସବୁର ଉଦ୍ଦେଶ୍ୟ ଥାଏ ବ୍ରିଟେନ୍ ଲୋକଙ୍କ ହୃଦୟ ପରିବର୍ତ୍ତନ କରିବା । ଯାହାର ଭିତରେ ଗାନ୍ଧୀ, ଯେଉଁ ସରକାରୀ କାର୍ଯ୍ୟରେ ଲଣ୍ଡନକୁ ଆସିଥିଲେ ସେ କାର୍ଯ୍ୟ—ଦ୍ୱିତୀୟ ଗୋଲଟେବୁଲ ବୈଠକରେ ଯୋଗ ଦେବା—ବି ଚାଲିଥାଏ । ସରକାରୀ ଓ ବେସରକାରୀ କାର୍ଯ୍ୟରେ ସାଧାରଣତଃ ଦିନାକୁ

୨୧ ଘଣ୍ଟା ପରିଶ୍ରମ କରୁଥାନ୍ତି । ତାଙ୍କର ଡାଇରୀ ଅଦ୍ୟାପି ସୁରକ୍ଷିତ ଅଛି । ସେଥିରୁ ଜଣାଯାଏ, ଦିନେ ଦିନେ ସେ ପାହାନ୍ତିଆ ୨ଟା ବେଳେ ଶୋଇବାକୁ ଯାଇ, ଘଣ୍ଟେ ୪୫ ମିନିଟ୍ ପରେ ୩-୪୫ ମିନିଟ୍‌ରେ ଉଠି ଉପାସନା ଆରମ୍ଭ କରନ୍ତି । ୫ଟା ଯାଏଁ କାମ କରି ୫ଟା ଠାରୁ ୭ଟା ଯାଏଁ ଟିକିଏ ବିଶ୍ରାମ କରନ୍ତି ; ସେଇଠାରୁ ପୁଣି କାମ ଲଗେ ଆଉ ପାହାନ୍ତିଆ ଗୋଟାଏ ରୁ ଦୁଇଟା ପର୍ଯ୍ୟନ୍ତ । କଠୋର ପରିଶ୍ରମରେ ସେ କ୍ଲାନ୍ତ ହୋଇ ପଡ଼ିଲେ ହେଁ ଯେତେଦୂର ସାଧ୍ୟ, ସାଧ୍ୟଠାରୁ ଅଧିକ ମଧ୍ୟ, ଦେହକୁ ଖଟାଇବାରେ ସେ ଆନନ୍ଦ ଅନୁଭବ କରୁଥାନ୍ତି । ବହୁ ପରିଶ୍ରମ କରିବା ଫଳରେ, ଗୋଲଟେବୁଲ ବୈଠକରେ ସେ ଯାହା କଲେ ତାହା ତାଙ୍କ ତୁଳନାରେ ଉତ୍କୃଷ୍ଟ ଧରଣର ହୋଇପାରିଲା ନାହିଁ । ତଥାପି ଗୋଲଟେବୁଲ ବୈଠକରେ ଯୋଗ ଦେଇଥିବା ପ୍ରତିନିଧିମାନେ ତାଙ୍କ ମୁହଁରୁ ବୈଠକରେ କେତେକ ଗୁରୁତ୍ୱପୂର୍ଣ୍ଣ ଓ ସମ୍ପୂର୍ଣ୍ଣ ଅଭିନବ କଥା ଶୁଣିବାକୁ ପାଇଥିଲେ । ସେ ନିୟମିତ ଭାବରେ ପ୍ରତି ବୈଠକରେ ଯୋଗ ଦେଉଥିଲେ, କିନ୍ତୁ ଅଧିକାଂଶ ସାଧାରଣ ଅଧିବେଶନ ଓ କମିଟି ମିଟିଂ ତାଙ୍କୁ ବୃଥା ସମୟକ୍ଷେପ ପରି ମନେ ହେଉଥିଲା । ସେଗୁଡ଼ିକରେ ଖାଲି ରାଜନୀତିକ ଟଣା ଓଟରା ଏତେ ହେଉଥିଲା ଯେ, ବାସ୍ତବ କାର୍ଯ୍ୟର ନାମଗନ୍ଧ ବି ରହୁ ନ ଥିଲା । ଅନେକ ସମୟରେ ସେ ସଭାରେ ଆଖି ମୁଜି ବସୁଥିଲେ । ବେଳେ ବେଳେ ତାଙ୍କର ଦଣ୍ଡେ ମୁହୂର୍ତ୍ତେ ନିଦ ହୋଇ ଯାଉଥିବା ବି ସମ୍ଭବ ।

ଗୋଲଟେବୁଲ ବୈଠକର ଉଦ୍ଦେଶ୍ୟ ଥିଲା, ଭାରତ ପାଇଁ 'ସମ୍ବିଧାନ ପ୍ରଣୟନ' । ବ୍ରିଟିଶ ପ୍ରତିନିଧି ଦଳର ଅନ୍ୟତମ ସଦସ୍ୟ ଲର୍ଡ୍ ରିଡ଼ିଂ ଗୋଟିଏ ମାତ୍ର ବାକ୍ୟରେ ବ୍ରିଟିଶ୍ ରାଜର ଉଦ୍ଦେଶ୍ୟ ବ୍ୟାଖ୍ୟାନ କରି କହିଥିଲେ : 'ମୋର ବିଶ୍ୱାସ, ବ୍ରିଟେନ୍ ଓ ଭାରତର ସମସ୍ୟା ସମାଧାନର ମୂଳ କଥା ହେଉଛି, ଆମେ ଇଂଲଣ୍ଡର ଲୋକେ ଭାରତର ଆକାଂକ୍ଷା ପୂରଣ କରିବାକୁ ଯଥାସାଧ୍ୟ ଚେଷ୍ଟା କରିବା ସଙ୍ଗେ ଆମ ନିଜର ସ୍ଥିତି ରକ୍ଷା କରିବାକୁ ବି ପ୍ରଯତ୍ନ କରିବୁ ; ଆମର ସ୍ୱାର୍ଥକୁ ଆମେ ଏକାବେଳକେ ଛାଡ଼ି ପାରିବୁ ନାହିଁ, ଛାଡ଼ିବା ବି ଉଚିତ ହେବ ନାହିଁ ।'

କିନ୍ତୁ ଭାରତର ପ୍ରଭୁ ହୋଇ ରହି, ଇଂଲଣ୍ଡ ଭାରତର ଆକାଂକ୍ଷା ପୂରଣ କରିବା ସଂଭବ ହେବ କିପରି ?

ଗୋଲଟେବୁଲ ବୈଠକର ଉଦ୍ଦେଶ୍ୟ ଯେ ଖାଲି ବିଫଳ ହେଲା ତାହା ନୁହେଁ, ଏହାଦ୍ୱାରା ଅବସ୍ଥା ପୂର୍ବଠାରୁ ଆହୁରି ଖରାପ ହୋଇଗଲା । ଭାରତର ଧର୍ମଗତ ବୈଷମ୍ୟକୁ ଅଧିକ ଉତ୍କଟ କରି ଏହା ଭବିଷ୍ୟତ ପାଇଁ ଅଧିକ ଅନିଷ୍ଟ ସାଇତି ରଖିଲା ।

ଗୋଲଟେବୁଲ୍ ବୈଠକର ପ୍ରତିନିଧି ସଂଖ୍ୟା ଥିଲା ୧୧୨ : ଇଂରେଜ ସରକାରଙ୍କ ପ୍ରତିନିଧି ୨୦— ଦେଶୀୟ ରାଜ୍ୟରୁ ୨୩—ଏମାନେ ସବୁ ରାଜା, ମହାରାଜା, ନବାବ ଓ ତାଙ୍କର କର୍ମଚାରୀ ;—ବ୍ରିଟିଶ୍ ଭାରତରୁ ବଛା ହୋଇଥିଲେ ୬୪ ଜଣ । ଗାନ୍ଧୀ, ଶ୍ରୀମତୀ ନାଇଡୁ ଓ ଜଣ କେତେକଙ୍କୁ ଛାଡ଼ିଦେଲେ, ବ୍ରିଟିଶ ଭାରତର ଆଉ ସମସ୍ତଙ୍କୁ ବାଛିଥିଲେ ଭାଇସ୍‌ରୟ, ଦେଶୀୟ ରାଜ୍ୟର ପ୍ରତିନିଧିମାନଙ୍କୁ ମଧ୍ୟ ସେ ହିଁ ବାଛିଥିଲେ ।

ଭାଇସ୍‌ରୟ ଉଦ୍ଦେଶ୍ୟ ରଖି ବଡ଼ ଚାକଚକ୍ୟରେ ଏ ପ୍ରତିନିଧିମାନଙ୍କୁ ମନୋନୀତ କରିଥିଲେ । ବ୍ରିଟିଶ ସରକାରଙ୍କର ପ୍ରସ୍ତାବ ଥିଲା, ଦେଶୀୟ ରାଜ୍ୟ ଓ ବ୍ରିଟିଶ ଭାରତକୁ ଯୁକ୍ତରାଷ୍ଟ୍ର ରୀତିରେ ଏକ ଶାସନାଧୀନ କରିବା —କେନ୍ଦ୍ର ଶାସନ ଏକ ହେଲେ ବି ଆଭ୍ୟନ୍ତରୀଣ ଶାସନରେ ପ୍ରତ୍ୟେକ ମିଳିତ ରାଷ୍ଟ୍ରର ପୂର୍ଣ୍ଣ ସ୍ୱାତନ୍ତ୍ର୍ୟ ରହିବ । ଦେଶୀୟ ରାଜ୍ୟମାନେ ସମଗ୍ର ଭାରତର ମୋଟାମୋଟି ତିନିଭାଗରୁ ଭାଗେ । ବ୍ରିଟିଶ ଭାରତ ସଙ୍ଗେ କେନ୍ଦ୍ରରେ ଏମାନଙ୍କ ମିଶ୍ରଣ ହେବା ଫଳରେ ଏମାନଙ୍କ ପ୍ରଭାବ କେନ୍ଦ୍ର ସରକାର ଉପରେ ପଡ଼ନ୍ତା । ଏମାନେ ନିଜ ନିଜ ରାଜ୍ୟରେ ସ୍ୱେଚ୍ଛାଚାରୀ ଶାସକ ଓ ପରେ ବ୍ରିଟିଶ୍ ସରକାରଙ୍କ କ୍ରୀଡ଼ାପୁତ୍ତଳି । ଏମାନଙ୍କୁ ଆଣି ଭର୍ତ୍ତି କରିବାଦ୍ୱାରା ସମଗ୍ର ଭାରତ ଏକ ହେଲା ବୋଲି ବାହାରକୁ ଦିଶିଲେ ହେଁ, ଅସଲରେ ସାମନ୍ତବାଦୀ ପ୍ରତିକ୍ରିୟାଶୀଳ ଲୋକଙ୍କର ପ୍ରତିପତ୍ତି କେନ୍ଦ୍ରରେ ବଢ଼ନ୍ତା ଓ ବ୍ରିଟିଶଙ୍କ ଅଧିକାର ବଳବତ୍ତର ହୁଅନ୍ତା ।

ବ୍ରିଟିଶ ଭାରତରୁ ଯେଉଁମାନେ ମନୋନୀତ ହେଲେ ତାଙ୍କ ଭିତରେ ଥାଆନ୍ତି ଆଗା ଖାଁ ଓ ତାଙ୍କର ପରି ଲୋକେ । ବ୍ରିଟିଶ୍ ଭାରତର ପ୍ରତିନିଧିଙ୍କ ଭିତରେ ଥାଆନ୍ତି, ବ୍ରିଟିଶ୍ ବଣିକ, ଆଙ୍ଗ୍ଲୋ-ଇଣ୍ଡିଆନ୍, ଖ୍ରୀଷ୍ଟିଆନ୍, ହିନ୍ଦୁ, ମୁସଲମାନ, ଜମିଦାର, ଶ୍ରମିକନେତା, ହରିଜନ ଓ ପାର୍ସୀ (ଜଣେ ବି କୃଷକ ନ ଥାଆନ୍ତି) । ଏ ସମସ୍ତେ ଦାବୀ କରୁଥାଆନ୍ତି, ନିଜ ନିଜ ସଂପ୍ରଦାୟ ବା ଗୋଷ୍ଠୀ ପାଇଁ ସ୍ୱତନ୍ତ୍ର ନିର୍ବାଚନମଣ୍ଡଳୀ । ଅର୍ଥାତ୍, ବ୍ୟବସ୍ଥାସଭାମାନଙ୍କରେ ନିର୍ଦ୍ଦିଷ୍ଟ

ସଂଖ୍ୟକ ସ୍ଥାନ ଭାରତରେ ବାସ କରୁଥିବା ଇଂରେଜଙ୍କ ପାଇଁ ସୁରକ୍ଷିତ ହେବାର ଦାବୀ ହେଉଥାଏ ; ସେହିପରି ଜମିଦାର, ମୁସଲମାନ ପ୍ରଭୃତିଙ୍କ ପାଇଁ ଅଲଗାଅଲଗା ନିର୍ବାଚନ ମଣ୍ଡଳୀର ଦାବୀ । ପୁଣି ଇଂରେଜଙ୍କୁ ଭୋଟ ଦେବେ ଭାରତର ଅନ୍ୟ ଇଂରେଜ ବାସିନ୍ଦାମାନେ , ଆଉ କାହାକୁ ସେମାନେ ଭୋଟ ଦେଇ ପାରିବେ ନାହିଁ । ଜମିଦାରମାନେ ନିର୍ବାଚିତ ହେବେ ଜମିଦାରଙ୍କଦ୍ୱାରା, ମୁସ୍‌ଲିମ୍‌ମାନେ ନିର୍ବାଚିତ ହେବେ ମୁସ୍‌ଲିମ୍‌ଙ୍କଦ୍ୱାରା । ଏଇପରି ଆଉ ସମସ୍ତେ । ଭାରତରେ, ବିଭେଦର ଯେତେ ପ୍ରକାର ଝିଙ୍କ ମୁଣ୍ଡ ଟେକିଥିଲା ସେ ସବୁକୁ ପ୍ରଶ୍ରୟ ଦେବା ନିମନ୍ତେ ଯୋଗାଡ଼ ହୋଇଥିଲା ପରି ମନେ ହୁଏ ।

ସଂଖ୍ୟାଲଘୁ କମିଟି ଗୋଟିଏ ଗୋଲଟେବୁଲ ସମ୍ମିଳନୀ ନିଯୁକ୍ତ କଲେ । ଏଥିରେ ରହିଲେ ଇଂଲଣ୍ଡବାସିନ୍ଦା ଇଂରେଜ ୬ଜଣ, ୧୩ ଜଣ ମୁସଲିମ୍, ୧୦ ଜଣ ହିନ୍ଦୁ, ୨ ଜଣ ହରିଜନ, ୨ ଜଣ ଶ୍ରମିକ, ୨ ଜଣ ଶିଖ, ଜଣେ ପାର୍ସି, ୨ ଜଣ ଭାରତୀୟ ଖ୍ରୀଷ୍ଟିଆନ୍, ଜଣେ ଆଙ୍ଗ୍‌ଲୋ-ଇଣ୍ଡିଆନ୍ (ଏମାନେ ଇଂରେଜ ଓ ଭାରତୀୟ ସ୍ତ୍ରୀଙ୍କ ବିବାହ ଫଳରେ ଜାତ ଲୋକଙ୍କ ବଂଶଧର), ଭାରତବାସୀ ୨ ଜଣ ଇଂରେଜ, ଏବଂ ୪ ଜଣ ସ୍ତ୍ରୀ ଲୋକ । ଯାହାଙ୍କ ଭିତରୁ କେବଳ ସ୍ତ୍ରୀ ଲୋକମାନେ ସ୍ୱତନ୍ତ୍ର ନିର୍ବାଚନ ମଣ୍ଡଳୀ ଦାବୀ କରି ନ ଥିଲେ । କମିଟିରେ ଯେଉଁ ୧୩ ଜଣ ମୁସ୍‌ଲିମ୍ ସ୍ଥାନ ପାଇଲେ ତାଙ୍କ ଭିତରୁ ମାତ୍ର ଜଣେ ଜାତୀୟତାବାଦୀ ମୁସ୍‌ଲିମ୍, ଯେ କି ରାଜନୀତିରେ ଭାରତୀୟ ଓ ଧର୍ମରେ ମହମ୍ମଦଙ୍କ ଅନୁଗତ । ବାକି ୧୨ ଜଣ ରାଜନୀତି ଓ ଧର୍ମକୁ ଏକ ବୋଲି ବିଚାରୁଥିଲେ ଏବଂ ନିଜ ଧର୍ମସମ୍ପ୍ରଦାୟର ରାଜନୀତିକ ସ୍ୱାର୍ଥ ଭାରତର ସାମୂହିକ ମଙ୍ଗଳଠାରୁ ସ୍ୱତନ୍ତ୍ର ବୋଲି ବିଚାରୁଥିଲେ ।

୧୯୩୧, ନଭେମ୍ବର ୨୮ ତାରିଖରେ ମିଷ୍ଟର୍ ଫଜଲୁଲ୍ ହକ୍ (ମୁସ୍‌ଲିମ୍) ଗୋଲଟେବୁଲ ସମ୍ମିଳନୀର ସାଧାରଣ ଅଧିବେଶନରେ ବକ୍ତୃତା ଦେଇ କହିଲେ, 'ଡକ୍ଟର ମୁଞ୍ଜେ (ସମ୍ମିଳନୀର ଜଣେ ହିନ୍ଦୁ ମେମ୍ବର) ଓ ମୋ ପରି ମନୁଷ୍ୟ ଜାତିର ଦୁଇଜଣ ପରସ୍ପରଠାରୁ ସଂପୂର୍ଣ୍ଣ ଅଲଗା ଦୁଇଟି ପ୍ରାଣୀ, ସାର୍ ଅଷ୍ଟିନ୍ ଖାମ୍ବର୍‌ଲେନ୍ ଏ ପର୍ଯ୍ୟନ୍ତ ଆଉ କୌଣସିଠାରେ ଦେଖି ନ ଥିବେ ବୋଲି ମୋର ମନେ ହୁଏ —ଆମ ଦୁହିଙ୍କର ଧର୍ମ ଅଲଗା, ଭଗବାନ୍ ବି ଅଲଗା ।'

ଜଣେ ସଭ୍ୟ ମଝିରେ ବାଧା ଦେଇ କହିଲେ, 'ଭଗବାନ୍ ଅବଶ୍ୟ ଏକ ।'

* ଓଁ *

ମିଷ୍ଟର୍ ଫଜଲୁଲ୍ ହକ୍ ଆପତ୍ତି କଲେ, 'ନା,ନା, ଆମ ଦୁହିଙ୍କର ଭଗବାନ୍ ଏକ ନୁହନ୍ତି । ମୋ ଭଗବାନ୍ ଚାହାନ୍ତି, ସ୍ୱତନ୍ତ୍ର ନିର୍ବାଚନ ମଣ୍ଡଳୀ, ତାଙ୍କର ମିଳିତ ନିର୍ବାଚନ ମଣ୍ଡଳୀ ।'

ମୁସଲମାନ ସଭ୍ୟ ଭଗବାନଙ୍କୁ ବି ଦୁଇଭାଗରେ ବାଣ୍ଟିବାକୁ ଚାହୁଁଥିଲେ । ଗାନ୍ଧୀ ଭଗବାନ୍ ବା ଭାରତ କାହାକୁ ବାଣ୍ଟିବାକୁ ରାଜି ନ ଥିଲେ । ସେ ସମ୍ମିଳନୀକୁ ଜଣାଇ ଦେଲେ, ସ୍ୱତନ୍ତ୍ର ନିର୍ବାଚନମଣ୍ଡଳୀ ତାଙ୍କ ପକ୍ଷରେ ଗ୍ରାହ୍ୟ ନୁହେ । ସେ ଦାବୀ କଲେ, ସ୍ୱାଧୀନ ଭାରତରେ, ଭାରତୀୟ-ମାନେ ଭାରତୀୟଙ୍କୁ ଭାରତୀୟ ବୋଲି ଭୋଟ ଦେବେ—ଧର୍ମ ବା ସଂପ୍ରଦାୟ ବିଚାରରେ ନୁହେଁ । ଭାରତରେ ତ ଅଦ୍ୟାପି ବହୁ ପାର୍ଥକ୍ୟ ଓ ବିଭେଦ ବର୍ତ୍ତମାନ—ଭାରତର ଜାତୀୟ ଜାଗରଣ ଯଦି ଜାତୀୟ ସ୍ତରରେ ନୂଆ ବିଭେଦ ସୃଷ୍ଟି କରେ ତେବେ ତା'ର ମହତ୍ତ୍ୱ ରହିବ ନାହିଁ କି ତାହା ଭାରତ ବାହାରର ଲୋକଙ୍କୁ ଆକୃଷ୍ଟ କରିବ ନାହିଁ । ଇଂଲଣ୍ଡ ଓ ସମଗ୍ର ପୃଥିବୀରୁ ସାମ୍ରାଜ୍ୟବାଦର ଭୂତ ଛଡ଼େଇବ, ଏବଂ ଭାରତର ରାଜନୀତିରୁ ଧର୍ମକୁ ଅଲଗା କରିବ ଏହାହିଁ ଭାରତୀୟ ଜାତୀୟତାର ଆଦର୍ଶ ହେବା ଉଚିତ । ତାହା ନ କରି, ବ୍ରିଟିଶଙ୍କଦ୍ୱାରା ନିୟନ୍ତ୍ରିତ ଗୋଲଟେବୁଲ ସମ୍ମିଳନୀ ପୁରୁଣା ବିଭେଦକୁ ତୀବ୍ରତର କରୁଛି, ଏବଂ ନୂଆ ବିଭେଦକାରୀ ଶକ୍ତି ସଂଗ୍ରହ କରିବାକୁ ଉଦ୍ୟମ କରୁଛି । 'ବିଭେଦ ସୃଷ୍ଟି କରି ପ୍ରଭୁତ୍ୱ ବଜାୟ ରଖିବା' ସାମ୍ରାଜ୍ୟବାଦର ମୌଳିକ ନୀତି ; ସେ ନୀତି ଉପରେ ଯେତିକି ଚାପ ପଡ଼ୁଛି, ସେତିକି ଅଭିନିବେଶ ସହ ତାହା ପୁଣି ଜାହିର କରାଯାଉଛି ।

ରାଜନୀତିରୁ ଧର୍ମାଧର୍ମର ସମସ୍ତ ବିଚାର ନିର୍ବାସିତ କରିଥିଲେ ଭାରତୀୟ ସମସ୍ୟାର ସମାଧାନ ହୋଇଥାନ୍ତା । ବିଂଶ ଶତାବ୍ଦୀର ସମସ୍ତ ଓଜ ସତ୍ତ୍ୱେ, ଧର୍ମ, ପ୍ରାଦେଶିକ ମମତା ଓ ଆର୍ଥନୀତିକ ଅସମାନତା ଯେଉଁ ବିଭେଦ ସୃଷ୍ଟି କରିଥିଲା ତାହା ଦୂର କରି ଭାରତରେ ଐକ୍ୟ ଆଣିବା ପାଇଁ ଭାରତୀୟ ଜାତୀୟତା ସମର୍ଥ ହେଲା ନାହିଁ । ଭାରତ ସମସ୍ତ ବିଭେଦ ଭୁଲି ଏକ ହେବା ପୂର୍ବରୁ, ଭାରତୀୟ ଜାତୀୟ ଆନ୍ଦୋଳନ, ଦାସତ୍ୱ-ମୋଚନ ଦାୟିତ୍ୱର ସମ୍ମୁଖୀନ ହୋଇଥିଲା ।

ଭାରତର ଜାତିପ୍ରଥା ଆହୁରି ବିଭେଦର କାରଣ ହୋଇ ଜାତୀୟତାକୁ ଦୁର୍ବଳ କରି ଦେଉଥାଏ । ହରିଜନ ବା ଅସ୍ପୃଶ୍ୟମାନଙ୍କ ଉପରେ ହିନ୍ଦୁମାନେ ପୂର୍ବରୁ ବହୁ ଅମାନୁଷିକ କଟକଣା ଲଦି ଦେଇଥାନ୍ତି । ତେଣୁ ସେମାନଙ୍କର

ହିନ୍ଦୁଙ୍କ ପ୍ରତି ଭୟ ଥାଏ ; ପ୍ରାୟଶଃ ସେମାନଙ୍କର ହିନ୍ଦୁଙ୍କପ୍ରତି ଦ୍ୱେଷ ଥାଏ । ସେମାନେ ମଧ୍ୟ ସେମାନଙ୍କ ପ୍ରତିଭାବାନ୍, ରାଜନୀତିକ ଉଚ୍ଚାଭିଳାଷୀ ପ୍ରତିନିଧି ଡକ୍ଟର୍ ଭୀମରାଓ ରାମଜୀ ଆମ୍ବେଦ୍କରଙ୍କ ମୁଖରେ ସ୍ୱତନ୍ତ୍ର ନିର୍ବାଚନମଣ୍ଡଳୀ ଦାବୀ କରୁଥାନ୍ତି । ଅନ୍ତତଃ ପକ୍ଷେ ବ୍ୟବସ୍ଥାସଭାମାନଙ୍କରେ ସେମାନଙ୍କର ସଦସ୍ୟ ସଂଖ୍ୟା ନିର୍ଣ୍ଣୀତ ହୋଇ ରହୁ ବୋଲି ସେମାନେ ଦାବୀ କରୁଥାନ୍ତି । (ଡକ୍ଟର୍ ଅମ୍ବେଦ୍କର ଜଣେ ବାରିଷ୍ଟର୍ । ବରୋଦାର ଗାଇକବାଡ଼ଙ୍କଠାରୁ ବୃତ୍ତି ପାଇ ସେ ନିୟୁୟର୍କର କଲମ୍ବିଆ ବିଶ୍ୱବିଦ୍ୟାଳୟରେ ବାରିଷ୍ଟର ପାସ୍ କରିଥିଲେ ।)

ମହାତ୍ମା ଗାନ୍ଧୀ ଥିଲେ ଏକାନ୍ତ ଧର୍ମନିଷ୍ଠ ହିନ୍ଦୁ । ଧର୍ମ, ଜାତି, ବର୍ଣ୍ଣ ବା ଜନ୍ମସ୍ଥାନ ପ୍ରଭୃତି କୌଣସି ପାର୍ଥକ୍ୟ ଯୋଗୁଁ ମଣିଷ ମଣିଷ ଭିତରେ ପାର୍ଥକ୍ୟ ହୋଇପାରେ ବୋଲି ସେ ମାନିବାକୁ ସମର୍ଥ ନ ଥିଲେ । ଅସ୍ପୃଶ୍ୟମାନଙ୍କୁ ଉଚ୍ଚ ଜାତିର ହିନ୍ଦୁଙ୍କ ସହିତ ସମାନ ସାମାଜିକ ଅଧିକାର ଦେବାରେ ଏବଂ ହିନ୍ଦୁ, ମୁସ୍‌ଲିମ୍, ପାର୍ସି, ଖ୍ରୀଷ୍ଟିଆନ୍ ନିର୍ବିଶେଷରେ ସମସ୍ତଙ୍କୁ ଘେନି ଗୋଟିଏ ନୂଆ ଭାରତୀୟ ଜାତି ଗଢ଼ିବାରେ ସେ ଯେଉଁ ଉଦ୍ୟମ କରିଥିଲେ ତାହା ସମଗ୍ର ପୃଥିବୀରେ ପରିଚିତ । କିନ୍ତୁ ୧୯୩୧ର ଗୋଲଟେବୁଲ ବୈଠକ ବେଳେ, ବିଶେଷତଃ ବ୍ରିଟିଶ୍ ସରକାର ବିପରୀତ ଦିଗରେ ଉଦ୍ୟମ ଚଳାଇବା କ୍ଷେତ୍ରରେ, ହିନ୍ଦୁ, ମୁସ୍‌ଲିମ୍ ଓ ହରିଜନ ସଂପ୍ରଦାୟମାନଙ୍କୁ ଏକାଠି କରିବାର ଶକ୍ତି ତାଙ୍କର ରହିଲା ନାହିଁ । ସେପରି ହୋଇଥିଲେ ଭାରତ ସେତିକି ବେଳେ ବ୍ରିଟିଶ୍ ରାଜକୁ ଭାରତ ଛାଡ଼ି ଚାଲିଯିବାକୁ କହି ପାରିଥାନ୍ତା ।

ଡିସେମ୍ବର ୧, ୧୯୩୧ରେ ଗୋଲଟେବୁଲ୍ ସମ୍ମିଳନୀର ଶେଷ ବୈଠକ ହେଲା ବେଳକୁ ଶ୍ରମିକ ସରକାରଙ୍କ ସ୍ଥାନରେ ଜାତି ଦଳର ସରକାର ଗଢ଼ା ହୋଇଥାଏ । ୧୯୩୧, ଅକ୍ଟୋବର ୨୭ରେ ହୋଇଥିବା ସାଧାରଣ ନିର୍ବାଚନରେ ଜାତିଦଳ ଯଶସ୍ୱୀ ହୋଇ ସରକାର ଗଢ଼ିଥାନ୍ତି । କିନ୍ତୁ ପୂର୍ବ ଶ୍ରମିକ ସରକାରର ପ୍ରଧାନମନ୍ତ୍ରୀ ରାମ୍‌ସେ ମ୍ୟାକ୍‌ଡୋନାଲ୍ଡ୍ ଓ ଅନ୍ୟତମ ମନ୍ତ୍ରୀ ଜେ· ଏଚ· ଟମାସ୍ ଅବସ୍ଥାଚକ୍ରରେ ପଡ଼ି ଏଇ ଜାତି ସରକାରରେ ବାନ୍ଧି ହୋଇ ରହିଥାନ୍ତି । ତେଣୁ ପୂର୍ବପରି ମ୍ୟାକ୍‌ଡୋନାଲ୍ଡ୍ ଗାନ୍ଧୀଙ୍କୁ 'ହିନ୍ଦୁ' ବୋଲି ଉଲ୍ଲେଖ କଲେ ।

ଗାନ୍ଧୀ ପ୍ରତିବାଦ କରି ଉଠିଲେ, 'ହିନ୍ଦୁ ନୁହେଁ ।'

ନିଜ ଭଗବାନଙ୍କ ଆଗରେ ସେ ଥିଲେ ହିନ୍ଦୁ । କିନ୍ତୁ ବ୍ରିଟିଶ

ପ୍ରଧାନମନ୍ତ୍ରୀଙ୍କ ଆଗରେ, ଓ ରାଜମଣ୍ଡଳରେ ସେ ଥିଲେ ଭାରତୀୟ । କିନ୍ତୁ ଗୋଲଟେବୁଲ ବୈଠକରେ ତାଙ୍କ ପରି ନିଜକୁ ଭାରତୀୟ ବୋଲି ବିଚାରିବା ପ୍ରତିନିଧି କେହି ନ ଥିଲେ ; ଭାରତରେ ବି ନ ଥିଲେ ।

ଗୋଲଟେବୁଲ ବୈଠକ ଫଳରେ ଏଇ କଥାଟା ପ୍ରମାଣିତ ହେଲା । ଏହା ସଂପୂର୍ଣ୍ଣ ରୂପେ ବିଫଳ ହେଲା । ଭାରତର ସମସ୍ୟା ଆହୁରି ଜଟିଳ ହୋଇ ପଡ଼ିଲା । ଗାନ୍ଧୀ ମନସ୍ତାପରେ ଇଂଲଣ୍ଡ ଛାଡ଼ିଲେ । ସେ ନିଜର କଥା ଓ ଆଚରଣରେ ବହୁ ଇଂରେଜଙ୍କୁ ମୁଗ୍‌ଧ କରିଥିଲେ ଓ ଭାରତର ଦାବୀର ଯଥାର୍ଥତା ବିଷୟରେ ତାଙ୍କର ହୃଦ୍‌ବୋଧ କରାଇ ପାରିଥିଲେ କିନ୍ତୁ ହିନ୍ଦୁ ଓ ମୁସଲମାନଙ୍କ ମଝିରେ ଯେଉଁ ଗାତ ଥିଲା ତା' ଉପରେ ସେ ସେତୁ ତ ବାନ୍ଧି ପାରିଲେ ନାହିଁ, ସେ ଗାତର ଓସାର ବି କମାଇ ପାରିଲେ ନାହିଁ । ପୂର୍ବ ପରି ବ୍ରିଟିଶ୍ ସରକାର ଭାରତକୁ ଜାବୁଡ଼ି ଧରିଲେ ।

---

# ଚତୁର୍ଥ ପରିଚ୍ଛେଦ

## ଦେଶକୁ ଫେରିବା ବାଟରେ

ପୃଥିବୀର ପ୍ରାୟ ସମସ୍ତ ସ୍ୱାଧୀନ ଦେଶର ବହୁ ବ୍ୟକ୍ତି ଓ ସମିତି-ମାନଙ୍କୁ କ୍ଷମା ମାଗି ଗାନ୍ଧୀ ପତ୍ର ଲେଖିଥିଲେ । ସେଥିରେ ସେ ଜଣାଇଥିଲେ ଯେ, ବିଶେଷ କାମ ପାଇଁ ଶୀଘ୍ର ଭାରତକୁ ଫେରିବା ପ୍ରୟୋଜନ ହେବାରୁ ସେ ସେମାନଙ୍କୁ ଦେଖା କରିବାକୁ ଯାଇ ପାରିବେ ନାହିଁ । ଫେରିବା ବାଟରେ ସେ ଦିନେ ମାତ୍ର ପ୍ୟାରିସ୍‌ରେ ରହିଥିଲେ । ଗୋଟିଏ ଟେବୁଲ ଉପରେ ବସି ସେଠାର ଏକ ପ୍ରଶସ୍ତ ସିନେମା ହଲରେ ହୋଇଥିବା ବିରାଟ୍ ସାଧାରଣ ସଭାରେ ସେ ଭାଷଣ ଦେଇଥିଲେ । ସେଠାରୁ ରେଲ ଧରି ସେ

ସ୍ୱିଜର୍‌ଲଣ୍ଡ ଯାତ୍ରା କଲେ । ସ୍ୱିଜର୍‌ଲଣ୍ଡର ଲେମାନ୍ ହ୍ରଦର ପୂର୍ବ ଉପକୂଳରେ ଅବସ୍ଥିତ ଭିଲେନ୍ୟୁବ୍ ସହରରେ ରୋମାଁରୋଲାଁଙ୍କ ଅତିଥି ହୋଇ ସେ ପାଞ୍ଚଦିନ କଟାଇଥିଲେ ।

ରୋମାଁରୋଲାଁଙ୍କ 'ଜାଁନ୍ କ୍ରିଷ୍ଟୋଫେ' ପୁସ୍ତକ ବିଂଶ ଶତାବ୍ଦୀର ସାହିତ୍ୟିକ ଜଗତରେ ଅନ୍ୟତମ ବିଶିଷ୍ଟ କୃତି ବୋଲି ପ୍ରସିଦ୍ଧି ପାଇଥାଏ । ଊନବିଂଶ ଶତାବ୍ଦୀର ସର୍ବଶ୍ରେଷ୍ଠ ଉପନ୍ୟାସର ଲେଖକ ଟଲଷ୍ଟୟଙ୍କ ପ୍ରଭାବ ରୋମାଁରୋଲାଁଙ୍କ ଉପରେ ପଡ଼ିଥିଲା । ରୋଲାଁ, ଟଲଷ୍ଟୟ ଓ ଗାନ୍ଧୀଙ୍କ ବ୍ୟକ୍ତିତ୍ୱର ତୁଳନାତ୍ମକ ଆଲୋଚନା ୧୯୨୪ରେ ପ୍ରକାଶ କରିଥାନ୍ତି । ସେଥିରେ ସେ ଲେଖିଥିଲେ, 'ଗାନ୍ଧୀଙ୍କ ଚରିତ୍ରରେ ସହଜ ସ୍ୱାଭାବିକତ୍ୱର ପରିପ୍ରକାଶ—ତାଙ୍କ ଆଚରଣ ବିନୀତ, ସରଳ, ଓ ପବିତ୍ର । ତାଙ୍କର ପ୍ରତ୍ୟେକ କାର୍ଯ୍ୟ ଧର୍ମନିଷ୍ଠ ପ୍ରଶାନ୍ତଭାବରେ ଉପାଣିତ । କିନ୍ତୁ ଟଲଷ୍ଟୟଙ୍କର କଥା ଅଲଗା । ସେ ଗର୍ବ ଓ ଅହଂକାରର ବିରୋଧ କରିଛନ୍ତି ଦମ୍ଭ ଓ ଅହଂ-କାରରେ ; ଘୃଣାର ସମ୍ମୁଖୀନ ହୋଇଛନ୍ତି ଘୃଣା ସହିତ ; କ୍ରୋଧ ବିରୁଦ୍ଧରେ ସେ ହୋଇଛନ୍ତି କ୍ରୁଦ୍ଧ । ତାଙ୍କର ସବୁ କଥା ଓ କାର୍ଯ୍ୟରେ ସେ ପ୍ରଚଣ୍ଡ ; ତାଙ୍କ ପ୍ରତିପାଦିତ ଅହିଂସା ମଧ୍ୟରେ ମଧ୍ୟ ହିଂସା ପ୍ରତିଫଳିତ ହୋଇଛି ।'

ଟଲଷ୍ଟୟ ଥିଲେ ଝଡ଼ଝଞ୍ଜାରେ ବିକ୍ଷୁବ୍ଧ, ଗାନ୍ଧୀ ତୁଳ୍ୟ ପରିସ୍ଥିତିରେ ସ୍ଥିର ଓ ଶାନ୍ତ ହୋଇ ରହି ପାରୁଥିଲେ । ଟଲଷ୍ଟୟଙ୍କ ପରି ନିଜ ଭାର୍ଯ୍ୟାଠାରୁ ବା ଅନ୍ୟ କୌଣସି ପରିସ୍ଥିତିରୁ ଶାନ୍ତି ପାଇବାକୁ ସେ ପଳାଇ ଯାଇ ପାରି ନ ଥାନ୍ତେ । ଗାନ୍ଧୀ ହାଟଭିତରେ ବସିଥାନ୍ତି ; ତାଙ୍କର ଚାରିପଟେ ଲକ୍ଷ ଲକ୍ଷ ଲୋକ ନିଜ ନିଜର ଶଗଡ଼ରେ ପସରା ଧରି ଯା' ଆସ କରୁଥାନ୍ତି, ନିଜ ନିଜ ସୁଖ ଦୁଃଖରେ ହୋହା ହେଉଥାନ୍ତି, ଗାନ୍ଧୀ ବିଚଳିତ ହୁଅନ୍ତି ନାହିଁ, ତାଙ୍କ ଭିତରର ଶାନ୍ତି ତାଙ୍କ ଚାରିପଟକୁ ଫୁଟି ଉଠୁଥାଏ । ଲୋକଗହଳି ଭିତରୁ ନେଇ ତାଙ୍କୁ ଜନସମାଗମର ଦୂରରେ ବା ଗୌରବର ଉତ୍ତୁଙ୍ଗ ଶିଖରରେ ଥୋଇଲେ ସେ ଅସ୍ୱସ୍ତି ଅନୁଭବ କରନ୍ତେ, ତାଙ୍କର ଶ୍ୱାସରୁଦ୍ଧ ହୋଇଯାନ୍ତା ।

ରବୀନ୍ଦ୍ରନାଥ ମଧ୍ୟ ଥିଲେ ତାଙ୍କଠାରୁ ଅଲଗା । ରୋମାଁରୋଲାଁ ରବୀନ୍ଦ୍ରନାଥଙ୍କ ଉକ୍ତି ଉଦ୍ଧାର କରିଛନ୍ତି, 'ଚାରିପଟେ ଜନତା ମୋତେ ରୁନ୍ଧିଦେଲେ ମୋର କି ଦୟନୀୟ ଅବସ୍ଥା ନ ହୁଅନ୍ତା ?···ମୋ ଅନ୍ତରରେ ମୁଁ ଯେଉଁ ଧ୍ୱନି ଶୁଣେ, ତା'ର ମର୍ମ କିଏ ବୁଝନ୍ତା ? ମୁଁ ଯଦି ସଙ୍ଗୀତ

ଶୁଣେ, ମୋର ସେତାର ତା'ର ସ୍ୱର ଧରି ନିଏ, ଏବଂ ମୁଁ ସଙ୍ଗୀତର ସ୍ୱର ଲହରୀରେ ନିଜକୁ ଭସାଇ ଦିଏ, କାରଣ ମୁଁ ନିଜେ ଜଣେ ଗାୟକ । କିନ୍ତୁ ଜନତାର ଉଦ୍‌ଭ୍ରାନ୍ତ କୋଳାହଳରେ ମୋର ସ୍ଥାନ ନାହିଁ । ସେଠାରେ ମୋର ସ୍ୱର ଲୋପ ହୋଇଯାଏ, ମୋର ମୁଣ୍ଡ ଘୂରିଯାଏ ।'

୧୯୩୧ ପୂର୍ବରୁ ରୋଲାଁ ଓ ଗାନ୍ଧୀଙ୍କର ଦେଖାସାକ୍ଷାତ ହୋଇ ନ ଥିଲା । ରବୀନ୍ଦ୍ରନାଥ ଏବଂ ରବୀନ୍ଦ୍ରନାଥଙ୍କ ସଙ୍ଗେ ପନ୍ଦରବର୍ଷ ରହିଥିବା ସି. ଏଫ୍. ଏଣ୍ଡ୍ରୁଜଙ୍କ ସଙ୍ଗେ ଦୀର୍ଘ କଥୋପକଥନ କରି ରୋଲାଁ ଗାନ୍ଧୀଙ୍କୁ ଚିହ୍ନିଥିଲେ । ସେ ଗାନ୍ଧୀଙ୍କ ଲେଖା ବି ପଢ଼ିଥିଲେ । ରବୀନ୍ଦ୍ରଙ୍କ ପରି ରୋଲାଁ ବି ଥିଲେ ଜଣେ ଗାୟକ । ସେ ବିଥୋଭେନ୍, ହ୍ୟାଣ୍ଡେଲ୍, ଗେଟେ ଓ ମାଇକେଲ୍ ଆଞ୍ଜେଲୋଙ୍କ ଉପରେ ବହି ଲେଖିଥିଲେ । ହିନ୍ଦୁ ପରମହଂସ, ରାମକୃଷ୍ଣଙ୍କ ବିଷୟରେ ମଧ୍ୟ ସେ ଖଣ୍ଡିଏ ପୁସ୍ତକ ଲେଖିଥିଲେ ।

ରୋଲାଁ ଗାନ୍ଧୀଙ୍କୁ ଜଣେ ସାଧୁ ସନ୍ଥ ବୋଲି ବିଶ୍ୱାସ କରୁଥିଲେ । ବସ୍ତୁତଃ ୧୯୨୪ରେ ସେ ମହାତ୍ମା ଗାନ୍ଧୀଙ୍କର ଯେଉଁ ଜୀବନୀ ଲେଖିଥିଲେ ସେଥିରେ ଅଛି, 'ଗାନ୍ଧୀ ଅତିମାତ୍ରାରେ ଭଗବତ୍‌ପରାୟଣ ମହାତ୍ମା ; ସେ ଅତିମାତ୍ରାରେ ପବିତ୍ର ଏବଂ ମନୁଷ୍ୟର ମନରେ ସାଧାରଣତଃ ଯେଉଁ ପାଶବିକ ଭାବାବେଗ ଥାଏ ସେଥିରୁ ସେ ଅତିମାତ୍ରାରେ ମୁକ୍ତ ।' ରୋଲାଁ ଓ ରବୀନ୍ଦ୍ରନାଥ ମାନବ ମନର ଦାନବିକ ବୃତ୍ତି ବିଷୟରେ ସଚେତନ ଥିଲେ । ଠାକୁରଙ୍କର ଆଶଂକା ହୋଇଥିଲା, ଗାନ୍ଧୀ ବିଦେଶୀ ବସ୍ତ୍ରର ଯେଉଁ ଅଗ୍ନିଜଳା କରୁଛନ୍ତି ତାହା ଫଳରେ ଜନସାଧାରଣଙ୍କ ମନରେ ଯେଉଁ ଉତ୍ତେଜନା ସୃଷ୍ଟି ହେବ ତା'କୁ ସୀମା ଭିତରେ ରୋକି ହେବ ନାହିଁ ; ରୋଲାଁଙ୍କର ମଧ୍ୟ ସେଇ ଆଶଂକା ହୋଇଥିଲା ; ଏଣ୍ଡ୍ରୁଜ୍ ଏ ଦୁହିଁଙ୍କ ସଙ୍ଗେ ଏକମତ ଥିଲେ ।

ମନୁଷ୍ୟର ମନରେ ମୌଳିକ ସଦ୍‌ବୃତ୍ତି ଅଛି, ଏବଂ ସାମୟିକ ଦୁର୍ବୁଦ୍ଧିର ସଂଶୋଧନ ସହଜରେ କରାଯାଇପାରେ ବୋଲି ଗାନ୍ଧୀଙ୍କର ହୃଦୟରେ ଯେଉଁ ଦୃଢ଼ ବିଶ୍ୱାସ ଥିଲା ତାହାକୁ, ଏଭଳି ଆଶଂକା କଲାବେଳେ ବିଚାରକୁ ନିଆଯାଇନାହିଁ । ଦକ୍ଷିଣ ଆଫ୍ରିକାରେ ଗାନ୍ଧୀ ବିଶ୍ୱାସ କରିଥିଲେ ଯେ, ଖଣିରେ ବା ଖେତରେ କାମ କରୁଥିବା ସାଧାରଣ, ନିରକ୍ଷର, ଚୁକ୍ତିବଦ୍ଧ ଶ୍ରମିକ ସତ୍ୟାଗ୍ରହୀର ସଂଯମ ଓ ସାଧୁତା ହାସଲ କରିପାରେ । ଅନୁନ୍ନତ ବାର୍ଦ୍ଦୋଳିର କୃଷକ ମନର କ୍ରୋଧ ଓ ହିଂସ୍ରବୃତ୍ତିକୁ ରୋକି ପାରିବେ ବୋଲି ତାଙ୍କର ଆସ୍ଥା ହୋଇଥିଲା । ବଡ଼ ଲୋକ, କଳାକାର ବା ବିଶିଷ୍ଟ

ଭଦ୍ରବ୍ୟକ୍ତିଙ୍କର ମହତ୍ତ୍ୱରେ ଏକାଧିକାର ଅଛି ବୋଲି ସେ ମନେ କରୁ ନ ଥିଲେ । ଭୁଚ୍ଛା ମାଟିରେ ମୂର୍ତ୍ତି ଗଢ଼ି ସେଇ ମୂର୍ତ୍ତିରେ ପ୍ରାଣ ସଂଚାର କରାଇବାରେ ଥିଲା ଗାନ୍ଧୀଙ୍କର ବିଶିଷ୍ଟତା ।

ଡିସେମ୍ବର ୫ ତାରିଖରେ ଗାନ୍ଧୀ ଆସି ପହଞ୍ଚିବା ପୂର୍ବରୁ, ରୋଲାଁ ତାଙ୍କ ଆଗମନ ଉପଲକ୍ଷ୍ୟେ ଶହ ଶହ ଚିଠି ପାଇଥିଲେ ! ଆଗାମୀ ଜାତୀୟ ଲଟେରୀରେ କେଉଁ କେଉଁ ସଂଖ୍ୟା ଉପରେ ଟଙ୍କା ଲଗାଇଲେ ଜଣା ହେବ ତାହା ଗାନ୍ଧୀଙ୍କଠାରୁ ଜାଣିବା ନିମନ୍ତେ ଜଣେ ଇଟାଲୀୟ ଲେଖିଥାନ୍ତି ; ଦଳେ ସ୍ୱିଜରଲାଣ୍ଡୀୟ ବାଦ୍ୟକାର ପ୍ରସ୍ତାବ ଦେଇଥାନ୍ତି, ସେମାନେ ଗାନ୍ଧୀଙ୍କ ସୁଖନିଦ୍ରା ପାଇଁ ତାଙ୍କ ଶୋଇବା ଘରର ଝରକା ତଳେ ପ୍ରତି ରାତିରେ ବାଦ୍ୟ କରିବେ ; ଲେମାନ୍‌ର ଗୋପାଳମାନେ ନିଜ ଆଡ଼ୁ ପ୍ରତିଶ୍ରୁତି ଦେଇଥାନ୍ତି 'ଭାରତ ରାଜା' ଲେମାନରେ ଥିବାଯାକ ତାଙ୍କୁ ଦୁଗ୍ଧଜାତ ପଦାର୍ଥ ଯୋଗାଇବେ । ସମ୍ବାଦପତ୍ର ପ୍ରତିନିଧିମାନେ ପ୍ରଶ୍ନାବଳୀ ଆଗରୁ ପଠାଇ ରୋଲାଁଙ୍କ ବାସଭବନର ପାଖ ଆଖରେ ବସା କରି ରହିଥାନ୍ତି ; ଫଟୋ-ଗ୍ରାଫର୍‌ମାନେ ରୋଲାଁଙ୍କ ଘରକୁ ବେଢ଼ି କରି ରହିଥାନ୍ତି ; ପୁଲିସଙ୍କଠାରୁ ଖବର ମିଳିଥାଏ ଯେ, ଗାନ୍ଧୀଙ୍କ ଦର୍ଶନ ପାଇବା ଆଶାରେ ନିକଟବର୍ତ୍ତୀ ହୋଟେଲମାନଙ୍କରେ ପର୍ଯ୍ୟଟକମାନଙ୍କର ଭିଡ଼ ହୋଇଗଲାଣି ।

ସେତେବେଳକୁ ଗାନ୍ଧୀଙ୍କର ବୟସ ୬୨ ଓ ରୋଲାଁଙ୍କର ୬୫ ; ଉଭୟେ ବହୁଦିନର ଅନ୍ତରଙ୍ଗ ବନ୍ଧୁଙ୍କ ପରି ଭେଟାଭେଟି ହେଲେ ଓ ପରସ୍ପର ପ୍ରତି ସଶ୍ରଦ୍ଧ ଆନ୍ତରିକତାପୂର୍ଣ୍ଣ ବ୍ୟବହାର କଲେ । ଗାନ୍ଧୀ ଆସି ପହଞ୍ଚିଲେ ସନ୍ଧ୍ୟାବେଳେ ; ଭାରି ଥଣ୍ଡା ପାଗ, ବର୍ଷା ବି ହେଉଥାଏ । ତାଙ୍କ ସାଙ୍ଗରେ ଥାନ୍ତି, ମିସ୍ ସ୍ଲେଡ୍, ମହାଦେବ ଦେଶାଇ, ପ୍ୟାରେଲାଲ ନାୟାର୍ ଓ ଦେବଦାସ । ତହିଁ ଆରଦିନ ସୋମବାର, ଗାନ୍ଧୀଙ୍କର ମୌନ ଦିବସ । ୧୯୦୦ ଖ୍ରୀଷ୍ଟାବ୍ଦରୁ ସେ ପର୍ଯ୍ୟନ୍ତ ଇୟୁରୋପର ସାମାଜିକ ଓ ନୈତିକ ଅବସ୍ଥାର ଗତି ବିଷୟରେ ରୋଲାଁ ତାଙ୍କୁ ୯୭ ମିନିଟ କାଳ କହିଲେ । ଗାନ୍ଧୀ ତନ୍ମୟ ରହି ସବୁ ଶୁଣୁଥାନ୍ତି ଓ ମଝିରେ ପେନ୍‌ସିଲରେ କେତୋଟି ପ୍ରଶ୍ନ ଲେଖି ତାଙ୍କୁ ଦେଉଥାନ୍ତି ।

ମଙ୍ଗଳବାର ଦିନ ଉଭୟେ ଗାନ୍ଧୀଙ୍କର ରୋମଯାତ୍ରା ବିଷୟରେ ଆଲୋଚନା କଲେ । ଗାନ୍ଧୀଙ୍କର ଉଦ୍ଦେଶ୍ୟ ଥିଲା, ମୁସୋଲିନି, ଇଟାଲୀର ଅନ୍ୟାନ୍ୟ ନେତା ଓ କ୍ୟାଥୋଲିକ୍ ଧର୍ମଗୁରୁ ପୋପଙ୍କ ସଙ୍ଗେ ସାକ୍ଷାତ୍

କରିବେ । ରୋଲାଁ ସତର୍କ କରି କହିଲେ ଯେ ମୁସୋଲିନିଙ୍କ ଫାସିଷ୍ଟ ସରକାର ତାଙ୍କ ଉପସ୍ଥିତିର ସୁଯୋଗ ନେଇ, ନିଜ ସ୍ୱେଚ୍ଛାଚାରୀ କାର୍ଯ୍ୟକଳାପ ପ୍ରତି ସମର୍ଥନ ପାଇବାର ଉଦ୍ୟମ କରିବେ, ଓ ସେ ଇଟାଲିର ପ୍ରକୃତ ଅବସ୍ଥା ଯେପରି ଦେଖି ନ ପାରିବେ ସେଥିପାଇଁ ତାଙ୍କ ଗତିବିଧିରେ କଟକଣା କରିବେ । ଗାନ୍ଧୀ କହିଲେ, ମୋତେ ସେ ଘେର ଭିତରେ ରଖିବାକୁ ଉଦ୍ୟମ କଲେ ମୁଁ ଘେର ଭାଙ୍ଗି ପାରିବି । ଆଗରୁ ମୁସୋଲିନିଙ୍କୁ କେତେକ ସର୍ତ୍ତ ଦେଇ ଯିବାକୁ ରୋଲାଁ ପରାମର୍ଶ ଦେଲେ । ଗାନ୍ଧୀ କହିଲେ, ଏଭଳି କଟକଣା ନିଜ ଆଡ଼ୁ କରିବା ତାଙ୍କର ନୀତିବିରୁଦ୍ଧ । ରୋଲାଁ ପୁଣି ଆପତ୍ତି କରିବାରୁ ଗାନ୍ଧୀ କହିଲେ, 'ତେବେ ମୁଁ ରୋମ୍‌ରେ ଅଟକିବି କି ନାହିଁ ସେ ବିଷୟରେ ଆପଣଙ୍କ ସିଦ୍ଧାନ୍ତ ମୋତେ କହନ୍ତୁ ।' କୌଣସି ନିରପେକ୍ଷ ବ୍ୟକ୍ତିଙ୍କ ଘରେ ରହିଲେ ହେବ ବୋଲି ରୋଲାଁ ପରାମର୍ଶ ଦେଲେ । ଗାନ୍ଧୀ ପ୍ରତିଶ୍ରୁତି ଦେଲେ, ଓ ଏ ପ୍ରତିଶ୍ରୁତି ପାଳନ କଲେ ।

ଇଉରୋପ ବିଷୟରେ ପୂର୍ବଦିନ ଯାହା କହିଥିଲେ ତା' ଉପରେ ଗାନ୍ଧୀଙ୍କର ମତ ଜାଣିବାକୁ ରୋଲାଁ ଚାହିଁଲେ । ଗାନ୍ଧୀ କହିଲେ, ରୋଲାଁ ତାଙ୍କ ଜୀବନରେ କେତେ ମନସ୍ତାପ ସହିଛନ୍ତି ତାହା ତାଙ୍କ କଥାରୁ ସ୍ପଷ୍ଟ ହୋଇଥିଲା । ଗାନ୍ଧୀ ଇଂରେଜିରେ କହୁଥାନ୍ତି, ରୋଲାଁଙ୍କ ଭଗିନୀ ତାହା ଫରାସୀ ଭାଷାରେ ଅନୁବାଦ କରି ରୋଲାଁଙ୍କୁ ଶୁଣାଉଥାନ୍ତି । ଗାନ୍ଧୀ କହିଲେ ଯେ ଇତିହାସରୁ ସେ କିଛି ଶିଖି ନାହାନ୍ତି । 'ମୋର ଜ୍ଞାନ ନିଜ ଅଭିଜ୍ଞତା-ଲବ୍ଧ । ମୋର ବ୍ୟକ୍ତିଗତ ଅନୁଭୂତି ଓ ଅଭିଜ୍ଞତାରୁ ମୁଁ ପ୍ରତ୍ୟେକ ବିଷୟରେ ସିଦ୍ଧାନ୍ତ କରେ ।' ଏପରି କରିବାରେ ବିପଦ ଅଛି, ଏବଂ ନିଜର ସିଦ୍ଧାନ୍ତ ଭୁଲ ହେବାର ଆଶଂକା ଅଛି ବୋଲି ସ୍ୱୀକାର କରିବା ସଙ୍ଗେ ସଙ୍ଗେ ସେ କହିଲେ, କିନ୍ତୁ ନିଜେ ଦେଖି ଯେଉଁ ମତ ଧରିଛନ୍ତି ସେଥିରେ ତାଙ୍କର ବିଶ୍ୱାସ କରିବାକୁ ହିଁ ହେବ । ତାଙ୍କର ଅହିଂସାରେ ପୂର୍ଣ୍ଣ ଆସ୍ଥା ବୋଲି ସେ କହିଲେ ଓ ଅହିଂସା ନୀତିଦ୍ୱାରା ଇଉରୋପର ସମସ୍ୟା-ସମାଧାନ ହୋଇ ପାରେ ବୋଲି ଦୃଢ଼ ମତ ଦେଲେ । ଇଂଲଣ୍ଡରେ, ବନ୍ଧୁମାନେ ଅହିଂସ କାର୍ଯ୍ୟପନ୍ଥାର ଅପର୍ଯ୍ୟାପ୍ତତା ବିଷୟରେ ତାଙ୍କୁ ବୁଝାଇବାକୁ ଚେଷ୍ଟା କରି-ଥିଲେ, 'କିନ୍ତୁ ଏ ନୀତିର ଉପଯୋଗିତା ବିଷୟରେ ସମଗ୍ର ପୃଥିବୀ ସନ୍ଦିଗ୍ଧ ହେଲେ ବି, ମୋର ଏଥିରେ ଥିବା ବିଶ୍ୱାସ ଟଳିବ ନାହିଁ ।'

ପରବର୍ତ୍ତୀ ଦୁଇ ଦିନ ଗାନ୍ଧୀ ଲିସେନ୍‌ରେ କଟାଇଲେ । ସେଠାରେ

ସେ ଗୋଟିଏ ସାଧାରଣ ସଭାରେ ଭାଷଣ ଦେଲେ ଓ ଜେନେଭାର ଭିକ୍ଟୋରିଆ ହଲ୍‌ରେ କେତେକ ବିଷୟର ଆଲୋଚନା କଲେ । ଉଭୟସ୍ଥଳ କେତେକ ନିରୀଶ୍ୱରବାଦୀ ଓ ବିରୁଦ୍ଧମତବାଦୀ ତାଙ୍କୁ ଏଣୁତେଣୁ ପ୍ରଶ୍ନ ପଚାରି ଅସ୍ତବ୍ୟସ୍ତ କରିବାକୁ ଚେଷ୍ଟା କଲେ । କିନ୍ତୁ ସେ ପୂର୍ଣ୍ଣ ଧୈର୍ଯ୍ୟ ଓ ଶାନ୍ତିରେ ସେମାନଙ୍କ ପ୍ରଶ୍ନମାନଙ୍କର ଉତ୍ତର ଦେଲେ । ରୋଲାଁ ଲେଖିଥିଲେ, 'ତାଙ୍କ ମୁହଁରେ ବ୍ୟସ୍ତତାର କ୍ଷୀଣ ସଙ୍କେତ ବି ଦେଖାଯାଉ ନ ଥାଏ ।'

ଡିସେମ୍ବର ୧୦ ତାରିଖରେ ରୋଲାଁ ଓ ଗାନ୍ଧୀଙ୍କର ପୁଣି ଆଲୋଚନା ଚାଲିଲା । ଗାନ୍ଧୀ ଜେନେଭାରେ କହିଥିଲେ, 'ସତ୍ୟ ହିଁ ଭଗବାନ୍' । ରୋଲାଁ ସେଇ କଥା ଉତ୍ଥାପନ କଲେ । ତାଙ୍କ ନିଜ ଜୀବନର ବୃତ୍ତାନ୍ତ ସେ କହିଲେ—ତାଙ୍କ ପିଲା ଦିନେ ଗୋଟିଏ କ୍ଷୁଦ୍ର ଫରାସୀ ସହରରେ ସେ କିପରି ଶରୀର ଓ ମନର ସ୍ୱଚ୍ଛନ୍ଦ ବିକାଶ ପାଇଁ ସୁଯୋଗ ନ ପାଇ ରୁଦ୍ଧ ହୋଇ ରହିଥିଲେ ; ପରେ କିପରି ସେ ଜଣେ ଲେଖକ ହେଲେ, ଏବଂ ସାହିତ୍ୟ କଳାରେ ସତ୍ୟର ପ୍ରକାଶ କରିବା କିପରି ତାଙ୍କ ପକ୍ଷରେ ସମସ୍ୟା ହୋଇ ଉଠିଲା—ବର୍ଣ୍ଣନା କରି ସେ କହିଲେ, ''ସତ୍ୟ ହିଁ ପରମେଶ୍ୱର'' ଏ କଥା ଯଦି ସତ୍ୟ ହୁଏ, ତେବେ ମୋର ମନେ ହୁଏ ଭଗବାନଙ୍କର ଗୋଟିଏ ଲକ୍ଷଣ, ''ଆନନ୍ଦ''ର ଅଭାବ ରହିଯିବ । ମୋର ଦୃଢ଼ ଧାରଣା—ଆନନ୍ଦ ବିନା ଭଗବାନଙ୍କ ସତ୍ତା ରହି ନ ପାରେ ।'

ଗାନ୍ଧୀ ଉତ୍ତର ଦେଲେ ଯେ, କଳା ଓ ସତ୍ୟ—ଏ ଦୁହିଁଙ୍କ ଭିତରେ ପାର୍ଥକ୍ୟ ସେ ଉପଲବ୍ଧି କରି ପାରି ନାହାନ୍ତି । '''କଳାପାଇଁ କଳା'' ଏ ଉକ୍ତିର ମୁଁ ପକ୍ଷପାତୀ ନୁହେଁ । ମୋ ବିଚାରରେ କଳାର ଭିତ୍ତିଭୂମି ସତ୍ୟରେ ପ୍ରତି-ଷ୍ଠିତ ହେବା ଦରକାର । କଳାର ସୌନ୍ଦର୍ଯ୍ୟ ସୃଷ୍ଟିରେ ସତ୍ୟର ପ୍ରକାଶ ନ ହୋଇ, ଯଦି ଅସାର କଳ୍ପନାର ପ୍ରକାଶ ହୁଏ ତେବେ ସେ ସୌନ୍ଦର୍ଯ୍ୟକୁ ମୁଁ ସୌନ୍ଦର୍ଯ୍ୟ ବୋଲି କହିବି ନାହିଁ । ''କଳା ଆନନ୍ଦ ଦିଏ, ଓ କଳା ମଙ୍ଗଳମୟ'' ଏ ଉକ୍ତି ମୁଁ ଗ୍ରହଣ କରିବାକୁ ପ୍ରସ୍ତୁତ, କିନ୍ତୁ ଯେଉଁ ସର୍ତ୍ତ ଦେଲି, ସେଇ ସର୍ତ୍ତରେ । ବାହ୍ୟ ବସ୍ତୁର ଅବିକଳ ପ୍ରତିରୂପ ଦେଇ ସତ୍ୟର ପ୍ରତିଷ୍ଠା ହେବ ବୋଲି ମୁଁ ଚାହୁଁନାହିଁ । କିନ୍ତୁ ବାସ୍ତବ, ଜୀବନ୍ତ ଚରିତ୍ରର ଚିତ୍ରଣରେ ହିଁ ଆତ୍ମାକୁ ଜୀବନ୍ତ ଆନନ୍ଦ ମିଳେ ଏବଂ ତାହା ହିଁ ମାନବାତ୍ମାକୁ ମହତ୍ତ୍ୱ ଦିଏ ।'

ରୋଲାଁ ଏହାର ପ୍ରତିବାଦ କରି ନ ଥିଲେ କିନ୍ତୁ ସେ ଦୃଢ଼ଭାବରେ

ସୂଚାଇ ଦେଲେ ଯେ, ସତ୍ୟରେ ଭଗବାନ୍‌ଙ୍କର ସନ୍ଧାନ କରିବାରେ ମନର ସନ୍ତାପ ହୋଇଥାଏ । ସେ ଥାକରୁ ଖଣ୍ଡିଏ ପୁସ୍ତକ କାଢ଼ି ଗେଟେଙ୍କ କାବ୍ୟରୁ ଗୋଟିଏ ଅଂଶ ଆବୃତ୍ତି କଲେ । ରୋଲାଁ ପରେ ସ୍ୱୀକାର କରିଥିଲେ ଯେ, ତାଙ୍କର ଧାରଣା ଥିଲା, ଗାନ୍ଧୀଙ୍କ ଭଗବାନ୍ ମନୁଷ୍ୟର ଦୁଃଖ ଯନ୍ତ୍ରଣାରେ ଆନନ୍ଦ ପା'ନ୍ତି । ଗାନ୍ଧୀଦର୍ଶନ ବିଷୟରେ ଏଇ ଧାରଣାକୁ ଠିକଏ ସହମାପ୍ତ କରିବାକୁ ସେ ଚେଷ୍ଟା କରୁଥିଲେ ।

ଆଉ ଗୋଟାଏ ମହାଯୁଦ୍ଧ ହେଲେ ପୃଥିବୀର ଯେଉଁ ସଂକଟାପନ୍ନ ଅବସ୍ଥା ହେବ ସେ ବିଷୟରେ ବି ଦୁହେଁ ଆଲୋଚନା କଲେ । ଗାନ୍ଧୀ କହିଲେ, 'ଯଦି ପ୍ରତିପକ୍ଷର ହିଂସାର ପ୍ରତିହିଂସା ନ କରି, ହିଂସାକୁ ସହି-ଯିବାର ବୀରତ୍ୱ କୌଣସି ଏକ ଜାତି ଦେଖାଇ ପାରିବ, ତେବେ ଆକ୍ରମଣକାରୀ ସବୁଠାରୁ ଫଳପ୍ରଦ ଶିକ୍ଷା ପାଇବ । କିନ୍ତୁ ଏ ବୀରତ୍ୱ ଦେଖାଇବାକୁ ହେଲେ ଅହିଂସାରେ ଅବିମିଶ୍ର ବିଶ୍ୱାସ ଥିବା ଦରକାର' ।

ରୋଲାଁ କହିଲେ : 'କୌଣସି କାର୍ଯ୍ୟ ଅଧାବାଧି କରି କରିବା ଉଚିତ ନୁହେଁ, ତାହା ଭଲ ହେଉ ବା ମନ୍ଦ ହେଉ' । ରୋଲାଁଙ୍କ ଭଗିନୀ ମଡ୍‌ଲିନ୍, ଏବଂ ଜଣେ ରୁଷୀୟ ସହକର୍ମୀ ମିସ୍ କଣ୍ଡାରେଭ୍, କଥାବାର୍ତ୍ତା ଟିପି ରଖୁଥିଲେ । କିନ୍ତୁ ରୋଲାଁଙ୍କ ଏ ମତ ଉପରେ ଗାନ୍ଧୀଙ୍କ ପ୍ରତିକ୍ରିୟା ଦୁହିଙ୍କ ଭିତରୁ କେହି ଲେଖି ରଖି ନାହାନ୍ତି ।

ଶେଷ ଦିନ, ଡିସେମ୍ବର ୧୧ ତାରିଖରେ, 'ପ୍ରଲିଟେରିଆନ୍ ରିଭଲ୍ୟୁ-ଶନ୍' ନାମକ ପ୍ୟାରିସ୍‌ର ଏକ ପତ୍ରିକାର ସଂପାଦକ ପିଏର ମନାଟ୍ ପଠାଇ-ଥିବା କେତେକ ପ୍ରଶ୍ନର ଉତ୍ତର ଦେବା ପାଇଁ ରୋଲାଁ ଗାନ୍ଧୀଙ୍କୁ ଅନୁରୋଧ କଲେ । ଗୋଟିଏ ପ୍ରଶ୍ନର ଉତ୍ତରରେ ଗାନ୍ଧୀ କହିଲେ, ଯଦି ଶ୍ରମିକମାନେ ପୂର୍ଣ୍ଣ ଓ ନିପୁଣ ଭାବରେ ସଂଗଠିତ ହୁଅନ୍ତି ତେବେ ସେମାନେ ମାଲିକଙ୍କୁ ନିଜର ନିର୍ଦ୍ଦେଶ ଅନୁସାରେ ଚଳାଇ ପାରିବେ । ପୃଥିବୀରେ ଶ୍ରମିକ ହିଁ ଏକାନ୍ତ ଶକ୍ତିମାନ୍ ପାନ୍ତି ।' ରୋଲାଁ କିନ୍ତୁ ବାଧା ଦେଇ କହିଲେ, ଯଦି ମାଲିକମାନେ ଶ୍ରମିକଙ୍କ ଭିତରେ ବିଭେଦ ସୃଷ୍ଟି କରିଦିଅନ୍ତି, ଶ୍ରମିକଙ୍କ ଭିତରୁ ଦଳେ ଗୋଠ-ଖଣ୍ଡିଆ ମାଲିକଙ୍କ ପକ୍ଷ ହେବେ ହିଁ ହେବେ, ତେବେ 'ଶ୍ରମିକମାନଙ୍କ ମଧ୍ୟରେ ଯେଉଁମାନେ ନିଜର ସମୂହ ସ୍ୱାର୍ଥ ବିଷୟରେ ସଚେତନ, ସେମାନେ ସଂଖ୍ୟାରେ ଲଘୁ ହେଲେ ହେଁ, ନିଜ ଗୋଷ୍ଠୀ ବାନ୍ଧି, ଶ୍ରମିକ ଏକଛତ୍ର

ଶାସନ-ସଂସ୍ଥା ଗଢ଼ି, ସବୁ ଶ୍ରମିକଙ୍କୁ, ସେମାନଙ୍କ ନିଜ ସ୍ୱାର୍ଥରେ ଏକଜୁଟ୍ କରିବା ଉଚିତ ।'

ଗାନ୍ଧୀ ଦୃଢ଼ ଭାବରେ ଏ ମତ ପ୍ରତ୍ୟାଖ୍ୟାନ କରି କହିଲେ, 'ମୁଁ ଏହାର ଘୋର ବିରୋଧୀ ।' ରୋଲାଁ ଏ ବିଷୟ ଛାଡ଼ି ଦେଇ, ସଙ୍ଗେ ସଙ୍ଗେ ଆନ୍ୟ କେତେକ ବିଷୟର ଉତ୍‌ଥାପନ କଲେ : ଅପରାଧୀଙ୍କ ସଂପର୍କରେ ଅହିଂସା ନୀତିର ଉପଯୋଗ ପ୍ରଭୃତି କେତେକ ବିଷୟ । ତା'ପରେ ପଚାରିଲେ, 'ଭଗବାନଙ୍କ ସତ୍ତା ବିଷୟରେ ଆପଣଙ୍କର ମତ କ'ଣ—ସେ କ'ଣ ଅଧ୍ୟାତ୍ମ-ଶକ୍ତି-ସଂପନ୍ନ ଜଣେ ବ୍ୟକ୍ତି ନା ଗୋଟିଏ ଶକ୍ତିରୂପେ ପୃଥିବୀର ନିୟନ୍ତ୍ରଣ କରୁଛନ୍ତି ?'

ଗାନ୍ଧୀ ଉତ୍ତର ଦେଲେ, 'ଭଗବାନ୍ ବ୍ୟକ୍ତି ନୁହନ୍ତି······ସେ ଗୋଟିଏ ଶାଶ୍ୱତ ନିୟମ । ସେଇଥି ପାଇଁ ମୁଁ କହେଁ, ସତ୍ୟ ହିଁ ଭଗବାନ୍··· ନିରୀଶ୍ୱରବାଦୀମାନେ ମଧ୍ୟ ସତ୍ୟର ପ୍ରୟୋଜନ ବିଷୟରେ ସନ୍ଦିହାନ ନୁହନ୍ତି ।'

ଶେଷ ସଂଧ୍ୟାରେ, ବିଥୋଭେନ୍‌ଙ୍କର କେତୋଟି ଯନ୍ତ୍ରସଂଗୀତ ଗାନ କରିବାକୁ ରୋଲାଁଙ୍କୁ ଅନୁରୋଧ କଲେ । ରୋଲାଁ ପଞ୍ଚମ 'ସିମ୍ଫନି'ର ଆଣ୍ଡେଣ୍ଟ୍ ଗାନ କଲେ । ନିଜ ଇଚ୍ଛାରେ ଏହାର ପୁନରାବୃତ୍ତି ବି କଲେ । ତା'ପରେ ଗ୍ଲକ୍‌ଙ୍କ 'ଏଲିସିଆନ୍ ଫିଲ୍‌ଡସ୍' ଗାଇଲେ ।

ମନୁଷ୍ୟର ଭାଗ୍ୟ ସଙ୍ଗେ ସଂଘର୍ଷ, ଭାଗ୍ୟ ସଂଗେ ସମନ୍ୱୟ ଓ ବିଶ୍ୱ-ଭ୍ରାତୃତ୍ୱ ପଞ୍ଚମ ସିମ୍ଫନିର ତାନରେ ସୂଚିତ ହୋଇଛି ବୋଲି ବିଶେଷଜ୍ଞମାନେ କହନ୍ତି । ଆଣ୍ଡେଣ୍ଟ୍‌ର ତାନ ସୁଲଳିତ ; ଏହା କୋମଳ ଭାବପ୍ରବଣତା, ପ୍ରଶାନ୍ତ ମହତ୍ତ୍ୱ ଏବଂ ଆଶାବାଦିତାରେ ଓତଃପ୍ରୋତ । ଗାନ୍ଧୀଙ୍କ ବ୍ୟକ୍ତିତ୍ୱ ବିଷୟରେ ତାଙ୍କର ଯେଉଁ ଧାରଣା, ସେଇ ଧାରଣା ଏ ସଂଗୀତରେ ପ୍ରତି-ଫଳିତ ହୋଇଥିବାରୁ ରୋଲାଁ ଏହାକୁ ବାଛିଥିଲେ । ଏହା କୋମଳ ଓ ପ୍ରେମ ପୂର୍ଣ୍ଣ । ଗ୍ଲକ୍‌ଙ୍କ ସଂଗୀତ ଶୁଣିଲେ ମନେ ହୁଏ ଯେପରି ମୁରଲୀର ସ୍ୱନ ସଂଗେ ସ୍ୱର ମିଶାଇ ଦେବକନ୍ୟାମାନେ ସଂଗୀତ ଗାଉଛନ୍ତି । ଏହି ସ୍ୱର୍ଗୀୟ ସ୍ୱରସଂଗୀ-ତରେ ପବିତ୍ରତା ଓ ସ୍ୱଚ୍ଛତା ପୂରି ରହିଛି । ଗୀତାର ଭାବଧାରା ଏ ସଂଗୀତର ମୂର୍ଚ୍ଛନାରେ ପ୍ରକଟିତ ବୋଲି କୁହା ଯାଇପାରେ ।

ରୋଲାଁ ଦୁର୍ବଳ ଓ ନିକଟରେ କାଶ ଶ୍ୱାସ ରୋଗରୁ ଉଠିଥାନ୍ତି । ତଥାପି ଗାନ୍ଧୀ ଓ ତାଙ୍କ ଅନୁଚରମାନଙ୍କୁ ରେଲ୍ ଷ୍ଟେସନ୍‌ରେ ନେଇ

ଘୁଞ୍ଚି ଆସିବେ ବୋଲି ଜିଦ୍ କଲେ । ପ୍ରଥମ ସାକ୍ଷାତ୍ ବେଳ ପରେ ଏଠାରେ ମଧ୍ୟ ଦୁହେଁ ପରସ୍ପରକୁ କୁଣ୍ଢାଇ ଚୁମ୍ବନ ଦିଆ ଦେଇ ଦେଲେ । ଗାନ୍ଧୀ ନିଜ ଗାଲକୁ ରୋଲାଁଙ୍କ କାନ୍ଧରେ ରଖି ଡାହାଣ ହାତରେ ତାଙ୍କୁ କୁଣ୍ଢାଇଲେ ରୋଲାଁ ନିଜର ଗାଲକୁ ଗାନ୍ଧୀଙ୍କ ମୁଣ୍ଡରେ ଛୁଆଁଇଲେ । ରୋଲାଁ କହିଲେ, 'ସେଣ୍ଟ ଡୋମିନିକ୍ ସେଣ୍ଟ ଫ୍ରାନ୍ସିସ୍‌ଙ୍କୁ କୁଣ୍ଢାଇଲା ପରି ଲାଗିଲା ।' (ଏ ଦୁହେଁ ଯିଶୁଙ୍କ ଦ୍ୱାଦଶ ଶିଷ୍ୟଙ୍କ ଅନ୍ତର୍ଭୁକ୍ତ ।)

ଗାନ୍ଧୀ ସରକାରୀ ଅତିଥି ହେବେ ବୋଲି ଇଚ୍ଛା କରି ଇଟାଲୀୟ ସରକାର ତଦନୁରୂପ ବ୍ୟବସ୍ଥା କରିଥିଲେ । କିନ୍ତୁ ସେପରି ଭାବେ ନାହିଁ କରି, ଗାନ୍ଧୀ ରୋଲାଁଙ୍କ ବନ୍ଧୁ ଜେନେରାଲ ମରିସ୍‌ଙ୍କ ଘରେ ରହିଲେ । ମରିସ୍ ପୂର୍ବେ ଭାରତରେ ଥିଲେ । ଆସି ପହଞ୍ଚିବା ଦିନ ଗାନ୍ଧୀ ଇଟାଲିର ଶାସକ ମୁସୋଲିନିଙ୍କୁ ସାକ୍ଷାତ୍ କଲେ । ସରକାରୀ ବିବୃତି ବାହାରିଲା ଯେ, ସାକ୍ଷାତ୍‌କାର ୨୦ ମିନିଟ୍ ହେଲା । କିନ୍ତୁ ଗାନ୍ଧୀଙ୍କ ଅନୁଚରମାନେ କହନ୍ତି, ମାତ୍ର ୧୦ ମିନିଟ୍‌ରେ ସାକ୍ଷାତ୍‌କାର ସରିଲା । ଗାନ୍ଧୀ ମୁସୋଲିନିଙ୍କଠାରେ ନିଜ ମନୋବୃତ୍ତିର କୌଣସି ସାମଞ୍ଜସ୍ୟ ଦେଖିଲେ ନାହିଁ । ପରେ ଗାନ୍ଧୀ କହିଲେ, 'ତାଙ୍କ ଆଖି ଦୁଇଟି ବିଲେଇ ଆଖି ପରି । ଅନବରତ ଘୂରି ଘୂରି ବୁଲିଆଡ଼େ ନଜର ପଡ଼ୁଥାଏ । ବିଲେଇର ଆଖି ଦେଖି ମୂଷା ତଟସ୍ଥ ହୋଇ ଯେପରି ସିଧା ତା ପାଟି ଭିତରକୁ ଧାଇଁ ଯାଏ, ସେହିପରି ସ୍ୱାଙ୍କ ମୂରତି ଦେଖି ଆଗନ୍ତୁକ ତଟସ୍ଥ ହେବା ସ୍ୱାଭାବିକ ।'

ନିଜକୁ ସାର୍ଟିଫିକେଟ୍ ଦେଇ ଗାନ୍ଧୀ କହିଲେ, 'ମୁଁ ସେପରି ତଟସ୍ଥ ହେବାର ପାତ୍ର ନ ହେଲେ ବି ଲକ୍ଷ୍ୟ କଲି, ସାକ୍ଷାତ୍‌କାରୀ ସହଜେ ତ୍ରସ୍ତ ହୋଇଗଲା ପରି ତାଙ୍କ ଘରଟି ସଜ୍ଜିତ ହୋଇଥିଲା । ଯେଉଁ କୋଠା ବାଟେ ମଣିଷ ଯିବ, ତାର ଦୁଇ ପଟର କାନ୍ଥରେ ନାନା ପ୍ରକାର ଖଣ୍ଡା ଓ ଅନ୍ୟାନ୍ୟ ଅସ୍ତ୍ରଶସ୍ତ୍ର ସାନ୍ଦ୍ର ଭାବେ ସଜ୍ଜିତ ହୋଇଥାଏ ।' ତାଙ୍କ ବସିବା ଘରର କାନ୍ଥମାନଙ୍କରେ ବି ଅସ୍ତ୍ରଶସ୍ତ୍ର ଓହଳି ଥାଏ ବୋଲି କହି ଗାନ୍ଧୀ ଯୋଗ କଲେ, 'କିନ୍ତୁ ତାଙ୍କ ଦେହରେ କୌଣସି ଅସ୍ତ୍ର ଥିବାର ଦେଖିଲି ନାହିଁ ।'

ପୋପ ଗାନ୍ଧୀଙ୍କୁ ଦେଖା ଦେଲେ ନାହିଁ । ଗାନ୍ଧୀଙ୍କ ଦଳର କେତେକଙ୍କର ସନ୍ଦେହ, ମହାମାନ୍ୟ ଧର୍ମଗୁରୁ ମୁସୋଲିନିଙ୍କ ଇଙ୍ଗିତରେ ଏଭଳି କରିଥିବେ ; କିନ୍ତୁ ନିଶ୍ଚିତ ଭାବେ ସେମାନେ କିଛି ଶୁଣି ନ ଥିଲେ ।

କେହି କେହି କହିଲେ ଖାଲି ଯେ ପୋପ୍‌ଙ୍କ ସହିତ ମୁସୋଲିନଙ୍କ ସମ୍ପର୍କ ଯୋଗୁଁ ଏହା ନ ହେଲା ତାହା ନୁହେଁ, ଇଟାଲି ସଙ୍ଗେ ଇଂଲଣ୍ଡର ସଦ୍‌ଭାବ ଯୋଗୁଁ ଏ ସାକ୍ଷାତ୍ ହୋଇ ପାରିଲା ନାହିଁ । ଯେହେତୁହେଲେ ତ ଗାନ୍ଧୀ ଇଂଲଣ୍ଡ-ବିରୋଧୀ, ରାଜଦ୍ରୋହୀ ।

ରୋମ ଓ ନେପଲସ୍ ମଧ୍ୟରେ ହେଉଥିବା ରଗ୍‌ବି ଫୁଟ୍‌ବଲ୍ ଖେଳ ଦେଖିବାକୁ ବି ଗାନ୍ଧୀଙ୍କୁ ନିଆ ହୋଇଥିଲା । ପିଲାଙ୍କ ବନ୍ଧୁକ ଶିକ୍ଷା ସ୍କୁଲକୁ ମଧ୍ୟ ତାଙ୍କୁ ନିଆ ଯାଇଥିଲା । ସେ ପହଞ୍ଚିବାରେ ଯୁଗବତ୍ ବନ୍ଧୁ କମାଣ ଫୁଟାଇ ତାଙ୍କୁ ସଂବର୍ଦ୍ଧନା କରାଯାଇଥିଲା । ପୋପ୍‌ଙ୍କ ରାଜଧାନୀର ପୁସ୍ତକା-ଗାରରେ ସେ ଅଧିକ ଆଗ୍ରହ ଦେଖାଇଥିଲେ ଓ ସେଣ୍ଟ ପିଟର୍ସ ଗିର୍ଜାରେ ସେ ଦୁଇଘଣ୍ଟା ମହା ଆନନ୍ଦରେ କଟାଇଥିଲେ । ସିଷ୍ଟିନ୍ ଉପାସନା ମନ୍ଦିରରେ ସେ କ୍ରୁସବିଦ୍ଧ ଖ୍ରୀଷ୍ଟଙ୍କ ପ୍ରତିମୂର୍ତ୍ତି ଆଗରେ ଠିଆ ହୋଇ କାନ୍ଦି ପକାଇଲେ । ସେ ମହାଦେବ ଦେଶାଇଙ୍କୁ କହିଲେ, 'ଏଠାରେ ମଣିଷ ନ କାନ୍ଦି ରହି ପାରିବ ନାହିଁ ।' ଗାନ୍ଧୀ ଆଶ୍ରମକୁ ଚିଠିରେ ଲେଖିଥିଲେ, ଯଦି ଏଠାରେ 'ଦୁଇ କି ତିନିମାସ' ରହି ଯାଦୁଘର, ପ୍ରତିମୂର୍ତ୍ତି ଓ ଚିତ୍ରପଟମାନଙ୍କୁ ଦିନ ପରେ ଦିନ ଲକ୍ଷ୍ୟ କରନ୍ତି ତେବେ ଏସବୁ ଉପରେ ମତ ପରି ମତ ଦେଇ ପାରନ୍ତି । ତଥାପି ମୋ ମତର ମୂଲ୍ୟ ରହନ୍ତା ନାହିଁ, କାରଣ ଶିଳ୍ପ କଳା ଉପରେ ମତ ଦେବାର ଯୋଗ୍ୟତା ମୋର ନାହିଁ ।

ଯାହା ହେଉ ଏ ଶିଳ୍ପକଳା ପ୍ରତି ରୋମାଁ ରୋଲାଁ ତାଙ୍କର ମନୋଯୋଗ ଆକର୍ଷଣ କରିଥିଲେ । ଗାନ୍ଧୀ ବଢ଼େଇ କରି କହିଥିଲେ, 'ଭାରତୀୟ ଶିଳ୍ପକଳା-ୟୁରୋପୀୟ ଶିଳ୍ପକଳାର ଉତ୍କର୍ଷ ଅଧିକ ବୋଲି ମୁଁ ମନେ କରୁନାହିଁ ।' ଜଣେ ବନ୍ଧୁଙ୍କ ପାଖକୁ ସେ ଲେଖିଥିଲେ, 'ଏ ଦୁଇ ଶିଳ୍ପକଳା ଦୁଇ ବିଭିନ୍ନ ଧାରାରେ ବିକଶିତ ହୋଇଛି । ଭାରତୀୟ ଶିଳ୍ପକଳା ମୁଖ୍ୟତଃ କଳ୍ପନାର ସୃଷ୍ଟି (ବୋଧହୁଏ ବହୁ ହସ୍ତ, ମସ୍ତକବିଶିଷ୍ଟ ଭାରତୀୟ ପ୍ରତିମୂର୍ତ୍ତିକୁ ଲକ୍ଷ୍ୟ କରି ସେ ଏହା କହିଥିଲେ । ) ୟୁରୋପୀୟ ଶିଳ୍ପକଳା ବାସ୍ତବତାର ଅନୁକୃତି । ତେଣୁ ଏହାକୁ ଦେଖି ସମଜିବା ସହଜ ହେଲେ ବି ଏମାନେ ମନକୁ ତଳକୁ (ପୃଥିବୀକୁ) ଟାଣି ଆଣନ୍ତି । ଅଥଚ ଭାରତୀୟ ଶିଳ୍ପକଳାର ମର୍ମ ଠିକ୍ ଠିକ୍ ବୁଝି ପାରିଲେ ଆମର ଚିନ୍ତା ଊର୍ଦ୍ଧ୍ୱମୁଖୀ ହୋଇ ସ୍ୱର୍ଗକୁ ଉଠେ ।'

ଏତକ କହି ସେ ନିଜକୁ ରୋକି ଦେଲେ । ଯାହାଙ୍କ ପାଖକୁ ଲେଖିଥିଲେ ତାଙ୍କୁ ସତର୍କ କରି କହିଲେ, 'ଏସବୁ ତୁମ ଭଳି ଲୋକଙ୍କୁ

ସିନା କହିଲି, ମୋର ଏ ମତରେ ମୁଁ କୌଣସି ଗୁରୁତ୍ୱ ଦେଉନାହିଁ । ହୁଏତ ଅଜ୍ଞାତରେ ମୋର ନିଜ ଦେଶ ପ୍ରତି ପକ୍ଷପାତିତା ଥିବାରୁ ବା ଶିଳ୍ପ ବିଷୟରେ ମୁଁ କିଛି ଜାଣି ନ ଥିବାରୁ ଭ୍ରାନ୍ତ ଭାବେ ଏ ସବୁ କହି ପକାଇଲି ।'

ଗାନ୍ଧୀଙ୍କ ମତରେ ଶିଳ୍ପକଳାରେ ଆଧ୍ୟାତ୍ମିକ ପ୍ରେରଣା ରହିବା ଦରକାର । ନିଜ ଆତ୍ମଜୀବନୀରେ ସେ କହିଛନ୍ତି, 'ପ୍ରକୃତ ସୌନ୍ଦର୍ଯ୍ୟ ହୃଦୟର ପବିତ୍ରତାରେ ଅବସ୍ଥିତ ।'

ଗାନ୍ଧୀ 'ୟଙ୍ଗ୍ ଇଣ୍ଡିଆ'ରେ ଲେଖିଥିଲେ, 'ମୋ ବିଚାରରେ ଯିଶୁ ହେଉଛନ୍ତି ସର୍ବଶ୍ରେଷ୍ଠ କଳାକାର, କାରଣ ସେ ସତ୍ୟର ସନ୍ଧାନ ପାଇଥିଲେ ଓ ସତ୍ୟର ପ୍ରଚାର କରିଥିଲେ···। ମୁଁ ଏପରି ଅନେକଙ୍କୁ ଜାଣେ, ଯେ କି ନିଜକୁ କଳାକାର ବୋଲି କହନ୍ତି, ଯାଙ୍କୁ କଳାକାର ବୋଲି ଲୋକେ ବି ମାନନ୍ତି, କିନ୍ତୁ ତାଙ୍କ କୃତିରେ ଆତ୍ମାର ସତ୍ୟ-ଜିଜ୍ଞାସା ଓ ଉପରକୁ ଉଠିବାକୁ ଆକାଂକ୍ଷାର ଲେଶ ସଂକେତ ନାହିଁ···। ପ୍ରକୃତ କଳା ଆତ୍ମାର ପରିପ୍ରକାଶ···। ଯଥାର୍ଥ ଶିଳ୍ପ ଓ କଳା ଅନ୍ତରାତ୍ମାକୁ ଚିହ୍ନିବା ପାଇଁ ମନକୁ ପ୍ରେରଣା ଦେବା ଉଚିତ । ମୋ ନିଜ ପକ୍ଷରେ, ମୋ ଆତ୍ମାକୁ ଜାଣିବା ସକାଶ ମୁଁ କୌଣସି ବାହ୍ୟ ରୂପର ସାହାଯ୍ୟ ଲୋଡ଼େ ନାହିଁ । ତେଣୁ ମୁଁ ଦାବୀ କରିପାରେ ଯେ, ମୋ ବିଚାରଧାରାରେ ଯଥାର୍ଥ କଳା ଯଥେଷ୍ଟଭାବେ ବିଦ୍ୟମାନ, ଯଦିଓ ତୁମେ ଯାହାକୁ କଳାର କୃତି ବୋଲି ମନେ କର ସେପରି କିଛି ମୋ ଚଉହଦ୍ଦିରେ ନାହିଁ । ମୋ ଘର କାନ୍ଥଗୁଡ଼ିକ ହୁଏତ ଖାଁ ଖାଁ କରୁଛି । ମୁଁ ତ ବିଚାରେ ଘରର ଛାତଟା ନ ଥିଲେ ଭଲ ହୁଅନ୍ତା, ଅକ୍ଷୁଣ୍ଣ ସୌନ୍ଦର୍ଯ୍ୟ ବିତାନ, ତାରକାମୟ ଆକାଶକୁ ମୁଁ ସବୁବେଳେ ଦେଖି ପାରନ୍ତି···ତନ୍ୱୀ ତରୁଣୀ କ'ଣ ଯଥାର୍ଥରେ ସୁନ୍ଦରୀ ବୋଲି କହିବା ? ···। ଆମେ ଶୁଣିଥାଉଁ, ସକ୍ରେଟିସ୍ ଥିଲେ ତାଙ୍କ କାଳରେ ସବୁଠାରୁ ଅଧିକ ସତ୍ୟବାଦୀ କିନ୍ତୁ ତାଙ୍କ ରୂପ ଥିଲା ଗ୍ରୀସ୍‌ରେ ସବୁଠାରୁ କୁତ୍ସିତ ବୋଲି କୁହାଯାଏ । ମୋ ବିଚାରେ ସେ ଇ ଥିଲେ ଯଥାର୍ଥ ସୁନ୍ଦର, କାରଣ ସେ ସତ୍ୟର ସନ୍ଧାନରେ ଲାଗିଥିଲେ··· । ସତ୍ୟ ହେଉଛି ସବୁଠାରୁ ଅଧିକ ସନ୍ଧେୟ ; ସତ୍ୟର ଅଧିକାରୀ ହେଲେ ସୌନ୍ଦର୍ଯ୍ୟ ଓ ମହତ୍ତ୍ୱ ଆପେ ଆସି ତୁମ ପାଖରେ ପହଞ୍ଚିଯିବ······। ଯଥାର୍ଥ କଳା ଖାଲି ରୂପରେ ଆବଦ୍ଧ ନୁହେ, ରୂପ ତଳେ କ'ଣ ଅଛି ତାହା ମଧ୍ୟ ସେ ଖୋଜେ । କଳା ମଣିଷିକୁ

ମାରପାରେ, କଳା ଶବରେ ଜୀବନ ସଞ୍ଚାର କରପାରେ । ଯେ କଳାର ସ୍ରଷ୍ଟା ତାଙ୍କର ସୁଖ, ସନ୍ତୋଷ ଓ ପବିତ୍ରତାର ପ୍ରତୀକ ତାଙ୍କ କଳା ହେବା ଉଚିତ ।'

ଗାନ୍ଧୀ ରୋମ ଛାଡ଼ିବା ପୂର୍ବରୁ ଟଲଷ୍ଟୟଙ୍କ କନ୍ୟାଙ୍କ ଠିକଣା ଖୋଜି ତାଙ୍କ ଘରେ ଯାଇ ପହଞ୍ଚିଲେ । ସେଇ ଘରର ଚଟାଣରେ ବସି ସେ ସୂତା କାଟୁଛନ୍ତି, ଇଟାଲି ରାଜାଙ୍କର କନ୍ୟା ରାଜକୁମାରୀ ମେରିଆ ଜଣେ ସଖୀଙ୍କୁ ଧରି ସେଠାରେ ଯାଇ ପହଞ୍ଚିଲେ । ସେ ଗୋଟାଏ ବଡ଼ ବୋଝରେ ବୋଝେ ଡିମିରି ଫଳ ଆଣି ଆସିଥାନ୍ତି ।

ରାଜକନ୍ୟାଙ୍କ ସଖୀ କହିଲେ, 'ରାଣୀ ମହିମା ଆପଣଙ୍କ ପାଇଁ ଏ ଗୁଡ଼ିକ ନିଜେ ବାଛି ତୋଳିଛନ୍ତି ।'

ଫ୍ୟାସିଷ୍ଟ ସ୍ୱାର୍ଥର ପୋଷଣ ପାଇଁ କେହି ଗାନ୍ଧୀଙ୍କ ରୋମଯାତ୍ରାର ସୁଯୋଗ ନେଇ ନ ଥିଲେ । କେବଳ 'ଜର୍ଣ୍ଣାଲ୍ ଡ଼ି ଇଟାଲିଆ' ସମ୍ବାଦ-ପତ୍ରରେ ଜଣେ ସମ୍ବାଦଦାତାଙ୍କ ସଙ୍ଗେ ଗାନ୍ଧୀଙ୍କ ସାକ୍ଷାତର ବିବରଣୀ ପ୍ରକାଶ ପାଇଥିଲା । ଗାନ୍ଧୀ ଏ ସମ୍ବାଦଦାତାଙ୍କୁ ବାସ୍ତବରେ କୌଣସି ସାକ୍ଷାତ ଦେଇ ନ ଥିଲେ, ସମ୍ବାଦଦାତାଙ୍କୁ ବି ଆଦୌ ଦେଖି ନ ଥିଲେ । ସ୍ୱିଜରଲାଣ୍ଡର ସୀମାନ୍ତରୁ ବାହାରି ଇଟାଲିର ପାଦଦେଶରେ ଆସି ପହଞ୍ଚିବା ପର୍ଯ୍ୟନ୍ତ ମୋଟ ୪୮ ଘଣ୍ଟା ଗାନ୍ଧୀ ଇଟାଲିରେ କଟାଇଥିଲେ । ବ୍ରିଣ୍ଡିସି ବନ୍ଦରଠାରେ ଗାନ୍ଧୀ, ସ୍କଟଲାଣ୍ଡ ୟାର୍ଡ୍‌ର ପୁଲିସ୍ ଅଫିସର୍ ଦୁହିଁଙ୍କୁ ବିଦାୟ ଦେଲେ, କିନ୍ତୁ ପ୍ରଫେସର୍ ଏଡ଼ମଣ୍ଡ୍ ପ୍ରିଭାଟ୍ ଓ ଶ୍ରୀମତୀ ଏଡ଼ମଣ୍ଡ୍ ପ୍ରିଭାଟ୍‌ଙ୍କୁ ଛାଡ଼ିଲେ ନାହିଁ ।

ପ୍ରଫେସର୍ ଦମ୍ପତି ରୋମାଁରୋଲାଙ୍କ ବନ୍ଧୁ । ସେମାନେ ଭିଲେନଭ-ଠାରୁ ଗାନ୍ଧୀଙ୍କ ସଙ୍ଗରେ ଇଟାଲିର ଶେଷସୀମା ପର୍ଯ୍ୟନ୍ତ ଆସିଥିଲେ । ଗାନ୍ଧୀଙ୍କଠାରୁ ବିଦାୟ ନେଲାବେଳେ ସେମାନେ କହିଲେ ଯେ, ଥରେ କେତେବେଳେ ସେମାନେ ଭାରତ ଦେଖିବାକୁ ଯାଇ ପାରିଲେ ଖୁସୀ ହୁଅନ୍ତେ । ଗାନ୍ଧୀ କହିଲେ, ଏଇଥର ତାଙ୍କ ସଙ୍ଗେ ଗଲେ କେମିତି ହୁଅନ୍ତା । ସେମାନେ କହିଲେ, ବର୍ତ୍ତମାନ ତାଙ୍କ ପାଖରେ ପଇସା ନାହିଁ ।

ଗାନ୍ଧୀ ଉତ୍ତର ଦେଲେ, 'ବୋଧହୁଏ ପ୍ରଥମ ବା ଦ୍ୱିତୀୟ ଶ୍ରେଣୀର ଟିକଟ କିଣିବା କଥା ଚିନ୍ତୁରୁଛ ? କିନ୍ତୁ ଜାହାଜର ପଟତନରେ ଯାତ୍ରା କରିବାକୁ ଆମର ଜଣକୁ ଦେବାକୁ ପଡ଼ୁଛି ମୋଟେ ୧୦ ପାଉଣ୍ଡ ।

ଭାରତରେ ଯାଇ ପହଞ୍ଚିଲେ ବନ୍ଧୁ ବାଂଧୁ ତୁମ ଦୁହିଙ୍କୁ ନିଜ ନିଜ ଘରକୁ ସ୍ୱାଗତ କରିବେ ।'

ସେ ଦୁହେଁ ତାଙ୍କ ପକେଟ ଓ ମୁଣିରେ ଥିବା ପଇସା ଗଣାଗଣି କରି ଗାନ୍ଧୀଙ୍କ ସାଂଗରେ ଯିବାକୁ ସ୍ଥିର କଲେ । ରୋମରେ ସେମାନେ ଟିକଟ କିଣିଲେ, ଏବଂ ପ୍ରଫେସର ଅଧ୍ୟାପନା କରୁଥିବା କାଉଣ୍ଟେଲ୍ ବିଶ୍ୱବିଦ୍ୟାଳୟକୁ, କାମରେ ଯୋଗ ଦେଇ ପାରିବାକୁ ଯଥାସମୟରେ ଫେରି ପାରିବେ ନାହିଁ ବୋଲି ଟେଲିଗ୍ରାମ୍ ପଠାଇଦେଲେ । ଡିସେମ୍ବର ୧୪ ତାରିଖରେ ଏମାନେ ଗାନ୍ଧୀ ଦଳଙ୍କ ସହିତ ବ୍ରିଣ୍ଡିସି ବନ୍ଦରରୁ ପିଲ୍‌ସନା ଜାହାଜରେ ଭାରତ ଯାତ୍ରା କଲେ । ଦୁଇ ସପ୍ତାହ ପରେ ଜାହାଜରୁ ସମସ୍ତେ ବମ୍ବେଠାରେ ଅବତରଣ କଲେ ।

ଡିସେମ୍ବର ୨୮ ତାରିଖରେ ମହାତ୍ମା ଗାନ୍ଧୀ ବମ୍ବେରେ ଆସି ପହଞ୍ଚିବାରେ ବିରାଟ ଜନତା ଆନନ୍ଦ ଧ୍ୱନି କରିଥିଲେ । ମହାତ୍ମା ଗାନ୍ଧୀ ସେମାନଙ୍କୁ ଶୁଣାଇଥିଲେ, 'ମୁଁ ଶୂନ୍ୟ-ହସ୍ତରେ ଫେରିଛି, କିନ୍ତୁ ମୁଁ ଆମ ଦେଶର ମର୍ଯ୍ୟାଦା କ୍ଷୁଣ୍ଣ କରି ନାହିଁ ।' ଗୋଲଟେବୁଲ ବୈଠକରେ ଭାରତର ଯେଉଁ ଦଶା ହେଲା, ତା'ର ଏଇ ସଂକ୍ଷିପ୍ତ ବିବରଣୀ ମହାତ୍ମା ଗାନ୍ଧୀ ଦେଲେ । କିନ୍ତୁ ସେ ଯେତେ ଆଶଂକା କରିଥିଲେ, ଭାରତର ଅବସ୍ଥା ତହିଁରୁ ଅଧିକ ଶୋଚନୀୟ ହୋଇ ସାରିଥାଏ ।

---

# ପଞ୍ଚମ ପରିଚ୍ଛେଦ

## ଶୀର୍ଷ ବିନ୍ଦୁ

ଜାହାଜ ପଟ୍ଟନର କୌଣସି ଯାତ୍ରୀ ଏଭଳି ରାଜକୀୟ ସଂବର୍ଦ୍ଧନା ଆଉ କେବେ ପାଇ ନ ଥିଲେ । ଏହାକୁ ଲକ୍ଷ୍ୟ କରି ସୁଭାଷଚନ୍ଦ୍ର ବୋଷ ଉକ୍ତି ମନ୍ତବ୍ୟ ଦେଇଥିଲେ : ଯେଉଁ ଆଦର, ଆନ୍ତରିକତା ଓ ଶ୍ରଦ୍ଧା ସ୍ୱାଗତ ସଂବର୍ଦ୍ଧନା ଲୋକେ ଗାନ୍ଧୀଙ୍କୁ ଦେଖାଇଲେ, ତାହା ଦେଖି ମନେ ହେବ, ସତେ ଯେପରି ଗାନ୍ଧୀ ସ୍ୱରାଜ୍ୟକୁ ମୁଠାରେ ପୂରେଇ ଫେରିଛନ୍ତି । କିନ୍ତୁ ଗାନ୍ଧୀ ଫେରିଥିଲେ ତାଙ୍କ ସାଧୁତା ମାତ୍ର ଅକ୍ଷୁଣ୍ଣ ରଖି । ପ୍ରବଳପ୍ରତାପ ବ୍ରିଟିଶ୍ ସାମ୍ରାଜ୍ୟର ସମକକ୍ଷ ହୋଇ ଯେଉଁ ଅର୍ଦ୍ଧ-ଉଲଗ୍ନ ଫକୀର ରାଜନୀତିକ ସମାଧାନର କଥାବାର୍ତ୍ତା ଚଳାଇଥିଲେ, ସେ ଫକୀରର ଭୂମିକାରୁ ସେ ତଳକୁ ଖସି ନ ଥିଲେ । ଏହା ବାସ୍ତବ ସ୍ୱାଧୀନତାରୁ ନ୍ୟୂନ ହେଲେ ବି କମ୍ ଗୌରବର କଥା ନୁହେଁ । ଭାରତର ଆତ୍ମା ଯେ ମୁକ୍ତ ହୋଇଛି ତାହା ଏଥିରୁ ପ୍ରତିଭାତ ହୋଇଥିଲା । ଦାଣ୍ଡୀ-ଯାତ୍ରା, ବିଶେଷତଃ ଆରୱିନ-ଗାନ୍ଧୀ ଚୁକ୍ତି ଦିନୁଁ, ଭାରତ ବନ୍ଧନ-ମୁକ୍ତ ହୋଇଛି ବୋଲି ଅନୁଭବ କରି ପାରିଥିଲା ଏବଂ ଗାନ୍ଧୀ ସେହି ଅନୁଭୂତିକୁ ଜୀବନ୍ତ ରଖିପାରି ଥିବାରୁ ଭାରତୀୟମାନେ ତାଙ୍କଠାରେ କୃତଜ୍ଞ ରହିଥିଲେ । ସର୍ବୋପରି, ମହାସମୁଦ୍ରର ଅପରପ୍ରାନ୍ତର ଶୀତ-କ୍ଲିଷ୍ଟ ଭୂଖଣ୍ଡରୁ ତାଙ୍କ ମହାତ୍ମା ନିରାପଦରେ ଫେରିଛନ୍ତି, ଏହା ତ ଲୋକଙ୍କ ପକ୍ଷରେ କମ୍ ଆନନ୍ଦର କଥା ନୁହେଁ ।'

ଗାନ୍ଧୀ, ଆର୍‌ୱିନ୍ ଓ ବ୍ରିଟେନ୍‌ର ଶ୍ରମିକ ସରକାରଙ୍କ ଯୋଗୁଁ ୧୯୩୦-୩୧ରେ ଭାରତ ଆଂଶିକ ମୁକ୍ତିପ୍ରାପ୍ତ ହୋଇଥିଲା । ଏତେବେଳକୁ କିନ୍ତୁ ଆର୍‌ୱିନ୍ ନ ଥାନ୍ତି ; ୧୯୩୧, ଅକ୍‌ଟୋବର ମାସରେ ରାମ୍‌ସେ ମ୍ୟାକ୍‌ଡୋନାଲ୍‌ଡ୍‌ଙ୍କ ଶ୍ରମିକ ସରକାର ପଦଚ୍ୟୁତ ହୋଇ ଯେଉଁ ସରକାର ଗଢ଼ା ହେଲା ସେଥିରେ ମ୍ୟାକ୍‌ଡୋନାଲ୍‌ଡ ପ୍ରଧାନମନ୍ତ୍ରୀ ରହିଥିଲେ ହେଁ,

ଜାତ ଏକ କର୍ତ୍ତୃତ୍ୱ କରୁଥାନ୍ତି । ସାର୍ ସାମୁଏଲ୍ ହୋର୍ ହୋଇଥାନ୍ତି ଭାରତର ସେକ୍ରେଟାରୀ ଅବ୍ ଷ୍ଟେଟ୍ । ଗାନ୍ଧୀ ତାଙ୍କୁ, 'ସଚ୍ଚୋଟ ଓ ସ୍ପଷ୍ଟବାଦୀ ଇଂରେଜ' ବୋଲି ସାର୍ଟିଫିକେଟ୍ ଦେଇଥିଲେ ହେଁ ସେ ଥାନ୍ତି ଜଣେ ସଚ୍ଚୋଟ ଓ ସ୍ପଷ୍ଟବାଦୀ ଜାତ ।

ସ୍ୱାଧୀନତାର ଯେଉଁ ନୂତନ ଅବବୋଧ ଭାରତ ପାଇଥିଲା, ଇଂଲଣ୍ଡର ନୂତନ ସରକାର ତା'ର ଉପରେ ଆକ୍ରମଣ ଆରମ୍ଭ କଲେ । ବମ୍ବେଇ ବନ୍ଦରର ଘାଟରେ ଗାନ୍ଧୀ ଆସି ପହଞ୍ଚିବା ମୁହୂର୍ତ୍ତରେ ସରକାରୀ ଅତ୍ୟାଚାରର ବିଶଦ ବିବରଣୀ ତାଙ୍କ କାନରେ ଅଜାଡ଼ି ହୋଇ ପଡ଼ିଲା । ବିପଦର ପୂର୍ଣ୍ଣାଙ୍ଗ ଚିତ୍ର ସେ ସନ୍ଧ୍ୟା ସୁଦ୍ଧା ପାଇ ସାରିଥାନ୍ତି । ସେଇ ସନ୍ଧ୍ୟାରେ ଆଜାଦ ମଇଦାନରେ ସମବେତ ଦୁଇଲକ୍ଷ ଲୋକଙ୍କୁ, ଲାଉଡ୍ ସ୍ପିକର୍ ସାହାଯ୍ୟରେ ଭାଷଣ ଦେଇ, ସବୁ କଥା ସବିସ୍ତାରଭାବେ ଶୁଣାଇଦେଲେ ।

ଗାନ୍ଧୀଙ୍କୁ ସଂବର୍ଦ୍ଧନା କରିବାକୁ ବମ୍ବେ ଆସିବା ବାଟରେ, ଜବାହାରଲାଲ ନେହେରୁ ଓ ତାସ୍ଦ୍ଦୁକ୍ ଶେରୱାନୀ ଦୁଇ ଦିନ ପୂର୍ବରୁ ଗିରଫ୍ ହୋଇଥାନ୍ତି । ମୁସ୍‌ଲିମ୍ ନେତା ଶେରୱାନୀ ଯୁକ୍ତ (ଉତ୍ତର) ପ୍ରଦେଶ କଂଗ୍ରେସ ଅନୁଷ୍ଠାନର ସଭାପତି । ଯୁକ୍ତ ପ୍ରଦେଶ, ଉତ୍ତର ପଶ୍ଚିମ ସୀମାନ୍ତ ଓ ବଙ୍ଗ ପ୍ରଦେଶରେ ଡିସେମ୍ବର ମାସର ପ୍ରଥମ ସପ୍ତାହରେ ସରକାରଙ୍କୁ ଜରୁରିକାଳୀନ କ୍ଷମତା ଦେଇ ଅର୍ଡ଼ିନାନ୍ସ୍ ପାସ୍ ହୋଇଥାଏ । ଏହି ପ୍ରଦେଶ-ମାନଙ୍କରେ ବ୍ୟାପକଭାବେ ଲାଗିଥିବା ଖଜଣାବନ୍ଦ ଆନ୍ଦୋଳନ ରୋକିବାକୁ ଏହା ହୋଇଥାଏ । ଲୋକଙ୍କ ଘର ଦଖଲ କରିବାକୁ, ବ୍ୟାଙ୍କଜମା ଜବତ କରିବାକୁ, ସମ୍ପତ୍ତି ବାଜ୍ୟାପ୍ତ କରିବାକୁ, ବିନା ୱାରେଣ୍ଟ୍‌ରେ ଲୋକଙ୍କୁ ଗିରଫ୍ କରିବାକୁ, ନ୍ୟାୟାଳୟରେ ବିଚାର ମନା କରି ଦେବାକୁ, ଜାମିନ୍ ନାମଞ୍ଜୁର କରିବାକୁ, ଓ ବିଚାରାଧୀନ ଆସାମୀଙ୍କୁ କୋର୍ଟରେ ହାଜର କରାଇବା ନିମନ୍ତେ ଦାବୀ କରିବାର ଯେଉଁ ଅଧିକାର ସର୍ବସାଧାରଣଙ୍କର ଥାଏ, ତାହା ମୁଲତବି ରଖିବାକୁ, ଖବର କାଗଜ ଶସ୍ତା ଦରରେ ଡାକରେ ପଠାଇବାର ସୁବିଧା କାଢ଼ି ନେବାକୁ, ରାଜନୀତିକ ଅନୁଷ୍ଠାନମାନ ଭାଙ୍ଗି ଦେବାକୁ, ସେନା ଓ ପୁଲିସ୍‌ଙ୍କୁ ଏ ଅର୍ଡ଼ିନାନ୍ସ୍‌ଦ୍ୱାରା କ୍ଷମତା ଦିଆଗଲା । ପିକେଟିଂ ଓ ବଏକଟ୍ ନିଷେଧ କରାଗଲା । ଭାରତ ସରକାରଙ୍କ ଘରୋଇ ମେମ୍ବର (ଆଭ୍ୟନ୍ତରୀଣ ବ୍ୟାପାରସଚିବ) ଲେଜିସ୍‌ଲେଟିଭ୍ ଆସେମ୍ବ୍ଲିରେ ଶୁଣାଇ ଦେଲେ, 'ଆମେ ମନ ଇଚ୍ଛା ଗୁଡ଼ାଏ ଆଇନ୍ କରି ଖେଳ ଖେଳିବାକୁ

ଯାଉନାହିଁ । କଂଗ୍ରେସକୁ ସମଗ୍ର ଦେଶ ଉପରେ ନିଜର କ୍ଷମତା ଜାହିର କରିବାକୁ ଦିଆଯିବ କି ନାହିଁ, ତାହା ହିଁ ବର୍ତ୍ତମାନର ସମସ୍ୟା ।’

ଗାନ୍ଧୀ ବମ୍ବେରେ ସମବେତ ଜନତାକୁ କହିଲେ, ‘ଜାହାଜରୁ ଓହ୍ଲାଇ ଏ ସବୁ ଶୁଣୁଛି । ଆମ ଖ୍ରୀଷ୍ଟିଆନ୍ ଭାଇସ୍‌ରୟ୍ ଲର୍ଡ଼ ଉଇଲିଂଡନ୍ ଏ ସବୁ ଆମକୁ ଖ୍ରୀଷ୍ଟମାସ୍ ଉପହାର ସ୍ୱରୂପ ଦେଇଛନ୍ତି । ଶୁଭେଚ୍ଛା ଓ ଉପହାର ଏ ସମୟରେ ଆଦାନପ୍ରଦାନ କରିବା ଖ୍ରୀଷ୍ଟିଆନ୍‌ମାନଙ୍କର ରୀତି ନୁହେଁ କି ? ମୋତେ ତ କିଛି ଉପହାର ମିଳିବାର କଥା ; ମୁଁ ଏଇସବୁ ପାଇଛି ’ । (ତାଙ୍କୁ ଯେତେ ଉପହାର ପାର୍ସଲ୍ ମିଳିଥିଲା ଗାନ୍ଧୀ ସେଥିରୁ ସବୁ ଏ ପର୍ଯ୍ୟନ୍ତ ଖୋଲି ନ ଥାନ୍ତି ।)

ସେଇ ସନ୍ଧ୍ୟାରେ, ଭାରତ ମଙ୍ଗଳ ସଂଘର ହୋଟେଲ୍ ମାଜେଷ୍ଟିକ୍-ଠାରେ ହୋଇଥିବା ସମ୍ମିଳନୀରେ ଗାନ୍ଧୀ ଭାଷଣ ଦେଲେ, ‘ଯେତେ ଯାହା ହେଲେ ବି ପ୍ରାଚ୍ୟ ଓ ପାଶ୍ଚାତ୍ୟର ବିଭେଦ ରହିବ ହିଁ ରହିବ—ଏ ଧାରଣା, ଇଂଲଣ୍ଡ ଓ ୟୁରୋପରେ ମୁଁ କଟାଇଥିବା ତିନିମାସ ଭିତରେ, ମୁହୂର୍ତ୍ତେ ସୁଦ୍ଧା ମୋ ମନରେ ଆସିବାକୁ କୌଣସି ଗୋଟିଏ ଘଟଣା ଘଟିଥିବାର ମନେ ପଡ଼ୁନାହିଁ । ଅପର ପକ୍ଷେ, ଯା ଭିତରେ ମୋର ଧାରଣା ପୂର୍ବାପେକ୍ଷା ଦୃଢ଼ତର ହୋଇଛି ଯେ, ଦେଶ ଓ ଜାତି ନିର୍ବିଶେଷରେ, ସବୁ ମାନବ ପ୍ରକୃତି ସମାନ ; ଶ୍ରଦ୍ଧା ଓ ବିଶ୍ୱାସରେ ଯେ କୌଣସି ଜାତିର ଲୋକଙ୍କ ଦ୍ୱାରସ୍ଥ ହେଲେ, ସେମାନେ ପ୍ରତିଦାନରେ ଦଶଗୁଣ ବିଶ୍ୱାସ ଓ ହଜାରଗୁଣ ଶ୍ରଦ୍ଧା ଦେବେ ହିଁ ଦେବେ ।’

ବ୍ରିଟିଶ ସରକାରର କର୍ତ୍ତାମାନେ ଇଂଲଣ୍ଡରେ ତାଙ୍କ ପ୍ରତି ବନ୍ଧୁଭାବ ଦେଖାଇଥିଲେ ; ‘ବିଲାତରୁ ମୁଁ ବିଦାୟ ନେଲାବେଳେ ମୁଁ ଓ ସେମାନେ ଥିଲୁ ଘନିଷ୍ଠ ବନ୍ଧୁ···କିନ୍ତୁ ଏଠାରେ ଆସି ଦେଖୁଛି, ଅବସ୍ଥା ସଂପୂର୍ଣ୍ଣ ଓଲଟି ଯାଇଛି···।’ ଗାନ୍ଧୀ ଅଦ୍‌ଭୁତ ଅର୍ଡ଼ିନାନ୍‌ସ୍‌ମାନଙ୍କର ସାରମର୍ମ ବ୍ୟାଖ୍ୟାନ କରି କହିଲେ, ‘କଂଗ୍ରେସ ଗୋଟାଏ ସ୍ୱତନ୍ତ୍ର, ସମାନ୍ତରାଳ ସରକାର ସ୍ଥାପନ କରିବାକୁ ବସିଛି ବୋଲି ସରକାରଙ୍କ ପକ୍ଷରୁ ଅଭିଯୋଗ ହେଉଛି······ମୁଁ ଆପଣମାନଙ୍କୁ ନିର୍ଭର ପ୍ରତିଶ୍ରୁତି ଦେଉଛି ଯେ, ସମ୍ମାନର ସହିତ ସରକାର ସଙ୍ଗେ ସହଯୋଗ କରିବାକୁ ଆମକୁ ସୁଯୋଗ ମିଳିଲେ, ମୁଁ ସେ ଦିଗରେ ଯଥାସାଧ୍ୟ ଚେଷ୍ଟା କରିବି ଏବଂ ମୋର ପୂର୍ଣ୍ଣ ସହଯୋଗ ଅର୍ପଣ କରି ଅର୍ଡ଼ିନାନ୍‌ସ୍‌ମାନଙ୍କୁ ଉଠାଇ ନେବାକୁ, ଅନ୍ତତଃପକ୍ଷେ ଏହାର କଠୋରତା

ଦୂର କରିବା ଉଦ୍ଦେଶ୍ୟରେ ଏହାର ସଂଶୋଧନ କରିବାକୁ ସରକାରଙ୍କୁ ପ୍ରବର୍ତ୍ତାଇବ ।'

କିନ୍ତୁ ଗାନ୍ଧୀ ସରକାରଙ୍କୁ କିଛି ଅର୍ପଣ କରିବାକୁ ଅନୁପ୍ରାଣିତ ହୁଅନ୍ତୁ ଏହା ସରକାରଙ୍କର ଲୋଡ଼ା ନ ଥିଲା ।

ବମ୍ବେରେ ପହଞ୍ଚିବାର ପରଦିନ ଗାନ୍ଧୀ ଭାଇସରୟଙ୍କ ପାଖକୁ ଗୋଟିଏ ଟେଲିଗ୍ରାମ ପଠାଇଲେ । ସେଥିରେ ଅର୍ଡ଼ିନାନ୍ସ୍ ଜାରି ଓ କଂଗ୍ରେସବାଲାଙ୍କ ଗିରଫଦାରିରେ ସେ କ୍ଷୋଭ ପ୍ରକାଶ କରିଥିଲେ ଓ ଭାଇସ୍‌ରୟଙ୍କ ସଙ୍ଗେ ସାକ୍ଷାତ କରିବାକୁ ଇଚ୍ଛା ପ୍ରକାଶ କରିଥିଲେ । ଭାଇସ୍‌ରୟଙ୍କ ସେକ୍ରେଟାରି ବର୍ଷର ଶେଷ ଦିନ ଏ ଟେଲିଗ୍ରାମ୍‌ର ଉତ୍ତରରେ ଜଣାଇ ଦେଲେ : ସରକାର ବିରୁଦ୍ଧରେ କଂଗ୍ରେସ ପକ୍ଷରୁ ଯେଉଁ କାର୍ଯ୍ୟାନୁଷ୍ଠାନ ହୋଇଛି ତଦ୍ଦୃଷ୍ଟେ ଅର୍ଡ଼ିନାନ୍ସ୍ ଜାରି କରିବା ଯଥାର୍ଥ ହୋଇଛି । ସେକ୍ରେଟାରି ସାହେବ ସ୍ପଷ୍ଟ ଜଣାଇଦେଲେ, 'ଆପଣ ଆପଣଙ୍କ ପ୍ରଭାବ ଖଟାଇ କପରି ଅବସ୍ଥା ସୁଧାରି ପାରିବେ, ସେ ବିଷୟରେ ଆପଣଙ୍କୁ ପରାମର୍ଶ ଦେବା ସକାଶ ଭାଇସ୍‌ରୟ ଆପଣଙ୍କ ସଙ୍ଗେ ସାକ୍ଷାତ୍ କରିବାକୁ ରାଜି ଅଛନ୍ତି । କିନ୍ତୁ ବିଲାତି ସରକାରଙ୍କ ପୂର୍ଣ୍ଣ ସମ୍ମତି ପାଇ ଭାରତ ସରକାର ବେଙ୍ଗଲ, ଯୁକ୍ତ ପ୍ରଦେଶ ଓ ଉତ୍ତର ପଶ୍ଚିମ ସୀମାନ୍ତ ପ୍ରଦେଶରେ ଯେଉଁ କାର୍ଯ୍ୟପନ୍ଥା ଗ୍ରହଣ କରିବାକୁ ଆବଶ୍ୟକ ମନେ କରିଛନ୍ତି, ସେ ବିଷୟରେ ଆପଣଙ୍କ ସଙ୍ଗେ ମହାମାନ୍ୟ ଭାଇସ୍‌ରୟ ଆଲୋଚନା କରିବାକୁ ଆଦୌ ପ୍ରସ୍ତୁତ ନାହାନ୍ତି ବୋଲି ଦୃଢ଼ ଭାବେ ଆପଣଙ୍କୁ ଜଣାଇ ଦେବାକୁ ବାଧ୍ୟ ହେଉଛନ୍ତି ।'

ବିଦ୍ରୋହୀ ସଙ୍ଗେ ବୁଝାପଡ଼ା କରିବାକୁ ବ୍ରିଟିଶ୍ ରାଜ ଆଉ ପ୍ରସ୍ତୁତ ନ ଥିଲେ ।

ଗାନ୍ଧୀ ଏହାର ଯେଉଁ ପ୍ରତ୍ୟୁତ୍ତର ଦେଲେ ସେଥିରେ କଂଗ୍ରେସର କାର୍ଯ୍ୟକୁ ସମର୍ଥନ କଲେ ଏବଂ ଜଣାଇଦେଲେ ଯେ, ଏ ପରିସ୍ଥିତିରେ ଆଇନ୍‌ଅମାନ୍ୟ ଆନ୍ଦୋଳନ ଆରମ୍ଭ କରିବାକୁ ସେ ବାଧ୍ୟ ହୋଇପାରନ୍ତି । ୧୯୩୨, ଜାନୁଆରି ୨ ତାରିଖରେ ଭାଇସ୍‌ରୟଙ୍କ ସେକ୍ରେଟାରି ଏହାର ଜବାବ୍ ଧଡ଼ାଧଡ଼ ପଠାଇଦେଲେ । ସେ ଲେଖିଲେ, 'ପୁଣି ଆଇନ୍ ଅମାନ୍ୟ ଆନ୍ଦୋଳନ ଆରମ୍ଭ କରିବେ ବୋଲି ଧମକ ଦେଇ ଆପଣ ଯେଉଁ ସାକ୍ଷାତ୍‌କାର ଚାହୁଁଛନ୍ତି, ସେଥିପାଇଁ ଆପଣଙ୍କୁ ଆମନ୍ତ୍ରଣ କଲେ କିଛି ଲାଭ

ହେବ, ଏହା ଆପଣ ବା କଂଗ୍ରେସ କାର୍ଯ୍ୟକାରୀ କମିଟି ଆଶା କରୁନନ୍ତି ବୋଲି ଭାଇସ୍‌ରୟ ଓ ତାଙ୍କ ସରକାର ବିଶ୍ୱାସ କରିପାରୁନାହାନ୍ତି···। ସରକାର ଯେଉଁ କାର୍ଯ୍ୟପନ୍ଥା ଗ୍ରହଣ କରିଛନ୍ତି, ତାହା ଠିକ୍ ହୋଇଛି କି ନାହିଁ ସେ କଥା ଆପଣଙ୍କ ବିବେଚନା ଉପରେ ନିର୍ଭର କରିବ ବୋଲି ଆପଣଙ୍କ ଟେଲିଗ୍ରାମ୍‌ରେ ଯେଉଁ ଆଭାସ ଅଛି, ତା'କୁ ମାନିନେବାକୁ ଭାରତ ସରକାର ପ୍ରସ୍ତୁତ ନୁହନ୍ତି······।'

ଲର୍ଡ଼ ଉଇଲିଂଡ଼ନ୍ ଖେକଠୋକ୍ କଥା ଶୁଣାଇଦେଲେ । କୌଣସି ବେସରକାରୀ ବ୍ୟକ୍ତି ବା ଅନୁଷ୍ଠାନ ସରକାରୀ କାର୍ଯ୍ୟର ବିରୋଧ କରିବେ, ଏହା କୌଣସି ସ୍ୱେଚ୍ଛାଚାରୀ ସରକାର ବରଦାସ୍ତ କରିବା ଅସମ୍ଭବ ।

ଗାନ୍ଧୀ ଏହାର ଉତ୍ତର ସେଇଦିନ ପଠାଇଦେଲେ । ସେ କହିଲେ, ସେ କୌଣସି ଧମକ୍ ଦେଇନାହାନ୍ତି ; ସେ ନିଜର ମତ ମାତ୍ର ଜ୍ଞାପନ କରିଥିଲେ । ସେ ଆହୁରି ଜଣାଇଦେଲେ ଯେ, ଆଇନ୍ ଅମାନ୍ୟ ଆନ୍ଦୋଳନ କାର୍ଯ୍ୟତଃ ଚାଲୁ ରହିବା ବେଳେ, ସେ ଲର୍ଡ଼ ଆରୱଇନ୍‌ଙ୍କ ସଙ୍ଗେ ଆଲୋଚନା କରିବା ପରେ ଦିଲ୍ଲୀ ଚୁକ୍ତିନାମା ସ୍ୱାକ୍ଷରିତ ହୋଇଥିଲା । ଭାରତ ସରକାର ତାଙ୍କ ବିଚାର ଉପରେ ପରିଚାଳିତ ହେବ ଏ କଥା ସେ କେବେ ଭାବିନାହାନ୍ତି । ନିଜ ଟେଲିଗ୍ରାମର ଶେଷ ଭାଗରେ ଗାନ୍ଧୀ ସରକାରର କର୍ତ୍ତବ୍ୟ ସୂଚାଇ ନିବେଦନ କଲେ, 'କିନ୍ତୁ ଦେଶର ସାଧାରଣ ଅନୁଷ୍ଠାନ ଓ ତା'ର ପ୍ରତିନିଧିମାନେ ସରକାରୀ କାର୍ଯ୍ୟ ବିଷୟରେ ଯେଉଁ ପରାମର୍ଶ ଦେବାକୁ ଚାହାନ୍ତି, ତା'କୁ ସ୍ୱାଗତ କରିବା ଓ ସହୃଦୟ ଭାବେ ବିଚାର କରିବା ପ୍ରତ୍ୟେକ ଲୋକପ୍ରିୟ ଓ ସାଂବିଧାନିକ ସରକାରର ସର୍ବଥା କର୍ତ୍ତବ୍ୟ ବୋଲି ମୋର ବିନମ୍ର ମତ······।'

ଜାନୁଆରୀ ୩ ତାରିଖରେ ଗାନ୍ଧୀ ସମଗ୍ର ଭାରତକୁ ଜଣାଇଦେଲେ ଯେ, ସରକାର 'ମୁଁ ଭିତରକୁ ଗୋଡ଼ ବଢ଼ାଇଲା ବେଳକୁ ଦୁଆର କିଳିଦେଲେ ।' ତହିଁର ଦିନ ସରକାର ତାଙ୍କୁ ଭର୍ତ୍ତି କରି ଲୁହା କବାଟ କିଳିଦେଲେ । ଗାନ୍ଧୀଙ୍କୁ ଗିରଫ୍ କରାଗଲା—ଦାଣ୍ଡୀ ଯାତ୍ରା ପରେ ଯେପରି ଗିରଫ୍ କରାହୋଇଥିଲା, ଏଥର ବି ସେହିପରି ୧୮୨୭ର ୩୨୫ଣ ଆଦେଶନାମା ଅନୁସାରେ ସେ ଗିରଫ୍ ହେଲେ । ସେଥର ପରି ଏଥର ମଧ୍ୟ ସେ ୟେରୱାଡ଼ା ଜେଲ୍‌ରେ ମହାମହିମ ସମ୍ରାଟ୍‌ଙ୍କର ଅତିଥି ହେଲେ । ମାତ୍ର

କେତେ ସପ୍ତାହ ପୂର୍ବେ ସେ ମହାମହିମ ସମ୍ରାଟ୍ ଓ ସାମ୍ରାଜ୍ଞୀଙ୍କର ଅତିଥି ହୋଇଥିଲେ ବକିଂହାମ ରାଜପ୍ରାସାଦରେ ।

କଂଗ୍ରେସ ଉପରେ ସରକାରର ଆକ୍ରମଣ ଅତି ଭୀଷଣ ହେଲା । ସମଗ୍ର ଦେଶର କଂଗ୍ରେସ ଅନୁଷ୍ଠାନମାନ ବନ୍ଦ କରି ଦିଆଗଲା ଏବଂ କଂଗ୍ରେସର ସବୁ ନେତାଙ୍କୁ ଗିରଫ୍ କରାଗଲା । ଜାନୁଆରୀରେ ୧୪,୮୦୦ ରାଜନୈତିକ କର୍ମୀ ବନ୍ଦୀ ହେଲେ ; ଫେବୃଆରୀରେ ବନ୍ଦୀ ହେଲେ ୧୭,୮୦୦ ଜଣ । ଉଇନ୍‌ଷ୍ଟନ୍ ଚର୍ଚ୍ଚିଲ୍ ପାର୍ଲିଆମେଣ୍ଟ୍‌ରେ ଘୋଷଣା କଲେ ଯେ, ୧୮୫୭ର ସିପାହୀ ବିଦ୍ରୋହ ପରେ ଭାରତରେ ଯେତେ ଦମନମୂଳକ କାର୍ଯ୍ୟପନ୍ଥା ଗ୍ରହଣ କରାଯାଇଥିଲା ସେ ସବୁଠାରୁ ଏଥରର ଦମନଲୀଳା ହେଲା ଅଧିକ କଠୋର ।

ବନ୍ଦୀଶାଳାରେ ମହାତ୍ମା ଗାନ୍ଧୀଙ୍କୁ ବିଶେଷ ସୁବିଧା ଦିଆ ହେଉଥିଲା । ୧୯୩୦ରେ, ଏଇ ୟେରବାଡ଼ା ଜେଲ୍‌ରେ ଗାନ୍ଧୀ ଆବଦ୍ଧ ହୋଇଥିବା ବେଳେ, ଜେଲ୍‌ର ପ୍ରଧାନ ଅଧ୍ୟକ୍ଷ ଆସି ଗାନ୍ଧୀଙ୍କୁ ପଚାରିଥିଲେ, 'ଆପଣ ବାହାରୁ କେତେଖଣ୍ଡ ଚିଠି ପ୍ରତି ହପ୍ତାରେ ପାଇବାକୁ ଚାହାନ୍ତି ?'

ଗାନ୍ଧୀ ଉତ୍ତର ଦେଇଥିଲେ, 'ଖଣ୍ଡିଏ ବି ଚିଠି ପାଇବାକୁ ଚାହେଁ-ନାହିଁ ।'

ଅଧ୍ୟକ୍ଷ ପୁଣି ପଚାରିଲେ, 'ଆପଣ କେତେଖଣ୍ଡ ଚିଠି ପଠାଇବାକୁ ଚାହାନ୍ତି ?'

ଗାନ୍ଧୀ କହିଥିଲେ, 'ଖଣ୍ଡିଏ ବି ନୁହେଁ ।'

ଯାହା ପରେ ସେ ଯେତେଖଣ୍ଡ ଚିଠି ଲେଖିବେ ଲେଖିବାକୁ, ଓ ଯେତେ ଚିଠି ଆସିବ ତାହା ପାଇବାକୁ ହୁକୁମ ହୋଇଥିଲା ।

ଏଥର ଜେଲ୍‌ର ଅଧ୍ୟକ୍ଷ ମେଜର୍ ମାର୍ଟିନ୍ ଗାନ୍ଧୀଙ୍କ ପାଇଁ ଆସବାବ୍‌ପତ୍ର, ରାନ୍ଧିବା ପାତ୍ର ଓ ଅନ୍ୟାନ୍ୟ ବାସନକୁସନଗୁଡ଼ିଏ ଆଣି ପହଞ୍ଚିଲେ । ଗାନ୍ଧୀ ଆପତ୍ତି କଲେ, 'ଏସବୁ କାହାପାଇଁ ଆଣିଲେ ? ମୋର କିଛି ଦରକାର ନାହିଁ । ଅନୁଗ୍ରହ କରି ଯାହାକୁ ସବୁ ନେଇଯାନ୍ତୁ ।' ମେଜର୍ ମାର୍ଟିନ୍ ଜଣାଇଲେ ଯେ, ଗାନ୍ଧୀଙ୍କ ପରି ଜଣେ ସମ୍ମାନିତ ଅତିଥିଙ୍କ ପାଇଁ ମାସକୁ ଅନ୍ତତଃ ତିନିଶହ ଟଙ୍କା ଖର୍ଚ୍ଚ କରିବାକୁ କେନ୍ଦ୍ର ସରକାରଙ୍କଠାରୁ ଅନୁମତି ମିଳିଛି । ଗାନ୍ଧୀ କହିଲେ, 'ୟେ ତ ଖୁବ୍ ବଦାନ୍ୟ ବ୍ୟବସ୍ଥା । କିନ୍ତୁ ଏ ଟଙ୍କା ସବୁ ତ ଆସିବ ଭାରତର ଖଜଣାଖାନାରୁ । ମୋ ପାଇଁ ମୋ

ଦେଶର ଆୟ ଉପରେ ଅଧିକ ବୋଝ ବସୁ ଏହା ମୁଁ ଚାହେଁନାହିଁ । ମୋର ବିଶ୍ୱାସ, ମୋର ଖାଇବା ଖର୍ଚ୍ଚ ମାସକୁ ପଇଁତିରିଶ ଟଙ୍କାରୁ ବେଶୀ ହେବ ନାହିଁ ।' ତାଙ୍କପାଇଁ ଆସିଥିବା ଆସବାବ୍ ଓ ବାସନକୁସନ ଫେରାଇ ନିଆଗଲା ।

ୟେରବାଡ଼ା ଜେଲ୍‌ର କ୍ୱିନ୍‌ନାମଧେୟ ଜଣେ ଗୋରା କର୍ମଚାରୀ ଗାନ୍ଧୀଙ୍କଠାରୁ ଗୁଜରାଟି ଭାଷା ଶିକ୍ଷା କରିବାକୁ ଇଚ୍ଛା କରିଥିଲେ । ପ୍ରତ୍ୟହ ସକାଳେ ଗୁଜରାଟି ଶିଖିବାକୁ ସେ ଆସୁଥାନ୍ତି । ଦିନେ ସେ ନ ଆସିବାରୁ, କାହିଁକି ଆସିନାହାନ୍ତି ବୋଲି ଗାନ୍ଧୀ ଖବର ନେବାରେ ଶୁଣିଲେ ଯେ, ଜେଲ୍‌ଖାନାରେ ଜଣକୁ ଫାଶୀ ଦିଆ ହେଉଛି । କ୍ୱିନ ସେଥିରେ ବ୍ୟସ୍ତ ଅଛନ୍ତି । ଗାନ୍ଧୀ କହିଲେ, 'ମୋତେ ବାନ୍ତି ମାଡ଼ିଲା ପରି ଲାଗିଲାଣି ।'

ବଲ୍ଲଭଭାଇ ପଟେଲ ବି ଗିରଫ୍ ହୋଇ ସେଇ ୟେରବାଡ଼ା ଜେଲ୍‌ରେ ବନ୍ଦୀ ହେଲେ । ମାର୍ଚ୍ଚ ମାସରେ ଅନ୍ୟ ଗୋଟିଏ ଜେଲ୍‌ରୁ ମହାଦେବ ଦେଶାଇଙ୍କୁ ୟେରବାଡ଼ା ବଦଳି କରାଗଲା । ମହାଦେବ ଦେଶାଇ ତାଙ୍କ ସହିତ ରହିବାକୁ ଗାନ୍ଧୀ ଚାହିଁଥିଲେ । ମହାଦେବ ଆସି ପହଞ୍ଚିବା ମାତ୍ରେ ଗାନ୍ଧୀଙ୍କ ପାଦରେ ମୁଣ୍ଡ ରଖି ପ୍ରଣାମ କଲେ ; ଗାନ୍ଧୀ ସସ୍ନେହେ ତାଙ୍କ ମୁଣ୍ଡ ଆଉଁସିଲେ ଓ ତାଙ୍କ କାନ୍ଧରେ ହାତ ବୁଲାଇଲେ । ଗାନ୍ଧୀ, ପଟେଲ ଓ ଦେଶାଇ ଜେଲରେ ଏକାଠି ହେବାରୁ ନାନା ବିଷୟରେ ଆଲୋଚନା କରି ଆନନ୍ଦ ପାଉଥାନ୍ତି ; ଜେଲର ଗୋରା କର୍ମଚାରୀ ଓ ଡାକ୍ତରମାନେ ଏ ଆଲୋଚନାରେ ଯୋଗ ଦେଉଥାନ୍ତି ।

ବାହାରେ ଥିଲାବେଳ ଅପେକ୍ଷା ଜେଲରେ ଗାନ୍ଧୀ ଅଧିକ ମନୋଯୋଗ ଦେଇ ଖବରକାଗଜସବୁ ପଢ଼ୁଥାନ୍ତି ; ନିଜର ଲୁଗାପଟା ନିଜେ ସଫା କରୁଥାନ୍ତି ; ନିୟମିତ ସୂତା କାଟିଲେ, ରାତିରେ ନକ୍ଷତ୍ରମାନଙ୍କ ଗତି ନିରୀକ୍ଷଣ କଲେ ଓ ବହୁତ ବହି ପଢ଼ିଲେ । ଅପ୍‌ଟନ୍ ସିନ୍‌କ୍ଲେୟାରଙ୍କ 'ଦି ଓ୍ୱେଟ୍ ପ୍ୟାରେଡ୍' ଓ ଗେଟେଙ୍କ 'ଫଷ୍ଟ୍' ଓ କିଙ୍ଗ୍‌ସ୍ଲିଙ୍କ 'ଓ୍ୱେଷ୍ଟଓ୍ୱାର୍ଡ଼ ହୋ' ପ୍ରଭୃତି ପୁସ୍ତକଗୁଡ଼ିକ ତାଙ୍କୁ ଖୁବ୍ ସୁଖ ଲାଗୁଥାଏ । ସାବରମତୀ ଆଶ୍ରମବାସୀଙ୍କ ପାଖକୁ ଚିଠି ଆକାରରେ ସେ ଖଣ୍ଡିଏ ଛୋଟ ବହି ୧୯୩୦ରେ ୟେରବାଡ଼ା ଜେଲ୍‌ରେ ଲେଖିଥିଲେ ; ଏଥର ସେଇ ପୁସ୍ତିକାର ସଂଶୋଧନ, ପରିବର୍ତ୍ତନ ଓ ପରିବର୍ଦ୍ଧନରେ ମଧ୍ୟ ଲାଗିଥାନ୍ତି । ଏ ପୁସ୍ତକଟିର ନାମ ସେ ରଖିଥିଲେ 'ୟେରବାଡ଼ା ମନ୍ଦିରରୁ' : ମନ୍ଦିର ଅର୍ଥ ଦେବାଳୟ ; ଜେଲ୍-

ଖାନାରେ ଭଗବତ୍ ଉପାସନାପାଇଁ ପ୍ରଶସ୍ତ ସୁଯୋଗ ମିଳୁଥିବାରୁ ସେ ଜେଲଖାନାକୁ ମନ୍ଦିର ଆଖ୍ୟା ଦେଇଥିଲେ । ଭଗବାନ କ'ଣ ଓ ମନୁଷ୍ୟର ଆଦର୍ଶ ଜୀବନଚର୍ଯ୍ୟା କିପରି ହେବା ଉଚିତ—ଏ ବିଷୟରେ ଗାନ୍ଧୀଙ୍କ ଚିନ୍ତାଧାରା, ଏହି ପୁସ୍ତକରୁ ଓ ବେଳେ ବେଳେ ଏ ବିଷୟରେ ସେ ଲେଖିଥିବା ସମ୍ବାଦପତ୍ର ପ୍ରବନ୍ଧରୁ ଓ ତାଙ୍କ କଥାବାର୍ତ୍ତାରୁ, ମିଳେ ।

ଗାନ୍ଧୀଙ୍କ ମତରେ 'ଭଗବାନ୍ ସତ୍'—ଅଛନ୍ତି ।

ସତ୍ୟର ଅର୍ଥ, ଯାହା ସର୍ବବାଦୀସମ୍ମତ ; ସତ୍ୟର ବ୍ୟୁତ୍ପତ୍ତି ସତ୍‌ରୁ । ସତ୍‌ର ଅର୍ଥ, ଯାହା ଅଛି । ଭଗବାନ୍ ସତ୍, ଅର୍ଥାତ୍ ଭଗବାନ୍ ଅଛନ୍ତି । ଗାନ୍ଧୀଙ୍କ ମତରେ, 'ସୃଷ୍ଟିରେ ମୁଁ ଯାହା ଇନ୍ଦ୍ରିୟମାନଙ୍କ ସାହାଯ୍ୟରେ ଅନୁଭବ କରୁଛି ବା ଦେଖୁଛି ତାହା ସ୍ଥାୟୀ ନୁହେଁ ; ସ୍ଥାୟୀ ହୋଇ ନ ପାରେ । ଏପରି ସ୍ଥଳେ ଏକମାତ୍ର ଭଗବାନ୍ ଅଛନ୍ତି ଓ ସ୍ଥାୟୀ ଅଟନ୍ତି ।' ତାଙ୍କ ବ୍ୟତୀତ ଆଉ ସବୁ ମାୟା; ଭଗବାନ୍ ହିଁ ଏକମାତ୍ର ସତ୍ ବସ୍ତୁ ।

ଗାନ୍ଧୀ, ତାଙ୍କ ଜୀବନରେ ବହୁବାର ଭଗବାନ୍‌ଙ୍କ ଅସ୍ତିତ୍ୱ ପ୍ରମାଣ କରିବାକୁ ଚେଷ୍ଟା କରିଥିଲେ । ସେ ଲେଖି ଯାଇଛନ୍ତି, 'ରହସ୍ୟାବୃତ ଓ ଅବର୍ଣ୍ଣନୀୟ ଏଭଳି ଏକ ଶକ୍ତି ଅଛି, ଯାହା କି ସର୍ବତ୍ର ବ୍ୟାପ୍ତ । ଏ ମହାଶକ୍ତିକୁ ମୁଁ ପ୍ରତ୍ୟକ୍ଷ କରି ନ ପାରିଲେ ହେଁ, ଅନୁଭବ କରି ପାରୁଛି । ଏହି ଅଦୃଶ୍ୟ ଶକ୍ତି ଅନୁଭୂତି-ଗମ୍ୟ ହେଲେ ହେଁ ଏହାର ପ୍ରତ୍ୟକ୍ଷ ପ୍ରମାଣ କରି ହୁଏନାହିଁ । ତାହାର କାରଣ, ଏହା ଇନ୍ଦ୍ରିୟାତୀତ । ଇନ୍ଦ୍ରିୟ-ଅନୁଭୂତ ଅନ୍ୟ ପ୍ରତ୍ୟେକ ପଦାର୍ଥଠାରୁ ଏହା ପୃଥକ୍ ।'

ଆସ୍ତିକ୍ୟରେ ଉଦ୍‌ବୁଦ୍ଧ ହୋଇ ସେ ପୁଣି କହିଛନ୍ତି, 'କିନ୍ତୁ ଭଗବାନ୍‌ଙ୍କ ଅସ୍ତିତ୍ୱ କେତେକାଂଶରେ ପ୍ରମାଣଦ୍ୱାରା ସିଦ୍ଧ କରିବା ସଂଭବ··· । ବିଶ୍ୱସୃଷ୍ଟିରେ ଗୋଟିଏ ନିର୍ଦ୍ଦିଷ୍ଟ ଶୃଙ୍ଖଳା ବିଦ୍ୟମାନ । ସୃଷ୍ଟିର ସ୍ଥାବର ଜଙ୍ଗମ ସମସ୍ତେ ଏକ ଅପରିବର୍ତ୍ତିତ ନିୟମ ଅନୁସାରେ ତିଷ୍ଠି ରହିଛନ୍ତି । ଏହି ବିଶ୍ୱନିୟମ ଅବୋଧ ନୁହେଁ—କୌଣସି ଅବୋଧ, ଅନ୍ଧ ନିୟମ ମାନବସୃଷ୍ଟିକୁ ନିୟନ୍ତ୍ରିତ କରିବା ଅସମ୍ଭବ । ଏହି ଯେଉଁ ଶୃଙ୍ଖଳା ବା ନିୟମ ଅନୁସାରେ ଜୀବଜଗତ୍ ଆତଯାତ ହେଉଛି, ତାହାହିଁ ଭଗବାନ୍··· । ମୁଁ, ଅସ୍ପଷ୍ଟ ଭାବରେ ହେଲେହେଁ, ଅନୁଭବ କରି ପାରୁଛି ଯେ, ମୋର ଚାରିପାଖେ ସମସ୍ତ ସୃଷ୍ଟି ପଦାର୍ଥ ନିରନ୍ତର ପରିବର୍ତ୍ତିତ ହେଉଥିବା ସ୍ଥଳେ, ପ୍ରତ୍ୟହ ନାଶ ହେଉଥିବା ସ୍ଥଳେ, ଏ ସମସ୍ତ ନଶ୍ୱରତା ଭିତରେ ଏଭଳି ଗୋଟାଏ ଚେତନ ଶକ୍ତି

ରହିଛି, ଯାହାର ଆଦୌ ପରିବର୍ତ୍ତନ ହେଉନାହିଁ ; ତାହା ଚିରନ୍ତନ ରହି. ସୃଷ୍ଟି, ସ୍ଥିତି, ପ୍ରଳୟ ଓ ପୁନଃସୃଷ୍ଟିର କାରଣ ହେଉଛି । ସେହି ଶକ୍ତି ବା ସନାତନ ଚେତନାର ନାମ ପରମେଶ୍ୱର···। ମରଣ ଭିତରେ ଜୀବନ ରହିଛି, ଅସତ୍ୟରେ ସତ୍ୟ ଅନ୍ତର୍ନିହିତ ରହିଛି, ଅନ୍ଧକାର ଭିତରେ ଆଲୋକ ବିଦ୍ୟମାନ । ତେଣୁ ମୁଁ ସ୍ଥିର କରିଛି, ଭଗବାନ୍ ହିଁ ଜୀବନ, ଚିରନ୍ତନ ସତ୍ୟ ଓ ଅବିନାଶୀ ଆଲୋକ । ସେ ହିଁ ପ୍ରେମ । ସେ ହିଁ ନିତ୍ୟ, ଶିବ ଓ ସୁନ୍ଦର ।'

ଯୁକ୍ତିବାଦରେ ଈଶ୍ୱରସତ୍ତାର ବଳିଷ୍ଠ ପ୍ରମାଣ ଦେବାକୁ ପ୍ରଚେଷ୍ଟା କରିବା ସଙ୍ଗେ ସଙ୍ଗେ ସେ ସ୍ୱୀକାର କରିଛନ୍ତି, 'କିନ୍ତୁ କେବଳ ବୁଦ୍ଧିର ଗମ୍ୟ ହେଲେ ଭଗବାନଙ୍କ ଭଗବତ୍ତାର ଯଥାର୍ଥତା ରହିବ ନାହିଁ । ଭଗବାନ୍ ଯେ ହୃଷୀକେଶ ଏହା ପ୍ରମାଣିତ ହେବ, ଯଦି ସେ ଆମ ହୃଦୟର ଅଧୀଶ ହେବେ ଏବଂ ଆମ ହୃଦୟର ପରିବର୍ତ୍ତନ କରିପାରିବେ । ଭକ୍ତର ପ୍ରତ୍ୟେକ କ୍ଷୁଦ୍ର କ୍ଷୁଦ୍ର କାର୍ଯ୍ୟରେ ଈଶ୍ୱରଙ୍କ କୃପାର ପ୍ରକାଶ ହେଲେ ଯାଇ ତାଙ୍କୁ ଭକ୍ତବତ୍ସଳ ବୋଲି ମାନିବାକୁ ହେବ । ଭଗବାନ୍‌ଙ୍କ ଏ ଶକ୍ତିର ପ୍ରକାଶ ଦେଖିବାକୁ ହେଲେ ପଞ୍ଚ ଜ୍ଞାନେନ୍ଦ୍ରିୟଦ୍ୱାରା ତାଙ୍କ ବିଷୟରେ ଯେତିକି ଧାରଣା ହେବା ସଂଭବ, ତହିଁରୁ ଅଧିକ ଈଶ୍ୱରାନୁଭୂତି ହେବା ଦରକାର । ଇନ୍ଦ୍ରିୟାନୁଭୂତି ଅନେକ ସମୟରେ ସତ୍ୟ ପରି ପ୍ରତୀତ ହୁଏ ; କିନ୍ତୁ ଏହା ଯେତେ ବାସ୍ତବ ମନେ ହେଉ ନା କାହିଁକି, ଇନ୍ଦ୍ରିୟାନୁଭୂତି ଅନେକ ସମୟରେ ମିଥ୍ୟା ବୋଲି ପ୍ରମାଣିତ ହୁଏ, ଓ ଭ୍ରାନ୍ତିର କାରଣ ହୁଏ । କିନ୍ତୁ ଅନୁଭୂତି ଇନ୍ଦ୍ରିୟାତୀତ ହେଲେ ମିଥ୍ୟା ଓ ଭ୍ରାନ୍ତିର ଅବକାଶ ରହେନାହିଁ । ଏହି ଇନ୍ଦ୍ରିୟାତୀତର ଅବବୋଧର ବାସ୍ତବତା ପ୍ରମାଣ କରିବାକୁ ବାହ୍ୟ ପ୍ରମାଣର ଆବଶ୍ୟକ ହୁଏ ନାହିଁ ; ଯେଉଁମାନେ ନିଜ ଅନ୍ତରରେ ଭଗବାନ୍‌ଙ୍କ ସତ୍ତା ଉପଲବ୍ଧି କରିଥାନ୍ତି, ସେମାନଙ୍କ ଆଚରଣ ଓ ଚରିତ୍ରର ଶୁଦ୍ଧତାରେ ଭଗବତ୍‌ସତ୍ତା ଆପେ ଆପେ ପ୍ରମାଣିତ ହୋଇଯାଏ ।'

ଉପରେ ସେ ଯାହା କହିଲେ, ତାହା ଭଗବତ୍ ସତ୍ତା ପ୍ରମାଣ କରିବାକୁ ଅନ୍ୟତର ପ୍ରଚେଷ୍ଟା । ଏଠାରେ ଯୁକ୍ତିକୁ ଆଶ୍ରୟ ନ କରି, ମାନବୀୟ ଆଚରଣର ପ୍ରତ୍ୟକ୍ଷ ପ୍ରମାଣର ସେ ଆଶ୍ରୟ ନେଇଛନ୍ତି । କିନ୍ତୁ ସେ ସ୍ୱୀକାର କରିଛନ୍ତି ଯେ, 'ବିଶ୍ୱାସ ଯୁକ୍ତିର ଅପେକ୍ଷା ରଖେନାହିଁ' । ତେଣୁ ସେ କହିଛନ୍ତି, 'ନୈତିକତା, ସତ୍ୟ ଓ ପ୍ରେମର ଶ୍ରେଷ୍ଠତାକୁ ମାନିଯାଇ, ସେଇ ନୀତି, ସତ୍ୟ ଓ ପ୍ରେମର ଅନୁକୂଳରେ ବିଶ୍ୱସୃଷ୍ଟି ଚାଳିତ ହେଉଛି

ବୋଲି ସ୍ୱୀକାର କରିଯିବା ସବୁଠାରୁ ଶ୍ରେୟସ୍କର ପନ୍ଥା ବୋଲି ମନେ ହୁଏ···। ସୃଷ୍ଟିର ସମସ୍ତ ରହସ୍ୟ ଉଦ୍‌ଘାଟନ କରିବାକୁ ଆମେ ସମର୍ଥ ହେଲେ ତ ଭଗବାନ୍‌ଙ୍କ ସଙ୍ଗେ ସମାନ ହୋଇଯିବା ! ସମୁଦ୍ରର ପ୍ରତ୍ୟେକ ଜଳକଣାରେ ସମୁଦ୍ରର ମହମାସ୍ୱତାର ଅଂଶ ଅଛି ବୋଲି କ'ଣ ପ୍ରତ୍ୟେକ ଜଳକଣା ସମୁଦ୍ର ବୋଲାଇବ ?' ସେହିପରି ପ୍ରତ୍ୟେକ ମାନବଠାରେ ଐଶୀ ଶକ୍ତିର ଅଂଶ ବିଦ୍ୟମାନ ଥିଲେ ହେଁ, ପ୍ରତ୍ୟେକେ ଈଶ୍ୱର ନୁହନ୍ତି, ତେଣୁ ପ୍ରତ୍ୟେକେ ଐଶୀ ଶକ୍ତିର ସମଗ୍ରାନୁଭୂତି ପାଇଁ ସମର୍ଥ ନୁହନ୍ତି । ଶଙ୍କରଙ୍କ ପରି ଶ୍ରେଷ୍ଠ ହିନ୍ଦୁ ମହର୍ଷି ମଧ୍ୟ 'ନେତି, ନେତି' ଅର୍ଥାତ୍ 'ଭଗବାନ୍ ଏହା ନୁହନ୍ତି', 'ଭଗବାନ୍ ତାହା ନୁହନ୍ତି' ଠାରୁ ତାଙ୍କ ସମ୍ପର୍କରେ ଅଧିକ କିଛି କହିବାକୁ ସମର୍ଥ ହୋଇ ନାହାନ୍ତି ।'

ଜୈନ ଓ ବୌଦ୍ଧଧର୍ମାବଲମ୍ବୀମାନେ ଭଗବାନଙ୍କ ଅସ୍ତିତ୍ୱ ଅସ୍ୱୀକାର କରିବାରେ ବାଧା ନାହିଁ; କିନ୍ତୁ କେବଳ ପ୍ରଥମ ଯୌବନ ବ୍ୟତୀତ ଗାନ୍ଧୀ କେବେ ଭଗବାନ୍‌ଙ୍କ ଅସ୍ତିତ୍ୱ ଅସ୍ୱୀକାର କରି ନାହାନ୍ତି । ସେ କହିଥିଲେ 'ମୁଁ ପୂର୍ଣ୍ଣ ବିଶ୍ୱାସ କରେ ଯେ, ଭଗବତ୍ ଇଚ୍ଛା ବ୍ୟତିରେକେ ଘାସ ଗଛଟିଏ ସୁଦ୍ଧା ଜନ୍ମ ହୁଏ ନାହିଁ କି ହଲରେ ହୁଏ ନାହିଁ···ଆମ ଆଙ୍ଗୁଠି ଅଗ ନଖ ଓ ଆଙ୍ଗୁଠିର ମାଂସଠାରୁ ଭଗବାନଙ୍କ ସହିତ ଆମର ଅଧିକ ନିକଟତର ସଂବନ୍ଧ······। ମୁଁ ଏହା ବି କହୁଛି ଯେ, ତୁମେ ଓ ମୁଁ ଏ ଘରେ ବସିଛେଁ, ଏକଥା ସତ୍ୟ ବୋଲି ମୋର ଯେତିକି ପ୍ରତୀତି ହେଉଛି, ଭଗବାନଙ୍କ ଅସ୍ତିତ୍ୱ ବିଷୟରେ ମୋର ତହିଁରୁ ଅଧିକ ପ୍ରତୀତି ଅଛି···। ତୁମେ ମୋର ଆଖିକୁ ତାଡ଼ି ଦେଲେ ମୁଁ ମରିବ ନାହିଁ; ତୁମେ ମୋ ନାକ କାଟି ଦେଲେ ମୁଁ ମରିବ ନାହିଁ; କିନ୍ତୁ ତୁମେ ଯଦି ମୋର ଈଶ୍ୱରବିଶ୍ୱାସକୁ ମୋ'ଠାରୁ କାଢ଼ି ନିଅ, ତେବେ ମୁଁ ମୃତ ବୋଲି ଜାଣିବ ।'

ଅଧିକନ୍ତୁ, ଗାନ୍ଧୀ ପୂର୍ଣ୍ଣରୂପେ ବିଶ୍ୱାସ କରୁଥିଲେ ଯେ, ତାଙ୍କର ପ୍ରତ୍ୟେକ କାର୍ଯ୍ୟରେ ଭଗବାନ୍ ତାଙ୍କୁ ବିହିମାନାରେ ଓ ଘନିଷ୍ଠ ଭାବେ ପ୍ରଭାବିତ କରୁଥିଲେ । ସେ ନିଗାଟ ଭାବେ କହିଛନ୍ତି, 'ମୋ ଜୀବନରେ ମୁଁ ଲୋକଙ୍କ ମନଲାଗି, ଯାହା କିଛି କରିଛି ତାହା ମୁଁ ବୁଦ୍ଧିବଳରେ କରି ନାହିଁ, କରିଚି ମୋ ସ୍ୱତଃସ୍ଫୂର୍ତ୍ତ ପ୍ରବୃତ୍ତିର ପ୍ରେରଣାରେ—ମୋ ମତରେ ତାହାହିଁ ଭଗବତ୍ ପ୍ରେରଣା । ଉଦାହରଣ ସ୍ୱରୂପ, ୧୯୩୦ର ଦାଣ୍ଡି ଲବଣ ଯାତ୍ରା କଥା ଧରାଯାଉ । ଲବଣ ଆଇନ ଭଙ୍ଗ କରିବାର ଉଦ୍ୟମ ଠିକ୍

କେଉଁ ରୂପ ଧରିବ, ସେ ବିଷୟରେ ମୋର କୌଣସି ପରିକଳ୍ପନା ନ ଥିଲା । ପଣ୍ଡିତ ମୋତିଲାଲଜୀ ପ୍ରମୁଖ ବନ୍ଧୁମାନେ ମୋଠାରୁ କୌଣସି ସ୍ପଷ୍ଟ ଧାରଣା ନ ପାଇ, ମୁଁ କ'ଣ କରିବାକୁ ଯାଉଛି, କିଛି ଜାଣି ନ ପାରିବାରୁ ଚିଡ଼ି ଯାଇଥିଲେ । ମୋର ନିଜର ତ କୌଣସି ସ୍ପଷ୍ଟ ଧାରଣା ନ ଥିଲା, ମୁଁ ତାଙ୍କୁ କ'ଣ ବା କହିଥାନ୍ତି ? ଅପ୍ରତ୍ୟାଶିତ ଭାବେ ହଠାତ୍ ମୋତେ କର୍ମପନ୍ଥାଟା ଦିଶିଗଲା ; ତୁମେ ତ ଜାଣ ଏହି କାର୍ଯ୍ୟପନ୍ଥାଦ୍ୱାରା ଦେଶର ଏ ମୁଣ୍ଡରୁ ସେ ମୁଣ୍ଡ ଯାଏଁ ତୋଳପାଡ଼ ହୋଇଗଲା ।'

ଥରେ ଜଣେ କିଏ ତାଙ୍କୁ ପଚାରିଥିଲେ, 'ଭଗବାନଙ୍କ ପ୍ରତି ଆନୁଗତ୍ୟ ଯୋଗୁଁ ଆପଣଙ୍କ ହୃଦୟରେ ନିଶ୍ଚିନ୍ତତା ଓ ସ୍ୱାଚ୍ଛନ୍ଦ୍ୟ ତ ଆସୁଥିବ ?'

ଗାନ୍ଧୀ ଉତ୍ତର ଦେଲେ, 'ହଁ ଆସେ । ମୁଁ ଗୀତାର ବାଣୀରୁ ନିଃସନ୍ଦେହ ଭାବେ ଉପଲବ୍ଧି କରିଛି ଯେ, ଈଶ୍ୱରାନୁଗତ୍ୟ ଯୋଗୁଁ ମନରେ ଯେଉଁ ସ୍ୱାଚ୍ଛନ୍ଦ୍ୟ ଆସେ, ତା'କୁ କେଉଁ ଦିଗରେ ଚଳାଇବାକୁ ହେବ ସେ ବିଷୟରେ ମଣିଷ ସ୍ୱତନ୍ତ୍ର । ଏହି ଦୃଷ୍ଟିରୁ ମଣିଷ ନିଜ ଭାଗ୍ୟର ନିୟନ୍ତା ବୋଲି କହିଲେ ଚଳିବ । ମଣିଷ କର୍ମ କରିବାରେ ସ୍ୱତନ୍ତ୍ର ବୋଲି ଯେ କର୍ମଫଳ ତା'ର ଆୟତ୍ତାଧୀନ ସେ କଥା ନୁହେଁ । କର୍ମର ଫଳରେ ତା'ର ଆସକ୍ତି ଆସିଲେ, ସେ ଜଞ୍ଜାଳରେ ପଡ଼େ ।'

ନିଜର ଈଶ୍ୱରନିଷ୍ଠା ବିଷୟ ଆହୁରି ସ୍ପଷ୍ଟ ଭାବେ ବୁଝାଇ ସେ କହିଛନ୍ତି, 'ମୁଁ ତାଙ୍କର ବିଶେଷ ଅନୁଗତ ଭକ୍ତ ବୋଲି ଯେ ମୋତେ ଭଗବାନ୍ ତାଙ୍କର ବାଣୀ ଅନନ୍ୟସାଧାରଣ ଭାବେ ଶୁଣାନ୍ତି, ତାହା ନୁହେଁ । ମୋର ଦୃଢ଼ ବିଶ୍ୱାସ, ଭଗବାନ୍ ପ୍ରତ୍ୟହ ପ୍ରତ୍ୟେକ ମାନବର ହୃଦୟରେ ନିଜକୁ ପ୍ରକଟ କରନ୍ତି । ଆମେ କିନ୍ତୁ ଆମ ଅନ୍ତରତମ ପ୍ରଦେଶରେ ଉଚ୍ଚାରିତ ତାଙ୍କ ମୃଦୁ ବାଣୀକୁ କାନ ଦେଉଁ ନାହିଁ । ଭଗବାନ୍ ରୂପବାନ୍ ହୋଇ ତ କାହା ଆଗରେ ଆସି ଉଭା ହୁଅନ୍ତି ନାହିଁ । ତାଙ୍କର ପ୍ରକାଶ ହୁଏ, କ୍ରିୟା ଓ ଘଟଣାପ୍ରବାହରେ ।'

ଗାନ୍ଧୀ ଭଗବାନ୍ଙ୍କ ଆରାଧନା କି ରୀତିରେ କରୁଥିଲେ ? ପ୍ରାର୍ଥନାରେ ଫଳ ହୁଏ ବୋଲି ସେ ବିଶ୍ୱାସ କରୁଥିଲେ । ସେ କହିଛନ୍ତି, ପ୍ରାତଃକାଳରେ ପ୍ରାର୍ଥନା ଭଗବାନ୍ଙ୍କ ଦ୍ୱାର ଫିଟାଏ, ଓ ସଂଧ୍ୟାବେଳେ ତାଙ୍କ ଦ୍ୱାର ଭିତରୁ କିଳେ । ଶରୀର ପାଇଁ ଖାଦ୍ୟ ଯେପରି ପ୍ରୟୋଜନ,

ମନ ପାଇଁ ପ୍ରାର୍ଥନା ସେଇପରି··· । ମୁଁ ପ୍ରାର୍ଥନା ନ କରି କଷ୍ଟ କରେ ନାହିଁ··· । ମୁଁ ଜ୍ଞାନଯୋଗୀ ନୁହେଁ, କିନ୍ତୁ ବିନୀତ ଭାବେ ମୁଁ ଦାବୀ କରୁଛି ଯେ, ମୁଁ ପ୍ରାର୍ଥୀ, ଭକ୍ତ । ଭଗବତ୍ ପ୍ରାର୍ଥନାର ପ୍ରକାର ବିଷୟରେ ମୁଁ ବାଛ ବିଚାର କରେ ନାହିଁ । ଏ କ୍ଷେତ୍ରରେ ପ୍ରତ୍ୟେକେ ନିଜ ନିଜର ସ୍ୱତନ୍ତ୍ର ବିଧାନ କରିପାରନ୍ତି, କିନ୍ତୁ ଆନ୍ତରିକତା ନ ଥାଇ ଗୁଡ଼ାଏ ସ୍ତୋତ୍ର ଉଚ୍ଚାରଣ କରିବା ଅପେକ୍ଷା ମନୋନିବେଶ କରି ମୌନ ରହିବାଦ୍ୱାରା ପ୍ରକୃତ ପ୍ରାର୍ଥନା ହୋଇଥାଏ ।' ଭୁଣ୍ଡରି କଥାକୁ ଏକାବେଳକେ ଛାଡ଼ି ମୌନଭାବେ ପ୍ରାର୍ଥନା କରାଯାଇ ପାରେ ।

ପ୍ରାର୍ଥନା କଥା ଯାହା ହେଉ, ଭଗବତ୍-ପ୍ରାପ୍ତିର ଶ୍ରେଷ୍ଠ ମାର୍ଗ କର୍ମଯୋଗରେ । ଦିନେ ଲଗାଏତ୍ ଆମେରିକାସ୍ଥ ଧର୍ମଯାଜକ ଇ· ଷ୍ଟାନ୍‌ଲି ଜୋନ୍‌ସ୍ ଓ ଗାନ୍ଧୀ ବହୁ ବିଷୟରେ, ବିଶେଷ କରି ଧର୍ମାଚରଣ ସମ୍ପର୍କରେ, ଆଲୋଚନା କରିଥିଲେ । ଦିନେ ଗାନ୍ଧୀ କହିଲେ, 'ମନେକର ଜଣେ ଲୋକ ସମୁଦ୍ରକୂଳରେ ବସି ସମୁଦ୍ରରେ ନଡ଼ା ଖଣ୍ଡେ ବୁଡ଼ାଇ ସେଇଥିରେ ଟୋପା ଟୋପା କରି ପାଣି କାଢ଼ି, ସମୁଦ୍ରକୁ ଶୁଖାଇଦେବ ବୋଲି ବିଚାରିଛି । ଏ ଲୋକର ଯେତିକି ଧୈର୍ଯ୍ୟ ସେତିକି ଧୈର୍ଯ୍ୟ ଥିଲେ ଯାଇ ମଣିଷ ମୋକ୍ଷପଦ ପାଇପାରେ ।' ଗାନ୍ଧୀଙ୍କ କଥା ଶୁଣି ଡକ୍ଟର୍ ଜୋନ୍‌ସ୍ ବୁଝିଲେ, ମଣିଷ କଠୋର, ଶୃଂଖଳିତ ଉଦ୍ୟମଦ୍ୱାରା ଇନ୍ଦ୍ରିୟ ଓ ମନକୁ ବଶ କରି ପାରିଲେ ଯାଇ ମୋକ୍ଷ ପାଇ ପାରିବ ବୋଲି ଗାନ୍ଧୀଙ୍କର ବିଶ୍ୱାସ ।

ଡକ୍ଟର ଜୋନ୍‌ସ୍ ନିଜର ବିଶ୍ୱାସ ପ୍ରଖ୍ୟାପନ କରି କହିଲେ, 'କିନ୍ତୁ ମୁଁ ବିଶ୍ୱାସ କରେ ଯେ, ମୋକ୍ଷପଦ ମଣିଷର ନିଜ ଚେଷ୍ଟାରେ ପ୍ରାପ୍ତ ହୁଏ ନାହିଁ ; ଏହା ମିଳେ ଈଶ୍ୱରାନୁଗ୍ରହରେ । ସଦାଗୁରହୀନ ଓ ଆତ୍ମଚିନ୍ତାଶୂନ୍ୟ ହୋଇ ମୁଁ ଭଗବାନ୍‌ଙ୍କ ପଦାଶ୍ରିତ ହେଲି ; ମୋର ଦୈନ୍ୟ ବ୍ୟକ୍ତିତ ତାଙ୍କ ପାଖେ ନିବେଦନ କରିବାକୁ ମୋର ଅନ୍ୟ କୌଣସି ସଂବଳ ନ ଥିଲା । ବିସ୍ମୟର କଥା, ସେ ମୋତେ ଗ୍ରହଣ କଲେ, ମୋର ସମସ୍ତ ଦୁଷ୍କୃତି କ୍ଷମା କଲେ ଏବଂ ନିଶ୍ଚିନ୍ତ ମନରେ ଯାବତ୍‌ଜୀବନ ତାଙ୍କର ଯଶୋଗାନ କରି ବୁଲିବାକୁ ସୁଯୋଗ ଦେଲେ । ମୋର ମୋକ୍ଷ ତେଣୁ ଭଗବାନଙ୍କ ଅନୁଗ୍ରହରେ ପ୍ରାପ୍ତ···।' ଖ୍ରୀଷ୍ଟିୟାନ ଭକ୍ତ ଓ ମହାତ୍ମା ଗାନ୍ଧୀଙ୍କ ଦୃଷ୍ଟିକୋଣରେ ଏଇ ଗୋଟିକ ବିଷୟରେ ପାର୍ଥକ୍ୟ ସ୍ପଷ୍ଟ ।

ଡକ୍ଟର ଜୋନ୍‌ସ୍ ଆହୁରି କହିଛନ୍ତି, 'ଏକଥା ଅବଶ୍ୟ ମୁଁ ଜାଣୁଛି ଯେ, ଈଶ୍ୱରଙ୍କ ଅନୁଗ୍ରହରେ ମୋକ୍ଷ ମିଳେ ବୋଲି କହିଲେ, ମୋକ୍ଷପ୍ରାପ୍ତି ଶସ୍ତା ଓ ସହଜ ବୋଲି ଆପାତତଃ ମନେ ହୁଏ । କିନ୍ତୁ ବାସ୍ତବରେ ତାହା ସେପରି ନୁହେଁ ; କାରଣ, ଥରେ ଭଗବତ୍‌-ଅନୁଗ୍ରହର ପାତ୍ର ହେଲେ ଯେ ମଣିଷ ଚିରକାଳ ପାଇଁ ଅନୁଗ୍ରହକର୍ତ୍ତା ଭଗବାନଙ୍କର ଦାସ ହୋଇଯାଏ !'

ସେ ଯାହା ହେଉ, ଗାନ୍ଧୀ ଥିଲେ କଠୋର ସାଧନା ପଥର ପଥିକ । ତାଙ୍କର ବିଶ୍ୱାସ ଥିଲା : ପ୍ରତ୍ୟେକ ମଣିଷକୁ ତା'ର କର୍ମଦ୍ୱାରା ଚିହ୍ନା ଯାଏ । ଗାନ୍ଧୀଙ୍କ ଭଗବାନ୍ ଦାବୀ କରୁଥିଲେ, ସେ ମାନବର ସେବା କରନ୍ତୁ । ଗାନ୍ଧୀ ଲେଖିଛନ୍ତି, 'ମୋ ମନରେ ଯଦି ବିଶ୍ୱାସ ହୁଅନ୍ତା ଯେ, ହିମାଳୟର ଗୁମ୍ଫାରେ ଭଗବାନ ମିଳିବେ, ତେବେ ମୁଁ ଅବିଳମ୍ବେ ସେଇଠାକୁ ଚାଲିଯାନ୍ତି । କିନ୍ତୁ ମୋର ଦୃଢ଼ ଧାରଣା, ଜନତାଠାରୁ ଦୂରରେ ମୁଁ ଭଗବାନଙ୍କୁ ପାଇବି ନାହିଁ ···। ତେଣୁ ମୁଁ ଜନତାକୁ ହିଁ ଜାଣେ । ମୋର ବିଶ୍ୱାସ, ଜନତା ଭିତରେ ଭଗବାନ୍ ଅଛନ୍ତି । ତେଣୁ ଦିବାରାତ୍ର ମୁଁ ଜନତା ସାଙ୍ଗରେ କଟାଉଛି । ସେଇମାନଙ୍କ ସେବା ମୋ ଜୀବନର ପରମ ବ୍ରତ । ଏଥିରେ କର୍ତ୍ତବ୍ୟ ଆରମ୍ଭ ଓ ଶେଷ, କାରଣ ଦୀନ ଜନତାଙ୍କ ହୃଦୟରେ ଯେଉଁ ଭଗବାନଙ୍କର ଅଧିଷ୍ଠାନ, ତାଙ୍କର ବ୍ୟତୀତ ଅନ୍ୟ ରୂପରେ ମୁଁ ଭଗବାନଙ୍କ ଅସ୍ତିତ୍ୱ ସ୍ୱୀକାର କରେନାହିଁ ।'

ଗାନ୍ଧୀ ଭଗବାନଙ୍କୁ ଯେଉଁ ତ୍ରିଭୁଜର ଶୀର୍ଷ ବିନ୍ଦୁରେ ସ୍ଥାପନ କରିଥିଲେ ତାହାର ଗୋଟିଏ କୋଣରେ ସେ ନିଜକୁ ରଖିଥିଲେ ଓ ଆର କୋଣରେ ରଖିଥିଲେ ନିଜର ସଖା ମାନବକୁ । ତାଙ୍କ ନୀତିଶାସ୍ତ୍ର ଓ ସଦାଚାରର ମୂଳଦୁଆ ଥିଲା ଏହି ତ୍ରିଭୁଜ ଉପରେ ।

ଭଗବତ୍‌-ବିଶ୍ୱାସୀର ପ୍ରଧାନ କର୍ତ୍ତବ୍ୟ ସତ୍ୟନିଷ୍ଠା ; କାରଣ, ସତ୍ୟ ହିଁ ଭଗବାନ୍ । 'ସତ୍ୟ ହିଁ ଭଗବାନ୍' ବୋଲି ମହାତ୍ମା ଗାନ୍ଧୀ ସହସ୍ରବାର କହି ଯାଇଛନ୍ତି ।

'ଯେରବାଡ଼ା ମନ୍ଦିରରୁ' ନାମକ ପୁସ୍ତିକାରେ ଗାନ୍ଧୀ ଲେଖିଛନ୍ତି, ଚିନ୍ତା, କଥା ଓ କାର୍ଯ୍ୟ ସବୁଥିରେ ସତ୍ୟ ଆଧାରିତ ହେବା ଦରକାର । ସତ୍ୟର ସେବାରେ ହିଁ ଆମ ଜୀବନର ଏକମାତ୍ର ସାର୍ଥକତା । ଗାନ୍ଧୀଙ୍କ ବିଚାରରେ ଏହି ସତ୍ୟ ଖାଲି ସାଧୁତା ନୁହେଁ, ତା ବାଦ୍ ଆଉ କିଛି । ଆମେ ଯଦି 'ନଶ୍ୱର ଦେହ ହିଁ ଆତ୍ମା' ଏ ଧାରଣାରେ ବୁଦ୍ଧିକୁ ଆଚ୍ଛନ୍ନ ରଖିବା, ତେବେ

ଶୁଦ୍ଧ ସତ୍ୟର ଅବଧାରଣା ଆମ ପକ୍ଷରେ ଅସଂଭବ ହୋଇ ପଡ଼ିବ ।...ପୁଣି, ଅହଂକାରର ଶୃଙ୍ଖଳରୁ ମୁକ୍ତ ହୋଇ ମାନବସୃଷ୍ଟିର ମହାସାଗରରେ ନିଜକୁ ଲୀନ କରିଦେବାକୁ ହେବ ; ତେବେ ଯାଇ ପରମ ସତ୍ୟର ମହତ୍ତ୍ୱର ଆମେ ଅଂଶୀଦାର ହୋଇ ପାରିବା । ଆମର ସ୍ୱତନ୍ତ୍ର ସତ୍ତା ଅଛି, ଏ ଧାରଣା ଭଗବାନ ଓ ଆମ ଭିତରେ ଅନ୍ତରାୟ ହୋଇ ରହିଯାଏ । ସେହି ସ୍ୱତନ୍ତ୍ର ସତ୍ତାର ଅଧ୍ୟାସ ଦୂର ହେଲେ ମଣିଷ ଭଗବାନ୍‌ଙ୍କ ସଙ୍ଗେ ଏକ ହୋଇଯାଏ । ମହା ସମୁଦ୍ରର ପ୍ରତ୍ୟେକ ଜଳବିନ୍ଦୁ, କ୍ଷୁଦ୍ର ହେଲେହେଁ ସମୁଦ୍ରର ମହତ୍ତ୍ୱର ଅଂଶୀଦାର ହୋଇଥାଏ । ଯଦିଓ ନିଜର ସ୍ୱତନ୍ତ୍ର ସତ୍ତାର ଉପଲବ୍ଧି ତା'ର ନ ଥାଏ । କିନ୍ତୁ ଯେତେବେଳେ ସମୁଦ୍ରର ବିନ୍ଦୁ ନିଜର ସ୍ୱତନ୍ତ୍ର ସତ୍ତାର ଉପଲବ୍ଧି କରି ସମୁଦ୍ରଠାରୁ ଅଲଗା ହୋଇଯାଏ ସେତେବେଳେ ସେ ଶୁଖିଯାଏ, ଲୋପ ପାଇଯାଏ ।'

ସତ୍ୟ ମନୁଷ୍ୟକୁ ଭଗବାନ୍ ଓ ବିଶ୍ୱମାନବ ସମାଜସଙ୍ଗେ ଏକାକାର କରିଦିଏ । ସତ୍ୟରୁ ଉତ୍ପନ୍ନ ହୁଏ ଅହିଂସା । ବିଭିନ୍ନ ବ୍ୟକ୍ତିଙ୍କୁ ଏକ ସତ୍ୟ ବିଭିନ୍ନ ରୂପରେ ପ୍ରତିଭାତ ହୋଇପାରେ । 'ୟେରବାଡ଼ା ମନ୍ଦିରରୁ' ବହିରେ ଅଛି, ନିଜର ଅବବୋଧ ଅନୁସାରେ ସତ୍ୟକୁ ଭିନ୍ନ ରୂପରେ ଭଜିବାରେ ଦୋଷ ନାହିଁ ।' କିନ୍ତୁ ଯେ ଯେଉଁ ରୂପରେ ସତ୍ୟକୁ ଦେଖୁଛି, ନିରବଚ୍ଛିନ୍ନ ଭାବେ ସେହି ରୂପରେ ତାକୁ ସବୁବେଳେ ଭଜିବା ଉଚିତ । କିନ୍ତୁ ଆମଠାରୁ ଭିନ୍ନ ରୂପରେ ଯେଉଁମାନେ ସତ୍ୟକୁ ଭଜୁଛନ୍ତି, ତାଙ୍କୁ ଯଦି ଆମେ ଧ୍ୱଂସ କରିବାକୁ ବସିବା, ତେବେ ଆମେ ସତ୍ୟ-ପଥରୁ ବିଚ୍ୟୁତ ହୋଇଯିବା । ଅନ୍ୟକୁ ମାରି ବା ଆଘାତ କରି ଆମେ ଭଗବାନଙ୍କୁ ପାଇବା କିପରି ? ଖାଲି ଶାନ୍ତ ହୋଇ ରହିଲେ ବା ହିଂସାରୁ ନିବର୍ତ୍ତି ରହିଲେ ଅହିଂସା ହେଲା ବୋଲି କୁହାଯାଇ ନ ପାରେ । ପୂର୍ଣ୍ଣ ଅହିଂସା ଅର୍ଥ ପ୍ରେମ—ମନରେ ପୂର୍ଣ୍ଣ ଅହିଂସା ଆସିଲେ ମନରୁ ମନ୍ଦଚିନ୍ତା ଦୂର ହୋଇଯିବ, କୌଣସି ଉଦ୍ଦେଶ୍ୟ ସାଧନ କରିବାକୁ ଅତିବ୍ୟଗ୍ରତା ଗୁଚି ହୋଇଯିବ, ମିଥ୍ୟା ଓ ଅସୂୟାର ଅବକାଶ ରହିବ ନାହିଁ ।

ପ୍ରଥମେ ସତ୍ୟ ; ଦ୍ୱିତୀୟରେ ଅହିଂସା ବା ପ୍ରେମ, ତୃତୀୟରେ ବ୍ରହ୍ମଚର୍ଯ୍ୟ । 'ଯଦି ଜଣେ ପୁରୁଷ ବା ସ୍ତ୍ରୀ ଆଉ ଜଣେ ସ୍ତ୍ରୀ ବା ପୁରୁଷକୁ ନିଜର ସମସ୍ତ ପ୍ରେମ ଅର୍ପଣ କରେ, ତେବେ ପୃଥିବୀର ଅନ୍ୟ ସମସ୍ତଙ୍କ ପ୍ରତି ତା' ହୃଦୟରେ ଆଉ କି ଭାବ ଅବଶିଷ୍ଟ ରହିବ ? ଏଭଳି ଐକାନ୍ତିକ ପ୍ରେମର

ଅର୍ଥ : ଆମ ଦୁହିଁଙ୍କ କଥା ହିଁ ଆମର ଧ୍ୟେୟ, ବାକି ସମସ୍ତେ ନରକକୁ ଗଲେ ବି ଆମର କିଛି ଯାଏ ଆସେ ନାହିଁ···। ଏଭଳି ବିଗୃରୁଥିବା ଲୋକେ ବିଶ୍ୱ-ପ୍ରେମର ଉଚ୍ଚ ଶିଖରକୁ ଉଠିବା ଅସଂଭବ ।'

ତେବେ କ'ଣ ଯେଉଁମାନେ ବିବାହ ହୋଇଛନ୍ତି ସେମାନଙ୍କ ଜୀବନ ଏକାବେଳକେ ବୃଥା ? ନା, 'ଯଦି ବିବାହିତ ପତି ପତ୍ନୀ ନିଜ ନିଜକୁ ଭାଇ ଭଉଣୀ ବୋଲି ଦୃଢ଼ ଧାରଣା କରି ପାରିବେ ତେବେ ବିଶ୍ୱମାନବର ସେବା ପାଇଁ ସେମାନେ ସମର୍ଥ ହେବେ । ଆଶ୍ରମର ସନ୍ନ୍ୟାସୀ ଓ ସନ୍ନ୍ୟାସିନୀଙ୍କ ପାଇଁ ଏହା ହିଁ ଥିଲା ଚରମ ସାଧନା । ଇତର ଜନସାଧାରଣଙ୍କ ପାଇଁ ଅବଶ୍ୟ, 'ଯୌନ ସଂପର୍କ ନିର୍ଦ୍ଦୋଷ ଓ ମହତ୍ତ୍ୱ କାର୍ଯ୍ୟ ବୋଲି ଗ୍ରହଣ କରା ଯାଇ ପାରେ । ଏଥିରେ ଲଜ୍ଜିତ ହେବାର ପ୍ରଶ୍ନ ନାହିଁ । କିନ୍ତୁ ସନ୍ତାନ-ଉତ୍ପାଦନ ହିଁ କାମୋପଭୋଗର ଏକମାତ୍ର ଉଦ୍ଦେଶ୍ୟ ହେବା ଦରକାର । ଏଥିରେ ସନ୍ତାନ କାମନା ବ୍ୟତୀତ କେବଳ ଇନ୍ଦ୍ରିୟତୃପ୍ତିର ଆସକ୍ତି ରହିଲେ, ତାହା ଭଗବାନ୍ ଓ ମାନବ ସୃଷ୍ଟି ପ୍ରତି ଦ୍ରୋହ ବୋଲି ବିବେଚିତ ହୁଏ···। ଇନ୍ଦ୍ରିୟାସକ୍ତି ମୋର କର୍ତ୍ତବ୍ୟ ସାଧନରେ ଅନ୍ତରାୟ ହୋଇଥିଲା ।'

ଆଶ୍ରମବାସୀଙ୍କୁ ଆହୁରି ଗୋଟିଏ ନିର୍ଦ୍ଦେଶ ଦିଆ ହୋଇଥିଲା—ତାହା ଅସ୍ତେୟ (ଅଚୌର୍ଯ୍ୟ) । ବ୍ୟକ୍ତିଗତ ସଂପତ୍ତି ନ କରିବା ଥିଲା ଏହି 'ଅସ୍ତେୟ'ର ଅନ୍ତର୍ଭୁକ୍ତ । 'ନିଜର ଅଭାବର ମାତ୍ରା ବା ପରିମାଣ ବଢ଼ାଇବା ଯଥାର୍ଥ ସଭ୍ୟତା ନୁହେଁ । ଚେଷ୍ଟା କରି, ସ୍ୱଇଚ୍ଛାରେ ନିଜର ଅଭାବ କମାଇବା ହିଁ ପ୍ରକୃତ ସଭ୍ୟ ମାନବର ଲକ୍ଷଣ···।'

ଗାନ୍ଧୀ ଜଣେ ବନ୍ଧୁଙ୍କୁ ଥରେ କହିଥିଲେ, 'ଭବିଷ୍ୟତ ପାଇଁ ଭାଳି ହେବା ତାହା ନାସ୍ତିକର କାର୍ଯ୍ୟ । ଆମର ଯେତିକି ଯୋଗ୍ୟତା ଓ କୃତିତ୍ୱ ଅଛି ଆମ ପିଲାଙ୍କର ତହିଁରୁ କମ୍ ରହିବ, ଏପରି ଆଶଂକା କରିବା କାହିଁକି ? ପିଲାଙ୍କ ପାଇଁ ପଇସା ସଂଚୟ କରିବାଦ୍ୱାରା ଜଣାଯିବ, ଆମର ପିଲାଙ୍କ ସାମର୍ଥ୍ୟରେ ବିଶ୍ୱାସ ନାହିଁ ।' ଭଗବାନଙ୍କଠାରେ ବି ବିଶ୍ୱାସ ନାହିଁ । ଧନ ଓ ସଂପତ୍ତି ପ୍ରତି ଲୋଭ ମାନସିକ ଭୟରୁ ଜାତ ହୁଏ । ଭୟ ହିଁ ହିଂସାର ହେତୁ । ଭୟର ଅନ୍ୟ ନାମ ଅସାଧୁତା । ଅଭୟ ହିଁ ସତ୍ୟ, ଭଗବାନ୍ ଓ ପ୍ରେମର ଷଷ୍ଠିକାଠି । ସବୁ ଗୁଣଙ୍କ ଭିତରେ ଏହା ହିଁ ଶ୍ରେଷ୍ଠ ।

ଅନ୍ୟ ଗୁଣଗୁଡ଼ିକ ହେଲା : ଅସ୍ପୃଶ୍ୟତା-ବର୍ଜନ—ସମଗ୍ର ବିଶ୍ୱ-ବାସୀଙ୍କ ପ୍ରତି ପ୍ରୀତି ଓ ସେମାନଙ୍କର ସେବାପାଇଁ ଉନ୍ମୁଖତା ଏହାର

ଅନ୍ତର୍ଭୁକ୍ତ ; 'ରୋଟି ପାଇଁ ଶ୍ରମ', ଅର୍ଥାତ୍ ପ୍ରତ୍ୟହ ନିୟମିତ ଭାବେ ଖାଦ୍ୟ ଉତ୍ପାଦନ ସକାଶେ ଶାରୀରିକ ଶ୍ରମ ; ସମସ୍ତ ଧର୍ମମତ ପ୍ରତି ସହିଷ୍ଣୁତା ; ବିନୟ ଏବଂ ଶେଷରେ, ସୂତାକଟା ଓ 'ବୈଦେଶିକଙ୍କ ପ୍ରତି ଅସୂୟା ନ ଥାଇ ଭାରତର ଜାତୀୟ ଅର୍ଥନୀତିର ବିକାଶ ପାଇଁ ଗ୍ରାମ୍ୟ-ଉଦ୍ୟୋଗ ।

ଆଶ୍ରମ ବାହାର ଲୋକଙ୍କ କଥା ତେଣେ ଥାଉ, ଆଶ୍ରମବାସୀଙ୍କ ଭିତରୁ କେହି ଗାନ୍ଧୀଙ୍କର ଏହି କଠୋର କର୍ମପନ୍ଥାକୁ ପୂରାପୂରି ପାଳିବାକୁ ସମର୍ଥ ହୋଇ ନ ଥିଲେ । କେବଳ ସେ ହିଁ ନିଜ ଆଦର୍ଶର ସମୀପବର୍ତ୍ତୀ ହୋଇ ପାରିଥିଲେ ।

ବନ୍ଦୀ-'ମନ୍ଦିରରେ' ଗାନ୍ଧୀ ଭଗବତ୍ ତତ୍ତ୍ୱ ବିଷୟରେ ଓ ତାଙ୍କ ନୀତିଶାସ୍ତ୍ର ଉପରେ ତାଙ୍କର ଏହି ନିର୍ଦ୍ଦେଶଗୁଡ଼ିକ ସଂପାଦନ କରିବା ବେଳେ ଭାରତ, ଆଧୁନିକ ଇତିହାସର ସବୁଠାରୁ ଉଦ୍‌ବେଗକର ପକ୍ଷ ଆଡ଼କୁ ଆଗେଇ ଚାଲିଥାଏ ।

ଗାନ୍ଧୀଙ୍କ ଜୀବନ କିପରି ରକ୍ଷା ପାଇବ ତାହା ହିଁ ଥିଲା ଏ ପକ୍ଷର ଉଦ୍‌ବେଗର ମୂଳ କାରଣ ।

ରାଜଗୋପାଳାଚାରୀ ଲେଖିଥିଲେ, 'ସେପ୍‌ଟେମ୍ବର, ୧୯୩୨ରେ ଭାରତରେ ଯେଉଁ ଉଦ୍‌ବେଗ ଓ ମାନସିକ ଯନ୍ତ୍ରଣା ହୋଇଥିଲା ତାହାର ତୁଳ୍ୟ ଅବସ୍ଥା ଖୋଜିବାକୁ ଆମକୁ ଯିବାକୁ ହେବ ୨୩ ଶହ ବର୍ଷ ପୂର୍ବର ଆଥେନ୍‌ସ୍‌କୁ । ସେତେବେଳେ ସେଠାରେ ବନ୍ଧୁମାନେ, ବନ୍ଦୀଶାଳାରେ ଆବଦ୍ଧ ସକ୍ରେଟିସ୍‌ଙ୍କ ଚାରିପଟେ ଘେରିଯାଇ, ମୃତ୍ୟୁକୁ ଏଡ଼ିବା ପାଇଁ ତାଙ୍କୁ ଅନୁଯୋଗ କରୁଥିଲେ । ସକ୍ରେଟିସ୍‌ଙ୍କୁ ତାଙ୍କ ଶିଷ୍ୟମାନେ ସେତେବେଳେ ଯେଉଁ ପ୍ରଶ୍ନମାନ ପଚାରିଥିଲେ, ଓ ସେ ଯାହା ଉତ୍ତର ଦେଇଥିଲେ, ତାହାର ବିବରଣୀ ପ୍ଲେଟୋ ଲିପିବଦ୍ଧ କରିଯାଇଛନ୍ତି । ମୃତ୍ୟୁରୁ ରକ୍ଷା ପାଇବାକୁ ଶିଷ୍ୟମାନେ ଲଗାଇବାରେ ସକ୍ରେଟିସ୍ ମୃଦୁହାସ୍ୟ କରିଥିଲେ,··· ଏବଂ ଆତ୍ମାର ମୃତ୍ୟୁ ନାହିଁ ବୋଲି ସେମାନଙ୍କୁ ବୁଝାଇଥିଲେ ।'

'୧୯୩୨ ସେପ୍‌ଟେମ୍ବରରେ ଭାରତର ଯେଉଁ ମନସ୍ତାପ' ହୋଇଥିଲା, ଗାନ୍ଧୀଙ୍କର ସେ ମନସ୍ତାପ ସେ ବର୍ଷର ଆରମ୍ଭବେଳୁ ଆରମ୍ଭ ହୋଇଥିଲା । ସେ ସମ୍ବାଦପତ୍ରରୁ ସଂଗ୍ରହ କରିଥିଲେ ଯେ, ଭାରତ ପାଇଁ ଯେଉଁ ସଂବିଧାନର କଳ୍ପନା ବ୍ରିଟିଶ୍ ସରକାର କରୁଛନ୍ତି ସେଥିରେ, ପୂର୍ବପରି ଖାଲି ହିନ୍ଦୁ ମୁସଲମାନଙ୍କ ପାଇଁ ନୁହେଁ, ଅସ୍ପୃଶ୍ୟ ବା ଦଳିତ ଜାତିମାନଙ୍କ ପାଇଁ ସ୍ୱତନ୍ତ୍ର

ନିର୍ବାଚନ ମଣ୍ଡଳୀର ବ୍ୟବସ୍ଥା ହେବ । ଏ ଖବର ପାଇ ସେ, ୧୯୩୨, ମାର୍ଚ୍ଚ ୧୧ ତାରିଖରେ, ଭାରତସଚିବ ସାର୍ ସାମୁଏଲ୍ ହୋର୍‌ଙ୍କ ପାଖକୁ ଖଣ୍ଡିଏ ପତ୍ର ଦେଇଥିଲେ ।

ସେଥିରେ ଗାନ୍ଧୀ ଲେଖିଥିଲେ, 'ଦଳିତ ଜାତିଙ୍କ ପାଇଁ ପୃଥକ୍ ନିର୍ବାଚନମଣ୍ଡଳୀ ହେଲେ ସେମାନଙ୍କର ଓ ସମଗ୍ର ହିନ୍ଦୁଜାତିର ଅନିଷ୍ଟ ହେବ··· । ଦଳିତ ଜାତିଙ୍କ ପାଇଁ ପୃଥକ୍ ନିର୍ବାଚନ ମଣ୍ଡଳୀ ହେବାଦ୍ୱାରା ହିନ୍ଦୁ ଜାତି ଭାଗ ଭାଗ ହୋଇଯିବ ଏବଂ ସେମାନଙ୍କ ଭିତରେ ଭେଦଭାବର ସୃଷ୍ଟି ହେବ··· । ଏହାଦ୍ୱାରା ଅବଶ୍ୟ ଦଳିତ ଜାତିମାନଙ୍କର ରାଜନୀତିକ ଲାଭ ହେବ । ଏହା ଯେତେ ସ୍ପୃହଣୀୟ ହେଲେ ବି, ଧର୍ମ ଓ ନୀତି ଦୃଷ୍ଟିରେ ସମଗ୍ର ଜାତିର ଯେଉଁ ମହାନ୍ ହାନି ହେବ ତା' ତୁଳନାରେ ଏହି ରାଜନୀତିକ ଲାଭ ଗୁରୁତର ନୁହେଁ ।' ଏ ପରିସ୍ଥିତିରେ ସରକାର ଯଦି ଅସ୍ପୃଶ୍ୟଙ୍କ ପାଇଁ ପୃଥକ୍ ନିର୍ବାଚନ ମଣ୍ଡଳୀର ପ୍ରବର୍ତ୍ତନ କରିବାକୁ ସିଦ୍ଧାନ୍ତ କରନ୍ତି, ତେବେ 'ମୁଁ ବାଧ୍ୟ ହୋଇ ଆମରଣ ଅନଶନ କରିବି' । ଗାନ୍ଧୀ ଏକଥା ଭଲ କରି ଜାଣିଥିଲେ ଯେ, ସେତେବେଳେ ସେ ବନ୍ଦୀ ହୋଇ ସରକାରଙ୍କ ଦାୟିତ୍ୱରେ ଥିବାରୁ, ଏ ଅନଶନଦ୍ୱାରା ସରକାର ବଡ଼ ଅଡୁଆରେ ପଡ଼ିବେ । ତେଣୁ ସେ ଲେଖିଥିଲେ, 'ମୁଁ ମୋର ମତର ପ୍ରତିଷ୍ଠା କରିବାକୁ ବା ମୋର ଉଦ୍ଦେଶ୍ୟ ସିଦ୍ଧି ପାଇଁ ଏ ଅନଶନର କଳ୍ପନା କରିନାହିଁ । ଏଭଳି ଅବସ୍ଥାରେ ଅନଶନ କରିବା ମୋର ସ୍ୱଭାବଗତ ।'

ଭାରତ-ସଚିବ ଏପ୍ରିଲ ୧୩ ତାରିଖରେ ବନ୍ଦୀ ଗାନ୍ଧୀଙ୍କ ପାଖକୁ ଏ ପତ୍ରର ଉତ୍ତର ପଠାଇଥିଲେ । ସେଥିରେ ସେ ଜଣାଇ ଦେଇଥିଲେ ଯେ, ଏ ବିଷୟରେ ସରକାର କୌଣସି ସିଦ୍ଧାନ୍ତ କରିନାହାନ୍ତି; ଓ ତାହା କରିବା ପୂର୍ବରୁ ଗାନ୍ଧୀଙ୍କ ମତ ବିଚାରକୁ ନିଆଯିବ ।

୧୯୩୨, ଅଗଷ୍ଟ ୧୭ ତାରିଖ ପର୍ଯ୍ୟନ୍ତ ଏ ବିଷୟରେ କିଛି ଘଟି ନ ଥିଲା । ସେ ଦିନ ପ୍ରଧାନମନ୍ତ୍ରୀ ରାମ୍‌ସେ ମ୍ୟାକ୍‌ଡୋନାଲ୍‌ଡ୍ ଘୋଷଣା କରିଦେଲେ ଯେ, ମୁସଲମାନଙ୍କ ପରି ଅସ୍ପୃଶ୍ୟଙ୍କ ପାଇଁ ମଧ୍ୟ, ପୃଥକ୍ ନିର୍ବାଚନମଣ୍ଡଳୀର ବ୍ୟବସ୍ଥା କରିବାକୁ ବ୍ରିଟିଶ୍ ସରକାର ସ୍ଥିର କରିଛନ୍ତି ।

ତହିଁ ଆରଦିନ ଗାନ୍ଧୀ, ରାମ୍‌ସେ ମ୍ୟାକ୍‌ଡୋନାଲ୍‌ଡ୍‌ଙ୍କ ପାଖକୁ ଲେଖିଲେ, 'ଆପଣଙ୍କ ଏ ସିଦ୍ଧାନ୍ତ ବିରୁଦ୍ଧରେ ମୁଁ ପ୍ରାଣପାତ କରି ଲଢ଼ିବାକୁ ବାଧ୍ୟ ହେଉଛି । ମୁଁ ଯେଉଁ ପରିସ୍ଥିତିରେ ଅଛି ସେଥିରେ ମୋର

ଲଢ଼ିବାକୁ ଗୋଟିଏ ମାତ୍ର ଉପାୟ ଅଛି : ମୁଁ କୌଣସି ପ୍ରକାର ଖାଦ୍ୟ ନ ଖାଇ ଆମରଣ ଅନଶନ କରିବାକୁ ସିଦ୍ଧାନ୍ତ କରିବି । କେବଳ ପାଣି ପିଇବି, ସେଥିରେ ଲୁଣ, ବା ସୋଡ଼ା ଟିକିଏ ପକାଇଲେ ପକାଇବି, ବା ନ ପକାଇବି ।' ସେପ୍ଟେମ୍ବର ୨୦ ତାରିଖ ମଧ୍ୟାହ୍ନରେ ଅନଶନ ଆରମ୍ଭ ହେବାର କଥା ।

୧୯୩୨, ସେପ୍ଟେମ୍ବର ୮ ତାରିଖରେ ପ୍ରଧାନମନ୍ତ୍ରୀ ମ୍ୟାକ୍‌ଡୋନାଲ୍‌ଡ୍ ତାଙ୍କ ସରକାରୀ ବାସଭବନ, ୧୦ ନମ୍ବର ଡାଉନିଂ ଷ୍ଟ୍ରୀଟ୍ ଠିକଣାରୁ ଗାନ୍ଧୀଙ୍କ ଚିଠିର ଖୁବ୍ ଲମ୍ବା ଉତ୍ତର ଖଣ୍ଡେ ପଠାଇଲେ । ସେଥିରେ ସେ ଲେଖିଲେ ଯେ ଗାନ୍ଧୀଙ୍କ ଚିଠି ପାଇ ସେ ଅତ୍ୟନ୍ତ ବିସ୍ମିତ ହୋଇଛନ୍ତି ଏବଂ, 'ଏକଥା ମଧ୍ୟ କହିରଖୁଛି ଯେ ସେ ପତ୍ର ପାଇ ମୁଁ ଅନ୍ତରରେ ଗଭୀର ବେଦନା ଅନୁଭବ କରୁଛି ।' ଗାନ୍ଧୀ ସରକାରଙ୍କ ନିଷ୍ପତ୍ତିକୁ ଭୁଲ୍ ବୁଝିଛନ୍ତି । ଗାନ୍ଧୀଙ୍କର ଅସ୍ପୃଶ୍ୟମାନଙ୍କ ପ୍ରତି ଶ୍ରଦ୍ଧା ସମସ୍ତଙ୍କୁ ଜଣା । ଭାରତ ସରକାର ଗାନ୍ଧୀଙ୍କର ଏଇ ଶ୍ରଦ୍ଧା, ଓ ସାର୍ ସାମୁଏଲ୍ ହୋର୍‌ଙ୍କୁ ସେ ଦେଇଥିବା ପତ୍ରକୁ ବିଚାରକୁ ନେଇ ସିଦ୍ଧାନ୍ତ କରିଛନ୍ତି । 'ବ୍ୟବସ୍ଥାପଭାମାନଙ୍କରେ ଦଳିତ ଜାତିମାନେ ତାଙ୍କ ସଂଖ୍ୟା ଅନୁପାତରେ ନ୍ୟାଯ୍ୟ ପ୍ରତିନିଧିତ୍ୱ ପାଇବା ଉଚିତ ବୋଲି ଆମ୍ଭେମାନେ ବିଶ୍ୱାସ କରୁଁ । ସେଭଳି ପ୍ରତିନିଧିତ୍ୱ ପାଇଁ ଆଇନ୍‌ଗତ ବ୍ୟବସ୍ଥା କରିବା ଆମର କର୍ତ୍ତବ୍ୟ ବୋଲି ଆମର ହୃଦ୍‌ବୋଧ ହେଲା । ତତ୍‌ସତ୍ତ୍ୱେ, ସମଗ୍ର ହିନ୍ଦୁ ଜାତିଠାରୁ ଦଳିତ ସଂପ୍ରଦାୟର ଲୋକେ ଯେପରି ବିଚ୍ଛିନ୍ନ ନ ହେବେ ସେଥିପାଇଁ ମଧ୍ୟ ଆମେ ସାବଧାନ ରହି ଯଥୋଚିତ ବ୍ୟବସ୍ଥା କରିଛୁଁ ।'

ଏହିପରି ଉପକ୍ରମ କରି ମ୍ୟାକ୍‌ଡୋନାଲ୍‌ଡ୍ ସରକାରୀ ସିଦ୍ଧାନ୍ତର ସମର୍ଥନ କରି ବଳିଷ୍ଠଭାବେ ଯୁକ୍ତି ବାଢ଼ିଥିଲେ, 'ସରକାର ଯେଉଁ ବ୍ୟବସ୍ଥା କରିଛନ୍ତି ତଦନୁସାରେ ଦଳିତ ଜାତିର ଲୋକେ ହିନ୍ଦୁ ଜାତିର ଅନ୍ତର୍ଭୁକ୍ତ ରହି ହିନ୍ଦୁ ନିର୍ବାଚନମଣ୍ଡଳୀରେ ଅନ୍ୟ ହିନ୍ଦୁ ଭୋଟରଙ୍କ ସଙ୍ଗେ ସମକକ୍ଷଭାବେ ଭୋଟ ଦେବେ ।' ଗାନ୍ଧୀ ନିଜେ ଏହାହିଁ ଦାବୀ କରୁଥିଲେ । 'କେବଳ ପ୍ରଥମ କୋଡ଼ିଏ ବର୍ଷ, ହିନ୍ଦୁ ସଂପ୍ରଦାୟର ଅନ୍ତର୍ଭୁକ୍ତ ଥିବା ସତ୍ତ୍ୱେ, ଅଳ୍ପ କେତୋଟି ସଂରକ୍ଷିତ ନିର୍ବାଚନମଣ୍ଡଳୀରେ ସେମାନେ ପୃଥକ୍‌ଭାବେ ନିଜ ପ୍ରତିନିଧି ପଠାଇବାକୁ ଅଧିକାର ପାଇ, ନିଜର ଅଧିକାର ଓ ସ୍ୱାର୍ଥ ବଜାୟ ରଖିବାକୁ ସୁଯୋଗ ପାଇବେ ମାତ୍ର···।'

ଅର୍ଥାତ୍, ମ୍ୟାକ୍‌ଡୋନାଲ୍‌ଡ ପରିଷ୍କାର କରିଦେଲେ ଯେ, ଅସ୍ପୃଶ୍ୟ-ମାନେ ହିନ୍ଦୁ ନିର୍ବାଚନମଣ୍ଡଳୀରେ ଭୋଟ ଅଧିକାର ପାଇବେ । ତାଛଡ଼ା, ସେମାନଙ୍କ ମଧ୍ୟରୁ ଅନେକେ ଅସ୍ପୃଶ୍ୟମାନଙ୍କ ପାଇଁ ସଂରକ୍ଷିତ ନିର୍ବାଚନ ମଣ୍ଡଳୀରେ ଆଉ ଥରେ ଭୋଟ ଦେବେ । ମ୍ୟାକ୍‌ଡୋନାଲ୍‌ଡ୍ ଜଣାଇ-ଦେଲେ, ଏଇପରି ଅସ୍ପୃଶ୍ୟମାନେ 'ଦୁଇଥର ଭୋଟ' ଦେଇ ପାରିବେ । ଗାନ୍ଧୀ ଅସ୍ପୃଶ୍ୟମାନଙ୍କର ପ୍ରଧାନ ସମର୍ଥକ ହୋଇଥିବାରୁ ଏଥିରେ ସେ ଆପତ୍ତି କରିବାର ନୁହେଁ ବୋଲି ମ୍ୟାକ୍‌ଡୋନାଲ୍‌ଡ ଲେଖିଥିଲେ ।

ମ୍ୟାକ୍‌ଡୋନାଲ୍‌ଡ ପୁଣି ଜଣାଇଥିଲେ, ଯେଉଁ ସିଦ୍ଧାନ୍ତ ହୋଇଛି ତା' ପରିବର୍ତ୍ତେ ଅସ୍ପୃଶ୍ୟମାନଙ୍କ ପାଇଁ ବ୍ୟବସ୍ଥାସଭାମାନଙ୍କରେ କେତୋଟି ସ୍ଥାନ ସଂରକ୍ଷିତ ହୋଇ ପାରିଥାନ୍ତା । ଏହାଦ୍ୱାରା ଅସ୍ପୃଶ୍ୟମାନେ ବ୍ୟବସ୍ଥା ସଭାରେ ହିନ୍ଦୁମାନଙ୍କ ସଂଖ୍ୟାଧିକ ପ୍ରତିନିଧିଙ୍କ ଭିତରେ କେତୋଟି ସ୍ଥାନ ଅଲଗା କରି ନିଶ୍ଚିତ ଭାବେ ପାଇ ପାରିଥାନ୍ତେ ସିନା, 'କାର୍ଯ୍ୟତଃ ପ୍ରତ୍ୟେକ ଅସ୍ପୃଶ୍ୟ ବ୍ୟବସ୍ଥାସଭା ମେମ୍ବର, ସବର୍ଣ୍ଣଜାତି ସଂଖ୍ୟାଧିକ ଥିବା ନିର୍ବାଚନ ମଣ୍ଡଳୀରୁ ଏହି ସବର୍ଣ୍ଣଜାତି ମେମ୍ବରଙ୍କ ଦ୍ୱାରା ନିର୍ବାଚିତ ହୁଅନ୍ତେ ।' ସେପରି ହେଲେ, ଅସ୍ପୃଶ୍ୟ ପ୍ରତିନିଧିମାନେ ସବର୍ଣ୍ଣ ହିନ୍ଦୁଙ୍କ ବୋଲକରା ହୋଇଯାନ୍ତେ । ସେମାନେ ସବର୍ଣ୍ଣ ହିନ୍ଦୁଙ୍କ ସମର୍ଥନ ପାଇବାକୁ ସବୁବେଳେ ଲାଳାୟିତ ହେବା କାରଣ, ନିଜ ସମ୍ପ୍ରଦାୟର ସ୍ୱାର୍ଥ ଜଗିବାକୁ ହୁଏତ ସମର୍ଥ ହୁଅନ୍ତେ ନାହିଁ । ଏହି ଆଶଂକାରେ, ଏ ବିକଳ୍ପ ବ୍ୟବସ୍ଥାଟି ଗ୍ରହଣ କରିବାକୁ ପଡ଼ିଲା ।

ଏହି ଭାବରେ ଯୁକ୍ତି ବାଢ଼ି ମ୍ୟାକ୍‌ଡୋନାଲ୍‌ଡ ଲେଖିଲେ, 'ଏବେ ଆପଣ ଯେ ଆମରଣ ଅନଶନ କରିବାର ଚରମ ସଂକଳ୍ପ କରିଛନ୍ତି, ତା'ର କାରଣ କ'ଣ ? ସବର୍ଣ୍ଣ ହିନ୍ଦୁଙ୍କ ସଙ୍ଗେ ଅସ୍ପୃଶ୍ୟମାନେ ମିଳିତ ନିର୍ବାଚନ-ମଣ୍ଡଳୀରେ ଭୋଟ ଦିଅନ୍ତୁ ବୋଲି ଯଦି ଆପଣଙ୍କର ଦାବୀ, ତେବେ ଅନଶନ ନିଷ୍ପ୍ରୟୋଜନ ; କାରଣ, ମିଳିତ ନିର୍ବାଚନମଣ୍ଡଳୀର ବ୍ୟବସ୍ଥା ଆମେ କରିଛୁ । ହିନ୍ଦୁ ଜାତିର ଏକତା ଯଦି ଆପଣଙ୍କର କାମ୍ୟ ତେବେ ଆମ ସିଦ୍ଧାନ୍ତରେ ତା'ର ବ୍ୟବସ୍ଥା ଅଛି । ଏପରି ସ୍ଥଳେ, ଆପଣ ଯେ ଜିଦ୍ ଧରିଛନ୍ତି, ତା'ର ଏକମାତ୍ର କାରଣ ରହୁଛି, ଅସ୍ପୃଶ୍ୟମାନଙ୍କ ପାଇଁ କେତୋଟି ମାତ୍ର ସ୍ଥାନ ସଂରକ୍ଷିତ ରହିବାଦ୍ୱାରା, ସେମାନଙ୍କର ନିଜ ପ୍ରତିନିଧିମାନେ ବ୍ୟବସ୍ଥା ସଭାମାନଙ୍କରେ ତାଙ୍କ ସ୍ୱାର୍ଥରକ୍ଷା କରିବାକୁ ତୁଣ୍ଡ ଫିଟାଇବାର ଯେଉଁ ଅଧିକାର ଦେବାର କଳ୍ପନା କରାଯାଉଛି, ସେଥିରେ ବାଧା ଦେବା ।

ହିନ୍ଦୁ ସମାଜରେ ସେମାନେ ଦାରୁଣ ନର୍ଯାତନା ଭୋଗୁଛନ୍ତି, ଏହା ତ କେହି ଅସ୍ୱୀକାର କରିବେ ନାହିଁ...।' ଏ ସବୁ କାରଣରୁ ମ୍ୟାକ୍‌ଡୋନାଲଡ୍ ସ୍ଥିର କଲେ ଯେ, ଗାନ୍ଧୀ ପ୍ରକୃତ କଥାଟି ବୁଝି ନ ପାରି ଅନଶନ କରିବାକୁ ସଂକଳ୍ପ କରି ପକାଇଛନ୍ତି ଓ ଜଣାଇ ଦେଲେ ଯେ, ସରକାର ଯେଉଁ ନିଷ୍ପତ୍ତି କରିଛନ୍ତି ତାହାର ପରିବର୍ତ୍ତନ ହେବ ନାହିଁ ।

ମ୍ୟାକ୍‌ଡୋନାଲ୍ଡଙ୍କ ଚିଠିର ଉତ୍ତରରେ ଗାନ୍ଧି, ୟେରବାଡ଼ା କେନ୍ଦ୍ର ଜେଲ୍‌ରୁ ୧୦ ନମ୍ବର ଡାଉନିଂ ଷ୍ଟ୍ରୀଟ୍‌କୁ ଯେଉଁ ଚିଠି ପଠାଇଲେ ତାହା ଗାନ୍ଧୀଙ୍କ ସ୍ୱଭାବସୁଲଭ ରୀତିରେ ଲେଖା ହୋଇଥିଲା ।

ସେ ଲେଖିଥିଲେ : ଆପଣ ଦେଇଥିବା ଯୁକ୍ତିର ପ୍ରତିଯୁକ୍ତି ଦେବାକୁ ନ ଯାଇ ମୁଁ ଏତିକି ମାତ୍ର ଦୃଢ଼ଭାବେ ଜଣାଇ ଦେଉଛି ଯେ, ଏ ବିଷୟଟିକୁ ମୁଁ ନିରୋଳା ଧର୍ମଗତ ବିଷୟ ବୋଲି ମନେକରେ । ଦଳିତ ଜାତିମାନେ ଦୁଇଟା ଲେଖାଏଁ ଭୋଟ ପାଇଗଲେ ଯେ ହିନ୍ଦୁ ସମାଜରେ ସେମାନଙ୍କର ସୁରକ୍ଷା ହୋଇଯିବ ତାହା ଅସଂଭବ । ତାଙ୍କୁ ହିନ୍ଦୁସମାଜର ଅନ୍ତର୍ଭୁକ୍ତ କରି ଆପଣ ଯେ ମିଳିତ ନିର୍ବାଚନମଣ୍ଡଳୀର ବ୍ୟବସ୍ଥା କରିଛନ୍ତି ତଦ୍ଦ୍ୱାରା ବି ହିନ୍ଦୁସମାଜ ଭିତରେ ବିଭେଦ ସୃଷ୍ଟି ହେବା ରୋକ ହେବ ନାହିଁ । ସବର୍ଣ୍ଣ ଓ ଅସବର୍ଣ୍ଣ ହିନ୍ଦୁମାନଙ୍କର ଯାହା ଧର୍ମଗତ ଜୀବନ ମରଣ ସମସ୍ୟା, ତାକୁ ଆପଣ, ଯେତେ ସହାନୁଭୂତିଶୀଳ ହେଲେ ବି, ନିର୍ଭୁଲ ଭାବେ ସମାଧାନ କରିବାକୁ ସମର୍ଥ ହେବେ ନାହିଁ, ଏହା ମୋର ସ୍ଥିର ମତ । ମୁଁ ଏକଥା କହିବାରେ ଆପଣ କ୍ଷୁବ୍‌ଧ ହେବେ ନାହିଁ ବୋଲି ମୋର ଅନୁରୋଧ ।

ଦଳିତ ଜାତିମାନେ ବ୍ୟବସ୍ଥା ସଭାମାନଙ୍କରେ ତାଙ୍କ ସଂଖ୍ୟା ଅନୁପାତରୁ ଅଧିକ ପ୍ରତିନିଧିତ୍ୱ ପାଇଲେ ମୋର ଆପତ୍ତି କରିବାର ନୁହେଁ । ସେମାନେ ହିନ୍ଦୁଜାତିର ଅନ୍ତର୍ଭୁକ୍ତ ହୋଇ ରହିବାକୁ ଚାହିବା ସ୍ଥଳେ, ସେମାନଙ୍କୁ କିଛିନ୍‌ମାତ୍ରାରେ ଓ କିଛିଦିନ ମାତ୍ର ପାଇଁ ଅଲଗା କରିବାକୁ ଆଇନ୍‌ଗତ ଭାବେ ଯେଉଁ ବ୍ୟବସ୍ଥା ହେଉଛି ତାହା ହିଁ ମୋ ଆପତ୍ତିର କାରଣ । ଯଦି ଆପଣଙ୍କ ସିଦ୍ଧାନ୍ତ ଅପରିବର୍ତ୍ତିତ ରହେ, ଏବଂ ତଦନୁସାରେ ଭାରତୀୟ ସମ୍ବିଧାନ ଗଢ଼ାଯାଏ, ତେବେ ହିନ୍ଦୁ ସଂସ୍କାରକମାନେ, ଦଳିତ-ଜାତିର ଭାଇମାନଙ୍କ ସାମାଜିକ ଅଭାବ ଅସୁବିଧା ଦୂର କରିବାକୁ ଜୀବନବ୍ରତ କରି ଯେଉଁ ବିସ୍ମୟକର ଅଗ୍ରଗତି କରି ଚାଲିଛନ୍ତି, ତାହା ଆପଣଙ୍କ କାର୍ଯ୍ୟ-ଦ୍ୱାରା ରୋକ ହୋଇଯିବ । ଏକଥା ଆପଣ ଉପଲବ୍‌ଧି କରୁଛନ୍ତି ତ ?

ଗାନ୍ଧୀ ପୁଣି କହିଥିଲେ ଯେ, ଅସ୍ପୃଶ୍ୟଙ୍କ ବ୍ୟତୀତ ଅନ୍ୟମାନଙ୍କ ପାଇଁ ଯେଉଁ ପୃଥକ୍ ନିର୍ବାଚନ ମଣ୍ଡଳୀମାନଙ୍କର ବ୍ୟବସ୍ଥା ହେଉଛି, ତାହାର ମଧ୍ୟ ସେ ବିରୋଧୀ । ତେବେ 'ଦଳିତ ଜାତିଙ୍କ ପୃଥକ୍ ନିର୍ବାଚନ ମଣ୍ଡଳୀର ବିରୋଧରେ ଆତ୍ମବଳି ଦେବାକୁ ମୋ ଅନ୍ତରରେ ଯେଉଁ ପ୍ରେରଣା ଆସିଛି, ଅନ୍ୟମାନଙ୍କ ବିଷୟରେ ସେ ଭଳି ପ୍ରେରଣା ମୋ ଅନ୍ତରରୁ ଆସୁନାହିଁ ।'

ଗାନ୍ଧୀଙ୍କର ଲଣ୍ଡନ ସହିତ ଚିଠିପତ୍ର ଆଦାନପ୍ରଦାନ ଏତିକିରେ ସରିଲା ।

ଗାନ୍ଧୀଙ୍କ ସଂକଳ୍ପ ଖାଲି ଯେ ମ୍ୟାକ୍‌ଡୋନାଲ୍‌ଡଙ୍କୁ ବିଭ୍ରାନ୍ତ କରି ମନେ ହୋଇଥିଲା ତାହା ନୁହେଁ, ବହୁ ଭାରତୀୟ, କେତେକ ହିନ୍ଦୁ ମଧ୍ୟ, ଏହାର କାରଣ ବୁଝି ନ ପାରି ବିବ୍ରତ ହୋଇଥିଲେ । ଗାନ୍ଧୀ ଅନଶନ କରିବେ ବୋଲି ଜବାହାରଲାଲ ଶୁଣିଲେ ଜେଲଖାନାରେ । ସେ ତାଙ୍କ ଆତ୍ମଜୀବନୀରେ ଲେଖିଛନ୍ତି, 'ଏ ଖବର ପାଇ ମୁଁ ବାପୁଙ୍କ ଉପରେ ରାଗିଗଲି । ରାଜନୀତିକ ବିଷୟକୁ ସେ ଧର୍ମ ଓ ଭାବପ୍ରବଣତାର ମୋହରେ ଆବୃତ କରି ଦେଉଛନ୍ତି । ରାଜନୀତିକ ବିଷୟରେ ବାରବାର ଭଗବାନ୍‌ଙ୍କ ନାମ ପୂରାଇବା ମୋତେ ବଡ଼ ବିରକ୍ତିକର ବୋଧ ହେଲା' । ପୁଣି, 'ମୂଳ ସମସ୍ୟାର ଗୋଟାଏ ଶାଖା ସକାଶେ ଚରମ ତ୍ୟାଗ କରିବାକୁ ସେ ବାହାରି-ବାରୁ' ନେହେରୁଙ୍କୁ ବେଶୀ ଚିଡ଼ା ମାଡ଼ିଲା । ମୂଳ ସମସ୍ୟାଟି ଭାରତର ସ୍ୱାଧୀନତା; ଅସ୍ପୃଶ୍ୟତା ତା'ର ଗୋଟିଏ ଆନୁସଂଗିକ ବିଷୟ ମାତ୍ର ବୋଲି ନେହେରୁ ମନେ କରୁଥିଲେ । ଦୁଇ ଦିନ ପର୍ଯ୍ୟନ୍ତ ନେହେରୁ ଅନ୍ଧାର ଭିତରେ ଅଣ୍ଡାଳି ହେଲା ପରି ହେଲେ । ବାପୁଙ୍କୁ ସେ ଆଉ ଜୀବନରେ ଦେଖି ପାରିବେ ନାହିଁ ଭାବି ବଡ଼ ଦୁଃଖିତ ହେଉଥାନ୍ତି ।

ନେହେରୁ ତା' ପରେ ଲେଖିଛନ୍ତି, 'ତା' ପରେ ମୋ ମନରେ ଗୋଟାଏ ଅଦ୍‌ଭୁତ ଭାବ ଦେଖା ଦେଲା । ମୋ ମନରେ ଗଭୀର ଉଦ୍‌ବେଗ ଆସିଲା, ମୁଁ ବିହ୍ୱଳିତ ହୋଇଗଲି । କିଛି ସମୟ ପରେ ମୋ ମନର ସମସ୍ତ ଆବିଳତା ଦୂର ହୋଇଗଲା, ମୁଁ ପ୍ରକୃତିସ୍ଥ ହେଲି । ଆମର ଭବିଷ୍ୟତ ଆଉ ମୋତେ ଅନ୍ଧାର ଦିଶିଲା ନାହିଁ । ମୁଁ ବିଚାରିଲି : ଲୋକଙ୍କ ମନୋବୃତ୍ତିକୁ ବାରି ଯଥାସମୟରେ ଠିକଣା କର୍ମପନ୍ଥା ଧରିବାର ବିଚିତ୍ର ଦକ୍ଷତା ତ ବାପୁଙ୍କର ଅଛି । ବର୍ତ୍ତମାନ ସେ ଯାହା କରିବାକୁ ବସିଛନ୍ତି ତାହା ମୋତେ ଯିନା ଅର୍ଥହୀନ ମନେ ହେଉଛି, ଯେଉଁ

ଶ୍ରେଷ୍ଠ କଥାଟା ପାଇଁ ସେ ଏ କାର୍ଯ୍ୟପନ୍ଥା ଧରିଛନ୍ତି, ହୁଏତ ବାପୁଙ୍କ କାର୍ଯ୍ୟର ଫଳ ସେଇ ସଂକୀର୍ଣ୍ଣ ପରିସର ମଧ୍ୟରେ ଆବଦ୍ଧ ନ ରହି, ଆମ ଜାତୀୟ ଆନ୍ଦୋଳନର ବିସ୍ତୃତ କ୍ଷେତ୍ରକୁ ମଧ୍ୟ ପ୍ରଭାବିତ କରିବ··· । ମୁଁ ଏଇପରି ଚିନ୍ତା କଲାବେଳେ, ସମଗ୍ର ଭାରତରେ ମହାତ୍ମାଙ୍କ ଅନଶନ ସଂକଳ୍ପ ଭୀଷଣ ଉତ୍ତେଜନା ସୃଷ୍ଟି କରିବାର ସଂବାଦ ଜେଲଖାନା ଭିତରେ ପ୍ରବେଶ କଲା ।··· । ମୁଁ ଭାବିଲି : ଯେରବାଡ଼ା ଜେଲରେ ଆବଦ୍ଧ ହୋଇ ରହିଥିବା ଏ କ୍ଷୁଦ୍ରକାୟ ଲୋକଟି ବାସ୍ତବିକ କେଡ଼େ ବଡ଼ ଯାଦୁକର ! ଠିକ୍ କେଉଁ ଜାଗାରେ ଟିପ ମାରିଲେ ଲୋକଙ୍କ ହୃଦୟରେ ଆନ୍ଦୋଳନ ସୃଷ୍ଟି ହେବ ସେ କଥା ଯାହାଙ୍କୁ କେମିତି ଠିକଣା ଭାବେ ଜଣା !'

ଗାନ୍ଧୀଙ୍କ ଅଲୌକିକ ଶକ୍ତି ଓ ରାଜନୈତିକ ବିଚକ୍ଷଣତା ବିଷୟରେ ନେହେରୁଙ୍କର ବି ଶ୍ରେଷ୍ଠ ଧାରଣା ହୋଇଥିଲା ।

ସତ୍ୟାଗ୍ରହୀଙ୍କ ଉପରେ ସରକାରଙ୍କ ଘୋର ଦମନଲୀଳା ଚାଲିବା ଯୋଗୁଁ ଆନ୍ଦୋଳନର ମେରୁହାଡ଼ ଭାଙ୍ଗି ପଡୁଥିଲା । ପ୍ରଥମାବସ୍ଥାର ଉତ୍ସାହ ନିଃଶେଷିତ ହୋଇ ଲୋକଙ୍କ ହୃଦୟରେ ନୈରାଶ୍ୟ ଭରି ଯାଉଥିଲା । ଏତିକି ବେଳେ ଗାନ୍ଧୀଙ୍କ ଅନଶନ ସଂକଳ୍ପର ସମ୍ବାଦ ବ୍ୟାପି ଯିବା ଫଳରେ ଜାତୀୟବାଦୀ ଭାରତର ରାଜନୈତିକ ଅବସାଦ ଏକାବେଳକେ ଦୂର ହୋଇଗଲା । ସେ ଯାହା ହେଉ, ଅନଶନର ଯେଉଁ ପ୍ରଧାନ ଫଳ ହେଲା ତା ତୁଳନାରେ, ରାଜନୈତିକ ଅବସାଦ ଦୂରୀକରଣ ସାମାନ୍ୟ ଉପସ୍ଥିତି ମାତ୍ର ।

ସବର୍ଣ୍ଣ ହିନ୍ଦୁ ଓ ହରିଜନମାନଙ୍କ ଭିତରେ କାଳକାଳରୁ ଯେଉଁ ଘୃଣାଭାବଜନିତ ବିଭେଦ ରହି ଆସିଛି, ଗାନ୍ଧୀ ହେତୁ ପାଇବା ଦିନୁଁ ତା' ବିରୁଦ୍ଧରେ ଲଢ଼ି ଆସିଥିଲେ । ଅସ୍ପୃଶ୍ୟଙ୍କୁ ଛୁଇଁଲେ ଶରୀର ଅପବିତ୍ର ହୁଏ ବୋଲି ତାଙ୍କ ମା'ଙ୍କର ଯେଉଁ ଧାରଣା ଥିଲା, ଗାନ୍ଧୀ ପିଲାଦିନେ ବି ତାକୁ ହସରେ ଉଡ଼ାଇ ଦେଉଥିଲେ । ବର୍ତ୍ତମାନ ବ୍ରିଟିଶ ସରକାର ହରିଜନମାନଙ୍କୁ, ରାଜନୈତିକ ଦୃଷ୍ଟିରୁ, ସବର୍ଣ୍ଣ ହିନ୍ଦୁଙ୍କଠାରୁ ଅଲଗା କରିବା ପାଇଁ ତାଙ୍କ ସକାଶେ ସ୍ୱତନ୍ତ୍ର ନିର୍ବାଚନମଣ୍ଡଳୀର ବ୍ୟବସ୍ଥା କରିବାରେ ସେ ବିଦ୍ରୋହ କରିବାରେ ବିଚିତ୍ରତା କ'ଣ ? ପ୍ରତିପକ୍ଷ ବି ଯାହା କରୁଛି, ମହତ୍ ଉଦ୍ଦେଶ୍ୟରେ କରୁଛି ବୋଲି ଧରିନେବା ତାଙ୍କର ସ୍ୱାଭାବିକ ପ୍ରବୃତ୍ତି ହୋଇ-

ଥିବାରୁ ସେ ଧରିନେବାକୁ ପ୍ରସ୍ତୁତ ଥିଲେ ଯେ, ମ୍ୟାକ୍‌ଡୋନାଲ୍‌ଡ୍‌ ଓ ହୋର୍‌, ଦଳିତ ଜାତିର ମଙ୍ଗଳ ହେବ ବୋଲି ତାଙ୍କୁ ଯେମିତି ଦିଶିଲା, ସେଇ ଦୃଷ୍ଟିରୁ ଦଳିତ ଜାତିପାଇଁ ହାତରେ ପାଞ୍ଚର ବ୍ୟବସ୍ଥା ସମ୍ବିଧାନରେ ଭର୍ତ୍ତି କରିବାକୁ ଯାଉଛନ୍ତି । କିନ୍ତୁ ଭାରତୀୟ ଲୋକଙ୍କ ମନୋବୃତ୍ତି ଇଂରେଜଶାସକଙ୍କ ଅପେକ୍ଷା ଗାନ୍ଧୀ ଅଧିକ ଘନିଷ୍ଠ ଭାବେ ଚିହ୍ନିଥିଲେ ବୋଲି ଭାବୁଥିଲେ । ସେ ବୁଝିଥିଲେ ଆଇନ୍‌ଗତ ବ୍ୟବସ୍ଥା ମଣିଷର ଜୀବନର ଧାରାକୁ ବଦଳାଇ ପାରିବ ନାହିଁ । ସବର୍ଣ୍ଣ ଓ ଅସବର୍ଣ୍ଣମାନେ ମିଳିତ ନିର୍ବାଚନ ମଣ୍ଡଳୀରେ ନିର୍ବାଚିତ ହେବାଦ୍ୱାରା ଦୁହିଁଙ୍କ ଭିତରେ ଯେଉଁ ମାନସିକ ସମନ୍ୱୟ ହେବ ତାହା ତ ଅସବର୍ଣ୍ଣଙ୍କ ପାଇଁ ରହିଥିବା ସ୍ୱତନ୍ତ୍ର ନିର୍ବାଚନମଣ୍ଡଳୀବ୍ୟବସ୍ଥାଦ୍ୱାରା ନଷ୍ଟ ହୋଇଯିବ । ଅସବର୍ଣ୍ଣଙ୍କ ପାଇଁ, ଅଳ୍ପ ସଂଖ୍ୟାରେ ହେଲେ ବି, ସ୍ୱତନ୍ତ୍ର ନିର୍ବାଚନମଣ୍ଡଳୀ ରଖିବାଦ୍ୱାରା ହରିଜନ ପ୍ରାର୍ଥୀମାନେ ସାଧାରଣ ସଭାରେ, ଓ ନିର୍ବାଚିତ ପ୍ରତିନିଧିମାନେ ବ୍ୟବସ୍ଥା ସଭାରେ, ସବର୍ଣ୍ଣ ହିନ୍ଦୁମାନେ ତାଙ୍କୁ ଯେଉଁ ଯେଉଁ ବିଷୟରେ ଦୂରେଇଛଡ଼ା କରି ରଖିଛନ୍ତି ତା'ରି ଆଲୋଚନାରେ ହିଁ ଆବଦ୍ଧ ରହିବେ । ହରିଜନ ଓ ସବର୍ଣ୍ଣ ହିନ୍ଦୁଙ୍କ ଭିତରେ ଥିବା ପାର୍ଥକ୍ୟକୁ ଚିରକାଳ ପାଇଁ ବଂଚାଇ ରଖିବା ହିଁ ନୂତନ ରାଜନୀତିକ ବ୍ୟବସ୍ଥାର ଏକମାତ୍ର କାର୍ଯ୍ୟ ହେବ; ସବର୍ଣ୍ଣ ହିନ୍ଦୁମାନେ ହରିଜନଙ୍କ ପ୍ରତି ଯେଉଁ ଦୁର୍ବ୍ୟବହାର କରୁଛନ୍ତି ତାକୁଇ ପାଣ୍ଠି କରି ସବର୍ଣ୍ଣ ଓ ଅସବର୍ଣ୍ଣଙ୍କ ରାଜନୀତିକ ବିଭେଦ ଚାଲୁ ରହିବ । ଗାନ୍ଧୀ ଅନ୍ତରର ସହିତ ଅନୁଭବ କରୁଥିଲେ ଯେ, ଅସ୍ପୃଶ୍ୟତା ରୂପ ଜଘନ୍ୟ ପ୍ରଥା, ହିନ୍ଦୁ ଧର୍ମର ତାତ୍ତ୍ୱିକ ମହତ୍ତ୍ୱକୁ ଧ୍ୱଂସ କରିଦେବ ଏବଂ ହରିଜନଙ୍କ ଅନ୍ତରକୁ କଳୁଷିତ କରିଦେବ ; ମ୍ୟାକ୍‌ଡୋନାଲ୍‌ଡ୍‌ ହରିଜନଙ୍କ ପାଇଁ ଯେଉଁ ବ୍ୟବସ୍ଥା କରିଛନ୍ତି ତାହାଦ୍ୱାରା ଭାରତରେ ଅସ୍ପୃଶ୍ୟତା ରୂପ ମହାପାପକୁ ଚିରସ୍ଥାୟୀ କରାଯାଉଛି ବୋଲି ସେ ଆଶଙ୍କା କରିଥିଲେ ।

ଅନୈକ୍ୟ ଭିତରେ ସଙ୍ଗତି ଓ ମତଭେଦ ସତ୍ତ୍ୱେ ସଦ୍‌ଭାବ ଦ୍ୱାରା ହିଁ ଚିନ୍ତା ଓ କାର୍ଯ୍ୟରୁ ହିଂସା ଦୂର ହୋଇପାରିବ ବୋଲି ଗାନ୍ଧୀ ବିଶ୍ୱାସ କରୁଥିଲେ । ଲୋକଙ୍କୁ ପୃଥକ୍‌ ପୃଥକ୍‌ ଗୋଷ୍ଠୀରେ ବିଭକ୍ତ କରିବାଦ୍ୱାରା ଯୁଦ୍ଧ ପାଇଁ ପଥ ପରିଷ୍କାର କରାଯିବ ବୋଲି ସେ ବିଶ୍ୱାସୁଥିଲେ । ହିନ୍ଦୁ-ମୁସଲମାନ ଏକତା ପାଇଁ ଗାନ୍ଧୀ ଏଥିପୂର୍ବେ ଅନଶନ କରିଥିଲେ ; ଭାରତ ଦୁଇ ଭାଗରେ ବିଭକ୍ତ ହେବା ସେ ଚାହୁଁ ନ ଥିଲେ । ଏବେ ବ୍ରିଟିଶ ସରକାର ଯେଉଁ ବ୍ୟବସ୍ଥା କରୁଛନ୍ତି ତାଦ୍ୱାରା ଭାରତ ତିନିଭାଗରେ ବିଭକ୍ତ ହୋଇ-

ଯିବାର ସମ୍ଭାବନା ତାଙ୍କୁ ଦଶିଲା । ହିନ୍ଦୁ-ମୁସଲମାନ ବିଭେଦ କେବଳ ରାଜନୀତିକ ଦୃଷ୍ଟିରୁ ବିପଜ୍ଜନକ ; କିନ୍ତୁ ହିନ୍ଦୁ-ହରିଜନ ବିଭେଦ ରାଜନୀତିକ ଦୃଷ୍ଟିରୁ ଯେମିତି ବିପଜ୍ଜନକ, ଧର୍ମ ଦୃଷ୍ଟିରୁ ସେହିପରି ଆତ୍ମଘାତୀ । ହିନ୍ଦୁ ଓ ହରିଜନଙ୍କ ମଧ୍ୟରେ ଯେଉଁ ଧର୍ମଗତ ପାର୍ଥକ୍ୟ ଅଛି ତାହା ରାଜନୀତିକୁ ପ୍ରସରି ଆହୁରି ବିସ୍ତାରିତ ହେଉ, ଏହା ଗାନ୍ଧୀ ସମର୍ଥନ କରିବାକୁ ସମର୍ଥ ନ ଥିଲେ ।

ନିଜର ଅନଶନ-ସଂକଳ୍ପର ଯଥାର୍ଥତା ବୁଝାଇ ଗାନ୍ଧୀ କହିଥିଲେ, 'ଯେ କୌଣସି ଆକାର ବା ପ୍ରକାରରେ ଦଳିତ ଜାତିମାନଙ୍କୁ ସ୍ୱତନ୍ତ୍ର ନିର୍ବାଚନମଣ୍ଡଳୀରେ ରଖିବାକୁ ଯେଉଁ ସିଦ୍ଧାନ୍ତ ହୋଇଛି, ମୁଁ ତାହାର ବିରୁଦ୍ଧରେ ଅନଶନ କରୁଛି । ଦଳିତ ଜାତିମାନଙ୍କ ପାଇଁ ସ୍ୱତନ୍ତ୍ର ନିର୍ବାଚନ-ମଣ୍ଡଳୀ ପ୍ରସ୍ତାବ ଭାରତର ଜାତୀୟ ଜୀବନ ପ୍ରତି ଏକ ବିପଦ । ଏ ବିପଦର ଆଶଂକା ସମୂଳେ ଦୂର ହେଲେ ଯାଇ ମୋର ଅନଶନ ବନ୍ଦ ହେବ ।' ଗାନ୍ଧୀ ବ୍ରିଟିଶଙ୍କ ନିଷ୍ପତ୍ତି ବିରୁଦ୍ଧରେ ଏ ଅନଶନ କରୁ ନ ଥିଲେ । ବ୍ରିଟିଶ ସରକାର ସ୍ପଷ୍ଟ ଘୋଷଣା କରିଥିଲେ ଯେ, ତାଙ୍କ ପକ୍ଷରୁ ଯେଉଁ ବ୍ୟବସ୍ଥା ହୋଇଛି ତା'ଠାରୁ ଭିନ୍ନ, କିନ୍ତୁ ଉଭୟ ସଂପ୍ରଦାୟଦ୍ୱାରା ସ୍ୱୀକୃତ, ଶ୍ରେଷ୍ଠ ଦେବା ବ୍ୟବସ୍ଥା ହୋଇପାରିଲେ ସରକାର, ନିଜର ନିଷ୍ପତ୍ତି ଛାଡ଼ି, ବିକଳ୍ପ ବ୍ୟବସ୍ଥାଟି ଗ୍ରହଣ କରି ନେବାକୁ ପ୍ରସ୍ତୁତ ଅଛନ୍ତି । ଗାନ୍ଧୀ ଜଣାଇଦେଲେ, 'ହରିଜନମାନଙ୍କ ପାଇଁ ନ୍ୟାଯ୍ୟ ଧର୍ମାଗ୍ରହମୂଳକ ସଂସ୍କାର ଗ୍ରହଣ କରିବାକୁ ହିନ୍ଦୁଙ୍କର ବିବେକ ବୁଦ୍ଧି ଜାଗ୍ରତ କରିବା ଉଦ୍ଦେଶ୍ୟରେ ସେ ଅନଶନ କରିଛନ୍ତି ।'

ସେପ୍ଟେମ୍ବର ୧୩ ତାରିଖରେ ଗାନ୍ଧୀ ଘୋଷଣା କଲେ ଯେ ୨୦ ତାରିଖଠାରୁ ସେ ଅମରଣ ଅନଶନ ଆରମ୍ଭ କରିବେ । ଏହି ଘୋଷଣା ଫଳରେ ଭାରତରେ ଅଦୃଷ୍ଟପୂର୍ବ ପ୍ରତିକ୍ରିୟା ଆରମ୍ଭ ହୋଇଗଲା ।

୧୩ ତାରିଖରେ ରାଜନୀତିକ ନେତା ଓ ଧର୍ମଗୁରୁମାନେ କାମରେ ଲାଗିଗଲେ । ଲେଜିସ୍‌ଲେଟିଭ୍ ଆସେମ୍ବ୍ଲିର ଜଣେ ହରିଜନ ପ୍ରତିନିଧି ଶ୍ରୀଯୁକ୍ତ ଏମ୍. ସି. ରାଜା ହରିଜନମାନଙ୍କ ପାଇଁ ହେଉଥିବା ସ୍ୱତନ୍ତ୍ର ନିର୍ବାଚନମଣ୍ଡଳୀ ବିଷୟରେ ଗାନ୍ଧୀଙ୍କ ମତର ପୂର୍ଣ୍ଣ ସମର୍ଥନ ଜଣାଇଲେ । ସଂବିଧାନ ବିଷୟରେ ପାରଦର୍ଶୀ ପ୍ରବୀଣ ଆଇନଜ୍ଞ ସାର୍ ତେଜବାହାଦୁର ସାପ୍ରୁ, ଗାନ୍ଧୀଙ୍କୁ ସାଙ୍ଗେ ସାଙ୍ଗେ ବନ୍ଦୀଶାଳାରୁ ମୁକ୍ତ କରିଦେବା ସକାଶ ସରକାରଙ୍କୁ

ଲେଖିଲେ । ମାନ୍ଦ୍ରାଜବାସୀ ମୁସଲିମ ନେତା ୟାକୁବ ହୋସେନ୍, ସ୍ୱତନ୍ତ୍ର ନିର୍ବାଚନମଣ୍ଡଳୀ ପ୍ରସ୍ତାବ ପ୍ରତ୍ୟାଖ୍ୟାନ କରିବାକୁ ହରିଜନମାନଙ୍କୁ ପ୍ରବର୍ତ୍ତାଇ ବିବୃତ୍ତି ଦେଲେ । ହରିଜନମାନଙ୍କୁ, ଦେବାଳୟରେ ପ୍ରବେଶ କରିବାକୁ, କୂଅରୁ ପାଣି ଖାଇବାକୁ, ବିଦ୍ୟାଳୟରେ ତାଙ୍କ ପିଲାଙ୍କୁ ହିନ୍ଦୁପିଲାଙ୍କ ସଙ୍ଗେ ବସିବାକୁ ଦେବାକୁ ଓ ନିର୍ବାଧରେ ସାଧାରଣ ରାସ୍ତାଘାଟ ବ୍ୟବହାର କରିବାକୁ ହିନ୍ଦୁମାନେ ମଙ୍ଗିଯାଇ ମହାତ୍ମା ଗାନ୍ଧୀଙ୍କ ଜୀବନରକ୍ଷା କର ବୋଲି, ରାଜେନ୍ଦ୍ର ପ୍ରସାଦ ହିନ୍ଦୁମାନଙ୍କୁ ଆହ୍ୱାନ କଲେ । ନେତାମାନଙ୍କର ଗୋଟିଏ ସମ୍ମିଳନୀ ପଣ୍ଡିତ ମାଲବୀୟ ୧୯ ତାରିଖ ଦିନକୁ ଡାକିଲେ । ୨୦ ତାରିଖ ଦିନ ସମସ୍ତେ ଉପବାସ ରହି ଭଗବତ୍ ପ୍ରାର୍ଥନା କରନ୍ତୁ ବୋଲି ରାଜଗୋପାଳାଚାରୀ ଦେଶବାସୀଙ୍କୁ ନିବେଦନ କଲେ ।

ଗାନ୍ଧୀଙ୍କ ସଙ୍ଗେ ସାକ୍ଷାତ କରିବାକୁ ଅନେକ ପ୍ରତିନିଧିଦଳ ଜେଲ କର୍ତ୍ତୃପକ୍ଷଙ୍କ ଅନୁମତି ମାଗିଲେ । ସରକାର ବିନା ଆପତ୍ତିରେ କାରାଦ୍ୱାର ମୁକ୍ତ କରି ଦେଇ ଯେ କୌଣସି ବିଷୟରେ ଯେତେ ସମୟ ଇଚ୍ଛା ସେତେ ସମୟ ପ୍ରତିନିଧିଦଳ ଗାନ୍ଧୀଙ୍କ ସଙ୍ଗେ ରହିପାରନ୍ତି ବୋଲି ଅନୁମତି ଦେଲେ । ପିତାଙ୍କ ସଙ୍ଗେ ଆଲୋଚନା କରିବାକୁ ଆସୁଥିବା ପ୍ରତିନିଧିମାନଙ୍କର ସହାୟକ ହେବା ପାଇଁ ଦେବଦାସ ଗାନ୍ଧୀ ଆସି ଜେଲଖାନାରେ ପହଞ୍ଚିଲେ । ସାମ୍ବାଦିକ-ମାନେ ଗାନ୍ଧୀଙ୍କ ସଙ୍ଗେ ଦେଖା କରିବାକୁ ନିର୍ବାଧ ଅନୁମତି ପାଇଲେ ।

ସ୍ୱାଭାବତରେ ଭାରତ ଭିତରେ ଓ ବାହାରେ ବହୁ ବନ୍ଧୁଙ୍କ ପାଖକୁ ଗାନ୍ଧିଜୀ ଦୀର୍ଘ ପତ୍ରମାନ ଲେଖୁଥାନ୍ତି । ମିସ୍ ସ୍ଲେଡ୍ (ମୀରା ବେନ୍)ଙ୍କ ପାଖକୁ ଗାନ୍ଧୀ ଲେଖିଥିଲେ, 'ଯେଉଁ ସଂକଳ୍ପ କରିଛି ସେଥିରୁ ଓହରିଯିବାକୁ ଉପାୟ ନାହିଁ । ଅନଶନ କରିବା ଏକାଧାରରେ କର୍ତ୍ତବ୍ୟ ଓ ସୁଯୋଗ ବୋଲି ମୁଁ ଉପଲବ୍ଧି କରୁଛି । ପୁରୁଷେ କାହିଁକି, ବହୁ ପୁରୁଷରେ ଏଭଳି ସୁଯୋଗ ମଣିଷକୁ କ୍ୱଚିତ୍ ମିଳେ ।' ବନ୍ଦୀଶାଳର ମାର୍ଜାର ପରିବାର ଉପରେ ତାଙ୍କର ଦୃଷ୍ଟି ଥିଲା । ତାଙ୍କ ବିଷୟରେ ମିସ୍ ସ୍ଲେଡ୍‌ଙ୍କୁ ଉପରୋକ୍ତ ଚିଠିରେ ସେ ପୁଣି ଲେଖିଥିଲେ । 'ୟାଙ୍କ ପରିବାରର ଇତିମଧ୍ୟରେ ସଂଖ୍ୟାବୃଦ୍ଧି ହୋଇଛି ; ଆଗରୁ ଲେଖିଛି କି ନାହିଁ ମନେ ପଡୁନାହିଁ, ପ୍ରସବବେଦନା ହେଉଥିଲା ବେଳେ ଓ ତା'ପରେ ଦୁଇ ତିନିଦିନ ଯାଏଁ, ବିରାଡ଼ିଟି ମଣିଷଙ୍କପରି ହେଉଥାଏ । ସେ ଆସି ଆମ ଦେହରେ ଘଷି ହେଉଥାଏ ଏବଂ ଆମେ ତାକୁ ଆଉଁସିବାକୁ ଲୋଡ଼ୁଥାଉ । ତା'ର ଗତିବିଧି ବଡ଼ ହୃଦୟସ୍ପର୍ଶୀ ହେଉଥାଏ ।

ଝୁଆଙ୍କୁ ତାର ଆଦର ଓ ଯତ୍ନ, ଦେଖି ବଡ଼ ଆନନ୍ଦ ଲାଗୁଥାଏ । ତୁମ ସମସ୍ତଙ୍କ ପ୍ରତି ଆମ ଏଠାର ସମସ୍ତଙ୍କ ଶୁଭେଚ୍ଛା ଜଣାଉଛୁ , ବାପୁ ।'

୨୦ ତାରିଖ । ପାହାନ୍ତିଆ ସାଢ଼େ ଦୁଇଟାରେ ଶେଯ ଛାଡ଼ି ଗାନ୍ଧୀ ରବୀନ୍ଦ୍ରନାଥଙ୍କ ପାଖକୁ ପତ୍ର ଖଣ୍ଡିଏ ଲେଖିଲେ । ତାଙ୍କ ସମର୍ଥନ ପାଇବାକୁ ଗାନ୍ଧୀଙ୍କର ସବୁବେଳେ ଆକାଂକ୍ଷା ଥାଏ । ମହାତ୍ମା ଚିଠି ଆରମ୍ଭ କଲେ, 'ବର୍ତ୍ତମାନ ମଙ୍ଗଳବାର ପାହାନ୍ତିଆର ୩ଟା ବେଳ । ମଧ୍ୟାହ୍ନରେ ମୁଁ ଭୀଷଣ ପରୀକ୍ଷାର ଏରୁଣ୍ଡି ପାର ହେବ । ମୋର ଏ ସଂକଳ୍ପ ପ୍ରତି ଯଦି ଆପଣଙ୍କର ସମର୍ଥନ ଥାଏ ତେବେ ଆପଣ ଏଥିପ୍ରତି ଶୁଭେଚ୍ଛା ଜଣାଇବେ, ଏହା ମୋର ଏକାନ୍ତ ଅଭିଳାଷ । ମୂଳରୁ ଆପଣ ମୋର ପ୍ରକୃତ ବନ୍ଧୁ ହୋଇ ଆସିଛନ୍ତି, କାରଣ ଆପଣ ଅକୃତ୍ରିମ ଭାବେ ଆପଣଙ୍କର ମତ ସ୍ପଷ୍ଟଭାବେ କହନ୍ତି । ମନରେ ଯାହା ବିଗୃରୁଥାନ୍ତି ତାହା କଥାରେ ପ୍ରକାଶ କରିବା ହେତୁ ମୁଁ ବିଶେଷ ଉପକୃତ ହୁଏ······। ମୋର ସଂକଳ୍ପ ଯଦି ଆପଣଙ୍କର ମନଃପୂତ ନ ହେଉଥାଏ, ତେବେ ଆପଣ ନିଶ୍ଚୟ ସମାଲୋଚନା କରି ପତ୍ର ଲେଖିବେ । ତାହା ମୁଁ ଅନଶନ ବେଳେ ପାଇଲେ ମଧ୍ୟ ତାକୁ ବିଶେଷ ଆଦରରେ ଗ୍ରହଣ କରିବ । ଭୁଲ କରିଛି ବୋଲି ବୁଝିଲେ, ମୁଁ ସେଥିପାଇଁ ସର୍ବ-ସାଧାରଣରେ ପରିଷ୍କାର ତାହା ମାନିଯିବି, ଦୋଷ ସ୍ୱୀକାର କରିବାର ଫଳ ଯେତେ ଅପ୍ରୀତିକର ହେଉ ପଛେ । ମୋର ଦୋଷକୁ ମୁଁ ନ ମାନିବି, ଏଭଳି ଅହଂକାରୀ ମୁଁ ନୁହେଁ । ଆଉ ଯଦି, ମୋର ସଂକଳ୍ପ ଆପଣଙ୍କ ମନୋମତ ହୁଏ, ତେବେ ଆପଣଙ୍କ ଆଶୀର୍ବାଦ ମୁଁ କାମନା କରେଁ । ଆପଣଙ୍କ ଆଶୀର୍ବାଦ ମୋତେ ବଳ ଦେବ···।'

ଏ ପତ୍ର ଡାକରେ ଦେବାର ଅବ୍ୟବହିତ ପରେ ଗାନ୍ଧୀ ରବୀନ୍ଦ୍ର-ନାଥଙ୍କଠାରୁ ଖଣ୍ଡିଏ ଟେଲିଗ୍ରାମ୍ ପାଇଲେ । ଟେଲିଗ୍ରାମରେ ଥିଲା , 'ଭାରତର ଏକତା ଏବଂ ସାମାଜିକ ସଂହତି ପାଇଁ ବହୁମୂଲ୍ୟ ଜୀବନ ତ୍ୟାଗ କରିବା ମଧ୍ୟ ଶ୍ଳାଘ୍ୟ···। ମୁଁ ଆକୁଳଭାବେ ଆଶାକରେ ଆପଣଙ୍କ ଆମରଣ ଅନଶନ-ରୂପ ଜାତୀୟ ଦୁର୍ଘଟଣା ଚରମ ବିପତ୍ତିରେ ପର୍ଯ୍ୟବସିତ ହେବା ଯାଏଁ ଆମ୍ଭେମାନେ ଉଦାସୀନ ହୋଇ ରହିବୁ ନାହିଁ । ଆପଣଙ୍କ ଅଲୌକିକ ତପସ୍ୟା ବେଳେ, ଆମ୍ଭେମାନେ ଦୁଃଖପୂର୍ଣ୍ଣ ହୃଦୟରେ ଆପଣଙ୍କ ପ୍ରତି ଗଭୀର ଶ୍ରଦ୍ଧା ଓ ଭକ୍ତିର ସହିତ ଆପଣଙ୍କ ମଙ୍ଗଳ କାମନା କରୁଥିବୁ ।'

ଗାନ୍ଧୀ ଉତ୍ତର ଦେଲେ, 'ଆପଣଙ୍କ ଶ୍ରଦ୍ଧା ଓ ମହତ୍ତ୍ୱବ୍ୟଞ୍ଜକ ତାର-

ବାର୍ତ୍ତା ପାଇଁ ସାଧୁବାଦ ଜଣାଉଛି । ମୁଁ ଯେଉଁ ଝଡ଼ଝଞ୍ଜା ଭିତରେ ପଶିବାକୁ ଯାଉଛି, ତାହାର ମୁକାବିଲା କରିବାକୁ ଆପଣଙ୍କ ବାର୍ତ୍ତା ମୋତେ ବଳ ଦେବ ।'

ସେଇ ପୂର୍ବାହ୍ନ ସାଢ଼େ ଏଗାରଟା ବେଳେ ଗାନ୍ଧୀ ତାଙ୍କର ଶେଷ ଆହାର ଗ୍ରହଣ କଲେ । ଗରମ ପାଣିରେ ଲେମ୍ବୁରସ ଓ ମହୁ ପକାଇ ଗ୍ଲାସେ ମାତ୍ର । ଲକ୍ଷ ଲକ୍ଷ ଭାରତୀୟ ସେ ଦିନ ସାରା ତମାମ ଉପବାସ ରହିଲେ । ଦେଶତମାମ ଭଗବତ୍‌-ପ୍ରାର୍ଥନା ଗାନ କରାଯାଉଥାଏ ।

ସେ ଦିନ ରବୀନ୍ଦ୍ରନାଥ ଠାକୁର, ଯାହାଙ୍କୁ କି ଗାନ୍ଧୀ ଓ ଭାରତ ଶ୍ରଦ୍ଧାରେ କବି ବୋଲି ଆଖ୍ୟାତ କରୁଥିଲେ, ତାଙ୍କ ଶାନ୍ତିନିକେତନରେ ବକ୍ତୃତା ଦେଇ କହିଥିଲେ, 'ସୂର୍ଯ୍ୟ ପରାଗଗ୍ରସ୍ତ ହେଲେ ପୃଥିବୀରେ ଯେପରି ଛାଇ ମାଡ଼ିଯାଏ, ସେହିପରି ଗୋଟାଏ ଛାଇ ଆଜି ଭାରତରେ ଘେନେଇ ଆସୁଛି । ଆମ ବିରାଟ ଦେଶର ସମସ୍ତେ ଆଜି ଏକ ଘୋର ଆଶଂକାର ଦାରୁଣ ବ୍ୟଥାରେ ବ୍ୟଥିତ । ସମସ୍ତଙ୍କୁ ଏ ବ୍ୟଥା ସମାନ ଭାବରେ ଘୋଟିଛି ଏଇକଥା ମନେ ପଡ଼ିଲେ ବ୍ୟଥାର ମର୍ମପୀଡ଼ାରେ ଆଶ୍ୱାସନା ମିଳୁଛି ଏବଂ ଗୋଟାଏ କିପରି ଅଲୌକିକ ମହତ୍ତ୍ୱର ଉପଲବ୍ଧି ହେଉଛି । ଯେଉଁ ମହାତ୍ମା ଜୀ ନିଜର ଆଜୀବନ ଆତ୍ମୋତ୍ସର୍ଗଦ୍ୱାରା ଭାରତକୁ ଯଥାର୍ଥରେ ଆପଣାର କରିପାରିଛନ୍ତି ସେ ଆଜିଠାରୁ ତାଙ୍କର ଚରମ ତ୍ୟାଗର ସଂକଳ୍ପ ଆରମ୍ଭ କରିଛନ୍ତି ।'

ରବୀନ୍ଦ୍ରନାଥ ମହାତ୍ମାଜୀଙ୍କ ଅନଶନର ସାରମର୍ମ ବୁଝାଇ କହିଥିଲେ :

'ପ୍ରତ୍ୟେକ ଦେଶର ଗୋଟିଏ ଆଭ୍ୟନ୍ତରୀଣ ଭୌଗୋଳିକ ସ୍ଥିତି ଅଛି । ସେଥିରେ ଅବସ୍ଥାନ କରେ ଦେଶର ଆତ୍ମା । ବାହାରର ଶକ୍ତି ପ୍ରୟୋଗ କରି ଆତ୍ମାର ସେ ଆସ୍ଥାନରୁ ଇଞ୍ଚେ ବି ଜାଗା ଅପହରଣ କରାଯାଇ ନ ପାରେ । ବୈଦେଶିକ ଶାସକ ଏ ଅବସ୍ଥାନର ବାହାର ଦୁଆରେ ରହିଯାଏ...... । ଆତ୍ମାର ଏହି ମହାସ୍ଥାନରେ ମହାନ୍ ଆତ୍ମା ପ୍ରଭୁତ୍ୱ ବିସ୍ତାର କରି ରହିଥାନ୍ତି । ସେ ମହତ୍ମାଙ୍କର ମର ଶରୀର ନଷ୍ଟ ହେଲା ପରେ ମଧ୍ୟ ତାଙ୍କ ପ୍ରଭୁତ୍ୱ ନାଶ ହୁଏ ନାହିଁ... । ମହାତ୍ମାଜୀ ଆଜି ଯେଉଁ ତପସ୍ୟା ଆରମ୍ଭ କରିଛନ୍ତି ତାହା ଅର୍ଥହୀନ ବ୍ରତ ଉପବାସ ନୁହେଁ । ଏହି ବ୍ରତର ମାଧ୍ୟମରେ ସେ ଭାରତ ଓ ସମଗ୍ର ପୃଥିବୀକୁ ଗୋଟିଏ ଆଧ୍ୟାତ୍ମିକ ସନ୍ଦେଶ ଦେଇଛନ୍ତି... । ସେ ସନ୍ଦେଶର ମର୍ମକଥା ଆମ୍ଭେମାନେ ବୁଝିବାକୁ

ଚେଷ୍ଟା କରିବା ଉଚିତ…… । ସମାଜରେ କେତେକ ଲୋକଙ୍କ ମନୁଷ୍ୟତା ଯଦି ସ୍ଥାୟୀ ଭାବେ ବ୍ୟଙ୍ଗ କରି ଦିଆଯାଏ, ତେବେ ସେ ସମାଜ ସଭ୍ୟତାରେ ବିକଶିତ ହେବା ସମ୍ଭବ ନୁହେଁ… । ଆମେ ଯାହାଙ୍କୁ ତଳେ ପକାଇ ଦେଇଥାଏଁ, ସେମାନେ ଆମକୁ ତଳକୁ ଟାଣିନେବା ଅବଶ୍ୟଂଭାବୀ… । ଯେଉଁ ଲୋକ ଅସହାୟ ଓ ଆମ ଜ୍ଞାତିକୁଟୁମ୍ବ ପରିସରର ବାହାରେ, ତାକୁ ଅବମାନନା କରିବାଦ୍ୱାରା ଆମେ ନିଜ ମାନବିକତାର ଅବମାନନା କରୁଥାଉଁ… । ଆମ ଦେଶରେ ଜାତିଭେଦ ଜନିତ ଯେଉଁ ବିଭେଦ ରହିଛି ତାହାର ଅନିଷ୍ଟକର ପ୍ରଭାବ ବିଷୟରେ ମହାତ୍ମାଜୀ ବାରଂବାର ଆମକୁ ଚେତାବନି ଦେଇଛନ୍ତି… । ଆମ ସମାଜରେ ବହୁକାଳ ହେଲା ଚେର ମାରି ରହିଥିବା ଏହି ନୈତିକ ଦୁବଳତା ଦୂର କରିବା ପାଇଁ ଆଜିର ଏହି ଅନଶନ ସଂକଳ୍ପଦ୍ୱାରା ମହାତ୍ମାଜୀ ଆମକୁ ଚରମ ସତର୍କବାଣୀ ଶୁଣାଇଛନ୍ତି… । ମହାତ୍ମାଜୀ ବାଧ୍ୟ ହୋଇ ଆଜି ଯେଉଁ ପନ୍ଥା ଗ୍ରହଣ କରିଛନ୍ତି, ତା’ ଯୋଗୁଁ ଇଂରେଜ ଲୋକେ ଗୋଲକଧନ୍ଦାରେ ପଡ଼ିଯାଇଛନ୍ତି । ଏ ଅନଶନର ଉଦ୍ଦେଶ୍ୟ କଣ ତାହା ସେମାନେ ବୁଝି ପାରୁନାହାନ୍ତି ବୋଲି କହୁଛନ୍ତି । ଇଂରେଜମାନଙ୍କ ବିଚାରଧାରା ଓ ମହାତ୍ମାଜୀଙ୍କ ବିଚାରଧାରା ମଧ୍ୟରେ ମୌଳିକ ପାର୍ଥକ୍ୟ ଥିବାରୁ ହିଁ ସେମାନେ ସ୍ୱାଙ୍କ କାର୍ଯ୍ୟର ମର୍ମ ବୁଝି ପାରୁ ନାହାନ୍ତି ବୋଲି ମୁଁ ମନେକରେ… । ଗ୍ରେଟ୍‌ବ୍ରିଟେନ୍‌ରୁ ଆୟର୍‌ଲାଣ୍ଡକୁ ଅଲଗା କରିବାକୁ ବାଧ୍ୟ ହେଲା ବେଳ କଥା ମନେ ପକାଇବାକୁ ମୁଁ ଇଂରେଜ ଲୋକଙ୍କୁ ଅନୁରୋଧ କରୁଛି । ସେତେବେଳେ କି ହଣାକଟା ନ ହେଲା ? ତାଙ୍କର ଘର ପାଖର ମାଟି, ମଣିଷ ରକ୍ତରେ ରଞ୍ଜିତ ହୋଇ ଯାଇଥିଲା । କାହିଁକି ? ସେତେବେଳେ ଯେଉଁ ଇଂରେଜ ଲୋକେ ବିଚାରିଲେ ଯେ ଆୟର୍‌ଲାଣ୍ଡ ଗ୍ରେଟ୍ ବ୍ରିଟେନ୍‌ରୁ ଅଲଗା ହୋଇଯିବାଦ୍ୱାରା ତାଙ୍କ ସାମ୍ରାଜ୍ୟର ସଂହତିରେ ଆଞ୍ଚ ଆସିବ, ସେମାନେ ମରିବାକୁ ଓ ମାରିବାକୁ ଟିକିଏ ବି ଦ୍ୱିଧା କଲେ ନାହିଁ ; ସଭ୍ୟ ମାନବସମାଜର ସମସ୍ତ ସଦାଚାର ଓ ମହତ୍ତ୍ୱକୁ ଛିନ୍ନଛିନ୍ନ କରିଦେବାକୁ ସେମାନଙ୍କର ଟିକିଏ ବି ସଂକୋଚ ହେଲା ନାହିଁ ।’

ରବୀନ୍ଦ୍ରନାଥ ଏହାପରି ଉପକ୍ରମ କରି ବୁଝାଇଦେଲେ—ସାମ୍ରାଜ୍ୟର ସଂହତି ଭାଙ୍ଗିଯିବାକୁ ଦେବେ ନାହିଁ ବୋଲି ଇଂରେଜ ଲୋକେ ଆୟର୍‌ଲାଣ୍ଡରେ ନିର୍ମମ ହତ୍ୟାକାଣ୍ଡ ଭିଆଇ ରକ୍ତନଦୀ ବୁହାଇ ଦେଇଥିବା ସ୍ଥଳେ,

ଭାରତୀୟ ସମାଜର ଐକ୍ୟ ଭାଙ୍ଗିବାକୁ ଦେବେ ନାହିଁ ବୋଲି ମାତ୍ର ଜଣେ ଲୋକ, ନିଜକୁ ବଳି ଦେବାକୁ ପ୍ରସ୍ତୁତ ହୋଇଛନ୍ତି । ଅହିଂସାର ଶକ୍ତି ସେୟୁ । ସେଇଥି ପାଇଁ କ'ଣ ଇଂରେଜ ଲୋକଙ୍କ ମଗଜରେ ଗାନ୍ଧୀଙ୍କ ବ୍ରତର ମର୍ମ ଢୁକୁ ନ ଥିଲା ?

ଏହି ଅନଶନର ପରିଣାମରେ ଗାନ୍ଧୀଙ୍କ ଦେହତ୍ୟାଗର ସଂଭାବନା ଅଛି ବୋଲି ରବୀନ୍ଦ୍ରନାଥ ମନେ କରୁଥିଲେ । ଗାନ୍ଧୀ ଜୀବନ ହରାଇ ପାରନ୍ତି, ଏ ସମ୍ଭାବନା ମନରେ ଜାତ ହେବା ମାତ୍ରେ ସମଗ୍ର ଦେଶର ମଜ୍ଜା କମ୍ପି ଗଲା । ଗାନ୍ଧୀଙ୍କୁ ରକ୍ଷା କରିବାକୁ ଯଦି କିଛି କରାଯାଇ ନ ପାରେ ତେବେ ଭାରତର ପ୍ରତ୍ୟେକ ହିନ୍ଦୁଙ୍କୁ ହତ୍ୟା ଦୋଷ ଲାଗିବ ବୋଲି ଭାରତର ହିନ୍ଦୁ ସଂପ୍ରଦାୟର ନେତାମାନେ ଭାବୁଥାନ୍ତି ।

ବନ୍ଦୀଶାଳାର ନୀରବ ନିସ୍ତବ୍ଧ ଅଙ୍ଗନର ଗୋଟିଏ ନୁଆଁଣିଆଁ ଆମ୍ବଗଛର ଛାଇରେ ମହାତ୍ମା ଗାନ୍ଧୀ ଶୋଇଥାନ୍ତି ଖଣ୍ଡେ ଧଳାରଙ୍ଗ ବୋଳା ହୋଇଥିବା ଲୁହା ଖଟରେ । ପଟେଲ ଓ ମହାଦେବ ଦେଶାଇ ତାଙ୍କ ଖଟପାଖେ ବସିଥାନ୍ତି । ଶ୍ରୀମତୀ ନାଇଡ଼ୁ ସେଇ ଜେଲର ସ୍ତ୍ରୀଲୋକଙ୍କ ଖୁଆଡ଼ରେ ଥିଲେ । ଗାନ୍ଧୀଙ୍କ ଶୁଶ୍ରୂଷା କରିବାକୁ ଓ ସେ ଯେପରି ଅତ୍ୟଧିକ ପରିଶ୍ରମ ନ କରନ୍ତି ସେଥିରୁ ତାଙ୍କୁ ରୋକିବାକୁ ଶ୍ରୀମତୀ ନାଇଡ଼ୁଙ୍କୁ ଗାନ୍ଧୀଙ୍କ ଖୁଆଡ଼କୁ ବଦଳି କରାଯାଇଥାଏ । ଖଟପାଖରେ ଗୋଟିଏ ଟୁଲ୍‌ରେ କେତେ-ଖଣ୍ଡ ବହି, ଲେଖିବାକୁ କାଗଜ, ପାଣି ବୋତଲ କେତୋଟି, ଲୁଣ ଓ ବାଇହୋଡ଼ା ରଖା ହୋଇଥାଏ ।

ବାହାରେ ନେତାମାନେ ସମିତିରେ ବସି ଆଲୋଚନା କରୁଥାନ୍ତି, କେମିତି ମହାତ୍ମା ଅନଶନ ଭାଙ୍ଗିବେ । ତାଙ୍କ ମରଣ ବିରୁଦ୍ଧରେ ସେମାନେ ସତତ ଅଭିଯାନ ଚଳାଇଥାନ୍ତି । ସେପ୍‌ଟେମ୍ବର ୨୦ ତାରିଖରେ ହିନ୍ଦୁ ନେତା-ମାନେ ବମ୍ବେର ବିରଳା ଭବନରେ ଏକାଠି ହୋଇଥିଲେ । ସାପ୍ରୁ, ସାର୍ ଚୁନିଲାଲ ମେହେଟା, ସେ ବର୍ଷର କଂଗ୍ରେସ ସଭାପତି ରାଜଗୋପାଳାଚାରୀ, ଗାନ୍ଧୀଙ୍କର ବନ୍ଧୁ ଧନିକ ଶିଳ୍ପପତି ଘନଶ୍ୟାମଦାସ ବିରଳା, ରାଜେନ୍ଦ୍ରପ୍ରସାଦ, ଜୟକାର, ବହୁ ସ୍କୁଲକୁ ସାହାଯ୍ୟ ଦେଉଥିବା ଲକ୍ଷପତି ସାର୍ ପୁରୁଷୋତ୍ତମ ଦାସ ଠାକୁରଦାସ ପ୍ରମୁଖ ବହୁ ବିଶିଷ୍ଟ ଲୋକ ଏ ସଭାରେ ଥିଲେ । ଅସ୍ପୃଶ୍ୟ ସଂପ୍ରଦାୟର ପ୍ରତିନିଧି ଦୁଇଜଣ ବି ଥିଲେ—ଡକ୍ଟର୍ ସୋଲଙ୍କି ଓ ଡକ୍‌ଟର୍ ଆମ୍ବେଦ୍‌କର ।

ଆମ୍ବେଦ୍‌କର୍ ଥିଲେ ଜଣେ ପ୍ରସିଦ୍ଧ ଆଇନ୍‌ଜୀବୀ । ଆନ୍ତର୍ଜାତିକ ଅଭିଜ୍ଞତା ବି ତାଙ୍କର ଥିଲା । ଲଣ୍ଡନର ଗୋଲଟେବୁଲ ବୈଠକରେ ସେ ବ୍ରିଟିଶ୍ କର୍ତ୍ତୃପକ୍ଷଙ୍କର ଖୁବ୍ ଦୃଷ୍ଟି ଆକର୍ଷଣ କରିଥିଲେ । ସେ ଖୁବ୍ ହୃଷ୍ଟପୁଷ୍ଟ ଓ ମଜବୁତ୍ ଲୋକ ଥିଲେ ; ତାଙ୍କର ମାନସିକ ବଳ ଓ ଜିଦ୍ ବି ଖୁବ୍ ଥିଲା । ସର୍ବୋପରି ତାଙ୍କର ଥିଲା ଅସାଧାରଣ ବୁଦ୍ଧି । ତାଙ୍କ ବାପା ଓ ଜେଜେବାପା ବ୍ରିଟିଶ୍ ସେନାରେ ଚାକିରି କରିଥିଲେ । ଲକ୍ଷ ଲକ୍ଷ ହରିଜନଙ୍କ ହୃଦୟକୁ ଶହ ଶହ ବର୍ଷ ଧରି ଯେଉଁ ଜ୍ୱାଳା ପୋଡ଼ି ପକାଉଥିଲା, ତାହା ଆମ୍ବେଦ୍‌କରଙ୍କଠାରେ ପୁଞ୍ଜୀଭୂତ ହୋଇ, ହିନ୍ଦୁମାନଙ୍କ ପ୍ରତି ଉତ୍କଟ ଘୃଣାରେ ଆତ୍ମପ୍ରକାଶ କରୁଥିଲା । ହିନ୍ଦୁଙ୍କ ଶାସନାଧୀନ ହୋଇ ରହିବା ଅପେକ୍ଷା ସେ ବ୍ରିଟିଶ୍ ଶାସନକୁ ପସନ୍ଦ କରୁଥିଲେ ; ହିନ୍ଦୁଙ୍କ ଅପେକ୍ଷା ମୁସଲମାନଙ୍କୁ ସେ ଭଲ ବୋଲି ବିଚାରୁଥିଲେ । ଏକ ସମୟରେ ସେ ବିଚାରୁଥିଲେ, ଭାରତର ହରିଜନମାନଙ୍କୁ ସମୂହ ଭାବେ ମୁସଲମାନ ଧର୍ମରେ ଦୀକ୍ଷିତ କରାଇଦେବେ । ଶହ ଶହ ବର୍ଷ ଧରି ହିନ୍ଦୁମାନେ ତାଙ୍କର ନିଷ୍ପେଷିତ ଅସ୍ପୃଶ୍ୟ ଭାଇମାନଙ୍କ ଉପରେ ଯେଉଁ ଅତ୍ୟାଚାର କରି ଆସିଛନ୍ତି ତାହା ମନେ ପକାଇ ତାଙ୍କ ହୃଦୟ ହିନ୍ଦୁଙ୍କ ପ୍ରତି କ୍ରୋଧ, ଘୃଣା ଓ ପ୍ରତିହିଂସାରେ ପୂର୍ଣ୍ଣ ହୋଇଯାଇଥାଏ । ସେତେବେଳେ ସମଗ୍ର ଭାରତରେ ଜଣେ ମାତ୍ର କେହି ଯଦି ଅନଶନ କରି ଗାନ୍ଧୀ ମରିଯାନ୍ତୁ ବୋଲି ନିରୁଦ୍‌ବେଗ ଭାବେ କଳ୍ପନା କରି ପାରିଥିବେ ତେବେ ସେ ଜଣକ ନିଶ୍ଚୟ ଆମ୍ବେଦ୍‌କର । ଗାନ୍ଧୀଙ୍କ ଅନଶନକୁ ସେ 'ରାଜନୀତିକ ଚାଲବାଜି' ବୋଲି ଆଖ୍ୟା ଦେଇଥିଲେ । ବିରଳା ଭବନର ସଭାରେ ସେ ବିଖ୍ୟାତ ହିନ୍ଦୁ ବୁଦ୍ଧିଜୀବୀମାନଙ୍କର ପ୍ରତିପକ୍ଷ ହୋଇ ବସିଥାନ୍ତି । ଏମାନେ ଏମାନଙ୍କ ପ୍ରିୟ ମହାତ୍ମାଙ୍କୁ ବଂଚାଇବା ପାଇଁ ତାଙ୍କୁ ଖୋସାମତି କରିବାର ଦେଖି ଆମ୍ବେଦ୍‌କରଙ୍କ ମନରେ ବେଶ୍ ଆନନ୍ଦ ହୋଇଥିବ ।

ଗାନ୍ଧୀ ଚାହୁଁଥିଲେ, ହିନ୍ଦୁ ଓ ହରିଜନ ପ୍ରାର୍ଥୀମାନେ ମିଳିତ ନିର୍ବାଚନ-ମଣ୍ଡଳୀରୁ ନିର୍ବାଚିତ ହୋଇ ସଂଘବଦ୍ଧ ଭାବେ ବ୍ୟବସ୍ଥାସଭାରେ ବସିବେ । ବ୍ୟବସ୍ଥାସଭାରେ ହରିଜନ ପ୍ରତିନିଧିଙ୍କ ସଂଖ୍ୟା ସଂବିଧାନରେ ନିର୍ଦ୍ଦିଷ୍ଟ ହୋଇ ରହୁ ବୋଲି ମଧ୍ୟ ସେ ଚାହୁଁ ନ ଥିଲେ । ଗାନ୍ଧୀ ବିଚାରୁଥିଲେ ଏପରି ବ୍ୟବସ୍ଥା ରହିଲେ ହିନ୍ଦୁ ଓ ହରିଜନ ସଦସ୍ୟଙ୍କ ଭିତରେ ଭେଦଭାବ ବଢ଼ିବ । କିନ୍ତୁ ୧୯ ତାରିଖରେ ତାଙ୍କ ସଙ୍ଗେ ସାକ୍ଷାତ କରିବାକୁ ଆସିଥିବା ଗୋଟିଏ ପ୍ରତିନିଧି ଦଳକୁ ସେ କହିଥିଲେ ଯେ, ବର୍ତ୍ତମାନ ଅବସ୍ଥାରେ ହରିଜନ-

ମାନଙ୍କ ପାଇଁ ବ୍ୟବସ୍ଥାପକମାନଙ୍କରେ ସଂଖ୍ୟା ନିର୍ଦ୍ଦିଷ୍ଟ ରହିବାକୁ ସେ ରାଜି । ଏହା ଶୁଣି ପ୍ରତିନିଧିମାନେ ବିଶେଷ ଆଶ୍ୱସ୍ତ ହୋଇଥିଲେ ।

ଆମ୍ବେଦକର କିନ୍ତୁ ଏଥିରେ ବି ସନ୍ତୁଷ୍ଟ ହୋଇ ନ ଥିଲେ । ତାଙ୍କର ଆପତ୍ତି : ସଂରକ୍ଷିତ ଆସନ ପାଇଁ ଯେଉଁ ହରିଜନ ପ୍ରାର୍ଥୀମାନେ ଲଢ଼ିବେ ସେମାନେ ମିଳିତ ନିର୍ବାଚନ ମଣ୍ଡଳୀରେ ହିନ୍ଦୁ ଓ ହରିଜନ ଭୋଟରଙ୍କଦ୍ୱାରା ନିର୍ବାଚିତ ହେବାକୁ ଥିବା ଯୋଗୁଁ ହିନ୍ଦୁମାନଙ୍କ ବିରୁଦ୍ଧରେ ହରିଜନମାନଙ୍କର ଥିବା ଅଭିଯୋଗ ଖୋଲାଖୋଲି ପ୍ରକାଶ କରିବାକୁ ଶଂକିବେ । କାରଣ, ଜଣେ ହରିଜନ ପ୍ରତିନିଧି ଯଦି ବ୍ୟବସ୍ଥାପକରେ ହିନ୍ଦୁମାନଙ୍କୁ ନିର୍ଭୀକ ଭାବରେ ସମାଲୋଚନା କରିବ, ତେବେ ହିନ୍ଦୁ ଭୋଟରମାନେ ତାକୁ ପରବର୍ତ୍ତୀ ନିର୍ବାଚନରେ ପରାସ୍ତ କରି, ତାଙ୍କ କଥା ମାନି ଚଳିବାଭଳି ଜଣେ ହରିଜନ ପ୍ରାର୍ଥୀକୁ ଜୟଯୁକ୍ତ କରିପାରନ୍ତି ।

ଆମ୍ବେଦକରଙ୍କ ଏ ଆପତ୍ତିକୁ ଯୁକ୍ତିଯୁକ୍ତ ମନେ କରି ସାର୍ ତେଜ-ବାହାଦୁର ସାପ୍ରୁ ଗୋଟିଏ ଚତୁର ସମାଧାନ ୨୦ ତାରିଖର ସଭାରେ ଆଗତ କରିଥିଲେ । ସେ ପ୍ରସ୍ତାବ ଦେଲେ ଯେ ବ୍ୟବସ୍ଥା ସଭାର ପ୍ରତ୍ୟେକ ହିନ୍ଦୁ ଓ ହରିଜନ ପ୍ରତିନିଧି ମିଳିତ ନିର୍ବାଚନ ମଣ୍ଡଳୀରେ ନିର୍ବାଚିତ ହେବେ । ଏଥିରୁ କେତୋଟି ସ୍ଥାନ ହରିଜନଙ୍କ ପାଇଁ ସଂରକ୍ଷିତ ବୋଲି ଆଗରୁ ନିର୍ଦ୍ଦିଷ୍ଟ ହୋଇ ରହିବ । ଏହି ସଂରକ୍ଷିତ ସ୍ଥାନମାନଙ୍କରୁ କେତୋଟି ହରିଜନ ପ୍ରାର୍ଥୀଙ୍କ ନାମ ହିନ୍ଦୁ ଓ ହରିଜନ ନେତାମାନଙ୍କ ଘରୋଇ ଆଲୋ-ଚନାରେ ସ୍ଥିର କରାଯିବ । ଅବଶିଷ୍ଟ ହରିଜନ ପ୍ରାର୍ଥୀଙ୍କୁ ବାଛିବା ପାଇଁ ସାପ୍ରୁ ଗୋଟିଏ ନୂଆ ଯୋଜନା ଦେଲେ । ଏମାନଙ୍କୁ ବାଛିବା ପାଇଁ ଗୋଟିଏ ପ୍ରାଥମିକ ନିର୍ବାଚନ କରାଯିବ, ଯେଉଁଥିରେ କି ଖାଲି ହରିଜନମାନେ ଭୋଟ ଦେବେ । ପ୍ରାଥମିକ ନିର୍ବାଚନରେ ପ୍ରତି ସିଟ୍ ପାଇଁ ତିନିଜଣ ପ୍ରାର୍ଥୀ ବଛାଯିବେ । ଏଇ ତିନିଜଣ ପ୍ରାର୍ଥୀ ମିଳିତ ନିର୍ବାଚନ ମଣ୍ଡଳୀରେ ଠିଆ ହେବେ, ଏବଂ ହିନ୍ଦୁ ଓ ହରିଜନ ଭୋଟରମାନେ ମିଳିତଭାବେ ଭୋଟ ଦେଇ, ହିନ୍ଦୁ ପ୍ରାର୍ଥୀଙ୍କ ସଙ୍ଗେ ଏଇଥିରୁ ଜଣେ ହରିଜନ ପ୍ରାର୍ଥୀଙ୍କୁ ଜୟଯୁକ୍ତ କରିବେ । ଏଇ ତିନି ଜଣଙ୍କ ଭିତରୁ ଜଣଙ୍କୁ ଭୋଟ ଦେବା ପାଇଁ ହିନ୍ଦୁ ଭୋଟରମାନେ ବାଧ୍ୟ ହେଉଥିବାରୁ ହରିଜନମାନେ ତାଙ୍କର ସାହସୀ ଓ ଶ୍ରେଷ୍ଠ ବ୍ୟକ୍ତିମାନଙ୍କୁ ବ୍ୟବସ୍ଥାପକକୁ ପଠାଇପାରିବେ । ମିଳିତ ନିର୍ବାଚନ ମଣ୍ଡଳୀ ସତ୍ତ୍ୱେ ହରିଜନ-ମାନଙ୍କୁ ନିଜର ପ୍ରାର୍ଥୀ ବାଛିବାରେ ସ୍ୱାତନ୍ତ୍ର୍ୟ ମିଳିବ ।

ଏ ଯୋଜନାରେ ଆମ୍ବେଦକରଙ୍କର କ'ଣ ପ୍ରତିକ୍ରିୟା ହେବ, ହିନ୍ଦୁ ନେତାମାନେ ସନ୍ତୁଷ୍ଟ ଭାବେ ଅପେକ୍ଷା କରି ରହିଥାନ୍ତି । ଆମ୍ବେଦକର ଠିକ-ନିଖି ଭାବେ ଏ ଯୋଜନାର ନିରୀକ୍ଷା କଲେ ; ବନ୍ଧୁମାନଙ୍କର ପରାମର୍ଶ ନେଉଥିଲେ । ଘଣ୍ଟା ପରେ ଘଣ୍ଟା ବିତିଗଲା । ଶେଷରେ ସେ ଏ ଯୋଜନା ଗ୍ରହଣ କରି କହିଲେ ଯେ, ଏ ଯୋଜନାର ଶେଷ ଶଠା ସେ ନିଜେ କରିବେ ଓ ସାପ୍ରୁଙ୍କ ଯୋଜନାରେ ନିଜର ମତର ଅନୁକୂଳ କେତେକ କଥା ଯୋଡ଼ିବେ ।

ଆମ୍ବେଦକର ପୁଣି କ'ଣ ଯୋଡ଼ିବେ ସେ ବିଷୟରେ ସନ୍ଦିହାନ ହେବା ସତ୍ତ୍ୱେ, ଆମ୍ବେଦକର ମୋଟା ମୋଟି ସାପ୍ରୁ ଯୋଜନା ଗ୍ରହଣ କରିବା ଯୋଗୁଁ ହିନ୍ଦୁ ନେତାମାନେ ଉତ୍ସାହିତ ହେଲେ । କିନ୍ତୁ ଗାନ୍ଧୀ, ସାପ୍ରୁ ଯୋଜନା ଗ୍ରହଣ କରିବେ କି ନାହିଁ ସେ ବିଷୟରେ ସଂଦେହ ଥାଏ । ସାପ୍ରୁ, ଜୟକର, ରାଜଗୋପାଳାଚାରି, ଦେବଦାସ, ବିରଳା ଓ ରାଜେନ୍ଦ୍ର ପ୍ରସାଦ ଅଧରାତିରେ ଟ୍ରେନ୍ ଧରି ତହିଁ ଆରଦିନ ସକାଳେ ପୁନାରେ ପହଞ୍ଚିଥିଲେ । ସାତଟା ବେଳେ ସେମାନଙ୍କୁ ଜେଲଖାନାର ଅଫିସକୁ ଯିବାକୁ ଅନୁମତି ମିଳିଲା । ସେମାନେ ବସିବା ପରେ ଗାନ୍ଧୀ ଆସିଲେ । ୨୪ ଘଣ୍ଟାରୁ କମ୍ ନ ଖାଇ ରହିବା ଫଳରେ ବି ସେ ଦୁର୍ବଳ ଜଣା ଯାଉଥାନ୍ତି । ଗାନ୍ଧୀ ହସି ହସି ଆସି ମଝି ଆସନରେ ବସି ପଡ଼ି କୌତୁକରେ କହିଲେ, 'ମୁଁ ଏ ସଭାର ସଭାପତି ।'

ସାପ୍ରୁ ପ୍ରାଥମିକ ନିର୍ବାଚନ ବିଷୟ ସବିଶେଷଭାବେ ବୁଝାଇଲେ । ଅନ୍ୟମାନେ ଠାଏଠାଏ ଯୋଜନାର ବିଶ୍ଳେଷଣ କରୁଥାନ୍ତି । ଗାନ୍ଧୀ କେତେକ ପ୍ରଶ୍ନ ପଚାରିଲେ, କିନ୍ତୁ ହଁ ନାହିଁ ପରିଷ୍କାର କହିଲେ ନାହିଁ । ଅଧଘଣ୍ଟାଏ ଆଲୋଚନା ହେବା ପରେ ଗାନ୍ଧୀ ମତ ଦେଲେ, 'ଏ ଯୋଜନା ପ୍ରତି ଅନୁକୂଳ ରହି ବିଚାର କରିବାକୁ ମୁଁ ରାଜି···କିନ୍ତୁ ଆଗ ସମଗ୍ର ଯୋଜନାଟି ଠିକ-ଠୋକ୍ ଭାବେ ଲେଖି ମୋ ଆଗରେ ରଖ ।' ଏ ସଂପର୍କରେ ଆମ୍ବେଦ୍କର ଓ ରାଜାଙ୍କ ସହିତ ସାକ୍ଷାତ୍ କରିବାକୁ ବି ସେ ଚାହିଲେ ।

ଆମ୍ବେଦକର ଓ ରାଜାଙ୍କୁ ଟେଲିଗ୍ରାମଦ୍ୱାରା ତୁରନ୍ତ ନିମନ୍ତ୍ରଣ ପଠାଗଲା । ସାପ୍ରୁ ଯୋଜନା ଉପରେ ଏକ ସ୍ମାରକପତ୍ର ପ୍ରସ୍ତୁତ ହେଲା । ଗାନ୍ଧୀବାଦୀ ହରିଜନମାନଙ୍କ ପ୍ରତିନିଧି ଏମ୍. ସି. ରାଜା ଆସି ପହଞ୍ଚିଲେ ; ଆମ୍ବେଦ୍କର ବି ଆସିବେ ବୋଲି ପ୍ରତ୍ୟୁତ୍ତର ଦେଲେ ।

ଘୋର ଉଦ୍‌ବେଗରେ ସେ ରାତିଟି କଟିଲା । ୨୨ ତାରିଖରେ ସକାଳେ ଗାନ୍ଧୀଜୀ ଯୋଜନାରେ ଅସନ୍ତୋଷ ପ୍ରକାଶ କଲେ । ସଂରକ୍ଷିତ ସ୍ଥାନରୁ ମାତ୍ର କେତୋଟି ପାଇଁ ହରିଜନମାନଙ୍କର ପ୍ରାଥମିକ ନିର୍ବାଚନ ହେବ କାହିଁକି ? ଯଦି ପ୍ରାଥମିକ ନିର୍ବାଚନ ହେବ ତେବେ ପ୍ରତ୍ୟେକ ହରିଜନ ସ୍ଥାନ ପାଇଁ ହେଉ । କେତେଜଣ ହରିଜନ ପ୍ରାର୍ଥୀଙ୍କ ନାମ ହରିଜନ ଭୋଟରଙ୍କ ପ୍ରାଥମିକ ନିର୍ବାଚନରେ ସ୍ଥିରୀକୃତ ହେବ ; ଅନ୍ୟ କେତେଜଣ ସିଧାସଳଖ ହିନ୍ଦୁ ଓ ହରିଜନଙ୍କ ସମ୍ମିଳିତ ନିର୍ବାଚନମଣ୍ଡଳୀରେ ପ୍ରାର୍ଥୀ ହେବେ—ହରିଜନ ପ୍ରାର୍ଥୀଙ୍କୁ ଏପରି ଦୁଇ ଜାତିରେ ଭାଗ କରିବାର କାରଣ କ'ଣ ? ଗାନ୍ଧୀ ହରିଜନଙ୍କ ଭିତରେ ଏଭଳି ବିଭେଦ ପୁଣି ସୃଷ୍ଟି କରିବାର ବିରୋଧ କଲେ । ହରିଜନ ବ୍ୟବସ୍ଥାପକମାନଙ୍କ ଉପରେ ହିନ୍ଦୁମାନଙ୍କର ରାଜନୀତିକ ପ୍ରଭାବ କୌଣସି ପ୍ରକାରେ ପଡ଼ୁ, ଏହା ସେ ଚାହୁଁ ନ ଥିଲେ ।

ସମସ୍ୟା ସମାଧାନରେ ଲାଗିଥିବା ନେତାମାନେ ବିଶେଷ ଆନନ୍ଦିତ ହେଲେ । ଆମ୍ବେଦକର ଯେତିକି ସ୍ୱତନ୍ତ୍ର ସୁବିଧା ପାଇ ସନ୍ତୁଷ୍ଟ ଥିବାର ସେମାନେ ଲକ୍ଷ୍ୟ କରିଥିଲେ, ତହିଁରୁ ଅଧିକ ଯେ ଗାନ୍ଧୀ ଦେବାକୁ ପ୍ରସ୍ତୁତ !

ସେଇ ଦିନ ଅପରାହ୍ଣରେ ଶେଷ ଆଡ଼କୁ ଆମ୍ବେଦ୍‌କର ଆସି ଗାନ୍ଧୀଙ୍କ ଖଟପାଖେ ପହଞ୍ଚିଲେ । କଥାବାର୍ତ୍ତାର ବେଶୀଭାଗ ସେ କଲେ । ସେ କହିଲେ, ମହାତ୍ମାଙ୍କ ଜୀବନ ରକ୍ଷା କରିବାରେ ସେ ସାହାଯ୍ୟ କରିବାକୁ ପ୍ରସ୍ତୁତ, କିନ୍ତୁ 'ମୋର କ୍ଷତିପୂରଣ ମୁଁ ପାଇବାକୁ ଚାହେଁ ।'

ଗାନ୍ଧୀ ଏତେବେଳକୁ ଖୁବ୍ ଦୁର୍ବଳ ହୋଇ ପଡ଼ିଥାନ୍ତି । ପୂର୍ବର ଅନଶନମାନଙ୍କ ବେଳେ ସେ ଘଣ୍ଟାକୁ ଘଣ୍ଟା ନିୟମିତ ଭାବେ ପାଣି ପିଉଥିଲେ । ଏଥର କିନ୍ତୁ ପାଣି ପିଇବା ବିଷୟରେ ସେ ନିୟମ ମାନୁ ନ ଥାନ୍ତି ; ଅନିୟମିତ ଭାବେ କେତେବେଳେ କମିତି ପାଣି ମୁନ୍ଦାଏ ପିଉଥାନ୍ତି ମାତ୍ର । ପୂର୍ବଥରମାନଙ୍କରେ ତାଙ୍କର ଗୋଡ଼ ହାତ ଆଉଁସା ଘଷା ହେଉଥିବାରୁ ଶରୀରର ପୀଡ଼ା କିଞ୍ଚିତ୍ ଶାନ୍ତ ହେଉଥିଲା । ଏଥର ସେ ତାଙ୍କ ଦେହରେ ହାତ ଦେବାକୁ ମନା କରି ଦେଇଥାନ୍ତି । ଅବସନ୍ନ ହୋଇ ଯାଉଥିବା ଶରୀରର ବିଭିନ୍ନ ସ୍ଥାନରେ ଉତ୍କଟ ଯନ୍ତ୍ରଣା ହେଉଥାଏ । ଷ୍ଟ୍ରେଚର୍‌ରେ ପକାଇ ତାଙ୍କୁ ଗାଧୁଆଘରକୁ ନେବାକୁ ପଡୁଥାଏ । ଟିକିଏ ହଲଚଲ ହୋଇଗଲେ, ଏପରିକି କଥାବାର୍ତ୍ତା କଲେ ତାଙ୍କୁ ବାନ୍ତି ମାଡ଼ୁଥାଏ ।

ଆମ୍ବେଦ୍‌କର କ୍ଷତିପୂରଣ ପାଇବା କଥା କହନ୍ତେ ଗାନ୍ଧୀ ବଡ଼ କଷ୍ଟରେ ଟିକିଏ ଡେରି ହୋଇ ବସିଲେ ଓ ଅନେକ ମିନିଟ୍‌ ଯାଏ କହିବାକୁ ଲାଗିଲେ । ହରିଜନମାନଙ୍କ ପ୍ରତି ନିଜର ଗଭୀର ଶ୍ରଦ୍ଧା କଥା ସେ ଉଲ୍ଲେଖ କଲେ , ଦଫାଓ୍ୱାରି ସାପ୍ରୁ ଯୋଜନାର ଆଲୋଚନା କରି ସେ କହିଲେ, ତାଙ୍କର ଏଥିରେ ସମ୍ମତି ନାହିଁ । ସେ ଜଣାଇଦେଲେ, ହରିଜନମାନେ ପ୍ରାଥମିକ ନିର୍ବାଚନରେ କେତେକ ହରିଜନ ପ୍ରାର୍ଥୀଙ୍କ ମନୋନୟନ ନ କରି, ପ୍ରତ୍ୟେକଙ୍କର ମନୋନୟନ କରନ୍ତୁ ବୋଲି ସେ ଚାହାନ୍ତି । ଏତିକି କହିବାରେ ହାଲିଆ ହୋଇଯାଇ ମହାତ୍ମାଜୀ ମାଣ୍ଡିକି ଆଉଜି ପଡ଼ିଗଲେ ।

ଆମ୍ବେଦ୍‌କର ବିଶ୍ବରଥିଲେ ତାଙ୍କୁ ନେଇ ମୁମୂର୍ଷୁ ଗାନ୍ଧୀଙ୍କ ପାଖରେ ବସାଇ ତାଙ୍କ ଦାବୀରୁ କିଛି କମାଇବାକୁ ଚାପ ଦିଆଯିବ । କିନ୍ତୁ ହରିଜନଙ୍କ ପ୍ରତି ମମତାରେ ଗାନ୍ଧୀ ହରିଜନଙ୍କ ମୁଖପାତ୍ର ଆମ୍ବେଦ୍‌କାରଙ୍କୁ ବଳିଗଲେ ।

ଗାନ୍ଧୀଙ୍କ ସଂଶୋଧନ ପ୍ରସ୍ତାବକୁ ଆମ୍ବେଦ୍‌କର ସ୍ୱାଗତ କଲେ ।

ସେଇଦିନ ଶ୍ରୀମତୀ ଗାନ୍ଧୀ ଆସି ପହଞ୍ଚିଲେ । 'ସାବରମତୀ ଜେଲରୁ ତାଙ୍କୁ ୟେରବାଡ଼ା ବଦଳି କରାଯାଇଥାଏ । ଆସ୍ତେ ଆସ୍ତେ ସ୍ୱାମୀଙ୍କ ଖଟ-ପାଖକୁ ଭର୍ତ୍ସନା କଲାଭଳି ମୁଣ୍ଡ ହଲାଇ ହଲାଇ ଆସି କହିଲେ, ପୁଣି ସେଇ ଲୀଳା ଆରମ୍ଭ କରିଛ ! ଗାନ୍ଧୀ ମୃଦୁହାସ୍ୟ କଲେ । କସ୍ତୁରବାଈ ଆସି ପହଞ୍ଚିବାରେ ଗାନ୍ଧୀଜୀ ପ୍ରଫୁଲ୍ଲିତ ହେଲେ । କସ୍ତୁରବାଈ ତାଙ୍କୁ ଆଉଁସିବାରେ ଆପତ୍ତି କଲେ ନାହିଁ । ଦରକାର ହେବାରୁ ନୁହେଁ, ପତ୍ନୀଙ୍କୁ ଖୁସୀ କରିବାକୁ, ଜଣେ ଘଷିବାବାଲା ଆସି ଘଷିବାରେ ବି ସେ ଆପତ୍ତି କଲେ ନାହିଁ ।

ସେପ୍‌ଟେମ୍ବର ୨୩ ତାରିଖ, ଶୁକ୍ରବାର, ଅନଶନର ଚତୁର୍ଥ ଦିନ, ଗାନ୍ଧୀଙ୍କ ହୃଦ୍‌ରୋଗ ଚିକିତ୍ସକ ଡକ୍ଟର୍ ଗିଲ୍‌ଡର୍ ଓ ଡକ୍ଟର ପଟେଲ ବମ୍ବେରୁ ଆସି ପହଞ୍ଚିଲେ । ବନ୍ଦୀଶାଳାର ଚିକିତ୍ସକଙ୍କ ସହିତ ଏ ଦୁହେଁ ପରୀକ୍ଷା କରି ନିଦାନ କଲେ ଯେ, ବନ୍ଦୀଙ୍କ ଅବସ୍ଥା ଉଦ୍‌ବେଗଜନକ । ରକ୍ତଚାପ ଆତଙ୍କଜନକଭାବେ ବଢ଼ି ଯାଇଥାଏ । ଯେ କୌଣସି ମୁହୂର୍ତ୍ତରେ ମୃତ୍ୟୁ ହେବାର ଆଶଙ୍କା ଥାଏ ।

ସେଇଦିନ ଆମ୍ବେଦ୍‌କର ହିନ୍ଦୁନେତାମାନଙ୍କ ସଙ୍ଗେ ଦୀର୍ଘ ଆଲୋଚନା କରି ତାଙ୍କ 'କ୍ଷତିପୂରଣ' ପ୍ରସ୍ତାବ ପେଶ୍ କଲେ । ମ୍ୟାକ୍-ଡୋନାଲ୍‌ଡଙ୍କ ନିଷ୍ପତ୍ତି ଅନୁସାରେ ଦଳିତ ଜାତିମାନଙ୍କ ପାଇଁ ପ୍ରାଦେଶିକ

ବ୍ୟବସ୍ଥାସଭାମାନଙ୍କରେ ସର୍ବମୋଟ ୭୧ଟି ସ୍ଥାନ ସଂରକ୍ଷିତ ହୋଇଥିଲା ; ଆମ୍ବେଦ୍‌କର ଚାହୁଁଲେ ୧୯୭ଟି ସ୍ଥାନ । ସାପ୍ରୁ ପ୍ରସ୍ତାବ ଦେଇଥିଲେ ପ୍ରାଥମିକ ନିର୍ବାଚନରେ ୩ ଜଣ ହରିଜନଙ୍କ ନାମ ପ୍ରତି ସ୍ଥାନ ପାଇଁ ବଛା-ଯିବ । ଗାନ୍ଧୀ ଏ ସଂଖ୍ୟା ପାଞ୍ଚକୁ ବଢ଼ାଇବା ପାଇଁ ପରାମର୍ଶ ଦେଇଥିଲେ । ଆମ୍ବେଦ୍‌କର ପ୍ରସ୍ତାବ ଦେଲେ, ସାପ୍ରୁଙ୍କ ତିନି ଜାଗାରେ ଦୁଇ ହେବ । ତା'ପରେ, ହରିଜନଙ୍କ ପାଇଁ ସଂରକ୍ଷିତ ସ୍ଥାନ କେତେ ଦିନ ଯାଏଁ ରହିବ ସେ ପ୍ରଶ୍ନ ଥିଲା । ସାପ୍ରୁ ପ୍ରସ୍ତାବ ଦେଇଥିଲେ, ନିର୍ଦ୍ଦିଷ୍ଟ ସମୟ ପରେ ସଂରକ୍ଷିତ ସ୍ଥାନର ବ୍ୟବସ୍ଥା ସଂବିଧାନରୁ ଉଠାଇ ଦେବା ପାଇଁ ହରିଜନମାନଙ୍କର ଗଣଭୋଟ ନିଆଯିବ । ଏହା ଉଠିଗଲେ ହିନ୍ଦୁ ଓ ହରିଜନଙ୍କ ଭିତରେ ରହିଥିବା ରାଜନୈତିକ ପାର୍ଥକ୍ୟ ଦୂର ହେବ, ଏବଂ ହିନ୍ଦୁ ଓ ହରିଜନଙ୍କର ସାମାଜିକ ମିଳନର ପନ୍ଥା ସୁଗମ ହୋଇଯିବ । ଗାନ୍ଧୀ ଚାହୁଁଥିଲେ, ପାଞ୍ଚ ବର୍ଷ ପରେ ହରିଜନ ପ୍ରାର୍ଥୀଙ୍କ ପାଇଁ ପ୍ରାଥମିକ ନିର୍ବାଚନ ବ୍ୟବସ୍ଥା ଦୂର ହେଉ । ଏହା ପନ୍ଦର ବର୍ଷ ରହୁ ବୋଲି ଅମ୍ବେଦ୍‌କର ଅଡ଼ି ବସିଲେ । ଅସ୍ପୃଶ୍ୟତା ପାଞ୍ଚ ବର୍ଷ ଭିତରେ ହିନ୍ଦୁ ସମାଜରୁ ଦୂର ହୋଇ ପାରିବ ବୋଲି ଆମ୍ବେଦ୍‌କରଙ୍କର ବିଶ୍ୱାସ ନ ଥିଲା ।

ସେଇଦିନ କେତେ ଘଣ୍ଟା ପରେ ଆମ୍ବେଦକର ଗାନ୍ଧୀଙ୍କ ପାଖକୁ ପୁଣି ଆସିଲେ । ଭାରି ଗରମ, ଗୁଳୁଗୁଳିଆପାଗ ହୋଇଥାଏ । ବନ୍ଦୀଶାଳର ଅଗଣାରେ ଗୋଟିଏ ବି ଆମ୍ବପତ୍ର ହଲୁ ନ ଥାଏ । ଗାନ୍ଧୀଙ୍କର ରକ୍ତଚାପ ବଢ଼ୁଥାଏ । ଫୁସ୍ ଫୁସ୍ କରି କହିବାଠାରୁ ବଡ଼ ପାଟି ସେ କରି ପାରୁ ନ ଥିଲେ । ସେତିକିବେଳେ ଆମ୍ବେଦ୍‌କର ନିର୍ମମ ଭାବେ ଭାଉଭେଟିକା ଆରମ୍ଭ କରିଦେଲେ । କିନ୍ତୁ କୌଣସି ଶେଷ ନିଷ୍ପତ୍ତି ହୋଇ ପାରିଲା ନାହିଁ ।

ସେପ୍‌ଟେମ୍ବର ୨୪ ତାରିଖ, ଅନଶନର ପଞ୍ଚମ ଦିବସ । ହିନ୍ଦୁ ନେତାମାନଙ୍କ ସଙ୍ଗେ ଆମ୍ବେଦ୍‌କର ପୁଣି କଥାବାର୍ତ୍ତା କଲେ । ସକାଳଓଳି ଯାକ ସେମାନଙ୍କ ସଙ୍ଗେ ଟଣାଓଟରା କରିସାରି, ସେ ମଧ୍ୟାହ୍ନରେ ଗାନ୍ଧୀଙ୍କ ପାଖକୁ ଗଲେ । ଆମ୍ବେଦକର ଓ ହିନ୍ଦୁମାନଙ୍କ କଥାବାର୍ତ୍ତାରେ ରାଜିନାମା ହୋଇଥିଲା ଯେ, ମ୍ୟାକ୍‌ଡୋନାଲଡ୍ ଦେଇଥିବା ୭୧ ଓ ଆମ୍ବେଦ୍‌କର ଦାବୀ କରିଥିବା ୧୯୭ ସ୍ଥାନରେ, ଦଳିତ ଜାତିମାନଙ୍କ ପାଇଁ ପ୍ରାଦେଶିକ ବ୍ୟବସ୍ଥାସଭାମାନଙ୍କରେ ସର୍ବମୋଟ ୧୪୭ ଟି ସ୍ଥାନ ସଂରକ୍ଷିତ ହେବ । ଗାନ୍ଧୀ ଏ ରାଜିନାମା ମାନିଗଲେ । ଆମ୍ବେଦକର ଏତେବେଳକୁ ମାଗିଥିଲେ

ଯେ, ଦଶବର୍ଷ ଯାଏଁ ପ୍ରାଥମିକ ନିର୍ବାଚନ ବ୍ୟବସ୍ଥା କାଏମ ରହିବ । ଗାନ୍ଧୀଙ୍କର ଜିଦ୍ ପାଞ୍ଚବର୍ଷରୁ ଆଦୌ ଅଧିକ ଦେବେ ନାହିଁ । ସେ କହିଲେ, 'ପାଞ୍ଚବର୍ଷ ହେଉ, ନ ହେଲେ ମୋର ପ୍ରାଣ ଯାଉ ।' ଆମ୍ବେଦକର କିନ୍ତୁ ଟଳିଲେ ନାହିଁ ।

ଆମ୍ବେଦ୍କର ତାଙ୍କ ହରିଜନ ସହକର୍ମୀମାନଙ୍କ ସଙ୍ଗେ କଥାବାର୍ତ୍ତା କରିବାକୁ ଫେରିଗଲେ । ଅପରାହ୍ନରେ ସେ ହିନ୍ଦୁନେତାମାନଙ୍କୁ ପରିଷ୍କାର ଜଣାଇ ଦେଲେ ଯେ ପ୍ରାଥମିକ ନିର୍ବାଚନ ବ୍ୟବସ୍ଥା ମାତ୍ର ପାଞ୍ଚବର୍ଷ ପାଇଁ ହେବ ବୋଲି ସେ ସ୍ୱୀକାର କରି ପାରିବେ ନାହିଁ । ଦଶବର୍ଷରୁ ସେ ଦାଢ଼େ ଛାଡ଼ିବେ ନାହିଁ ।

ଏତିକିବେଳେ ରାଜଗୋପାଳାଚାରୀ ଯାହା କଲେ ତଦ୍ୱାରା ବୋଧହୁଏ ଗାନ୍ଧୀଙ୍କର ଜୀବନରକ୍ଷା ହୋଇପାରିଲା । ଗାନ୍ଧୀଙ୍କ ସଙ୍ଗେ ଆଲୋଚନା ନ କରି ସେ ଆମ୍ବେଦ୍କରଙ୍କ ସଙ୍ଗେ ରାଜିନାମା କରି ଦେଲେ ଯେ, ପ୍ରାଥମିକ ନିର୍ବାଚନ ବ୍ୟବସ୍ଥା କେବେ ରଦ୍ ହେବ ତାହା ପରେ ଆଲୋଚିତ ହୋଇ ସ୍ଥିର କରାଯିବ । ଏପରି ହେଲେ ହରିଜନମାନଙ୍କର ଗଣଭୋଟ ନେବା ପ୍ରୟୋଜନ ନ ହୋଇପାରେ ।

ରାଜଗୋପାଳାଚାରୀ ଅବିଳମ୍ବେ ଜେଲଖାନା ଭିତରକୁ ଯାଇ ନୂଆ ପ୍ରସ୍ତାବ ଗାନ୍ଧୀଙ୍କୁ ସବିସ୍ତର ଜଣାଇ ଦେଲେ ।

ଗାନ୍ଧୀ କହିଲେ, 'ଆଉ ଥରେ କହ ।'

ରାଜଗୋପାଳାଚାରୀ ପ୍ରସ୍ତାବଟି ପୁଣି ଶୁଣାଇଲେ ।

ଗାନ୍ଧୀ ଅସ୍ପଷ୍ଟ ସ୍ୱରରେ କହିଲେ, 'ବେଶ୍' । ରାଜଗୋପାଳାଚାରୀ ଠିକ୍ କ'ଣ କହିଲେ ହୁଏତ ଗାନ୍ଧୀ ବୁଝିପାରି ନ ଥିଲେ । ତାଙ୍କର ସେତେବେଳେ ମୂର୍ଚ୍ଛାଗଲା ପରି ଅବସ୍ଥା । ସେ ଯାହାହେଉ, ଗାନ୍ଧୀ 'ବେଶ୍' ବୋଲି କହି ତ ରାଜି ହୋଇଛନ୍ତି !

ସେଇ ଶନିବାର ଦିନ ରାଜିନାମା ଗଠା ହେଲା ଓ ମୁଖ୍ୟ ହିନ୍ଦୁ ଓ ହରିଜନ ମଧ୍ୟସ୍ଥ ମାନେ ଏଥିରେ ସଇ କଲେ । ଗାନ୍ଧୀ ସଇ କରି ନ ଥିଲେ । ଏଇ ରାଜିନାମାର ନାମ ସେ୍ରବାଡ଼ା ଚୁକ୍ତିପତ୍ର ବୋଲି ଭାରତର ଇତିହାସରେ ସ୍ଥାନ ପାଇଛି ।

ରବିବାର ଦିନ ମଧ୍ୟସ୍ଥମାନଙ୍କ ସହିତ ଅନ୍ୟ ନେତୃସ୍ଥାନୀୟ ବ୍ୟକ୍ତି-ମାନଙ୍କର ସମ୍ମିଳନୀ ବମ୍ବେଠାରେ ବସି ଏହି ଚୁକ୍ତିପତ୍ର ବାହେଲ୍ ହେଲା ।

କିନ୍ତୁ ବେସରକାରୀ ଲୋକଙ୍କର ଏ ଚୁକ୍ତିପତ୍ରର ମୂଲ୍ୟ କ'ଣ ? ବ୍ରିଟିଶ ସରକାର ଏହା ଗ୍ରହଣ କରି ମ୍ୟାକ୍‌ଡୋନାଲଡ୍ ନିଷ୍ପତ୍ତି ରଦ୍ଦ କରିବାକୁ ରାଜି ନ ହେବା ପର୍ଯ୍ୟନ୍ତ ଗାନ୍ଧୀ ଅନଶନ ତ୍ୟାଗ କରିବାକୁ ରାଜି ହେଉଛନ୍ତି କେତେବେଳେ ? ଏହି ଚୁକ୍ତିପତ୍ରର ଅବିକଳ ଚଠା ଟେଲିଗ୍ରାମଦ୍ୱାରା ଲଣ୍ଡନକୁ ପଠାଗଲା । ସେଠାରେ ଆଣ୍ଡ୍ରୁଜ୍, ପୋଲକ୍ ଓ ଅନ୍ୟ ଗାନ୍ଧୀ-ବନ୍ଧୁମାନେ, ସରକାରଙ୍କଦ୍ୱାରା ଯଥା ଉପରେ ତୁରନ୍ତ କାର୍ଯ୍ୟାନୁଷ୍ଠାନ ହେବା ବିଷୟରେ, ଲାଗି ପଡ଼ିଥାନ୍ତି । ରବିବାର ହୋଇଥିବାରୁ ମନ୍ତ୍ରୀମାନେ ସଦର ମହକୁମାରେ ନ ଥାନ୍ତି ; ପ୍ରଧାନମନ୍ତ୍ରୀ ମ୍ୟାକ୍‌ଡୋନାଲ୍ଡ୍ ଗୋଟାଏ ଅନ୍ତ୍ୟେଷ୍ଟି କ୍ରିୟାରେ ଯୋଗ ଦେବା ନିମନ୍ତେ ସସେକ୍ସ୍ ଯାଇଥାନ୍ତି ।

ପୁନାରେ ରାଜିନାମା ହୋଇ ଯାଇଥିବାର ଖବର ପାଇ ମ୍ୟାକ୍-ଡୋନାଲ୍ଡ୍ ତୁରନ୍ତ ତାଙ୍କ ଲଣ୍ଡନ କୋଠି, ୧୦ ନମ୍ବର ଡାଉନିଙ୍ଗ୍ ଷ୍ଟ୍ରୀଟ୍‌କୁ ଫେରି ଆସିଲେ । ମ୍ୟାକ୍‌ଡୋନାଲ୍ଡ୍ ନିଷ୍ପତ୍ତିକୁ ଚୂଡ଼ାନ୍ତ ରୂପ ଦେବାରେ ସାହାଯ୍ୟ କରିଥିବା ସାର୍ ସାମୁଏଲ୍ ହୋର୍ ଓ ଲର୍ଡ଼ ଲୋଥିଆନ୍ ମଧ୍ୟ ଆସି ପହଞ୍ଚିଗଲେ । ରବିବାର ରାତି ଅଧ ପର୍ଯ୍ୟନ୍ତ ଏ ତିନିହେଁ ଯେରବାଡ଼ା ଚୁକ୍ତିପତ୍ରର ତନଖି କରିବାରେ ଲାଗିଲେ ।

ଗାନ୍ଧୀଙ୍କ ଜୀବନ-ତରଙ୍ଗର ଭଟ୍ଟା କ୍ଷିପ୍ରଗତିରେ ହେଉଥାଏ । ତାଙ୍କ ଖଟ ପାଖରେ ଥିବା ତାଙ୍କର ସମସ୍ତ ବ୍ୟକ୍ତିଗତ ସମ୍ପତ୍ତିରୁ କିଏ କ'ଣ ପାଇବ, ଗାନ୍ଧୀ କସ୍ତୁରବାଙ୍କୁ ନିର୍ଦ୍ଦେଶ ଦେଉଥାନ୍ତି । ସୋମବାର ବଡ଼ସକାଳୁ ରବୀନ୍ଦ୍ରନାଥ କଲିକତାରୁ ଆସି ପହଞ୍ଚିଲେ ଏବଂ ତାଙ୍କ କବିତାରୁ କେତୋଟି ବାଛି ଗାନ୍ଧୀଙ୍କ ପାଖେ ବସି ଗାନ କଲେ । ଏ ଗାନ ଗାନ୍ଧୀଙ୍କ କ୍ଲେଶ ଉପଶମ କଲା । ପୁନାର ଗାନ୍ଧୀଭକ୍ତମାନେ ଜେଲଖାନାକୁ ଆସିବାକୁ ଅନୁମତି ପାଇ ସୁମଧୁର ବାଦ୍ୟ ସହ ଭଜନ ବୋଲିବାକୁ ଆରମ୍ଭ କଲେ । ମସ୍ତକ ସଂଚାଳନ କରି ଓ କ୍ଷୀଣ ହାସ୍ୟ କରି ଗାନ୍ଧୀ ଏମାନଙ୍କୁ ସାବାସି ଦେଲେ । କଥା କହିବାର କ୍ଷମତା ସେତେବେଳକୁ ତାଙ୍କର ନ ଥାଏ ।

ଏହାର ଅଳ୍ପ କେତେ ଘଣ୍ଟା ପରେ ବ୍ରିଟିଶ୍ ସରକାର ଯୁଗପତ୍ ଲଣ୍ଡନ ଓ ଦିଲ୍ଲୀରେ ଘୋଷଣା କଲେ ଯେ, ଯେରବାଡ଼ା ଚୁକ୍ତିପତ୍ରକୁ ସରକାର ଅନୁମୋଦନ କରିଛନ୍ତି । ଗାନ୍ଧୀ ଏଥର ଅନଶନ ଭଙ୍ଗ କରିବାରେ ଆଉ କୌଣସି ପ୍ରତିବନ୍ଧକ ରହିଲା ନାହିଁ ।

ସୋମବାର, ଅପରାହ୍ଣ ୫ଟା ୧୫ ମିନିଟ୍‌ରେ, ରବୀନ୍ଦ୍ରନାଥ,

ବଲ୍ଲଭଭାଇ ପଟେଲ, ମହାଦେବ ଦେଶାଇ, ଶ୍ରୀମତୀ ନାଇଡୁ, ଚୁକ୍ତିପତ୍ର ଗଠନ କରିବାରେ ସାହାଯ୍ୟ କରିଥିବା ମଧ୍ୟସ୍ଥଗଣ ଓ ସମ୍ବାଦଦାତାମାନଙ୍କ ଉପସ୍ଥିତିରେ ଗାନ୍ଧୀ କସ୍ତୁରବାଙ୍କ ହାତରୁ ଗ୍ଲାସେ କମଳାରସ ଗ୍ରହଣ କରି ଅନଶନ ଭଙ୍ଗ କଲେ । ରବୀନ୍ଦ୍ରନାଥ ବଂଗଳା ଭଜନ କେତୋଟି ଗାନ କଲେ । ଅନେକଙ୍କ ଗଣ୍ଡରେ ଲୁହ ବୋହି ଯାଉଥାଏ ।

ରବିବାର, ସେପ୍ଟେମ୍ବର ୨୫ ତାରିଖରେ ବମ୍ବେରେ ହୋଇଥିବା ଯେଉଁ ସମ୍ମିଳନୀରେ ୟେରବାଡ଼ା ଚୁକ୍ତିପତ୍ର ଅନୁମୋଦିତ ହୋଇଥିଲା, ସେଥିରେ ଡକ୍ଟର୍ ଅମ୍ବେଦକର୍ ଗୋଟିଏ ସୁନ୍ଦର ବକ୍ତୃତା ଦେଇଥିଲେ । ଗାନ୍ଧୀଙ୍କର ସଦିଚ୍ଛାପୂର୍ଣ୍ଣ ମନୋବୃତ୍ତିର ପ୍ରଶଂସା କରି ସେ କହିଥିଲେ, 'ତାଙ୍କର ଓ ମୋର ମତାମତରେ ଏତେ ପରିମାଣରେ ମେଳ ଥିବାର ଦେଖି ମୁଁ ବିସ୍ମିତ ହୋଇଥିଲି, ଅତିମାତ୍ରାରେ ବିସ୍ମିତ ହୋଇଥିଲି । ଏ କଥା ମୋତେ ମାନିବାକୁ ହେଉଛି । ତାଙ୍କ ସଙ୍ଗେ ଏଥର ସାକ୍ଷାତ ହେବା ପର୍ଯ୍ୟନ୍ତ ମୋତେ ଏହା ଜଣା ନ ଥିଲା । ସାର୍ ତେଜବାହାଦୁର ସାପ୍ରୁ ଆପଣମାନଙ୍କୁ କହି ସାରିଲେଣି ଯେ, ତାଙ୍କ ସଂଗେ ମୋର ଆଲୋଚନା ହୋଇ କଥା ଅଚ୍ଛିଣ୍ଡା ରହିଲେ ତାହା ଗାନ୍ଧୀଙ୍କ ଆଗରେ ଯାଇ ପେସ୍ ହେଉଥିଲା । ଏ ସବୁ ପ୍ରାୟଶଃ କଠିଣ ସମସ୍ୟା ଥିଲା । ଗୋଲଟେବୁଲ ବୈଠକରେ ଗାନ୍ଧୀଙ୍କର ଓ ମୋର ଅଭିମୁଖ୍ୟରେ ଘୋର ପାର୍ଥକ୍ୟ ଲକ୍ଷ୍ୟ କରିଥିଲି । କିନ୍ତୁ ଏଥର ଦେଖି ବଡ଼ ଆଶ୍ଚର୍ଯ୍ୟ ହେଲି ଯେ, ସାର୍ ସାପ୍ରୁ ଓ ମୋ ଭିତରେ ମତଭେଦ ହେଉଥିବା ବିଷୟମାନ ଗାନ୍ଧୀଙ୍କ ଆଗେ ଉପସ୍ଥାପିତ ହେବାରେ ସେ ମୋ ପକ୍ଷ ସମର୍ଥନ କରିଥିଲେ ଓ ଅପର ପକ୍ଷର ବିରୋଧ କରିଥିଲେ । ମୁଁ ମହାତ୍ମାଜୀଙ୍କଠାରେ ଗଭୀରଭାବେ କୃତଜ୍ଞ । ମୁଁ ଯେଉଁ ମହା ସଂକଟ ଭିତରେ ପଡ଼ିବାକୁ ଯାଉଥିଲି, ସେଥିରୁ ସେ ମୋତେ ଉଦ୍ଧାର କରିଛନ୍ତି ।'

ବହୁ ଘାଣ୍ଟଚକଟ ପରେ ଆଶ୍ୱସ୍ତ ହୋଇ ଆମ୍ବେଦକର୍ ସାମୟିକ ସନ୍ତୋଷରେ ଗାନ୍ଧୀଙ୍କ ପ୍ରତି ବିମୋହିତଭାବେ ଏ ପ୍ରଂଶସା ବାଣୀ ଶୁଣାଇଥିଲେ ହେଁ, ସେ ଯାହା କହିଛନ୍ତି ତାହା ଗାନ୍ଧୀଙ୍କ ମନୋବୃତ୍ତିର ଯଥାର୍ଥ ଅଭିବ୍ୟକ୍ତି । ସ୍ୱୀକାର କରିବାକୁ ହେବ ଯେ, ଏଥର ଗାନ୍ଧୀ ହିନ୍ଦୁମାନଙ୍କ ସ୍ୱାର୍ଥ ଅପେକ୍ଷା ହରିଜନମାନଙ୍କ ସ୍ୱାର୍ଥକୁ ଅଧିକ ସମର୍ଥନ କରିଥିଲେ । ବସ୍ତୁତଃ ହରିଜନମାନଙ୍କ ଦାବୀକୁ ପୂରାପୂରି ମାନିନେବା ପାଇଁ ସେ ଏତେ

ବ୍ୟାକୁଳ ହୋଇ ପଡ଼ିଲେ ଯେ, ହରିଜନମାନଙ୍କ ପାଇଁ ସ୍ଥାନ ସଂରକ୍ଷିତ ହେବା ବିରୁଦ୍ଧରେ ତାଙ୍କର ମୌଳିକ ଆପତ୍ତିକୁ ବି ସେ ଛାଡ଼ି ଦେଉଥିଲେ । ଡକ୍ଟର୍ ଆମ୍ବେଦ୍କର ତାଙ୍କର ଏହି ବକ୍ତୃତାରେ ଯଥାର୍ଥ କହିଛନ୍ତି, 'ମୋର ଏତିକିମାତ୍ର ଦୁଃଖ, ୟେରବାଡ଼ାଠାରେ ମହାତ୍ମାଜୀ ଯେଉଁ ମତ ସମର୍ଥନ କଲେ, ଗୋଲଟେବୁଲ ବୈଠକରେ ସେ ମତ ପୋଷଣ କରି ନ ଥିଲେ କାହିଁକି ? ସେତେବେଳେ ମୋର ମତ ପ୍ରତି ସେ ଯଦି ଏତିକି ଅନୁକୂଳ ହୋଇଥାନ୍ତେ ତେବେ ତାଙ୍କୁ ଆଜି ଏ କଠିଣ ସାଧନାରେ ପଡ଼ିବାକୁ ହୋଇ ନ ଥାନ୍ତା ।' ତା' ପରେ ସେ ଉଦାର ଭାବରେ କହିଲେ, 'ସେ ଯାହାହେଉ, ଅତୀତ କଥା ଘାଣ୍ଟି ଲାଭ ନାହିଁ । ୟେରବାଡ଼ା ଚୁକ୍ତିକୁ ଅନୁମୋଦନ କରି ଆଗତ ହୋଇଥିବା ଏ ପ୍ରସ୍ତାବକୁ ମୁଁ ଆଜି ସମର୍ଥନ କରିବାକୁ ସମର୍ଥ ହୋଇ ଆନନ୍ଦିତ ହେଉଛି ।'

୧୯୩୧ ସେପ୍ଟେମ୍ବରଠାରୁ ଡିସେମ୍ବର ମଧ୍ୟରେ ବସିଥିବା ଗୋଲଟେବୁଲ ବୈଠକରେ ଗାନ୍ଧୀ ହରିଜନଙ୍କ ପାଇଁ ବ୍ୟବସ୍ଥାପକସଭାରେ ସ୍ଥାନ ସଂରକ୍ଷିତ ହେବାର ବିରୋଧ କରିଥିଲେ ; କାରଣ, ସେ ମନେ କରୁଥିଲେ, ଏଦ୍ୱାରା ସବର୍ଣ୍ଣ ଓ ଅସବର୍ଣ୍ଣ ହିନ୍ଦୁଙ୍କ ଭିତରେ ସ୍ଥାୟୀ ବିଭେଦ ହୋଇଯିବ । କିନ୍ତୁ ୧୯୩୨ ସେପ୍ଟେମ୍ବର ୧୩ ତାରିଖରେ, ଏବଂ ତା'ପରେ ପୁଣି ସେଇମାସର ୧୯ ତାରିଖରେ ସେ ସ୍ଥାନ ସଂରକ୍ଷିତ ହେବା ବ୍ୟବସ୍ଥାକୁ ଗ୍ରହଣ କରିବାକୁ ପ୍ରସ୍ତୁତ ହେଲେ । ଗ୍ରହଣ ନ କଲେ ନ ଚଳେ ବୋଲି ସେ ହୃଦୟଙ୍ଗମ କରିଥିଲେ ଏବଂ ଆଶା କରୁଥିଲେ ଯେ, ଏହି ଅନିଷ୍ଟକର ବ୍ୟବସ୍ଥା ଅଳ୍ପ ଦିନରେ ରଦ୍ ହୋଇଯିବ । ମ୍ୟାକ୍ଡୋନାଲ୍ଡ଼୍ ଯାହା ନିଷ୍ପତ୍ତି କରିଥିଲେ ତଦ୍ଦ୍ୱାରା ସବର୍ଣ୍ଣ ଓ ଅସବର୍ଣ୍ଣଙ୍କ ପାଇଁ ସ୍ୱତନ୍ତ୍ର ନିର୍ବାଚନମଣ୍ଡଳୀ ହେବାଦ୍ୱାରା ଉଭୟ ସଂପ୍ରଦାୟ ଏକାବେଳକେ ଅଲଗା ହୋଇ ଯାଇଥାନ୍ତେ ; ତା' ଅପେକ୍ଷା ଏକ ନିର୍ବାଚନମଣ୍ଡଳୀରେ ହରିଜନଙ୍କ ପାଇଁ ସ୍ଥାନ ସଂରକ୍ଷିତ ହେବା ସହସ୍ରଗୁଣେ ଭଲ ବୋଲି ସେ ଯଥାର୍ଥ ଉପଲବ୍ଧି କଲେ ।

କିନ୍ତୁ ଗାନ୍ଧୀ ଯଦି ଏହି ମତ ଗୋଲଟେବୁଲ୍ ବୈଠକରେ ବା ଅନଶନର କେତେ ମାସ ପୂର୍ବରୁ ଦେଇଥାନ୍ତେ ତେବେ ରକ୍ଷଣଶୀଳ ହିନ୍ଦୁମାନେ ତାଙ୍କ ମତକୁ ସଂଭବତଃ ମାନି ଯାଇ ନ ଥାନ୍ତେ । ପୁନା ଚୁକ୍ତିପତ୍ର ଗଠା ହେଲାବେଳେ ମଧ୍ୟସ୍ଥି କରିଥିବା ଜଣେ ହିନ୍ଦୁ ଭଦ୍ରବ୍ୟକ୍ତି ପରେ ମୋତେ କହିଥିଲେ ଯେ, ଗାନ୍ଧୀଙ୍କ ମତବାଦର ସେ କେବେଁ ସମର୍ଥକ

ନ ଥିଲେ, କିନ୍ତୁ ଯେରବାଡ଼ାରେ ସେ ନାଗର ହୋଇଗଲେ । ଗାନ୍ଧୀ ସ୍ୱୟଂ ଭଗବାନ୍ ଅବତାର ଗ୍ରହଣ କରି ମର୍ତ୍ତ୍ୟରେ ଅବତୀର୍ଣ୍ଣ ହୋଇଛନ୍ତି ; ଏଣେ ସ୍ୱଧାମକୁ ଫେରିଯିବା ପାଇଁ ତାଙ୍କ ସକାଶ ସ୍ୱର୍ଗଦ୍ୱାର ଉନ୍ମୁକ୍ତ ହୋଇଗଲାଣି । ଏପରି ଅବସ୍ଥାରେ ଯେରବାଡ଼ା ଚୁକ୍ତିରେ ରାଜି ନ ହୋଇ ସେ କରିଥାନ୍ତେ କ'ଣ ? ବାସ୍ତବିକ ମହାତ୍ମାଙ୍କ ମୃତ୍ୟୁର ଆଶଂକା ଯୋଗୁଁ ହିନ୍ଦୁ ନେତାମାନେ ଗାନ୍ଧୀଙ୍କ କଥାରେ ରାଜି ହୋଇ ଯାଇଥିଲେ ।

ଅପରପକ୍ଷେ ଅନୁମାନ କରାଯାଉ, ହିନ୍ଦୁ ନେତାମାନେ ଅନଶନ ପୂର୍ବରୁ ହରିଜନଙ୍କ ପାଇଁ ସ୍ଥାନ-ସଂରକ୍ଷଣ ବ୍ୟବସ୍ଥା ମାନି ଯାଇଥାନ୍ତେ । ତେବେ କ'ଣ ଅନଶନ ନିଷ୍ପ୍ରୟୋଜନ ହୋଇଯାଇଥାନ୍ତା ? ଗାନ୍ଧୀ ଯେଉଁ କ୍ଲେଶ ସହିଲେ ତାହା କ'ଣ ତେବେ ବୃଥାରେ ସହିଲେ ?

ଭାରତ-ଇତିହାସରେ ଗାନ୍ଧୀଙ୍କ ଭୂମିକାର ଯଥାର୍ଥ ଅବଧାରଣା ହେଲେ ଯାଇ ଏ ପ୍ରଶ୍ନର ଉତ୍ତର ଦେଇ ହେବ । ଶୁଷ୍କ ତର୍କଶାସ୍ତ୍ର ଓ ନିର୍ମମ ଆଇନ୍‌ସମ୍ମତ ବିଚାରବୁଦ୍ଧିକୁ ଦିଶିବ ଯେ, ଆମ୍ବେଦ୍‌କରଙ୍କ ସଙ୍ଗେ ଗୋଟାଏ ରାଜିନାମା କରିବା ପାଇଁ ଗାନ୍ଧୀଙ୍କ ଅନଶନର ପ୍ରୟୋଜନ ନ ଥିଲା । କିନ୍ତୁ ଭାରତୀୟ ଜନତା ସଙ୍ଗେ ମହାତ୍ମା ଗାନ୍ଧୀଙ୍କ ସଂପର୍କ ତର୍କ ବା ଆଇନ୍‌ର ମାପକାଠିରେ ସ୍ଥାପିତ ହୋଇ ନ ଥିଲା । ଗାନ୍ଧୀ ଓ ଭାରତୀୟ ଜନତା ହୃଦୟର ଆବେଗ ଓ ଭାବର ଉଚ୍ଛ୍ୱାସରେ ବାନ୍ଧି ହୋଇଥିଲେ । ହିନ୍ଦୁଙ୍କ ଦୃଷ୍ଟିରେ ଗାନ୍ଧୀ ଥିଲେ ମହାତ୍ମା, ମହାନ୍ ଆତ୍ମା, ଭଗବାନଙ୍କର କଳାରେ ଜାତ । ଜନତା ବିଚାରିଲା : ଏଭଳି ମହାପୁରୁଷଙ୍କୁ କ'ଣ ଜୀବନରେ ମାରିଦେବା । ମହାତ୍ମାଙ୍କ ଅନଶନ ଆରମ୍ଭ ହେବା ମାତ୍ରେ, ସ୍ମୃତି, ଶାସ୍ତ୍ର, ସଂବିଧାନ, ନିଷ୍ପତ୍ତି, ନିର୍ବାଚନ—ଏ ସବୁ ହିନ୍ଦୁଙ୍କ ଦୃଷ୍ଟିରେ ତୁଚ୍ଛ ହୋଇଗଲା । ଏକମାତ୍ର ଚିନ୍ତାର ବିଷୟ ହେଲା, ମହାତ୍ମାଙ୍କ ପ୍ରାଣ କିପରି ରକ୍ଷା ହେବ ।

ସେପ୍‌ଟେମ୍ବର ୧୩ ତାରିଖରେ ଗାନ୍ଧୀ ଅନଶନ କରିବେ ବୋଲି ଘୋଷଣା କରିବାଠାରୁ ସେଇମାସ ୨୬ ତାରିଖରେ କମଳାରସ ଖାଇ ଅନଶନ ଭାଙ୍ଗିବା ପର୍ଯ୍ୟନ୍ତ ତାଙ୍କ ଶାରୀରିକ ଅବସ୍ଥାର ସାମାନ୍ୟତମ ପରିବର୍ତ୍ତନର ବିବରଣୀ, ତାଙ୍କୁ ଦେଖିକରି ଆସିଥିବା ଲୋକଙ୍କର ପ୍ରତି କଥା, ହରିଜନ ସମସ୍ୟାର ସମାଧାନରେ ଲାଗିଥିବା ନ୍ୟୁନତମ ନେତାଙ୍କର ପ୍ରତ୍ୟେକ ଗତିବିଧି, ସାଙ୍ଗେ ସାଙ୍ଗେ ଦେଶର ଏ ପ୍ରାନ୍ତରୁ ସେ ପ୍ରାନ୍ତ ପର୍ଯ୍ୟନ୍ତ ପ୍ରସାରିତ ହୋଇ ଯାଉଥାଏ । ସମଗ୍ର ଭାରତ ଯେଭଳି ଉତ୍କଣ୍ଠାରେ

ଯେରବାଡ଼ା ଜେଲ୍ ଅଗଣାର ଧଳା ଖଟିଆରେ ଶୋଇଥିବା ମୁମୂର୍ଷୁ ଗାନ୍ଧୀଙ୍କୁ ଗୃହିଁଥାଏ, ତହିଁରୁ ଅଧିକ ଉତ୍କଣ୍ଠାରେ କୌଣସି ମା, ଅଙ୍କପାଖରେ ଜର ବଢ଼ିଯାଇଥିବା ଯୋଗୁଁ ଜୀବନସଙ୍କଟରେ ପଡ଼ିଥିବା ତା ଦୁର୍ବଳ ଶିଶୁର ଦୋଳ ପାଖରେ ବାଉଳା ହେଉ ନ ଥିବ । ଗାନ୍ଧୀ ପରମାର୍ଥୀ ନ ଥିଲେ; ହେଲେ କ'ଣ ହେବ, ସେ ବୁଦ୍ଧିର ଅଗମ୍ୟ ଗୋଟାଏ କପର ଅତିମାନୁଷ ଶକ୍ତି ବଳରେ ସମସ୍ତଙ୍କ ମନକୁ ହରଣ କରି ଦେଇଥିଲେ । ପିଲା ସଙ୍ଗେ ମା ଯେଉଁଭଳି ଏକ ହୋଇଯାଏ, ଜନତା ସଙ୍ଗେ ତାଙ୍କର ସେହିପରି ଗୋଟାଏ ଅବିଚ୍ଛେଦ୍ୟ ଭାବ ଆସି ଯାଇଥିଲା । ତର୍କ ବହୁ ଦୂରକୁ ଗ୍ଲଲି ଯାଇଥିଲା ; ଶେଷବେଳ ଯେ କୌଣସି ମୁହୂର୍ତ୍ତରେ ଆସି ଯାଇପାରେ—ଏହି ଆଶଂକାରେ ତ୍ରସ୍ତ ହୋଇ, ବିଭ୍ରାନ୍ତ ଭାବେ ପ୍ରତ୍ୟେକ ହିନ୍ଦୁ ଗୋଟିଏ ମାତ୍ର କାମନାରେ ବିଭୋର ହୋଇ ରହିଥାନ୍ତି—ମହାତ୍ମାଙ୍କର ଦେହାନ୍ତ ନ ହେଉ ।

ତାଙ୍କ ଜୀବନ ପାଇଁ ଗାନ୍ଧୀ ପ୍ରତ୍ୟେକ ହିନ୍ଦୁଙ୍କୁ ବ୍ୟକ୍ତିଗତ ଭାବେ ଦାୟୀ କରି ଦେଇଥିଲେ । ସେପ୍ଟେମ୍ବର୍ ୧୫ ତାରିଖରେ ଗୋଟିଏ ବିବୃତି ଭାରତର ସବୁ ପ୍ରାନ୍ତରେ ପ୍ରଚାରିତ କରିଦେଇ ଗାନ୍ଧୀ ସତର୍କ କରାଇ ଦେଇଥାନ୍ତି, 'ସବର୍ଣ୍ଣ ହିନ୍ଦୁ ଓ ଅସବର୍ଣ୍ଣଙ୍କ ନେତାଙ୍କ ଭିତରେ ଯେନକେନ ପ୍ରକାରେଣ ଗୋଟାଏ ରାଜିନାମା ହୋଇଗଲେ ଚଳିବ ନାହିଁ । ଯଥାର୍ଥଭାବେ ରାଜିନାମା ହେବା ଦରକାର । ଅସ୍ପୃଶ୍ୟତା କଳଙ୍କ ସମୂଳେ ବିତାଡ଼ିତ କରିବାକୁ ଯଦି ହିନ୍ଦୁ ଜନତା ପ୍ରସ୍ତୁତ ନ ହୁଏ, ତେବେ ମନରେ କୌଣସି ଦ୍ୱିଧା ନ ରଖି ସେ ମୋ ଜୀବନର ମାୟା ଗ୍ଭଡ଼ିବାକୁ ପ୍ରସ୍ତୁତ ହେଉ ।'

ତେଣୁ, ମଧ୍ୟସ୍ଥମାନେ କଥାବାର୍ତ୍ତା ଚଳାଇଥିବା ବେଳେ, ପ୍ରାୟ ପଚିଶ କୋଟି ଲୋକବିଶିଷ୍ଟ ବିରାଟ ହିନ୍ଦୁ ସଂପ୍ରଦାୟର ଧର୍ମ ଓ ବିଶ୍ୱାସରେ ମହାପ୍ରଳୟ ଗ୍ଲଲିଥାଏ । ଅନଶନ ସପ୍ତାହର ପ୍ରାରମ୍ଭରେ କଲିକତାର ପ୍ରସିଦ୍ଧ କାଳିଘାଟ ମନ୍ଦିର, ଓ ରକ୍ଷଣଶୀଳତାର ଦୁର୍ଗ ବନାରସର ରାମ ମନ୍ଦିରର ଦ୍ୱାର ଅସ୍ପୃଶ୍ୟମାନଙ୍କ ପାଇଁ ଉନ୍ମୁକ୍ତ ହୋଇଗଲା । ଦିଲ୍ଲୀରେ ସବର୍ଣ୍ଣ ହିନ୍ଦୁ ଓ ହରିଜନମାନେ ବିଚରାସ୍ତାରେ ଓ ମନ୍ଦିର ଭିତରେ କୋଳାକୋଳି ହେଲେ । ବମ୍ବେରେ ଜାତୀୟତାଭାବରେ ଉଦ୍‌ବୁଦ୍ଧା ନାରୀମାନଙ୍କର ଗୋଟିଏ ଅନୁଷ୍ଠାନ ସାତଟି ପ୍ରସିଦ୍ଧ ମନ୍ଦିର ସମ୍ମୁଖରେ ଭୋଟ ଦେବାର ବ୍ୟବସ୍ଥା କଲେ । ମନ୍ଦିରମାନଙ୍କର ସିଂହଦ୍ୱାରରେ ଭୋଟ ବାକ୍‌ସ ରଖାଗଲା ; ସ୍ୱେଚ୍ଛାସେବକମାନେ ତା' ପାଖେ ଠିଆ ହୋଇ ଅସ୍ପୃଶ୍ୟମାନଙ୍କୁ ମନ୍ଦିର

ଭିତରେ ପ୍ରବେଶ କରିବାକୁ ଦିଆଯିବ କି ନାହିଁ ଭୋଟ ଦେବାକୁ ଆହ୍ୱାନ କରୁଥାନ୍ତି। ଗଣତିରେ ଦେଖାଗଲା, ଅସ୍ପୃଶ୍ୟମାନେ ମନ୍ଦିରକୁ ଯିବା ସପକ୍ଷରେ ହେଲା ୨୪, ୭୯୭ ଭୋଟ ଓ ବିପକ୍ଷରେ ୪୪୫ ଭୋଟ । ଫଳତଃ ଏ ମନ୍ଦିରମାନଙ୍କରେ ଅସ୍ପୃଶ୍ୟମାନେ ପଶିବାକୁ ଛାଡ଼ି ଦିଆଗଲା । କସ୍ମିନ୍‌କାଳେ ଏ ମନ୍ଦିରମାନଙ୍କ ଭିତରେ ଅସ୍ପୃଶ୍ୟଙ୍କର ପାଦ ପଡ଼ି ନ ଥିଲା ।

ଅନଶନ ଆରମ୍ଭ ହେବାର ପୂର୍ବଦିନ ଆହ୍ଲାବାଦର ବାରଟି ମନ୍ଦିରରେ ହରିଜନମାନଙ୍କୁ ପ୍ରବେଶାଧିକାର ନୂଆ କରି ଦିଆଗଲା । ଅନଶନ ଆରମ୍ଭ ହେବା ଦିନ ଭାରତର ବିଭିନ୍ନ ଅଞ୍ଚଳର କେତେକ ପ୍ରସିଦ୍ଧ ଧର୍ମ-ପୀଠର ଦ୍ୱାର ଅସ୍ପୃଶ୍ୟଙ୍କ ପାଇଁ ଉନ୍ମୁକ୍ତ ହେଲା । ସେପ୍‌ଟେମ୍ବର ୨୭ ତାରିଖ ଯାଏଁ ପ୍ରତ୍ୟହ କୋଡ଼ି କୋଡ଼ି ଧର୍ମମନ୍ଦିରର ଅର୍ଗଳ ହରିଜନଙ୍କ ପାଇଁ କାଢ଼ି ଦିଆଗଲା । ତା'ପରେ ୨୭ ତାରିଖରୁ ଗାନ୍ଧୀଙ୍କର ଜନ୍ମଦିନ ୨ ତାରିଖଯାଏଁ ଅସ୍ପୃଶ୍ୟତାନିବାରଣ ସପ୍ତାହରେ ମଧ୍ୟ ସେଇ ରୀତି ଚଳିଲା । ବରୋଦା, କାଶ୍ମୀର, ଭୋର ଓ କୋହ୍ଲାପୁର ଦେଶୀୟ ରାଜ୍ୟମାନ ନିଜ ନିଜ ରାଜ୍ୟର ମନ୍ଦିରମାନଙ୍କରେ ସବର୍ଣ୍ଣଙ୍କ ପରି ଅସବର୍ଣ୍ଣ ମଧ୍ୟ ପ୍ରବେଶ କରି-ପାରିବେ ବୋଲି ହୁକୁମନାମା ଜାରି କରି ଦେଲେ । ଖବରକାଗଜମାନେ, ଅସ୍ପୃଶ୍ୟଙ୍କୁ ପ୍ରବେଶାଧିକାର ଦେଇଥିବା ଶହଶହ ମନ୍ଦିରଙ୍କର ନାମ ପ୍ରକାଶ କଲେ । ଏ ସବୁ ହୋଇଥିଲା ଗାନ୍ଧୀଜୀଙ୍କ ଅନଶନର ପ୍ରଭାବରେ ।

ଜବାହାରଲାଲଙ୍କ ଅତି ନୈଷ୍ଠିକ ମା ଶ୍ରୀମତୀ ସ୍ୱରୂପରାଣୀ ନେହେରୁ ଅସ୍ପୃଶ୍ୟହାତରେ ଭାତ ଖାଇ ଏକଥା ଖବରକାଗଜରେ ପ୍ରକାଶ କରାଇ-ଦେଲେ । ହଜାର ହଜାର ବିଶିଷ୍ଟା ହିନ୍ଦୁ ରମଣୀ ସ୍ୱରୂପରାଣୀଙ୍କ ଆଦର୍ଶର ଅନୁବର୍ତ୍ତିନୀ ହେଲେ । ହିନ୍ଦୁଧର୍ମକୁ ନିଷ୍ଠାର ସହିତ ମାନୁଥିବା ବନାରସ ହିନ୍ଦୁ ବିଶ୍ୱବିଦ୍ୟାଳୟର ପ୍ରିନ୍‌ସିପାଲ୍ ଧ୍ରୁବ ବହୁ ସଂଖ୍ୟକ ବ୍ରାହ୍ମଣମାନଙ୍କ ସହିତ ମେହେନ୍ତର, ମୋଚି, ଓ ଝାଡ଼ୁଦାରଙ୍କର ପଂକ୍ତିଭୋଜନରେ ବସିଲେ । ଆହୁରି ଶହଶହ ସ୍ଥାନରେ ଏହିପରି ପଂକ୍ତିଭୋଜନର ବ୍ୟବସ୍ଥା ହୋଇଥିଲା ।

ଗ୍ରାମମାନଙ୍କରେ କ୍ଷୁଦ୍ର ଓ ବୃହତ୍ ସହରମାନଙ୍କରେ ସଭା, ସମିତି ହୋଇ ଅସ୍ପୃଶ୍ୟମାନଙ୍କ ପ୍ରତି କୌଣସି ବାଛନ୍ଦ ରହିବନାହିଁ ବୋଲି ପ୍ରସ୍ତାବ ପାସ୍ ହେଲା । ଏହି ପ୍ରତିଜ୍ଞାପତ୍ରମାନଙ୍କର ନକଲ ଗାନ୍ଧୀଙ୍କ ବନ୍ଦୀଶାଳର ଅଗଣାରେ ମୁଣ୍ଡେ ଉଚ୍ଚରେ ଯାଇ ଜମା ହୋଇଗଲା ।

କ୍ଷୁଦ୍ର ସହର ଓ ଗ୍ରାମମାନଙ୍କରେ ମଧ୍ୟ ସର୍ବସାଧାରଣ କୂଅରୁ ପାଣି

ନେବାପାଇଁ ଅସ୍ପୃଶ୍ୟମାନଙ୍କୁ ସୁଯୋଗ ମିଳିଲା । ସ୍କୁଲରେ ହରିଜନ ପିଲାଙ୍କ ପାଇଁ ଯେଉଁ ବେଞ୍ଚସବୁ ଅଲଗା ହୋଇ ପଡ଼ିଥିଲା ସେଥିରେ ହିନ୍ଦୁ ପିଲାମାନେ ଯାଇ ହରିଜନ ପିଲାଙ୍କ ସଙ୍ଗେ ବସିଲେ । ଯେଉଁ ଗଳି ଓ ରାସ୍ତାରେ ପୂର୍ବେ ସେମାନଙ୍କୁ ପଶିବାକୁ ମନା ଥିଲା ସେଥିରେ ସେମାନଙ୍କୁ ଯିବାକୁ ଦିଆଗଲା ।

ସଂସ୍କାର, ପ୍ରାୟଶ୍ଚିତ୍ତ ଓ ଆତ୍ମ-ଶୁଦ୍ଧିର ଏକ ତରଙ୍ଗ ସମଗ୍ର ଦେଶରେ ଖେଳିଗଲା । ମହାତ୍ମା ଜୀ ଯେଉଁ ଛ' ଦିନ ଅନଶନ କଲେ ସେ ଛ'ଦିନ ଯାକ ଅଧିକାଂଶ ହିନ୍ଦୁ ସିନେମା, ଥିଏଟର୍ ଓ ହୋଟେଲକୁ ଯିବା ବନ୍ଦ କରି ଦେଲେ । ବିବାହ ଉତ୍ସବ ମଧ୍ୟ ଅନ୍ୟ ତିଥିକୁ ଘୁଞ୍ଚାଇ ଦିଆଗଲା ।

ଗାନ୍ଧୀ ଓ ଆମ୍ବେଦକରଙ୍କ ମଧ୍ୟରେ, ବିନା ଅନଶନରେ, ଗୋଟାଏ ନୀରସ ରାଜନୀତିକ ସମଜାସି ହୋଇଥିଲେ ଜାତି ଉପରେ ଏଭଳି ପ୍ରଭାବ ପଡ଼ି ନ ଥାନ୍ତା । ଆଇନତଃ ହରିଜନମାନଙ୍କର ଗୋଟାଏ ଅଭିଯୋଗ ହୁଏତ ଦୂର ହୋଇଯାଇଥାନ୍ତା, କିନ୍ତୁ ଏ ରାଜିନାମା ଖାଲି କାଗଜରେ ହିଁ ରହି-ଯାଇଥାନ୍ତା ; ହିନ୍ଦୁମାନେ ସାମାଜିକ ଜୀବନରେ ଅସ୍ପୃଶ୍ୟମାନଙ୍କୁ ଯେପରି ଦୂରଛଡ଼ା କରି ରଖିଥିଲେ ସେଥିରେ ଆଞ୍ଚ ଲାଗି ନ ଥାନ୍ତା । ଅଧିକାଂଶ ହିନ୍ଦୁଙ୍କ କାନରେ ବି ଏ ରାଜିନାମା କଥା ପଡ଼ି ନ ଥାନ୍ତା । ଗାନ୍ଧୀଙ୍କ ଅନଶନ ସମଗ୍ର ଦେଶର ଚିନ୍ତାଧାରାରେ ଯେଉଁ ଆଲୋଡ଼ନ ସୃଷ୍ଟି କଲା ତାହାରି ପୃଷ୍ଠଭୂମିରେ ହିଁ ୟେରବାଡ଼ା ରାଜିନାମାର ମହତ୍ତ୍ୱ ପ୍ରକାଶିତ ହେଲା ।

ଅସ୍ପୃଶ୍ୟତା ତିନି ହଜାର ବର୍ଷରୁ ଅଧିକ କାଳର କଳଙ୍କ । ଗାନ୍ଧୀଙ୍କ ଅନଶନ ଏ କଳଙ୍କକୁ ସମୂଳେ ଦୂର କରିବାକୁ ସମର୍ଥ ହେଲା ନାହିଁ ବୋଲି ସ୍ୱୀକାର କରିବାକୁ ହେବ । ପୁଣି, ମନ୍ଦିରରେ ପ୍ରବେଶ କରିବାର ଅଧିକାର ମିଳିଗଲା ବୋଲି ଯେ ପ୍ରତ୍ୟେକ ହରିଜନ ପାଇଁ ଭଲ ଗୃହକର୍ମ ଖଣ୍ଡେ ମିଳିଯିବ, ତାହା ତ ନୁହେଁ । ଭାରତୀୟ ସମାଜରେ ହରିଜନମାନେ ପୂର୍ବ ପରି ହୀନ ଅବସ୍ଥାରେ ରହିଥିଲେ । ଗାନ୍ଧୀ ଅନଶନ ପରେ ଧୀରେ ଧୀରେ କମଳାରସ ପିଇବା ମାତ୍ରେ ସେମାନଙ୍କର ସେ ଅବସ୍ଥା ଦୂର ହୋଇଗଲା ନାହିଁ ।

କିନ୍ତୁ ଗାନ୍ଧୀଙ୍କ ଅନଶନ ପରେ, ଅସ୍ପୃଶ୍ୟତ ସର୍ବସମ୍ମତ ପ୍ରଥା ହୋଇ ଆଉ ରହିଲା ନାହିଁ । ନୈଷ୍ଠିକ ହିନ୍ଦୁଙ୍କର ଏଥିରେ ବିଶ୍ୱାସ ନଷ୍ଟ ହୋଇଗଲା । ବହୁ ଆଧ୍ୟାତ୍ମିକ ବିଶ୍ୱାସର ବାହ୍ୟ ପ୍ରବାହ ଓ ଅନ୍ତଃସ୍ରୋତରେ ଓତଃପ୍ରୋତ ଜଟିଳ ଧର୍ମଧାରଣାରେ ବହୁକାଳ ସ୍ୱୀକୃତ ଅସ୍ପୃଶ୍ୟତା-ପ୍ରଥାର

ନୈତିକ ଭିତ୍ତିଭୂମି ନାହିଁ ବୋଲି ସର୍ବସାଧାରଣରେ ସ୍ୱୀକୃତ ହୋଇଗଲା । ସଂସ୍କୃତି, ପ୍ରଥା, ଓ ଧର୍ମଗ୍ରନ୍ଥରେ ସ୍ୱୀକୃତ ଭେଦଭାବର ଶକ୍ତି ଲୋପ ହୋଇଗଲା । ହରିଜନଙ୍କ ସଙ୍ଗେ ବୈବାହିକ ସଂବଂଧ ରଖିବା ସାମାଜିକ ଦୃଷ୍ଟିରେ ଦୂଷଣୀୟ ହୋଇଥିଲା, ଏବେ ବହୁ କ୍ଷେତ୍ରରେ ଏପରି ସଂବଂଧ ନ ରଖିବା ଦୂଷଣୀୟ ବୋଲି ଗୃହୀତ ହେଲା । ଯେଉଁମାନେ ଅସ୍ପୃଶ୍ୟତା ପ୍ରଥା ମାନି ଚଳିଲେ ସେମାନେ ପ୍ରତିକ୍ରିୟାଶୀଳ ଧର୍ମଧ୍ୱଜୀ ବୋଲି ନିନ୍ଦିତ ହେଲେ । ଅଳ୍ପ ଦିନ ଭିତରେ ହରିଜନ ଓ ହିନ୍ଦୁଙ୍କ ମଧ୍ୟରେ ବିବାହ ସଂପର୍କ ଆରମ୍ଭ ହେଲା । ଗାନ୍ଧୀ ଏଭଳି କେତେକ ବିବାହ ଉତ୍ସବରେ ଯୋଗ ଦେବା ନିଜର କର୍ତ୍ତବ୍ୟ ବୋଲି ବିଚାରି ଯୋଗ ଦେଲେ ।

ଯେଉଁ ଦୀର୍ଘ ଶୃଂଖଳ ବହୁପୂର୍ବକାଳରୁ ଏ ଯୁଗ ପାଇଁ ଲମ୍ବି ରହିଥିଲା ଓ ଲକ୍ଷ ଲକ୍ଷ ଲୋକଙ୍କୁ ଦାସ କରି ରଖିଥିଲା ତାହା ଗାନ୍ଧୀଙ୍କର ଏହି ଐତିହାସିକ ଅନଶନ ଫଳରେ ଛିନ୍ନ ହୋଇଗଲା । ଏ ଶୃଂଖଳର କେତେ ପଗ ମାତ୍ର ଅବଶେଷ ରହିଲା । ଶୃଂଖଳର ସଂଘର୍ଷରେ ହୋଇଥିବା ଆଘାତ ବି ରହିଲା । କିନ୍ତୁ ଆଉ ନୂଆ ଶୃଂଖଳ ଯେ କେହି ଗଢ଼ିବ ନାହିଁ ଏକଥା ନିଶ୍ଚିତ । ବିଚ୍ଛିନ୍ନ ହୋଇ ପଡ଼ିଥିବା ପଗମାନଙ୍କୁ ମଧ୍ୟ ଆଉ କେହି ଯୋଡ଼ିବାକୁ ଚେଷ୍ଟା କରିବ ନାହିଁ । ଗାନ୍ଧୀଙ୍କ ଅନଶନ ଫଳରେ ଭବିଷ୍ୟତରେ ଅସ୍ପୃଶ୍ୟମାନଙ୍କର ସ୍ୱାଧୀନତାର ମାର୍ଗ ପରିଷ୍କୃତ ହୋଇ-ଗଲା ।

ୟେରବାଡ଼ା ଚୁକ୍ତିପତ୍ରରେ ଲିପିବଦ୍ଧ ହେଲା, 'ଜନ୍ମ ଯୋଗୁଁ କେହି ଅସ୍ପୃଶ୍ୟ ବୋଲି ଅଭିହିତ ହେବେ ନାହିଁ··· ।' ଏ ଚୁକ୍ତିପତ୍ରରେ ଏଭଳି ଲୋକେ ଦସ୍ତଖତ କରିଛନ୍ତି ଯାହାଙ୍କୁ ଧର୍ମଗୁରୁ ବୋଲି ବହୁ ଲୋକେ ମାନନ୍ତି । ଏ ଚୁକ୍ତିପତ୍ରଦ୍ୱାରା ହିନ୍ଦୁଧର୍ମର ସଂସ୍କାର ହେଲା, ହିନ୍ଦୁମାନଙ୍କର ମନସ୍ତାତ୍ତ୍ୱିକ ବିପ୍ଳବ ସଂଘଟିତ ହେଲା । ହିନ୍ଦୁ ଧର୍ମ ହଜାର ହଜାର ବର୍ଷର ରୋଗରୁ ମୁକ୍ତି ପାଇଲା । ଜନତା ପ୍ରାୟଶ୍ଚିତ୍ତ କରି ଆତ୍ମଶୁଦ୍ଧି କଲେ । ଭାରତର ନୈତିକ ସ୍ୱାସ୍ଥ୍ୟ ଫେରି ଆସିଲା । ଅସ୍ପୃଶ୍ୟତା ପ୍ରଥା ପୂର୍ବ ପରି ଚାଲୁ ରଖିଥିଲେ ଭାରତର ଆତ୍ମା ବିଷଦଗ୍ଧ ହୋଇ ଯାଇଥାନ୍ତା, ଏବଂ ଏହି ପ୍ରଥାର ଆର୍ଥନୀତିକ ଉପସର୍ଗମାନଙ୍କୁ ଯଦି ଦୂର କରା ନ ଯାଏ ତେବେ ଭାରତର ଆର୍ଥନୀତିକ ବିକାଶ ବ୍ୟାହତ ହେବ ।

ଅସ୍ପୃଶ୍ୟତା ପ୍ରାଚୀରକୁ ଭାଙ୍ଗିବା ବ୍ୟତୀତ ଆଉ କୌଣସି କାର୍ଯ୍ୟ

ଗାନ୍ଧୀ ତାଙ୍କ ଜୀବନରେ ନ କରିଥିଲେ, ସେ ମହାନ୍ ସମାଜସଂସ୍କାରକ ଭାବେ ଯଶ ଅର୍ଜିଥାନ୍ତେ । ଏ ଘଟଣାର ପରେ, ଏହାର ସିଂହାବଲୋକନ କଲେ ମନେ ହେଉଛି, ବ୍ୟବସ୍ଥା ସମ୍ବରେ ହରିଜନମାନଙ୍କ ସଂଖ୍ୟା, ସେମାନଙ୍କ ପାଇଁ ପ୍ରାଥମିକ ନିର୍ବାଚନ ଏବଂ ସଂରକ୍ଷିତ ଆସନ ବ୍ୟବସ୍ଥା ରଦ୍ କରିବା ସକାଶ ହରିଜନଙ୍କ ଗଣଭୋଟ ଆଦି ଯେଉଁ ସବୁ ବିଷୟରେ ଆମ୍ବେଦକରଙ୍କ ସଙ୍ଗେ ଭିଡ଼ା ଓଟରା ଲାଗିଥିଲା, ତାହା ସେ ବର୍ଷ ପାଣି ହୋଇ ବହିଯାଇଥିବା ହିମାଳୟର ବରଫ ପରି ଅସ୍ଥାୟୀ । ପ୍ରକୃତ ସ୍ଥାୟୀ କାର୍ଯ୍ୟ ହୋଇଥିଲା ସାମାଜିକ ଧର୍ମସଂପର୍କୀୟ ସଂସ୍କାର, ରାଜନୀତିକ ବୁଝା-ମଣା ନୁହେଁ ।

ଅନଶନ ଭାଂଗିବାର ପାଞ୍ଚ ଦିନ ପରେ ଗାନ୍ଧୀଙ୍କ ଶରୀରର ଓଜନ ୯୯ ପାଉଣ୍ଡ୍ ୧୨ ଆଉନ୍‌ସକୁ ବଢ଼ି ଯାଇଥିଲା ଓ ସେ ପ୍ରତ୍ୟହ ବହୁ ଘଣ୍ଟା ସୂତାକଟା ଓ ଅନ୍ୟାନ୍ୟ କାର୍ଯରେ କଟାଉଥିଲେ । ଏଇ ସମୟରେ ସେ ମିସ୍ ସ୍ଲେଡ୍‌ଙ୍କ ପାଖକୁ ଲେଖିଥିଲେ, 'ଅସ୍ପୃଶ୍ୟମାନେ ଯୁଗ ଯୁଗ ଧରି ଯେଉଁ ଯାତନା ସହି ଆସିଛନ୍ତି ତା' ତୁଳନାରେ ମୋର ଅନଶନ କିଛି ନୁହେଁ । ଶେଷରେ ସେ ଲେଖିଥିଲେ, 'ତେଣୁ ମୁଁ ମନେ ମନେ ଗାନ କରି ଚାଲିଛି, 'ମହିମାମୟ ଭଗବାନଙ୍କର ଅପାର ଦୟା ।'

ସେ ବନ୍ଦୀଶାଳାରେ ହିଁ ରହିଲେ ।

ବନ୍ଦୀଶାଳାରେ ଥାଇ ତାଙ୍କ ଅନଶନ ଯୋଗୁଁ ସେ ସମଗ୍ର ହିନ୍ଦୁ-ଭାରତର ହୃଦୟକୁ ପହଞ୍ଚି ପାରିଲେ । ଜନତାର ହୃଦୟ ସଂଗେ ସଂପର୍କ ରଖିବାକୁ ତାଙ୍କର ନିତାନ୍ତ ପ୍ରୟୋଜନ ପଡ଼ିଲା । ମାନବ ଅନ୍ତରର ହୃଦୟ-ତନ୍ତ୍ରୀରେ ହାତ ମାରିବାର କୁଶଳୀକଳାକାରସୁଲଭ ପ୍ରତିଭା ତାଙ୍କର ଥିଲା । ୧୦ ନୁହେଁ, କୋଡ଼ିଏ ନୁହେଁ, ୩୦ କୋଟି ଲୋକଙ୍କ ସଙ୍ଗେ ସେ ସଂପର୍କ ରଖନ୍ତେ କିପରି ? ଏମାନେ ପୁଣି ଅଧିକାଂଶ ନିରକ୍ଷର, ଓ'ସ୍ୟାଙ୍କ ଭିତରୁ ମାତ୍ର ପାଞ୍ଚ ହଜାରଙ୍କର ଅଛି ରେଡ଼ିଓ । ସଂଯୋଗ ରଖିବାର ସାଧନ ହେଉଥିଲା ତାଂକ ଅନଶନ । ଅନଶନସଂବାଦ ପ୍ରତ୍ୟେକ ସଂବାଦପତ୍ରରେ ପ୍ରକାଶ ପାଇଲା । ଯେଉଁମାନେ ପଢ଼ିପାରୁଥିଲେ ସେମାନେ ନିରକ୍ଷର ଲୋକଙ୍କୁ ଶୁଣାଇଦେଲେ—ମହାତ୍ମା ଅନଶନ କରୁଛନ୍ତି ।' ସହରରେ ଏ ସମ୍ବାଦ ଚାରିଆଡ଼େ ବ୍ୟାପିଗଲା । ଯେଉଁ ଗାଉଁଲି ଲୋକେ ସହରକୁ ସଉଦା କରିବାକୁ ଆସିଥିଲେ ସେମାନେ ଏ ଖବର ଶୁଣି ନିଜ ନିଜ ଗାଁରେ

ଯାଇ କହିଲେ । ଯାତ୍ରୀମାନେ ନିଜର ଯାତ୍ରାପଥରେ ଏ ସମ୍ବାଦ ପ୍ରଚାର କରି ଚାଲିଲେ ।

ସବୁଆଡ଼େ ପ୍ରଶ୍ନ ଉଠିଲା, 'ମହାତ୍ମା କାହିଁକି ଅନଶନ କରୁଛନ୍ତି ?'

ଉତ୍ତର ମିଳିଲା, 'ଆମେ ହିନ୍ଦୁମାନେ ଅସ୍ପୃଶ୍ୟମାନଙ୍କୁ ମନ୍ଦିରକୁ ଯିବାକୁ ଦେବା ବୋଲି, ସେମାନଙ୍କ ପ୍ରତି ସଦ୍‌ବ୍ୟବହାର କରିବା ବୋଲି ।'

'ମହାତ୍ମାଙ୍କ ଅବସ୍ଥା ଖରାପ ହେଉଛି ।' 'ମହାତ୍ମା ମରଣାପନ୍ନ' । 'ଆମେ ଆମ କର୍ତ୍ତବ୍ୟ କରିବାରେ ଆଉ ବିଳମ୍ବ କଲେ ଚଳିବ ନାହିଁ ।'

ଗାନ୍ଧୀଙ୍କ ଯାତନା ତାଙ୍କ ଭକ୍ତମାନଙ୍କୁ ଯାତନା ଦେଉଥାଏ । ସେମାନେ ଜାଣୁଥାନ୍ତି ଯେ, ସେଇମାନଙ୍କ ଯୋଗୁଁ ମର୍ତ୍ତ୍ୟରେ ଅବତୀର୍ଣ୍ଣ ଭଗବାନ୍ ଦେହ ଛାଡ଼ିବାକୁ ବସିଛନ୍ତି । ତାହା ଦେଖିବାକୁ ଦେବେ ନାହିଁ ବୋଲି ସେମାନେ ଚେଷ୍ଟିତ ଉଠୁଥାନ୍ତି ; ଅନୁଭବ କରୁଥାନ୍ତି, ମହାତ୍ମାଙ୍କ ଯାତନା ଯେତିକି ଅଧିକ ସମୟ ସ୍ଥାୟୀ ହେବ, ତାଙ୍କ ନିଜର ସେତିକି ପାପଭାର ବଢ଼ିବ । ମହାତ୍ମା ଯେଉଁମାନଙ୍କୁ 'ହରିଙ୍କ ଜନ' ବୋଲି ଆଖ୍ୟା ଦେଇଛନ୍ତି ସେଇମାନଙ୍କ ପ୍ରତି ସଦ୍‌ବ୍ୟବହାର କଲେ ଯାଇ ମହାତ୍ମାଙ୍କ ପ୍ରାଣ ରକ୍ଷା ହେବ ଏବଂ ସେମାନଙ୍କ ନିଜର ପାପମୁକ୍ତି ହେବ । ଏହା ଭାବିକରି ଚାରିଆଡ଼େ ସମସ୍ତେ ପ୍ରାୟଶ୍ଚିତ୍ତ ଓ ଆତ୍ମଶୁଦ୍ଧିରେ ଲାଗି ଯାଇ-ଥିଲେ ।



## ଷଷ୍ଠ ପରିଚ୍ଛେଦ

### ରାଜନୀତିର ବାହାରେ

ଗୋଟାଏ ଉଚ୍ଚ ଓ ସ୍ଥୂଳ ପ୍ରାଚୀର ଭେଦ କରି, ସମାଜସଂସ୍କାରର ଅବହେଳିତ ବିସ୍ତୀର୍ଣ୍ଣ ପ୍ରାନ୍ତର ଭିତରେ ପ୍ରବେଶ କରିବାକୁ ଗାନ୍ଧୀ, ଐତିହାସିକ ଅନଶନ ଯୋଗୁଁ ସମର୍ଥ ହୋଇଥିଲେ । ହରିଜନ ଓ କୃଷକମାନଙ୍କର ସେବା କାର୍ଯ୍ୟରେ ଲାଗିବାଦ୍ୱାରା ଗାନ୍ଧୀ ଅସଲ କାମରୁ ଆଡ଼େଇ ହୋଇ ଯାଉଛନ୍ତି ବୋଲି ତାଙ୍କର ବନ୍ଧୁ ବର୍ଗ ମନେ କରୁଥିଲେ । ରାଜନୈତିକ ନେତାମାନେ ଚାହୁଁଥିଲେ, ଗାନ୍ଧୀ ରାଜନୈତିକ କାର୍ଯ୍ୟରେ ସଂପୂର୍ଣ୍ଣ ସଂଶ୍ଳିଷ୍ଟ ହୁଅନ୍ତେ । କିନ୍ତୁ ଗାନ୍ଧୀ ବିଚାରୁଥିଲେ ଗାଁଗହଳର ଲୋକଙ୍କୁ ପୁଷ୍ଟିକର ଖାଦ୍ୟ ଯୋଗାଇବା ସର୍ବଶ୍ରେଷ୍ଠ ରାଜନୀତି ଏବଂ ହରିଜନମାନଙ୍କ ଦୁଃଖ ଦୂର କରିବା ସ୍ୱାଧୀନତାର ରାଜମାର୍ଗ ।

ସମାଜ ସଂସ୍କାର କାମକୁ ସେ ସବୁକାଳେ ପସନ୍ଦ କରୁଥିଲେ । ୧୯୪୨, ଜାନୁଆରି ୨୫ ତାରିଖର ହରିଜନ ପତ୍ରିକାରେ ସେ ସ୍ପଷ୍ଟ କହିଥିଲେ, 'ବ୍ୟବସ୍ଥାସଭା କାର୍ଯ୍ୟ, ଜାତୀୟ କାର୍ଯ୍ୟକ୍ରମର ଅପକୃଷ୍ଟ ଅଂଶ ବୋଲି ମୁଁ ଚିରକାଳ ବିଚାରି ଆସିଛି । ସବୁଠାରୁ ପ୍ରଧାନ ଓ ସ୍ଥାୟୀ କାର୍ଯ୍ୟ ବ୍ୟବସ୍ଥାସଭା ବାହାରେ କରିବାକୁ ଅଛି ।' ସେ ଚାହୁଁଥିଲେ, ଜାତିର ପ୍ରତ୍ୟେକ ବ୍ୟକ୍ତି ନିଜର ମଙ୍ଗଳ ନିମନ୍ତେ ଅଧିକ ସଚେଷ୍ଟ ହେବ ; ସେପରି କଲେ, ଲୋକଙ୍କ ପାଇଁ କରିବାକୁ ସରକାର୍ ହାତରେ କମ କାମ ରହିବ । ତଳ ସ୍ତରରେ ଯେତେ ଅଧିକ କାର୍ଯ୍ୟ ହେବ, ଉପର ସ୍ତରରୁ ସେତିକି କମ୍ ଯୋଜନା ଲୋକଙ୍କ ଉପରେ ଲଦିବା ଦରକାର୍ ହେବ ।

ସରକାରୀ କଳ ପ୍ରତି ଗାନ୍ଧୀଙ୍କର ବିତୃଷ୍ଣା ବସ୍ତୁତଃ ଏତେ ତୀବ୍ର ଥିଲା ଯେ ୧୯୪୦, ଏପ୍ରିଲ ୨୭ ତାରିଖର ହରିଜନରେ ସେ ଆଗରୁ କହି ରଖିଥିଲେ, ସ୍ୱାଧୀନଭାରତର ସରକାରରେ ମଧ୍ୟ ସେ ଅଂଶ ଗ୍ରହଣ କରିବେ ନାହିଁ । ସେ ସେଥିରେ ନିଜର ମତ ସ୍ପଷ୍ଟ ପ୍ରକାଶ କରିଥିଲେ, 'ସରକାରୀ

କାଳର ବାହାରେ' ରହି ଦେଶ ପାଇଁ ତାଙ୍କର କର୍ତ୍ତବ୍ୟ କରିବେ । ଗାନ୍ଧୀଙ୍କ ପରି ଧର୍ମନିଷ୍ଠ ଲୋକ କୌଣସି ସରକାର ପ୍ରତି ଅନ୍ଧଭାବେ ଅନୁଗତ ହୋଇ ଯିବା ଅସଂଭବ ହେବାର କଥା ।

ଗାନ୍ଧୀଙ୍କ ଏଇ ରାଜନୀତିକ ଦର୍ଶନ ଯୋଗୁଁ ସେ ସାମାଜିକ ସଙ୍ଗଠନ କାର୍ଯ୍ୟ ପାଇଁ ଏକନିଷ୍ଠ, ସହିଷ୍ଣୁ ସ୍ୱେଚ୍ଛାସେବକ ଅନୁଷ୍ଠାନମାନଙ୍କର ଉପଯୋଗିତା ଅନୁଭବ କରିଥିଲେ ଓ ସେଇମାନଙ୍କ ଉଦ୍ୟମରେ ହିଁ ସମାଜମଙ୍ଗଳ କାର୍ଯ୍ୟ ହୋଇ ପାରିବ ବୋଲି ବିଶ୍ୱାସ କରୁଥିଲେ ।

୧୯୩୩, ଫେବୃଆରୀ ମାସରେ ଜେଲଖାନା ଭିତରେ ଥାଉ ଥାଉ ସେ ହରିଜନ ସେବକ ସଙ୍ଘ ବୋଲି ଗୋଟିଏ ସଂସ୍ଥା ଆରମ୍ଭ କରିଥିଲେ । ହରିଜନମାନଙ୍କର ମଙ୍ଗଳ ବିଧାନ କରିବା ଥିଲା ଏ ସଂସ୍ଥାର ଲକ୍ଷ୍ୟ । ଏଇ ସମୟରେ ସେ ପୂର୍ବର 'ୟଙ୍ଗ ଇଣ୍ଡିଆ' ବଦଳରେ 'ହରିଜନ' ନାମରେ ଏକ ନୂଆ ସାପ୍ତାହିକ-ପତ୍ର ଆରମ୍ଭ କଲେ । 'ୟଙ୍ଗ୍ ଇଣ୍ଡିଆ'ର ପ୍ରକାଶନ ସରକାର ନିଷେଧ କରି ଦେଇଥାନ୍ତି । ମେ ୮ ତାରିଖରେ ସେ ଆତ୍ମ-ଶୁଦ୍ଧି ନିମନ୍ତେ ତିନିସପ୍ତାହ-ବ୍ୟାପୀ ଅନଶନବ୍ରତ କରିଥିଲେ । ମଉଜ ମଜଲିସ୍ ଆଡ଼କୁ ମନ ନ ଦେଇ ସେବା-ବ୍ରତ ପ୍ରତି ଏକନିଷ୍ଠ ହେବାର ପ୍ରେରଣା ନିଜ ଆଶ୍ରମର ଅନ୍ତେବାସୀଙ୍କୁ ଦେବା ଉଦ୍ଦେଶ୍ୟ ମଧ୍ୟ ଥିଲା । ସେ ସମୟରେ ଜଣେ ସୁନ୍ଦରୀ ଯୁବତୀ ଆମେରିକାରୁ ଆସି ଆଶ୍ରମରେ ରହନ୍ତେ, ଆଶ୍ରମବାସୀ-ମାନଙ୍କ ଚିତ୍ତବିକାର ହୋଇଥିବା ସେ ବାରିଥିଲେ । ଅନଶନର ପ୍ରଥମ ଦିବସରେ ସରକାର ତାଙ୍କୁ ଜେଲରୁ ଖଲାସ କରିଦେଲେ । ଯୁ। ପୂର୍ବର 'ଐତିହାସିକ ଅନଶନ'ର ଦିନ ସାତଟାରେ ସେ ଯେଉଁଭଳି ଶାରୀରିକ ଅସୁସ୍ଥତାରେ ବ୍ୟସ୍ତ ହୋଇ ପଡ଼ିଥିଲେ, ତନ୍ଦୃଷ୍ଟେ ନିଶ୍ଚିତ ଆଶଂକା ହେଉଥିଲା, କିଛି ନ ଖାଇ ଏକାଥରକେ ଏକୋଇଶ ଦିନ ରହିବାକୁ ଅଡ଼ି ବସିଲେ ତାଙ୍କର ଜୀବନ ନିଶ୍ଚୟ ଯିବ । ସରକାରୀ ବନ୍ଦୀଶାଳାରୁ ଗାନ୍ଧୀଙ୍କ ମୂର୍ଦ୍ଦାର କଢ଼ା ହେବା ବ୍ରିଟିଶ୍ ସରକାର ନ ଚାହିଁବାର କଥା ।

କିନ୍ତୁ ଏ ଅନଶନର ପ୍ରକୋପ ଗାନ୍ଧୀ ସଂଭାଳି ନେଲେ ।

ଅଳ୍ପଦିନର ଅନଶନ ବେଳେ ତାଙ୍କର ପ୍ରାଣସଂଶୟ ହୋଇଥିଲା । ଅଥଚ ଏଥର ସେ ତିନିଗୁଣ ଦିନ ଅନଶନ କରି ତାଙ୍କର ବିଶେଷ କିଛି ହେଲା ନାହିଁ । ସେ ସହଜରେ ଏଥରର କ୍ଳେଶ ସଂଭାଳି ନେଲେ । ଏହାର କାରଣ କ'ଣ ? ପ୍ରଥମ ଅନଶନ ବେଳେ ହରିଜନ ସମସ୍ୟାର ସମାଧାନ

ବିଷୟରେ ମସୁଧା ଅନବରତ ଚାଲିଥାଏ । ଏଥିରେ ଭାଗ ନେବା ସଂଗେ ସଂଗେ, ଦେଶରୁ ଅସ୍ପୃଶ୍ୟତା କଳଙ୍କ ଦୂର କରିବାର ବଳବତ୍ତ ଇଚ୍ଛାରେ ସେ ସନ୍ତପ୍ତ ହେଉଥାନ୍ତି । ଯୁଗପତ୍ ଦେହରେ ଘୋର ପୀଡ଼ା ହେଉଥାଏ । ଏଥର କିନ୍ତୁ, ୨୧ ଦିନ ବ୍ୟାପୀ ଅନଶନ ବେଳେ ତାଙ୍କ ଅନ୍ତରାତ୍ମା ଓ ମନ ସଂପୂର୍ଣ୍ଣ ନିଶ୍ଚିନ୍ତ ରହିଥାଏ । ଗାନ୍ଧୀଜୀଙ୍କ କ୍ଷୁଦ୍ର ଶରୀର ତାଙ୍କ ଦୃଢ଼ସଙ୍କଳ୍ପ ଶକ୍ତିର ପ୍ରେରଣାରେ ସବୁକାଳେ ନିୟନ୍ତ୍ରିତ ହେଉଥାଏ ।

ତାଙ୍କୁ ଜେଲରୁ ଖଲାସ କରିଦେଇଥିବା ଯୋଗୁଁ ସରକାର ପ୍ରତି ତାଙ୍କର ସଦ୍‌ଭାବର ସୂଚନା ଦେଇ ସେ ଜାନୁଆରି ୧୯୩୩ରୁ ଆରମ୍ଭ ହୋଇଥିବା ଆଇନ୍ ଅମାନ୍ୟ ଆନ୍ଦୋଳନକୁ ଛଅ ସପ୍ତାହ ମକୁବ୍ ରଖିଲେ । ଜୁଲାଇ ୧୫ ତାରିଖରେ, ବଡ଼ଲାଟ ଲର୍ଡ୍ ଉଇଲିଂଡନଙ୍କ ସଂଗେ ସାକ୍ଷାତ୍ କରିବାକୁ ଅନୁମତି ମାଗି ପତ୍ର ଲେଖିଲେ । ବଡ଼ଲାଟଙ୍କ ଅନୁମତି ମିଳିଲା ନାହିଁ । ଜେଲରୁ ମୁକ୍ତ ହେବା ପରେ ଗାନ୍ଧୀ ସେଇ ଯେରୁବାଡ଼ା ସହରରେ ବାସ କରୁଥାନ୍ତି । ସେଠାରୁ ରାସ ଗ୍ରାମକୁ ଅଗଷ୍ଟ ପହିଲା ତାରିଖରେ ସେ ଯାତ୍ରା କରିବେ ବୋଲି ପ୍ରସ୍ତାବ କରିଥିଲେ । ସେଇ ରାତିରେ ୩୪ ଜଣ ଆଶ୍ରମବାସୀଙ୍କ ସହିତ ତାଙ୍କୁ ଗିରଫ୍ କରାଗଲା । ତିନି ଦିନ ପରେ ତାଙ୍କୁ ମୁକ୍ତ କରାଯାଇ ପୁନା ସହରରେ ରହିବାକୁ ହୁକୁମ ହେଲା । ମୁକ୍ତ ହେବାର ମାତ୍ର ଅଧଘଣ୍ଟାରେ ସେ ହୁକୁମ ଅମାନ୍ୟ କରିବାରୁ ପୁଣି ଗିରଫ୍‌ଦାର ହେଲେ ; ବିଚାରରେ ତାଙ୍କୁ ବର୍ଷେ ଜେଲ ଦଣ୍ଡ ହେଲା । ୧୬ ତାରିଖରେ ସେ ପୁଣି ଅନଶନ ଆରମ୍ଭ କଲେ ; ଅଗଷ୍ଟ କୋଡ଼ିଏ ତାରିଖ ଦିନ ତାଙ୍କୁ ସଂକଟାପନ୍ନ ଅବସ୍ଥାରେ ଡାକ୍ତରଖାନାରେ ଭର୍ତ୍ତି କରାଗଲା ଏବଂ ୨୩ ତାରିଖରେ ବିନା ସର୍ତ୍ତରେ ମୁକ୍ତ କରି ଦିଆ ହେଲା । ସେ କିନ୍ତୁ ବର୍ଷକ ଜେଲଦଣ୍ଡ ନିଜ ଆଡ଼ୁ ପୂରାପୂରି ଭୋଗିବେ ବୋଲି ସ୍ଥିର କରି ଘୋଷଣା କଲେ ଯେ, ୧୯୩୪, ଅଗଷ୍ଟ ୩ ତାରିଖ ପର୍ଯ୍ୟନ୍ତ ଆଇନ୍ ଅମାନ୍ୟ ପୁଣି ଆରମ୍ଭ କରିବେ ନାହିଁ ।

ଜନମଙ୍ଗଳ ଓ ନଇ ତାଲିମ ଶିକ୍ଷାର ପ୍ରସାର କରିବା ସକାଶ ସେ ଯେଉଁ ସଂସ୍ଥାମାନ ଗଢ଼ିଥିଲେ ୧୯୩୯ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ ତାହାର କାର୍ଯ୍ୟରେ ସେ ସଂପୂର୍ଣ୍ଣ ଆତ୍ମନିୟୋଗ କରିଥିଲେ । ମଝିରେ ମାସକପାଇଁ ସେ ମୌନବ୍ରତ ପାଳିଥିଲେ ଓ ଦୁଇ ଚାରିଥର ଦୀର୍ଘ ଶାରୀରିକ ଅସ୍ୱାସ୍ଥ୍ୟ ଯୋଗୁଁ କାର୍ଯ୍ୟରୁ ଅବସର ନେଇଥିଲେ । ଏ ସମସ୍ତ ଭିତରେ ଏତିକି ମାତ୍ର

ତାଙ୍କର କର୍ମବିରତି । ସେ ସାବରମତୀ ଆଶ୍ରମକୁ ଗୋଟିଏ ହରିଜନ ସଂସ୍ଥାକୁ ଦାନ୍ କରି ଦେଇ, ଓ୍ୱାର୍ଦ୍ଧାଠାରେ ନିଜର ଆଶ୍ରମ ପ୍ରତିଷ୍ଠା କଲେ । ଓ୍ୱାର୍ଦ୍ଧା ମଧ୍ୟ ପ୍ରଦେଶର ଗୋଟିଏ କ୍ଷୁଦ୍ର ସହର ।

ସେଇଠାରୁ ସେ ୧୯୩୩, ନଭେମ୍ବର ୭ ତାରିଖ ଦିନ ହରିଜନମଙ୍ଗଳ ନିମନ୍ତେ ଦଶମାସ ବ୍ୟାପୀ ପର୍ଯ୍ୟଟନ ଆରମ୍ଭ କଲେ । ସେ ଭାରତର ପ୍ରତି ପ୍ରଦେଶରେ ଗସ୍ତ କଲେ । ଇତିମଧ୍ୟରେ ଦିନକ ପାଇଁ ସୁଦ୍ଧା, ଅବସର ନେବାକୁ ବା ବିଶ୍ରାମ କରିବାକୁ ଯାଇ ନ ଥିଲେ ।

୧୯୩୪, ଜାନୁଆରୀ ୧୫ ତାରିଖ ଦିନ ବିହାର ପ୍ରଦେଶର ଗୋଟାଏ ବଡ଼ ଅଂଶ ଭୀଷଣ ଭୂମିକମ୍ପରେ କ୍ଷତିଗ୍ରସ୍ତ ହେଲା । ଗାନ୍ଧୀ ହରିଜନ ପଦଯାତ୍ରା ବନ୍ଦ ରଖି ଭୂମିକମ୍ପରେ କ୍ଷତିଗ୍ରସ୍ତ ଅଞ୍ଚଳ ଦେଖିବାକୁ ମାର୍ଚ୍ଚ ମାସରେ ସେଠାକୁ ଗଲେ । ଖାଲି ପାଦରେ ସେ ଗାଁକୁ ଗାଁ ଯାଉଥାନ୍ତି, ଲୋକଙ୍କୁ ହିମ୍ମତ ଦେଉଥାନ୍ତି, ଉପଦେଶ ଓ ଶିକ୍ଷା ଦେଉଥାନ୍ତି । ଜନସାଧାରଣଙ୍କୁ ସେ କହୁଥାନ୍ତି, 'ତୁମର ସ୍ୱକୃତ ପାପ ନିମନ୍ତେ, ବିଶେଷ କରି ଅସ୍ପୃଶ୍ୟତା ପାପ ନିମନ୍ତେ ଦଣ୍ଡ ଦେବାକୁ ଏ ଭୂମିକମ୍ପ ହୋଇଛି । ଏଭଳି କୁସଂସ୍କାରାତ୍ମକ ମତ ଯୋଗୁଁ ରବୀନ୍ଦ୍ରନାଥ ଓ ଆଉ କେତେକ ଶିକ୍ଷିତ ଭାରତୀୟ ବିରକ୍ତ ହୋଇଥିଲେ । ରବୀନ୍ଦ୍ରନାଥ ମହାତ୍ମା ଗାନ୍ଧୀଙ୍କ ଉକ୍ତିର ପ୍ରକାଶ୍ୟ ବିରୋଧ କରିଥିଲେ । ସେ ଖବରକାଗଜକୁ ଏକ ବିବୃତି ଦେଇ (ଏହାର ଏକ କପି ନକଲ ପ୍ରଥମେ ସେ ଗାନ୍ଧୀଙ୍କ ପାଖକୁ ପଠାଇଥିଲେ) କହିଥିଲେ,··· 'ପ୍ରାକୃତିକ ବିପର୍ଯ୍ୟୟ କେତେକ ପ୍ରାକୃତିକ କାରଣର ସଂଘାତରେ ଘଟେ । ଏହାର ହେତୁ ମାନବର ସାଧ୍ୟାତୀତ ହୋଇଥିବାରୁ ଏଭଳି ବିପର୍ଯ୍ୟୟ ଅନିବାର୍ଯ୍ୟ··· । ପ୍ରାକୃତିକ ଘଟଣାର କାରଣ ସ୍ୱରୂପ ନୀତିଶାସ୍ତ୍ରର ମନୁଷ୍ୟକୃତ ନିୟମ ବା ବେନିୟମକୁ ଯୋଡ଼ିଲେ, ଆମ୍ଭମାନଙ୍କୁ ସ୍ୱୀକାର କରିବାକୁ ପଡ଼ିବ ଯେ, ମନୁଷ୍ୟ ପ୍ରକୃତି ବିଧାତାଙ୍କ ପ୍ରକୃତିଠାରୁ ମହତ୍ତର ; ଯେଣୁ, ଧାତା ଅତି ଭୟାନକ ଆଚରଣଦ୍ୱାରା ଆମ୍ଭମାନଙ୍କୁ ସଦାଚାରୀ ହେବାକୁ ଶିକ୍ଷା ଦେଉଛନ୍ତି ବୋଲି ଆମ୍ଭେ ଧରିବାକୁ ବସୁଥାଇଁ ···। ଏଭଳି ଧାରଣା କରିବା ଆଦୌ ଯୁକ୍ତିଯୁକ୍ତ ମନେ ହେଉନାହିଁ···। ଆମ୍ଭେମାନେ ବିଶ୍ୱାସ କରୁଁ, ମନୁଷ୍ୟର ପାପ ଓ ଦୁର୍ବୃତ୍ତି, ଯେତେ ଗର୍ହିତ ହେଉ ପଛେ, ଏହା ବିଶ୍ୱସୃଷ୍ଟିର ଧ୍ୱଂସ ସାଧନ କରିବାକୁ ସମର୍ଥ ନୁହେଁ··· । ଏହି ବିଶ୍ୱାସରେ ଆମ୍ଭେମାନେ ସମସ୍ତ ଦୋଷ ଓ ଦୁର୍ମତି ଭିତରେ ଧୈର୍ଯ୍ୟ ଧରି ରହିବାକୁ

ସମର୍ଥ ହୋଇଥାଉଁ···ମହାତ୍ମା ଗାନ୍ଧୀ ତାଙ୍କ ଅଦ୍‌ଭୁତ ପ୍ରେରଣା ବଳରେ, ଦେଶବାସୀଙ୍କ ମନକୁ ଭୟ ଓ ଦୁର୍ବଳତାରୁ ମୁକ୍ତ କରିଥିବା ଯୋଗୁଁ ଆମେ ସମସ୍ତେ ତାଙ୍କଠାରେ କୃତଜ୍ଞ । ସେଇ ମହାତ୍ମା ଗାନ୍ଧୀଙ୍କର କୌଣସି କଥା ବା ମତ ଯୋଗୁଁ, ତାଙ୍କ କୃତଜ୍ଞ ଦେଶବାସୀଙ୍କ ମନରେ ଯୁକ୍ତିହୀନ ବିଶ୍ୱର ଅଣୁମାନେ ସଞ୍ଚରିବାର ସୂଚନା ଦେଖିଲେ ଆମ୍ଭେମାନେ ଗଭୀର ବ୍ୟଥା ଅନୁଭବ କରୁଁ··· ।'

ଗାନ୍ଧୀ ଏଥିରେ ବିଚଳିତ ହେଲେ ନାହିଁ । ସେ ଜବାବ ଦେଲେ, 'ଜଡ଼ ଓ ଚେତନ ଭିତରେ ଅବିଚ୍ଛେଦ୍ୟ ଓ ଶାଶ୍ୱତ ସମ୍ପର୍କ ରହିଛି··· । ବିଶ୍ୱସୃଷ୍ଟିର ବିଚିତ୍ରତା ଓ ମାନବିକ ଆଚରଣର ବିକାଶ ମଧ୍ୟରେ ସଂପର୍କ ଅଛି ବୋଲି ମୋର ଦୃଢ଼ ବିଶ୍ୱାସ ଥିବାରୁ ମୁଁ ଭଗବତ୍ ଶକ୍ତି ପ୍ରତି ଅନୁରକ୍ତ ହୁଏ ଓ ଭଗବାନଙ୍କ ଆଡ଼କୁ ମୋର ମନ ଟାଣି ହୁଏ ।' ଗାନ୍ଧୀ ଭଗବାନଙ୍କ ନାମ ଆଣି ବିତର୍କ ଭିତରେ ପୂରାଇବା ମାନେ ତାଙ୍କ ସଙ୍ଗେ ବିତର୍କ କରିବାର ବାଟ ବନ୍ଦ ହୋଇଯାଏ । ବସ୍ତୁତଃ ଅତିମାତ୍ରାରେ ଭାବପ୍ରବଣ ଓ ଉତ୍ସାହୀ ମହାତ୍ମା ଗାନ୍ଧୀ ଭଗବାନଙ୍କୁ ଆଣି ତାଙ୍କ ପ୍ରଚାର-ରଥରେ ଯୋଚି ଦେଉଥିଲେ । ଜନ-ସାଧାରଣଙ୍କ ମଙ୍ଗଳ ପାଇଁ ସେ କରୁଥିବା ସଂଗ୍ରାମରେ ଅର୍ଜୁନଙ୍କ ପରି କୃଷ୍ଣଙ୍କୁ ନିଜ ରଥରେ ସାରଥି ନିଯୁକ୍ତ କରିଥିଲେ ।

ଗାନ୍ଧୀଙ୍କର ଐକିକ ଧ୍ୟାନ ଥିଲା ଦରିଦ୍ର ଜନତାର ସେବା କରିବାରେ । ସେ ଏବଂ ତାଙ୍କ ଭଗବାନ୍ ଏ କାର୍ଯ୍ୟରେ ସରିକ୍‌ଦାର ଥିବାରୁ ଗାନ୍ଧୀ ସର୍ବଶକ୍ତିମାନ୍‌ଙ୍କୁ ଏ କାର୍ଯ୍ୟରେ ଲଗାଉଥିଲେ । ସେ ଲେଖି-ଥିଲେ, 'ଖାଇବାକୁ ନ ପାଇ ଅଳସୁଆ ହୋଇ ବସିଥିବା ଲୋକଙ୍କଦ୍ୱାରା ଗୃହୀତ ହେବାକୁ ହେଲେ ଭଗବାନଙ୍କୁ ପରିଶ୍ରମ, ଏବଂ ମଜୁରି ଓ ଖାଦ୍ୟର ଆଶା ଓ ପ୍ରତିଶ୍ରୁତି ରୂପରେ ଦେଖା ଦେବା ବ୍ୟତୀତ ଉପାୟାନ୍ତର ନାହିଁ ।'

୧୯୩୬, ଅଗଷ୍ଟ ୨୬ ତାରିଖରେ ସେ 'ହରିଜନ'ରେ ଲେଖିଥିଲେ, 'ଭାରତର ଜନତା ଭାରତର ଗ୍ରାମମାନଙ୍କରେ ବାସ କରନ୍ତି, ସହରରେ ନୁହେଁ । ଏହାର କେତେକ ହପ୍ତା ପରେ ସେ ପୁଣି ଲେଖିଥିଲେ, 'ମୁଁ ଆମର ଗ୍ରାମମାନଙ୍କର ଦାରିଦ୍ର୍ୟ ଯେଉଁ ଦିନ ଦୂର କରି ପାରିବି, ସେଇ ଦିନ ସ୍ୱରାଜ ହସ୍ତଗତ ହେଲା ବୋଲି ମନେ କରିବି···' । ଗାନ୍ଧୀ ଦାରିଦ୍ର୍ୟର ପକ୍ଷପାତୀ ଥିଲେ ବୋଲି କେତେକଙ୍କର ଯେଉଁ ଧାରଣା, ତାହା ଭୁଲ । ସେ ଏତିକିମାତ୍ର ଚାହୁଁଥିଲେ ଦେଶର କେତେଜଣ ବିଶିଷ୍ଟ ଆଦର୍ଶବାଦୀ

ତ୍ୟାଗବ୍ରତ ଧରି ଜନତାର ସେବା କରିବେ । କିନ୍ତୁ ସମଗ୍ର ଜାତି ପାଇଁ, କେହି କେଉଁଠି କହି ନାହାଁନ୍ତି ଯେ, 'ଜନତା ନିରନ୍ତର ଅକିଂଚନ ଅବସ୍ଥାରେ ରହିଲେ, ନୈତିକ ଦୁର୍ଗତି ବ୍ୟତୀତ ଅନ୍ୟ କୌଣସି ଲାଭ ହେବ ।' ଏଭଳି ଅବସ୍ଥା ଗାନ୍ଧୀ ଆଦୌ ଚାହୁଁବାର ଲୋକ ନ ଥିଲେ । ଗାନ୍ଧୀ ଜୋର ଦେଇ ପ୍ରଚାର କରୁଥିଲେ, 'ଆମେ ଯଦି ଆମର ଧନ ଓ ଶକ୍ତିର ଅପଚୟ ନ କରିବା ତେବେ, ଆମ ଦେଶର ଜଳବାୟୁ ପ୍ରାକୃତିକ ସଂପଦ ଆମ ପକ୍ଷରେ ଏପରି ଅନୁକୂଳ ଯେ, ଆମେ ସମଗ୍ର ପୃଥିବୀରେ ସବୁଠାରୁ ସୁଖୀ ହୋଇ ପାରିବା ।' ଗାନ୍ଧୀ ଦେଶ ପାଇଁ ଏଇ ସୁଖ ଓ ସଂପଦର ଆକାଂକ୍ଷା କରୁଥିଲେ ।

ଗାନ୍ଧୀ ଅତି ଅକିଞ୍ଚନ ଅବସ୍ଥାକୁ ଯେପରି ଘୃଣା କରୁଥିଲେ, ଅତିମାତ୍ରାରେ ସଂପଦ ସାଇତି ରଖିବାକୁ ସେହିପରି ନାପସନ୍ଦ କରୁଥିଲେ ।

୧୯୩୩ଠାରୁ ୧୯୩୯ ମଧ୍ୟରେ ଲୋକମଙ୍ଗଳ କାର୍ଯ୍ୟରେ ସେ ଏକାନ୍ତ ଭାବେ ଲାଗିଥିଲେ; ଅନ୍ୟ କୌଣସି କାର୍ଯ୍ୟକୁ ଏଥିରେ ଅନ୍ତରାୟ ହେବାକୁ ଦେଉ ନ ଥିଲେ । ଏ କାର୍ଯ୍ୟ କିନ୍ତୁ ସେ ନିର୍ବାଧଭାବେ କରିବା ସହଜ ହୋଇ ନ ଥିଲା । ୧୯୩୫, ଜୁନ୍ ୨୫ ତାରିଖରେ ତିଳକ ମହାରାଜଙ୍କ ମରହଟ୍ଟା ଅଂଚଳର ହୃତ୍‌କେନ୍ଦ୍ର ପୁନାରେ ଜଣେ ହିନ୍ଦୁ ଖଣ୍ଡେ ମଟରଗାଡ଼ି ଉପରକୁ ଗୋଟାଏ ବୋମା ଫୋପାଡ଼ି ଦେଲା । ସେ ଭୁଲରେ ଧରି ନେଇଥିଲା ଯେ ସେ ମଟରରେ ମହାତ୍ମାଜୀ ଥିଲେ । ଲୋକଟି ଅସ୍ପୃଶ୍ୟତା ଦୂରୀକରଣ ଆନ୍ଦୋଳନର ବିରୋଧୀ ଥିଲା ବୋଲି ସନ୍ଦେହ ହୋଇଥିଲା । ଏହାର ଅଳ୍ପଦିନ ପରେ ଜଣେ ଗାନ୍ଧୀବାଲା, ଜଣେ ଅସ୍ପୃଶ୍ୟତା-ସପକ୍ଷ ଲୋକକୁ ଠେଙ୍ଗାରେ ଗୁଡ଼ାଏ ପିଟି ପକେଇଲା । ଏହି ଦୁଇଟିଯାକ ଅପରାଧର ପ୍ରାୟଶ୍ଚିତ୍ତ ସ୍ୱରୂପ ଗାନ୍ଧୀ ୧୯୩୪, ଜୁଲାଇ ମାସରେ ସାତଦିନ ଅନଶନ କରିଥିଲେ ।

୧୯୩୪, ଅକ୍‌ଟୋବର୍ ୨୭ ତାରିଖରେ ଗାନ୍ଧୀ 'ନିଖିଳଭାରତ ଗ୍ରାମୋଦ୍ୟୋଗ ସଂଘ' ପ୍ରତିଷ୍ଠା କଲେ । ସେ ଏ ସଂଘର ସଂସ୍ଥାପକ ହେଲେ ଓ ତାଙ୍କ ଧନୀ ଶିଳ୍ପପତି ବନ୍ଧୁମାନଙ୍କୁ ଏହାର ପୃଷ୍ଠପୋଷକ କଲେ ।

ଏଇ ସମୟରେ ଗାଁ ଗହଳରେ ବକ୍ତୃତା ଦେଇ ଓ ହରିଜନ୍ କାଗଜରେ ଲେଖି ଗାନ୍ଧୀ କୃଷକମାନଙ୍କୁ ଖାଦ୍ୟ ବିଷୟରେ ମୌଳିକ ତତ୍ତ୍ୱ ବୁଝାଉଥାନ୍ତି । ସେ ଥରେ ଲେଖିଥିଲେ, 'ଦୁଧ ଓ କଦଳୀ ଖାଇଲେ

ଖାଦ୍ୟରେ ଯେତେ ସାର ଥିବାର କଥା ସେ ସବୁ ମିଳେ ।’ ୧୯୩୫, ଫେବୃଆରି ୧୫ ତାରିଖର ହରିଜନରେ, ‘କଞ୍ଚାପନ୍ନ ଖାଇବାରେ ଉପକାରିତା’ ଶିରୋନାମାରେ ଗାନ୍ଧୀ ଗୋଟିଏ ପ୍ରବନ୍ଧ ଲେଖିଥିଲେ । ଏଥିରେ ଥିଲା, ‘ପ୍ରାୟ ପାଞ୍ଚମାସ ହେଲା ମୁଁ ଅରନ୍ଧା ଖାଦ୍ୟ ଖାଉଛି । ଗ୍ରାମବାସୀମାନେ ଖାଦ୍ୟ ସାଙ୍ଗେ ଯଦି କଞ୍ଚାପନ୍ନ ଖାନ୍ତି, ତେବେ ସେମାନେ ଭୋଗୁଥିବା ବହୁ ରୋଗରୁ ରକ୍ଷା ପାଇ ପାରିବେ ।’ ଗାଈ ଓ ମଇଁଷୀ ଦୁଧରୁ କେଉଁଟା ଭଲ ଏ ବିଷୟରେ ଆଲୋଚନା ସେ ଆଉ ଗୋଟିଏ ପ୍ରବଂଧରେ କରିଥିଲେ । ଭାରତୀୟମାନଙ୍କର ପ୍ରଧାନ ଖାଦ୍ୟ ଓ ପ୍ରଧାନ ସମସ୍ୟା ଭାତ ବିଷୟରେ ପୁଣି ଗୋଟିଏ ପ୍ରବନ୍ଧ ସେ ଲେଖିଥିଲେ । ‘ସ୍ୱାସ୍ଥ୍ୟସମସ୍ୟାର ସମାଧାନ’ (Key to Health) ନାମରେ ପ୍ରକାଶ କରିଥିବା ଗୋଟିଏ ପୁସ୍ତିକାରେ ଏବଂ ଅନ୍ୟତ୍ର ସେ ସାବଧାନ କରିଦେଇଥିଲେ ଯେ, କଳକୁଟା ଚାଉଳ ଖାଇବା ଭଲ ନୁହେ । ସେ ବୈଜ୍ଞାନିକ କାରଣ ଦେଇ ବୁଝାଇଥିଲେ ଯେ, କଳରେ ଚାଉଳ କଲାବେଳେ ଚାଉଳର ଉପର ବୋଳ ଗୁଣ୍ଡି ହୋଇ-ଯାଏ । ଏହି ବୋଳରେ ବହୁତ ଖାଦ୍ୟସାର, ବିଶେଷ କରି ପ୍ରଚୁର $B_1$ ଖାଦ୍ୟସାର, ଥାଏ । ଏ ଖାଦ୍ୟସାର ଅଭାବରେ ଭାତକୁ ପ୍ରଧାନ ଖାଦ୍ୟରୂପେ ଖାଉଥିବା ଅଧିକାଂଶ ଭାରତୀୟ, ନାନାପ୍ରକାର ଶାରୀରିକ ଅବସାଦବର୍ଦ୍ଧକ ରୋଗ ଭୋଗନ୍ତି । ଏ ରୋଗମାନଙ୍କ ମଧ୍ୟରେ ସବୁଠାରୁ ମାରାତ୍ମକ ରୋଗ ‘ବେରି-ବେରି’—ବେରିବେରିର ଆକ୍ଷରିକ ଅର୍ଥ ‘ମୁଁ ଏହା କରିପାରିବି ନାହିଁ ।’ ଗାନ୍ଧୀ ବୁଝାଇଥିଲେ ଯେ, ଧାନକୁ ଢିଙ୍କିରେ କୁଟି ଚାଉଳ କଲେ, ତା’ ଉପରର ଖାଦ୍ୟସାର-ପୂର୍ଣ୍ଣ ବୋଳଟା ବାହାରିଯାଏ ନାହିଁ ।

ଆମ୍ବଟାକୁଆ ଓ ଚିନାବାଦାମର ପୁଷ୍ଟିକରିତା ବିଷୟରେ ମଧ୍ୟ ସେ ବାରମ୍ବାର ଲେଖିଥିଲେ । ହରିଜନଙ୍କ ପାଇଁ ପ୍ରାଥମିକ ନିର୍ବାଚନ ଯେପରି ରାଜନୀତିକ ବିଷୟ, ଚିନାବାଦାମ ସେହିପରି ତାଙ୍କ ଦୃଷ୍ଟିରେ ରାଜନୀତିକ ବିଷୟ ବୋଲି ଗାନ୍ଧୀ ଲେଖିଥିଲେ । ଗୋବରଖତ କିପରି ରଖିବାକୁ ହେବ, ସାପକାମୁଡ଼ା ଓ ମେଲେରିଆ କିପରି ଆରୋଗ୍ୟ ହେବ ଏ ସବୁ ବିଷୟରେ ମଧ୍ୟ ସେ ବାରଂବାର ଆଲୋଚନା କରୁଥିଲେ ।

ଗାନ୍ଧୀ ବିଶ୍ୱାସ କରୁଥିଲେ, ଭଲ ବିହନ ପାଇଲେ, ସାର ଠିକ-ଭାବରେ ବ୍ୟବହାର କଲେ ଓ ଗୋରୁଗାଈଙ୍କର ଅଧିକ ଯତ୍ନ ନେଲେ ଜନତାର ମୌଳିକ ରାଜନୀତିକ ସମସ୍ୟାର ସମାଧାନ ହୋଇପାରିବ । ସେ

କରୁଥିଲେ, ଜଣପିଚ୍ଛା ଯଦି ଅଧିକା ଗିନେ ଗିନେ ଭାତ ମିଳିପାରିଥାନ୍ତା ତେବେ ଏସିଆରେ ହୋଇଥିବା ବହୁ ଅନ୍ତର୍ବିବାଦର ନିବାରଣ ହୋଇ-ପାରିଥାନ୍ତା ।

କୃଷି ବ୍ୟତୀତ ଗ୍ରାମ୍ୟଜୀବନର ଅନ୍ୟାନ୍ୟ ଦିଗ ପ୍ରତି ମଧ୍ୟ ଗାନ୍ଧୀଙ୍କର ମନୋଯୋଗ ଥିଲା । ୧୯୩୬, ଅଗଷ୍ଟ ୨୯ ତାରିଖର 'ହରିଜନ'ରେ ସେ ଲେଖିଥିଲେ, 'ପ୍ରତ୍ୟେକ ଗ୍ରାମ କିପରି ସ୍ୱାବଲମ୍ବୀ ହୋଇପାରିବ ସେଥିପ୍ରତି ଆମକୁ ଧ୍ୟାନ ଦେବାକୁ ପଡ଼ିବ । ଗାଁରେ ଯାହା ସବୁ ଶିଳ୍ପଜାତ ଦ୍ରବ୍ୟ ଦରକାର ସେ ସବୁ ସେଇ ଗାଁରେ ଉତ୍ପନ୍ନ କରିବାକୁ ହେବ । ନିଜ ପାଇଁ ମାତ୍ର ନିଜେ ଉତ୍ପନ୍ନ କରିବା ମତ ଯଦି ଗୃହୀତ ହୁଏ, ତେବେ ଗ୍ରାମର ଲୋକେ ତିଆରି କରି ବ୍ୟବହାର କରି ପାରୁଥିବା ଆଧୁନିକ ଯନ୍ତ୍ରପାତି ମଧ୍ୟ ଗ୍ରାମରେ ବ୍ୟବହୃତ ହେବାରେ ଆପତ୍ତି ହେବାର କାରଣ ରହିବ ନାହିଁ । ଏ ବିଷୟରେ ଏତିକିମାତ୍ର ଆପତ୍ତି ଯେ, ଏହି ଯନ୍ତ୍ରପାତିମାନ ଅନ୍ୟଙ୍କୁ ଶୋଷଣ କରିବାରେ ବ୍ୟବହୃତ ହେବ ନାହିଁ ।'

୧୯୪୨, ଜୁଲାଇ ୨୬ ତାରିଖର 'ହରିଜନ'ରେ ଗାନ୍ଧୀ ଆଦର୍ଶ ଭାରତୀୟ ଗ୍ରାମର ଚିତ୍ର ନିମ୍ନମତେ ଦେଇଥିଲେ: 'ଏହା ହେବ ସମାନ ଅଧିକାର ଓ ସମାନ ସୁଯୋଗ ଉପଭୋଗ କରୁଥିବା ଗୋଟିଏ ଗୋଷ୍ଠୀ । ନିଜର ନିତାନ୍ତ ପ୍ରୟୋଜନ ଜିନିଷ ପାଇଁ ଏହା ଅନ୍ୟ ଗାଁ ଉପରେ ନିର୍ଭର କରିବ ନାହିଁ । କିନ୍ତୁ ଏଭଳି କେତେଗୁଡ଼ିଏ ବିଷୟ ଅଛି ଯହିଁରେ ଅନ୍ୟ ଗାଁମାନଙ୍କ ଉପରେ ନିର୍ଭର କରିବା ଦରକାର । ଏ ସବୁ ବିଷୟରେ ଗାଁମାନେ ପରସ୍ପର ନିର୍ଭରଶୀଳ ହେବେ । ଉଦାହରଣସ୍ୱରୂପ, ନିଜର ପ୍ରୟୋଜନ ଖାଦ୍ୟଶସ୍ୟ ଓ ବସ୍ତ୍ର ପାଇଁ କପା ଉତ୍ପନ୍ନ କରିବା ପ୍ରତ୍ୟେକ ଗ୍ରାମର ପ୍ରଥମ ଓ ପ୍ରଧାନ କାମ ହେବ । ଗ୍ରାମର ଗୋରୁଗାଈଙ୍କ ପାଇଁ ଗୋଚର ଭୂମି, ଖେଳ କସରତ ଓ ଯାତ୍ରା ଆଦି ପାଇଁ ପଡ଼ିଆ ସର୍ବସାଧାରଣ ହୋଇ ରହିବ । ବିକ୍ରୀ କରି ପଇସା ଅର୍ଜିବା ସକାଶେ ଉପକାରୀ ଫସଲ କରାଯିବ···କିନ୍ତୁ ଧୂଆଁପତ୍ର, ଅଫିମ ପ୍ରଭୃତି ଫସଲ ଅପକାରୀ ହୋଇଥିବାରୁ ଏହାର ଉତ୍ପାଦନ କରିବାକୁ ହେବ ନାହିଁ । ପ୍ରତ୍ୟେକ ଗ୍ରାମର ଗ୍ରାମ୍ୟ ନାଟ୍ୟମନ୍ଦିର, ବିଦ୍ୟାଳୟ ଓ ସଭାଗୃହ ରହିବ । ଗ୍ରାମର ଲୋକେ ପରିଷ୍କାର ପାଣି ପାଇବା ସକାଶେ ଜଳ-ଯୋଗାଣ ଯୋଜନା ରହିବ । କେତୋଟି କୂପ ଓ ଜଳାଶୟକୁ ପାନୀୟ ଜଳଯୋଗାଣ ପାଇଁ ନିର୍ଦ୍ଦିଷ୍ଟ କରି ତା ମଳରେ ବା ସେଥିରେ ଗାଧୁଆ-

ପାଧୁଆରେ କଣ୍ଟକଣା ରଖିଲେ ଜଳଯୋଗାଣ ସମସ୍ୟାର ସାମାଧାନ ସହଜେ ହୋଇପାରିବ । ଉଚ୍ଚ ମୌଳିକ ଶିକ୍ଷା ସମାପ୍ତ ହେବା ଯାଏଁ ଶିକ୍ଷା ବାଧ୍ୟତାମୂଳକ ହେବ । ଗ୍ରାମର ସମସ୍ତ କାର୍ଯ୍ୟ ଯଥାସମ୍ଭବ ସମବାୟ୍ୟମାଧ୍ୟମରେ କରିବାକୁ ହେବ···।'

ଏ ପରିକଳ୍ପନାର ପରିସର କ୍ଷୁଦ୍ର ହେଲେହେଁ, ବହୁକାଳ ହେଲା ଭଲ କରି ପେଟକୁ ଗଣ୍ଡେ ଖାଇବାକୁ ନ ପାଉଥିବା ଭରତୀୟ ଗ୍ରାମବାସୀ ପକ୍ଷରେ ଏହା ସ୍ୱର୍ଗର ଚନ୍ଦ୍ର ପରି ମନେ ହେବାର କଥା । ଏଥିରେ ପୁଣି ଗାନ୍ଧୀ ଯୋଗ କରିଥିଲେ ଗୋଟାଏ ଉଦ୍‌ଭଟ କଳ୍ପନା : ପ୍ରତି ଗ୍ରାମବାସୀର ଘରେ ଇଲେକ୍‌ଟ୍ରିକ୍ ଆଲୁଅ ।

ଯେଉଁମାନଙ୍କର ଆଦୌ ଭୂମି ନାହିଁ ବା ଅଳ୍ପ ଭୂମି ଅଛି ସେମାନଙ୍କୁ ବାଣ୍ଟିବା ସକାଶେ ବହୁ ଜମିର ମାଲିକମାନଙ୍କଠାରୁ ଜମି ଆଣିବା ପାଇଁ ଗାନ୍ଧୀ, ଭୂସଂସ୍କାର କରିବାର ପକ୍ଷପାତୀ ଥିଲେ କି ନାହିଁ ?

୧୯୩୭, ଜାନୁଆରୀ ୨ ତାରିଖର 'ହରିଜନ'ରେ ଗାନ୍ଧୀ ଲେଖି-ଥିଲେ, 'ଯେ ଶ୍ରମ କରିବ ଜମି ଓ ସଂପତ୍ତି ତା'ରି ।' କିନ୍ତୁ ଜମିଦାରମାନଙ୍କୁ ସେ ଶ୍ରମ କରୁଥିବା ଶ୍ରେଣୀରେ ରଖିଥିଲେ, ଯଦିଓ ସେ ଜାଣିଥିଲେ, ଏହି ଜମିଦାରମାନଙ୍କ ଭିତରୁ ଅଧିକାଂଶ ପ୍ରବାସୀ ଜମିମାଲିକ, ମଧ୍ୟସ୍ୱତ୍ୱାଧିକାରୀ, ଗ୍ରାମ ମାମଲତ୍‌କାର, ଟଙ୍କା କରଜ ଦେଉଥିବା ମହାଜନ ଥାଇ ଏବଂ ଶ୍ରମ ନ କରି ଅନ୍ୟ ନାନାପ୍ରକାର ଫନ୍ଦି ଫିକରଦ୍ୱାରା ଅନ୍ୟର ଶ୍ରମ ଉପରେ ଭାଗ ବସାଉଛନ୍ତି ।

ଗାନ୍ଧୀ ଏ ସଂବନ୍ଧରେ କହିଥିଲେ, 'ଜଣକଠାରୁ ଆଉ ଜଣକର ଧନ ଅଧିକ ନ ଥିବ ଏପରି ଅବସ୍ଥା ମୁଁ କଳ୍ପନା କରି ପାରୁନାହିଁ । ସମ୍ପୂର୍ଣ୍ଣ ଦୋଷଶୂନ୍ୟ ସଂସାରରେ ମଧ୍ୟ ଧନରେ ସାନ ବଡ଼ ରହିବା ରୋକ ହେବ ନାହିଁ । କିନ୍ତୁ ଏଥିଯୋଗୁଁ କ୍ଷୋଭ ଓ କନ୍ଦଳ ଯେପରି ନ ଉପୁଜିବ ସେ ଦିଗରେ ଆମର ଦୃଷ୍ଟି ରହିବା ଉଚିତ, ରଖିବାକୁ ପଡ଼ିବ । ଧନୀ ଓ ଦରିଦ୍ର ପୂର୍ଣ୍ଣ ସଦ୍‌ଭାବ ରଖି ପାଖାପାଖି ରହିବାର ବହୁ ଉଦାହରଣ ଅଦ୍ୟାପି ଦେଖିବାକୁ ମିଳୁଛି । ଏହି ଉଦାହରଣମାନଙ୍କର ସଂଖ୍ୟାବୃଦ୍ଧି କରିବା ଦିଗରେ ଆମ୍ଭେମାନେ ଯତ୍ନବାନ୍ ହେବାକୁ ପଡ଼ିବ ।

ଧନୀମାନେ ନିଜର ଧନ ସର୍ବସାଧାରଣଙ୍କ ହିତ ଉଦ୍ଦେଶ୍ୟରେ ନିଜ ପାଖେ 'ନ୍ୟାସ' ସ୍ୱରୂପ ରଖିବାଦ୍ୱାରା ଧନୀ-ଦରିଦ୍ର ଭେଦଭାବ ଦୂର

କରିବାକୁ ଇଚ୍ଛା କରୁଥିଲେ ।

ଥରେ ବଙ୍ଗଳାରେ ଗସ୍ତ କଲା ବେଳେ ସେ ଜଣେ ଜମିଦାରଙ୍କର ଅତିଥି ହୋଇଥିଲେ । ଜମିଦାର ତାଙ୍କ ସୁନା ବେଲାରେ ଦୁଧ ଓ ସୁନା ଥାଳୀରେ ଫଳ ପରଷିଲେ ।

ଗାନ୍ଧୀ ମନେ ମନେ ବିଚାରିଲେ, 'ସେ ଏ ସୁନା ବାସନକୁସନ ଆଣିଲେ କୁଆଡୁ ?'

ମନେ ମନେ ଏ ପ୍ରଶ୍ନର ଉତ୍ତର ଦେଲେ, 'କୃଷକମାନଙ୍କ ସ୍ୱେଦରୁ' । 'କୃଷକମାନେ ସାରାଜୀବନ ଅନ୍ନକଷ୍ଟରେ ଥିବା ସ୍ଥଳେ ସେ ଏତେ ବିଳାସ ସାମଗ୍ରୀ ସାଇତି ପାରିଛନ୍ତି କପରି ?' ବୋଲି ସେ ବିସ୍ମିତ ହେଲେ ।

ସେତେବେଳେ ତାଙ୍କୁ ସତ୍କାର କରୁଥିବା ଜମିଦାରଙ୍କୁ କିଛି ନ କହି ସେ, ୧୯୩୧ରେ ହୋଇଥିବା ଜମିଦାରମାନଙ୍କର ଗୋଟିଏ ସଭାରେ, ମନର ଏଇ ଭାବସବୁ ପ୍ରକାଶ କରିଦେଲେ ଏବଂ କହିଲେ, 'ଜମିଦାରମାନେ ଭବିଷ୍ୟତ ପାଇଁ ସାବଧାନ ହୋଇଯିବା ଉଚିତ । ସେମାନେ ବର୍ତ୍ତମାନ ଖାଲି ଖଜଣା-ଆଦାୟକାରୀ ବନିଛନ୍ତି, ଏ ରୀତି ଛାଡ଼ନ୍ତୁ । ସେମାନେ ନିଜ ରଇତମାନଙ୍କର ନ୍ୟାସାଧିକାରୀ ଏବଂ ବିଶ୍ୱସ୍ତ ବନ୍ଧୁ ହୋଇ ରହନ୍ତୁ......। ସେମାନେ ରଇତମାନଙ୍କୁ ଜମିରେ ସିକିମି ସ୍ୱତ୍ତ୍ୱ ଦିଅନ୍ତୁ, ସେମାନଙ୍କ ମଙ୍ଗଳ କରିବାରେ ସକ୍ରିୟଭାବେ ମନ ଦିଅନ୍ତୁ । ସେମାନଙ୍କ ପିଲାଙ୍କ ପାଇଁ ସୁପରିଚାଳିତ ବିଦ୍ୟାଳୟ ବସାନ୍ତୁ, ପ୍ରୌଢ଼ମାନଙ୍କ ପାଇଁ ନୈଶବିଦ୍ୟାଳୟ ବସାନ୍ତୁ, ରୋଗୀମାନଙ୍କ ପାଇଁ ଔଷଧାଳୟ ଓ ଚିକିତ୍ସାଳୟ ବସାନ୍ତୁ, ଗ୍ରାମର ପରିଷ୍କାର ପରିଚ୍ଛନ୍ନତା ପ୍ରତି ଦୃଷ୍ଟି ଦିଅନ୍ତୁ । ଏହିପରି ରୟତଙ୍କ ହିତରେ ଲାଗି ସେମାନେ ରୟତମାନଙ୍କ ମନରେ ବିଶ୍ୱାସ ଜାତ କରାନ୍ତୁ ଯେ, ସେମାନେ ତାଙ୍କର ପ୍ରକୃତ ବନ୍ଧୁ । ସେମାନେ ନିର୍ଦ୍ଦିଷ୍ଟ ହାରରେ ରାଜସ୍ୱର ଯେଉଁ ଭାଗ ନିଜ ପାଇଁ ରଖିବେ ତାହା ସେମାନଙ୍କର ସଦ୍‌ବୋଧ ଲୋକମଙ୍ଗଳ କାର୍ଯ୍ୟ ସକାଶ ପାରିଶ୍ରମିକ ହେଉ ।'

୧୯୪୦, ଜୁଲାଇ ୨୮ ତାରିଖର 'ହରିଜନ'ରେ ଗାନ୍ଧୀ ଲେଖିଥିଲେ, କେତେଜଣ ଲକ୍ଷପତିଙ୍କୁ ଧ୍ୱଂସ କରିଦେଲେ ଦରିଦ୍ରମାନଙ୍କର ଶୋଷଣ ଦୂର ହୋଇ ଯିବ ନାହିଁ ; ତାହା ଦୂର ହେବ ସେମାନଙ୍କ ଅଜ୍ଞତା ଦୂର କରି ପାରିଲେ, ଶୋଷଣକାରୀମାନଙ୍କ ସଙ୍ଗେ ଅସହଯୋଗ କରିବାକୁ ଦରିଦ୍ରଙ୍କୁ ପ୍ରବର୍ତ୍ତାଇ ପାରିଲେ । ଏହା ହେଲେ ଶୋଷଣକାରୀଙ୍କ ମନ

ଆପେ ଆପେ ବଦଳିଯିବ ।'

କୃଷକ ଓ ଶ୍ରମିକମାନଙ୍କ ନିଜର ଶକ୍ତି ବିଷୟରେ ଗାନ୍ଧୀ ସଚେତନ କରିଥିଲେ । ସେ ଲେଖିଥିଲେ, 'ଇଂରେଜରେ ଗୋଟିଏ ଖୁବ୍ ଶକ୍ତିଶାଳୀ ଶବ୍ଦ ଅଛି ; ଫ୍ରେଞ୍ଚଭାଷାରେ ମଧ୍ୟ ଏ ଶବ୍ଦ ଅଛି ; ପୃଥିବୀର ପ୍ରତ୍ୟେକ ଭାଷାରେ ବି ତ ଅଛି—ସେ ଶବ୍ଦଟି ହେଉଛି, 'ନୋ'—ନାଁ...... । ହଁ କହିବାକୁ ମନ ହେଲେ ହଁ କହିବାକୁ, ନାଁ କହିବାକୁ ମନ ହେଲେ ନାଁ କହିବାକୁ ସ୍ୱାଧିକାର ଅଛି ବୋଲି ଶ୍ରମିକ ଯେଉଁ ମୁହୂର୍ତ୍ତରେ ଅବହିତ ହୋଇଯିବ, ସେଇ ମୁହୂର୍ତ୍ତରେ ପୁଞ୍ଜିପତିର କବଳରୁ ସେ ମୁକ୍ତି ପାଇଯିବ । ସେଇ ମୁହୂର୍ତ୍ତରୁ ପୁଞ୍ଜିପତି ଶ୍ରମିକକୁ ଆପଣାର କରିବାକୁ ଚେଷ୍ଟିତ ହେବ । ଶ୍ରମିକର ଧର୍ମଘଟ କରିବାର ଅଧିକାର ଅଛି ; କୃଷକର ଖଜଣା ବନ୍ଦ କରିବାର ଅଧିକାର ଅଛି ।

କିନ୍ତୁ ୧୯୨୭, ଅକ୍ଟୋବର ୭ ତାରିଖର 'ୟଙ୍ଗ୍ ଇଣ୍ଡିଆ'ରେ ଗାନ୍ଧୀ ସ୍ପଷ୍ଟ ଭାବେ କହିଥିଲେ, ପୁଞ୍ଜିପତି ଓ ଶ୍ରମିକ ପରସ୍ପରର ବିରୋଧୀ ହେବା ଉଚିତ ନୁହେଁ ।'

ବହୁକାଳ ବିତିଗଲା ; ଗାନ୍ଧୀ ଧନିକମାନଙ୍କୁ ବଦଳାଇବାକୁ ଯେତେ ଚେଷ୍ଟା କଲେ ବି କେହି ନିଜର ସଂପତ୍ତିକୁ ଜନସାଧାରଙ୍କ ପାଇଁ 'ନ୍ୟାସ' ରୂପେ ରଖିବାକୁ ବାହାରିଲେ ନାହିଁ । କୌଣସି ଜମିଦାର ବା କଳ ମାଲିକ ନିଜର ସଂପତ୍ତିକୁ ସ୍ୱେଚ୍ଛାରେ ତ୍ୟାଗ କରିବାର ସମ୍ବାଦ ଗାନ୍ଧୀ ତାଙ୍କ ମୃତ୍ୟୁଦିନ ପର୍ଯ୍ୟନ୍ତ ପାଇଲେ ନାହିଁ । ୧୯୨୯ରେ ସେ ନିବେଦନ କରିଥିଲେ : ଜମିଦାରମାନେ 'ଆଦର୍ଶ ଜମିଦାର' ହୁଅନ୍ତୁ; କୃଷକମାନେ ସେମାନଙ୍କ ଅତ୍ୟାବଶ୍ୟକ ଦ୍ରବ୍ୟ ପାଇ ପାରିବେ । ଏଥିପାଇଁ ଜମିଦାର-ମାନେ ନିଜେ ଦାରିଦ୍ର୍ୟ ବରଣ କରନ୍ତୁ । ଗାନ୍ଧୀଙ୍କ ଶେଷ ଦିନ ପର୍ଯ୍ୟନ୍ତ ଏ ନିବେଦନକୁ କେହି କର୍ଣ୍ଣପାତ କଲେ ନାହିଁ ।

ଧନିକମାନଙ୍କ ସ୍ୱାର୍ଥପରତା ଓ ଦରିଦ୍ର ପ୍ରତି ଉଦାସୀନତା ଦେଖି ଦେଖି କ୍ରମେ ଗାନ୍ଧୀ ନିଜର ଆର୍ଥନୀତିକ ମତ ବଦଳାଇଥିଲେ । ଶ୍ରେଣୀଗତ ସ୍ୱାର୍ଥ ହାସଲ କରିବା ପାଇଁ ଶ୍ରମିକ ଓ କୃଷକ ନିଜ ନିଜ ଶ୍ରେଣୀର ସଂହତି ରଖି ଉଦ୍ୟମ କରିବାର ସେ ପକ୍ଷପାତୀ ହୋଇଗଲେ ।

କିନ୍ତୁ ସେ, ଶେଷ ଦିନର ଯେତିକି ଯେତିକି ନିକଟବର୍ତ୍ତୀ ଓ ଊନବିଂଶ ଶତାବ୍ଦୀର ଯେତିକି ଯେତିକି ଦୂରବର୍ତ୍ତୀ ହେଲେ, ଦାରିଦ୍ର୍ୟର

ଦୂରୀକରଣ ପାଇଁ ନୂଆ ସାଧନର ସେ ସେତିକ ସନ୍ଧାନ କରିବାକୁ ଲାଗିଲେ । ବୈଷୟିକ ଉଦ୍ୟୋଗ ସରକାର ହାତରେ ଅଧିକ ମାତ୍ରାରେ ରହିବା ମଧ୍ୟ ଗାନ୍ଧୀ ମାନିନେଲେ । ଧନୀ ଓ ଦରିଦ୍ରଙ୍କ ଭିତରେ ଧନର ଅସମାନତା ଦୂର କରିବା ନିମନ୍ତେ ଆଇନ୍ ପ୍ରଣୟନ ହେବା ଉଚିତ ବୋଲି ସେ ମତ ଦେଲେ । ଧନରେ ସମାନତା ତାଙ୍କ ବିଚାରରେ ଅଧିକ ସ୍ପୃହଣୀୟ ହେଲା ।

୧୯୩୭, ଜୁଲାଇ ୩୧ ତାରିଖର 'ହରିଜନ'ରେ ଗାନ୍ଧୀ ଉଲ୍ଲେଖ କରିଥିଲେ ଯେ, ବ୍ରିଟେନ୍‌ରେ ଆୟ ଉପରେ ଅତିରିକ୍ତ ଆୟକର ଶତକଡ଼ା ୭୦ ଭାଗ ପର୍ଯ୍ୟନ୍ତ ବସୁଛି । 'ଭାରତରେ ଏ ଆୟକର ଆହୁରି ଚଡ଼ା ହାରରେ ବସିବା ବିରୁଦ୍ଧରେ କୌଣସି ଯୁକ୍ତିଯୁକ୍ତ କାରଣ ନାହିଁ ।' ସେ ଆହୁରି ଲେଖିଥିଲେ, 'ମୃତ୍ୟୁକର ନ ବସିବ କାହିଁକି ?' ୧୯୩୮, ଏପ୍ରିଲ ୧୩ ତାରିଖରେ ପ୍ରକାଶିତ ଗୋଟିଏ ପ୍ରବଂଧରେ ସେ ଆହୁରି ପାଦେ ଆଗକୁ ବଢ଼ିଥିଲେ । ସେ କହିଥିଲେ, 'ନ୍ୟାସ ରୂପେ ସମ୍ପତ୍ତି ରଖିଥିବା ଲୋକର ଜନସାଧାରଣଙ୍କ ବ୍ୟତୀତ ଅନ୍ୟ କେହି ଉତ୍ତରାଧିକାରୀ ହୋଇ ନ ପାରନ୍ତି ।' ଲକ୍ଷପତି ଓ କୋଟିପତିର ଧନ ତା' ମୃତ୍ୟୁ ପରେ ରାଷ୍ଟ୍ରର ହୋଇଯିବ ; ତା'ର ପୁଅ ସେ ଧନର ଅଧିକାରୀ ହେବା ଉଚିତ ନୁହେଁ । ପିତାଠାରୁ ବିଷୟ ସମ୍ପତ୍ତି ଉତ୍ତରାଧିକାରୀ ରୂପେ ଗ୍ରହଣ କଲେ ପୁତ୍ରର ନୈତିକ ଅଧୋଗତି ହେବ ବୋଲି ଗାନ୍ଧୀ ମତ ଦେଇଥିଲେ ।

ଗାନ୍ଧୀ କହିଥିଲେ, ଭାରତ ସ୍ୱାଧୀନ ରାଷ୍ଟ୍ର ହେଲେ, ସ୍ୱାଧୀନ ରାଷ୍ଟ୍ରର ଅନ୍ୟତମ ପ୍ରଥମ କାର୍ଯ୍ୟ ହେବ, 'ଧନ ଜମାଇଥିବା ଲୋକଙ୍କଠାରୁ' ଟଙ୍କା ନେଇ ଅସ୍ପୃଶ୍ୟମାନଙ୍କୁ ଦାନ କରିବା । ସେ ଆହୁରି କହିଥିଲେ, ଏଥିରେ ଯଦି ଧନିକମାନେ ଆପତ୍ତି କରନ୍ତି, 'ମୁଁ ତାଙ୍କ ଦୁର୍ଦ୍ଦଶାରେ ସହାନୁଭୂତି ଦେଖାଇବି ସିନା, ତାଙ୍କୁ ସାହାଯ୍ୟ କରି ପାରିବି ନାହିଁ ; ଇଚ୍ଛା କଲେ ବି ପାରିବି ନାହିଁ । ମୁଁ ଇଚ୍ଛା କରିବାର ପ୍ରଶ୍ନ ଉଠୁନାହିଁ ; କାରଣ, ମୋର ଇଚ୍ଛା, ମୁଁ ଅସ୍ପୃଶ୍ୟଲୋକଙ୍କୁ ସାହାଯ୍ୟ କରିବାର ଯେଉଁ କଳ୍ପନା କରୁଛି ତାହା ଏହି ଧନିକମାନଙ୍କର ସାହାଯ୍ୟରେ ହିଁ କରିବି । ଏମାନଙ୍କ ସାହାଯ୍ୟ ନ ମିଳିଲେ ଅସ୍ପୃଶ୍ୟମାନଙ୍କୁ ପଙ୍କରୁ ଉଠାଇ ହେବ ନାହିଁ ।'

୧୯୪୧ରେ, ଏବଂ ପୁଣି ୧୯୪୫ରେ ତାଙ୍କ 'ଗଠନମୂଳକ କାର୍ଯ୍ୟ-ସୂଚୀ (Construotive Programme )ରେ ଗାନ୍ଧୀ ଭାରତୀୟ ପୁଞ୍ଜିପତିଙ୍କୁ

ସତର୍କବାଣୀ ଶୁଣାଇଥିଲେ । ସେ ଲେଖିଥିଲେ, 'ଧନିକ ଶ୍ରେଣୀ ଓ ବୁଭୁକ୍ଷିତ ଲକ୍ଷ ଲକ୍ଷ ଜନତାଙ୍କ ଭିତରେ ଘୋର ପାର୍ଥକ୍ୟ ଯେତେ କାଳ ରହିବ, ସେ ପର୍ଯ୍ୟନ୍ତ ଅହିଂସା ମାର୍ଗ ଧରି ସରକାର ଚଳାଇବା ଯେ ଅସଂଭବ ଏହା ଜଳ ଜଳ ଦିଶୁଛି । ନୂଆ ଦିଲ୍ଲୀର ପ୍ରାସାଦମାଳା ଓ ତାହାର ନିକଟରେ ଥିବା ଦରିଦ୍ର ଶ୍ରମିକମାନଙ୍କ ସ୍ଥାନ ସ୍ଥାନ କୁଟୀରମାନଙ୍କର ବୈଷମ୍ୟ ସ୍ୱାଧୀନ ଭାରତରେ ଦିନେ ମାତ୍ର ବରଦାସ୍ତ କରି ହେବ ନାହିଁ ; କାରଣ, ସ୍ୱାଧୀନ ଭାରତରେ ଦେଶର ସର୍ବଶ୍ରେଷ୍ଠ ଧନୀ ଓ ସର୍ବନିମ୍ନ ଦରିଦ୍ର ସମାନ କ୍ଷମତାର ଅଧିକାରୀ ହେବେ । ଯଦି ଧନିକମାନେ ସ୍ୱେଚ୍ଛାରେ ନିଜର ଧନ, ଓ ଧନ ସଙ୍ଗେ ଧନରୁ ଯେଉଁ କ୍ଷମତାର ଉଦ୍‌ଭବ ହୁଏ ତାହାକୁ ତ୍ୟାଗ କରିବାକୁ ନ ବାହାରନ୍ତି, ଏବଂ ଜନସାଧାରଣଙ୍କ ମଙ୍ଗଳ ନିମନ୍ତେ ନିଜ ଧନ ଓ କ୍ଷମତାର ଅଂଶ ଦରିଦ୍ରମାନଙ୍କୁ ନ ଦିଅନ୍ତି, ତେବେ ଭୀଷଣ ରକ୍ତାକ୍ତ ବିପ୍ଳବ ହେବ ହିଁ ହେବ ।'

କିନ୍ତୁ ଏ ସତର୍କ ବାଣୀର କିଛି ଫଳ ହେଲା ନାହିଁ ।

'ଧନ ମଣିଷକୁ ଯେଉଁ ପ୍ରଭୁତ୍ୱ ଦିଏ' ତାହା ଗାନ୍ଧୀଙ୍କୁ ବିବ୍ରତ କରୁଥାଏ । କେଉଁ ଉପାୟରେ ଏହି ଧନ ଓ କ୍ଷମତାକୁ ଲୋକଙ୍କ ଭିତରେ ବିକୀର୍ଣ୍ଣ କରି ହେବ, ସେ ବିଷୟରେ ସେ ଭାବି ହେଉଥାନ୍ତି । ୧୯୩୯, ଜୁନ୍ ୮ ତାରିଖରେ ସେ ଲେଖିଥିଲେ, 'ମୂଳ ବା ପ୍ରଧାନ ଶିଳ୍ପମାନଙ୍କୁ ରାଷ୍ଟ୍ରର ଅଧୀନ କରାଯାଇ ପାରେ । ଏଗୁଡ଼ିକ ରାଷ୍ଟ୍ରର ପ୍ରୟୋଜନ ।' କିନ୍ତୁ ରାଷ୍ଟ୍ର ହାତରେ ଆର୍ଥିକ ଶକ୍ତି ପୁଞ୍ଜୀଭୂତ ହେଉ ବୋଲି ମଧ୍ୟ ସେ ଚାହୁଁ ନ ଥିଲେ । ତେଣୁ ସେ ଲେଖିଥିଲେ, 'ଧରାଯାଉ, କାଗଜ ତିଆରି ଶିଳ୍ପକୁ ରାଷ୍ଟ୍ରର ନିଜ ଆୟତ୍ତରେ ରଖିବ ଓ ଏହାର ବଣ୍ଟନ ଉପରେ ଏକଚାଟିଆ କର୍ତ୍ତୃତ୍ୱ ଜାହିର କରିବ । ଏପରି ସ୍ଥଳେ ମୁଁ ଚାହିବି, ଗାଁ ଗହଳରେ ହାତରେ ତିଆରି କରିବା କାଗଜ ଶିଳ୍ପକୁ ରାଷ୍ଟ୍ର, ଯନ୍ତ୍ରଶିଳ୍ପର ପ୍ରତିଯୋଗିତାରୁ ରକ୍ଷା କରୁ ।' ସେ ଆହୁରି ଲେଖିଥିଲେ, 'ଆର୍ଥିକ ଶକ୍ତିର ଉତ୍ସଗୁଡ଼ିକ ଗ୍ରାମଗୋଷ୍ଠୀମାନଙ୍କ ହାତରେ ରହିବ ବା ରାଷ୍ଟ୍ରହାତରେ ରହିବ' ଗ୍ରାମ-ଗୋଷ୍ଠୀ ହାତରେ ରହିବାକୁ ଗାନ୍ଧୀ ଅଧିକ ପସନ୍ଦ କରୁଥିଲେ ।

୧୯୪୨ରେ ମୁଁ ଗାନ୍ଧୀଙ୍କୁ ପଚାରିଥିଲି, 'ସ୍ୱାଧୀନ ଭାରତରେ ବୈପ୍ଳବିକ କାର୍ଯ୍ୟକ୍ରମର ସ୍ୱରୂପ କ'ଣ ହେବ ? କୃଷକମାନଙ୍କ ଅବସ୍ଥା ସୁଧାରିବାକୁ ଆପଣ କି ଯୋଜନାର କଳ୍ପନା କରୁଛନ୍ତି ?'

ଗାନ୍ଧୀ ଉତ୍ତର ଦେଲେ, 'ଜମି ସବୁ କୃଷକଙ୍କ ହାତକୁ ଗ୍ଲଲଯିବ । ନିଅ ବୋଲି ତାଙ୍କୁ କହିବା ଦରକାର ପଡ଼ିବ ନାହିଁ । ସେମାନେ ସବୁ ଜମି ଅଧିକାର କରିଯିବେ ।

ମୁଁ ପଚାରିଲି, 'ଜମିଦାରମାନଙ୍କୁ କ୍ଷତିପୂରଣ ଦିଆଯିବ ତ ?'

ସେ କହିଲେ, 'ନା, ସରକାର ପକ୍ଷରେ ଏତେ କ୍ଷତିପୂରଣ ଦେବା ଅସଂଭବ ।'

ଗାନ୍ଧୀଙ୍କ ମତ ଜାଣିବା ସକାଶ ତାଙ୍କ ସଙ୍ଗେ ସାକ୍ଷାତ୍ କରିବାକୁ ଆସିଥିବା ଜଣେ ବ୍ୟକ୍ତି କହିଲେ ଯେ, ଭାରତରେ ଲୁଗାକଳର ସଂଖ୍ୟା ବଢ଼ିବାରେ ଲାଗିଛି । ଗାନ୍ଧୀ ମତ ଦେଲେ, 'ଏହା ଦେଶ ପକ୍ଷରେ ଦୁର୍ଭାଗ୍ୟର କଥା ।' କାମ ନ ପାଇ ବର୍ଷର ଅଧେ ସମୟ ବେକାର ହୋଇ ବସିଥିବା କୃଷକମାନଙ୍କ ଘରେ ସବୁତକ ଲୁଗା ତିଆରି ହୋଇ ପାରିଲେ ଭଲ ହୁଅନ୍ତା ।

୧୯୩୯, ଜାନୁଆରୀ ୨୮ ତାରିଖର 'ହରିଜନ' କାଗଜରେ ଗାନ୍ଧୀ ଭାବାବେଗରେ କହିଥିଲେ, ପାଶ୍ଚାତ୍ୟ ରୀତିରେ ଭାରତ ଯନ୍ତ୍ରଶିଳ୍ପକୁ ପୂରାପୂରି ଆଦରିଯିବା ଭଗବାନ୍ କରାଇ ନ ଦିଅନ୍ତୁ । ଗୋଟିଏ ମାତ୍ର କ୍ଷୁଦ୍ର ଜଳବେଷ୍ଟିତ ରାଜ୍ୟର ବୈଷୟିକ ସାମ୍ରାଜ୍ୟବାଦ ଯୋଗୁଁ ସମଗ୍ର ପୃଥିବୀ ଶୃଂଖଳାବଦ୍ଧ ହୋଇ ରହିଛି । ଭାରତ ପରି ବିରାଟ ଦେଶର ୩୦ କୋଟି ଯାକ ଲୋକ ଯଦି ଏଇ ରୀତିରେ ଆର୍ଥିକ ଶୋଷଣ ଆରମ୍ଭ କରି ଦିଅନ୍ତି ତେବେ ପଙ୍ଗପାଳଙ୍କ ପରି ଏମାନେ ସମଗ୍ର ପୃଥିବୀକୁ ନିଃଶେଷ କରିଦେବେ ।'

ବୈଷୟିକ ଅଭାବ ବଢ଼ାଇ ଯିବା ଓ ତାହାର ପୂରଣ ପାଇଁ ବହୁବିଧ ଇନ୍ଦ୍ରିୟଭୋଗ୍ୟ ପଦାର୍ଥ ସୃଷ୍ଟି କରିବାକୁ ଲାଗିବା ମଣିଷର ଦୈହିକ ସୁଖ ବା ଆଧ୍ୟାତ୍ମିକ ଶାନ୍ତିର ରାଜମାର୍ଗ ବୋଲି ସେ ସ୍ୱୀକାର କରୁ ନ ଥିଲେ । ଅର୍ଥନୀତି ଓ ନୀତିଶାସ୍ତ୍ର ଏ ଉଭୟ ମଝିରେ ସେ ବାଡ଼ ପକାଇ ନ ଥିଲେ । ୧୯୩୭, ଅକ୍ଟୋବର ୯ ତାରିଖରେ 'ହରିଜନ'ରେ ସେ ଲେଖିଥିଲେ, 'ଯେଉଁ ଅର୍ଥଶାସ୍ତ୍ର ଧନଦେବତା-ପୂଜାର ପ୍ରବର୍ତ୍ତନ କରେ, ଯେଉଁ ଶାସ୍ତ୍ରର ନିର୍ଦ୍ଦେଶରେ ଦୁର୍ବଳକୁ ଶୋଷଣ କରି ବଳବାନ ଧନ ସଞ୍ଚିବାକୁ ସମର୍ଥ ହୁଏ ତାହା ଭ୍ରାନ୍ତ ଓ ଦୁଃଖଦାୟକ ବିଜ୍ଞାନ । ଏହାର ପରିଣାମ ମୃତ୍ୟୁ, ଧ୍ୱଂସ ।' ଯଥାର୍ଥ ଅର୍ଥଶାସ୍ତ୍ର···'ସାମାଜିକ ନ୍ୟାୟ' ଓ

ନୈତିକ ମହତ୍ତ୍ୱର କାରଣ ହୁଏ । ଗାନ୍ଧୀ ଜାଣୁଥିଲେ, ଯାହାଙ୍କ ଘରେ ଶୀତଳକ ଯନ୍ତ୍ରଭଣ୍ଡାର ଖାଦ୍ୟ ଦ୍ରବ୍ୟରେ ପରିପୂର୍ଣ୍ଣ, ପୋଷାକ ଆଲମାରିରେ ବହୁବିଧ ପୋଷାକ ଭର୍ତ୍ତି ହୋଇ ରହିଛି, ଯାହାଙ୍କର ଏକାଧିକ ଗ୍ୟାରେଜରେ ମଟରଗାଡ଼ିମାନ ରହିଛନ୍ତି, ଯାହାଙ୍କ ଘରର ପ୍ରତ୍ୟେକ କୋଠରିରେ ବେତାର ଯନ୍ତ୍ର ରହିଛି, ସେ ଭଳି ଲୋକର ମନ ଏ ସବୁ ସତ୍ତ୍ୱେ, ଭୟ ବିପଦର ଆଶଂକାରେ କ୍ଷୁବ୍ଧ ରହିବା ଅସଂଭବ ନୁହେଁ । ପ୍ରାଚୀନ ରୋମ୍‌ର ଉଦାହରଣ ଦେଇ ସେ କହିଥିଲେ, 'ବୈଷୟିକ ସମୃଦ୍ଧିର ଉଚ୍ଚତମ ସୋପାନକୁ ଉଠିଥିବା ବେଳେ ରୋମୀୟ ସାମ୍ରାଜ୍ୟର ନୈତିକ ଅଧଃପତନ ହୋଇଥିଲା ।' ଗାନ୍ଧୀ ଜଣେ ପ୍ରସିଦ୍ଧ ଦାର୍ଶନିକଙ୍କ ଉକ୍ତି ଉଦ୍ଧାର କରି କହିଥିଲେ, 'ଲୋକ ସମଗ୍ର ପୃଥିବୀରେ ଏକାଧିପତ୍ୟ ଜାରି କରିବା ସତ୍ତ୍ୱେ ଯଦି ନିଜ ଅନ୍ତରାତ୍ମାକୁ ଆୟତ୍ତ କରି ରଖି ନ ପାରିଲା ତେବେ ତା'ର ସମସ୍ତ ସମୃଦ୍ଧି ବୃଥା—ସେ ହିଁ ପ୍ରକୃତ ନିଃସ୍ୱ ।' ତା'ପରେ ସେ ପୁଣି କହିଲେ, 'ଆଧୁନିକ ଭାଷାରେ କୁହାଯାଇ ପାରେ, ମଣିଷ ଯଦି ନିଜର ବ୍ୟକ୍ତିତ୍ୱ ହରାଇ, ଗୋଟାଏ ଯନ୍ତ୍ରର ଅଂଶବିଶେଷ ହୋଇ ରହିଲା, ତେବେ ତା'ର ମାନବୀୟ ମର୍ଯ୍ୟାଦା ଲୋପ ହେଲା ବୋଲି ବୁଝିବାକୁ ହେବ । ମୁଁ ଚାହେଁ, ସମାଜର ପ୍ରତ୍ୟେକ ବ୍ୟକ୍ତି ପୂର୍ଣ୍ଣ ସ୍ୱାତନ୍ତ୍ର୍ୟ ଭୋଗ କରି ନିଜର ବଳିଷ୍ଠ ବ୍ୟକ୍ତିତ୍ୱ ହାସଲ କରିବ ଏବଂ ସ୍ୱଇଚ୍ଛାରେ ସମାଜର ଅନ୍ତର୍ଭୁକ୍ତ ହୋଇ ରହିବ ।' ଗାନ୍ଧୀଙ୍କ ବିଶ୍ୱାସରେ ପରମେଶ୍ୱରହିଁ ସର୍ବମୟ କର୍ତ୍ତା; ତାଙ୍କ ତଳକୁ, ପ୍ରତ୍ୟେକ ମାନବ ତା'ର ନିଜ ପରିବେଶରେ ସଂପୂର୍ଣ୍ଣ ସ୍ୱତନ୍ତ୍ର ଓ ଅପ୍ରତିଦ୍ୱନ୍ଦ୍ୱୀ । ଏହି ବିଶ୍ୱାସ ଯୋଗୁଁ, ଗାନ୍ଧୀ ନିଜକୁ 'ଆଜନ୍ମ ଗଣତନ୍ତ୍ରବାଦୀ' ବୋଲି ମନେ କରୁଥିଲେ ।

ସେ ଲେଖିଥିଲେ, 'ବ୍ୟକ୍ତି ସ୍ୱାଧୀନତାକୁ ଅସ୍ୱୀକାର କରି କୌଣସି ମାନବଗୋଷ୍ଠୀର ବିକାଶ ହୋଇ ନ ପାରେ । ମନୁଷ୍ୟର ସହଜାତ ପ୍ରକୃତି ଏଭଳି ବିକାଶର ଅନ୍ତରାୟ । ମଣିଷର ଶିଂଘ ଉଠିବ ନାହିଁ, ଲାଞ୍ଜ କଅଁଳିବ ନାହିଁ, ଏକଥା ଯେପରି ସତ, ମାନସିକ ସ୍ୱାତନ୍ତ୍ର୍ୟ ନ ଥିଲେ ମଣିଷ ମଣିଷ ହୋଇ ରହିବ ନାହିଁ, ଏକଥା ମଧ୍ୟ ସେହିପରି ସତ । ତେଣୁ ଗଣତନ୍ତ୍ର ଏଭଳି ଗୋଟିଏ ସଂସ୍ଥା ନୁହେଁ, ଯହିଁରେ ନାଗରିକମାନେ ମେଣ୍ଢା ପରି ପରର ଗୋଡ଼ାଣିଆ ହୋଇ ରହିବେ ।'

ଅନ୍ୟର କାର୍ଯ୍ୟକୁ ପ୍ରଶ୍ରୟ ଦେବା ବା ଅନ୍ୟପ୍ରତି ଅନୁକଂପା ପ୍ରଦର୍ଶନ

କରିବାରେ ଉଚ୍ଚତର ବ୍ୟକ୍ତିର ଦମ୍ଭ ସୂଚିତ ହେଉଥିବାରୁ ଗାନ୍ଧୀ ଏ ଏ ମନୋବୃତ୍ତିକୁ ପସନ୍ଦ କରୁ ନ ଥିଲେ କିନ୍ତୁ ଦୟା ଓ ଦାକ୍ଷିଣ୍ୟର ବଦଳରେ ବ୍ୟବହାର କରିବାକୁ ଅନ୍ୟ ଉପଯୁକ୍ତ ଶବ୍ଦ ନ ପାଇବାରୁ ସେ ଏ ଶବ୍ଦକୁ ଛାଡ଼ି ପାରୁ ନ ଥିଲେ । ଯାହା ହେଉ, ସେ ନିଜର ମତ ବ୍ୟାଖ୍ୟାନ କରି କହି ଯାଇଛନ୍ତି, 'ସାଧାରଣଙ୍କ ମତକୁ ଯେଉଁ ଶାସକ ବେଖାତିର କରେ, ସେ ଯେ ହେଉ ପଛେ, ମୁଁ ତାକୁ ବୈଦେଶିକ ଶାସକ ବୋଲି ମନେ କରେ .. । ଅନ୍ୟର ମତ ଓ କାର୍ଯ୍ୟରେ ଯେ ହସ୍ତକ୍ଷେପ କରେ ତା'ର ନିଜର ମତ ଓ କାର୍ଯ୍ୟରେ ପୂର୍ଣ୍ଣ ଆସ୍ଥା ନାହିଁ ବୋଲି ଧରା ପଡ଼ିଯାଏ... । ଆମେ ଯେତେବେଳେ ଅନ୍ୟର କଥା ଶୁଣିବାକୁ ନାରାଜ ହେଉଁ, ବା ତାହା ଶୁଣି ତାଚ୍ଛିଲ୍ୟରେ ଉଡ଼ାଇ ଦେବାକୁ ବସୁ, ସେତେବେଳେ ଆମେ ନିଜଆଡ଼ୁ ଯୁକ୍ତିଯୁକ୍ତ ବିଚାରର ଦ୍ୱାର ରୁଦ୍ଧ କରି ଦେଉଁ ବୋଲି ବୁଝିବାକୁ ହେବ ।

ସେ ନିଜର ଅନୁଗତମାନଙ୍କୁ ତାଗିଦ୍ କରୁଥିଲେ, 'ସବୁବେଳେ ମନ ଖୋଲି ରଖ ।'

କିନ୍ତୁ ସେ ପରିଷ୍କାର ବୁଝିଲେ ଯେ, ଶୃଂଖଳା ଓ ସଂଯମ ନ ରହିଲେ ଗଣତନ୍ତ୍ର ତିଷ୍ଠି ରହିବା ଅସଂଭବ । ସେ ଲେଖିଥିଲେ, 'ବ୍ୟକ୍ତି ସ୍ୱାତନ୍ତ୍ର୍ୟକୁ ମୁଁ ସ୍ୱାଗତ କରେ, କିନ୍ତୁ ଏକଥା କେଉଁ ପାସୋରି ଦେଇ ନାହିଁ ଯେ ମନୁଷ୍ୟ ଗୋଟିଏ ସାମାଜିକ ପ୍ରାଣୀ । ଗୋଷ୍ଠୀର ବିକାଶ ଓ ପ୍ରୟୋଜନ ଦୃଷ୍ଟିରେ ନିଜର ବ୍ୟକ୍ତି-ସ୍ୱାତନ୍ତ୍ର୍ୟକୁ ନିୟନ୍ତ୍ରିତ କରି ରଖି ଜାଣିବାରୁ ହିଁ ମଣିଷ ତା'ର ବର୍ତ୍ତମାନ ଅବସ୍ଥାକୁ ଉଠି ପାରିଛି । ସ୍ୱେଚ୍ଛାଚାର ଓ ଅସଂଯତ ଆଚରଣ ବନ୍ୟପଶୁର ଧର୍ମ, ମଣିଷର ନୁହେଁ । ବ୍ୟକ୍ତି-ସ୍ୱାତନ୍ତ୍ର୍ୟ ଓ ସାମାଜିକ ସଂଯମ—ଉଭୟର ଭିତରେ ଆମକୁ ମଧ୍ୟ-ପନ୍ଥା ଧରି ଚଳିବାକୁ ପଡ଼ିବ ।' ନିଜର ମନକୁ ସଂଯତ କରି ଜାଣିଲେ ଏ ମଧ୍ୟପନ୍ଥା ଦିଶିବ । ମଣିଷ ଯଦି ଆତ୍ମ-ସଂଯମ ଅଭ୍ୟାସ ନ କରେ, ତେବେ ରାଷ୍ଟ୍ର ବାଧ୍ୟ ହୋଇ ବ୍ୟକ୍ତିକୁ ଶାସନାଧୀନ କରିବାକୁ ଚେଷ୍ଟା କରିବ ; ଏବଂ ସରକାର ତରଫରୁ ଅତିମାତ୍ରାରେ କଟକଣା ଜାରି ହେଲେ ଗଣତନ୍ତ୍ରର ବିନାଶ ହେବ ।

ଗାନ୍ଧୀ ଦୃଢ଼ଭାବେ ନିଜର ମତ ବ୍ୟକ୍ତ କରିଥିଲେ, 'ଜୋର ଜବରଦସ୍ତି କରି ଆମକୁ କେହି ଆତ୍ମ-ସଂଯମ ଶିଖାଇ ପାରିବ ନାହିଁ । ନିରଙ୍କୁଶ ଶାସକ ଆନୁଗତ୍ୟ ଦାବୀ କରିପାରେ ; ନିଜର ଇଙ୍ଗିତରେ

ଲୋକଙ୍କୁ ପୁତ୍ତଳିକା ପରି ନଚାଇ ପାରେ ; ଭୟ ଦେଖାଇ ଲୋକଙ୍କ ମୁଣ୍ଡ ନୁଆଇଁ ପାରେ। କିନ୍ତୁ ଏ ସବୁ ଶୃଂଖଳା ବା ସଂଯମ ନୁହେଁ ।

ବ୍ୟକ୍ତି ସ୍ୱାଧୀନତା ନ ଥାଇ ବୈଷୟିକ ସ୍ୱାଚ୍ଛନ୍ଦ୍ୟର ନାମ ଗଣତନ୍ତ୍ର ବୋଲି କେତେକ ନେତା ଯେଉଁ ପ୍ରଚାର କରୁଥିଲେ ଗାନ୍ଧୀ ତାହା ପସନ୍ଦ କରୁ ନ ଥିଲେ । ବୈଷୟିକ ସ୍ୱାଚ୍ଛନ୍ଦ୍ୟ ନ ଥାଇ ଶୁଖିଲା ରାଜନୈତିକ ସ୍ୱାଧୀନତା ମଧ୍ୟ ସେ ନାପସନ୍ଦ କରୁଥିଲେ । ୧୯୪୨, ଜୁନ ମାସ ୭ ତାରିଖର ହରିଜନରେ ସେ ବଖାନ କରିଥିଲେ, 'ସ୍ୱାଧୀନତାର ତାତ୍ପର୍ଯ୍ୟ ମୁଁ ସଂକୀର୍ଣ୍ଣ ଅର୍ଥରେ ଆବଦ୍ଧ କରି ପାରେ ନାହିଁ । ପୂର୍ଣ୍ଣ ମହତ୍ତ୍ୱରେ ଅବସ୍ଥିତ ମନୁଷ୍ୟ ଯଥାର୍ଥ ସ୍ୱାଧୀନ ବୋଲି ମୁଁ ମନେ କରେ ।'

ସେ ପ୍ରଶ୍ନ କରିଥିଲେ, 'ସମାଜରେ ବ୍ୟକ୍ତିର ସ୍ୱାତନ୍ତ୍ର୍ୟ ଯଦି ନ ରହିଲା, ତେବେ ସମାଜର ସ୍ଥିତି କେଉଁଠି ?' ନିରଙ୍କୁଶ ଶାସକ ଦେଶରୁ ନିରକ୍ଷରତା ଦୂର କରିବାକୁ ସମର୍ଥ ହେବେ ବୋଲି ଯେଉଁମାନେ ଯୁକ୍ତି ବାଢ଼ୁଥିଲେ ତାଙ୍କୁ ଗାନ୍ଧୀ ଜବାବ ଦେଇଥିଲେ, 'ସ୍ୱାଧୀନତା ଓ ଶିକ୍ଷା ଏ ଦୁଇଥିରୁ ଗୋଟିଏ ବାଛି ନେବାର ପ୍ରଶ୍ନ ଯଦି ଉଠେ, ତେବେ କିଏ ଅସ୍ୱୀକାର କରିବ ଯେ ଶିକ୍ଷାଠାରୁ ସ୍ୱାଧୀନତା ସହସ୍ର ଗୁଣରେ ସ୍ପୃହଣୀୟ ?'

ଗାନ୍ଧୀ ସ୍ୱୀକାର କରୁଥିଲେ ଯେ, ଗଣତନ୍ତ୍ରରେ ସଂଖ୍ୟାଗରିଷ୍ଠ ଗୋଷ୍ଠୀ ହାତରେ ଶାସନର ଡୋର ରହେ । କିନ୍ତୁ ସେ କହୁଥିଲେ, 'ବିବେକର ବିଚାର କ୍ଷେତ୍ରରେ ସଂଖ୍ୟାଗରିଷ୍ଠଙ୍କ ଶାସନର ସ୍ଥାନ ନାହିଁ··· । ସଂଖ୍ୟାଗରିଷ୍ଠଙ୍କ ମତର ତାତ୍ତ୍ୱିକ ବିଚାର ନ କରି ତା'କୁ ତୂଷ୍ଣୀ ହୋଇ ମାନିଯିବାର ନାମ ଦାସତ୍ୱ ।'

ସ୍ୱାଧୀନତା ଗାନ୍ଧୀଙ୍କ ଦୃଷ୍ଟିରେ ସର୍ବଶ୍ରେଷ୍ଠ ଆଦର୍ଶ ନ ଥିଲା । ସେ କହିଥିଲେ, 'ଭାରତର ସ୍ୱାଧୀନତା ମୋର ଚିରକାମ୍ୟ, କିନ୍ତୁ ଏହା ପାଇବାକୁ ମଧ୍ୟ ମୁଁ ଅସତ୍ୟର ଆଶ୍ରୟ ନେଇ ପାରିବି ନାହିଁ । ବ୍ରିଟେନ୍‌ର ଧ୍ୱଂସସ୍ତୂପ ଭିତରୁ ଆମେ ସ୍ୱାଧୀନତା ଆହରଣ କରିବାକୁ ଚାହୁଁ ନା ।'

ଗାନ୍ଧୀ ହିଂସା ଓ ଅସତ୍ୟର ବିରୋଧୀ ଥିଲେ । ସର୍ବଶକ୍ତିମାନ୍ ରାଷ୍ଟ୍ର ଏହି ଦୁଇ ଦୋଷ ଉପରେ ଆଧାରିତ ହୋଇଥିବାରୁ ଏବଂ ତାଙ୍କର ଅର୍ଥନୈତି ସଂବଧୀ ମତବାଦ ସ୍ୱତନ୍ତ୍ର ଥିବାରୁ ସେ କମ୍ୟୁନିଷ୍ଟବାଦର ବିରୋଧୀ ଥିଲେ ।

୧୯୨୧, ନଭେମ୍ବର ୨୪ ତାରିଖ ଦିନୁଁ ସେ କହି ରଖିଥିଲେ, 'ଭାରତ କମ୍ୟୁନିଜମ୍ ଚାହେ ନାହିଁ ।'

୧୯୪୧, ଜାନୁଆରୀ ୨୬ ତାରିଖରେ ସେ ସ୍ପଷ୍ଟ କହିଥିଲେ, 'ପ୍ରତ୍ୟେକ କଂଗ୍ରେସ୍‌ବାଲା ଯେମିତି ଦେବଦୂତ ନୁହନ୍ତି, ସେହିପରି ପ୍ରତ୍ୟେକ କମ୍ୟୁନିଷ୍ଟ ସଇତାନ୍ ନୁହନ୍ତି । ଖାଲି କମ୍ୟୁନିଷ୍ଟ-ମତବାଦୀ ବୋଲି ମୁଁ କାହାର ପ୍ରତିକୂଳ ନୁହେଁ । କିନ୍ତୁ ନିଜେ କମ୍ୟୁନିଷ୍ଟମାନେ ମୋତେ ସେମାନଙ୍କ ମତବାଦର ଯେଉଁ ଧାରଣା ଦେଇଛନ୍ତି ତାହା ଶୁଣି ମୁଁ କମ୍ୟୁନିଜମ୍ ଗ୍ରହଣ କରିବାକୁ ଅସମର୍ଥ ।'

ଗାନ୍ଧୀଙ୍କ ମତ ବଦଳାଇବାକୁ କମ୍ୟୁନିଷ୍ଟ୍‌ମାନେ ତାଙ୍କ ପାଖକୁ ପ୍ରଚାରକ ପଠାଇଥିଲେ । କିନ୍ତୁ ଗାନ୍ଧୀ ନିଜର ସ୍ୱାଭାବିକ ସଂସ୍କାର ଯୋଗୁଁ ସେମାନଙ୍କ ପ୍ରଚାରରେ ପ୍ରଭାବିତ ହୋଇପାରି ନ ଥିଲେ ।

୧୯୨୪, ଡିସେମ୍ବର ୧୧ ତାରିଖରେ ସେ ଲେଖିଥିଲେ, 'ବଲ୍‌ସେଭିକ ବାଦର ତାତ୍ପର୍ଯ୍ୟ ମୁଁ ଆଜିସୁଦ୍ଧା ବୁଝି ପାରି ନାହିଁ । ମୁଁ ଏହାର ସମୀକ୍ଷା କରିବାକୁ ସମର୍ଥ ହୋଇନାହିଁ । ପରିଣାମରେ ଏହା ରୁଷିଆର ମଙ୍ଗଳକର ହେବ କି ନାହିଁ ମୁଁ ଜାଣି ପାରୁନାହିଁ । ମୁଁ ଏତିକି ମାତ୍ର ଜାଣୁଛି ଯେ, ଏହାର ମୂଳରେ ନାସ୍ତିକତା ଓ ହିଂସାବାଦ ଥିବାରୁ ଏହା ମୋର ରୁଚିକର ହେଉନାହିଁ··· । ଉଦ୍ଦେଶ୍ୟ ଯେତେ ମହତ୍ ହେଉ ପଛେ, ତାହାର ସିଦ୍ଧି ପାଇଁ ହିଂସାତ୍ମକ ଉପାୟ ଅବଲମ୍ବନ କରିବାର ମୁଁ ଏକାନ୍ତ ବିରୋଧୀ ।'

୧୯୨୬ ରେ, ରୁଷିଆ, ଇଟାଲୀ ପ୍ରଭୃତି ଦେଶମାନଙ୍କ ବିଷୟରେ କିଛି ଅଧିକ ଖବର ସଂଗ୍ରହ କରିବା ଫଳରେ, ସେ କହିଥିଲେ, 'ରୁଷିଆ, ଇଟାଲୀ ଓ ତାଙ୍କ ଭଳି ଅନ୍ୟ କେତେକ ଦେଶରେ ଲୋକେ ଶାନ୍ତିରେ ଅଛନ୍ତି ବା ସ୍ୱାଧୀନତା ଉପଭୋଗ କରୁଛନ୍ତି ବୋଲି କେହି ଭଳି ନ ଯାନ୍ତୁ ।'

ବ୍ରିଟିଶ୍ କମନ୍‌ସ୍ ସଭାର ମେମ୍ବର ହୋଇଥିବା, ସାପୁରଜୀ ସକଲାତ୍‌ୱାଲା ନାମକ ଜଣେ ଭାରତୀୟ କମ୍ୟୁନିଷ୍ଟ, ୧୯୨୭ରେ, କମ୍ୟୁନିଜମ୍ ବିଷୟରେ ତାଙ୍କ ଭ୍ରାନ୍ତ ଧାରଣା ତ୍ୟାଗ କରି କମ୍ୟୁନିଷ୍ଟ ମତବାଦ ଗ୍ରହଣ କରିବା ସକାଶ ଗାନ୍ଧୀଜୀଙ୍କୁ ନିବେଦନ କରିଥିଲେ । ୧୯୨୭, ମାର୍ଚ୍ଚ ୧୭ ତାରିଖର 'ୟଙ୍ଗ୍ ଇଣ୍ଡିଆ'ରେ ଗାନ୍ଧୀ ଶ୍ରୀ ସକଲାତ୍‌ୱାଲାଙ୍କୁ 'ଅଧୀର କମ୍ରେଡ୍' ବୋଲି ଆଖ୍ୟା ଦେଇ ତାଙ୍କ ନିବେଦନର ଜବାବ୍ ଦେଇଥିଲେ : 'ଯୁବକଙ୍କ ସଙ୍ଗେ ଆନ୍ତରିକ ସହଯୋଗ କରିବାକୁ

ଏକାନ୍ତ ଇଚ୍ଛାସତ୍ତ୍ୱେ ମୁଁ ଦେଖୁଛି ସେ ମୋତେ ଗୋଟାଏ ଅଭେଦ୍ୟ ପାଚଶ୍ଚିରେ ନେଇ ଠେସି ଦେଉଛନ୍ତି । ସେ ତଥ୍ୟ ବୋଲି ଯାହା ଦେଖାଉଛନ୍ତି ତାହା କପୋଳକଳ୍ପନା ମାତ୍ର । ଅସାର କଳ୍ପନା ଉପରେ ନିର୍ଭର କରି ସେ ଯେଉଁ ସିଦ୍ଧାନ୍ତର ସୌଧ ଗଢ଼ିଛନ୍ତି ତାହା ମୂଳଦୁଆ-ହୀନ ହେବାର ଇ କଥା··· । ଦୁଃଖର ସହିତ ସ୍ୱୀକାର କରିବାକୁ ହେଉଛି ଆମ ଦୁହିଙ୍କ ମତବାଦ ସଂପୂର୍ଣ୍ଣ ବିପରୀତ-ବିଗାବଲମ୍ବୀ ।’

ପୁଞ୍ଜିବାଦୀଙ୍କ ସଙ୍ଗେ ଭାବ ରଖିଛନ୍ତି ଓ ତାଙ୍କଠାରୁ ଟଙ୍କା ନେଉଛନ୍ତି ବୋଲି କମ୍ୟୁନିଷ୍ଟମାନେ ଗାନ୍ଧୀଙ୍କୁ ଦୋଷ ଦେଉଥିଲେ । ଏ ଦୋଷ କମ୍ୟୁନିଷ୍ଟଙ୍କଠାରେ ମଧ୍ୟ ବିସ୍ତର ଦେଖାଯାଏ ବୋଲି ଗାନ୍ଧୀ ଉଦ୍ଧେଇ ନ ଥିଲେ । ସେ କମ୍ୟୁନିଷ୍ଟଙ୍କ ଦୋଷାରୋପ ସ୍ୱୀକାର କରି କହିଥିଲେ ଯେ, ଦରିଦ୍ରଙ୍କୁ ଦେବା ନିମନ୍ତେ ସେ ଧନୀଙ୍କଠାରୁ ଟଙ୍କା ନିଅନ୍ତି ; ପୁଞ୍ଜିବାଦୀଙ୍କୁ ନିଜ ପକ୍ଷକୁ ଆଣିବା ନିମନ୍ତେ ସେ ସେମାନଙ୍କ ସଙ୍ଗେ ଭାବ ରଖିଥାନ୍ତି । କମ୍ୟୁନିଷ୍ଟମାନେ ତାଙ୍କ ପାଖକୁ ଯେତେ ଥର ଆସିବାକୁ ଚାହାନ୍ତି, ତାଙ୍କୁ ସେତେଥର ସ୍ୱାଗତ କରିବାକୁ ଓ ତାଙ୍କ ସଙ୍ଗେ ଭାବ କରିବାକୁ ସେ ପ୍ରସ୍ତୁତ ଥାନ୍ତି ।

ଥରେ ଦଳେ କମ୍ୟୁନିଷ୍ଟଙ୍କୁ ସେ କହିଥିଲେ, ‘ତୁମେମାନେ କମ୍ୟୁନିଷ୍ଟ୍ ବୋଲି ନିଜର ପରିଚୟ ଦେଉଛ, କିନ୍ତୁ କମ୍ୟୁନିଷ୍ଟ୍‌ମାନଙ୍କ ରୀତି ଅବଲମ୍ବନ କଲି ପରି ତ ଜଣା ପଡ଼ୁନାହିଁ !’ ଏହି ଉପକ୍ରମ ପରେ ସେ, ଆଲୋଚନା ବେଳେ ସେମାନଙ୍କ ଅସୌଜନ୍ୟ ଯୋଗୁଁ, ସେମାନଙ୍କୁ ଭର୍ତ୍ସନା କରିଥିଲେ । ଆଉ ଥରେ ସେମାନଙ୍କ ନ୍ୟାୟାନ୍ୟାୟ ବିଚାର-ଶୂନ୍ୟତାର ସମାଲୋଚନା କରି-ଥିଲେ । ୧୯୩୦, ଡିସେମ୍ବର ୧୦ ତାରିଖର ‘ହରିଜନ’ରେ ସେ ଲେଖିଥିଲେ ‘କମ୍ୟୁନିଷ୍ଟ ମତବାଦ ବୋଲି ପ୍ରଚଳିତ ହେଉଥିବା କେତେକ ପୁସ୍ତିକା ପଢ଼ି ମୁଁ ବୁଝିଛି, ଗୋପନରେ କାର୍ଯ୍ୟ କରିବା, ଭାଷା ବିଳାସରେ ପ୍ରକୃତ କଥାଟା ଘୋଡ଼ାଇ ଦେବା, କମ୍ୟୁନିଷ୍ଟ୍‌ମାନଙ୍କ ଲକ୍ଷ୍ୟ ସାଧନ ପାଇଁ ଆବଶ୍ୟକ ବୋଲି ଏହି ପୁସ୍ତିକାମାନଙ୍କରେ ନିର୍ଦ୍ଦେଶ ଦିଆ ହୋଇଛି ।’ ଏଇଥି ପାଇଁ କମ୍ୟୁନିଜମ୍ ପ୍ରତି ସେ ବିତୃଷ୍ଣ ହୋଇଥିଲେ ।

ଗାନ୍ଧୀ କ’ଣ ସମାଜବାଦୀ ଥିଲେ ।

କମ୍ୟୁନିଷ୍ଟ୍‌ମାନେ ନିଜକୁ ସମାଜବାଦୀ ବୋଲି କହନ୍ତି । ହିଟଲରଙ୍କ ନାଜିଦଳର ପୂରା ନାମ ଥିଲା, ‘ଜାତୀୟ ସମାଜବାଦୀ କର୍ମୀଙ୍କ ଦଳ’; ଦରିଦ୍ର-

ଶ୍ରମିକଙ୍କ ହିତ ପାଇଁ ଦେଶ ଶାସନ କରୁଛନ୍ତି ବୋଲି ମୁସୋଲିନି କହୁଥିଲେ। ଫ୍ରାନ୍‌ସର ଉଗ୍ର ସମାଜବାଦୀ ମାନେ (Radical Socialists) ନରମ କାର୍ଯ୍ୟପନ୍ଥାର ପୋଷକ ଏବଂ ଏ ଦଳର ଲୋକେ ମଧ୍ୟବିତ୍ତ ଶ୍ରେଣୀର। 'ସମାଜବାଦ' ଶବ୍ଦଟିର ବହୁ ଅର୍ଥ ଅର୍ଥାନ୍ତର ହୋଇଛି।

ଗାନ୍ଧୀ ଜେଲ୍‌ଖାନାରେ କାର୍ଲମାର୍କସ୍‌ଙ୍କ 'କ୍ୟାପିଟାଲ' ପୁସ୍ତକ ପଢ଼ି ମନ୍ତବ୍ୟ କରିଥିଲେ, 'କାର୍ଲମାର୍କସ୍ ବିଷୟଟିରେ ଯେତେ ଅନୁଧ୍ୟାନ କରିଛନ୍ତି ତାହା କରିବାକୁ ମୁଁ ସମୟ ପାଇଥିଲେ ସନ୍ଦର୍ଭଟି ଆହୁରି ଭଲ ଭାବେ ଲେଖି ପାରିଥାନ୍ତି।' ଲିଖନଶୈଳୀ କଥା ମନରେ ରଖି ଯଦି ସେ ଏହା କହିଥିବେ ତେବେ ଠିକ୍ କହିଛନ୍ତି। କିନ୍ତୁ ସେ ମାର୍କସ୍-ମତାବଲମ୍ବୀ ନ ଥିଲେ; ଶ୍ରେଣୀ ସଂଘର୍ଷରେ ତାଙ୍କର ବିଶ୍ୱାସ ନ ଥିଲା।

ଭାରତର ଜଣେ ଲେଖକ, ଓ ସ୍ୱାଧୀନ ଭାରତର ବ୍ରାଜିଲ୍ ଦେଶରେ ପ୍ରଥମ ରାଷ୍ଟ୍ରଦୂତ ମିନୁ ମାସାନି, ଭାରତୀୟ ସମାଜବାଦୀ ଦଳର କର୍ମସୂଚୀ ବିଷୟରେ ଗାନ୍ଧୀଙ୍କ ମତ କ'ଣ ବୋଲି ପଚାରିଥିଲେ। ୧୯୩୪, ଜୁନ୍ ୧୪ ତାରିଖରେ ଗାନ୍ଧୀ ଏ ବିଷୟରେ ତାଙ୍କ ପାଖକୁ ଖଣ୍ଡିଏ ଚିଠି ଦେଇଥିଲେ। ସେଥିରେ ସେ ଲେଖିଥିଲେ, 'କଂଗ୍ରେସ ଭିତରେ ସମାଜବାଦୀ ଦଳର ଅଭ୍ୟୁଦୟକୁ ମୁଁ ସ୍ୱାଗତ କରୁଛି। କିନ୍ତୁ ସେମାନଙ୍କ ମୁଦ୍ରିତ ପୁସ୍ତକରେ ଯେଉଁ କର୍ମସୂଚୀର ବିବରଣ ଦେଖୁଛି ତାହା ମୋ ମନକୁ ପାଉଛି ବୋଲି କହି ପାରୁନାହିଁ। ମୋର ମନେ ହେଉଛି, ଭାରତର ସ୍ୱତନ୍ତ୍ର ପରିସ୍ଥିତିକୁ ଏମାନେ ବିଚାରକୁ ନେଇ ନାହାନ୍ତି। ଉପରସ୍ତରରେ ଥିବା ଲୋକେ ଓ ଜନତାଙ୍କ ଭିତରେ ସ୍ୱତଃ ବିରୋଧ ରହିଛି, ଅର୍ଥାତ୍ ପୁଞ୍ଜିପତି ଓ ଶ୍ରମିକଙ୍କ ମଧ୍ୟରେ ଏଭଳି ବିରୋଧ ଅଛି ଯେ, ଉଭୟେ ମିଶି ଉଭୟଙ୍କର ମଙ୍ଗଳ ହେଲାଭଳି କୌଣସି କାର୍ଯ୍ୟ କରିପାରିବେ ନାହିଁ, ଏହିଭଳି ଯେଉଁ ସିଦ୍ଧାନ୍ତମାନ ଏମାନେ ଧରି ନେଇଛନ୍ତି ତାହା ମୁଁ ଗ୍ରହଣ କରି ପାରୁନାହିଁ। ବହୁବର୍ଷ ଧରି ମୁଁ ନିଜେ ଯେଉଁ ଅଭିଜ୍ଞତା ଅର୍ଜନ କରିଛି ତାହା ଏ ଧାରଣାର ବିପରୀତ। ନିଜର ଅଧିକାର କେତେ ଏବଂ କି ପନ୍ଥା ଅବଲମ୍ବନ କଲେ ଏ ଅଧିକାର ସାବ୍ୟସ୍ତ କରି ହେବ, ଶ୍ରମିକ ଓ ମଜୁରିଦାରମାନେ ଏତିକି ମାତ୍ର ଜାଣିଲେ ଯଥେଷ୍ଟ ହେବ ବୋଲି ମୁଁ ମନେ କରେ। ପୁଣି, କୌଣସି ଅଧିକାର ତା'ର ଆନୁଷଙ୍ଗିକ କର୍ତ୍ତବ୍ୟକୁ ଛାଡ଼ି ରହି ନ ପାରେ ବୋଲି ମୋର ମତ ହୋଇଥିବାରୁ, କର୍ତ୍ତବ୍ୟ ଉପରେ ଜୋର ନ ଦେଇ ସମାଜବାଦୀ

ଦଳର ବିବୃତିରେ କେବଳ ଅଧିକାର ଗୁଡ଼ିଏ ତାଲିକା କରାଯାଇଥିବାରୁ ଏହା ଅପୂର୍ଣ୍ଣ ବୋଲି ମୋର ମତ । କର୍ତ୍ତବ୍ୟ କ'ଣ କ'ଣ ନିର୍ଦ୍ଦିଷ୍ଟ ହେବା ଦରକାର ଏବଂ ତାହାର ସାଧନ କିପରି ଭାବେ ହେବ ତାହା ବିବୃତ ହେବା ଦରକାର ।' ଏ ବିଷୟରେ ଆଲୋଚନା କରିବା ପାଇଁ ସେ ମାସାନି ଓ ତାଙ୍କ ବନ୍ଧୁମାନଙ୍କୁ ଡାକିଥିଲେ ।

ଶ୍ରେଣୀ-ସଂଘର୍ଷ ମତବାଦ ଯୋଗୁଁ ସେ ସମାଜବାଦୀଙ୍କ ବିରୋଧ କରୁଥିଲେ ଓ ସେମାନେ ଧ୍ୱଂସାତ୍ମକ ଉପାୟ ଅବଲମ୍ବନ କରିବାର ଦେଖିଲେ ସେ ନିନ୍ଦା କରୁଥିଲେ । କିନ୍ତୁ କ୍ରମେ ଦେଶର ପରିସ୍ଥିତିରେ ଅଶାନ୍ତି ଓ ଉଦ୍‌ବେଗର ଲକ୍ଷଣ ଲକ୍ଷ୍ୟ କରି ସେ ସମାଜବାଦର ନୀତି ଆଡ଼କୁ ଢଳିଲେ ଏବଂ ସମାଜରେ ଆର୍ଥନୀତିକ ସମାନତା ପ୍ରତି ତାଙ୍କର ମତ ଅନୁକୂଳ ହେଲା । ୧୯୪୭, ଜୁନ୍ ପନ୍ଦରର 'ହରିଜନ'ରେ ସେ ଲେଖିଥିଲେ, 'ବର୍ତ୍ତମାନ ଦେଶବାସୀଙ୍କ ବୈଷୟିକ ସ୍ଥିତିରେ ଉତ୍କଟ ଅସମାନତା ଦେଖାଯାଉଛି । ଆର୍ଥନୀତିକ ସମାନତା ସମାଜବାଦର ମୌଳିକ ଲକ୍ଷ୍ୟ । ବର୍ତ୍ତମାନର ସମାଜରେ ଯେଉଁଳି ଅସମାନତା ଦେଖାଯାଉଛି ତାହା ଘୋର ଅନ୍ୟାୟ । ମୁଷ୍ଟିମେୟ ଲୋକ ଧନ ସଂପତ୍ତିରେ ଭାସୁଛନ୍ତି, ଅଥଚ ଲୋକସାଧାରଣଙ୍କୁ ଖାଇବାକୁ ଯଥେଷ୍ଟ ମିଳୁନାହିଁ । ଏତେବେଳେ ଭଗବାନଙ୍କ ବିଗ୍ରହ ଉପରେ ଏହାର ପ୍ରତିକାର ଛାଡ଼ି ଦିଆଯାଇ ନ ପାରେ । ମୁଁ ଦକ୍ଷିଣ-ଆଫ୍ରିକାରେ ଥିଲା ବେଳେ ବି ସମାଜବାଦର ନୀତିକୁ ପସନ୍ଦ କରିଥିଲି ।' ସେ ଯାହା ହେଉ ସେତେବେଳେ ସେ ଯେଉଁ ସମାଜବାଦ ପସନ୍ଦ କରିଥିଲେ ତା'ର ମୂଳଦୁଆ ଥିଲା ନୈତିକତା ।

ବୈଷୟିକ ଅଭ୍ୟୁଦୟ ପାଇଁ ଗାନ୍ଧୀ ଯେଉଁ ବହୁ ଆର୍ଥନୀତିକ ବ୍ୟବସ୍ଥାର ସୂଚନା ଦେଇ ଯାଇଛନ୍ତି, ଭାରତ ଯଦି ସେଗୁଡ଼ିକରୁ ବହୁଭାଗ କାର୍ଯ୍ୟରେ କରିବାକୁ ବସେ, ତେବେ ତାଙ୍କ ମୃତ୍ୟୁର ୨୦।୩୦ ବର୍ଷ ଭିତରେ ଭାରତରେ ଯେଉଁ ଆର୍ଥନୀତିକ ସ୍ଥିତିର ବିକାଶ ହେବ ସେଥିରେ ସମସ୍ତେ ନିଜର ଯୋଗ୍ୟତାକୁ ଚାହିଁ କାମ ପାଇବେ, ଗ୍ରାମଗୁଡ଼ିକ ନିଜର ଶାସନ ନିଜେ କରିବେ, ବହୁମାତ୍ରାରେ ସ୍ୱାବଲମ୍ବୀ ହେବେ ଏବଂ ଯନ୍ତ୍ରପାତିର ପ୍ରଚଳନ ସଙ୍କୀର୍ଣ୍ଣ ସୀମା ଭିତରେ ରହିବ, ସହରମାନଙ୍କରେ ସ୍ଥାପିତ ଶିଳ୍ପକାରଖାନା ଓ ବ୍ୟବସାୟର କର୍ତ୍ତୃତ୍ୱ ମିଳିତଭାବେ ପୁଞ୍ଜିପତି, ନଗରପାଳିକା, ରାଜ୍ୟ ସରକାର ଓ କେନ୍ଦ୍ରସରକାରଙ୍କ ହାତରେ ରହିବ । ଶକ୍ତିଶାଳୀ ଶ୍ରମିକସଂଘ

ଓ ସମବାୟ ସଙ୍ଘ ଶିଳ୍ପ ଓ ବ୍ୟବସାୟରେ ସଫଳ କର୍ତ୍ତୃତ୍ୱ ଜାରି କରି ପାରିବେ । ପୁଞ୍ଜିପତିଙ୍କ ହାତରେ ପୁଞ୍ଜି ମାତ୍ର ପୁରୁଷକ ପାଇଁ ରହିବ । ସେମାନେ ତାହା ନିଜର ଉତ୍ତରାଧିକାରୀଙ୍କୁ ଦେଇ ଯାଇ ପାରିବେ ନାହିଁ । ତାଙ୍କ ଅନ୍ତେ ତାଙ୍କ ଧନ ଦେଶବାସୀଙ୍କ ହାତକୁ ଯିବ ।

ରାଜନୀତିକ ମତବାଦ ବା ନିଜ ଦଳପ୍ରତି ଶ୍ରଦ୍ଧା ଅପେକ୍ଷା ଗାନ୍ଧୀଙ୍କର ସତ୍ୟ ପ୍ରତି ଅଧିକ ଆଦର ଥିଲା । ସେ ନିଜେ ନିଜର କର୍ତ୍ତବ୍ୟ ନିର୍ଣ୍ଣୟ କରିବାରେ କୌଣସି ଲାଭାଲାଭ ବିଚାରଦ୍ୱାରା ଚାଳିତ ନ ହୋଇ ସତ୍ୟଦ୍ୱାରା ଚାଳିତ ହେଉଥିଲେ । ସତ୍ୟର ପଥ ଅବଲମ୍ବନ କରିବାରେ ବୌଦ୍ଧିକ-ବିଚାରକୁ ସେ ଅବହେଳା କରି ପାରୁଥିଲେ ଓ ଅନ୍ତରଙ୍ଗ କର୍ମସଙ୍ଗୀମାନଙ୍କଠାରୁ ବିଚ୍ଛିନ୍ନ ହେବାକୁ ପଡ଼ିଲେ ବି ଶୋଚନା ନ କରି ଏକୁଟିଆ ଆଗେଇ ଚାଲୁ-ଥିଲେ । କୌଣସି ବାଧା ନିଷେଧ ବା ସ୍ନେହମମତାରେ ସେ ଆବଦ୍ଧ ରହୁ-ନ ଥିଲେ । ବହୁ ରାଜନୈତିକ ଓ ସାମାଜିକ ଗୋଷ୍ଠୀ ଗାନ୍ଧୀଙ୍କୁ ନିଜର କରିଛନ୍ତି, କିନ୍ତୁ ସେ କେବେ କାହାରି 'ବନ୍ଧା ବନ୍ଦୀ' ହୋଇ ନ ଥିଲେ, କଂଗ୍ରେସର ବି ନୁହେ । ବହୁବର୍ଷ ସେ କଂଗ୍ରେସର ନେତା ହୋଇଥିଲେ, କିନ୍ତୁ ୧୯୩୪, ଡିସେମ୍ବରରେ ବମ୍ବେଠାରେ ହୋଇଥିବା କଂଗ୍ରେସ ଅଧିବେଶନ ବେଳକୁ, ହରିଜନ ଓ କୃଷକମାନଙ୍କର ଉନ୍ନୟନ କାର୍ଯ୍ୟରେ ପୂରା ମନ ଦେଇଥିବାରୁ, ସେ କଂଗ୍ରେସର ନେତା ହୋଇ ରହିବା ତ ଦୂରର କଥା, ଚାରିଅଣିଆ ମେମ୍ବର ହୋଇ ମଧ୍ୟ ରହିବାକୁ ଚାହିଁଲେ ନାହିଁ । ସେ କହିଲେ, 'ସଂପୂର୍ଣ୍ଣ ସ୍ୱତନ୍ତ୍ର ଓ ନିଃସଙ୍ଗ ଭାବେ କାର୍ଯ୍ୟ କରିବାକୁ ମୋର ଅଲଗା ହୋଇ ରହିବା ଦରକାର ପଡ଼ୁଛି ।'

ଗାନ୍ଧୀ ଯେଉଁ ବ୍ୟକ୍ତି-ସ୍ୱାତନ୍ତ୍ର୍ୟର ଉପାସକ ଥିଲେ ତାହାର ମୂଳରେ ଥିଲା ବାହ୍ୟ ପ୍ରଭାବରୁ ସଂପୂର୍ଣ୍ଣ ମୁକ୍ତ ରହି ନିଜର ମାନସିକ ବଳର ଯତ୍‌ପରୋନାସ୍ତି ବିକାଶ କରିବା । ତାଙ୍କ ମନୋବୃତ୍ତିରେ ସମସ୍ତ ପ୍ରକାର ବିଧିନିଷେଧ ପ୍ରତି ଯେଉଁ ପ୍ରବଳ ବିରୋଧ ଥିଲା, ଇଂରେଜଶାସନ ପ୍ରତି ତାଙ୍କ ବିରୋଧ ସେହି ସର୍ବବ୍ୟାପୀ ବିରୋଧର ଗୋଟିଏ ଅଂଶ ମାତ୍ର । ତାଙ୍କର ଲକ୍ଷ୍ୟ ଥିଲା ଗୀତାର ଅନାସକ୍ତି ଯୋଗ । ଧର୍ମରେ ଖାଲି ନୁହେଁ, ରାଜନୀତିରେ ମଧ୍ୟ ସେ ସେହି ଅନାସକ୍ତିର ଅଭ୍ୟାସ କରୁଥିଲେ ।

ଯେ କୌଣସି ବିଷୟରେ ଚିନ୍ତା କଲାବେଳେ ଅନ୍ୟର ଦୃଷ୍ଟିକୋଣରୁ ବିଚାର କରିବା ଏବଂ ପ୍ରୟୋଜନ ସ୍ଥଳେ ନିଜର ମନର ପୂର୍ବ-ପ୍ରତିଷ୍ଠିତ

ଭାବକୁ ବଦଳାଇବା ଥିଲା ଗାନ୍ଧୀଙ୍କର ଅଭ୍ୟାସ । ଏହା ହିନ୍ଦୁ ମନୋବୃତ୍ତିର ଚିରନ୍ତନ ଗୁଣ । ହିନ୍ଦୁଙ୍କଠାରେ ସଂସ୍କାରବିରୋଧୀ ମନୋଭାବ ଦେଖାଯାଏ, କିନ୍ତୁ ଏହା ହିନ୍ଦୁଧର୍ମର ମୌଳିକ ଲକ୍ଷଣ ନୁହେ । ଧର୍ମଧାରଣାରେ ଏକାନ୍ତ ନିଷ୍ଠା ଓ ମନରେ ସାତ୍ତ୍ୱିକ ଶ୍ରଦ୍ଧା ହିଁ ପ୍ରକୃତ ଧର୍ମମାର୍ଗ ; ଧର୍ମାଚରଣର ବାହ୍ୟ ଫଳଲାଭର ଆସକ୍ତି ପ୍ରକୃତ ଧର୍ମ ନୁହେଁ ।

୧୯୪୨ରେ ମୁଁ ଗାନ୍ଧୀଙ୍କ ଆଶ୍ରମରେ ହପ୍ତେକାଳ ଅତିଥି ହୋଇ ରହିଥିଲି । ସେତେବେଳେ ଦେଖିଥିଲି, ଗାନ୍ଧୀଙ୍କ କୁଡ଼ିଆର ମାଟିକାନ୍ଥରେ ଗୋଟିଏ ମାତ୍ର ଚିତ୍ର—ଯୀଶୁଖ୍ରୀଷ୍ଟଙ୍କର ଗୋଟିଏ ଚିତ୍ର, ଧଳା କାଗଜ ଉପରେ କଳା ସ୍ୟାଇରେ । ତହିଁରେ ଲେଖା ଥିଲା, 'ପ୍ରେମ ଆମର ଶାନ୍ତିର ଉତ୍ସ ।' ଏ ଚିତ୍ର କାହିଁକି ଅଛି ବୋଲି ମୁଁ ପଚାରିବାରେ ଗାନ୍ଧୀ ଉତ୍ତର ଦେଇଥିଲେ, 'ମୁଁ ଜଣେ ଖ୍ରୀଷ୍ଟିଆନ୍; ହିନ୍ଦୁ, ମୁସଲମାନ ଓ ଇହୁଦୀ ମଧ୍ୟ ।'

'ୟେରବାଡ଼ା ମନ୍ଦିରରୁ' ନାମକ ଯେଉଁ ପୁସ୍ତିକାଟି ଆଶ୍ରମବାସୀଙ୍କୁ ପତ୍ରାବଳୀ ଆକାରରେ ଗାନ୍ଧୀ ଲେଖିଥିଲେ ତହିଁରେ ସର୍ବଧର୍ମ ପ୍ରତି ସହିଷ୍ଣୁତାର ସଂଜ୍ଞା ସେ ଅନନ୍ୟପ୍ରେରିତ ଭାବେ ନିରୂପଣ କରିଯାଇଛନ୍ତି । ସେ ଲେଖିଛନ୍ତି, 'ପ୍ରତ୍ୟେକ ଧର୍ମ ଶାଶ୍ୱତ ସତ୍ୟର ପ୍ରକାଶ କରିଛନ୍ତି । କିନ୍ତୁ ଏ ବିଷୟରେ ପ୍ରତ୍ୟେକ ଧର୍ମର କିଛି ନା କିଛି ତ୍ରୁଟି ରହିଯାଇଛି । ପ୍ରତ୍ୟେକରେ ଭ୍ରମ ପ୍ରମାଦର ଅବକାଶ ରହିଛି । ଆମେ ପ୍ରତ୍ୟେକ ଧର୍ମ ପ୍ରତି ଶ୍ରଦ୍ଧା କରିବା ବୋଲି ଯେ ଆଖି ମୁଜି ତାହାର ଦୋଷ ସବୁ, ଗୁଣ ବୋଲି ଗ୍ରହଣ କରିନିବା, ତାହା ନୁହେ । ଆମ ନିଜ ଧର୍ମର କେଉଁଠି ଦୋଷ ରହିଯାଉଛି ସେଥିପ୍ରତି ମଧ୍ୟ ଆମକୁ ତୀକ୍ଷ୍ଣ ଦୃଷ୍ଟି ରଖିବାକୁ ହେବ । ନିଜ ଧର୍ମରେ ଦୋଷ ଦେଖିଲେ ବୋଲି ତାହାକୁ ତ୍ୟାଗ କରିଦେବା ଉଚିତ ନୁହେଁ । ସେ ଦୋଷ ଦୂର କରିବାକୁ ଆମେ ସର୍ବଥା ଯତ୍ନବାନ୍ ହେବା । ପ୍ରତ୍ୟେକ ଧର୍ମକୁ ସମାନ ଶ୍ରଦ୍ଧାରେ ଗ୍ରହଣ କରି, ପର ଧର୍ମର ପ୍ରତ୍ୟେକ ଗ୍ରହଣଯୋଗ୍ୟ ଆଗ୍ଭର ବିଚ୍ଚରିକୁ ଆଣି ଆମ ଧର୍ମର ଆଗ୍ଭର ବିଚ୍ଚରର ସାମିଲ୍ କରିବା ଆମର କର୍ତ୍ତବ୍ୟ । ଆମ ଧର୍ମରେ ଅନ୍ୟ ଧର୍ମର ମତ ସାମିଲ କଲେ ଆମ ଧର୍ମର ମହତ୍ତ୍ୱ ହାନି ହୋଇଯିବ ବୋଲି ଶଙ୍କାର କାରଣ ନାହିଁ ।'

ଉପରୋକ୍ତ ଅନୁଚ୍ଛେଦରେ ମହାତ୍ମାଗାନ୍ଧୀଙ୍କ ମନୋବୃତ୍ତିର ନିଖୁଣ ଚିତ୍ର ରହିଛି । ରକ୍ଷଣଶୀଳ ସେ, ନିଜର ଧର୍ମ ଛାଡ଼ିବାକୁ ରାଜି ନ ଥିଲେ ; କିନ୍ତୁ ସେ ଧର୍ମ-ସଂସ୍କାରକ ଭାବେ ନିଜ ଧର୍ମର ସଂସ୍କାର କରିବାକୁ ପ୍ରସ୍ତୁତ

ଥିଲେ ଏବଂ ଧର୍ମ ବିଶ୍ୱାସରେ ଉଦାରତା ଅବଲମ୍ବନ କରି ପ୍ରତ୍ୟେକ ଧର୍ମ ମତରୁ ଐଶୀ ପ୍ରେରଣା ଆବିଷ୍କାର କରି ପାରିଥିଲେ । ଧର୍ମ ପ୍ରତି ନିଷ୍ଠାବାନ୍ ହେବା ସଙ୍ଗେ ସଙ୍ଗେ ସେ ଥିଲେ ଧର୍ମର ତ୍ରୁଟି ଓ ଅଭାବ ପ୍ରତି ସଚେତନ ; ଗୋଟିଏ ବିଶିଷ୍ଟ ଧର୍ମରେ ଆସ୍ଥାବାନ୍ ଥିବା ସତ୍ତ୍ୱେ ଅନ୍ୟ ଧର୍ମମାନଙ୍କ ପ୍ରତି ତାଙ୍କର ଉଦାର ଭାବ ଥିଲା । ସେ ଧର୍ମପରାୟଣ ଥାଇ ସୁଦ୍ଧା, ଅନ୍ଧଭାବରେ ଧର୍ମର ପ୍ରତ୍ୟେକ ଆଗ୍ରହ ବିଗ୍ରହକୁ ଗ୍ରହଣ କରୁ ନ ଥିଲେ । ସୂକ୍ଷ୍ମ ଧର୍ମ ଉପରେ ଅଧିକ ବିଶ୍ୱାସ କରୁଥିବା ସତ୍ତ୍ୱେ ସ୍ଥୂଳ ଧର୍ମକୁ ଛାଡ଼ି ନ ଥିଲେ । ସେ ନିଜ ଧର୍ମ ପ୍ରତି ଅନୁରକ୍ତ ଥାଇ ବି ଅନାସକ୍ତ ଥିଲେ । ସେ ହିନ୍ଦୁ ଥାଇ ବି ଖ୍ରୀଷ୍ଟିଆନ୍, ମୁସଲମାନ ଓ ଇହୁଦୀଧର୍ମାବଲମ୍ବୀ ବୋଲି ନିଜକୁ ମନେ କରି ପାରୁଥିଲେ ।

ନିଜର ହିନ୍ଦୁଧର୍ମକୁ ଛାଡି ଦେଲେ, ତାଙ୍କର ଖ୍ରୀଷ୍ଟିଆନ୍ ଧର୍ମ ପ୍ରତି ଅଧିକ ଅନୁରକ୍ତି ଥିଲା । ସେ ଯୀଶୁଙ୍କୁ ଭକ୍ତି କରୁଥିଲେ । ସେ ଜଣେ ପ୍ରଚ୍ଛନ୍ନ ଖ୍ରୀଷ୍ଟିଆନ୍ ବୋଲି ଧର୍ମାନ୍ଧ ହିନ୍ଦୁମାନେ ତାଙ୍କ ଉପରେ ଦୋଷାରୋପ କରିବାକୁ ଛାଡ଼ି ନାହାନ୍ତି । ଏହା ଏକାଧାରରେ ତାଙ୍କର କୁତ୍ସା ଓ ପ୍ରଶଂସା ବୋଲି ସେ ମନେ କରିଥିଲେ । 'ଗୋପନରେ ମୁଁ କିଛି ହୋଇପାରେ ବା ବିଶ୍ୱାସ କରିପାରେ ବୋଲି କହିବା ଲୋକ ଅଛନ୍ତି, ଏହା ମୋ' ପ୍ରତି ମାନହାନିକର ... କିନ୍ତୁ ଖ୍ରୀଷ୍ଟିଆନ୍ ଧର୍ମର ମହତ୍ତ୍ୱ ସ୍ୱୀକାର କରିବାକୁ ମୁଁ ପଶ୍ଚାତ୍ପଦ ନୁହେଁ, ଏହା ବିଭିନ୍ନ ଭାବେ ବି ଏମାନେ ସ୍ୱୀକାର କରି ମୋର ନିରପେକ୍ଷ ବିଗ୍ରହକୁ ଅଭିନନ୍ଦିତ କରିଛନ୍ତି । ସ୍ପଷ୍ଟ ଭାବେ ମୁଁ ମୋର ମତାମତ କହି ରଖେଁ । ବାଇବଲ୍ ଓ କୋରାଣକୁ ପଢ଼ି ମୁଁ ସେଥିର ଯେଉଁ ଅର୍ଥ କରିଛି, ସେ ଅର୍ଥ ଯଦି ଗ୍ରାହ୍ୟ ହୁଏ ତେବେ ମୁଁ ଅକୁଣ୍ଠିତ ଭାବେ ନିଜକୁ ଖ୍ରୀଷ୍ଟିଆନ୍ ଓ ମୁସଲମାନ ବୋଲି କହିବି । ମୋର ମତ ଗ୍ରାହ୍ୟ ହେଲେ ହିନ୍ଦୁ, ଖ୍ରୀଷ୍ଟିଆନ୍ ଓ ମୁସଲମାନ ଏ ସବୁ ଏକାର୍ଥବୋଧକ ଶବ୍ଦ ହୋଇଯିବ । ମୁଁ ବିଶ୍ୱାସ କରେ, 'ଆର ପୁର'ରେ ହିନ୍ଦୁ, ଖ୍ରୀଷ୍ଟିଆନ୍ ଓ ମୁସଲମାନ ଇତ୍ୟାଦି ବିଭିନ୍ନ ଗୋଷ୍ଠୀ ନାହିଁ ।'

ସିଂହଳର କଲମ୍ବୋଠାରେ, ୧୯୨୭ରେ ଯୁବଜନଙ୍କ ଖ୍ରୀଷ୍ଟିଆନ୍ ସମିତିରେ ଦେଇଥିବା ବକ୍ତୃତାରେ ସେ ନିଜର ମତ ଆହୁରି ସ୍ପଷ୍ଟଭାବେ ପ୍ରତିପାଦିତ କରିଥିଲେ । ସେ କହିଥିଲେ, 'ପାହାଡ଼ ଉପରେ ଯୀଶୁ ଦେଇଥିବା ଉପଦେଶାବଳୀ (Sermon on the Mount)ର ମୁଁ ଯେଉଁ ଅର୍ଥ

କରିଛି କେବଳ ସେତିକ ଧରି ବିଚାର କଲେ, ମୁଁ ନିଃସନ୍ଦିଗ୍ଧ ଭାବେ କହିବି, "ହଁ, ମୁଁ ଜଣେ ଖ୍ରୀଷ୍ଟିଆନ୍"……। କିନ୍ତୁ ଅପରପକ୍ଷେ, ମୁଁ କହିବି ଯେ, ପାହାଡ଼ଉପର ଉପଦେଶାବଳୀରେ ପ୍ରଭୁ ଯୀଶୁ ଯାହା କହିଛନ୍ତି, ଖ୍ରୀଷ୍ଟିଆନ୍ ଧର୍ମମତ ବୋଲି ଯାହା ଚଳୁଛି ସେଥିରେ ସେ ସବୁ ଅସ୍ୱୀକୃତ ହୋଇଛି । ଖ୍ରୀଷ୍ଟିଆନ୍‌ମାନଙ୍କର ଆଚରଣ ବିଷୟରେ ମୁଁ କିଛି କହିବାକୁ ଯାଉନାହିଁ । ପାଶ୍ଚାତ୍ୟ ଦେଶରେ ପ୍ରଚଳିତ ଖ୍ରୀଷ୍ଟିଆନ୍ ଧର୍ମମତ ବିଷୟରେ ମୁଁ ଏହା କହୁଛି ।'

ବହୁ ଖ୍ରୀଷ୍ଟିୟାନ୍ ଧର୍ମଯାଜକ ଗାନ୍ଧୀଙ୍କ ପାଖକୁ ବହୁବାର ଆସି-ଥିଲେ । ଡକ୍‌ଟର ଜନ୍ ଆର୍. ମଟ୍, ବହୁକାଳ ଭାରତରେ କଟାଇଥିବା ବିଶପ୍ ଫିଶର୍ ପ୍ରମୁଖ ଧର୍ମଯାଜକମାନଙ୍କ ସହିତ ଗାନ୍ଧୀ ଧର୍ମ ସମ୍ବନ୍ଧରେ ବହୁ ଆଲୋଚନା କରିଥିଲେ । ଧର୍ମାନ୍ତର ଗ୍ରହଣ କରିବା ପାଇଁ ଲୋକଙ୍କୁ ପ୍ରବର୍ତ୍ତାଇବା ଗାନ୍ଧୀ ପ୍ରସନ୍ଦ କରୁ ନ ଥିଲେ । ଖ୍ରୀଷ୍ଟିଆନ୍, ହିନ୍ଦୁ ବା ଇସଲାମ୍ ଯେ କୌଣସି ଧର୍ମରୁ ଲୋକଙ୍କୁ ପ୍ରବର୍ତ୍ତାଇ ଅନ୍ୟ ଧର୍ମଭୁକ୍ତ କରିବାକୁ ଚେଷ୍ଟା କରିବା ସମାନଭାବେ ଗର୍ହିତ ବୋଲି ସେ ମନେ କରୁଥିଲେ । ସେ କହିଥିଲେ, 'ନିଜର ଧର୍ମବିଶ୍ୱାସ ଦାଣ୍ଡରେ ପ୍ରଚାର କରିବା, ବିଶେଷ କରି ନିଜ ଧର୍ମ ଗ୍ରହଣ କରିବାକୁ ଲୋକଙ୍କୁ ପ୍ରବର୍ତ୍ତାଇବା ଉଚିତ ନୁହେଁ ବୋଲି ମୁଁ ବିଶ୍ୱାସ କରେ··· । ଅନ୍ତରର ଧର୍ମବିଶ୍ୱାସ ବାହାରେ କହିବାର ବିଷୟ ନୁହେଁ । ନିଜ ଧର୍ମବିଶ୍ୱାସରେ ନିଜେ ଚଳିଲେ ତାହା ସ୍ୱତଃ ପ୍ରଚାରିତ ହୁଏ ।'

ଏସ୍. କେ. ଜର୍ଜ ସିରିଆନ୍ ଖ୍ରୀଷ୍ଟିୟାନ୍ ସଂପ୍ରଦାୟର ଜଣେ ଭାରତୀୟ । ସେ କଲିକତାର ବିଶପ୍‌ସ୍ କଲେଜରେ ଅଧ୍ୟାପକ ଥିଲେ । 'ଖ୍ରୀଷ୍ଟିଆନ୍ ଧର୍ମକୁ ଗାନ୍ଧୀଙ୍କ ଆହ୍ୱାନ' ବୋଲି ସେ ଖଣ୍ଡିଏ ବହି ଲେଖି ତାହା ଗାନ୍ଧୀଙ୍କ ନାମରେ ଉତ୍ସର୍ଗ କରିଥିଲେ । ଉତ୍ସର୍ଗ ପତ୍ରରେ ସେ ଲେଖିଥିଲେ, 'ଯେଉଁ ମହାତ୍ମା ଗାନ୍ଧୀଙ୍କ ଯୋଗୁଁ ପ୍ରଭୁ ଯୀଶୁ ଓ ତାଙ୍କ ବାଣୀର ବାସ୍ତବ ତତ୍ତ୍ୱ ମୁଁ ବୁଝି ପାରିଛି ତାଙ୍କର ହାତରେ ଏ ପୁସ୍ତକଟି ଅର୍ପଣ କଲି ।' ମାଲବାରର ସିରିଆନ ଅର୍ଥଡକ୍‌ସ୍ ଖ୍ରୀଷ୍ଟିଆନ୍ ସଂପ୍ରଦାୟର ରେଭରେଣ୍ଡ୍ ମାଥ୍ୟୁ ସାଇମନ୍ ଗାନ୍ଧୀଙ୍କ ବିଷୟରେ ଲେଖିଛନ୍ତି, 'ବିଂଶ ଶତାବ୍ଦୀରେ ମଧ୍ୟ ଖ୍ରୀଷ୍ଟିଆନ୍ ଧର୍ମ ମାନବସମାଜର ଉପଯୋଗୀ—ଏ କଥା ମୁଁ ଗାନ୍ଧୀଙ୍କ ଜୀବନୀରୁ ଯେତେ ହୃଦୟଙ୍ଗମ କରିଛି ଆଉ କୌଣସିଠାରୁ ସେତେ କରିନାହିଁ ।' ଗାନ୍ଧୀଙ୍କର କଥା ଓ କାର୍ଯ୍ୟ ଆଧୁନିକ ଯୁଗର କେତେ ଉପଯୋଗୀ ହୋଇଥିଲା

ତାହାର ସୂଚନା ଏଇଭଳି ଉକ୍ତିମାନଙ୍କରୁ ମିଳେ ।

ଭାରତରେ ବାସ କରୁଥିବା ଖ୍ରୀଷ୍ଟିଆନ୍‌ମାନଙ୍କ ମନରେ ଗାନ୍ଧୀ ଜଟିଳ ସମସ୍ୟା ସୃଷ୍ଟି କରିଥିଲେ । ସମଗ୍ର ପୃଥିବୀରେ ସେ ଥିଲେ ସବୁଠାରୁ ବେଶୀ ମାତ୍ରାରେ ଯୀଶୁଖ୍ରୀଷ୍ଟଙ୍କ ପରି, ଅଥଚ ସେ ଖ୍ରୀଷ୍ଟିଆନ୍ ଧର୍ମାବଲମ୍ବୀ ନ ଥିଲେ । ଇ. ଷ୍ଟାନ୍‌ଲି ଜୋନ୍‌ସ ଲେଖିଛନ୍ତି, 'ଏଇଥିରୁ ଜାଣିବ, ଯୀଶୁ-ଖ୍ରୀଷ୍ଟଙ୍କ ସଙ୍ଗେ ବହୁଶଃ ତୁଳନୀୟ ବ୍ୟକ୍ତି ବୋଲି ଗାନ୍ଧୀଙ୍କ ନାମ ଇତିହାସରେ ରହିବ । କିନ୍ତୁ ତାଙ୍କୁ ଖ୍ରୀଷ୍ଟିଆନ୍ ବୋଲି ଆଖ୍ୟା ଦିଆ ହୋଇ ନ ପାରେ ।' ଖ୍ରୀଷ୍ଟିଆନ୍-ଧର୍ମଯାଜକମାନେ ତାଙ୍କୁ ଖ୍ରୀଷ୍ଟଧର୍ମର ଅନ୍ତର୍ଭୁକ୍ତ କରିବାକୁ ବହୁବାର ଚେଷ୍ଟା କରିଥିଲେ । ( ଗାନ୍ଧୀ ମଧ୍ୟ ନମ୍ର ଭାବରେ ସେମାନଙ୍କୁ ନିଜ ଧର୍ମ ତ୍ୟାଗ କରିବାକୁ ସୂଚେଇ ଥିଲେ । ) କିନ୍ତୁ ଜଣେ ମହାତ୍ମାଙ୍କୁ ଗୋଟିଏ ଧର୍ମସଂପ୍ରଦାୟରେ ବାନ୍ଧି ରଖିବାକୁ ଉଦ୍ୟମ କରିବା ଅର୍ଥହୀନ ।

ଗାନ୍ଧୀ ଅଭିଯୋଗ କରୁଥିଲେ ଯେ, ଖ୍ରୀଷ୍ଟିଆନ୍ ଧର୍ମଯାଜକମାନେ, ଖ୍ରୀଷ୍ଟିଆନ୍ କରିବା ଅଭିପ୍ରାୟରେ, ବୁଭୁକ୍ଷୁକୁ ଅନ୍ନଦାନ କରୁଥିଲେ ଏବଂ ରୋଗୀକୁ ଆରୋଗ୍ୟ କରୁଥିଲେ । ସେ ନିବେଦନ କରିଥିଲେ, 'ଯେଉଁ ହିନ୍ଦୁ-ମାନଙ୍କର ସେବା କରୁଛ, ତାଙ୍କୁ ହିନ୍ଦୁ ଧର୍ମରେ ଅଧିକ ଶ୍ରଦ୍ଧାବାନ୍ ହେବାକୁ ପ୍ରବର୍ତ୍ତାଅ ।' ଏପରି କଲେ ସେବା ଖ୍ରୀଷ୍ଟିଆନ୍ ଧର୍ମର ଅଧିକ ଅନୁକୂଳ ହେବ ।

ହିନ୍ଦୁ ଧର୍ମ ଉପରେ ଖ୍ରୀଷ୍ଟିଆନ୍ ଧର୍ମ ଭଲ ପ୍ରଭାବ ପକାଇଥିଲା । ଗାନ୍ଧୀ ନିଜେ ଦୃଢ଼ଭାବରେ କହିଛନ୍ତି, 'ଖ୍ରୀଷ୍ଟିଆନ୍ ଧର୍ମର ପ୍ରଭାବ ପରୋକ୍ଷ ଭାବେ ହିନ୍ଦୁ ଧର୍ମ ଉପରେ ପଡି ହିନ୍ଦୁ ଧର୍ମର ସୁପ୍ତ ଶକ୍ତି ଜାଗ୍ରତ ହୋଇ ଉଠି-ଥିଲା । ହିନ୍ଦୁମାନଙ୍କ ଦୁର୍ବିପାକରେ ବିକ୍ଷୁବ୍ଧ ହରିଜନ ସଂପ୍ରଦାୟରୁ ଧର୍ମଯାଜକ-ମାନେ ବହୁ ସଂଖ୍ୟାରେ ଖ୍ରୀଷ୍ଟିଆନ୍ କରୁଥିବାରୁ ଗାନ୍ଧୀଙ୍କ ହରିଜନ କାର୍ଯ-ପନ୍ଥାକୁ ସମର୍ଥନ କରିବାସକାଶ ଅନେକ ହିନ୍ଦୁ ଉଦ୍‌ବୁଦ୍ଧ ହୋଇଥିବେ । ଅପର ପକ୍ଷେ ବୋଧହୁଏ ଗାନ୍ଧୀ ମଧ୍ୟ ଖ୍ରୀଷ୍ଟିଆନ୍ ଧର୍ମ ଉପରେ ସଫଳ ପ୍ରଭାବ ପକାଇଥିଲେ । ଉକ୍ତରେ ଇ. ଷ୍ଟାନ୍‌ଲି ଜୋନ୍‌ସ୍ ଲେଖିଛନ୍ତି, 'ଭଗବାନ୍ ନିଜର ଇଚ୍ଛା ପୂରଣ ପାଇଁ ବିଚିତ୍ର ସାଧନମାନ ପ୍ରୟୋଗ କରିଥାନ୍ତି ; ହୁଏତ ଖ୍ରୀଷ୍ଟିଆନ୍-ମତ-ଚ୍ୟୁତ ଖ୍ରୀଷ୍ଟିଆନ୍ ଧର୍ମର ସଂସ୍କାର ସକାଶ ସେ ଗାନ୍ଧୀଙ୍କୁ ପ୍ରୟୋଗ କରିଥିବେ ।'

ଖ୍ରୀଷ୍ଟିଆନ୍‌ମାନଙ୍କୁ ହିନ୍ଦୁ କରିବା ନିମନ୍ତେ ଗାନ୍ଧୀ କେବେ ଉଦ୍ୟମ କରି ନାହାନ୍ତି ।

ଗାନ୍ଧୀ ହିନ୍ଦୁଧର୍ମର ସଂସ୍କାରକ ଥିଲେ, ବାହ୍ୟ ପ୍ରଭାବ ହିନ୍ଦୁ ଧର୍ମରେ ପଡ଼ି ତାକୁ ନିଷ୍କଳୁଷ କରୁ ବୋଲି ସେ ଚାହୁଁଥିଲେ, କିନ୍ତୁ ହିନ୍ଦୁ-ଧର୍ମର ଚିରାଚରିତ ପ୍ରଥା ଓ ବିଶ୍ୱାସ ଛାଡ଼ିବାକୁ ପଡ଼ିଲେ ସେ ଅକୁଣ୍ଠିତ ଭାବେ ତାହା କରୁ ନ ଥିଲେ । ୧୯୨୭ରେ, ଦେବଦାସ, ରାଜଗୋପାଳା-ଚାରୀଙ୍କ ଝିଅ ଲକ୍ଷ୍ମୀଙ୍କ ପ୍ରେମରେ ପଡ଼ିଲେ ଓ ତାଙ୍କୁ ବିଭା ହେବାକୁ ଇଚ୍ଛା କଲେ । ରାଜଗୋପାଳଚାରୀ ବ୍ରାହ୍ମଣ ଓ ଗାନ୍ଧୀ ବୈଶ୍ୟ, ଅସବର୍ଣ୍ଣ ବିବାହ ହିନ୍ଦୁଧର୍ମସମ୍ମତ ନ ଥିଲା । ପୁଣି ଯୁବକ ଯୁବତୀ ପ୍ରେମରେ ପଡ଼ି ନିଜେ ନିଜେ ବିଭା ହୁଅନ୍ତୁ ଏହା ମଧ୍ୟ ସଦାଚାରର ନୁହେଁ । ବରକନ୍ୟାଙ୍କ ପିତାମାତା ବିବାହ ସଂବଂଧ କରନ୍ତି । କିନ୍ତୁ ଏ କ୍ଷେତ୍ରରେ ଯୁବକ ଓ ଯୁବତୀ ନିଜର ଅଭିଳାଷ ଛାଡ଼ିବାକୁ ନାରାଜ ହେଲେ । ଏ ପରିସ୍ଥିତିରେ ପଡ଼ି ପ୍ରଖ୍ୟାତଯଶା ପିତାଦ୍ୱୟ ଗୋଟିଏ ନିଷ୍ପତ୍ତି କଲେ—ପାଞ୍ଚବର୍ଷ ଛାଡ଼ିବାଡ଼ି ହୋଇ ରହିବା ପରେ ସୁଦ୍ଧା ଯୁବକ ଯୁବତୀ ଦୁହିଁଙ୍କ ମନର ଭାବ ଯଦି ଅକ୍ଷୁଣ୍ଣ ରହିଥିବ ତେବେ ପିତା ଦୁହେଁ ବିବାହରେ ସମ୍ମତି ଦେବେ । ତାହାହିଁ ହେଲା । ୧୯୦୦ ଖ୍ରୀଷ୍ଟାବ୍ଦରେ ଜନ୍ମ ହୋଇଥିବା ଦେବଦାସ ଓ ଲକ୍ଷ୍ମୀ ବିରହବ୍ୟଥା ସହି ପାଞ୍ଚବର୍ଷ କାଳ ଅପେକ୍ଷା କରିବା ପରେ, ୧୯୩୩, ଜୁନ୍ ୧୬ ତାରିଖରେ ସେ ଦୁହିଙ୍କର ବିବାହ ପୁନାଠାରେ ସାଡ଼ମ୍ବରେ ହୋଇଥିଲା । ବିବାହ ଉତ୍ସବରେ ଦୁଇଜଣ ଯାକ ପିତା ମହାନନ୍ଦରେ ଯୋଗ ଦେଇଥିଲେ । ଗାନ୍ଧୀ ବରକନ୍ୟାଙ୍କ ବନ୍ଧାଣ ସ୍ୱରୂପ ଖଣ୍ଡିଏ ଭଜନ-ପୁସ୍ତକ ଓ ନିଜେ କାଟିଥିବା କେରାଏ ସୂତା ଦେଇ-ଥିଲେ ।

ପରଂପରାନୁଗତ ହୋଇ ନିଜର ଚିରାଚରିତ ରୀତି ଧରିବସିବା ଓ ଉଗ୍ର ସଂସ୍କାରର ପକ୍ଷପାତୀ ହୋଇ ପୂର୍ବ ରୀତି ନୀତିର ପରିବର୍ତ୍ତନ କରିବାକୁ ପ୍ରବୃତ୍ତ ହେବା—ଏ ଦୁଇଟି ଦୋଷ ବା ଗୁଣ ଗାନ୍ଧୀଙ୍କଠାରେ ଏପରି ଓତଃପ୍ରୋତ ହୋଇ ମିଶିଥିଲା ଯେ, ନିର୍ଦ୍ଦିଷ୍ଟ ପରିସ୍ଥିତିରେ ସେ କି ମନୋବୃତ୍ତି ଧରିବେ ତାହା ଜାଣି ହେଉ ନ ଥିଲା ଏବଂ ବହୁକ୍ଷେତ୍ରରେ ତାଙ୍କଠାରୁ ଯାହା ଆଶା କରାଯାଉଥିଲା ତାହା ମିଳୁ ନ ଥିଲା । ଅସ୍ପୃଶ୍ୟତା ବିରୁଦ୍ଧରେ ମହାତ୍ମା ଗାନ୍ଧୀ ଯେଉଁ ସଫଳ ଆନ୍ଦୋଳନ ଚଳାଉଥିଲେ, ତାହାଦ୍ୱାରା ହଜାର ହଜାର ବର୍ଷ ହେଲା ତିଷ୍ଠି ରହିଥିବା ହିନ୍ଦୁ ଧର୍ମରେ ବୈପ୍ଳବିକ ପରିବର୍ତ୍ତନ ହୋଇ ପାରିଥିଲା । ଆପାତତଃ ଏଥିରୁ ଆଶା କରିବାର କଥା ଯେ, ଅସ୍ପୃଶ୍ୟତା ନିରାକରଣ ସଙ୍ଗେ ସଙ୍ଗେ ଜାତି-ପ୍ରଥା ମଧ୍ୟ ଦୂର ହେବ; କାରଣ, ସବର୍ଣ୍ଣ

ହିନ୍ଦୁ ଯଦି ଅସବର୍ଣ୍ଣଙ୍କ ସଙ୍ଗେ ଅବାଧ ମିଳାମିଶା କରି ପାରିବେ, ତେବେ ଉଚ୍ଚ ଜାତି ଓ ନୀଚ ଜାତି ଭିତରେ ଥିବା ସମସ୍ତ ବିଭେଦ ଆପେ ଆପେ ଭୁଷୁଡ଼ି ପଡ଼ିବାର କଥା । କିନ୍ତୁ ବହୁ ବର୍ଷ କାଳ ଗାନ୍ଧୀ ଜାତିପ୍ରଥାର ବିଧି-ନିଷେଧକୁ ସମର୍ଥନ କରିଥିଲେ ।

ହିନ୍ଦୁଧର୍ମର ଚତୁର୍ବର୍ଣ୍ଣ୍ୟ ପ୍ରଥାକୁ ସମର୍ଥନ କରି ଗାନ୍ଧୀ ୧୯୨୦ରେ କହିଥିଲେ, 'ମୁଁ ମନେକରେଁ, ହିନ୍ଦୁମାନଙ୍କୁ ଚାରିଜାତିରେ ବିଭାଗ କରିବାର ଯେଉଁ ପ୍ରଥା ଅଛି, ତାହା ସମାଜ ପକ୍ଷରେ ଅତି ଆବଶ୍ୟକ; ଏଭଳି ବିଭାଗ ସମାଜର ମୌଳିକ ଓ ସ୍ୱାଭାବିକ ବିଭାଗ ।' ୧୯୨୧, ଅକ୍ଟୋବର୍ ୬ ତାରିଖର 'ୟଙ୍ଗ୍ ଇଣ୍ଡିଆ'ରେ ଲେଖିଥିଲେ, 'ଅସବର୍ଣ୍ଣ ବିବାହ ଓ ବିଭିନ୍ନ ବର୍ଣ୍ଣର ଲୋକଙ୍କ ଏକ ପଂକ୍ତିରେ ଭୋଜନ ବିରୁଦ୍ଧରେ ହିନ୍ଦୁ ଧର୍ମରେ କଠୋର ନିଷେଧ ରହିଛି ।······। ଅସବର୍ଣ୍ଣ ବିବାହ ଓ ପଂକ୍ତିଭୋଜନ ନିଷେଧ କରିବା ଜୀବର କ୍ରମବିକାଶ ସକାଶ ଏକାନ୍ତ ପ୍ରୟୋଜନ ।'

ସେହି ଗାନ୍ଧୀ କହିଥିଲେ, 'ଅସବର୍ଣ୍ଣ ବିବାହ ଓ ସବୁ ବର୍ଣ୍ଣର ଲୋକେ ଏକ ପଂକ୍ତିରେ ଖାଇବା ବିରୁଦ୍ଧରେ କଟକଣା ହିନ୍ଦୁଧର୍ମର ଅଙ୍ଗୀଭୂତ ନୁହେ । ବୋଧହୁଏ ଆମ ଧର୍ମର ପତନ ହେଲାବେଳେ ଏ କଟକଣା ସବୁ ଆମ ଧର୍ମରେ ପଶିଯାଇଛି । ବୋଧହୁଏ ଭାଜି ପଡ଼ୁଥିବା ହିନ୍ଦୁ ସମାଜକୁ ସାମୟିକ ରକ୍ଷା କରିବା ସକାଶ ଏ ବିଧିନିଷେଧର ପ୍ରୟୋଗ ହୋଇଥିଲା । ବର୍ତ୍ତମାନ ଏ ଦୁଇଟି ନିଷେଧ (ହିନ୍ଦୁ ସମାଜକୁ ରକ୍ଷା କରିବା ପରିବର୍ତ୍ତେ) ଅଧିକ ଦୁର୍ବଳ କରି ପକାଉଛି ।' ଏ କଥାର ତାରିଖ ୧୯୩୨, ନଭେମ୍ବର ୪ ତାରିଖ ।

୧୯୨୧ରେ ଅସବର୍ଣ୍ଣ ବିବାହ ଓ ସହଭୋଜନର ନିଷେଧ ଜୀବାତ୍ମା ପକ୍ଷରେ 'ଅତି ପ୍ରୟୋଜନ' ଥିଲା; ୧୯୩୨ରେ ଏ ନିଷେଧ ଦୁଇଟି 'ହିନ୍ଦୁ-ସମାଜକୁ ଦୁର୍ବଳ କରି ପକାଇଲା ।'

୧୯୩୨ରେ ଗାନ୍ଧୀ ଯେଉଁ ମତ ଦେଇଥିଲେ ସେଥିକରେ ତାଙ୍କ ମନୋଭାବର ବିପ୍ଳବ ସରିଲା ନାହିଁ । ଥରେ ଧର୍ମନିଷ୍ଠ ପରମ୍ପରାକୁ ଛିନ୍ନ କଲା ପରେ ସେ ତାଙ୍କ ସ୍ୱାଭାବିକ ଗତିରେ ଆଗକୁ ଆଗକୁ ବଢ଼ି ଚାଲିଲେ, ଏବଂ ୧୯୪୬, ଜାନୁଆରି ୫ ତାରିଖରେ ସେ 'ହିନ୍ଦୁସ୍ଥାନ ଷ୍ଟାଣ୍ଡାର୍ଡ୍' ପତ୍ରିକା ଜରିଆରେ ଘୋଷଣା କଲେ, 'ବିବାହ କରିବାକୁ ଇଚ୍ଛୁକ ପ୍ରତ୍ୟେକ ଯୁବକ ଯୁବତୀଙ୍କୁ ମୁଁ ତେଣୁ କହିରଖୁଛି ଯେ, ବର କନ୍ୟାଙ୍କ ଭିତରୁ ଜଣେ ହରିଜନ ନ ହେଲେ, ସେମାନଙ୍କ ବିବାହ ସେବାଗ୍ରାମ ଆଶ୍ରମରେ ହୋଇ

ପାରିବ ନାହିଁ ।' ଏହା ପୂର୍ବରୁ ଥରେ ସେ କହିଥିଲେ ଯେ, ଅସବର୍ଣ୍ଣ ବିବାହ ନ ହେଲେ ସେ ସେଥିରେ ଯୋଗ ଦେବାକୁ ଯିବେ ନାହିଁ ।

୧୯୨୧ରୁ ୧୯୪୭ ଭିତରେ, ଏ ବିଷୟରେ ଗାନ୍ଧୀଙ୍କର ମତ ବୃତ୍ତାକାରରେ ପୂର୍ଣ୍ଣ ଘେରାଏ ବୁଲି ଯାଇଥିଲା । ଅସବର୍ଣ୍ଣ ବିବାହକୁ ପୂରାପୂରି ବିରୋଧ କରୁକରୁ, ଅସବର୍ଣ୍ଣ ବିବାହ ବ୍ୟତୀତ ଅନ୍ୟ କୌଣସି ବିବାହକୁ ସମର୍ଥନ ନ କରିବା ଅବସ୍ଥାକୁ ସେ ଯାଇଥିଲେ ।

ବିଭିନ୍ନ ଧର୍ମାବଲମ୍ବୀଙ୍କ ବିବାହକୁ ମଧ୍ୟ ସେ ପ୍ରଥମେ ବିରୋଧ କରୁଥିଲେ । ପରେ ସେ ଏହା ସମର୍ଥନ କଲେ । ମୁସଲମାନ ଲେଖକ ଡକ୍ଟର୍ ହୁମାୟୁନ୍ କବିର ଜଣେ ହିନ୍ଦୁ ମହିଳାଙ୍କୁ ବିଭା ହେବାରେ ସେ କବିରଙ୍କୁ ଅଭିନନ୍ଦନ ଜଣାଇଥିଲେ । ବି. କେ. ନେହେରୁ ହଙ୍ଗେରୀଦେଶର ଜଣେ ଇହୁଦୀ ମହିଳାଙ୍କୁ ବିବାହ କରିବା ମଧ୍ୟ ଗାନ୍ଧୀ ସମର୍ଥନ କରିଥିଲେ ।

ପାଶ୍ଚାତ୍ୟ ଦେଶରେ ପରିବାର ପରି, ଭାରତରେ ଜାତି ସମାଜର ମଜ୍ଜାଗତ । ତଥାପି ଗାନ୍ଧୀ ଏ ବିଷୟରେ ମଧ୍ୟ ନିଜର ମତ ବଦଳାଇ ପାରିଥିଲେ । ପରବର୍ତ୍ତୀ ବୟସରେ ବ୍ରହ୍ମଚର୍ଯ୍ୟ ବିଷୟରେ ତାଙ୍କର କଠୋର ମତକୁ ସେ ମୋଲାୟମ କରି ଦେଇଥିଲେ । ୧୯୩୫ ଖ୍ରୀଷ୍ଟାବ୍ଦରେ ଗାନ୍ଧୀଙ୍କର ବିଶିଷ୍ଟ ଭକ୍ତ ଅଧ୍ୟାପକ ଜେ. ବି. କ୍ରିପାଲନୀ (ଯେ ପ୍ରଥମେ ୧୯୧୫ରେ ଗାନ୍ଧୀଙ୍କ ସଂପର୍କରେ ଆସିଥିଲେ, ୧୯୧୭ରେ ଚମ୍ପାରଣଠାରେ ଗାନ୍ଧୀଙ୍କର ସହକର୍ମୀ ଥିଲେ) ଜଣେ ବଙ୍ଗାଳୀ ଯୁବତୀଙ୍କ ପ୍ରେମରେ ପଡ଼ିଲେ ଏବଂ ତାଙ୍କୁ ବିଭା ହେବାକୁ ଇଚ୍ଛା କଲେ । ଗାନ୍ଧୀ ଏହି ବଙ୍ଗାଳୀ ଯୁବତୀ ସୁଚେତାଙ୍କୁ ଡକାଇ ପଠାଇ ବିବାହରୁ ନିବର୍ତ୍ତାଇଲେ । ସେ କହିଲେ, 'ବିଭା ହେଲେ କ୍ରିପାଲନୀଙ୍କର ଅଧଃପତନ ହେବ ।' ସାମାଜିକ ସମସ୍ୟାମାନଙ୍କ ଉପରେ ସେ ଯେଉଁ ଏକାନ୍ତ ଧ୍ୟାନ ଦେଇ ପାରୁଛନ୍ତି ତାହା ଦୁର୍ବଳ ହୋଇଯିବ । କ୍ରିପାଲନୀଙ୍କୁ ଛାଡ଼ି ଆଉ କାହାକୁ ବିଭା ହେବାକୁ ସେ ସୁଚେତାଙ୍କୁ ପରାମର୍ଶ ଦେଲେ ।

ବର୍ଷକ ପରେ କିନ୍ତୁ ସେ ସୁଚେତାଙ୍କୁ ପୁଣି ଡକାଇ କ୍ରିପାଲନୀଙ୍କ ସଙ୍ଗେ ତାଙ୍କ ବିବାହ ପ୍ରସ୍ତାବକୁ ସମର୍ଥନ କଲେ ; କହିଲେ, 'ମୁଁ ତୁମ ଦୁହିଙ୍କ ପାଇଁ ଭଗବାନଙ୍କୁ ପ୍ରାର୍ଥନା କରିବି ।' ପରେ ସେ ସୁଚେତାଙ୍କୁ ନିଜ ଝିଅ ପରି ସ୍ନେହ କଲେ ।

ଆଶ୍ରମରେ ମଧ୍ୟ ବୈବାହିକ ସଂପର୍କ ବିଷୟରେ ସେ କଠୋରତା ତ୍ୟାଗ କରି ପତିପତ୍ନୀ ସଂପର୍କକୁ ପ୍ରଶ୍ରୟ ଦେଲେ ଏବଂ ବୈବାହିକ ଜୀବନରେ

ସଂଶୋଗ ରହିବ ନାହିଁ ବୋଲି ଆଗେ ଯାହା ଜିଦ୍ କରୁଥିଲେ ତାହା ଛାଡ଼ିଲେ ।

କୁସଂସ୍କାର ଓ ଅନ୍ୟାୟ ବିରୁଦ୍ଧରେ ସେ ଯୁଦ୍ଧ ଚଳାଉଥିବାରୁ ତାଙ୍କର ମତାମତ ସ୍ପଷ୍ଟ ଓ ଦୃଢ଼ ହେବା ଦରକାର ପଡ଼ୁଥିଲା । କିନ୍ତୁ ସତ୍ୟର ଉପାସକ ହୋଇଥିବାରୁ ନିଜର ମତ ବଦଳାଇବାକୁ ସେ ସମର୍ଥ ହେବାକୁ ହେଉଥିଲା । ବେଳେ ବେଳେ ସେ ନିଜର ମତରେ ଏଭଳି ଜିଦ୍ କରୁଥିଲେ ଯେ, ସେଥିରେ ସେ ଦୁର୍ବିନୀତ ହେଲା ପରି ଲାଗୁଥିଲା । ପୁଣି ବେଳେବେଳେ, ନିଜର ମତ ବଦଳାଇବା ଦରକାର ମନେ କଲେ ସେ ଏପରି ଧୂରାପୂରି ଲେଉଟି ପଡ଼ୁଥିଲେ ଯେ, ତାଙ୍କର ଅନୁଚରମାନେ ବିବ୍ରତ ହୋଇ ପଡ଼ୁଥିଲେ, କିନ୍ତୁ ସେ ନିଜେ ଆଦୌ ବିବ୍ରତ ହେଉ ନ ଥିଲେ । ବିଭିନ୍ନ ସମୟରେ ସେ ଦେଉଥିବା ମତାମତର ସଂଗତି ପ୍ରମାଣ କରିବାକୁ ସେ ସାଧାରଣତଃ ଖୁବ୍ ଉଦ୍ୟମ କରୁଥିଲେ ହେଁ, ଦରକାର ପଡ଼ିଲେ ନିଜ କଥାର ଅସଂଗତି ମାନି ନେଉଥିଲେ । ସେ ଯେମିତି ଖୁବ୍ ଟାଣ ଧରି ରହି ପାରୁଥିଲେ, ସେମିତି ସରଳଭାବରେ ପ୍ରତିପକ୍ଷଙ୍କ କଥା ବିନୀତଭାବେ ମାନି ଯାଉଥିଲେ । ଏକ ସମୟରେ ସେ କଂଗ୍ରେସ ଉପରେ ହୁକୁମ ଜାରି କରୁଥିଲେ, ଅନ୍ୟ ସମୟରେ ନିଜ ମୂର୍ଖତାର ପରିଣାମ ଭୋଗକରୁ ବୋଲି ସେ ଅନୁଷ୍ଠାନକୁ ଲମ୍ବା ଦଉଡ଼ି ଦେଉଥିଲେ । ତାଙ୍କ ହାତରେ ଅସପତ୍ନ ଅଧିକାର ଥିଲା, କିନ୍ତୁ ଏ ଅଧିକାର ପ୍ରାୟଶଃ ଅବ୍ୟବହୃତ ହୋଇ ରହୁଥିଲା ; ଟିକିଏ ଆଙ୍ଗୁଠି ବଙ୍କେଇଦେଲେ ଯେଉଁମାନଙ୍କୁ ମୋଡ଼ି ଦେଇ ହୁଅନ୍ତା ସେଭଳି ପ୍ରତିପକ୍ଷଙ୍କ କଥା ସେ ଅସଲ ଧଡ଼ିସନ୍ଧିବେଳେ ମାନି ଯାଉଥିଲେ । ଗାନ୍ଧୀଙ୍କର ଥିଲା ଏକଚ୍ଛତ୍ର ଶାସକର ଅଧିକାର, କିନ୍ତୁ ତାଙ୍କର ମନ ଥିଲା ଗଣତନ୍ତ୍ରବାଦୀ । କ୍ଷମତାରେ ତାଙ୍କର ଆତ୍ମତୁଷ୍ଟି ହେଉ ନ ଥିଲା; ମନରେ ତାଙ୍କର ଏଭଳି ବିକୃତ ଆତ୍ମତୋଷଣର ପ୍ରବୃତ୍ତି ନ ଥିଲା ଯାହା ପାଇଁ ସେ, କ୍ଷମତାପିପାସୁ ହୁଅନ୍ତେ । ଫଳତଃ ସେ ସବୁବେଳେ ଖୁସ୍‌ମେଜାଜରେ ଥିଲେ । ସେ ସର୍ବଜ୍ଞ, ଭ୍ରମପ୍ରମାଦଶୂନ୍ୟ, ସର୍ବଶକ୍ତିମାନ୍, ଓ ମର୍ଯ୍ୟାଦାବନ୍ତ ବୋଲି ଦେଶବାସୀଙ୍କୁ ଧାରଣା ଦେବା ସକାଶ ଚେଷ୍ଟିତ ହେବାକୁ କେବେଁ ଗ୍ରହ୍ମ ନ ଥିଲେ ।

ପ୍ରତ୍ୟେକ ନେତା ଆପଣା ଚାରିପଟେ ଗୋଟାଏ ପାଚେରି କରି ରହିଥାନ୍ତି । ଏ ପାଚେରି ଇଟାରେ ଉଚ୍ଚ ହୋଇ ପୋତା ହୋଇ ଥାଇପାରେ, ସଶସ୍ତ୍ର ପ୍ରହରୀଦଳ ଦ୍ୱାରା ହୋଇ ଥାଇପାରେ, କିମ୍ବା ସିଧା ପ୍ରଶ୍ନ ପଚରା

ହେଲେ ମୌନ ରହି ପ୍ରହେଳିକାପୂର୍ଣ୍ଣ ସ୍ମିତହାସ୍ୟ ଦ୍ୱାରା ତିଆରି ହୋଇ-ଥାଇପାରେ । ଏ ପାଚଣ୍ଡିର ଉଦ୍ଦେଶ୍ୟ ଜନତାଠାରୁ ଦୂରରେ ରହି ନିଜର ଦୋଷ ଦୁର୍ବଳତା ଓ ଗୁପ୍ତକଥା ସେମାନଙ୍କଠାରୁ ଲୁଚାଇବା । ଗାନ୍ଧୀଙ୍କ ଚରିତ୍ରରେ ଏପରି କୌଣସି ପାଚଣ୍ଡି ନ ଥିଲା । ଥରେ ସେ ଘୋଷଣା କରି-ଥିଲେ, 'ମୁଁ ଅକୁଣ୍ଠିତ ଚିତ୍ତରେ ଏକଥା କହି ରଖୁଛି ଯେ, ମୋ' ଜୀବନରେ ମୁଁ କେବେହେଁ କୌଣସି ପ୍ରକାର ଚାଲାକି ବା ଶଠତାର ଆଶ୍ରୟ ନେଇ ନାହିଁ ।' ତାଙ୍କ ଦେହ ତ ଅନାବୃତ ଥିଲା; ତାହାଁରୁ ଅଧିକ ଅନାବୃତ ଥିଲା ତାଙ୍କର ମନ ଓ ମନର ଭାବ ।*

ତାଙ୍କୁ ସେତେବେଳେ ୬୭ ବର୍ଷ; ୧୯୩୬, ଡିସେମ୍ବର ୭ ତାରିଖର 'ହରିଜନ'ରେ ସେ ଲେଖିଥିଲେ, 'ମୋର ଘୋର ଅଧଃପାତର ସମୟ ଆସି-ଥିଲା ବମ୍ବେଠାରେ, କେତେମାସ ପୂର୍ବେ । ମୋତେ କାମାସକ୍ତି ଗ୍ରାସ କରିବାକୁ ବସିଥିଲା । ରାତିରେ ଶୋଇଛି, ହଠାତ୍ ସ୍ତ୍ରୀସଙ୍ଗ ପାଇଁ ଆସକ୍ତି ଜାଗି ଉଠିଲା । ଏ ଆସକ୍ତି ଦମନ କରିବାକୁ ୪୦ ବର୍ଷକାଳ ଚେଷ୍ଟା କରିଥିବା ଲୋକ ପକ୍ଷରେ ଏଭଳି ଆସକ୍ତିର ଉଦ୍ରେକ ଅତି ଦୁଃଖଦାୟକ ହେବାର କଥା, ହେଲା । ଅବଶ୍ୟ ଶେଷରେ ମୁଁ ଏ କାମାସକ୍ତି ଦମନ କରିଦେଲି । କିନ୍ତୁ ସ୍ୱୀକାର କରୁଛି, ମୋ' ଜୀବନର ଘୋର ବିପର୍ଯ୍ୟୟର ବେଳ ସେ ଦିନ ଆସିଥିଲା; ମୁଁ ଯଦି ସେ ଦିନ ଏ ଆସକ୍ତିର ଦାସ ହୋଇ ଯାଇଥାନ୍ତି ତେବେ ମୋର ସର୍ବନାଶ ହୋଇଥାନ୍ତା ।' ଖୁବ୍ ଅଳ୍ପଲୋକ ଏଭଳି ନଗ୍ନଭାବେ ନିଜ ଅନ୍ତରର କଥା ପ୍ରକାଶ କରିବାକୁ ସମର୍ଥ; ଅନେକେ ମନେ କରୁଥିବେ ଏଭଳି କଥା ପ୍ରକାଶ କରିବାର କୌଣସି ଆବଶ୍ୟକତା ନ ଥିଲା । ସେ ଯାହାହେଉ, ଅନାବୃତ ଜୀବନର ଏହା ଦୃଷ୍ଟାନ୍ତ ପ୍ରମାଣ ହୋଇ ରହିବ । ଲୋକେ ତାଙ୍କୁ ଜାଣନ୍ତୁ, ତାଙ୍କର ସବୁକଥା ଜାଣନ୍ତୁ ବୋଲି ସେ ଚାହୁଁଥିଲେ । ଟିକିଏ କିଛି ଲୁଚାଇଦେଲେ ସତ୍ୟର ଅପଳାପ ହୁଅନ୍ତା । ତାଙ୍କ ମନ ଭିତରେ ଯେଉଁ ସଙ୍ଘର୍ଷ ହେଉଥିଲା, ବାହାରେ ସେ ଯାହା କିଛି କରୁଥିଲେ ବା କହୁଥିଲେ, ସେ ସବୁ ଲୋକେ ଜାଣି ସେଥିରୁ ଶିଖନ୍ତୁ ବୋଲି ସେ ଚାହୁଁଥିଲେ । ସେ କହିଥିଲେ, 'ମୁଁ ବିଶ୍ୱାସ କରି ଆସିଛି ଯେ ଜଣକପକ୍ଷରେ ଯାହା ସମ୍ଭବ, ତାହା ପ୍ରତ୍ୟେକ ଲୋକ ପକ୍ଷରେ ବି ସମ୍ଭବ । ତେଣୁ ମୁଁ ନିଭୃତରେ ଯେଉଁ ତଥ୍ୟାନୁସନ୍ଧାନ କରିଛି, ତାକୁ ପଦାରେ ପକାଇ ଦେଉଛି ।' ଏଭଳି କହିବାରେ ଅହଂକାର ସୂଚିତ ହେଉଛି ବୋଲି କୁହା-

ଯାଇପାରେ । କିନ୍ତୁ ଏକଥା ନ କହିଥିଲେ ଅନ୍ତରରୁ ଉଦ୍‌ଭୂତ ହେଉଥିବା ଗୋଟିଏ ପ୍ରେରଣାକୁ ଗୁପି ରଖିବାଦ୍ୱାରା ଅପରାଧ ହୋଇଥାନ୍ତା ।

ଗାନ୍ଧୀ ଥିଲେ ସନାତନ ସତ୍ୟର ଉପଦେଷ୍ଟା । ତେଣୁ ସେ ସମସ୍ତଙ୍କୁ ନିର୍ବାଧରେ ତାଙ୍କର ସାନ୍ନିଧକୁ ଆସିବାକୁ ଦେଉଥିଲେ । ଯେ ଆସୁଥିଲେ ଯେ ଯେ ଖାଲି ନିର୍ବାଧରେ ଆସୁଥିଲେ ତାହା ନୁହେଁ, ଫେରିଲା ବେଳେ ପ୍ରତ୍ୟେକେ ନୂତନ ପ୍ରେରଣା ନେଇ ଫେରୁଥିଲେ ।

୧୯୩୦ର ପରବର୍ତ୍ତୀ ଦଶକରେ ଅତୁଳାନନ୍ଦ ଚକ୍ରବର୍ତ୍ତୀ ନାମଧେୟ ଜଣେ ତରୁଣ ଭାରତୀୟ, କ୍ରମେ ଅଧିକରୁ ଅଧିକ ବର୍ଦ୍ଧିଷ୍ଣୁ ହୋଇ ଯାଉଥିବା ହିନ୍ଦୁ-ମୁସଲମାନ ସମସ୍ୟା ବିଷୟରେ ଗୋଟିଏ ପୁସ୍ତିକା ପ୍ରଚୁର କରିଥିଲେ । ମହାତ୍ମାଙ୍କ ପାଖକୁ ସେ ଏଥିରୁ ଖଣ୍ଡିଏ ପଠାଇବାର କଥା, ପଠାଇଥିଲେ । ଏ ଭଳି କ୍ଷେତ୍ରରେ ସେ କୌଣସି ଦେଶର ନେତୃସ୍ଥାନୀୟ ବ୍ୟକ୍ତି ଗତାନୁଗତିକ ରୀତିରେ ସୌଜନ୍ୟପୂର୍ଣ୍ଣ ଭାଷାରେ ପ୍ରାପ୍ତି ସ୍ୱୀକାର ପତ୍ର ଖଣ୍ଡିଏ ପଠାଇ ନିଜର କର୍ତ୍ତବ୍ୟ ସାଙ୍ଗ କରନ୍ତି । ଗାନ୍ଧୀ କିନ୍ତୁ ପୁସ୍ତିକାଟି ପଢ଼ିଲେ ଏବଂ ଏଥିରେ ପ୍ରକାଶିତ ଭାବ ଓ ପ୍ରସ୍ତାବମାନଙ୍କ ଉପରେ ନିଜର ମତାମତ ସୁବିସ୍ତର ଭାବେ ଲେଖି ପଠାଇଦେଲେ । ପୁସ୍ତିକାର ଗୌଣ ବିଷୟମାନଙ୍କ ଉପରେ ମଧ ତାଙ୍କର ଦୃଷ୍ଟି ପଡ଼ିଥିଲା । ଉଦାହରଣ ସ୍ୱରୂପ ସେ ଲେଖିଥିଲେ, '୧୫୧ ପୃଷ୍ଠାରେ ତୁମେ ଲେଖିଛ ଭାରତ "ହଜାର ହଜାର ମାଇଲ ବିସ୍ତୃତ" । ଏହା କ'ଣ ଠିକ୍ ? ବସ୍ତୁତଃ ଭାରତର ବିସ୍ତୃତି ୧୫୦୦ ମାଇଲରୁ ଅଧିକ ନୁହେ । ତା'ପରେ ପୁସ୍ତକର ପରିଶିଷ୍ଟରେ ତୁମେ ଯେଉଁ ଉଦ୍ଧୃତାଂଶ ସବୁ ଦେଇଛ ତହିଁର ଗୋଟିକ ଛଡ଼ା ଅନ୍ୟ କୌଣସିଟିର ତଳେ, ତାରିଖ ଦେଇନାହିଁ···। ସର୍ବୋପରି ପୁସ୍ତକର ମୁଦ୍ରଣରେ ଯେଉଁ ପ୍ରମାଦ ସବୁ ରହିଛି ସେ କଥା ଭାବିଛ ତ ? ଅକ୍ଷମଣୀୟ । ଯାହା ହେଉ, ଏ ସମସ୍ତ ଦୋଷତ୍ରୁଟି ସତ୍ତ୍ୱେ, ତୁମେ ଯଦି ସତ୍ୟର ଅବଲମ୍ବନ କରିଥାନ୍ତ, ତେବେ ଏ ପୁସ୍ତିକାଟିଦ୍ୱାରା ଗୋଟିଏ ସଦୁଦ୍ଦେଶ୍ୟ ପୂରଣ ହୋଇପାରନ୍ତା ।'

ତାଙ୍କ ପୁସ୍ତକ ମହାତ୍ମାଙ୍କ ଦୃଷ୍ଟିରେ ପଡ଼ିବ ବୋଲି ଅତୁଳାନନ୍ଦ ଆଶା କରି ନ ଥିଲେ । ମହାତ୍ମାଙ୍କ ଉତ୍ତର ପାଇ ସେ ଉତ୍ସାହିତ ହେଲେ, ଏବଂ କିଛି ଦିନ ଯାଇ ଆଶ୍ରମରେ ରହିବାକୁ ଅନୁମତି ମାଗି ଚିଠି ଦେଲେ । ଗାନ୍ଧୀ ତାଙ୍କୁ ନିମନ୍ତ୍ରଣ ପଠାଇଲେ ଓ ସେ ଆସି ଏକତେ ସପ୍ତାହ ଆଶ୍ରମରେ ରହିଲେ । ସେଇ ଦିନଠାରୁ ଦୁହିଙ୍କ ଭିତରେ ଆନ୍ତରିକତା ଜାତ ହେଲା

ଓ ନିୟମିତ ଚିଠିପତ୍ର ଦିଆନିଆ ଚାଲିଲା । ଗାନ୍ଧୀଙ୍କର ମତାମତ ପାଇଁ ଅଭୁଲାନନ୍ଦ ତାଙ୍କର ଲେଖାମାନ ପଠାଇ ଲାଗିଥାନ୍ତି । ହିନ୍ଦୁ ଓ ମୁସଲମାନଙ୍କ ମିଳନ ପାଇଁ ସେ ଉଭୟ ସଂପ୍ରଦାୟର ଲୋକଙ୍କୁ ନେଇ ଗୋଟିଏ ସାଂସ୍କୃତିକ ସମିତି ଗଠନ କରିବାକୁ ପ୍ରସ୍ତାବ ଦେଇଥିଲେ । ୧୯୩୭, ଅଗଷ୍ଟ ୩ ତାରିଖରେ ଅଭୁଲାନନ୍ଦଙ୍କ ପାଖକୁ ପଠାଇଥିବା ଖଣ୍ଡିଏ ଚିଠିରେ ଗାନ୍ଧୀ ଲେଖିଥିଲେ :

'ପ୍ରିୟ ଅଭୁଲାନନ୍ଦ, ମୋର ବିଶ୍ୱାସ ତୁମ ଝିଅ ସମ୍ପୂର୍ଣ୍ଣ ଆରୋଗ୍ୟ ହୋଇଗଲାଣି ଓ ତା' ବିଷୟରେ ଆଉ ଭୟର କାରଣ ନାହିଁ । ତୁମ ଲେଖା-ଗୁଡ଼ିକ ମୁଁ ସଯତ୍ନେ ପଢ଼ୁଛି । ଏ ପର୍ଯ୍ୟନ୍ତ ମୋତେ କୌଣସି ବାଟ ଦିଶିନାହିଁ । ତୁମର ଓ ମୋର ଉଦ୍ଦେଶ୍ୟ ଯାହା, ତାହା ସାଂସ୍କୃତିକ ସମିତି-ଦ୍ୱାରା ସାଧିତ ହୋଇପାରିବ ବୋଲି ମୋତେ ଲାଗୁନାହିଁ । ଯେଉଁମାନଙ୍କର ଏ ବିଷୟରେ ଗଭୀର ଶ୍ରଦ୍ଧା ଅଛି ଓ ଯେଉଁମାନେ ଏଥିପାଇଁ ଧର୍ମଯାଜକଙ୍କ ପରି ଏକାନ୍ତ ଚେଷ୍ଟା କରି ପାରିବେ, ସେଇଭଳି ଲୋକଙ୍କଦ୍ୱାରା ହିଁ ଏ ଉଦ୍ଦେଶ୍ୟ ସାଧିତ ହୋଇପାରିବ । ଆହୁରି ଚେଷ୍ଟା ଚଳାଅ । ତୁମ ପ୍ରସ୍ତାବର ଯେଉଁ ଉପଯୋଗିତା ତୁମେ ଦେଖିପାରୁଛ ତାହା ମୁଁ ଦେଖିପାରୁ ନାହିଁ । ଦେଖି ପାରିବା ପର୍ଯ୍ୟନ୍ତ ମୁଁ ଧୈର୍ଯ୍ୟ ଧରି ମନୋଯୋଗ ସହିତ ଅପେକ୍ଷା କରିବି । ମୁଁ କ'ଣ କରିପାରିବି ସେ କଥା ଭଲ କରି ଦେଖି ପାରିଲେ ମୁଁ ତୁମକୁ ସାହାଯ୍ୟ କରିବାକୁ ପ୍ରସ୍ତୁତ ।

ତୁମର ଆନ୍ତରିକ ବନ୍ଧୁ,
ଏମ୍. କେ. ଗାନ୍ଧୀ ।

ଏ ଚିଠିଟି ଗାନ୍ଧୀ ନିଜ ହାତରେ ଖଣ୍ଡିଏ ଗ୍ଲେଜ ହାତତିଆରି କାଗଜରେ କାଳିରେ ଲେଖିଥିଲେ ।

ଅଭୁଲାନନ୍ଦ, ହିନ୍ଦୁ-ମୁସଲମାନ ସଂଘର୍ଷ ବିଷୟରେ ଏକାଗ୍ର ଚିନ୍ତା ଲଗାଇ ରଖିଲେ ଏବଂ ଏ ବିଷୟରେ ଖଣ୍ଡିଏ ପୁସ୍ତକ ଲେଖିବାକୁ ପ୍ରସ୍ତାବ ଦେଲେ । ୧୯୩୯, ଜୁନ୍ ୧୭ ତାରିଖରେ, ପୋଷ୍ଟକାର୍ଡ଼ରେ ଗାନ୍ଧୀ ଉତ୍ତର ଦେଲେ । ସେ ଲେଖିଲେ, 'ରୋଗ ଏତେ ଉତ୍କଟ ହୋଇଗଲାଣି ଯେ, ପୁସ୍ତକ ପ୍ରକାଶଦ୍ୱାରା ଏହାର ଉପଶମ ହେବ ନାହିଁ । ବଡ଼ ଧରଣର କିଛି କରିବା ପ୍ରୟୋଜନ । [illegible] କ'ଣ, ଏ ପର୍ଯ୍ୟନ୍ତ ମୋତେ ଦିଶିନାହିଁ ।

—ତୁମର ଆନ୍ତରିକ ବନ୍ଧୁ, ଏମ୍. କେ. ଗାନ୍ଧୀ ।

ଭାରତରେ ଓ ଭାରତ ବାହାରେ ହଜାର ହଜାର ଲୋକଙ୍କ ସଙ୍ଗେ ଗାନ୍ଧୀଙ୍କର ଚିଠିପତ୍ର ଆଦାନପ୍ରଦାନ ଚାଲିଥିଲା । ଅଧିକାଂଶ କ୍ଷେତ୍ରରେ ଖଣ୍ଡିଏ ଚିଠିରୁ ବହୁକାଳସ୍ଥାୟୀ ବ୍ୟକ୍ତିଗତ ସମ୍ପର୍କ ଆରମ୍ଭ ହୋଇ ଯାଉଥିଲା । ତାଙ୍କ ସଙ୍ଗେ ପତ୍ରାଳାପ କରୁଥିବା ବ୍ୟକ୍ତିଙ୍କ ପରିବାରର ଲୋକଙ୍କ ନାମ ଗାନ୍ଧୀ ମନେ ରଖୁଥିଲେ ଏବଂ ସେମାନଙ୍କ ନାମ ଧରି ଚିଠିରେ କୁଶଳ ପ୍ରଶ୍ନ କରୁଥିଲେ । ପ୍ରଥମ ଚିଠି ଆସେ କୌଣସି ରାଜନୀତିକ ବା ଧର୍ମ ସମ୍ପର୍କୀୟ ସର୍ବସାଧାରଣ ପ୍ରଶ୍ନ ଉପରେ । ଅବିଳମ୍ବେ ପାରିବାରିକ ସମସ୍ୟା ଉପରେ ପତ୍ରପ୍ରେରକ ପରାମର୍ଶ ମାଗିବାକୁ ଆରମ୍ଭ କରନ୍ତି । ବହୁ ଲୋକଙ୍କର ସେ ମାତୃସ୍ନେହ ପୂର୍ଣ୍ଣ ପିତା ହୋଇ ଯାଇଥିଲେ ।

୧୯୪୭ ଖ୍ରୀଷ୍ଟାବ୍ଦର ଅଗଷ୍ଟମାସ । ଭାରତ ଇତିହାସରେ ଅତି ମର୍ମନ୍ତୁଦ ସଙ୍କଟର ବେଳ । ସେତେବେଳେ ଗାନ୍ଧୀ କଲିକତାରେ ରହି ସେଠା ସମସ୍ୟାର ସମାଧାନରେ ମନ ଦେଇଥାନ୍ତି । ହିନ୍ଦୁ ମୁସଲମାନଙ୍କର ରକ୍ତ ନଗରର ରାସ୍ତାମାନଙ୍କରେ ବହି ଯାଉଥାଏ । ଦିନେ ସକାଳେ ଅମିୟ ଚକ୍ରବର୍ତ୍ତୀ ନାମକ ଜଣେ ବ୍ୟକ୍ତି ଆସି ପହଞ୍ଚିଲେ । ସେ ରବୀନ୍ଦ୍ରନାଥ ଠାକୁରଙ୍କର ସାହିତ୍ୟିକ ସହକାରୀ ଥିଲେ । ତାଙ୍କର ଜଣେ ଅତି ଅନ୍ତରଙ୍ଗ ଖୁଡୁତାପୁଅ ଭାଇ ରୋଗରେ ପଡ଼ି ମରିଯାଇଥାନ୍ତି । ଆଶ୍ୱାସନା ପାଇବା ନିମନ୍ତେ ସେ ମହାତ୍ମା ଗାନ୍ଧୀଙ୍କୁ ଏ ଶୋକବାର୍ତ୍ତା ଦେବାକୁ ଆସିଥାନ୍ତି । ଗାନ୍ଧୀଙ୍କ କୋଠରୀର ଗୋଟିଏ କଣରେ ସେ କାନ୍ଥକୁ ଆଉଜି ଠିଆ ହୋଇଥାନ୍ତି । ଗାନ୍ଧୀ ସେତେବେଳେ କ'ଣ ଲେଖୁଥିଲେ । ସେ ମୁଣ୍ଡ ଟେକି ଚାହାନ୍ତେ ଅମିୟ ଆଗେଇ ଆସି ଭାଇର ମୃତ୍ୟୁ ସମ୍ବାଦ ତାଙ୍କୁ ଦେଲେ । ଗାନ୍ଧୀ ସମବେଦନାସୂଚକ ପଦେ କ'ଣ କହି, ସନ୍ଧ୍ୟାବେଳର ପ୍ରାର୍ଥନା ସଭାରେ ଆସି ଯୋଗ ଦେବାକୁ ଡାକିଲେ । ଅମିୟ ସଂଧ୍ୟାରେ ଆସି ପହଞ୍ଚନ୍ତେ ଗାନ୍ଧୀ ତାଙ୍କ ହାତକୁ କାଗଜ ଖଣ୍ଡିଏ ବଢ଼ାଇଦେଇ ଫୁସ୍‌ଫୁସ୍ କରି କହିଲେ, 'ଅନ୍ତରରୁ ଯାହା ବାହାରିଲା ଲେଖି ଦେଇଛି । ଅନ୍ତରର କଥା ହୋଇଥିବାରୁ ଏହାର କିଛି ମୂଲ୍ୟ ଥାଇପାରେ ।' କାଗଜ ଖଣ୍ଡିକରେ ଲେଖାଥିଲା :

ପ୍ରିୟ ଅମିୟ, ତୁମର ପ୍ରିୟଜନ ବିୟୋଗରେ ମୁଁ ଦୁଃଖିତ ; କିନ୍ତୁ ଏ ବିୟୋଗ ତ ଯଥାର୍ଥରେ ବିୟୋଗ ନୁହେ । ମୃତ୍ୟୁ ବାସ୍ତବରେ ନିଦ୍ରା ଓ ବିସ୍ମୃତି ମାତ୍ର ।' ଏହା ଏଭଳି ସୁଖନିଦ୍ରା ଯେ ଶରୀର ଏଥିରୁ ଜାଗିବା

ଲୋଡ଼େ ନାହିଁ । ସ୍ମୃତିର ବୋଝ ମୁଣ୍ଡରୁ ଓହ୍ଲାଇଯାଏ । ମୁଁ ଯେତେଦୂର ଜାଣେ, ଏଠାରେ ଯେପରି ବିଦାୟ ପରେ ପୁଣି ଦେଖା ସାକ୍ଷାତ ହେଉଛି, ଆରପୁରରେ ଆଉ ସେଭଳି ସାକ୍ଷାତ୍ ହୁଏ ନାହିଁ । ପରକାଳର ଅନ୍ତରୀକ୍ଷରେ ଅଲଗା ଅଲଗା ହୋଇ ଝୁଲୁଥିବା ଫୋଟକାଗୁଡ଼ିକ ଫାଟି ପାଣି ହୋଇଯାଇ କାଳର ମହାସମୁଦ୍ରରେ ଲୀନ ହୋଇଯାନ୍ତି । ସେଇ ତାଙ୍କର ଶେଷ ଆଶ୍ରୟସ୍ଥଳୀ । ଅଲଗା ଅଲଗା ହୋଇ ପ୍ରତ୍ୟେକେ ମରନ୍ତି ସିନା, ସମସ୍ତେ ପୁଣି ଯାଇ ମିଶନ୍ତି ସେଇ ସମୁଦ୍ରରେ । ମୁଁ ମୋର ମନର କଥା ପରିଷ୍କାର କରି ଲେଖି ପାରିଲି କି ନାହିଁ ଓ ଏହାଦ୍ୱାରା ତୁମକୁ କିଛି ସାନ୍ତ୍ୱନା ମିଳିବ କି ନାହିଁ, କେଜାଣି ? ତୁମ ପ୍ରତି ଶ୍ରଦ୍ଧାର ସହିତ

—ବାପୁ ।

ଗାନ୍ଧୀ ଯେ ଦୁଃଖ ପ୍ରକାଶ କରିଥିଲେ ଏତିକରେ ଅମିୟ ଯଥେଷ୍ଟ ସାନ୍ତ୍ୱନା ପାଇଥିବେ । ସମଗ୍ର ଜାତିର ସଙ୍କଟରେ ବିବ୍ରତ ଥିଲାବେଳେ ସେ ସାମାନ୍ୟ ଜଣେ ବ୍ୟକ୍ତିପାଇଁ ମଧ୍ୟ ଦୁଃଖ ପ୍ରକାଶ କରିବାକୁ ଅବସର ପାଇଥିଲେ । ସାଧାରଣ ମନୁଷ୍ୟର ଦୈନନ୍ଦିନ ଜୀବନର ଯଦି ଅବିଚ୍ଛେଦ୍ୟ ଅଙ୍ଗ ନ ହେଲା, ତେବେ ରାଜନୀତିର ମୂଲ୍ୟ ଶୂନଠାରୁ ବି କମ୍ ବୋଲି ଗାନ୍ଧୀ ଭଲ କରି ବୁଝି ପାରିଥିଲେ । ଗାନ୍ଧୀଙ୍କ ଅନାବୃତ ଜୀବନ ଜନତାର ମଙ୍ଗଳ ନିମନ୍ତେ ଉତ୍ସୃଷ୍ଟ ହୋଇଥିଲା ଓ ସେ ମଙ୍ଗଳ ସେ ସାଧନ କରୁଥିଲେ— ଗ୍ରାମ୍ୟଜନଙ୍କ ଖାଦ୍ୟରେ ସଜ ଶାକସବଜିର ଉପଯୋଗ ବିଷୟରେ ଚିନ୍ତା କରି, ଶୋକସନ୍ତପ୍ତ ଆତ୍ମୀୟର ହୃଦୟବେଦନା ଦୂର କରିବାକୁ ଯାଇ, ଯୁବତୀକୁ ସ୍ୱାମୀ ନିର୍ବାଚନରେ ସାହାଯ୍ୟ କରି, ରୋଗଗ୍ରସ୍ତ କୃଷକର ମୁଣ୍ଡରେ ପଙ୍କ ଲଦି, ଓ ଲେଖକର ପୁସ୍ତକରେ ବର୍ଣ୍ଣାଶୁଦ୍ଧି ଥିବାର ଦର୍ଶାଇ । ଏଭଳି ଛୋଟ ଛୋଟ କଥାରୁ କେହି ମୁକ୍ତ ହୋଇ ରହିପାରନ୍ତି ନାହିଁ । ଏଇ ଛୋଟ କଥାମାନଙ୍କରେ ଜୀବନ ଗଢ଼ା । ସଂସାରର କୌଣସି ବ୍ୟକ୍ତି ରାଜନୀତିକ ମତବାଦ ଓ ଧର୍ମ ସମ୍ବନ୍ଧୀୟ ନୀତିବାକ୍ୟର ଲଘୁ ବାୟୁମଣ୍ଡଳରେ ସର୍ବଦା ରହିପାରନ୍ତି ନାହିଁ ।

ଏକାଦିକ୍ରମେ ବହୁ ବର୍ଷ କାଳ ଗାନ୍ଧୀ ଦୈନିକ ହାରାହାରି ଶହେ ଖଣ୍ଡ ଚିଠି ଡାକରେ ପାଉଥିଲେ । ଅନେକ ସମୟରେ ଏ ଚିଠିମାନଙ୍କ ସହିତ ଅନ୍ୟ ଇସ୍ତାହାର, ପତ୍ର ଓ ପୁସ୍ତିକା ବି ଆସିଥାଏ । ଦୈନିକ ପ୍ରାୟ ଦଶଟି ଚିଠିର ଉତ୍ତର ଗାନ୍ଧୀ ନିଜ ହାତରେ ଲେଖନ୍ତି, ଆଉ କେତୋଟିର

ଉତ୍ତର ନିଜେ ଡାକ ଦିଅନ୍ତି, ବାକିଗୁଡ଼ିକର କି କି ଉତ୍ତର ଦିଆଯିବ ତାହା ନିଜର ସହକାରୀମାନଙ୍କୁ ବତାଇ ଦିଅନ୍ତି । କୌଣସି ଚିଠି ଉତ୍ତର ଦିଆ ନ ହୋଇ ରହେ ନାହିଁ । ବହୁ କ୍ଷେତ୍ରରେ, ପତ୍ରପ୍ରେରକଙ୍କର ଆପତ୍ତି ନ ଥିଲେ, 'ହରିଜନ' ପତ୍ରିକା ଜରିଆରେ ଉତ୍ତର ଦିଆଯାଏ । ସେ ପତ୍ରିକା ପାଇଁ ଗାନ୍ଧୀ ନିଜେ ଯାହା ଲେଖନ୍ତି ସେଥିରେ ତାଙ୍କର ପ୍ରତି ହପ୍ତାରେ ଦୁଇଟି ଦିନ ପୂରା ଲାଗିଯାଏ । ସେ ସବୁ ମଧ୍ୟ ସେ ନିଜେ ହାତରେ ଲେଖନ୍ତି, କ୍ୱଚିତ ଅନ୍ୟକୁ ଡାକ ଦିଅନ୍ତି ।

ବାକି ଦିନମାନଙ୍କରେ ଯେତେ ସମୟ ବଳେ ସେ ସବୁ ତାଙ୍କ ସଙ୍ଗେ ସାକ୍ଷାତ୍ କରିବାକୁ ଆସିଥିବା ଲୋକଙ୍କ ପିଛା କଟେ । ପ୍ରତ୍ୟହ ସେ ବହୁତ ସମୟ କର୍ମରତ ରହନ୍ତି । ଆଶ୍ରମବାସୀଙ୍କର ବ୍ୟକ୍ତିଗତ ଓ ସମୂହ ସମସ୍ୟା ଥାଏ ; ହରିଜନ ଓ କୃଷକଙ୍କର ମଙ୍ଗଳ ନିମନ୍ତେ ସେ ଯେଉଁ ସଂସ୍ଥାମାନ ଗଢ଼ିଥାନ୍ତି ତାହାର କାମ ଥାଏ ; ଖଦୀ ପ୍ରଚାର ବିଷୟରେ କାମ ଥାଏ ; ସମଗ୍ର ଭାରତ ପାଇଁ ଏକ ଜାତୀୟ ଭାଷାର ବିକାଶ କରିବା ସମସ୍ୟା ଥାଏ ; ପୁଣି ମୌଳିକ ଶିକ୍ଷାର ସମସ୍ୟା ଥାଏ । ଏ ସବୁ ପାଇଁ ଗାନ୍ଧୀଙ୍କ ନିର୍ଦ୍ଦେଶ ଓ ପରାମର୍ଶ ସବୁବେଳେ ଲୋଡ଼ା ପଡ଼ୁଥାଏ । ସଂବାଦପତ୍ର-ପ୍ରତିନିଧିମାନେ ବିଭିନ୍ନ ବିଷୟରେ ତାଙ୍କର ବିବୃତି ଆଦି ଲୋଡ଼ୁଥାନ୍ତି ; ବିଦେଶୀ ପର୍ଯ୍ୟଟକମାନେ ହରେକ ବିଷୟରେ ଗାନ୍ଧୀଙ୍କର ମତ କ'ଣ ପଚାରିବାକୁ ଆସି ପହଞ୍ଚନ୍ତି । ସର୍ବୋପରି ଭାରତୀୟ ଜାତୀୟ ଆନ୍ଦୋଳନର ଶ୍ରେଷ୍ଠ ବଡ଼ ନେତାମାନେ ଅହରହ ଗାନ୍ଧୀଙ୍କର ସମର୍ଥନ, ଉପଦେଶ ଓ ନିର୍ଦ୍ଦେଶ ଲୋଡ଼ୁଥାନ୍ତି । ଗାନ୍ଧୀ ରାଜନୀତିରେ ଥିଲାବେଳେ, କିମ୍ବା ୧୯୩୩ଠାରୁ ୧୯୩୯ ଭିତରେ ରାଜନୀତିରୁ ଅଲଗା ହୋଇ ରହିଲା ପରେ, ରାଜନୀତି ବାହାରେ ଥିଲାବେଳେ ନେତାମାନଙ୍କ ପରାମର୍ଶ ଲୋଡ଼ିବାରେ ଇତର ବିଶେଷ ହେଉ ନ ଥାଏ । ଜୀବନରେ ଖୁବ୍ ଅଳ୍ପ ଥର ମହାତ୍ମାଜୀ ଟେଲିଫୋନ ବ୍ୟବହାର କରିଥିଲେ । ସାଧାରଣତଃ ତାଙ୍କର ସବୁ କଥାବାର୍ତ୍ତା ମୁହାଁମୁହିଁ । ତାଙ୍କ ସଙ୍ଗେ ଦେଖା କରିବାକୁ ସମୟ ପାଇବା କଷ୍ଟକର ହେଉ ନ ଥିଲା । କେତେଜଣ ବିଶିଷ୍ଟ ଭାରତୀୟ ଓ ଇଂରେଜ ଏକାନ୍ତରେ ଗାନ୍ଧୀଙ୍କ ସଙ୍ଗେ କଥାବାର୍ତ୍ତା କହିବାର ମର୍ଯ୍ୟାଦା ପାଉଥିଲେ । ଅନ୍ୟମାନେ ସାକ୍ଷାତ୍ କଲାବେଳେ ଗାନ୍ଧୀଙ୍କ ସମ୍ମୁଖେ ଦଶ ବା ତହିଁରୁ ଅଧିକ ଲୋକ ଥାନ୍ତି । ଅବଶ୍ୟ ସାକ୍ଷାତ କରିବାକୁ ଆସିଥିବା ବ୍ୟକ୍ତି ଓ ଗାନ୍ଧୀଙ୍କ ମଧ୍ୟରେ

କଥାବାର୍ତ୍ତା ଚଳେ, ଅନ୍ୟମାନେ ତୂଷ୍ଣୀ ହୋଇ କେବଳ ଶୁଣୁଥାନ୍ତି । ୧୯୩୫, ଡିସେମ୍ବର ମାସରେ ଜନ୍ମନିୟନ୍ତ୍ରଣର ସମର୍ଥିକା ମିସେସ୍ ମାର୍ଗାରେଟ୍ ସ୍ୟାଙ୍ଗର ଗାନ୍ଧୀଙ୍କ ସହିତ ଦେଖା କରିଥିଲେ ; ୧୯୩୬ ଜାନୁଆରୀରେ ଆସିଥିଲେ ଜାପାନୀ ଲେଖକ ୟୋନେ ନଗୁଚି ; ୧୯୩୮ ଜାନୁଆରୀରେ ବ୍ରିଟିଶ୍ ରାଜନୀତିକ ଲର୍ଡ଼ ଲୋଥିଆନ୍ ଗାନ୍ଧୀଗ୍ରାମରେ ତିନି ଦିନ ରହିଥିଲେ । ମହାତ୍ମା ଗାନ୍ଧୀଙ୍କୁ ଭେଟିବାକୁ ଭାରତ ବାହାରୁ ଯେଉଁମାନେ ଆସିଥିଲେ ତାହାର ତାଲିକା କଲେ ତାହା ଆନ୍ତର୍ଜାତିକ ବିଶିଷ୍ଟ ଲୋକଙ୍କର ପରିଚୟ-ପଞ୍ଜି ପରି ମନେ ହେବ । ଭାରତ ବାହାରୁ ଆସୁଥିବା ପର୍ଯ୍ୟଟକମାନେ ମନେ କରୁଥିଲେ, ଗାନ୍ଧୀଙ୍କ ସଙ୍ଗେ ସାକ୍ଷାତ୍ ନ କଲେ ସେମାନଙ୍କ ଭାରତ-ପର୍ଯ୍ୟଟନ ଅପୂର୍ଣ୍ଣ ହୋଇଯିବ ।

ସେମାନଙ୍କର ଏପରି ମନେ କରିବା ଯଥାର୍ଥ । ଜଣେ ଲୋକକୁ ଗୋଟାଏ ଦେଶ ବୋଲି ଯେଉଁ ମାତ୍ରାରେ କୁହାଯାଇ ପାରେ, ଗାନ୍ଧୀ ସେଇମାତ୍ରାରେ ଥିଲେ ସମଗ୍ର ଭାରତ । ସେ ନିଜକୁ ହରିଜନ, ମୁସଲମାନ, ହିନ୍ଦୁ ଓ ଖ୍ରୀଷ୍ଟିଆନ, କୃଷକ ଓ ବୁଣାକାର ବୋଲି କହୁଥିଲେ । ଭାରତ ସଙ୍ଗେ ସେ ଓତଃପ୍ରୋତ ଭାବେ ମିଶି ଯାଇଥିଲେ । ବିରାଟ ଜନତା ଓ ବହୁ ବ୍ୟକ୍ତିଙ୍କ ସଙ୍ଗେ ସାମିଲ ହୋଇଯିବାର କ୍ଷମତା ତାଙ୍କର ଥିଲା । କଠିଣ ଉଦ୍ୟମ କରି ସ୍ଥାୟୀ ଭାବେ ଭାରତକୁ ସ୍ୱାଧୀନ କରିବାକୁ ସେ ଚାହୁଁଥିଲେ । ଭାରତର ପ୍ରତ୍ୟେକ ଲୋକ ମନ ଓ ଦେହରେ ମୁକ୍ତ ହେଲେ ଯାଇ ଭାରତ ଯଥାର୍ଥ ସ୍ୱାଧୀନ ହେବ ବୋଲି ତାଙ୍କର ଲକ୍ଷ୍ୟ ଥିଲା । ଇଂରେଜଙ୍କଠାରୁ ରାଜନୀତିକ ମୁକ୍ତି ପାଇବା ଅପେକ୍ଷା ଏ ମୁକ୍ତି ଅଧିକ ଆୟାସ-ସାଧ୍ୟ ହେବାର କଥା । ଏ ମୁକ୍ତି ମିଳିବ କିପରି ? ୧୯୪୫ରେ ସେ ଲେଖିଥିଲେ, 'ସାମାଜିକ ବିପ୍ଳବ ପାଇଁ ମୁଁ କୌଣସି ରାଜମାର୍ଗ ଦେଖାଇ ପାରିବି ନାହିଁ । ତେବେ ମୁଁ ମନେକରେ, ଆମ୍ଭମାନଙ୍କ ଜୀବନର ପ୍ରତ୍ୟେକ ଗୋଟି ବଡ଼ କାର୍ଯ୍ୟରେ ଯଦି ଏ ବିପ୍ଳବ ପ୍ରତିଫଳିତ ହେବ ତେବେ ଆମେ ଲକ୍ଷ୍ୟ ସ୍ଥଳରେ ପହଞ୍ଚି ପାରିବା ।' ଗାନ୍ଧୀଙ୍କ ଯୁଦ୍ଧଭୂମି ତେଣୁ ହୋଇଥିଲା ଜନତାର ହୃଦୟ । ସେଇଠାରେ ଗାନ୍ଧୀ ନିଜର ଆସ୍ଥାନ ପକାଇଥିଲେ । ଯୁଦ୍ଧର କେତେ ଅଳ୍ପ ଅଂଶ ସଫଳ ଓ ବିଜୟ ହାସଲ ହୋଇଛି ତାହା ସେ ସମସ୍ତଙ୍କଠାରୁ ଅଧିକ ଜାଣୁଥିଲେ । ଯେତେ ଅଳ୍ପ ସିଦ୍ଧି ମିଳିଥାଉ ପଛେ, ଶେଷ ପର୍ଯ୍ୟନ୍ତ ଲଢ଼ିବାକୁ ହେବ ବୋଲି ସେ ସଂକଳ୍ପ କରିଥିଲେ ; କାରଣ,

ସେ କହୁଥିଲେ, ମନୁଷ୍ୟର ଦୈନନ୍ଦିନ ଜୀବନରେ ସାମାଜିକ ବିପ୍ଳବର ପ୍ରଭାବ ନ ପଡ଼ିଲେ, 'ଆମେ ଜନ୍ମ ହେଲାବେଳେ ଭାରତ ଯାହା ଥିଲା, ମଲାବେଳକୁ ତାହା ତହୁଁ ଅଧିକ ସୁଖଶାନ୍ତିପୂର୍ଣ୍ଣ ହୋଇଥିବାର ଦେଖି ଯାଇପାରିବା ନାହିଁ। ସାମାଜିକ ବିପ୍ଳବ ଆରମ୍ଭ କରିଦେଲେ ନୂଆ ମଣିଷ ବାହାରି ପଡ଼ିବେ ନାହିଁ। ନୂଆ ଧରଣର ମଣିଷ ବାହାରିଲେ ଯାଇ ସାମାଜିକ ବିପ୍ଳବର ସୂତ୍ରପାତ ହେବ।'

———

# ସପ୍ତମ ପରିଚ୍ଛେଦ

## ଯୁଦ୍ଧରେ ଅବତରଣ

ଜବାହାରଲାଲ ନେହେରୁ ୧୯୩୬ ଓ ୧୯୩୭, ଦୁଇ ବର୍ଷଯାକ କଂଗ୍ରେସର ସଭାପତି ହୋଇଥିଲେ। ସାଧାରଣତଃ ଏଭଳି ସମ୍ମାନ ଜଣକୁ ମିଳେନାହିଁ। କିନ୍ତୁ ଏ ସମୟରେ ଦୀର୍ଘ ସମୟ କଂଗ୍ରେସର ସଭାପତି ରହିବା ଗୋଟାଏ ଗୁରୁ ଦାୟିତ୍ୱ। କିନ୍ତୁ ଜବାହାରଲାଲ ନିଜେ ମାନି-ଥିଲେ ଯେ, ଗାନ୍ଧୀ କଂଗ୍ରେସର ପ୍ରକୃତ କର୍ତ୍ତା, 'ସ୍ଥାୟୀଭାବେ ସେ ସଭାପତିଙ୍କ ସଭାପତି।' ଲୋକେ ଗାନ୍ଧୀଙ୍କୁ ମାନନ୍ତି, କଂଗ୍ରେସର ଆନୁଷ୍ଠାନିକ ସଭାପତିଙ୍କୁ ନୁହେଁ। ଗାନ୍ଧୀଙ୍କ ନିର୍ଦ୍ଦେଶ ଯୋଗୁଁ ହିଁ ୧୯୩୮, ଫେବ୍ରୁଆରି ମାସରେ କଂଗ୍ରେସର ହରିପୁରା ଅଧିବେଶନରେ ଯୋଗ ଦେଇଥିବା ପଚାଶ ହଜାର ଲୋକଙ୍କୁ ଢିଙ୍କିକୁଟା ଚାଉଳ, ଚକିପେଷା ଅଟା, ଗାଈ (ମଇଁଷିର ନୁହେଁ) ଘିଅ ଓ ଲହୁଣୀ ଯୋଗାଯାଇ ପାରିଥିଲା। ସମସ୍ତେ ତ ନିୟମ ମୁତାବକ ଖଦୀ ପିନ୍ଧିଥିଲେ। ରାଜନୀତିରେ ବା ରାଜନୀତି ବାହାରେ ଥାନ୍ତୁ ପଛେ, ଜନସାଧାରଣ ଓ ଅଧିକାଂଶ କଂଗ୍ରେସ ନେତାଙ୍କ ଉପରେ ଗାନ୍ଧୀଙ୍କର ଯେଉଁ ପ୍ରଭାବ ଥିଲା ତାହାରି ବଳରେ ସେ କଂଗ୍ରେସକର୍ମୀଙ୍କ ଚଳଣି ନିୟନ୍ତ୍ରିତ

କରି ପାରୁଥିଲେ ଏବଂ ଇଚ୍ଛା କଲେ କଂଗ୍ରେସର ସିଦ୍ଧାନ୍ତ ନାକଚ କରି ପାରୁଥିଲେ ।

ଗାନ୍ଧୀଙ୍କ ସମ୍ମତି ମିଳିବା ପରେ ଯାଇ କଂଗ୍ରେସ, ୧୯୩୭ର ଆଦ୍ୟରେ, ୧୯୩୫ର ଭାରତ ଶାସନ ଆଇନ୍ ଅନୁସାରେ ପ୍ରାଦେଶିକ ଓ କେନ୍ଦ୍ର ବ୍ୟବସ୍ଥା ସଭାକୁ ହେଉଥିବା ନିର୍ବାଚନରେ ଯୋଗ ଦେଇଥିଲା । ୧୯୩୭, ମେ ୧ ତାରିଖର 'ହରିଜନ'ରେ, କଂଗ୍ରେସ କାହିଁକି ନିର୍ବାଚନରେ ଯୋଗ ଦେଲା ବୁଝାଇ ଗାନ୍ଧୀ ଲେଖିଥିଲେ, 'ଏକଥା ମୁଁ କହି ରଖିବାକୁ ଚାହେଁ ଯେ, ସତ୍ୟ ଓ ଅହିଂସା ଯେପରି ଶାଶ୍ୱତ ଓ ଅପରିବର୍ତ୍ତନୀୟ ନୀତି, ବ୍ୟବସ୍ଥା ସଭା ବର୍ଜନ କରିବା ସେପରି ଶାଶ୍ୱତ ବା ଅପରିବର୍ତ୍ତନୀୟ କାର୍ଯ୍ୟ-ପନ୍ଥା ନୁହେଁ ।'

ଭାରତର ମୋଟ ଏଗାରଟି ପ୍ରଦେଶରୁ ଛ'ଟିରେ (ବମ୍ବେ, ମାନ୍ଦ୍ରାଜ, ଯୁକ୍ତପ୍ରଦେଶ, ବିହାର, ମଧ୍ୟପ୍ରଦେଶ ଓ ଓଡ଼ିଶା) କଂଗ୍ରେସ ନିର୍ବାଚନରେ ବହୁ ସଂଖ୍ୟାରେ ଜୟଲାଭ କଲା ; ଆସାମ, ବଙ୍ଗ ଓ ଉତ୍ତର-ପଶ୍ଚିମ ସୀମାନ୍ତ ପ୍ରଦେଶରେ କଂଗ୍ରେସ ଦଳ ଅନ୍ୟ ଯେ କୌଣସି ଦଳମାନଙ୍କଠାରୁ ଅଧିକ ସ୍ଥାନ ପାଇଲା ; କିନ୍ତୁ ସିନ୍ଧ ଓ ପଞ୍ଜାବରେ କଂଗ୍ରେସ ପାଇଲା ଖୁବ୍ ଅଳ୍ପ ସଂଖ୍ୟକ ସ୍ଥାନ । ଏଠାରେ ସେ ହେଲା ସଂଖ୍ୟାଲଘୁ ଦଳ ।

ପ୍ରଶ୍ନ ଉଠିଲା, ଯେଉଁ ପ୍ରଦେଶରେ କଂଗ୍ରେସ ସଂଖ୍ୟା-ଗରିଷ୍ଠତା ଲାଭ କରିଛି ସେଠାରେ ସେ ସରକାର ଗଢ଼ିବ କି ନାହିଁ । ୧୯୩୭, ମାର୍ଚ୍ଚ ମାସରେ, ଗାନ୍ଧୀଙ୍କ ପରାମର୍ଶ ଅନୁସାରେ କଂଗ୍ରେସ ସିଦ୍ଧାନ୍ତ କଲା ଯେ, ଏହି ପ୍ରଦେଶମାନଙ୍କରେ ଇଂରେଜ ଗଭର୍ଣ୍ଣରମାନେ ଯଦି ମନ୍ତ୍ରୀମଣ୍ଡଳର କାର୍ଯ୍ୟରେ ହସ୍ତକ୍ଷେପ ନ କରନ୍ତି ତେବେ କଂଗ୍ରେସ ମନ୍ତ୍ରୀମଣ୍ଡଳ ଗଢ଼ିବ । ସ୍ୱାଧୀନତା ପାଇବା ପାଇଁ ଦେଶକୁ ସଂଗଠିତ କରିବାରେ ମନ୍ତ୍ରୀତ୍ୱ-ଗ୍ରହଣ ସହାୟକ ହେବ, ଏଇ ଆଶାରେ କଂଗ୍ରେସ ଏଭଳି ନିଷ୍ପତ୍ତି କରିଥିଲା ।

ସମଗ୍ର ଦେଶରେ କଂଗ୍ରେସ ମେମ୍ବରଙ୍କ ସଂଖ୍ୟା ୧୯୩୮ର ପ୍ରାରମ୍ଭରେ ଥିଲା ୩,୧୦୨,୧୧୩ ; ୧୯୩୯ ପ୍ରାରଂଭରେ ଏହା ୪,୪୭୮,୭୨୦କୁ ଉଠିଗଲା । କିନ୍ତୁ ଗାନ୍ଧୀ ଏଭଳି ସଂଖ୍ୟାବୃଦ୍ଧିରେ କେବେଁ ଭଲ ପାଉ ନ ଥିଲେ ; କ୍ଷମତା ପାଇ, ମନ୍ତ୍ରୀତ୍ୱ ପାଇଁ ଲୋଭପ୍ରିତ ଲୋକଙ୍କଦ୍ୱାରା ପଥଭ୍ରଷ୍ଟ ନ ହେବାକୁ ସେ କଂଗ୍ରେସବାଲାଙ୍କୁ ସତର୍କ କରି ଦେଇଥିଲେ । କଂଗ୍ରେସ ଦଳରେ କଳଙ୍କି ଲାଗିଯାଉଛି ବୋଲି ତାଙ୍କୁ ଲାଗିଲା । ସେ ମାନ

ଯାଇଥିଲେ ଯେ, ବର୍ତ୍ତମାନ ପରିସ୍ଥିତିରେ ଆଇନ୍-ଅମାନ୍ୟ-ଆନ୍ଦୋଳନ ସୁରୁ କରି ହେବ ନାହିଁ ; କାରଣ, 'ଜନତା ଭିତରେ ଅହିଂସଭାବ ଦେଖା ଯାଉଥିଲେ ହେଁ, ଯେଉଁମାନେ ଜନତାକୁ ନେତୃତ୍ୱ ଦେବେ ସେମାନଙ୍କ ମନରେ ଯଥେଷ୍ଟ ଅହିଂସ ଭାବ ଥିଲା ପରି ମନେ ହେଉନାହିଁ ।

କଂଗ୍ରେସ ନେତାମାନଙ୍କ କାର୍ଯ୍ୟ ଦେଖି ସେ ନିରାଶ ହୋଇଥିଲେ ବୋଲି ଏ ଉକ୍ତିରୁ ସୂଚିତ ହେଉଛି । ତେଣୁ ଯେତେବେଳେ ସୁଭାଷ ଚନ୍ଦ୍ର ବୋଷ ୧୯୩୯ରେ କଂଗ୍ରେସର ସଭାପତି ନିର୍ବାଚିତ ହୋଇଗଲେ—ସେ ୧୯୩୮ରେ ବି କଂଗ୍ରେସ ସଭାପତି ଥିଲେ—ଓ ଗୋଟାଏ ବଳଦ ଗାଡ଼ିରେ ୫୧ଟା ବଳଦ ଯୋଚିଇ ସେଥିରେ ବସି କଂଗ୍ରେସ ଅଧିବେଶନକୁ ଶୋଭା-ଯାତ୍ରାରେ ଆସିଲେ, ସେତେବେଳେ ଗାନ୍ଧୀ ତୁନି ହୋଇ ରହି ନ ପାରି ବାହାରିଲେ ଓ ସଭାପତିପଦରୁ ଇସ୍ତଫା ଦେଇ ଓହରିଯିବାକୁ ତାଙ୍କୁ ବାଧ୍ୟ କଲେ । ସୁଭାଷ ବୋଷ ପ୍ରକାଶ୍ୟରେ ହିଂସାମାର୍ଗର ସମର୍ଥନ କରୁଥିଲେ ଏବଂ ବ୍ରିଟେନ୍ ବିରୁଦ୍ଧରେ ସଶସ୍ତ୍ର ବିଦ୍ରୋହ କରିବାର କଳ୍ପନା କରୁଥିଲେ । ସେ ଥିଲେ ଜଣେ ଶକ୍ତିଶାଳୀ ଓ ଜନପ୍ରିୟ ନେତା ଓ ବଲ୍ଲଭଭାଇ ପଟେଲଙ୍କ କବଜାରେ ଥିବା କଂଗ୍ରେସକୁ ନିଜ ହାତକୁ ଆଣିବାକୁ ଧମକାଉଥିଲେ ।

ଧର୍ମଘଟ ଓ ଧର୍ମ ସଂପର୍କୀୟ ଗଣ୍ଡଗୋଳ ବଳ ପ୍ରୟୋଗ କରି ଦମନ କରିଥିବା ଯୋଗୁଁ ପ୍ରାଦେଶିକ ସରକାରମାନଙ୍କ ଉପରେ ମଧ୍ୟ ଗାନ୍ଧୀ ଦୋଷାରୋପ କରିଥିଲେ । ୧୯୩୦ ପରି ଦଶକ ଯେତିକି ଯେତିକି ଆଗେଇଲା ଗାନ୍ଧୀଙ୍କର ଯୁଦ୍ଧ-ବିରୋଧୀ ମନୋଭାବ ସେତିକି ଦୃଢ଼ତର ହେବାକୁ ଲାଗିଲା । କିନ୍ତୁ ବୋଷ, ନେହେରୁ ବା କଂଗ୍ରେସର ପ୍ରସିଦ୍ଧ ମୁସଲମାନ ନେତା ଅବୁଲ କାଲମ ଆଜାଦ, କେହି ଯୁଦ୍ଧବିରୋଧୀ ନ ଥିଲେ ।

ଭାରତର ମୁଖ୍ୟ ଜାତୀୟବାଦୀଙ୍କ ଭିତରେ ମାତ୍ର ଜଣେ 'ଗାନ୍ଧୀ' ଆଖ୍ୟା ପାଇଥିଲେ । ସେ ଜଣକ ଖାଁ ଅବଦୁଲ୍ ଗଫର୍ ଖାଁ ; 'ସୀମାନ୍ତ ଗାନ୍ଧୀ' ନାମରେ ସେ ଭାରତରେ ପରିଚିତ । ସେ ଜାତିରେ ପଠାଣ । ଖାଇବର ଗିରିସଂକଟ ସମୀପବର୍ତ୍ତୀ ଦୁର୍ଗମ, ବହୁ କଥା ଓ କାହାଣୀ ସମନ୍ୱିତ ଉତ୍ତର-ପଶ୍ଚିମ ସୀମାନ୍ତର ସେ ଅଧିବାସୀ । ସେଠାରେ ବାସ କରନ୍ତି ଦୁର୍ଦ୍ଦାନ୍ତ ଆଫ୍ରିଦି, ଓ୍ୱାଜିର ଇତ୍ୟାଦି ପାର୍ବତ୍ୟ ଜାତି । ସେମାନଙ୍କୁ ବ୍ରିଟିଶ ସରକାର ଦମନ କରିବାରେ ଅସମର୍ଥ ହୋଇ ପଇସାପତ୍ର ଦେଇ ବୋଧଶୋଧ କରିବାରେ ଲାଗିଥିଲେ । ଗଫର୍ ଖାଁ ଉଚ୍ଚତାରେ ୬ଫୁଟ୍ ୪ଇଞ୍ଚ, ଶରୀର ସୁଗଠିତ ଓ

ବଳଶାଳୀ ; ମୁହଁ ସୁଠାମ, ଅଣ୍ଡାକୃତି । ମୁହଁରେ ଓ ମୁଣ୍ଡରେ ଧଳା ଓ କଳା ମିଶା ମୁଛ ଓ ବାଳ । ୧୯୪୨ରେ ଦେବଦାସଙ୍କ ଘରେ ମୁଁ ତାଙ୍କୁ ଦେଖିଲି ବେଳକୁ ତାଙ୍କ ବୟସ ଷାଠିଏ ; କିନ୍ତୁ ତାଙ୍କ କଳା, ତେଜସ୍ୱୀନ୍ ଓ ତୀକ୍ଷ୍ଣ ଆଖି ଦୁଇଟି ତିରିଶବର୍ଷ ବୟସ୍କ ଯୁବକର ବୋଲି ମନେ ହୋଇଥିଲି । ତାଙ୍କ ପିତାଙ୍କର ଓ ତାଙ୍କର ବହୁତ ସଂପତ୍ତି ଥିଲି, କିନ୍ତୁ ସେ ଗାନ୍ଧୀଙ୍କ ଦୀକ୍ଷା ଧରି ସବୁ ସଂପତ୍ତି ତ୍ୟାଗ କରିଥିଲେ । (ଜେଲରେ ନ ଥିଲିବେଳେ) ସେ ଗାଁରେ ରହନ୍ତି ଏବଂ ଗ୍ରାମ୍ୟ ଲୋକଙ୍କ ପରି ଚଳନ୍ତି । ସେ ପିନ୍ଧନ୍ତି ଖଣ୍ଡେ ଫିକା ନେଳି ରଙ୍ଗର ଲମ୍ବା କୁରୁତା ଓ ଖୁବ୍ ଢିଲା ପାଇଜାମା । ଉଭୟ ଖଦଡ଼ କନାରେ ତିଆରି । ଗୋଡ଼ରେ ଜୋତା ନ ଥାଏ । ତାଙ୍କ ଗୋଡ଼ ଦୁଇଟିର ଆକୃତି ଖୁବ୍ ସୁନ୍ଦର ଏବଂ ତାଙ୍କ ବିଶାଳ ହାତ ଦୁଇଟି ଶ୍ୱେତ ବୋଲି କୁହାଯାଇ-ପାରେ । ମୋ ସଙ୍ଗେ କରମର୍ଦ୍ଦନ କରି ସେ ନିଜ ହାତ ନେଇ ହୃଦୟରେ ଛୁଆଁଇଲେ । ଗାନ୍ଧୀ ଯେପରି ଭାରତର ମାଟି ଓ ବାଲିର ଲୋକ ଥିଲେ, ଗଫର ଖାଁ ସେହିପରି ଭାରତର ଗିରି, ଦରି ଓ କୂଳଖାଇ ଚାଲିଥିବା ଗିରି-ନଦୀର ଲୋକ । ଅବ୍ୟର୍ଥ ଲକ୍ଷ ବିନ୍ଧି ପାରୁଥିବା ଓ ଠିକକ କଥାରେ ଗୁଳି ଚଳାଉଥିବା ପାର୍ବତ୍ୟ ଲୋକଙ୍କର ଉଷ୍ଣ ରକ୍ତ ତାଙ୍କ ଧମନୀରେ ପ୍ରବାହିତ ହେଉଥିଲେ ହେଁ, ଖାଁ ଅବ୍‌ଦୁଲ୍ ଗଫର ଖାଁ ପୂର୍ଣ୍ଣ-ଅହିଂସା ନୀତି ଅବଲମ୍ବନ କରିଛନ୍ତି । ତାଙ୍କର ଆଦର୍ଶରେ ଅନୁପ୍ରାଣିତ ହୋଇ ଉତ୍ତର-ପଶ୍ଚିମ ସୀମାନ୍ତର ହଜାର ହଜାର ପଠାଣ ଭାଇ ଅହିଂସା ନୀତି ଗ୍ରହଣ କରିଛନ୍ତି । ଏମାନଙ୍କୁ ନେଇ ଗଫର ଖାଁ ଖୁଦାଇ ଖିଦ୍‌ମତଗାର୍ (ଭଗବାନ୍‌ଙ୍କ ସେବକ) ବୋଲି ଗୋଟିଏ ସଂଗଠନ ଗଢ଼ିଛନ୍ତି ।

ଲକ୍ଷ ଲକ୍ଷ ଲୋକ ଗାନ୍ଧୀଙ୍କୁ ମାନୁଥିଲେ, କୋଟି କୋଟି ଲୋକ ତାଙ୍କୁ ଭକ୍ତି ଓ ଶ୍ରଦ୍ଧା କରୁଥିଲେ ; ଓ ବହୁ ସଂଖ୍ୟକ ଲୋକ ନିଜକୁ ଗାନ୍ଧୀବାଦୀ ବୋଲି କହୁଥିଲେ ; କିନ୍ତୁ ମୁଷ୍ଟିମେୟ ଲୋକ ଗାନ୍ଧୀଙ୍କ ପଥରେ ଚଳୁଥିଲେ । ଗାନ୍ଧୀ ଏ କଥା ଭଲ କରି ଜାଣିଥିଲେ ସୁଦ୍ଧା ଆଗ୍ନେୟଗିରିର ଉତ୍ପାତ ପରି ତାଙ୍କର ପ୍ରଚଣ୍ଡ ଶକ୍ତି ଦବି ଯାଇ ନ ଥିଲି କିମ୍ବା ଇସ୍ପାତ ପରି କଠୋର ତାଙ୍କ ସଂକଳ୍ପ ଭାଙ୍ଗିଯାଇ ନ ଥିଲି । ପରନ୍ତୁ, ୧୯୩୦ ପରର ଦଶକରେ ଚୀନ, ଆବିସିନିଆ, ସ୍ପେନ୍, ଜେକୋସ୍ଲୋଭାକିଆ ଓ ସର୍ବୋପରି ଜର୍ମାନୀରେ ତମସା ଘୋଟି ଆସିବାର ଦେଖି ପୂର୍ଣ୍ଣ ଯୁଦ୍ଧବିରୋଧୀ ଶାନ୍ତିବାଦ ପ୍ରତି ତାଙ୍କର ଶ୍ରଦ୍ଧା ବଢ଼ିବାରେ ଲଗିଲି ।

୧୯୩୯, ଫେବୃଆରୀ ୬ ତାରିଖରେ ସେ ଲେଖିଲେ, 'ଘନ ଅନ୍ଧକାର ଭିତରେ ମୋର ଶାନ୍ତିବାଦୀ ବିଶ୍ୱାସର ତେଜ ଅଧିକ ଉଜ୍ଜ୍ୱଳ ହେଉଛି ।' ଦ୍ୱିତୀୟ ମହାଯୁଦ୍ଧ ନିକଟେଇ ଆସୁଥିବାର ତାଙ୍କୁ ଜଣା ପଡୁଥାଏ ।

୧୯୨୧ରେ ସେ ଲେଖିଥିଲେ, 'ସ୍ୱାଧୀନ ଭାରତରେ ମଧ୍ୟ, ଯେଉଁ-ମାନେ ଅସ୍ତ୍ର ଧାରଣ କରିବାକୁ ଇଚ୍ଛୁକ, ସେମାନେ ଅସ୍ତ୍ର ଧରି ନିଜ ଦେଶ ପାଇଁ ଲଢ଼ନ୍ତୁ ବୋଲି ମୁଁ ଅକୁଣ୍ଠିତ ଚିତ୍ତରେ ପରାମର୍ଶ ଦେବି ।' ଫରାସୀ ଦେଶର ରେଭରେଣ୍ଡ୍ ବି. ଡି. ଟିଟ୍, ଟଲଷ୍ଟୟଙ୍କ ବନ୍ଧୁ ଚେର୍ଟକୋଭ୍ ଏବଂ ଅନ୍ୟ ଇଉରୋପୀୟ ଶାନ୍ତିବାଦୀମାନେ, ଦକ୍ଷିଣ ଆଫ୍ରିକାର ଦୁଇଟି ସମର ଓ ପ୍ରଥମ ମହାସମରରେ ଗାନ୍ଧୀ ଯୁଦ୍ଧରେ ସହଯୋଗ କରି-ଥିବାରୁ ତାଙ୍କର ସମାଲୋଚନା କରିଥିଲେ । ୧୯୨୮ରେ ଏମାନଙ୍କୁ ଜବାବ୍ ଦେଇ ଗାନ୍ଧୀ କହିଥିଲେ, 'ବସ୍ତୁତଃ ମୁଁ ଏ ତିନୋଟି ସମରରେ ସହଯୋଗ କରିଥିଲି । ମୁଁ ଯେଉଁ ସମାଜର ଅନ୍ତର୍ଭୁକ୍ତ ସେ ସମାଜରୁ ମୁଁ ନିଜକୁ ବିଚ୍ଛିନ୍ନ କରି ପାରି ନ ଥିଲି । ଏପରି କରିବା ପାଗଲାମି ହୋଇଥାନ୍ତା ।'

ସାଧାରଣ ଜୀବନର ସବା ପ୍ରଥମରୁ ଗାନ୍ଧୀ ଶାନ୍ତିବାଦୀ ହୋଇଥିଲେ, ତାହା ତାଙ୍କ ସ୍ୱଭାବ ଓ ମନୋବୃତ୍ତିର ଅନୁକୂଳ ହୋଇଥାନ୍ତା । କିନ୍ତୁ ଗଭୀର ଚିନ୍ତା କରି କୌଣସି ଗୋଟିଏ ମତକୁ ଦୃଢ଼ ଭାବରେ ଧରି ରହିବାର ନିଷ୍ଠା ଗାନ୍ଧୀଙ୍କର କ୍ୱଚିତ ଜାଗ୍ରତ ହେଉଥିଲା । ୧୯୩୦ ଓ ୧୯୪୦ର ମଧ୍ୟ ଭାଗରେ ତାଙ୍କର ଯେଉଁ ପୂର୍ଣ୍ଣ ଯୁଦ୍ଧବିରୋଧୀ ଭାବ ଜାତ ହୋଇଥିଲା, ତାହା ଆଂଶିକ ଭାବେ, ବ୍ରିଟିଶ ସାମ୍ରାଜ୍ୟଠାରୁ ନ୍ୟାୟ ପାଇବାର ଆଶା ବହୁମାତ୍ରାରେ କମି ଯିବାରୁ, ହୋଇଥିଲା । ପୂର୍ବେ ବ୍ରିଟିଶ ସାମ୍ରାଜ୍ୟର ନ୍ୟାୟପରତାରେ ତାଙ୍କର ଅଖଣ୍ଡ ବିଶ୍ୱାସ ଥିଲା । ଯେ ଯାହାହେଉ, ଗାନ୍ଧୀ ଯେ ଏତେବେଳକୁ ପୂର୍ଣ୍ଣ ଶାନ୍ତିବାଦୀ ହୋଇଥିଲେ, ତାହା ମୁଖ୍ୟତଃ ତାଙ୍କର ମାନସିକ ବିକାଶର ଫଳ ।

ଗାନ୍ଧୀ ଜେଲରେ ଥାନ୍ତି ; ଜଣେ ତାଙ୍କର ଜଣେ ସହବନ୍ଦୀଙ୍କୁ ଗୋଟାଏ କଙ୍କଡ଼ାବିଚ୍ଛା ମାରିଦେଲା । ଗାନ୍ଧୀ ନିଜେ ମୁହଁ ଲଗାଇ ବିଷ ଶୋଷି ଦେଇଥିଲେ । ପାରଚୁରେ ଶାସ୍ତ୍ରୀ ନାମରେ ଜଣେ କୁଷ୍ଠୀ ସେବାଗ୍ରାମ ଆଶ୍ରମରେ ବାସ କରିବାକୁ ନିବେଦନ କଲେ । ସେ ଥିଲେ ଜଣେ ସଂସ୍କୃତ-ପଣ୍ଡିତ । କେତେକ ଆଶ୍ରମବାସୀ, ରୋଗ ସଂକ୍ରାମକ ବୋଲି ଭୟ କରି ଏ ନିବେଦନ ପ୍ରତ୍ୟାଖ୍ୟାନ କରିବାକୁ ଚାହିଁଲେ । ଗାନ୍ଧୀ ଖାଲି ଯେ ତାଙ୍କୁ

ଆଶ୍ରମରେ ରହିବାକୁ ଦେଲେ ତାହା ନୁହେଁ, ସେ ତାଙ୍କ ଗୋଡ଼ ହାତ ବି ଘଷିଲେ......। ରାଜକୋଟ ଦେଶୀୟ ରାଜ୍ୟର ପ୍ରଜାଙ୍କ ନାଗରିକ ଅଧିକାର ଦାବୀ ନେଇ ଗାନ୍ଧୀ ୧୯୩୯, ମାର୍ଚ୍ଚରେ ଆମରଣ ଅନଶନ ଆରମ୍ଭ କରିଥିଲେ । ପିଲାଦିନେ ଏଇଠାରେ ଗାନ୍ଧୀ ପାଠ ପଢ଼ୁଥିଲେ । ଆମରଣ ଅନଶନ ସଂକଳ୍ପ ତ୍ୟାଗ କରିବାକୁ ଡାକ୍ତରମାନେ ଗାନ୍ଧୀଙ୍କୁ ପ୍ରବର୍ତ୍ତାଇଲେ । ତାଙ୍କ ହୃତ୍‌ପିଣ୍ଡର ପେଶୀମାନ କଠିଣ ହେବାର ଲକ୍ଷଣ ଦେଖାଯାଇଥାଏ ।

କିନ୍ତୁ ଆତ୍ମାର ଡାକ ଆଗରେ ଶରୀରର ପ୍ରୟୋଜନକୁ ତୁଚ୍ଛ ମନେ କରିବା ଥିଲା ଅନ୍ୟତମ ଗାନ୍ଧୀନୀତି । ନୈତିକ ବିଚାରରେ କୌଣସି କାର୍ଯ୍ୟ ଅବଶ୍ୟ କର୍ତ୍ତବ୍ୟ ବୋଲି ବିବେଚିତ ହେଲେ ଶରୀରକୁ ସେଥିରେ ବାଧା ଦେବାର ଅଧିକାର ମିଳୁ ନ ଥିଲା । ଶରୀର ଦୁର୍ବଳ ଥିଲେ କଷ୍ଟ ପାଇବ, ହୁଏତ ସହି ନ ପାରି ଶେଷରେ ମରିବ, କିନ୍ତୁ କର୍ତ୍ତବ୍ୟ ନ କରି ବୋଲି ପ୍ରବର୍ତ୍ତାଇ ପାରିବ ନାହିଁ ।

ଗାନ୍ଧୀଙ୍କ ଶାନ୍ତିବାଦର ଉତ୍ସ ଏଇଠାରେ । ଅତୀତରେ ସେ ଯୁଦ୍ଧରେ ଯୋଗ ଦେଇଥିଲେ । ବ୍ରିଟେନ୍ ପ୍ରତି ଅନୁକଂପା ଏବଂ ଦେଶ ପ୍ରତି କର୍ତ୍ତବ୍ୟ-ବୋଧରେ ସେ ଏବିଷୟରେ ଅନୁପ୍ରେରିତ ହୋଇଥିଲେ । ଭାରତୀୟ ଜାତୀୟତାର ଅପେକ୍ଷାକୃତ ସଂକୀର୍ଣ୍ଣ ପରିସରରୁ ସେ ଉପରକୁ ଉଠିପାରି ନ ଥିଲେ । ନୈତିକତାର ବିଚାର ସେତେବେଳେ ତାଙ୍କୁ ପୂରାପୂରି ପ୍ରଭାବିତ କରି ନ ଥିଲା ।

କିନ୍ତୁ ଦ୍ୱିତୀୟ ମହାଯୁଦ୍ଧ ନିକଟବର୍ତ୍ତୀ ହେଲାବେଳକୁ ତାଙ୍କର ଅନାସକ୍ତ ଭାବ ଅଧିକ ପୁଷ୍ଟ ହୋଇ ସାରିଥିଲା । ପୁଣି ସେ କହିଥିଲେ, ଯୁଦ୍ଧର ବିଭୀଷିକାରେ ମୁଁ ଆଜ ଯେତେ ବ୍ୟଥିତ ହେଉଛି ସେତେବେଳେ (୧୯୧୪ରୁ ୧୯୧୮ ଭିତରେ) ସେତେ ବ୍ୟଥିତ ହୋଇ ନ ଥିଲି । ଦ୍ୱିତୀୟ ମହାଯୁଦ୍ଧ ପ୍ରଥମ ମହାଯୁଦ୍ଧ ତୁଳନାରେ 'ଅଧିକ ଭୟାବହ' ହେବ ବୋଲି ତାଙ୍କୁ ଦିଶିଥିଲା ; ସେ କହିଥିଲେ, '(ଦ୍ୱିତୀୟ ଯୁଦ୍ଧର) ଅପେକ୍ଷାକୃତ ଅଧିକ ଭୟାବହତା ଯୋଗୁଁ ମୁଁ ଗତ ଯୁଦ୍ଧପାଇଁ ସ୍ୱେଚ୍ଛାପ୍ରବୃତ୍ତ ହୋଇ ଯେପରି ସୈନିକ ସଂଗ୍ରହରେ ଲାଗିଥିଲି, ଏଥର ସେପରି କରି ପାରିବି ନାହିଁ ।'

ଅନ୍ୟମାନଙ୍କୁ ଯୁଦ୍ଧ ବିରୋଧୀ ମନୋଭାବ ଗ୍ରହଣ କରିବାକୁ ମନାଇ-ପାରିବେ ବୋଲି ତାଙ୍କର ଆଶା ନ ଥିଲା । ପ୍ରଥମ ଯୁଦ୍ଧବେଳେ ବିଦେଶରୁ ଯୁଦ୍ଧରେ ଯୋଗ ଦେବା ବିରୁଦ୍ଧରେ କେଞ୍ଚା ପାଇ ମଧ୍ୟ ସେ ଯୁକ୍ତି କରିଥିଲେ

ଯେ, ଭାରତରେ ହିଂସା ବିଦ୍ୟମାନ ଥିବା ବେଳେ, ସେ ପାଶ୍ଚାତ୍ୟ ଦେଶରେ ଅହିଂସା ପ୍ରଚାର କରିପାରିବେ ନାହିଁ । ୧୯୩୫ରେ କିନ୍ତୁ ସେ ଆବିସିନିଆ ଅଧିବାସୀଙ୍କୁ ଯୁଦ୍ଧରୁ ନିବର୍ତ୍ତିବା ପାଇଁ ପରାମର୍ଶ ଦେଇଥିଲେ ।

ଗାନ୍ଧୀ କହିଥିଲେ, 'ସବଳର ଅହିଂସା, ଅର୍ଥାତ୍ ଯେଉଁ ଅହିଂସା ଭାଙ୍ଗିଯାଏ ପଛେ ଲଏଁ ନାହିଁ, ସେହି ଅହିଂସାମନ୍ତ୍ର ଯଦି ଆବିସିନିଆର ଲୋକେ ଗ୍ରହଣ କରିଥାନ୍ତେ ତେବେ ଆବିସିନିଆକୁ ଜୟ କରିବାରେ ମୁସୋଲିନଙ୍କର ଆଗ୍ରହ ରହି ନ ଥାନ୍ତା । ଧରି, ଏମାନେ ଯଦି କେବଳ ଏତିକି କହିଥାନ୍ତେ, "ଆମ ଦେଶକୁ ଧୂଳିରେ ମିଶାଇ ଦେବ, ପୋଡ଼ି ପାଉଁଶ କରିଦେବ ବୋଲି ଯଦି ବିଚାରିଛ, ଆସ, କର, ଆମର ଆପତ୍ତି ନାହିଁ । କିନ୍ତୁ ତୁମ ସଙ୍ଗେ ଜଣେ ହେଲେ ଆବିସିନିଆ ଅଧିବାସୀ ସହଯୋଗ କରିବାକୁ ବାହାରିବେ ନାହିଁ ।" ତେବେ ମୁସୋଲିନ କରିଥାନ୍ତେ କ'ଣ ? ତାଙ୍କର ତ ମରୁଭୂମି ଦରକାର ନ ଥିଲା ··! ଆବିସିନିଆର ଲୋକେ ଯଦି ଯୁଦ୍ଧକ୍ଷେତ୍ରରୁ ଓହରି ଯାଇଥାନ୍ତେ, ଏବଂ ମୁସୋଲିନ ତାଙ୍କୁ ବଣ ଜଙ୍ଗଲରେ ଗୋଡ଼ାଇ ମାରିଲେ ପ୍ରତିରୋଧ କରି ନ ଥାନ୍ତେ, ତେବେ ସେମାନଙ୍କର ଏହି ଆପାତନିଷ୍କ୍ରିୟତା, ସମ୍ମୁଖ ଯୁଦ୍ଧରେ ଇଟାଲୀୟ ସୈନ୍ୟଙ୍କ ପ୍ରତିରୋଧ କରିବା ଅପେକ୍ଷା ଅଧିକ ଫଳପ୍ରଦ ହୋଇଥାନ୍ତା । ଅବଶ୍ୟ ତତ୍କାଳରେ ଏ ନିଷ୍କ୍ରିୟତାର ଫଳ ଆଖିକୁ ଦିଶି ନ ଥାନ୍ତା । ଏପଟେ ହିଟ୍‌ଲର୍ ଓ ମୁସୋଲିନ ଓ ସେପଟେ ଷ୍ଟାଲିନ୍ ହିଂସାକାଣ୍ଡର ସଦ୍ୟଫଳ ଦେଖାଇ ଦେବାକୁ ସମର୍ଥ ହେଉଛନ୍ତି । କିନ୍ତୁ ଚେଙ୍ଗିସ୍ ଖାଁଙ୍କ ହତ୍ୟାକାଣ୍ଡର ଫଳ ପରି ଏ ହିଂସାକାଣ୍ଡର ଫଳ କ୍ଷଣସ୍ଥାୟୀ ।

ଜେକୋସ୍ଲୋଭାକିଆର କରୁଣ କାହାଣୀ ଓ ଜର୍ମାନୀ ଦେଶର ଇହୁଦୀଙ୍କ ଦୁରବସ୍ଥା ଗାନ୍ଧୀଙ୍କ ହୃଦୟରେ ଆହୁରି ଅଧିକ ବ୍ୟଥା ଦେଇଥିଲା । ୧୯୩୮, ସେପ୍ଟେମ୍ବରରେ ଇଂଲଣ୍ଡର ଚେମ୍ବରଲେନ୍ ଓ ଫ୍ରାନ୍‌ସର ଡାଲାଡିଅର୍ ମ୍ୟୁନିଚ୍ ଚୁକ୍ତି କରି ଜେକୋସ୍ଲୋଭାକିଆକୁ ଦଗା ଦେଇଥିଲେ । ଗାନ୍ଧୀ ଏ ବିଷୟରେ ଲେଖିଥିଲେ, 'ମ୍ୟୁନିଚ୍ ଚୁକ୍ତିଦ୍ୱାରା ୟୁରୋପରେ ଯେଉଁ ଶାନ୍ତି ସ୍ଥାପିତ ହେଲା, ତଦ୍ୱାରା ହିଂସାର ଜୟ ହେଲା । ଜର୍ମାନୀ ଓ ଇଟାଲୀର ମିଳିତ ହିଂସ୍ର ଶକ୍ତି ଆଗରେ ଡରିଯାଇ ଇଂଲଣ୍ଡ ଓ ଫ୍ରାନ୍‌ସ୍ ଯେଉଁ ଚୁକ୍ତି କଲେ ତାହା ଚୁକ୍ତି ନୁହେଁ···ଇଂଲଣ୍ଡ ଓ ଫ୍ରାନ୍‌ସ୍‌ର ପରାଜୟ । ହିଂସାର ଭୟରେ ଏ ଦୁହେଁ ଏ ପରାଜୟ ବରଣ କରିନେଲେ । କିନ୍ତୁ

ଜର୍ମାନୀ ଓ ଇଟାଲି କ'ଣ ଲାଭ ପାଇଲେ ? ସେମାନେ ନିଜ କାର୍ଯ୍ୟଦ୍ୱାରା ମାନବ ସମାଜର ନୈତିକ ସଂପଦର ଅଭିବୃଦ୍ଧିରେ କ'ଣ ସହାୟ ହେଲେ ?'' ଏହା ୧୯୩୮ ମସିହାର ଅକ୍‌ଟୋବର ୮ ତାରିଖରେ 'ହରିଜନ' ପତ୍ରିକାରେ ଲେଖା ହୋଇଥିଲା । ସେତେବେଳେ ଏହା ଯେଡ଼େ ଅର୍ଥପୂର୍ଣ୍ଣ ବୋଲି ମନେ ହୋଇଥିଲା, ଆଜି ତହିଁରୁ ଏହା ଢେର୍ ବେଶୀ ଅର୍ଥପୂର୍ଣ୍ଣ ବୋଲି ପ୍ରମାଣିତ ହୋଇଛି । ଗାନ୍ଧୀ ଭବିଷ୍ୟତ୍‌ବାଣୀ ଶୁଣାଇ ପୁଣି ଲେଖିଥିଲେ, 'ଏ ଚୁକ୍ତି-ଦ୍ୱାରା ସମର କିଛି କାଳ ଘୁଞ୍ଚିଗଲା ମାତ୍ର । ମଝିରେ ଯେଉଁ ଟିକିକ ସମୟ ନିଃଶ୍ୱାସ ନେବାକୁ ମିଳୁଛି, ତା'ର ଭିତରେ ଜେକୋସ୍ଲୋଭାକିଆର ଅଧିବାସୀଙ୍କୁ ଅହିଂସାର ମାର୍ଗ ଗ୍ରହଣ କରିବାକୁ ମୁଁ ନିବେଦନ କରୁଛି । ଭବିଷ୍ୟତକୁ ତାଙ୍କ ପାଇଁ ଯେଉଁ ଦୁର୍ଗତି ସାଇତା ହୋଇ ରହିଲା ସେ କଥା ତାଙ୍କୁ ଅଦ୍ୟାପି ଜଣା ନାହିଁ । ଅହିଂସା ନୀତି ଅବଲମ୍ବନ କଲେ ତାଙ୍କର ଅଧିକା କିଛି ଅନିଷ୍ଟ ହେବ ନାହିଁ । ସ୍ପେନ୍ ଗଣତନ୍ତ୍ରର ଭାଗ୍ୟ ସୂତାଖିଅରେ ଝୁଲୁଛି । ଚୀନ୍ ଦେଶର ମଧ୍ୟ ସେହି ଅବସ୍ଥା । ଶେଷରେ ଯେ ଏ ସମସ୍ତଙ୍କର ବିପର୍ଯ୍ୟୟ ହେବ ତାହା ଏମାନଙ୍କ ପକ୍ଷରେ ନ୍ୟାଯ୍ୟ ନ ଥିବାରୁ ନୁହେଁ··· । ଅଧିକ ଶକ୍ତିଶାଳୀ ଶତ୍ରୁ ବିରୁଦ୍ଧରେ ଲଢ଼ି ଯୁଦ୍ଧଭୂମିରେ ପ୍ରାଣ ହରାଇବା ସାହସର କାମ ସ୍ୱୀକାର କରିବାକୁ ହେବ । ଯୁଦ୍ଧ କରିବାକୁ ନାରାଜ ହୋଇ ସୁଦ୍ଧା, ଅନ୍ୟାୟରେ ଦେଶକୁ ଅଧିକାର କରିବାକୁ ଆସିଥିବା ଶକ୍ତି ଆଗରେ ମୁଣ୍ଡ ନ ନୁଆଁଇବା ମଧ୍ୟ ସାହସର କାର୍ଯ୍ୟ ବୋଲି ମୁଁ କହିବାକୁ ଚାହେଁ···।'

୧୯୩୮, ଅକ୍‌ଟୋବର ମାସରେ ଗଫର୍ ଖାଁଙ୍କ ସଙ୍ଗେ ସୀମାନ୍ତର ପଠାଣମାନଙ୍କ ମଧ୍ୟରେ ଗସ୍ତ କଲାବେଳେ, ଗାନ୍ଧୀ 'ହରିଜନ'ରେ ଗୋଟିଏ ପ୍ରବନ୍ଧ ଲେଖିଥିଲେ ; ଶିରୋନାମା ଦେଇଥିଲେ 'ମୁଁ ଯଦି ଜେକୋ-ସ୍ଲୋଭାକିଆର ଅଧିବାସୀ ହୋଇଥାନ୍ତି' । ସେଥିରେ ସେ କହିଥିଲେ, 'ଗଣତନ୍ତ୍ର ରକ୍ତପାତ କରିବାକୁ ଭୟ କରେ । ଇୟୁରୋପର ଦୁଇଜଣଯାକ ଏକଚ୍ଛତ୍ରଶାସକ ଯେଉଁ ନୀତି ଧରିଛନ୍ତି ତଦନୁସାରେ ହଣାକଟାକୁ ଶଂକିବାର ନାମ ଭୀରୁତା··· । ଯୁଦ୍ଧବୃତ୍ତି ମଣିଷକୁ ନିଚ୍ଛକ ଏକଚ୍ଛତ୍ରଶାସନ ଆଡ଼କୁ ଟାଣି ନେଉଛି । ଅହିଂସା ନୀତି ହିଁ ମଣିଷକୁ ଗଣତନ୍ତ୍ର ଆଡ଼କୁ ଆଗେଇ ନେବ··· । ଋଷିଆ କଥା ବର୍ତ୍ତମାନ ବିଚାର୍ଯ୍ୟ ବିଷୟ ନୁହେଁ, କାରଣ ସେ ମେଳାକୁ ବାହାରି ନାହିଁ । କିନ୍ତୁ ସେ ମଧ୍ୟ ହିଂସାନୀତିର ଉପାସକ । ଋଷିଆରେ ଜଣେ

ଏକଚ୍ଛତ୍ର ଶାସକ ଅଛନ୍ତି, ଯେ କି ଶାନ୍ତିର ସ୍ୱପ୍ନ ଦେଖୁଛନ୍ତି । ସେ ବିଶ୍ୱାସୁଛନ୍ତି, ରକ୍ତର ସମୁଦ୍ରରେ ପହଁରି ସେ ଶାନ୍ତି ପାଖେ ଯାଇ ପହଞ୍ଚିବେ···।'

'ଜେକ୍‌ମାନଙ୍କୁ ଓ ତାଙ୍କ ଜରିଆରେ "କ୍ଷୁଦ୍ର" ଓ "ଦୁର୍ବଳ" ବୋଲିଥିବା ଜାତିମାନଙ୍କୁ ମୁଁ ଯାହା କହିବାକୁ ଚାହେଁ ତାହା କହିବା ଆଗରୁ ଏ ଉପକ୍ରମଣିକା ଦେବା ମୁଁ ଆବଶ୍ୟକ ମନେକଲି । ମୁଁ ଜେକ୍-ମାନଙ୍କୁ ମୋର ମନୋଭାବ ଜଣାଇବାକୁ ଚାହେଁ, କାରଣ ସେମାନଙ୍କ ଦୁର୍ଗତି ଦେଖି ମୁଁ ଖାଲି ମାନସିକ ନୁହେଁ, ଶାରୀରିକ ଯନ୍ତ୍ରଣା ପର୍ଯ୍ୟନ୍ତ ଭୋଗିବାକୁ ଆରମ୍ଭ କରିଛି ।' ଜେକ୍‌ମାନଙ୍କୁ ସେ ଏଥିରେ ପରାମର୍ଶ ଦେଇଥିଲେ, 'ହିଟଲରଙ୍କ ହୁକୁମ ମାନିବାକୁ ନାହିଁ କର, ଏବଂ ତାଙ୍କ ଆଦେଶ ଅମାନ୍ୟ କରି ଅଶସ୍ତ୍ର ରହି ମୃତ୍ୟୁବରଣ କର । ଏପରି କରିବାଦ୍ୱାରା, ଶରୀର ନାଶ ସିନା ହେବ, ଆତ୍ମା ରକ୍ଷା ହୋଇଯିବ, ଆତ୍ମାର ରକ୍ଷା ହିଁ ମଣିଷର ଇଜ୍ଜତ ରକ୍ଷା ।'

ଶାନ୍ତିବାଦୀ ସାଧାରଣତଃ କହିଥାନ୍ତି 'ହତ୍ୟା କରିବା ପାପ' । ଏହି ବିଚାରରେ ସେ ଯୁଦ୍ଧରୁ ନିବର୍ତ୍ତି ରହନ୍ତି । ଶାନ୍ତିବାଦୀଙ୍କୁ ଅପରପକ୍ଷରୁ ପ୍ରଶ୍ନ ହୁଏ, 'ମୁଁ ଅନ୍ୟ ହାତରେ ମରିବା ଅପେକ୍ଷା, ତା'କୁ ମାରିବାକୁ ଭଲ ମନେକରେ'। ଏକଥାକୁ ଗାନ୍ଧୀଙ୍କର ଜବାବ୍, 'ନା, ମୁଁ ବରଂ ମରିବି, ମାରିବି ନାହିଁ ।'

ଗାନ୍ଧୀ ହରିଜନରେ ଲେଖିଥିଲେ, 'ମନୁଷ୍ୟ ଯାହା ନିଜର 'ନ୍ୟାଯ୍ୟ' ବୋଲି ମନେକରେ ସେଥି ସକାଶ ମନୁଷ୍ୟ ନିଜର ରକ୍ତପାତ କରିପାରେ, ଏଭଳି କରିବା ଉଚିତ । ତା'ର 'ନ୍ୟାଯ୍ୟ ଦାବୀ'ର ଯେ ପ୍ରତିରୋଧ କରୁଛି, ତାହାର ରକ୍ତପାତ କରିବା ମନୁଷ୍ୟ ପକ୍ଷରେ ଉଚିତ ନୁହେଁ ।'

୧୯୩୮ ଡିସେମ୍ବର ମାସରେ ଆନ୍ତର୍ଜାତୀୟ ଧର୍ମପ୍ରଚାରକଙ୍କ ସମ୍ମିଳନୀ ମାନ୍ଦ୍ରାଜ ନିକଟବର୍ତ୍ତୀ ତମ୍ବାରାମ୍ ଠାରେ ବସିଥିଲା । ତାହା ସରିବା ପରେ ବହୁ ଖ୍ରୀଷ୍ଟିଆନ୍ ଧର୍ମଯାଜକ ସେବାଗ୍ରାମ ଆସି ଗାନ୍ଧୀଙ୍କ ପଦପ୍ରାନ୍ତରେ ବସି-ଥିଲେ । ଏମାନଙ୍କ ଭିତରେ ଥିଲେ ଡକ୍‌ଟର୍ ଜନ୍ ଆର୍. ମଟ୍, ଆନ୍ତର୍ଜାତୀୟ ଧର୍ମ ପ୍ରଚାରକ ସମ୍ମିଳନୀର ସଂପାଦକ ରେଭରେଣ୍ଡ୍ ଉଇଲିଅମ୍ ପ୍ୟାଟନ୍, ଉତ୍ତର ଆମେରିକାର ଧର୍ମଯାଜକ ସମିତିମାନଙ୍କ ମିଳିତ ସଂଘର ସଂପାଦକ ରେଭ୍‌ରେଣ୍ଡ୍ ଲେସ୍‌ଲୀ ବି. ମସ୍ ଏବଂ ଆହୁରି ଅନେକ ବିଶିଷ୍ଟ ଧର୍ମାତ୍ମା । ପ୍ୟାରେଲାଲ୍ ନାୟାର୍ ଆଲୋଚନାର ବିବରଣୀ ଟିପୁଥାନ୍ତି ।

ଆଲୋଚନା ଆରମ୍ଭ ହେଉ ହେଉ ଧର୍ମଯାଜକମାନେ, ଗାନ୍ଧୀ ଜେକ୍‌ମାନଙ୍କୁ ଯେଉଁ ଉପାୟ ବତାଇଥିଲେ ତାର ଉପରେ ଜେରା ଆରମ୍ଭ କଲେ । ଜଣେ ଧର୍ମଯାଜକ କହିଲେ, 'ଆପଣ ହିଟ୍‌ଲର୍ ଓ ମୁସୋଲିନଙ୍କୁ ଚିହ୍ନି ନାହାନ୍ତି । ତାଙ୍କ ନୈତିକ ବିଚାରକୁ ଆବେଦନ କରିବାରେ କିଛି ଲାଭ ହେବ ନାହିଁ । ଏଭଳି ଆବେଦନ ତାଙ୍କ ଅନ୍ତରରେ ପଶିବ ନାହିଁ । ସେମାନଙ୍କର ବିବେକ ନାହିଁ । ସେମାନେ ମନକୁ ଏପରି ପଥର କରି ଦେଇଛନ୍ତି ଯେ, ପୃଥିବୀର ମତାମତ ତାଙ୍କ ହୃଦୟରେ ପଶିବ ନାହିଁ । ଏପରି ସ୍ଥଳେ, ଆପଣଙ୍କ ଉପଦେଶ ଗ୍ରହଣ କରି ଜେକ୍‌ମାନେ ଯଦି ଅହିଂସଭାବେ ସେ ଦୁହିଙ୍କର ପ୍ରତିରୋଧ କରିବାକୁ ବସନ୍ତି, ତେବେ ଆପଣା ଘୁଏଁ ଯାଇ ତାଙ୍କ ଖାପଚରେ ପଡ଼ିବେ ନାହିଁ କି ?'

ଗାନ୍ଧୀ ପ୍ରତିବାଦ କଲେ, 'ଆପଣ ଯେଉଁ ଯୁକ୍ତି ବାଢ଼ୁଛନ୍ତି ସେଥିରେ ଧରି ନିଆ ଯାଉଛି ଯେ, ମୁସୋଲିନି ଓ ହିଟଲର୍‌ଙ୍କ ପରି ଡିକ୍‌ଟେଟରମାନଙ୍କୁ ପରିତ୍ରାଣ ମିଳିବାର ସଂଭାବନା ନାହିଁ ।'

ଗାନ୍ଧୀ ଇହୁଦୀମାନଙ୍କୁ ଯେଉଁ ପରାମର୍ଶ ଦେଇଥିଲେ ତା' ଉପରେ ଏହିପରି ବା ଏହାଠାରୁ ଅଧିକ ଉଷ୍ମାର ସହିତ ଆଲୋଚନା ହୋଇଥିଲା ।

ଗାନ୍ଧୀ, ୧୯୩୮, ନଭେମ୍ବର ୧୧ତାରିଖରେ 'ହରିଜନ'ରେ ଲେଖି-ଥିଲେ—

'ମୋ'ର ଇହୁଦୀମାନଙ୍କ ପ୍ରତି ପୂର୍ଣ୍ଣ ସହାନୁଭୂତି ଅଛି । ସେମାନେ ଖ୍ରୀଷ୍ଟିଆନ୍ ଧର୍ମର ଅସ୍ପୃଶ୍ୟ ହୋଇ ରହିଛନ୍ତି ...। 'ସଭ୍ୟତାକୁ ଇହୁଦୀମାନଙ୍କର ଅବଦାନ' ନାମକ ଖଣ୍ଡିଏ ପୁସ୍ତକ ଜଣେ ଇହୁଦୀ ବନ୍ଧୁ ମୋ ପାଖକୁ ପଠାଇଛନ୍ତି । ଏ ଖଣ୍ଡି ସେସିଲ୍ ରଥ୍‌ଙ୍କ ଲିଖିତ । ପୃଥିବୀର ସାହିତ୍ୟ, କଳା, ସଂଗୀତ, ନାଟକ, ବିଜ୍ଞାନ, ଚିକିତ୍ସା ବିଦ୍ୟା, କୃଷି ପ୍ରଭୃତିର ବିକାଶରେ ଇହୁଦୀମାନେ କ'ଣ କ'ଣ କରିଛନ୍ତି ତାହାର ବିବରଣୀ ଏ ପୁସ୍ତକରେ ଅଛି ...। ଅପରପକ୍ଷେ ଜର୍ମାନ୍‌ମାନେ ଇହୁଦୀମାନଙ୍କୁ ଯେଉଁଭଳି ନିର୍ଯାତିତ କରିଛନ୍ତି ତାହାର ପଟାନ୍ତର ଇତିହାସରେ ନାହିଁ । ହିଟଲର୍ ଯେପରି ଉନ୍ମାଦ ହୋଇ ପଡ଼ିଛନ୍ତି ପୂର୍ବକାଳର ସ୍ୱେଚ୍ଛାଚାରୀ ଶାସକମାନେ କେବେ ସେପରି ହୋଇ ନଥିଲେ । ନୀତିଦୃଷ୍ଟିରୁ ଯଦି ଯୁଦ୍ଧ କରିବା ସମର୍ଥିତ ହୁଅନ୍ତା, ତେବେ ମାନବିକତା ରକ୍ଷା କରିବା ସକାଶ ସମଗ୍ର ମାନବଜାତି ପକ୍ଷରୁ, ସମ ଗୋଟାଏ ସଂପ୍ରଦାୟର ନିର୍ବିଚାର ଉତ୍ପୀଡ଼ନ

କରିବା କାରଣ, ଜର୍ମାନୀ ବିରୁଦ୍ଧରେ ଯୁଦ୍ଧ ଘୋଷଣା କରିବା ସର୍ବଥା ଯଥାର୍ଥ ହୁଅନ୍ତା । କିନ୍ତୁ ମୁଁ ଯୁଦ୍ଧ କରିବାର ପକ୍ଷପାତୀ ନୁହେଁ ।

'ସେମାନଙ୍କ ଉପରେ ସଂଗଠିତ ଭାବେ ଯେଉଁ ନିର୍ଲଜ୍ଜ ଉତ୍ପୀଡ଼ନ ଚାଲିଛି, ଇହୁଦୀମାନେ ତା'ର ସଫଳ ପ୍ରତିରୋଧ କରି ପାରିବେ ନା ନାହିଁ ?...... । ମୁଁ ଯଦି ଇହୁଦୀ ହୋଇଥାନ୍ତି ଓ ଜର୍ମାନୀରେ ଜନ୍ମ ହୋଇ ଜର୍ମାନୀରେ ଜୀବିକାର୍ଜ୍ଜନ କରୁଥାନ୍ତି, ତେବେ ଜର୍ମାନୀର ସର୍ବୋଚ୍ଚ ଖ୍ରୀଷ୍ଟିଆନ୍ ଅଧିବାସୀ ଜର୍ମାନୀକୁ ନିଜର ଜନ୍ମଭୂମି ବୋଲି ଯେଭଳି ଗର୍ବ କରେ ମୁଁ ବି ସେହିପରି ଦାବୀ କରନ୍ତି । ଏବଂ ସେ ଯଦି ମୋତେ ଗୁଳିକରି ମାରିବାକୁ ବା ଅନ୍ଧକୂପରେ ପକାଇବାକୁ ଆସନ୍ତା ତେବେ ମୁଁ ସାହସର ସହିତ ତା'ର ସମ୍ମୁଖୀନ ହୁଅନ୍ତି......ଏପରି କରିବା ପୂର୍ବରୁ, ଅନ୍ୟ ଇହୁଦୀମାନେ ମୋ ସଙ୍ଗେ ମିଶି ଅତ୍ୟାଚାରୀ ବିରୁଦ୍ଧରେ ଅହିଂସ ପ୍ରତିରୋଧ କରିବାକୁ ବାହାରନ୍ତୁ ବୋଲି ମୁଁ ପ୍ରତୀକ୍ଷା କରନ୍ତି ନାହିଁ । ମୋର ଦୃଢ଼ ବିଶ୍ୱାସ ରହିଥାନ୍ତା ଯେ ଅବଶେଷରେ ମୋ ସଂପ୍ରଦାୟର ସମସ୍ତେ ମୋର ନିଶ୍ଚୟ ଅନୁଗାମୀ ହେବେ । ଯଦି ଜଣେ ଇହୁଦୀ ବା ସମଗ୍ର ଇହୁଦୀ ସଂପ୍ରଦାୟ ମୁଁ ଏଥିରେ ଦେଇଥିବା ବ୍ୟବସ୍ଥା ଗ୍ରହଣ କରିଯାନ୍ତି, ତେବେ ସେମାନେ ବର୍ତ୍ତମାନ ଯାହା ଭୋଗୁଛନ୍ତି ତହିଁରୁ ଅଧିକ କଷ୍ଟ ସେମାନଙ୍କୁ ଭୋଗିବାକୁ ପଡ଼ିବ ନାହିଁ...। ଇହୁଦୀମାନେ ସଂଘବଦ୍ଧ ଭାବେ ହିଟଲର୍‌ଙ୍କ ପ୍ରତିରୋଧ କରିବାକୁ ବସିଲେ ହୁଏତ ହିଟଲର୍ ସ୍ୱାର୍ଥାନ୍ଧଭାବେ ହିଂସାନୀତି ପ୍ରୟୋଗ କରି ଇହୁଦୀଙ୍କ ପ୍ରତିରୋଧର ସଦ୍ୟ ପ୍ରତିକ୍ରିୟାରେ ସମଗ୍ର ଇହୁଦୀ ସଂପ୍ରଦାୟକୁ ସମୂଳେ ବିନାଶ କରିବାକୁ ବସିପାରନ୍ତି । କିନ୍ତୁ ଇହୁଦୀମାନେ ମନ ଦୃଢ଼ କରି ସ୍ୱେଚ୍ଛାପ୍ରଣୋଦିତ ଭାବେ ଆତ୍ମତ୍ୟାଗ କରିବାକୁ ବାହାରିଲେ, ମୁଁ ଯେଉଁ ନିର୍ମମ ସମୂହ ହତ୍ୟାର ଆଶଂକା କରୁଛି ତାହା ସତ୍ତ୍ୱେ ସେଦିନ ଇହୁଦୀମାନେ ପ୍ରଭୁ ଜେହୋବା ଜଣେ ନିର୍ମମ ସ୍ୱୈରାଚାରୀ ଶାସକଙ୍କଠାରୁ ତାଙ୍କୁ ମୁକ୍ତି ଦେଲେ ବୋଲି ଭଗବତ୍ ପ୍ରାର୍ଥନା କରି ପାରନ୍ତି । ଭଗବତ୍-ବିଶ୍ୱାସୀଙ୍କ ପ୍ରତି ମୃତ୍ୟୁ ଭୟର କାରଣ ହୋଇ ପାରେ ନାହିଁ...।

'ଦକ୍ଷିଣ ଆଫ୍ରିକାର ଭାରତୀୟମାନେ ଯେଉଁଭଳି ପରିସ୍ଥିତିରେ ଥାଇ ସତ୍ୟାଗ୍ରହ କରିଥିଲେ, ଜର୍ମାନୀର ଇହୁଦୀମାନଙ୍କ ପକ୍ଷରେ ସତ୍ୟାଗ୍ରହ କରିବାକୁ ପରିସ୍ଥିତି ତା'ଠାରୁ ବହୁଗୁଣରେ ଅନୁକୂଳ । ଜର୍ମାନୀର ଇହୁଦୀମାନେ ଗୋଟିଏ ସଂଘବଦ୍ଧ ସମଜାତୀୟ ସଂପ୍ରଦାୟ । ଦକ୍ଷିଣ ଆଫ୍ରିକାର ଭାରତୀୟଙ୍କ

ତୁଳନାରେ ସେମାନେ ଅତୀବ ପ୍ରତିଭା ଓ ପ୍ରତିପତ୍ତିଶାଳୀ । ଏବଂ ସେମାନଙ୍କ ପଛରେ ସମଗ୍ର ଜଗତର ସଂଗଠିତ ସମର୍ଥନ ଅଛି । ମୋର ଦୃଢ଼ବିଶ୍ୱାସ ଯଦି ତାଙ୍କ ଭିତରୁ ଜଣେ ସାହସୀ ଓ ଦୂରଦର୍ଶୀ ଲୋକ ବାହାରି ଅହିଂସ ଆନ୍ଦୋଳନରେ ତାଙ୍କୁ ନେତୃତ୍ୱ ଦିଏ, ତେବେ ତାଙ୍କ ନୈରାଶ୍ୟର ଦୁର୍ଦ୍ଦିନ ଆଶାର ବସନ୍ତରେ ପରିଣତ ହେବାକୁ ଆଖି ପିଛୁଳାଏ ମାତ୍ର ସମୟ ଲାଗିବ । ଆଜି ଯାହା ଅପମାନଜନକ ମଣିଷ-ଶିକାରରେ ପରିଣତ ହୋଇଛି, ତାହା ରୂପାନ୍ତରିତ ହୋଇ, ଜେହୋବାଙ୍କ ଅନୁଗ୍ରହରେ ପ୍ରାପ୍ତ ଦୁଃଖ ଯନ୍ତ୍ରଣା ସହିବାର ଶକ୍ତି ବଳରେ ବଳୀୟାନ୍ ଅଣସ୍ତ୍ର ନରନାରୀ-ମାନଙ୍କର ଶାନ୍ତ ଓ ଦୃଢ଼ ପ୍ରତିରୋଧରେ ପରିଣତ ହୋଇଯିବ···ଜର୍ମାନୀର ଖ୍ରୀଷ୍ଟିଆନ୍‌ଙ୍କୁ ଜର୍ମାନୀର ଇହୁଦୀମାନେ ସ୍ଥାୟୀ ଭାବରେ ଜିଣି ଯିବେ, ଅର୍ଥାତ୍ ମାନବୀୟ ମହତ୍ତ୍ୱ ଦେଖି ତା'ର ଯଥାଯଥ ମୂଲ୍ୟ ଦେବାକୁ ଏମାନେ ଖ୍ରୀଷ୍ଟିଆନ୍-ମାନଙ୍କୁ ଶିଖାଇ ପାରିବେ ।'

ଏଭଳି ଲେଖିବା ଯୋଗୁଁ ହିଟଲର୍‌ଙ୍କ ନାଜି ଦଳର ସମ୍ବାଦ-ପତ୍ରମାନେ ଗାନ୍ଧୀଙ୍କର ତୀବ୍ର ସମାଲୋଚନା କରିଥିଲେ; ଭାରତ ଉପରେ ପ୍ରତିଶୋଧ ନେବେ ବୋଲି ଧମକାଇଲେ । ଗାନ୍ଧୀ ଉତ୍ତର ଦେଲେ, 'ମୋ ନିଜ ଉପରେ ବା ମୋ ଦେଶ ଉପରେ ବିପଦ ପଡ଼ିବ ବୋଲି ବା ଭାରତ ଓ ଜର୍ମାନୀର ସମ୍ପର୍କରେ ତିକ୍ତତା ଆସିବ ବୋଲି, ମୁଁ ମୋର ଅନ୍ତରତମ ପ୍ରଦେଶରେ ଯାହାକୁ ଶତକଡ଼ା ଶହେ ସତ୍‌ପରାମର୍ଶ ବୋଲି ବିଚାର କରୁଛି, ତାହା ପ୍ରକାଶ କରିବାକୁ ଯଦି ଇତସ୍ତତଃ ହୁଏ ତେବେ ମୁଁ ନିଜକୁ କାପୁରୁଷ ବୋଲି ମନେ କରିବି ।'

ତମ୍ବାରମ୍‌ରୁ ପ୍ରତ୍ୟାଗତ ଧର୍ମଯାଜକମାନେ, ଇହୁଦୀଙ୍କ ବିଷୟରେ ଗାନ୍ଧୀ ଦେଇଥିବା ବିବୃତି ଉପରେ ତନ୍ନ ତନ୍ନ ଭାବେ ପ୍ରଶ୍ନ ପଚାରିଲେ । ଗାନ୍ଧୀ କହିଲେ, 'ଯଥାର୍ଥ ଅହିଂସାବାଦୀ ହେବାକୁ ହେଲେ ନିଜର ପ୍ରତିପକ୍ଷଙ୍କ ଶ୍ରଦ୍ଧା କରିବାକୁ ହେବ, ଏବଂ ସେ ମାଡ଼ ମାରିଲେ ବି ତାଙ୍କ ମଙ୍ଗଳକାମନା କରି ବିଭୁଙ୍କ ପ୍ରାର୍ଥନା କରିବାକୁ ହେବ ।' ଗାନ୍ଧୀଙ୍କ କହିବା ଅନୁସାରେ ଇହୁଦୀମାନେ ହିଟ୍‌ଲର୍‌ଙ୍କ ପାଇଁ ପ୍ରାର୍ଥନା କରିବାକୁ ପଡ଼ିବ । 'ଯଦି ଜଣେ ବି ଇହୁଦୀ ଏହିପରି କରେ, ସେ ନିଜର ଆତ୍ମସମ୍ମାନ ବଜାୟ ରଖିବା ସଙ୍ଗେ ସଙ୍ଗେ ଏଭଳି ଗୋଟିଏ ଦୃଷ୍ଟାନ୍ତ ନିଜର ସମଧର୍ମୀଙ୍କ ଆଗରେ ରଖି ପାରିବ, ଯାହା ସମ୍ପନ୍ନ ହେଲେ ସମଗ୍ର ଇହୁଦୀ ସମ୍ପ୍ରଦାୟକୁ ରକ୍ଷା

କରିପାରିବ ଓ ଭବିଷ୍ୟତର ମାନବଜାତିଙ୍କ ପାଇଁ ଏକ ସମୃଦ୍ଧ ଆଦର୍ଶ ରଖି ଯାଇ ପାରିବ ।'

ଏହି ସମୟରେ ହେର୍‌ମ୍ୟାନ୍ କ୍ୟାଲେନ୍‌ବ୍ୟାକ୍ ସେବାଗ୍ରାମ ଆଶ୍ରମରେ ରହୁଥିଲେ । ଗାନ୍ଧୀ ତାଙ୍କ କଥା ଉତ୍ଥାପନ କରି କହିଲେ, 'ୟାଙ୍କର ଅହିଂସାନୀତି ପ୍ରତି ବୌଦ୍ଧିକ ସମର୍ଥନ ଅଛି । କିନ୍ତୁ ସେ କହୁଛନ୍ତି, ହିଟଲରଙ୍କ ପାଇଁ ପ୍ରାର୍ଥନା କରି ପାରିବେ ନାହିଁ । ···ହିଟଲରଙ୍କ ପ୍ରତି ତାଙ୍କର ଏ କ୍ରୋଧ ସକାଶ ମୁଁ ତାଙ୍କୁ ଦୋଷ ଦେଉନାହିଁ । ସେ ଅହିଂସ ହେବାକୁ ଚାହାନ୍ତି କିନ୍ତୁ ତାଙ୍କ ଜାତିଭାଇଙ୍କ ପ୍ରତି ଯେଉଁ ନିର୍ଯାତନା ହୋଇଛି ତାହା ସେ ସହ୍ୟ କରି ପାରୁ ନାହାନ୍ତି । ୟାଙ୍କ ପକ୍ଷରେ ଯାହା, ହଜାର ହଜାର ଇହୁଦୀଙ୍କ ପକ୍ଷରେ ମଧ୍ୟ ସେଇଆ ହୋଇଛି । 'ଶତ୍ରୁକୁ ଶ୍ରଦ୍ଧା କର' ଏକଥା ମନରେ ଭାବିବାକୁ ମଧ୍ୟ ଏମାନେ ସମର୍ଥ ନୁହନ୍ତି । ଖାଲି ୟାଙ୍କର ନୁହେଁ, ଲକ୍ଷ ଲକ୍ଷ ଲୋକଙ୍କ ବିଚାରରେ "ପ୍ରତିହିଂସା ଆନନ୍ଦଦାୟକ, କ୍ଷମା ଐଶ୍ୱରିକ" । ଖୁବ୍ ଅଳ୍ପ ସଂଖ୍ୟକ ଈଶ୍ୱରପରାୟଣ ଲୋକ ଇହୁଦୀ, ଖ୍ରୀଷ୍ଟିଆନ୍ ବା ହିନ୍ଦୁ ଗୋଷ୍ଠୀ ଭିତରେ ଅଛନ୍ତି । ଗୋଟିଏ ମାତ୍ର କ୍ଷୁଦ୍ରକାୟ ହିନ୍ଦୁ ଏବଂ ତାଙ୍କ ଅନୁଚରଙ୍କ ଭିତରୁ ଅଳ୍ପ କେତେଜଣ ଐଶ୍ୱରିକ ଆଦର୍ଶରେ ପ୍ରତିପକ୍ଷକୁ କ୍ଷମା ଦେବାକୁ ସମର୍ଥ ଥିଲେ ।

ଆମେରିକାର ନିୟୁୟର୍କରୁ ପ୍ରକାଶିତ 'ଜିଉଇସ୍ ଫ୍ରଣ୍ଟିଅର' ସାମୟିକ ପତ୍ର, ଗାନ୍ଧୀଙ୍କ ଇହୁଦୀ ସତ୍ୟାଗ୍ରହ ପ୍ରସ୍ତାବକୁ ଠିକ ଠିକ କରି କାଟି ଦେଇଥିଲେ; ପ୍ରକାଶକ ଗାନ୍ଧୀଙ୍କ ପାଖକୁ ଏ ପତ୍ରିକାରୁ ଖଣ୍ଡିଏ ପଠାଇ ଦେଇଥିଲେ । ଗାନ୍ଧୀ ତାଙ୍କ ପ୍ରସ୍ତାବ ବିରୁଦ୍ଧରେ ଏଥିରେ ଥିବା କିଛି ଯୁକ୍ତିମାନଙ୍କୁ ବିସ୍ତୃତଭାବେ ଉଦ୍ଧାର କରି ଆଲୋଚନା କରିଥିଲେ । ଗାନ୍ଧୀ ଉତ୍ତରରେ କହିଥିଲେ, 'ମୁଁ ଏଭଳି ଆଶା କେବେହେଁ ପୋଷଣ କରି ନ ଥିଲି ଯେ, ଇହୁଦୀମାନେ ହଠାତ୍ ମୋ' ମତ ଗ୍ରହଣ କରିଯିବେ । ଯଦି ଜଣେ ବି ଇହୁଦୀ ମୋର କଥାର ଯଥାର୍ଥତା ଉପଲବ୍ଧି କରି ମୋ' ମତର ଅବଲମ୍ବନ କରେ ତେବେ ମୋର ସନ୍ତୁଷ୍ଟ ହେବାର କଥା···(ଜିଉଇଶ୍-ଫ୍ରଣ୍ଟିଅର୍‌ର) ଲେଖକ କହିଛନ୍ତି, "ଯଦିବା ଜଣେ ଗାନ୍ଧୀ ଇହୁଦୀଙ୍କ ଭିତରୁ ବାହାରେ ତେବେ ସେ ପାଞ୍ଚ ମିନିଟ୍ ମାତ୍ର କାର୍ଯକାରୀ ରହିପାରିବେ, ତା' ପରେ ତାଙ୍କୁ ତୁରନ୍ତ ହାଣମୁହଁକୁ ନିଆଯିବ ।" ଏହା ଖୁବ୍ ସଂଭବ ବୋଲି ମୁଁ ମାନୁଛି । କିନ୍ତୁ ୟା ହେଲେ ବି ମୁଁ ଯାହା କହିଛି ତାହା

ଅପ୍ରମାଣିତ ହେଲା ବୋଲି ମୁଁ ମନେ କରୁନାହିଁ । ଏପରି ହେଲେ ବି ଅହିଂସାର ଉପଯୋଗିତାରେ ମୋର ବିଶ୍ୱାସ ଟଳିବ ନାହିଁ । ହଜାର ହଜାର ନ ହେଲେ ବି, ଶହ ଶହ ଲୋକଙ୍କ ଆତ୍ମତ୍ୟାଗ ନିରଙ୍କୁଶ ଶାସକଙ୍କ କ୍ଷୁଧା ନିବାରଣ କରିବାକୁ ପ୍ରୟୋଜନ ହୋଇପାରେ ବୋଲି ମୋର ମନେ ହେଉଛି···। ଯେଉଁମାନେ କଷ୍ଟ ସହିବେ, ସେମାନେ ତା'ର ଫଳ ନିଜର ଜୀବନରେ ଦେଖିବାକୁ ଚାହିଁବାର ନୁହେଁ । ଏ ବିଷୟରେ ହିଂସାମାର୍ଗ ଅହିଂସା ମାର୍ଗଠାରୁ ଅଧିକ ଫଳବନ୍ତ ନୁହେଁ···।' ତାଙ୍କ ମୃତ୍ୟୁ ଫଳରେ ପୃଥିବୀର ଉପକାର ହେବ, ବା ଅନ୍ତତଃ ନିଜ ପକ୍ଷର ଜିଣା ହେବ, ଏ ବିଷୟରେ କୌଣସି ଜବାବ୍‌ର ପ୍ରତ୍ୟାଶା ନ କରି ତ ଲକ୍ଷ ଲକ୍ଷ ଲୋକ ଯୁଦ୍ଧକ୍ଷେତ୍ରରେ ପ୍ରାଣ ଦିଅନ୍ତି । କିନ୍ତୁ ସ୍ୱେଚ୍ଛାପ୍ରଣୋଦିତ ହୋଇ ଅହିଂସା ସଂଗ୍ରାମରେ ଆତ୍ମାହୂତି ଦେବା କଥା ପଡ଼ିଲା ବେଳକୁ ଏପରି କିଏ ଅଛି ଯେ, ଭୀଷଣ ଭାବରେ ବିରକ୍ତ ନ ହେଉଛି ?

ମୁଁ ୧୯୪୬ରେ ଗାନ୍ଧୀଙ୍କ ଆଗେ ଏ ପ୍ରସଙ୍ଗ ଉତ୍‌ଥାପନ କରିଥିଲି । ସେତେବେଳକୁ ହିଟ୍‌ଲର୍ ମରି ସାରିଥାନ୍ତି । ଗାନ୍ଧୀ କହିଲେ, 'ହିଟ୍‌ଲର୍ ୫୦ ଲକ୍ଷ ଇହୁଦୀଙ୍କୁ ମାରିଦେଲେ । ଏ ଯୁଗର ଏହା ସବୁଠାରୁ ବଳି ଜଘନ୍ୟ ଅପରାଧ । କିନ୍ତୁ ମୁଁ ଅଦ୍ୟାପି ବିଶ୍ୱାସ କରୁଛି, ଇହୁଦୀମାନେ ସ୍ୱେଚ୍ଛାପ୍ରଣୋଦିତ ହୋଇ ଘାତୁକ ଆଗରେ ବେକ ଦେଖାଇଥାନ୍ତେ ; ପର୍ବତ ଶିଖରରୁ ସମୁଦ୍ରକୁ ଡେଇଁ ପଡ଼ିଥାନ୍ତେ···। ଏପରି କରିଥିଲେ ଜର୍ମାନୀର ଓ ସମଗ୍ର ପୃଥିବୀର ଚେତନା ଆସିଥାନ୍ତା···ସେପରି ନ କରି ମଧ୍ୟ ଲକ୍ଷ ଲକ୍ଷ ସଂଖ୍ୟାରେ ମରିବାର ମଲେ ।'

୧୯୩୮ ଓ ୧୯୩୯ରେ ଗାନ୍ଧୀ ଆସନ୍ନ ମହାସମରର ଏକ ନୈତିକ ବିକଳ୍ପ ବ୍ୟବସ୍ଥାର ଅନ୍ୱେଷଣରେ ଥିଲେ । ସେ ଜାଣିଥିଲେ, ତାଙ୍କ କଥା କେହି ଗ୍ରହଣ କରିବେ ନାହିଁ । କିନ୍ତୁ ସେ ଯାହା ଉଚିତ ମନେ କରୁଥିଲେ ତାହା ପ୍ରକାଶ କରିବା ତାଙ୍କର କର୍ତ୍ତବ୍ୟ ବୋଲି ବୁଝିଥିଲେ ।

୧୯୩୮, ଡିସେମ୍ବର ମାସରେ ଜାପାନୀ ପାର୍ଲିମେଣ୍ଟର ଜଣେ ମେମ୍ବର ମିଷ୍ଟର୍ ଟାକାଓକା ସେବାଗ୍ରାମକୁ ଆସିଥିଲେ । ଚୀନ-ଜାପାନ ଯୁଦ୍ଧ ପ୍ରସଙ୍ଗ ସେ ଜାଣି ଜାଣି ଏଡ଼ି ଦେଉଥାନ୍ତି । ଭାରତ ଓ ଜାପାନ ଭିତରେ ସଦ୍‌ଭାବ କିପରି ଆସିବ ସେ ପଚାରିଲେ ।

ଗାନ୍ଧୀ ରୁକ୍ଷଭାବରେ ଉତ୍ତର ଦେଲେ, 'ଜାପାନ ଯଦି ଭାରତ

ଉପରେ ଲୋଲୁପ ଦୃଷ୍ଟି ପକାଇବା ଛାଡ଼େ, ତେବେ ତାହା ସମ୍ଭବ ।'

' ଏସିଆ ଏସିଆବାସୀଙ୍କର ବୋଲି ଜାପାନର ଯେଉଁ ଦଳ ଦାବୀ କରୁଥିଲେ ତାଙ୍କ ସକାଶ ସନ୍ଦେଶ ଦେବା ପାଇଁ ଟାକାଓକା ଅନୁରୋଧ କଲେ । ଗାନ୍ଧୀ ସ୍ପଷ୍ଟଭାବେ ଜବାବ୍ ଦେଲେ, 'ଇୟୁରୋପୀୟଙ୍କ ବିରୁଦ୍ଧରେ ଏକ ମେଣ୍ଟ ଗଢ଼ିବା ଅଭିସନ୍ଧିରେ ଯଦି "ଏସିଆ ଏସିଆବାସୀଙ୍କର" ଧ୍ୱନି ଉଠିଥାଏ, ତେବେ ମୁଁ ଏହାର ପକ୍ଷପାତୀ ନୁହେଁ ।' (ଟାକାଓକାଙ୍କ ସଙ୍ଗେ ଏ ବିଷୟରେ ଯେଉଁ କଥାବାର୍ତ୍ତା ହୋଇଥିଲା ତା'କୁ ପ୍ୟାରେଲାଲ ୧୯୩୮, ଡିସେମ୍ବର ୨୪ ତାରିଖର ହରିଜନରେ ପ୍ରକାଶ କରିଥିଲେ । ) ଗାନ୍ଧୀ ଆହୁରି କହିଥିଲେ, 'ଏସିଆ ଚିରକାଳ କୂପମଣ୍ଡୂକ ହୋଇ ରହିଲେ ଯେବେ ଆମେ ସନ୍ତୁଷ୍ଟ, ତେବେ ଏସିଆ ଏସିଆବାସୀଙ୍କର ବୋଲି ଦାବୀ କରି ଯାଇପାରେ ।'

ଷ୍ଟାଲିନ୍ ଓ ହିଟ୍‌ଲରଙ୍କ ଭିତରେ ରାଜିନାମା ଦସ୍ତଖତ ହେବାର ପର ଦିନ ଅଗଷ୍ଟ ୨୪ ତାରିଖରେ ଲଣ୍ଡନରୁ ଜଣେ ମହିଳା ଗାନ୍ଧୀଙ୍କ ପାଖକୁ ସମୁଦ୍ର-ତାରବାର୍ତ୍ତା ପଠାଇଲେ, 'ଅନୁଗ୍ରହ କରି ନିର୍ଦ୍ଦେଶ ଦିଅନ୍ତୁ ; ପୃଥିବୀ ଆପଣଙ୍କ ନିର୍ଦ୍ଦେଶକୁ ଚାହିଁ ରହିଛି ।' ମହାସମର ଆରମ୍ଭ ହେବାକୁ ମାତ୍ର ଗୋଟିଏ ସପ୍ତାହ ଥାଏ । ଆଉ ଜଣେ ମହିଳା ଇଂଲଣ୍ଡରୁ ବେତାର ବାର୍ତ୍ତା ପଠାଇଲେ, 'ପୃଥିବୀର ପ୍ରତ୍ୟେକ ଶାସକ ଓ ସମସ୍ତ ଦେଶବାସୀଙ୍କୁ ବଳ ନୁହେଁ, ନ୍ୟାୟ ଉପରେ ଆପଣଙ୍କ ଅଟଳ ବିଶ୍ୱାସ ତୁରନ୍ତ ଜଣାଇ ଦିଅନ୍ତୁ ବୋଲି ଅନୁଯୋଗ କରୁଛି ।' ଏହିଭଳି ଜରୁରି ବାର୍ତ୍ତାମାନ ସେବାଗ୍ରାମରେ ଆସି କୁଢ଼େଇ ହୋଇଗଲା ।

ସେତେବେଳକୁ କିନ୍ତୁ ସମୟ ଆଖିର ହୋଇ ଯାଇଥାଏ । ୧୯୩୯ ସେପ୍ଟେମ୍ବର ପହିଲା ଦିନ ନାତ୍ସୀ ସେନା ପୋଲାଣ୍ଡ୍ ଆକ୍ରମଣ କଲେ ।

୧୯୩୯, ସେପ୍ଟେମ୍ବର ୩ ତାରିଖ, ରବିବାର, ସମୟ ସକାଳ ଏଗାରଟା । ବ୍ରିଟେନ୍‌ର ସବୁ ଗିର୍ଜା ଜନାକୀର୍ଣ୍ଣ ହୋଇଥାଏ । ସେଇଦିନ ବ୍ରିଟିଶ୍ ସରକାର ଜର୍ମାନୀ ବିରୁଦ୍ଧରେ ଯୁଦ୍ଧ ଘୋଷଣା କଲେ । ପ୍ୟାରିସ୍‌ଠାରୁ କିଛି ଦୂରରେ, ମଫସଲ ଅଞ୍ଚଳରେ ସେ ଦିନ ଓପରଓଳି ମୁଁ କଟାଇଥିଲି । ଅପରାହ୍ନ ୫ଟା ବେଳେ ଗୋଟିକିଆ ଉଡ଼ାଜାହାଜଟିଏ ମୁଣ୍ଡ ଉପରେ ଉଡ଼ିଗଲା । ରେଡ଼ିଓରେ ଘୋଷଣା କରାଗଲା ଯେ, ଫ୍ରାନ୍‌ସ୍ ଯୁଦ୍ଧରେ ଯୋଗ ଦେଇଛି । ଆମେ ମଟରରେ ସହରକୁ ଫେରି ଆସିଲୁ । ବାଟରେ ଯେଉଁ

ଗ୍ରେଟ ଗ୍ରେଟ ସହରମାନ ପଡ଼ିଲା, ତାହାର ରାସ୍ତାମାନଙ୍କରେ ସ୍ତ୍ରୀମାନେ ଜମା ହୋଇ ବିଷାଦଭରା ନୟନରେ ଶୂନ୍ୟକୁ ଚାହିଁଥାନ୍ତି । କେହି କେହି ଆଙ୍ଗୁଠିର ନଖ କାମୁଡ଼ୁଥାନ୍ତି । ବାଟରେ ଠାଏ ଲମ୍ବ ଧାଡ଼ି ଧରି ଚାଷୀ-ମାନଙ୍କ ଘୋଡ଼ାମାନେ ଠିଆ ହୋଇଥିବାରୁ ଆମ ଗାଡ଼ି ସେମାନଙ୍କୁ ବାଟ ଦେଇ ଠିଆ ହେଲା । ଏଗୁଡ଼ିକ ସରକାର ସୈନ୍ୟ ବିଭାଗ ପାଇଁ ନେବାକୁ ହୁକୁମ କରିଥାନ୍ତି । ସବୁଗୁଡ଼ିକ ଘୋଡ଼ା ସୁସ୍ଥସବଳ, ସଯତ୍ନେ ପାଳିତ । ଜଣେ କୃଷକ ଏଥିରୁ ଗୋଟିଏ ଘୋଡ଼ାର ବେକ କୁଣ୍ଢାଇ ପକାଇ ତା କାନରେ କ'ଣ କହିଲା । ଘୋଡ଼ାଟି ଉପରକୁ ତଳକୁ ମୁଣ୍ଡ ହଲେଇଲା । ଦୁହେଁ ବିଦାୟ ଦିଆ ଦେଇ ହେଉଥାନ୍ତି । ୧୯୪୫ରେ ମହାସମର ଶେଷ ହେବା ବେଳକୁ ପୃଥିବୀର ବିଭିନ୍ନ ଅଞ୍ଚଳର ୩ କୋଟିରୁ ଅଧିକ ଲୋକ ଜୀବନଠାରୁ ବିଦାୟ ନେଇ ସାରିଥାନ୍ତି ; ଦଶକୋଟିରୁ ଅଧିକ ଲୋକ ଆହତ, ବିକଳାଙ୍ଗ ଓ ଅସମର୍ଥ ହୋଇଥାନ୍ତି । ଲକ୍ଷ ଲକ୍ଷ ବାସଗୃହ ଧୂଳିସାତ୍ ହୋଇଥାଏ ; ଦୁଇଟା ଆଣବିକ ବୋମା ଦୁଇଟି ବଡ଼ ସହରରେ ପଡ଼ିଥାଏ ; ବହୁ ଆଶା ଭ୍ରଷ୍ଟ ହୋଇଥାଏ ; ଆଦର୍ଶ ବିକୃତ ହୋଇଥାଏ , ପ୍ରତିଷ୍ଠିତ ନୀତିବାଦରେ ସନ୍ଦେହ ଉପୁଜି ଥାଏ ।

୧୯୪୮, ନଭେମ୍ବର ୧୦ ତାରିଖରେ ବୋଷ୍ଟନ୍‌ଠାରେ, ଯୁକ୍ତରାଷ୍ଟ୍ର ଆମେରିକାର ପ୍ରଧାନ ସେନାଧ୍ୟକ୍ଷ ଜେନେରାଲ୍ ଓମାର୍ ଏନ୍. ବ୍ରାଡ଼ଲି କହିଥିଲେ, 'ପୃଥିବୀରେ ବୈଜ୍ଞାନିକଙ୍କ ସଂଖ୍ୟା ଅତି ବେଶୀ ହୋଇଗଲାଣି ; ଭଗବତ୍ ବିଶ୍ୱାସ ଥିବା ଲୋକଙ୍କ ସଂଖ୍ୟା ଅତି କମ୍ ହୋଇଯାଇଛି । ଆମେ 'ଅଣୁ'ର ରହସ୍ୟ ଉଦ୍‌ଘାଟନ କରିଥାଇଁ ସିନା, ପର୍ବତ ଉପରେ ପ୍ରଭୁ ଯୀଶୁ ଯେଉଁ ଅନୁଶାସନ ଦେଇଥିଲେ ତାକୁ ପାସୋରି ପକାଇଥାଇଁ ···। ପୃଥିବୀ ବିଜ୍ଞତା ହରାଇ ଅସାଧାରଣ ବୁଦ୍ଧିମତ୍ତା ହାସଲ କରିଛି; ବିବେକ ହରାଇ ବଳ ଆହରଣ କରିଛି । ଆଜି ପୃଥିବୀ ପରମାଣୁବାଦୀ ଅତିମାନବ ଓ ନୀତିକୁଶଳ ଅପୋଗଣ୍ଡ ଶିଶୁରେ ପୂର୍ଣ୍ଣ । ଶାନ୍ତିବିଷୟରେ ଯେତେ ଜାଣୁ, ଯୁଦ୍ଧ ବିଷୟରେ ତା'ଠାରୁ ଢେର ଅଧିକ ଆମକୁ ଜଣା । ବଞ୍ଚିବା ବିଷୟରେ ଯେତେ ଜାଣୁ, ମାରିବା ବିଷୟରେ ଜାଣୁ ତା'ଠାରୁ ଯଥେଷ୍ଟ ବେଶୀ ।'

ଗାନ୍ଧୀ ଅଣୁର ରହସ୍ୟକୁ ଛାଡ଼ି ପର୍ବତ ଉପରେ ପ୍ରଭୁଙ୍କ ଅନୁ-ଶାସନକୁ ଆଶ୍ରୟ କରିଥିଲେ । ସେ ଥିଲେ ପରମାଣୁ-ବିଜ୍ଞାନରେ ଶିଶୁ

କିନ୍ତୁ ମନସ୍ତତ୍ତ୍ୱବିଦ୍ୟାରେ ଅନ୍ତିମାନବ । ଆମର ଏ ବିଂଶ ଶତାବ୍ଦୀରେ ସେ ହିଁ ବଞ୍ଚିବା ବିଷୟରେ ଜାଣିଥିଲେ ସବୁ ଓ ମାରିବା ବିଷୟରେ ଶୂନ୍ ।

ଯେଉଁମାନଙ୍କର ଆଧୁନିକ ସଭ୍ୟତା ବିଷୟରେ ଆଦୌ ସଂଶୟ ନାହିଁ, ସେଇମାନେ ହିଁ କେବଳ ଗାନ୍ଧୀଙ୍କୁ ସଂପୂର୍ଣ୍ଣ ରୂପେ ଅବଜ୍ଞା କରି ପାରନ୍ତି ।

———

# ଅଷ୍ଟମ ପରିଚ୍ଛେଦ

## ଉଇନ୍‌ଷ୍ଟନ୍ ଚର୍ଚ୍ଚିଲ୍ ବନାମ୍ ମୋହନଦାସ କରମଚାନ୍ଦ ଗାନ୍ଧୀ

ଯେଉଁଦିନ ଦ୍ୱିତୀୟ ମହାଯୁଦ୍ଧ ଆରମ୍ଭ ହେଲା ସେଇ ଦିନ ରାଜକୀୟ ଘୋଷଣାଦ୍ୱାରା ଇଂଲଣ୍ଡ ଭାରତକୁ ଯୁଦ୍ଧକୁ ଟାଣି ନେଲା ; କୌଣସି ଜଣେ ଭାରତୀୟଙ୍କୁ ପଦେ ପଚାରିଲା ବି ନାହିଁ । ବୈଦେଶିକ ଆଧିପତ୍ୟର ଏହା ଅଧିକା ପ୍ରମାଣରେ ଭାରତ ବିକ୍ଷୁବ୍ଧ ହେଲା । ଯାହାହେଉ ତପରଦିନ ଭାଇସରାୟଙ୍କ-ଠାରୁ ଟେଲିଗ୍ରାମ ପାଇ ଗାନ୍ଧୀ, ସକାଳର ପ୍ରଥମ ଟ୍ରେନ୍ ଧରି ଦିଲ୍ଲୀ ଅଭି-ମୁଖେ ବାହାରିଲେ । ଭାଇସରାୟ ଲର୍ଡ୍ ଲିନ୍‌ଲିଥ୍‌ଗୋ ଟେଲିଗ୍ରାମଦ୍ୱାରା ତାଙ୍କ ଗ୍ରୀଷ୍ମକାଳୀନ ରାଜଧାନୀ ସିମଲାକୁ ଡାକି ପଠାଇଥାନ୍ତି । ମହାତ୍ମାଜୀ ଚାଲି କରି ରେଳକୁ ଯିବା ବେଳେ ଷ୍ଟେସନ୍‌ରେ ରୁଣ୍ଡ ହୋଇଥିବା ଲୋକେ ଚିତ୍କାର କରୁଥାନ୍ତି, 'ଆମେ କୌଣସି ପ୍ରକାର ବୁଝାମଣା ଚାହୁଁନାହିଁ ।' ସେ ଦିନ ମହାତ୍ମାଜୀଙ୍କର ମୌନ ଦିବସ । ଲୋକଙ୍କ ଆଡ଼କୁ ଚାହିଁ ସେ ଟିକିଏ ମୁରୁକି ହସିଲେ, ଗାଡ଼ି ଛାଡ଼ିଲା ।

ଆଗାମୀ ଲଢ଼େଇ ପ୍ରକୃତି ଓ ପରିସର ବିଷୟରେ ଭାଇସରାୟ ଓ ମହାତ୍ମାଜୀ ଆଲୋଚନା କଲେ । 'ଲଣ୍ଡନର ପାର୍ଲିମେଣ୍ଟ ଭବନ ଓ ଓ୍ୱେଷ୍ଟ

ମିନଷ୍ଟର୍ ଧର୍ମପୀଠର ଚିତ୍ର ମାନସପଟରେ ଆଙ୍କି ସେ ଅଟ୍ଟାଳିକା ଦୁଇଟିର ଧ୍ୱଂସ ହୋଇଯିବାର ସଂଭାବନା ଚିନ୍ତା କରି ମୁଁ ଭାଇସ୍‌ରୟଙ୍କ ଆଗରେ ସଂଭାଳି ହୋଇ ରହିପାରିଲି ନାହିଁ, ମୁଁ ହତାଶ ହୋଇ ଯାଇଛି । ମୋ ଅନ୍ତରର ଗଭୀରତମ ପ୍ରଦେଶରେ ମୁଁ ଅନବରତ ଭଗବାନଙ୍କ ସଂଗେ କଳି କରୁଛି । ସେ ଏଭଳି ଧ୍ୱଂସଲୀଳା ଘଟାଉଛନ୍ତି କାହିଁକି ?

ସେତେବେଳେ ଗାନ୍ଧୀଙ୍କର ଭଗବାନଙ୍କ ସଙ୍ଗେ 'ପ୍ରତ୍ୟହ କଳି' ଲାଗୁଥାଏ । ଅହିଂସାର ପରାଜୟ ହୋଇଛି । ଭଗବାନ୍ ହାରିଛନ୍ତି ! କିନ୍ତୁ ପ୍ରତ୍ୟହ କଳି କରିବା ପରେ ମହାତ୍ମାଜୀ ସିଦ୍ଧାନ୍ତ କରନ୍ତି ଯେ, 'ଭଗବାନ୍ ହାରି ନାହାନ୍ତି କି ଅହିଂସା ଶକ୍ତିହୀନ ହୋଇନାହିଁ ।' ଶକ୍ତିହୀନ ହୋଇଛି ମଣିଷ । 'ଆସ୍ଥା ନ ହରାଇ ମୋତେ ଚେଷ୍ଟା ଚଳାଇ ରଖିବାକୁ ହେବ ।'

ଯୁଦ୍ଧ ପାଇଁ ଗାନ୍ଧୀ ହିଟଲର୍‌ଙ୍କୁ ଦୋଷିଲେ । ୧୯୩୯, ସେପ୍ଟେମ୍ବର ୧୯ ତାରିଖର ହରିଜନରେ ସେ ଲେଖିଥିଲେ, 'ଠିକ୍ ହେଉ ବା ଭୁଲ୍ ହେଉ, ଏବଂ ତୁଲ୍ୟ ପରିସ୍ଥିତିରେ ଅନ୍ୟ ରାଜଶକ୍ତିମାନେ ପୂର୍ବେ କ'ଣ କରିଥିଲେ ତାହା ବିଚାରକୁ ନ ନେଇ ମୁଁ ସିଦ୍ଧାନ୍ତ କରିଛି ଯେ, ଏ ଯୁଦ୍ଧ ପାଇଁ ହେର୍ ହିଟ୍‌ଲର୍ ଦାୟୀ । ସେ ଯେଉଁ ଦାବି ହାସଲ କରିବାକୁ ଯୁଦ୍ଧ କରୁଛନ୍ତି, ତାହା ଠିକ୍ କି ନୁହେଁ ମୁଁ ବିଚାର କରିବାକୁ ଯାଉ ନାହିଁ । ଯଦି ଡାନ୍‌ଜିଗ୍‌ର ଜର୍ମାନ୍‌ମାନେ ନିଜର ସ୍ୱାଧୀନ ଓ ସ୍ୱତନ୍ତ୍ର ସ୍ଥିତି ଛାଡ଼ିବାକୁ ରାଜି ହୋଇଥାନ୍ତି ତେବେ ଡାନ୍‌ଜିଗ୍‌କୁ ଜର୍ମାନୀର ସାମିଲ୍ କରିବାକୁ ଚାହିଁବା ହୁଏତ ଅବିସମ୍ବାଦିଭାବେ ହିଟଲରଙ୍କର ନ୍ୟାଯ୍ୟ ଦାବି । ହୋଇପାରେ, ପୋଲାଣ୍ଡର ଯେଉଁ ସୋରିଟା ହିଟଲର୍ ଜର୍ମାନୀରେ ମିଶାଇବାକୁ ଦାବି କରୁଛନ୍ତି, ତାହା ତାଙ୍କର ନ୍ୟାଯ୍ୟ ଦାବି । ମୋର ଏତିକି ମାତ୍ର ଆପତ୍ତି ଯେ, ନିଜ ଦାବିର ଯୁକ୍ତିଯୁକ୍ତତା ନିରପେକ୍ଷ ନ୍ୟାୟପୀଠଦ୍ୱାରା ପରୀକ୍ଷା କରାଇବାକୁ ହିଟଲର୍ ରାଜି ନୁହନ୍ତି ।'

ସମାଲୋଚକମାନେ କହିଲେ, ଭାଇସ୍‌ରୟଙ୍କ ସଙ୍ଗେ ସାକ୍ଷାତ୍‌କାଳରେ ଗାନ୍ଧୀ 'ଭାବପ୍ରବଣଭାବେ ଗୁଡ଼ାଏ ବାଜେକଥା' ଗପିଲେ । ଗାନ୍ଧୀ ଉତ୍ତର ଦେଲେ, 'ଇଂଲଣ୍ଡ ଓ ଫ୍ରାନ୍‌ସ୍ ପ୍ରତି ମୋର ଯେ ସଦ୍‌ଭାବ ତାହା କ୍ଷଣିକ ଭାବପ୍ରବଣତା ଉଦ୍‌ଭୂତ ବା, ଅମାର୍ଜିତଭାଷାରେ, ମନୋବିକୃତିପ୍ରସୂତ ନୁହେଁ ।' ଇଂଲଣ୍ଡ ଓ ଫ୍ରାନ୍‌ସ୍ ପ୍ରତି ଯେପରି ସେହିପରି, 'ପୋଲାଣ୍ଡ ପ୍ରତି ମୋର ଆନ୍ତରିକ ସହାନୁଭୂତି ଅଛି । ସେମାନେ ତାଙ୍କ ଦେଶର ସ୍ୱାଧୀନତା

ରକ୍ଷା କରିବା ପାଇଁ ଅଧିକ ଶକ୍ତିଶାଳୀ ପ୍ରତିପକ୍ଷର ସମ୍ମୁଖୀନ ହୋଇଛନ୍ତି ।'

ଗାନ୍ଧୀ ଘୋଷଣା କଲେ, 'ହିଟ୍‌ଲରୀ ମାତ୍ରେ ନଗ୍ନ ଓ ନିର୍ମମ ପଶୁବଳ ଉପରେ ପର୍ଯ୍ୟବସିତ ।' ଏହାକୁ ସେ ନିଗୂଢ ବିଜ୍ଞାନରେ ପରିଣତ କରିଛନ୍ତି, ଏବଂ ବୈଜ୍ଞାନିକ ରୀତିରେ ସୁନିର୍ଦ୍ଦିଷ୍ଟଭାବେ ପ୍ରୟୋଗ କରୁଛନ୍ତି । ଏହି ପଶୁବଳ ଏବଂ ଏହାର ଏବଂବିଧ ପ୍ରୟୋଗ ହିଁ ଗାନ୍ଧୀଙ୍କ ଦୃଷ୍ଟିରେ ଅତୀବ ବୀଭତ୍ସ ହୋଇଥିଲା ।

କିନ୍ତୁ ସେ ତ ନାଗରିକ । ପ୍ରତ୍ୟହ ଭଗବାନଙ୍କଠାରେ ଅଭିଯୋଗ କରିବା ସାଙ୍ଗକୁ କଂଗ୍ରେସ ସଙ୍ଗେ ନିରବଚ୍ଛିନ୍ନ ଭାବେ ସେ ବାଦାନୁବାଦରେ ଲାଗିଥାନ୍ତି । ସେ ସ୍ୱୀକାର କରିଥିଲେ ଯେ, କଂଗ୍ରେସ ଯାହା ଚାହୁଁଥାନ୍ତି ତାହା ଅଧିକାଂଶ ଚିନ୍ତାଶୀଳ ଭାରତୀୟ ଲୋକଙ୍କ ମତର ପ୍ରତିଧ୍ୱନି । ଗାନ୍ଧୀଙ୍କ ପକ୍ଷେ ଅହିଂସା ଥିଲା ଧର୍ମ ବା ମାର୍ଗ; ଅଥଚ କଂଗ୍ରେସ ଏହାକୁ 'ଉଦ୍ଦେଶ୍ୟ ସିଦ୍ଧିର ଉପାୟ' ବୋଲି ମୂଳରୁ ଧରିଥିଲା । କଂଗ୍ରେସ ଅଭୀଷ୍ଟ ସିଦ୍ଧି ନିମନ୍ତେ ଅହିଂସା-ମାର୍ଗକୁ ଗ୍ରହଣ କରିଥିଲା । ଫଳାଫଳ ନିର୍ବିଶେଷରେ ଗାନ୍ଧୀ ଏ ମାର୍ଗର ଉପାସକ ଥିଲେ ।

ଯୁଦ୍ଧ ଆରମ୍ଭ ହେବାର ପରଦିନ ଗାନ୍ଧୀ ପ୍ରକାଶ୍ୟ ପ୍ରତିଶ୍ରୁତି ଦେଲେ ଯେ, ସେ ବ୍ରିଟିଶ୍ ସରକାରକୁ ହଇରାଣ କରିବେ ନାହିଁ । ସେ ଆହୁରି ମଧ୍ୟ ଜବାବ୍ ଦେଲେ ଯେ, ଇଂଲଣ୍ଡ ଓ ତା'ର ମିତ୍ର ରାଷ୍ଟ୍ରମାନଙ୍କୁ ସେ ନୈତିକ ସମର୍ଥନ ଦେବେ । ସେ କହିଲେ, ଯୁଦ୍ଧବୃତ୍ତିକୁ ନାପସନ୍ଦ କରିବା ବ୍ୟକ୍ତି ମଧ୍ୟ ଆକ୍ରମଣକାରୀ ଓ ଆକ୍ରାନ୍ତଙ୍କ ପ୍ରତି ଭିନ୍ନଭିନ୍ନ ମନୋଭାବ ପୋଷଣ କରିବାର କଥା । ଏହାଠାରୁ ଅଧିକ କିଛି କରିବା ତାଙ୍କ ପକ୍ଷରେ ସଂଭବ ନ ଥିଲା; ସେ ପ୍ରତ୍ୟକ୍ଷ ଭାବେ ଯୁଦ୍ଧରେ ବା ଯୁଦ୍ଧପାଇଁ ପ୍ରସ୍ତୁତିରେ ସହଯୋଗ କରି ପାରିବେ ନାହିଁ, ବା ଭାରତ ଆକ୍ରାନ୍ତ ହେଲେ ଆତ୍ମରକ୍ଷା କରିବାକୁ ବାହାରିବେ ନାହିଁ ବୋଲି ପରିଷ୍କାର ଜଣାଇ ଦେଲେ । ସ୍ୱାଧୀନ ଭାରତରେ ସୈନ୍ୟବାହିନୀ ରହୁ ବୋଲି ସେ ଚାହୁଁ ନ ଥିଲେ ବା ପୋଲିସ୍ ଲଗାଇ ହିନ୍ଦୁ-ମୁସଲମାନ ସଂଘର୍ଷ ଆୟତ୍ତ କରିବା ତାଙ୍କର ଇଚ୍ଛା ନ ଥିଲା । ଦସ୍ୟୁ ଓ ପେଶାଦାର-ଗୁଣ୍ଡାଙ୍କୁ ଦମନ କରିବା ପାଇଁ ପୁଲିସ୍ ରହି ବିଶେଷ ବଳ ପ୍ରୟୋଗ ନ କରି ନିଜର କର୍ତ୍ତବ୍ୟ ପାଳନ କରିବେ ବୋଲି ସେ ଚାହୁଁଥିଲେ । ଏଥିରୁ ଅଧିକ ବଳପ୍ରୟୋଗ ବା ହିଂସା ପସନ୍ଦ କରିବା ତାଙ୍କ ପକ୍ଷରେ ସଂଭବ ନ ଥିଲା ।

ଅପରନ୍ତୁ, କଂଗ୍ରେସ ଚାହୁଁଥିଲା ଇଂରେଜ ସରକାର ନିର୍ଦ୍ଦିଷ୍ଟ କେତୋଟି ସର୍ତ୍ତ ଯଦି ପୂରଣ କରନ୍ତି ତେବେ କଂଗ୍ରେସ ଯୁଦ୍ଧରେ ଇଂରେଜଙ୍କର ପକ୍ଷ ସମର୍ଥନ କରିବାକୁ ରାଜି ହେବ ।

୧୯୩୯ ସେପ୍ଟେମ୍ବର ୧୪ ତାରିଖରେ କଂଗ୍ରେସର କାର୍ଯ୍ୟକାରୀ କମିଟି ଗୋଟିଏ ବିଜ୍ଞପ୍ତି ପ୍ରକାଶ କଲେ । ଏଥିରେ ଫାସିଷ୍ଟମାନଙ୍କର ପୋଲାଣ୍ଡ ଆକ୍ରମଣର ନିନ୍ଦା କରିବା ସଙ୍ଗେ ସଙ୍ଗେ ଉଲ୍ଲେଖ କରାଗଲା ଯେ, ପାଶ୍ଚାତ୍ୟ ଗଣତାନ୍ତ୍ରିକ ରାଷ୍ଟ୍ରମାନେ ମାଞ୍ଚୁରିଆ, ଆବିସିନିଆ, ସ୍ପେନ୍ ଓ ଚେକୋସ୍ଲୋଭାକିଆରେ ହୋଇଥିବା ଏଇଭଳି ଆକ୍ରମଣକୁ ଦୋଷମୁକ୍ତ ମନେ କରିଥିଲେ ଓ ଏଥିରେ ବାଧା ଦେଇ ନ ଥିଲେ । ଏ ବିବୃତିରେ ଦାବି କରାଯାଇଥିଲା, ପାଶ୍ଚାତ୍ୟ ଶକ୍ତିମାନେ, ନିଜର ପ୍ରତିଦ୍ୱନ୍ଦୀ ବିରୁଦ୍ଧରେ ନୁହେଁ, ସାମ୍ରାଜ୍ୟବାଦୀଙ୍କ ବିରୁଦ୍ଧରେ ଲଢୁଛନ୍ତି ବୋଲି ଯଦି ପ୍ରତ୍ୟୟ ଜାତ କରାଇବାକୁ ଚାହାନ୍ତି ତେବେ ନିଜର ସାମ୍ରାଜ୍ୟବାଦୀ ନୀତି ଅବଶ୍ୟ ଛାଡ଼ିବାକୁ ପଡ଼ିବ । 'ସ୍ୱାଧୀନ ଗଣତାନ୍ତ୍ରିକ ଭାରତ, ଆକ୍ରମଣକାରୀର ମିଳିତ ପ୍ରତିରୋଧ କରିବାକୁ ଏବଂ ଆର୍ଥନୀତିକ ସହଯୋଗ ସକାଶ, ଅନ୍ୟ ସ୍ୱାଧୀନ ରାଷ୍ଟ୍ରମାନଙ୍କ ସହିତ ଆଗ୍ରହରେ ବନ୍ଧୁତ୍ୱ ସ୍ଥାପନ କରିବ······।'

ଏହି ବିବୃତି ତିଆରି କରିବାକୁ କାର୍ଯ୍ୟକାରୀ କମିଟି ଚାରିଦିନ କାଳ ବସି ଆଲୋଚନା କରିଥିଲେ । ପ୍ରତ୍ୟହ ନିମନ୍ତ୍ରିତ ଅତିଥି ଭାବେ ଗାନ୍ଧୀ ଏ ବୈଠକମାନଙ୍କରେ ଯୋଗ ଦେଇଥିଲେ । ବିଜ୍ଞପ୍ତି କମିଟିରେ ଗୃହୀତ ହେବା ପରେ ଗାନ୍ଧୀ ପ୍ରକାଶ କରିଥିଲେ ଯେ, ଏହା ଜବାହାରଲାଲ ନେହେରୁ ତିଆରି କରିଥିଲେ । ଗାନ୍ଧୀ ଏହା ଉପରେ ମତ ଦେଇ କହିଥିଲେ, 'ମୁଁ ଦେଖି ଦୁଃଖିତ ହେଲି ଯେ, ବ୍ରିଟିଶଙ୍କୁ ଯାହା ବା ସମର୍ଥନ ଦିଆଯିବ ତାହା ବିନାସର୍ତ୍ତରେ ଓ ଅହିଂସଭାବେ ଦିଆଯିବ ବୋଲି ମୋର ଯେଉଁ ମତ, ତାହାର ଆଉ ଜଣେ କେହି ବି ସମର୍ଥକ ନ ଥିଲେ ।' ପାଇଲେ ଦେବୁ ବୋଲି କଂଗ୍ରେସ ଯେଉଁ ପ୍ରସ୍ତାବ କଲା, ତାହା ଗାନ୍ଧୀଙ୍କ ମନକୁ ପାଇଲା ନାହିଁ । କଂଗ୍ରେସ ଦାବି କଲା, ବ୍ରିଟେନ୍ ଯଦି ଭାରତକୁ ସ୍ୱାଧୀନତା ଦିଏ ତେବେ ଭାରତ ବ୍ରିଟେନ୍ ପକ୍ଷରେ ଲଢ଼ିବ । ଏଥିରେ ଗାନ୍ଧୀଙ୍କର ମତ ନ ଥିବା ସତ୍ତ୍ୱେ ଦେଶ ଏ ବିଜ୍ଞପ୍ତିକୁ ସମର୍ଥନ କରୁ ବୋଲି ଗାନ୍ଧୀ ନିବେଦନ କଲେ । 'ମୋର ଆଶା ଯେ ଏ ବିଜ୍ଞପ୍ତି କଂଗ୍ରେସ ଭିତରେ ଥିବା ବିଭିନ୍ନ ମତବାଦୀ ପ୍ରତ୍ୟେକ ଗୋଷ୍ଠୀର ସର୍ବସମ୍ମତ ସମର୍ଥନ ପାଇବ ।'

ସମାଲୋଚକମାନେ ଚିତ୍କାର କଲେ, 'ଗାନ୍ଧୀ ଏହା କଲେ କିପରି ? ଯେଉଁ ମତର ସେ ନିଜେ ବିରୋଧ କରନ୍ତି ତାହାକୁ ସମର୍ଥନ କରିବାକୁ ସେ ନିବେଦନ କଲେ କାହିଁକି ? ଗାନ୍ଧୀ ଜବାବ୍ ଦେଲେ, 'ଅହିଂସାତ୍ମକ ପ୍ରୟୋଗର ପରିସର ଟିକିଏ ବଢ଼ାଇ ଦେବାକୁ ମୁଁ ଯେଉଁ କଳ୍ପନା କରୁଥିଲି ସେଥିରେ ମୋର ବିଶ୍ୱସ୍ତ ସହକର୍ମୀମାନେ ରାଜି ହୋଇପାରିଲେ ନାହିଁ ବୋଲି ମୁଁ ଯଦି ତାଙ୍କୁ ପରିତ୍ୟାଗ କରିଥାନ୍ତି ତେବେ ମୋ ଅହିଂସାବ୍ରତର ମୁଁ ଖିଲାପ କରିଥାନ୍ତି ବୋଲି ମନେକରିଥାନ୍ତି । ତେଣୁ ମୁଁ ତାଙ୍କସଙ୍ଗେ ରହିଛି । ମୋ'ର ବିଶ୍ୱାସ, ଅହିଂସା ପଥରୁ ସେମାନଙ୍କର ଯାହା ଚ୍ୟୁତି ହୋଇଛି, ତାହା ଆଉ ବ୍ୟାପିବ ନାହିଁ ଓ ଅଳ୍ପଦିନ ମଧ୍ୟରେ ସେମାନେ ପୁଣି ରାସ୍ତାକୁ ଫେରି ଆସିବେ ।'

କେତେଜଣ ଖିଅ କାଢ଼ିଲେ, ୧୯୧୮ରେ ଆପଣଙ୍କର ଯାହା ମତ ଥିଲା ସେଥିରୁ ଆପଣ ସ୍ଖଳିତ ହୋଇ ନାହାନ୍ତି କି ?

ଗାନ୍ଧୀ ପ୍ରତ୍ୟୁତ୍ତର ଦେଲେ, 'ଆଜି କିଛି ଲେଖିଲା ବେଳେ, ଆଗରୁ କି'ଣ କହିଛି ସେ କଥା ମୁଁ ମନେ ପକାଏ ନାହିଁ । ପୂର୍ବରେ ଯାହା କହିଛି, ତା' ସଙ୍ଗେ ବର୍ତ୍ତମାନ ଯାହା କହୁଛି ତାହାର ସଙ୍ଗତି ରହିଛି କି ନାହିଁ ମୁଁ ଧରି ବସେ ନାହିଁ । ନିର୍ଦ୍ଦିଷ୍ଟ ମୁହୂର୍ତ୍ତରେ ମୋ ମନରେ ଯେଉଁ ସତ୍ୟ ପ୍ରତିଭାତ ହେଉଛି ତାହାର ଖିଲାପ ନ ହେଉ, ଏତିକି ପ୍ରତି ମାତ୍ର ଦୃଷ୍ଟି ରଖିଥାଏ । ପରିଣାମରେ ମୁଁ ସମୟକ୍ରମେ ସତ୍ୟରୁ ସତ୍ୟକୁ ଗତି କରି ଚାଲିଛି······।'

ନିଜ ମତର ବିରୋଧ କରୁଥିବା ଗୋଟିଏ ବିଜ୍ଞପ୍ତିର ସମର୍ଥନ କରି ଗାନ୍ଧୀ ତୁନି ରହିଲେ ନାହିଁ ; ସେ ଆହୁରି ଆଗକୁ ଆଗେଇ ଗଲେ । ସେପ୍ଟେମ୍ବର ୨୬ ତାରିଖରେ ଭାଇସ୍‌ରୟଙ୍କ ସଙ୍ଗେ ସାକ୍ଷାତ୍‌କାରରେ ସେ ଏହି ବିଜ୍ଞପ୍ତିର ମୁଖପାତ୍ର ହେଲେ । ଅକ୍ଟୋବର ୧୭ ତାରିଖରେ ଲର୍ଡ୍ ଲିନ୍‌ଲିଥ୍‌ଗୋ ବିଜ୍ଞପ୍ତି ଉପରେ ସରକାରଙ୍କର ମତ ଜଣାଇଦେଲେ । କେଉଁ ଉଦ୍ଦେଶ୍ୟ ସିଦ୍ଧି ପାଇଁ ଇଂଲଣ୍ଡ ଯୁଦ୍ଧରେ ପଶିଛି ତାହା ଏ ସୁଦ୍ଧା ନିର୍ଦ୍ଦିଷ୍ଟ ଭାବେ କୁହାଯାଇ ପାରିବ ନାହିଁ । ସ୍ୱାୟତ୍ତଶାସନ ଆଡ଼କୁ ଅତି କ୍ଷିପ୍ର ଗତିରେ ଆଗେଇ ଯିବାରେ ବିପଦ ଅଛି ବୋଲି ସେ କଂଗ୍ରେସକୁ ସତର୍କ କରିଦେଲେ ଓ ପ୍ରତିଶ୍ରୁତି ଦେଲେ ଯେ ଯୁଦ୍ଧ ପରେ ଔପନିବେଶିକ ସ୍ୱାୟତ୍ତଶାସନ ଆଡ଼କୁ ଭାରତକୁ ଆଗେଇ ଦେବା ଉଦ୍ଦେଶ୍ୟରେ ଶାସନ ଆଇନ୍‌ର ପରିବର୍ତ୍ତନ କରାଯିବ ।

ଏ ଉତ୍ତର ପାଇବାର ପାଞ୍ଚଦିନ ପରେ କାର୍ଯ୍ୟକାରୀ କମିଟି ବ୍ରିଟେନ୍‌କୁ ସାହାଯ୍ୟ କରିବା ବିରୁଦ୍ଧରେ ପ୍ରସ୍ତାବ ପାସ୍ କଲେ । ରାଜ୍ୟମାନଙ୍କରେ ଚାଲୁ ରହିଥିବା କଂଗ୍ରେସ ମନ୍ତ୍ରୀମଣ୍ଡଳମାନଙ୍କୁ ଇସ୍ତଫା ଦେବା ପାଇଁ ନିର୍ଦ୍ଦେଶ ଦିଆଗଲା । ଗାନ୍ଧୀ ଦେଖିଲେ, କଂଗ୍ରେସ ପୁଣି ତାଙ୍କର ଆଡ଼କୁ ଫେରୁଛି ।

ହିଟ୍‌ଲର୍ ନରୱେ, ଡେନମାର୍କ, ହଲାଣ୍ଡ୍ ଓ ବେଲଜିଅମ୍ ଦଖଲ କରିଗଲେ ; ତା'ପରେ ଦଖଲ କଲେ ଫ୍ରାନ୍‌ସ୍ । ଭାରତରେ ବ୍ରିଟେନ୍‌ର ପ୍ରତିପତ୍ତି ଖୁବ୍ ତଳକୁ ଖସିଥାଏ । ବହୁ ଭାରତୀୟ ଦାବି କଲେ, 'ଏତିକି ବେଳେ ଚାଲ ବିଦ୍ରୋହ କରିବା ।'

୧୯୪୦ ଜୁନ୍ ପନ୍ଦର ତାରିଖର 'ହରିଜନ'ରେ ଗାନ୍ଧୀ ଏହାର ଜବାବ ଦେଲେ, 'ମୋର ମତ, ଆମେ ଅପେକ୍ଷା କରିବା, ମିତ୍ର-ରାଷ୍ଟ୍ରମାନଙ୍କର ହୃତ୍‌ସ୍ଥଳରେ ଯୁଦ୍ଧ ମାତିଛି , ତାହାର ଉପଶମ ହେଉ ; ଆଜି ଭବିଷ୍ୟତ୍ ଅନ୍ଧାର ଦିଶୁଛି, ଟିକିଏ ପରିଷ୍କାର ହେଉ, ତା'ପରେ ଆମର କର୍ତ୍ତବ୍ୟ ଆମେ ନିରୂପଣ କରିବା । ବ୍ରିଟେନ୍‌ର ଧ୍ୱଂସସ୍ତୂପରୁ ଭାରତର ସ୍ୱାଧୀନତା ଆହରଣ କରିବା ଆମର ଅଭିପ୍ରାୟ ନୁହେ । ଏହା ଅହିଂସାର ମାର୍ଗ ନୁହେ ।'

ଭାରତର ସ୍ୱାଧୀନତା ପାଇଁ ସମୟ ଅନୁକୂଳ ହେଉଥାଏ । ଗାନ୍ଧୀ କହିଲେ, 'ଗୋଟାଏ ବି ଗୁଳି ଫାଏର୍ ନ କରି ଆମେ ଆମ ଲକ୍ଷ୍ୟସ୍ଥଳର ନିକଟତର ହେଉଥାଇଁ ।' କେବଳ ଅହିଂସା ପ୍ରଚାର କରିବାକୁ ଅଧିକାର ମିଳୁ ବୋଲି ସେ ଚାହୁଁଥାନ୍ତି ।

ଫ୍ରାନ୍‌ସ୍ ହିଟଲର୍‌ଙ୍କଠାରେ ଆତ୍ମସମର୍ପଣ କଲା । ଭାରତର କେତେକ ଲୋକ ହିଟଲର୍‌ଙ୍କ ବିଜୟରେ ଆତଙ୍କିତ ହେଲାବେଳକୁ ଆଉ କେତେକଙ୍କ ମନରେ ଆଶା ଜାଗି ଉଠୁଥାଏ । ବ୍ୟାଙ୍କ୍‌ରେ ଜମା କରିଥିବା ଟଙ୍କା ଉଠାଇ ନେବାକୁ ଧାଉଡ଼ି ଲାଗିଲା । ଧୀର ସ୍ଥିର ରହିବାକୁ ଗାନ୍ଧୀ ନିର୍ଦ୍ଦେଶ ଦେଉଥାନ୍ତି । ନିଜେ ଟିକିଏ ବି ବିଚଳିତ ନ ହୋଇ ସେ ଭବିଷ୍ୟତ୍‌ବାଣୀ ଶୁଣାଉଥାନ୍ତି, 'ବ୍ରିଟେନ୍ ସହଜରେ ପରାଭୂତ ହେବ ନାହିଁ । ଯଦି ବା ହାରେ, ବୀରପରି ହାରିବ । ବ୍ରିଟେନ୍ ଯୁଦ୍ଧରେ ହାରିଯିବାର ମଝିରେ ମଝିରେ ହୁଏତ ଶୁଣିବା, କିନ୍ତୁ ବ୍ରିଟେନ୍‌ର ଲୋକେ ଆତଙ୍କରେ ଛତ୍ରଭଙ୍ଗ ଦେବାର କେବେହେଁ ଶୁଣାଯିବ ନାହିଁ ।'

ଗାନ୍ଧୀଙ୍କ ଶାନ୍ତିବାଦୀ ମତକୁ ଗ୍ରହଣ ନ କରି, ବ୍ରିଟେନ୍‌କୁ ସାହାଯ୍ୟ

କରିବାକୁ କଂଗ୍ରେସ ଯେତେବେଳେ ବାହାରୁଥିଲା ସେତେବେଳେ ଗାନ୍ଧୀ ବାଧା ଦେଉ ନ ଥିଲେ । କିନ୍ତୁ ଗାନ୍ଧୀଙ୍କ ଶାନ୍ତିବାଦ ଗ୍ରହଣ କରି କଂଗ୍ରେସ ଯୁଦ୍ଧ ଉଦ୍ୟମରେ ଅନ୍ତରାୟ ସୃଷ୍ଟି କରିବାକୁ ବସିଲେ ଗାନ୍ଧୀ ବାଧା ଦେଉଥିଲେ ।

ଯୁଦ୍ଧ ଯୋଗୁଁ ଭାରତୀୟ ରାଜନୀତିରେ ଯେଉଁ ସମସ୍ୟାର ଉଦ୍‌ଭବ ହୋଇଥିଲା ତହିଁର ପର୍ଯ୍ୟାଲୋଚନା କରିବାକୁ କଂଗ୍ରେସ କାର୍ଯ୍ୟକାରୀ କମିଟି ଓ୍ୱାର୍ଦ୍ଧାରେ ବସିଲା । ୧୯୪୦, ଜୁନ୍ ୨୧ ତାରିଖରେ କାର୍ଯ୍ୟକାରୀ କମିଟି ସ୍ପଷ୍ଟ ଘୋଷଣା କଲେ ଯେ, ଅହିଂସା ନୀତିରେ କଂଗ୍ରେସ 'ଗାନ୍ଧୀଙ୍କ ସଙ୍ଗେ ପୂରାପୂରି ଏକମତ' ହୋଇ ପାରିବ ନାହିଁ । ନେହରୁ ତାଙ୍କ ଆତ୍ମଜୀବନୀରେ ଲେଖିଛନ୍ତି, 'ଏଇଠାରେ ପ୍ରଥମ ଥର ପାଇଁ ଗାନ୍ଧୀ ଓ କଂଗ୍ରେସର ବାଟ ଅଲଗା ଅଲଗା ହୋଇଗଲା । ଗାନ୍ଧୀ ଗୋଟିଏ ବାଟ ଧରିଲେ ; କଂଗ୍ରେସ ସେ ବାଟ ଛାଡ଼ି ଅନ୍ୟ ବାଟରେ ଆଗେଇଲା......।'

ଗାନ୍ଧୀ ଏ ବିଭେଦ ଉପରେ ମତ ଦେଲେ, 'ଯାହା ହେଲା, ସେଥିରେ ମୁଁ ଯେତିକି ଆନନ୍ଦିତ ସେତିକି ଦୁଃଖିତ ହେଉଛି । ଆନନ୍ଦର କାରଣ, କଂଗ୍ରେସଠାରୁ ଅଲଗା ହୋଇଯିବାର ଯେଉଁ ଆଘାତ ତା'କୁ ମୁଁ ସହି ପାରିଛି, ଏବଂ ଏକୁଟିଆ ମୋ ବାଟରେ ଯିବାକୁ ଭଗବାନ୍ ମୋତେ ଶକ୍ତି ଦେଇଛନ୍ତି । ଦୁଃଖର କାରଣ, ମୋ କଥା ନିର୍ବୀର୍ଯ୍ୟ ହୋଇଯାଇଛି । ଏତେ ବର୍ଷକାଳ ଯେଉଁମାନଙ୍କୁ ମୋ କଥାରେ ମନାଇ ରଖିବାର ମହାନ୍ ସୁଯୋଗ ମୋତେ ମିଳିଥିଲା, ସେମାନଙ୍କୁ ମନାଇ ରଖିବାର ଶକ୍ତି ମୁଁ ହରାଇଛି ।'

ଜୁନ୍ ୨୯ ତାରିଖରେ ବଡ଼ଲାଟ ପୁଣି ଆଉଥରେ ସାକ୍ଷାତ୍ କରିବା ପାଇଁ ଗାନ୍ଧୀଙ୍କୁ ଡକାଇଲେ । ଗାନ୍ଧୀଙ୍କର ପ୍ରଭାବ ଖର୍ବ ହେବାର ନୁହେଁ ବୋଲି ଲର୍ଡ଼ ଲିନ୍‌ଲିଥ୍‌ଗୋ ବୁଝିଥିଲେ । ସେ ଗାନ୍ଧୀଙ୍କୁ ଶୁଣାଇ ଦେଲେ ଯେ, ଭାରତର ଶାସନରେ ଭାରତୀୟମାନଙ୍କୁ ଅଧିକତର କ୍ଷମତା ଦେବାକୁ ବ୍ରିଟେନ୍ ପ୍ରସ୍ତୁତ ଅଛି ।

ଏହି ପ୍ରସ୍ତାବକୁ ତଉଲିବା ପାଇଁ କାର୍ଯ୍ୟକାରୀ କମିଟି ଜୁଲାଇ ପ୍ରଥମ ସପ୍ତାହରେ ଦିଲ୍ଲୀରେ ବସିଲା । ଗାନ୍ଧୀ ଏ ପ୍ରସ୍ତାବକୁ ଆଦୌ ପାସଙ୍ଗରେ ପକାଇଲେ ନାହିଁ । କିନ୍ତୁ ମହାତ୍ମାଙ୍କର ଅନ୍ତରଙ୍ଗ ବନ୍ଧୁ ରାଜଗୋପାଳାଚାରୀ ଅତି ଚତୁରଭାବରେ ଗାନ୍ଧୀଙ୍କ ମତର ବିରୋଧ କଲେ । ମହାତ୍ମାଙ୍କ ବିଶ୍ୱସ୍ତ ଅନୁଚର ସର୍ଦ୍ଦାର ବଲ୍ଲଭଭାଇ ପଟେଲଙ୍କୁ, ରାଜଗୋପାଳାଚାରୀ ନିଜର

ପକ୍ଷକୁ ଟାଣି ନେଇପାରିଲେ । ଗାନ୍ଧୀଙ୍କର ସମର୍ଥକ ହୋଇ ରହିଲେ କେବଳ ସୀମାନ୍ତ ଗାନ୍ଧୀ, ଗଫର୍ ଖାଁ ।

ଗାନ୍ଧୀ କାର୍ଯ୍ୟକାରୀ କମିଟିର କାର୍ଯ୍ୟବିବରଣୀର ସଂକ୍ଷିପ୍ତ ସାର 'ହରିଜନ'ରେ ପ୍ରକାଶ କରିଥିଲେ : ରାଜଗୋପାଳାଚାରୀ ମନେ କରନ୍ତି, ଅହିଂସା ବିଷୟରେ ଗୁଡ଼ାଏ ଭାବ ହେବା ଯୋଗୁଁ ତାହା ମୋତେ ଭୂତପରି ମାଡ଼ି ବସିଛି । ରାଜାଜୀ ତ ଏପର୍ଯ୍ୟନ୍ତ ମନେ କରୁଛନ୍ତି ଯେ, ଅହିଂସା-ଆବିଷ୍ଟ ହେବା ଯୋଗୁଁ ମୋର ପୂର୍ବଦୃଷ୍ଟିରେ ପରଳ ମାଡ଼ିଯାଇଛି । ତାଙ୍କର ସେଇଆ ହୋଇଛି ବୋଲି କହିବା ନିରର୍ଥକ ହେଲେ ହେଁ ଅଧା କୌତୁକରେ ମୁଁ ତାଙ୍କୁ ସେଇଆ କହିଲି··· । ଯାହାହେଉ, ମୋତେ ହିବାଲୋକ ପରି ପରିଷ୍କାର ଦିଶିଲା ଯେ, ମୋର ମତ ଯଦି ଅଗ୍ରାହ୍ୟ ହେଲା, ତେବେ ରାଜାଜୀ ଯାହା କହୁଛନ୍ତି ତାହା ଗ୍ରହଣ କରିବା ବ୍ୟତୀତ ଅନ୍ୟ ପନ୍ଥା ନାହିଁ । ତେଣୁ ରାଜାଜୀ ଅତିଶୟ ଭୁଲ କରୁଛନ୍ତି ବୋଲି ଜାଣି ସୁଦ୍ଧା, ତାଙ୍କ ଉଦ୍ୟମରେ ଆଗେଇ ଯିବାକୁ ମୁଁ ତାଙ୍କୁ ଉତ୍ସାହିତ କଲି ।' ରାଜାଜୀ (ରାଜଗୋପାଳାଚାରୀ) ତାଙ୍କ ପକ୍ଷରେ ବହୁସଂଖ୍ୟାଗରିଷ୍ଠତା ପାଇଲେ ; ମାତ୍ର ପାଞ୍ଚଜଣ ଏ ପକ୍ଷ ବା ସେ ପକ୍ଷରେ ଭୋଟ ନ ଦେଇ ତୁନି ରହିଲେ ।

ସମର ଚାଲିଥିବା ବେଳେ ପୂର୍ଣ୍ଣ ଶାନ୍ତିବାଦକୁ ଆଶ୍ରୟ କରି ରହିବା ଯେ ଠିକ୍ ହେବ, ଏକଥା କଂଗ୍ରେସ ନେତାମାନଙ୍କୁ ବୁଝାଇ ପାରିଲେ ନାହିଁ । ସମସ୍ତେ ଜାଣୁଥିଲେ, ଗାନ୍ଧୀ ଚାହିଁଥିଲେ ରାଜାଜୀଙ୍କ ପ୍ରସ୍ତାବକୁ ସମୂଳେ ମାରି ଦେଇପାରିଥାନ୍ତେ । ସମ୍ଭବତଃ, ଗାନ୍ଧୀ ଟାଣ ଧରି ରାଜାଜୀଙ୍କୁ ନିର୍ଦ୍ଦେଶ ଦେଇଥିଲେ ରାଜାଜୀ ଆପଣା ଆଡ଼ୁ ନିଜ ପ୍ରସ୍ତାବକୁ ପ୍ରତ୍ୟାହାର କରି ନେଇଥାନ୍ତେ । କିନ୍ତୁ ସେପରି କରିଥିଲେ, ଗାନ୍ଧୀ ହୁକୁମ ଜାରି କଲାପରି ହୋଇଥାନ୍ତା । ସେ ବ୍ୟକ୍ତିଗତ ସ୍ୱାଧୀନତାର ଏତେ ଉପାସକ ଥିଲେ ଯେ, ଅନିଚ୍ଛାସତ୍ତ୍ୱେ କେହି ଅନ୍ୟ କଥାରେ ରାଜି ହେବାକୁ ବା ଅନ୍ୟର ନିର୍ଦ୍ଦେଶରେ କାର୍ଯ୍ୟ କରିବାକୁ ଚାହୁଁ ନ ଥିଲେ । ବରଂ କଂଗ୍ରେସରୁ ଅଲଗା ହୋଇଯିବା ପଛେ ଶ୍ରେୟ, କଂଗ୍ରେସର ନେତାମାନଙ୍କ ମର୍ଯ୍ୟାଦା କ୍ଷୁଣ୍ଣ କରିବା ଉଚିତ ନୁହେଁ ବୋଲି ସେ ବିଚାରିଥିଲେ ।

ଜୁଲାଇ ୭ ତାରିଖରେ, ଗାନ୍ଧୀଙ୍କର ଅସମ୍ମତି ସତ୍ତ୍ୱେ, ରାଜାଜୀଙ୍କର ଯେଉଁ ପ୍ରସ୍ତାବ ଗୃହୀତ ହେଲା, ତହିଁରେ ଘୋଷିତ ହେଲା ଯେ, ଭାରତକୁ ଯଦି ପୂର୍ଣ୍ଣ ସ୍ୱାଧୀନତା ଦିଆଯାଏ ଏବଂ କେନ୍ଦ୍ର ସରକାରରେ ଭାରତୀୟଙ୍କର

ଯଦି ପୂର୍ଣ୍ଣ କର୍ତ୍ତୃତ୍ୱ ରହେ ତେବେ, 'ଦେଶର ପ୍ରତିରକ୍ଷା ପାଇଁ କଂଗ୍ରେସ ସମସ୍ତ ଶକ୍ତି ଖଟାଇ ଚେଷ୍ଟା କରିବାକୁ ସମର୍ଥ ହେବ' ; ସ୍ୱାଧୀନ ଭାରତ ମିତ୍ର ପକ୍ଷର ଗୋଟିଏ ରାଷ୍ଟ୍ର ହୋଇ ନାଜିଙ୍କ ବିରୁଦ୍ଧରେ ଯୁଦ୍ଧ ଚଳାଇବ ।

ଏତେବେଳେ ଗ୍ରେଟ୍ ବ୍ରିଟେନ୍‌ର ପ୍ରଧାନ ମନ୍ତ୍ରୀ ଥାଆନ୍ତି ଉଇନ୍‌ଷ୍ଟନ ଚର୍ଚ୍ଚିଲ୍ । ସାହସର ସହିତ ଶତ୍ରୁର ସମ୍ମୁଖୀନ ହେବା ପାଇଁ ସେ ଇଂଲଣ୍ଡକୁ ଉତ୍ତେଜିତ କରୁଥାଆନ୍ତି । ବହୁ ବର୍ଷ ହେଲା, ଭାରତକୁ ସ୍ୱାଧୀନତା ଦେବା ବିରୁଦ୍ଧରେ ସେ ବହୁବାର ବିବୃତି ଦେଇ ଆସିଥିଲେ । ବର୍ତ୍ତମାନ ଭାରତୀୟ ସ୍ୱାଧୀନତାକୁ ରୋକି ଦେବାର ଶକ୍ତି ତାଙ୍କ ହାତରେ ପଡ଼ିଥାଏ । ତାଙ୍କର ନିର୍ଦ୍ଦେଶରେ, ଅଗଷ୍ଟ ଆଠ ତାରିଖ ଦିନ, କଂଗ୍ରେସର ପ୍ରସ୍ତାବକୁ ଅଗ୍ରାହ୍ୟ କରି ଲିନ୍‌ଲିଥ୍‌ଗୋ ଘୋଷଣା କଲେ ଯେ, ସେ ତାଙ୍କର ଏକ୍‌ଜିକ୍ୟୁଟିଭ୍ କାଉନ୍‌ସିଲରେ କେତେଜଣ ଭାରତୀୟଙ୍କୁ ସ୍ଥାନ ଦେବାକୁ ଏବଂ ଭାରତୀୟଙ୍କୁ ନେଇ ଗୋଟିଏ ଯୁଦ୍ଧ-ପରାମର୍ଶଦାତା କମିଟି ଗଠନକରିବାକୁ ଇଚ୍ଛା କରୁଛନ୍ତି । ଏହି ପରାମର୍ଶଦାତା କମିଟି ନିୟମିତ ଭାବରେ ବସି ଯୁଦ୍ଧପ୍ରସ୍ତୁତି ବିଷୟରେ ଭାରତ ସରକାରକୁ ପରାମର୍ଶ ଦେବେ ବୋଲି ବଡ଼ଲାଟ ପ୍ରକାଶ କଲେ । ଲର୍ଡ୍ ପେଥିକ୍ ଲରେନ୍‌ସ୍ ୧୯୪୫ ଖ୍ରୀଷ୍ଟାବ୍ଦରେ ଭାରତ ପାଇଁ ସେକ୍ରେଟାରୀ ଅବ୍ ଷ୍ଟେଟ୍ ନିଯୁକ୍ତ ହେଲେ । ସେ ଲିନ୍‌ଲିଥ୍‌ଗୋଙ୍କ ଏ ପ୍ରସ୍ତାବର ଭାବାର୍ଥ କରି କହିଥିଲେ, 'ଭାରତ ସହିତ ସଂପର୍କ ଫଳରେ ବ୍ରିଟେନ୍ ଯେଉଁ ଦାୟିତ୍ୱ ଅର୍ଜନ କରିଥିଲା ତା'କୁ ଛାଡ଼ିଦେବା ପାଇଁ ବ୍ରିଟେନ୍ ପ୍ରସ୍ତୁତ ହୋଇ ପାରିଲା ନାହିଁ ।' ନଭେମ୍ବର ୧୦, ୧୯୪୨ରେ ଚର୍ଚ୍ଚିଲ ଏ ସଂପର୍କରେ ତାଙ୍କର ଇତିହାସ-ପ୍ରସିଦ୍ଧ ବିବୃତିରେ କହିଥିଲେ, 'ବ୍ରିଟିଶ ସାମ୍ରାଜ୍ୟର ହିସାବ ନିକାଶ କରିଦେବା ସକାଶ ମୁଁ ସମ୍ରାଟ୍‌ଙ୍କର ପ୍ରଥମ ସଚିବ ହୋଇନାହିଁ ।' ଲିନ୍‌ଲିଥ୍‌ଗୋଙ୍କ ଘୋଷଣା ଚର୍ଚ୍ଚିଲ୍‌ଙ୍କ ଏହି ବକ୍ତୃତର ପୂର୍ବାଭାସ ବୋଲି କୁହାଯାଇପାରେ ।

ଲିନ୍‌ଲିଥ୍‌ଗୋ ଆହୁରି କହିଥିଲେ, ଯେଉଁମାନଙ୍କ ନେତୃତ୍ୱ, ଭାରତର ବହୁସଂଖ୍ୟକ ପ୍ରଭାବଶାଳୀ ଗୋଷ୍ଠୀମାନେ ସ୍ୱୀକାର କରିବାକୁ ସ୍ପଷ୍ଟ ନାସ୍ତି କରନ୍ତି, ସେଇଭଳି ଲୋକଙ୍କ ହାତରେ ଭାରତର ଶାସନ ସମର୍ପି ଦେଇ ନିଜ ଦାୟିତ୍ୱରୁ ନିଷ୍କୃତି ପାଇବାକୁ ମହାମହିମ ସମ୍ରାଟଙ୍କ ସରକାର ଇଚ୍ଛା କରନ୍ତି ନାହିଁ । ଏହାଦ୍ୱାରା ସୂଚାଇ ଦିଆଗଲା ଯେ, ମୁସଲମାନଙ୍କ ବିନା ସମ୍ମତିରେ ଭାରତର କର୍ତ୍ତୃତ୍ୱ କଂଗ୍ରେସ ହାତରେ ସମର୍ପି ଦେବାକୁ ବ୍ରିଟେନ୍ ପ୍ରସ୍ତୁତ ନୁହେଁ ।

ଏହିଠାରେ, ପ୍ରଥମ କରି, ଭାରତର ରାଜନୀତିକ ଭବିଷ୍ୟତକୁ ମୁସଲମାନ ସଂପ୍ରଦାୟର ମରଜି ଉପରେ ବ୍ରିଟେନ ରଖିଦେଲା ।

ଏହି ଘୋଷଣାରେ ଅତିଶୟ କ୍ଷୁବ୍ଧ ହୋଇ ଯେଉଁ ପ୍ରସ୍ତାବ ଗ୍ରହଣ କଲେ ତାହାର ସାରାଂଶ ଲର୍ଡ ପେଥିକ୍ ଲରେନ୍ସ୍ ନିମ୍ନଲିଖିତମତେ ଲେଖିଛନ୍ତି : କଂଗ୍ରେସର ବନ୍ଧୁତ୍ୱପୂର୍ଣ୍ଣ ଓ ସ୍ୱଦେଶବତ୍ସଳତାପ୍ରସୂତ ସହ-ଯୋଗମୂଳକ ପ୍ରସ୍ତାବର ପ୍ରତ୍ୟାଖ୍ୟାନ କରିବାରୁ କଂଗ୍ରେସ ବ୍ରିଟିଶସରକାରଙ୍କୁ ଦୋଷ ଦେଲେ ଏବଂ ଭାରତର ବିକାଶର ଅନତିକ୍ରମ୍ୟ ଅନ୍ତରାୟ ସ୍ୱରୂପ ସଂଖ୍ୟା-ଲଘୁ ସଂପ୍ରଦାୟଙ୍କ ସମସ୍ୟାକୁ ଆଗରେ ରଖିବାରୁ ଅସନ୍ତୋଷ ପ୍ରକାଶ କଲେ ।

ଚର୍ଚ୍ଚିଲଙ୍କୁ ସାବାସ୍ କହିବାର କଥା ଯେ, ତାଙ୍କରି ଯୋଗୁଁ କଂଗ୍ରେସ ପୁଣି ଗାନ୍ଧୀଙ୍କ ପକ୍ଷକୁ ଆଉଜିଲା ।

ବ୍ରିଟିଶ ସରକାରଙ୍କ ପକ୍ଷରୁ ବଡ଼ଲାଟ ଦେଇଥିବା ବିଜ୍ଞପ୍ତି ଫଳରେ ଯେଉଁ ଅବସ୍ଥା ଉପୁଜିଲା, ତା'କୁ ବର୍ଣ୍ଣନା କରି ୧୯୪୦, ସେପ୍ଟେମ୍ବର ୧୫ ତାରିଖରେ, ବମ୍ବେଠାରେ ବସିଥିବା ନିଖିଳଭାରତ କଂଗ୍ରେସ କମିଟି ବୈଠକରେ ଗାନ୍ଧୀ କହିଲେ, 'ଇଂଲଣ୍ଡ ପରାସ୍ତ ହେଉ ବା ଲାଂଛିତ ହେଉ ବୋଲି ମୁଁ ଚାହେଁ ନାହିଁ । ଲଣ୍ଡନର ସେଣ୍ଟ୍ ପଲ୍ କ୍ୟାଥେଡ୍ରାଲ୍ ବୋମା-ମାଡ଼ରେ ନଷ୍ଟ ହେବ, ଏହା ଚିନ୍ତା କଲି ବେଳେ ମୋ ମନରେ ଆଘାତ ହେଉଛି······। ମୁଁ ବ୍ରିଟିଶ୍ ଜାତିକୁ ଶ୍ରଦ୍ଧା କରେ ଓ ଜର୍ମାନ୍ ଜାତିକୁ ଘୃଣା କରେ ବୋଲି ଯେ ମୋର ଏ ଭାବ ହେଉଛି ତାହା ନୁହେଁ । ଜାତି ହିସାବରେ ଜର୍ମାନ୍‌ମାନେ ଇଂଲଣ୍ଡ୍ ବା ଇଟାଲୀୟ ଜାତିଠାରୁ କୌଣସି ଗୁଣରେ ନ୍ୟୂନ ବୋଲି ମୁଁ ମନେ କରେ ନାହିଁ । ଆମେ ସମସ୍ତେ ବିରାଟ ମାନବଜାତିର ଅନ୍ତର୍ଭୁକ୍ତ ; ଆମ ସମସ୍ତଙ୍କଠାରେ ସମାନଭାବରେ ମାନବୀୟ ଦୋଷଗୁଣ ରହିଛି । ମୁଁ ଜାତି ଜାତି ଭିତରେ, ବା ବ୍ୟକ୍ତି ବ୍ୟକ୍ତି ଭିତରେ ଗୁଣଦୋଷ ଯୋଗୁଁ ବାଛବିଚାର କରିବାକୁ ପ୍ରସ୍ତୁତ ନୁହେଁ । ଭାରତୀୟମାନେ ଅନ୍ୟ କୌଣସି ଜାତିଠାରୁ ମହତ୍ତର ବୋଲି ମୁଁ ଦାବି କରି ନ ପାରେ······। ମୋର ଯଦି ଜଗତର ସମସ୍ତ ମାନବ ସଂପ୍ରଦାୟ ପ୍ରତି ସମାନ ଭାବରେ ସଦ୍‌ଭାବ ଅକ୍ଷୁଣ୍ଣ ରହେ, ତେବେ ମୁଁ ଭାରତକୁ ଏକଜୁଟ୍ କରି ରଖିପାରିବି ଏବଂ ଭାରତର ସ୍ୱାଧୀନତା ଅକ୍ଷୁଣ୍ଣ ରଖିପାରିବ । ବିରାଟ ପୃଥିବୀର ଯେଉଁ କ୍ଷୁଦ୍ର ଅଂଶ ଭାରତ ଆଖ୍ୟା ପାଇଛି ସେଇଥିରେ ବାସ କରୁଥିବା ଲୋକଙ୍କ-ଠାରେ ମୋର ଶ୍ରଦ୍ଧା ସୀମିତ ହୋଇ ରହିଲେ ଏହା ସଂଭବ ନୁହେଁ ?

ବଡ଼ଲାଟଙ୍କ ସଙ୍ଗେ ସାକ୍ଷାତ୍ କରିବାକୁ ଅନୁମତି ମାଗିବାକୁ ଗାନ୍ଧୀ ଇଚ୍ଛା କରିଥିଲେ । ସେ କହିଲେ, 'ମୁଁ ଯାଇ ତାଙ୍କୁ କହିବି ଯେ, ଆମେ ବର୍ତ୍ତମାନ ଆସି ଏଇ ପରିସ୍ଥିତିରେ ପଡ଼ିଛୁ—ଆମେ ଆପଣଙ୍କୁ କୌଣସି ପ୍ରକାରେ ହଇରାଣରେ ପକାଇବାକୁ ଚାହୁଁନାହିଁ । ଯୁଦ୍ଧ ପାଇଁ ପ୍ରସ୍ତୁତ ହେବାରେ ଆପଣ ଯେଉଁ ଉଦ୍ୟମ କରୁଛନ୍ତି, ସେଥିରେ କୌଣସି ଅନ୍ତରାୟ ସୃଷ୍ଟି କରିବା ଆମର ଇଚ୍ଛା ନୁହେଁ । ଆପଣ ଆପଣଙ୍କ ବାଟରେ ଚାଲନ୍ତୁ, ଆମେ ଆମ ବାଟରେ ଚାଲିବୁ······। କଂଗ୍ରେସ ନିଜର ମତ ପ୍ରଚାର କରିବାକୁ ସ୍ୱାଧୀନତା ପାଉ । 'ଲୋକେ ଯଦି ଆମ କଥା ମାନନ୍ତି, ତେବେ ଲୋକଙ୍କ ପକ୍ଷରୁ ଯୁଦ୍ଧ-ଉଦ୍ୟମ ହେବ ନାହିଁ । ଅପରନ୍ତୁ, ଯଦି ଆପଣଙ୍କ ପକ୍ଷରୁ ନୈତିକ ଚାପ ବ୍ୟତୀତ ଅନ୍ୟ କୌଣସି ଚାପ ନପଡ଼ି ଲୋକେ ଯୁଦ୍ଧ ଉଦ୍ୟମରେ ଆପଣଙ୍କ ସଙ୍ଗେ ସହଯୋଗ କରିବାର ଦେଖାଯାଏ, ତେବେ ଆମ ପକ୍ଷରୁ ଆପତ୍ତି ଉଠିବାର କୌଣସି କାରଣ ରହିବ ନାହିଁ । ରାଜା ମହାରାଜାଙ୍କଠାରୁ, ଜମିଦାରମାନଙ୍କଠାରୁ ଖାଲି ନୁହେ ଗ୍ରୋଟ ଆପଣ ଯଦି ସହଯୋଗ ପାନ୍ତି, ତେବେ ଆମର କିଛି କହିବାର ନାହିଁ, କିନ୍ତୁ ଆମର ମତ ଲୋକଙ୍କ ଆଗେ ଉପସ୍ଥାପିତ କରିବାର ସୁଯୋଗ ଆମକୁ ଦିଅନ୍ତୁ । ମୋର ଏ ପ୍ରସ୍ତାବ ଯେବେ ଆପଣ ଗ୍ରହଣ କରନ୍ତି······ ତେବେ ଆପଣଙ୍କ ମାନ ନିଶ୍ଚୟ ଆହୁରି ବଢ଼ିବ । ଆପଣ ଜୀବନ ମରଣର ସଂଘର୍ଷରେ ପଡ଼ିଥିବା ବେଳେ ଯଦି ଆପଣ ଆମକୁ ଏ ସ୍ୱାଧୀନତା ଦେଇ ପାରିବେ ତେବେ ଆପଣଙ୍କ ମହତ୍ତ୍ୱର ପ୍ରମାଣ ମିଳିବ····· ।'

ଏ ପ୍ରସ୍ତାବ ପ୍ରତି ବଡ଼ଲାଟ୍‌ଙ୍କ ପ୍ରତିକ୍ରିୟା ଅନୁମାନ କରି ଗାନ୍ଧି କହିଲେ, 'ମୁଁ ଏ ପ୍ରସ୍ତାବ ବାଢ଼ନ୍ତେ, ବଡଲାଟ୍ ହୁଏତ ଉତ୍ତର ଦେବେ, "ତୁମେ ଜଣେ ଅଳୀକ-କଳ୍ପନାବିଳାସୀ ।" ମୁଁ ଯେଉଁ ଆଶା ଧରି ତାଙ୍କ ପାଖକୁ ଯିବାକୁ ବାହାରିଛି ତାହା ବ୍ୟର୍ଥ ହୋଇପାରେ, କିନ୍ତୁ ମୋ କଥା ରଖିଲେ ନାହିଁ ବୋଲି ମୁଁ ତାଙ୍କୁ ଦୋଷ ଦେବି ନାହିଁ । ମୋ କଥା ରଖିବାକୁ ତାଙ୍କର ସାମର୍ଥ୍ୟ ନାହିଁ ବୋଲି ଯଦି ସେ କହନ୍ତି, ମୁଁ ତୃପ୍ତ ହୋଇ ଫେରିବି, କିନ୍ତୁ ମୋର ଆତ୍ମବିଶ୍ୱାସ ହରାଇବି ନାହିଁ ।'

ଭାଇସ୍‌ରୟ ଗାନ୍ଧୀଙ୍କୁ ମୁହଁ ଉପରେ ନାହିଁ କଲେ ଏବଂ ଏହି ନାସ୍ତିବାଣୀକୁ ଦୃଢ଼ୀଭୂତ କରିବାକୁ ସେଇ ମର୍ମରେ ଚିଠିଖଣ୍ଡେ ବି ସାଙ୍ଗେ ସାଙ୍ଗେ ପଠାଇ ଦେଲେ ।

ଭାଇସ୍‌ରୟଙ୍କଦ୍ୱାରା ପ୍ରତ୍ୟାଖ୍ୟାତ ହୋଇ ଯୁଦ୍ଧ ବିରୁଦ୍ଧରେ ପ୍ରତିବାଦ କରିବାକୁ ଏବଂ ଭାରତର ଅସହାୟତା ବିଷୟରେ ପ୍ରଚାର କରିବାକୁ ବ୍ୟଗ୍ର ହୋଇ ସେ ଅନଶନ କରିବାକୁ ଚାହାଁଲେ । ମହାଦେବ ଦେଶାଇ ତାଙ୍କର ଶରୀରର ସେ ବେଳର ଅବସ୍ଥାରେ ଅନଶନ ନ କରିବାକୁ ଅଳି କରିବାରେ ସେ ତାଙ୍କ କଥା ମାନି ଅନଶନ ପ୍ରସ୍ତାବ ଛାଡ଼ି ଆଇନ୍ ଅମାନ୍ୟ ଆରମ୍ଭ କରିବାକୁ ମନସ୍ଥ କଲେ । କିନ୍ତୁ ସେ ସମୂହ ଭାବେ ସତ୍ୟାଗ୍ରହ ଆନ୍ଦୋଳନ ଆରମ୍ଭ କଲେ ନାହିଁ । କେବଳ ବିରୋଧର ପ୍ରତୀକ ସ୍ୱରୂପ ସେ ଅପେକ୍ଷାକୃତ ଲଘୁ ଧରଣର ସତ୍ୟାଗ୍ରହ ସୁରୁ କଲେ । ଏହାଦ୍ୱାରା ସରକାରଙ୍କ ଯୁଦ୍ଧ-ଉଦ୍ୟମରେ କୌଣସି ପ୍ରତ୍ୟବାୟ ହେବ ନାହିଁ ବୋଲି ତାଙ୍କର ମନେ ହୋଇଥିଲା । ଯୁଦ୍ଧ ବିରୁଦ୍ଧରେ ପ୍ରଚାରକୁ ନିଷେଧ କରି ହୋଇଥିବା ସରକାରୀ ହୁକୁମନାମାକୁ ଅମାନ୍ୟ କରିବା ସକାଶେ ସେ ଜଣଜଣଙ୍କୁ ବାଛି ସତ୍ୟାଗ୍ରହ କରାଇବାର ଯୋଜନା କଲେ । ପ୍ରଥମେ ବାଛିଲେ ବିନୋବା ଭାବେଙ୍କୁ । ବିନୋବା ଜଣେ ଧୀରସ୍ୱଭାବାପନ୍ନ ବିଦ୍ୟାବିଳାସୀ ଗାନ୍ଧୀବାଦୀ । ବିନୋବା ଯୁଦ୍ଧ ବିରୁଦ୍ଧରେ ପ୍ରଚାର କରି ଗିରଫ୍ ହେଲେ ଏବଂ ବିଚାରରେ ତିନିମାସ ଜେଲଦଣ୍ଡ ପାଇଲେ ।

ତା'ପରେ ଗାନ୍ଧୀ ନେହେରୁଙ୍କୁ ମନୋନୀତ କଲେ । ସେ ଗିରଫ୍ ହେଲେ । ତାଙ୍କର ବିଚାର ହେଲା । ବିଚାରପତି ତାଙ୍କୁ ଦେଲେ ଚାରିବର୍ଷ ।

ତା'ପରେ ପଟେଲ ବାଛା ହେଲେ । ପଟେଲ ସରକାରଙ୍କୁ ନିଜ ଉଦ୍ଦେଶ୍ୟ ଜଣାଇଦେଲେ । ବକ୍ତୃତା ଦେବା ପୂର୍ବରୁ ତାଙ୍କୁ ଗିରଫ୍ କରାଗଲା ।

ଖ୍ରୀଷ୍ଟମାସ୍ ପର୍ବ ଉପଲକ୍ଷେ ସତ୍କାରପ୍ରତି ସମ୍ପ୍ରୀତିର ପରିଚୟ ଦେଇ, ବ୍ରିଟିଶ କର୍ମଚାରୀମାନେ ଆଇନ୍-ଅମାନ୍ୟକାରୀଙ୍କୁ ଗିରଫ କରିବାରେ ବ୍ୟସ୍ତ ନ ରହି ଖ୍ରୀଷ୍ଟମାସ୍ ଛୁଟି ନିଶ୍ଚିନ୍ତ ଭାବେ ଉପଭୋଗ କରନ୍ତୁ ବୋଲି ଭାବିକି, ଗାନ୍ଧୀ ୧୯୪୦, ଡିସେମ୍ବର ୨୪ ତାରିଖରୁ ୧୯୪୧, ଜାନୁଆରୀ ୪ ତାରିଖ ପର୍ଯ୍ୟନ୍ତ ବ୍ୟକ୍ତିଗତ ସତ୍ୟାଗ୍ରହ ମକୁବ୍ ରଖିଲେ । କିନ୍ତୁ ସରକାର ଯ୍ୱାର ଭିତରେ କଂଗ୍ରେସ ସଭାପତି ମୌଲାନା ଅବୁଲ୍ କଲମ୍ ଆଜାଦଙ୍କୁ ଗିରଫ୍ କଲେ ।

କେତେଦିନ ପରେ ପ୍ରାଦେଶିକ ଓ ସ୍ଥାନୀୟ କଂଗ୍ରେସ କମିଟିମାନେ ସତ୍ୟାଗ୍ରହ କରିବାକୁ ଇଚ୍ଛୁକ ଥିବା ବ୍ୟକ୍ତିଙ୍କ ନାମତାଲିକା ଗାନ୍ଧୀଙ୍କ ମଂଜୁରୀ ପାଇଁ ପଠାଇବାକୁ ଆରମ୍ଭ କଲେ । ମୋଟ ଉପରେ, ବ୍ୟକ୍ତିଗତ

ସତ୍ୟାଗ୍ରହ କରି ୨୩, ୨୨୩ ଜଣ ଗିରଫ୍ ହେଲେ । ଏମାନଙ୍କ ମଧ୍ୟରୁ ଅଧିକାଂଶ ନେହେରୁଙ୍କ ନିଜ ପ୍ରଦେଶ, ଯୁକ୍ତ ପ୍ରଦେଶର ଲୋକ । ଗାନ୍ଧୀ ଜେଲ୍ ନ ଯାଇ ବାହାରେ ରହିବେ ବୋଲି କଂଗ୍ରେସକୁ ପ୍ରତିଶ୍ରୁତି ଦେଇଥାନ୍ତି ।

ବ୍ୟକ୍ତିଗତ ସତ୍ୟାଗ୍ରହ ବର୍ଷେ କାଳ, ୧୯୪୧ ଖ୍ରୀଷ୍ଟାବ୍ଦର ଶେଷ ପର୍ଯ୍ୟନ୍ତ ଚାଲୁ ରହିଲା । ଏହା ଫଳରେ ଦେଶରେ ବିଶେଷ କିଛି ଉଦ୍ଦୀପନା ହେଲା ନାହିଁ । ଜେଲ୍ ଯିବା ଲୋକଙ୍କୁ ଚିନ୍ତା ଲାଗି ଯାଇଥାଏ ।

୧୯୪୧, ଡିସେମ୍ବର ମାସରେ, ବ୍ରିଟିଶ ସରକାର ଜେଲ୍‌ରେ ଥିବା କଂଗ୍ରେସ କାର୍ଯ୍ୟକାରୀ କମିଟିର ମେମ୍ବରମାନଙ୍କୁ ଖଲାସ କରିଦେଲେ । ଦ୍ୱିତୀୟ ମହାଯୁଦ୍ଧ ଏତେବେଳକୁ ବଡ଼ ଭୟଙ୍କର ପର୍ଯ୍ୟାୟରେ ପହଞ୍ଚିଥାଏ ।

ଡିସେମ୍ବର ୭ତାରିଖରେ ଜାପାନ ପର୍ଲ୍ ହାରବର୍ ଉପରେ ବୋମା ବର୍ଷଣ କଲା । ତତ୍ପର ଦିନ ଜାପାନୀସେନା ସାଙ୍ଘାଇ ଓ ଶ୍ୟାମ (ଆଜି-କାଲିର ଥାଇଲାଣ୍ଡ୍) ଦଖଲ କଲେ ଓ ବ୍ରିଟିଶଅଧିକୃତ ମାଲୟରେ ପଦାର୍ପଣ କଲେ । ୨୪ ଘଣ୍ଟା ପରେ ଜାପାନୀ ନୌବାହିନୀ ଇଂଲଣ୍ଡର 'ରିପଲ୍‌ସ୍' ଓ 'ପ୍ରିନସ୍ ଅବ୍ ଓ୍ୱେଲସ୍' ନାମକ ଦୁଇଟି ଯୁଦ୍ଧଜାହାଜକୁ ବୁଡ଼ାଇ ଦେଲା । ଏହା ଫଳରେ ପ୍ରଶାନ୍ତ ମହାସାଗରରେ ଇଂଲଣ୍ଡର ନୌଶକ୍ତି ଦୁର୍ବଳ ହୋଇ ପଡ଼ିଲା ।

ଯୁଦ୍ଧ ଭାରତର ନିକଟତର ହେଉଥାଏ । ଏ ଅବସ୍ଥାରେ, ଗାନ୍ଧୀବାଦୀ ଅହିଂସ ଅସହଯୋଗକାରୀ, ଓ ଭାରତରେ ଜାତୀୟ ସରକାର ସ୍ଥାପିତ ହେଲେ ଯୁଦ୍ଧ ଉଦ୍ୟୋଗରେ ସହଯୋଗ କରିବାକୁ କଂଗ୍ରେସର ଯେଉଁ ଦଳ ସମ୍ମତି ଦେଇଥିଲେ, ସେମାନଙ୍କ ମଧ୍ୟରେ ଥିବା ପୁରୁଣା ମତାନ୍ତର ପୁଣି ଫୁଟି ବାହାରିଲା । ଏହା ଦେଖି ଗାନ୍ଧୀ ପୁଣି କଂଗ୍ରେସର ନେତୃତ୍ୱରୁ ଓହରିଗଲେ ।

୧୯୪୧, ଡିସେମ୍ବର ମାସର ଶେଷ ଆଡ଼କୁ ହଂକଂ ଜାପାନର କବଳିତ ହେଲା । ୧୯୪୨, ଫେବୃଆରୀ ମାସରେ ସିଙ୍ଗାପୁରରେ ଥିବା ବ୍ରିଟେନ୍‌ର ବିରାଟ ସାମରିକ ଘାଟୀ ଜାପାନୀଙ୍କ ପାଖେ ଆତ୍ମସମର୍ପଣ କଲା । ମାର୍ଚ୍ଚ ମାସରେ ଜାଭା, ସୁମାତ୍ରା ପ୍ରଭୃତି ଡଚ୍‌ମାନଙ୍କ ଅଧୀନରେ ଥିବା ପୂର୍ବ ଭାରତୀୟ ଦ୍ୱୀପପୁଞ୍ଜର ଅଧିକାଂଶ ଅଧିକାର କଲା । ମାର୍ଚ୍ଚ ୯ ତାରିଖରେ, ଟୋକିଓରୁ ଜାପାନ୍ ସମ୍ରାଟଙ୍କର ଆଦେଶନାମାରେ ଘୋଷଣା କରାଗଲା ଯେ ଭାରତର ପ୍ରତିବେଶୀ ବର୍ମାର ରାଜଧାନୀ ରେଙ୍ଗୁନ୍‌କୁ ଜାପାନ୍ ଅଧିକାର କରିଛି ।

ଉତ୍ତର-ଆଫ୍ରିକାରେ ନାଜି ସେନାଧ୍ୟକ୍ଷ ରୋମେଲ୍ ପୂର୍ବରେ ଇଜିପ୍ଟ ଆଡ଼କୁ ମାଡ଼ି ଚାଲିଥାନ୍ତି । ପାଲେଷ୍ଟାଇନ୍‌ର ଆରବ୍‌ମାନେ 'ବନ୍ଧୁ-ଭାବରେ ତାଙ୍କୁ ସମ୍ବର୍ଦ୍ଧନା କରିବାର ଆୟୋଜନରେ ଥାନ୍ତି । ଯୁଦ୍ଧର ଗତି ନିରୀକ୍ଷା କରୁଥିବା ବିଶାରଦମାନେ ମନେ କରୁଥାନ୍ତି ପଶ୍ଚିମରୁ ଜର୍ମାନ୍‌ମାନେ ଓ ପୂର୍ବରୁ ଜାପାନୀମାନେ ଅଗ୍ରସର ହୋଇ ଭାରତରେ ମିଳିତ ହେବେ । ଯୁଦ୍ଧରତ ମିଳିତ ରାଷ୍ଟ୍ରମାନଙ୍କ ବିପର୍ଯ୍ୟୟ ଚିନ୍ତା କରି, କାଇରୋଠାରୁ କଲିକତା ପର୍ଯ୍ୟନ୍ତ ସମସ୍ତେ ଘୋର ନୈରାଶ୍ୟରେ ରହିଥାନ୍ତି ।

ଯୁଦ୍ଧ ବିଷୟରେ ଭାରତୀୟ ଲୋକଙ୍କର ଅତ୍ୟନ୍ତ ଉଦାସୀନ ଭାବ ଲକ୍ଷ୍ୟକରି ଯୁକ୍ତରାଷ୍ଟ୍ର ଆମେରିକାର ଜନସାଧାରଣ ବିଚଳିତ ହେଉଥାନ୍ତି । ନିଜେ ଦିନେ ଇଂଲଣ୍ଡର ଉପନିବେଶ ଥିବାରୁ, ପ୍ରଶ୍ନରର ସମସ୍ତ ଧୂଆଁ ବାଣ ସତ୍ତ୍ୱେ ଯୁକ୍ତରାଷ୍ଟ୍ର ଆମେରିକା ଭାରତର ଆଶା ଆକାଂକ୍ଷା ଉପଲବ୍ଧି କରିପାରୁଥାଏ । ରାଷ୍ଟ୍ରପତି ରୁଜ୍‌ଭେଲ୍ଟ୍ କର୍ଣ୍ଣେଲ୍ ଲୁଇ ଜନସନ୍‌ଙ୍କୁ ନିଜର ବ୍ୟକ୍ତିଗତ ଦୂତ ସ୍ୱରୂପ ଭାରତକୁ ପଠାଇଲେ । ଭାରତ ସାର୍ବଭୌମ ରାଷ୍ଟ୍ର ନ ହୋଇଥିବାରୁ ଅନ୍ୟ ରାଷ୍ଟ୍ର ଏଭଳି ଦୂତ ପଠାଇବା ପ୍ରଚଳିତ ପରଂପରାର ବହିର୍ଭୂତ କାର୍ଯ୍ୟ । ଆମେରିକା ଭାରତର ଉଦାସୀନତାରେ କେତେ ବିବ୍ରତ ଏହା ଏଭଳି ଦୂତ ପଠାଇବା ଦ୍ୱାରା ବ୍ରିଟିଶ୍ ସରକାର ଉପଲବ୍ଧି କରିବେ ବୋଲି ରୁଜ୍‌ଭେଲ୍ଟଙ୍କର ଭିତରେ ମତଲବ୍ ଥିବା ଅସଂଭବ ନୁହେଁ । ମିତ୍ର ରାଷ୍ଟ୍ରମାନଙ୍କ ପକ୍ଷରୁ ଯୁଦ୍ଧର ଉଦ୍ଦେଶ୍ୟ ଘୋଷଣା କରି 'ଆଟଲାଣ୍ଟିକ୍ ଚାର୍ଟର୍' ନାମକ ଏକ ଘୋଷଣାପତ୍ର ପ୍ରକାଶ ପାଇଥିଲା । ତହିଁରେ ଥିଲା ଯେ ଯୁଦ୍ଧପରେ ମିତ୍ର ପକ୍ଷର ସବୁ ରାଷ୍ଟ୍ରଙ୍କର ସ୍ୱାଧୀନତା ଅକ୍ଷୁଣ୍ଣ ରହିବ । ଏ ଦଫା ଭାରତ ପ୍ରତି ପ୍ରଯୁଜ୍ୟ ନୁହେଁ ବୋଲି ଚର୍ଚ୍ଚିଲ୍ ଘୋଷଣା କରିବାକୁ ବସିଲେ । ଏହା ନ କରିବାକୁ ଯୁକ୍ତରାଷ୍ଟ୍ର ଆମେରିକାର ରାଷ୍ଟ୍ରଦୂତ ଜନ୍. ଜି. ୱାଇନାଣ୍ଟ୍ ଲଣ୍ଡନରେ ଚର୍ଚ୍ଚିଲଙ୍କୁ ଯେତେ ନିବାରିଲେ ହେଁ ଚର୍ଚ୍ଚିଲ ମାନିଲେ ନାହିଁ । ହ୍ୱାଇଟ୍ ହାଉସ୍ (ଆମେରିକା ରାଷ୍ଟ୍ରପତିଙ୍କ ସରକାରୀ ବାସଭବନ)ରେ ମୁହାଁମୁହିଁ କଥାବାର୍ତ୍ତାରେ ଏବଂ ଆଟଲାଣ୍ଟିକ୍ ମହାସାଗରର ଏପାଖ ସେପାଖ ଟେଲିଫୋନ୍ କଥାବାର୍ତ୍ତାରେ ରୁଜ୍‌ଭେଲ୍ଟ୍ ଚର୍ଚ୍ଚିଲଙ୍କ ସଙ୍ଗେ ଭାରତ ବିଷୟରେ ଆଲୋଚନା କରିଥିଲେ, ଏବଂ ଭାରତୀୟ ଲୋକେ ଗ୍ରହଣ କଲାଭଳି ଗୋଟିଏ ପ୍ରସ୍ତାବ ଭାରତବାସୀଙ୍କୁ ଦେବା ଉଚିତ ବୋଲି

ତାଙ୍କଠାରେ ଦାବି କରିଥିଲେ । କିନ୍ତୁ ରୁଜ୍‌ଭେଲ୍‌ଟ୍‌ ଭାରତ ବିଷୟରେ ମୁଣ୍ଡ ଘୂରାଇବା ଚର୍ଚ୍ଚିଲ୍ ଆଦୌ ପସନ୍ଦ କରି ନ ଥିଲେ ।

ଚ୍ୟାଙ୍ଗ୍ କାଇଶେକ୍ ସେତେବେଳେ ମିତ୍ରପକ୍ଷର ଜଣେ ପ୍ରଧାନ ପୁରୁଷ ଥିଲେ । ସେ ମଧ୍ୟ ଭାରତକୁ ସ୍ୱାୟତ୍ତଶାସନ ଦେବା ସପକ୍ଷରେ ପ୍ରତ୍ୟକ୍ଷ ଭାବରେ ପ୍ରେସିଡେଣ୍ଟ୍ ରୁଜ୍‌ଭେଲ୍‌ଟ୍ ଓ ବ୍ରିଟିଶ୍ ସରକାରଙ୍କୁ ଅନୁରୋଧ କରିଥିଲେ ।

ବ୍ରିଟେନ୍‌ର ଯୁଦ୍ଧକାଳୀନ ମିଳିତ ସରକାରରେ ବ୍ରିଟିଶ୍ ଶ୍ରମିକଦଳ ଅଂଶୀଦାର ଥିଲା । ବ୍ରିଟିଶ୍ ମନ୍ତ୍ରୀମଣ୍ଡଳରେ ଶ୍ରମିକଦଳର ଯେଉଁ ପ୍ରତି-ନିଧିମାନେ ଥିଲେ ତାଙ୍କ ଭିତରୁ ଅନେକେ ଭାରତର ସ୍ୱାଧୀନତା ଦାବୀର ସମର୍ଥକ ଥିଲେ । ଏମାନେ ମନ୍ତ୍ରୀମଣ୍ଡଳର ଅଧିବେଶନ ମାନଙ୍କରେ ନିଜର ମନୋଭାବ ପ୍ରକାଶ କରୁଥିଲେ ।

ଚାରିଆଡ଼ୁ ଚାପ ପାଇ, ସାର୍ ଷ୍ଟାଫୋର୍ଡ଼ କ୍ରିପ୍‌ସ୍‌ଙ୍କୁ ଗୋଟିଏ ନୂଆ ପ୍ରସ୍ତାବ ଦେଇ ଭାରତକୁ ପଠାଇବା ପାଇଁ ଚର୍ଚ୍ଚିଲ୍ ରାଜିହେଲେ । କିନ୍ତୁ ବ୍ରିଟିଶ୍ ସାମ୍ରାଜ୍ୟ ଓ ଡଚ୍ ସାମ୍ରାଜ୍ୟ ବହୁ ସମୃଦ୍ଧ ଦୂରବର୍ତ୍ତୀ ଅଞ୍ଚଳ ହରାଇ-ଥିଲେ ହେଁ, ଆଶାବାଦୀ ଓ ଅଦମନୀୟ ବ୍ରିଟିଶ୍ ପ୍ରଧାନମନ୍ତ୍ରୀଙ୍କର ଶେଷରେ ଯୁଦ୍ଧରେ ଜୟ କରିବାର ଆଶା ଟିକିଏ ମଉଳି ନ ଥାଏ । ରୁସିଆ ଓ ଆମେରିକା ଏତେବେଳକୁ ଇଂଲଣ୍ଡର ସହଯୋଗୀ ହୋଇଥିବାରୁ ଏ ଆଶା ଦୃଢ଼ ଯୁକ୍ତି ଉପରେ ପ୍ରତିଷ୍ଠିତ ଥାଏ ବୋଲି କୁହାଯାଇପାରେ । କ୍ରିପସ୍ ଭାରତକୁ ଗଲାବେଳେ ଚର୍ଚ୍ଚିଲ୍‌ଙ୍କ ମନ ଆଦୌ ଦବି ନ ଥାଏ କି ଯୁଦ୍ଧର ପରିଣତି ବିଷୟରେ ତାଙ୍କର କୌଣସି ଆଶଂକା ନ ଥାଏ ।

କ୍ରିପସ୍ ଡେଙ୍ଗା, ସରୁଆ, ନିଜର ଚାଲିଚଳଣରେ ଅତି ସଂଯତ, ନିରାମିଷାଶୀ ଲୋକ । ଶ୍ରମିକ ଦଳର ଜଣେ ଲର୍ଡ଼-ଉପାଧିପ୍ରାପ୍ତ ବ୍ୟକ୍ତିଙ୍କର ସେ ପୁତ୍ର, ଓ ବିଖ୍ୟାତ ଫେବିଆନ୍ ସମାଜବାଦୀ ଲେଖିକାଙ୍କର ସେ ପୁତୁରା । ପିଲାଦିନେ ବଡ଼ ଲୋକଙ୍କ ପିଲାଙ୍କପାଇଁ ଉଦ୍ଦିଷ୍ଟ ସ୍କୁଲ କଲେଜରେ ସେ ପଢ଼ିଥିଲେ । ପରେ ସେ ପାର୍ଲିମେଣ୍ଟର ବାମପନ୍ଥୀ ଶ୍ରମିକଦଳର ସଦସ୍ୟ ହୋଇଥିଲେ । କୌଣସି ପୂର୍ବ ସଂସ୍କାର ବା ଗତାନୁଗତିକ ରୀତି ବା ବିଶ୍ୱାସର ସେ ଦାସ ନ ଥିଲେ । ସେ ଥିଲେ ଜଣେ ବିଚକ୍ଷଣ ବାରିଷ୍ଟର୍ । ଆଇନ୍ ବ୍ୟବସାୟରେ ପ୍ରଭୂତ ଧନ ଅର୍ଜନ କରି ତହିଁର ଅଧିକାଂଶ ସେ ରାଜନୀତିକ ଉଦ୍ଦେଶ୍ୟରେ ଦାନ କରି ଦେଉଥିଲେ ।

ଦ୍ୱିତୀୟ ମହାଯୁଦ୍ଧ ଆରମ୍ଭ ହେବାରେ ସେ ତାଙ୍କର ସମୃଦ୍ଧ ଓକାଲତି ବ୍ୟବସାୟ ଛାଡ଼ିଦେଲେ ଓ ୧୯୩୯ ନଭେମ୍ବର ମାସରେ ପୃଥିବୀ ପରିଭ୍ରମଣରେ ବାହାରିପଡ଼ିଲେ । ବିଭିନ୍ନ ପ୍ରାନ୍ତରେ ଲୋକେ କ'ଣ ଚିନ୍ତୁଛନ୍ତି ଜାଣିବା ଥିଲା ତାଙ୍କର ଏକମାତ୍ର ଉଦ୍ଦେଶ୍ୟ । ସେ ଭାରତରେ ଅଠର ଦିନ କଟାଇ ଜିନା, ଲିନ୍‌ଲିଥ୍‌ଗୋ, ରବୀନ୍ଦ୍ରନାଥ, ଆମ୍ବେଦକର, ଜବାହାରଲାଲ ନେହେରୁ ଓ ଗାନ୍ଧୀଙ୍କୁ ଭେଟିଥିଲେ (ସେ ଥିଲେ ଜବାହାରଲାଲଙ୍କ ସମବୟସ୍କ ଓ ଗାନ୍ଧୀଙ୍କଠାରୁ ୨୦ ବର୍ଷ ସାନ ।) । କ୍ରିପସ୍ ଆସି ପହଞ୍ଚିବା ବେଳେ ଗାନ୍ଧୀ ବେମାର ହୋଇ ତାଙ୍କ କୁଡ଼ିଆର ଚଟାଣରେ ଶୋଇଥାନ୍ତି । କିନ୍ତୁ 'ତୁମ ଇଂରେଜ-ହାଡ଼ ଓ ଗଣ୍ଠି ପ୍ରତି ଅନୁକଂପାରେ' ସେ କ୍ରିପସ୍‌ଙ୍କୁ ବସିବାକୁ ଗୋଟିଏ ଟୁଲ ଯୋଗାଇ ଦେଇଥିଲେ ।

ସେ ଭାରତରୁ ଫେରି ଭାରତର ସାଂବିଧାନିକ ପରିବର୍ତ୍ତନ ପାଇଁ ଗୋଟିଏ ଖଠା ପ୍ରସ୍ତୁତକରି ତାହା ବ୍ରିଟେନ୍‌ର ବୈଦେଶିକ ମନ୍ତ୍ରୀ ଲର୍ଡ଼ ହାଲିଫାକ୍‌ସଙ୍କୁ ଦେଖାଇଥିଲେ । ଲର୍ଡ଼ ହାଲିଫାକ୍‌ସ ପୂର୍ବତନ ଲର୍ଡ଼ ଆରଉଇନ୍ । ସେ ଏ ଖଠାଟି ଦେଖି ପୁରୁଣା ସରକାରୀ ନଥିପତ୍ରର ସାମିଲ୍ କରିଦେଇଥିଲେ । ୧୯୪୨ ଶୀତଋତୁରେ ଏସିଆର ଦିଗ୍‌ବଳୟ ସଙ୍କଟର କଳାମେଘରେ ଅନ୍ଧାର ହୋଇଯିବାରେ ଭାରତର ଭବିଷ୍ୟତ ବିଷୟରେ କ୍ରିପସ୍‌ଙ୍କ ଆଗ୍ରହ କର୍ତ୍ତୃପକ୍ଷଙ୍କର ମନେ ପଡ଼ିଲା । ପୁଣି ସ୍ୱୀୟ ଭିତରେ ତାଙ୍କ ମର୍ଯ୍ୟାଦା ବହୁ ପରିମାଣରେ ବଢ଼ିଯାଇଥାଏ । ହିଟଲର୍ ଋଷିଆ ଆକ୍ରମଣ କଲାବେଳେ କ୍ରିପସ୍ ମସ୍କୋରେ ଇଂଲଣ୍ଡର ରାଷ୍ଟ୍ରଦୂତ ଥିଲେ । ବ୍ରିଟିଶ ମନ୍ତ୍ରୀ-ମଣ୍ଡଳର ମୁଖ୍ୟମାନ କେତେକଙ୍କୁ ନେଇ ଯେଉଁ ଛୋଟିଆ ଯୁଦ୍ଧମନ୍ତ୍ରୀମଣ୍ଡଳ ଗଢ଼ାହୋଇଥିଲା ସେଥିରେ କ୍ରିପସ୍ ଥିଲେ ଅନ୍ୟତମ ସଭ୍ୟ । ଚର୍ଚ୍ଚିଲଙ୍କ ପରେ ସେ ମିଳିତ ମନ୍ତ୍ରୀମଣ୍ଡଳର ମୁଖ୍ୟ ହୋଇପାରନ୍ତି ବୋଲି ପ୍ରାୟଶଃ କଳ୍ପନାଜଳ୍ପନା ହେଉଥିଲା ।

୧୯୪୨, ମାର୍ଚ୍ଚ ୨୨ ତାରିଖରେ କ୍ରିପସ୍ ନୂଆଦିଲ୍ଲୀରେ ଆସି ପହଞ୍ଚିଲେ ଓ ସେଇଦିନ ବ୍ରିଟିଶ୍ ଅଫିସର୍‌ମାନଙ୍କ ସଙ୍ଗେ କଥାବାର୍ତ୍ତା ଆରମ୍ଭ କରିଦେଲେ । ସେ କୁଇନ୍ ଭିକ୍ଟୋରିଆ ରୋଡ଼ର ୩ ନମ୍ବର କୋଠିରେ ରହୁଥିଲେ । ଡକରା ପାଇ ମୌଲାନା ଅବୁଲ କଲମ୍ ଆଜାଦ୍ ୨୫ ତାରିଖରେ ସେଇ କୋଠିରେ କ୍ରିପ୍‌ସଙ୍କୁ ଭେଟିଲେ । ସେଇଠାରୁ ଆରମ୍ଭହେଲା ଭାରତୀୟ ପ୍ରତିନିଧିମାନଙ୍କ ସଙ୍ଗେ ଆଲୋଚନା ।

ଗାନ୍ଧୀ ତାଙ୍କ ଆଶ୍ରମରେ ଥିଲେ । କ୍ରିପସ୍ ସୌଜନ୍ୟପୂର୍ଣ୍ଣ ଭାଷାରେ ତାଙ୍କ ପାଖକୁ ତାରବାର୍ତ୍ତା ପଠାଇ ଦିଲ୍ଲୀ ଆସିବାକୁ ଅନୁରୋଧ କଲେ । ୧୯୪୨, ଜୁନ୍ ମାସରେ ମୁଁ ସେବାଗ୍ରାମରେ ଗାନ୍ଧୀଙ୍କ ସଙ୍ଗେ ସାକ୍ଷାତ୍ କଲାବେଳେ ସେ ଏଇ ଅନୁରୋଧ କଥା ଉତ୍ଥାପନ କରି ମୋତେ କହିଲେ, 'ମୋର ଯିବାକୁ ଇଚ୍ଛା ନ ଥିଲା । କିନ୍ତୁ କେଜାଣି ଦେଶର କୌଣସି ମଙ୍ଗଳ ହୋଇପାରେ ବୋଲି ଆଶା ହେବାରୁ ମୁଁ ଗଲି ।'

ମାର୍ଚ୍ଚ ୨ ତାରିଖ, ଅପରାହ୍ନ ୨ଟା ୧୫ ମିନଟରେ ଗାନ୍ଧୀ ୩ ନମ୍ବର କୁଇନ୍ ଭିକ୍ଟୋରିଆ ରୋଡ଼ରେ ପହଞ୍ଚିଲେ ଏବଂ ୪ଟା ୨୫ ମିନଟ ପର୍ଯ୍ୟନ୍ତ କ୍ରିପସ୍‌ଙ୍କ ପାଖେ ରହିଲେ । ଏ ପର୍ଯ୍ୟନ୍ତ ଅପ୍ରକାଶିତ ରହିଥିବା ବ୍ରିଟିଶ୍ ସରକାରଙ୍କ ଶାସନ ସଂସ୍କାର ପ୍ରସ୍ତାବାବଳୀ ସାର୍ ଷ୍ଟାଫୋର୍ଡ଼ ମହାତ୍ମାଜୀଙ୍କୁ ଦେଖାଇଲେ । ଗାନ୍ଧୀ ସେବାଗ୍ରାମରେ ମୋତେ କହିଲେ, 'ଏହି ପ୍ରସ୍ତାବାବଳୀକୁ ଟିକିଏ ଦେଖିବା ପରେ ମୁଁ କ୍ରିପ୍‌ସଙ୍କୁ କହିଲି, "ପ୍ରସ୍ତାବ ଯଦି ଏତିକି, ତେବେ ଆପଣ ଏତେ ପଥଶ୍ରମ କରି କାହିଁକି ଆସିଲେ ? ଭାରତକୁ ଦେବାକୁ ଆପଣଙ୍କ ପାଖେ ଯଦି ଆଉ ଅଧିକ କିଛି ନାହିଁ, ତେବେ ମୋର ପରାମର୍ଶ, ଆପଣ ପରବର୍ତ୍ତୀ ଉଡ଼ାଜାହାଜରେ ଘରକୁ ବାହୁଡ଼ି ଯା'ନ୍ତୁ ।" '

କ୍ରିପ୍‌ସ୍ ଉତ୍ତର ଦେଲେ, 'ମୁଁ ଆପଣଙ୍କ ପରାମର୍ଶ ବିଚାରକୁ ନେବି ।'

କ୍ରିପସ୍ ଘରକୁ ବାହୁଡ଼ି ନ ଯାଇ ଭାରତୀୟ ନେତାମାନଙ୍କ ସଙ୍ଗେ ଆଲୋଚନା ଚଳାଇଲେ । ଗାନ୍ଧୀ କିନ୍ତୁ ସେବାଗ୍ରାମ ବାହୁଡ଼ିଗଲେ । ପ୍ରଥମଥର ସେହି ଆଲୋଚନା ପରେ ସେ କ୍ରିପସ୍‌ଙ୍କ ସଙ୍ଗେ ଚିଠିପତ୍ରରେ ବି ସମ୍ପର୍କ ରଖିନାହାନ୍ତି ।

ଆଲୋଚନା ଏପ୍ରିଲ୍ ୯ ତାରିଖ ପର୍ଯ୍ୟନ୍ତ ଲାଗିରହିଲା । ସେହି ଦିନ ଚୂଡ଼ାନ୍ତ ଭାବେ କଂଗ୍ରେସ କ୍ରିପ୍‌ସ୍-ପ୍ରସ୍ତାବକୁ ପ୍ରତ୍ୟାଖ୍ୟାନ କଲେ । ପରେ, ମୁସ୍‌ଲିମ୍ ଲିଗ୍, ଶିଖ୍‌ମାନେ, ହିନ୍ଦୁ ମହାସଭା, ହରିଜନମାନେ ଓ ନରମପନ୍ଥୀମାନେ ମଧ୍ୟ ଏ ପ୍ରସ୍ତାବ ପ୍ରତ୍ୟାଖ୍ୟାନ କଲେ । ଏହା କାହାରି ଗ୍ରହଣଯୋଗ୍ୟ ହେଲାନାହିଁ । କ୍ରିପସ୍‌ଙ୍କ ଦୌତ୍ୟ ବ୍ୟର୍ଥ ହେଲା ।

ଏପ୍ରିଲ୍ ୧୨ ତାରିଖରେ ସାର୍ ଷ୍ଟାଫୋର୍ଡ଼ ସ୍ୱଦେଶକୁ ପ୍ରତ୍ୟାବର୍ତ୍ତନ କଲେ ।

ବ୍ରିଟିଶ୍ ସରକାରଙ୍କଠାରୁ କ୍ରିପସ୍ ଯେଉଁ ଘୋଷଣାପତ୍ରର ଖସଡ଼ା ଆଣିଥିଲେ ତହିଁରେ ପାଞ୍ଚଟି ଦଫା ଥିଲା । ପ୍ରଥମ ଚାରି ଦଫା ଯୁଦ୍ଧପରେ କାର୍ଯ୍ୟକାରୀ ହେବାର କଳ୍ପନା କରା ହୋଇଥିଲା; ପଞ୍ଚମ ଦଫାଟିରେ ଭାରତ ଯୁଦ୍ଧ-ଉଦ୍ୟମରେ ସହଯୋଗ କରିବା ବିଷୟ ଥିଲା । ପ୍ରଥମ ଚାରି ଦଫାରେ ବ୍ୟବସ୍ଥା ଥିଲା ଭାରତ ଯୁଦ୍ଧପରେ ସଂପୂର୍ଣ୍ଣ ଔପନିବେଶିକ ସ୍ୱାଧୀନତା ପାଇବ । କ୍ରିପସ୍ ପ୍ରେସ୍ କନ୍‌ଫରେନ୍‌ସରେ ବୁଝାଇ ଦେଇଥିଲେ ଯେ ଇଚ୍ଛା କଲେ ଭାରତ, ବ୍ରିଟିଶ୍ ରାଜ୍ୟଗୋଷ୍ଠୀରୁ ବାହାରି ବି ଯାଇପାରିବ ।

କଂଗ୍ରେସ ଓ ଗାନ୍ଧୀ ଏହା ଗ୍ରହଣ କରିବାକୁ ରାଜି ଥିଲେ ।

ଏହି ଦଫାମାନଙ୍କରେ ଲିପିବଦ୍ଧ ବ୍ୟବସ୍ଥା ଅନୁସାରେ, ଯୁଦ୍ଧପରେ, ପୂରାପୂରି ଭାରତୀୟମାନଙ୍କୁ ନେଇ ଗୋଟିଏ ସଭା ଗଠିତ ହେବ; ସେଇ ସଭା ଭାରତର ସଂବିଧାନ ପ୍ରଣୟନ କରିବେ । ଏହି ସଭାରେ ବ୍ରିଟିଶଭାରତର ପ୍ରତିନିଧି ରହିବେ ତିନିଭାଗରୁ ଭାଗେ; ଏମାନେ ନିର୍ବାଚିତ ହେବେ । କିନ୍ତୁ ଆଉରି ତିନିଭାଗରୁ ଭାଗେ ପ୍ରତିନିଧି, ବ୍ରିଟିଶଙ୍କ ଦ୍ୱାରା ବିଶେଷଭାବେ ପ୍ରଭାବିତ ଦେଶୀୟ ରାଜାମାନଙ୍କ ଦ୍ୱାରା ମନୋନୀତ ହୋଇ ଆସିବେ ।

ଏହା ଭାରତୀୟମାନଙ୍କର ଗ୍ରାହ୍ୟ ହେଲାନାହିଁ । ସେମାନେ ସଂଦେହ କଲେ ନିରଙ୍କୁଶ ଶାସକ, ଦେଶୀୟ ରାଜାମାନଙ୍କୁ ହାତ କରି ଇଂଲଣ୍ଡ ଭାରତ ଉପରେ ଆଧିପତ୍ୟ ବଜାୟ ରଖିବାକୁ ଉଦ୍ୟମ କରିବ ।

ଆଉରି ପୁଣି ବ୍ୟବସ୍ଥା ଥିଲା ଯେ ସଂବିଧାନ ପ୍ରଣୟନ ହେବା ପରେ ଯଦି କୌଣସି ପ୍ରଦେଶ ଏ ସଂବିଧାନର ଅନୁମୋଦନ ନ କରେ ତେବେ ସେ ଭାରତୀୟ ମିଳିତରାଷ୍ଟ୍ରରୁ ଅଲଗା ରହିପାରେ । ଖସଡ଼ା ଘୋଷଣା ପତ୍ରରେ ଥିଲା, 'ଅଲଗା ହୋଇଯିବା ପ୍ରଦେଶମାନେ ଯଦି ଚାହାନ୍ତି, ତେବେ ଏମାନେ ନୂଆ ସଂବିଧାନ ଗଢ଼ିପାରିବେ ଓ ଏ ସଂବିଧାନକୁ ବ୍ରିଟିଶ୍ ସରକାର ସ୍ୱୀକାର କରିବେ । ଭାରତୀୟ ମିଳିତରାଷ୍ଟ୍ରକୁ ଯେଉଁ ପାହିଆ ମିଳିବ ଏମାନଙ୍କୁ ମଧ୍ୟ ସେହି ପାହିଆ ଦେବାକୁ ବ୍ରିଟିଶ୍ ସରକାର ରାଜି······।'

ଏପରି ହେଲେ ଗୋଟିକ ଜାଗାରେ ବହୁ ଭାରତର ସୃଷ୍ଟି ହୋଇ ପାରନ୍ତା । ହିନ୍ଦୁ ଭାରତ, ମୁସ୍‌ଲିମ୍ ଭାରତ, ଦେଶୀୟରାଜ୍ୟଙ୍କ ଭାରତ, ହୁଏତ ଶିଖ ଭାରତ ଏହିପରି ବହୁ ଭାରତରେ ଭାରତ ବିଭକ୍ତ ହୋଇଯା'ନ୍ତା । ଗାନ୍ଧୀ କିନ୍ତୁ କହି ଆସୁଥିଲେ ଯେ, ଭାରତକୁ ଭାଗ ଭାଗ କରିବା ମହାପାପ ।

ଯୁଦ୍ଧପରେ ଭାରତ ପାଇଁ ଯେଉଁ ଶାସନତାନ୍ତ୍ରିକ ବ୍ୟବସ୍ଥା କ୍ରିପସ୍-

ପ୍ରସ୍ତାବରେ ଥିଲା ତାହା କଂଗ୍ରେସ ଓ ଗାନ୍ଧୀଙ୍କ ମୌଳିକ ମତର ବିରୋଧ କରୁଥିଲା । ତଥାପି ଯେ କଂଗ୍ରେସର ମୁଖପାତ୍ର ଆଜାଦ୍, ନେହେରୁ ଓ ରାଜଗୋପାଳାଚାରୀ ଏତେଦିନ ପର୍ଯ୍ୟନ୍ତ କ୍ରିପସ୍‌ଙ୍କ ସଙ୍ଗେ ଆଲୋଚନା ଚଳାଇ ଥିଲେ, ସେଥିରୁ ଜଣାପଡ଼ୁଛି ବର୍ତ୍ତମାନ ପରିସ୍ଥିତିର ମୁକାବିଲା କରିବାକୁ ଯେନକେନ ପ୍ରକାରେଣ ଗୋଟାଏ ରାଜିନାମା କରିନେବାକୁ ସେମାନେ ବିଶେଷ ବ୍ୟାକୁଳ ଥିଲେ ।

ଉଠା ଘୋଷଣା ପତ୍ରର ପଞ୍ଚମ ଦଫାରେ ଯୁଦ୍ଧକାଳୀନ ବ୍ୟବସ୍ଥା ବୋଲି ଯେଉଁ ଯୋଜନା ହୋଇଥିଲା, ସେଥିରେ ଥିଲା, "ବ୍ରିଟିଶ୍ ସରକାର ଯୁଦ୍ଧକାଳରେ ଭାରତର ପ୍ରତିରକ୍ଷା ବ୍ୟବସ୍ଥାର ପୂର୍ଣ୍ଣ ଦାୟିତ୍ୱ ହାତରେ ରଖିବେ । ସାମୂହିକ ଯୁଦ୍ଧ ଉଦ୍ୟମରେ ଭାରତ ଅଂଶୀଦାର ହେବାକୁ ହେଲେ ଏହା ଅବଶ୍ୟମ୍ଭାବୀ" । ତଥାପି ଭାରତର ଜନନାୟକମାନଙ୍କୁ ଏ ଉଦ୍ୟମରେ ସହଯୋଗ କରିବା ନିମନ୍ତେ ନିମନ୍ତ୍ରଣ କରାଯିବ ।

ଗାନ୍ଧୀ ଯୁଦ୍ଧରେ ଯୋଗ ଦେବାର ପକ୍ଷପାତୀ ନ ଥିଲେ, ତେଣୁ ଏ ଦଫା ତାଙ୍କ ପକ୍ଷରେ ଗ୍ରହଣୀୟ ନ ହେବାର କଥା । ଅପରପକ୍ଷେ କଂଗ୍ରେସ ଯୁଦ୍ଧ-ଉଦ୍ୟମରେ ସହଯୋଗ କରିବାକୁ ଅନିଚ୍ଛୁକ ନ ଥିଲା; କିନ୍ତୁ ପଞ୍ଚମ ଦଫାରେ ଏଥିପାଇଁ ଯେଉଁ ବ୍ୟବସ୍ଥା ଥିଲା ତାହା ଅସ୍ପଷ୍ଟ ଓ କଣ୍ଟକଣା-ପୂର୍ଣ୍ଣ ବୋଲି କଂଗ୍ରେସ ଅନୁଭବ କଲା । କ୍ରିପସ୍‌ଙ୍କ ସଙ୍ଗେ ଆଲୋଚନାର ଯେଉଁ ବିବରଣୀମାନ ମିଳୁଛି ସେଥିରୁ ଜଣାଯାଏ, ଯୁଦ୍ଧ ଉଦ୍ୟମରେ ଅଧିକ ସକ୍ରିୟ ଭାଗ ନେବାକୁ ଅଧିକ ଦାୟିତ୍ୱ ବହନ କରିବାକୁ ଆଜାଦ୍, ନେହେରୁ ଓ ରାଜଗୋପାଳାଚାରୀ ଅବିଶ୍ରାନ୍ତ ଦାବି କରିଥିଲେ, ଅପରନ୍ତୁ ବ୍ରିଟିଶ ସର-କାରଙ୍କ ପକ୍ଷରୁ ଭାରତୀୟଙ୍କ ଯୁଦ୍ଧ ଉଦ୍ୟମରେ ସହଯୋଗ ସଂକୀର୍ଣ୍ଣ ସୀମା ଭିତରେ ରଖିବାକୁ ଚେଷ୍ଟା ହୋଇଥିଲା ।

ବ୍ରିଟିଶ୍ ସରକାରଙ୍କ ପକ୍ଷରୁ ଅଭିଯୋଗ ହେଲା ଯେ ଗାନ୍ଧୀଙ୍କ ଯୁଦ୍ଧ-ବିରୋଧୀ ମନୋଭାବ ଯୋଗୁ ହିଁ କ୍ରିପସ୍‌ଙ୍କ ଉଦ୍ୟମ ବିଫଳ ହେଲା । ଅପର ପକ୍ଷ ଦାବୀ କରିଥିଲେ ଯେ କ୍ରିପ୍‌ସ୍ ଓ ଚର୍ଚ୍ଚିଲଙ୍କ ଯୋଗୁଁ ହିଁ ସମାଧାନ ଉଦ୍ୟମ ବିଫଳ ହେଲା । ନେହେରୁ କହିଥିଲେ, 'ଗାନ୍ଧୀଜୀ ଦିଲ୍ଲୀ ଛାଡ଼ି ଚାଲି ଯିବା ପରେ ତାଙ୍କ ସଙ୍ଗେ ଆମେ ଆଦୌ ଆଲୋଚନା କରିନାହୁଁ; ଏପରି ସ୍ଥଳେ, ତାଙ୍କ ଉପରେ କ୍ରିପ୍‌ସ୍-ପ୍ରସ୍ତାବ ପ୍ରତ୍ୟାଖ୍ୟାତ ହେଲା ବୋଲି ଅଭି-ଯୋଗ କରିବା ସଂପୂର୍ଣ୍ଣ ଅବ୍ୟବସ୍ଥିତ ।' କ୍ରିପସ୍ ପ୍ରସ୍ତାବ ସଂପର୍କରେ ହୋଇ-

ଥିବା ବିବାଦର ଉତ୍ସ ସଂପୂର୍ଣ୍ଣ ରୂପେ ଗୁଡ଼ିସିବା ପରେ, ୧୯୪୬ ରେ ପ୍ରକାଶିତ 'ଭାରତର ଆବସ୍ଥାର' ପୁସ୍ତକରେ ନେହେରୁ ତାଙ୍କର ଏହି ମନୋଭାବର ପୁନରାବୃତ୍ତି କରିଛନ୍ତି ।

୧୯୪୬ରେ ଗାନ୍ଧୀ ମୋତେ କହିଥିଲେ, 'ସେମାନେ ଜିଦ୍ କରି କହୁଛନ୍ତି ଯେ ମୁଁ ଦିଲ୍ଲୀ ଗୁଡ଼ିବା ପରେ, କ୍ରିପସ୍‌ଙ୍କ ସଙ୍ଗେ କଂଗ୍ରେସ ନେତାମାନେ କରିଥିବା ଆଲୋଚନାକୁ ପ୍ରଭାବିତ କରିଥିଲି । ଏକଥା ମିଛ ।'

ମୁଁ କହିଲି, 'ଇଂରେଜଲୋକେ ମୋତେ କହିଛନ୍ତି ଯେ ଆପଣ ସେବାଗ୍ରାମରୁ ଦିଲ୍ଲୀକୁ ଟେଲିଫୋନ୍ କରି କ୍ରିପସ୍-ପ୍ରସ୍ତାବ ପ୍ରତ୍ୟାଖ୍ୟାନ କରିବାକୁ କଂଗ୍ରେସ ନେତାମାନଙ୍କୁ ପରାମର୍ଶ ଦେଇଥିଲେ ।'

ଗାନ୍ଧୀ ଜୋର ଦେଇ ଜବାବ୍ ଦେଲେ, 'ଏ ସବୁ ମିଥ୍ୟାର ବାଗ୍‌ଜାଲ । ଯଦି ଆମ ଟେଲିଫୋନ୍ କଥାବାର୍ତ୍ତାର ରେକର୍ଡ଼ କରି ରଖିଛନ୍ତି, ତାକୁ ବାହାର କରନ୍ତୁ ଦେଖି ।'

ଗାନ୍ଧୀଙ୍କ ଯୁଦ୍ଧବିରୋଧୀ ମନୋଭାବ ସଙ୍ଗେ କ୍ରିପସ୍-ପ୍ରସ୍ତାବର ବିଫଳତାକୁ କାର୍ଯ୍ୟକାରଣ ସୂତ୍ରରେ ଯୋଡ଼ି ଭ୍ରମଧାରଣା କରିବା ଲୋକଙ୍କ ପକ୍ଷରେ ସ୍ୱାଭାବିକ । ଗାନ୍ଧୀ ଯେ କ୍ରିପସ୍ ପ୍ରସ୍ତାବକୁ ପ୍ରତ୍ୟାଖ୍ୟାନ କରିଥିଲେ ତାହାର ଦୁଇଟି କାରଣ ଥିଲା : ତାଙ୍କର ଯୁଦ୍ଧବିରୋଧୀ ମନୋଭାବ, ଏବଂ ଭାରତକୁ ଏକ ଶାସନାଧୀନରେ ରଖିବାର ଆକାଂକ୍ଷା । କଂଗ୍ରେସରେ ପ୍ରତ୍ୟକ୍ଷ ଭାବେ ସଂପୃକ୍ତ ଥାନ୍ତୁ ବା ନ ଥାନ୍ତୁ କଂଗ୍ରେସକୁ ନିଜ ମତରେ ମନାଇବାର ଶକ୍ତି ଗାନ୍ଧୀଙ୍କର ସବୁବେଳେ ଅକ୍ଷୁଣ୍ଣ ଥିଲା । ତେଣୁ କଂଗ୍ରେସ ଗାନ୍ଧୀଙ୍କ ନିର୍ଦ୍ଦେଶ ମାନି କ୍ରିପସ୍ ପ୍ରସ୍ତାବକୁ ପ୍ରତ୍ୟାଖ୍ୟାନ କଲେ ବୋଲି ଧାରଣା କରିବା ଲୋକଙ୍କ ପକ୍ଷରେ ସ୍ୱାଭାବିକ । ଏହା ଯୁକ୍ତିଯୁକ୍ତ ମନେ ହେଲେ ହେଁ, ଏଭଳି ସିଦ୍ଧାନ୍ତରେ ପହଞ୍ଚିବା ବେଳେ ଗାନ୍ଧୀଙ୍କ ମନୋବୃତ୍ତିକୁ ବିଚାର କରାଯାଇନାହିଁ । କ୍ରିପସ୍ ଆସିବା ପୂର୍ବରୁ ବହୁବାର, ଏବଂ ପରେ ଯେତେବେଳେ ଭାରତର ଭାଗ୍ୟ ନିର୍ଣ୍ଣୀତ ହେଲା ସେତେବେଳେ, କଂଗ୍ରେସ ଯାହା କରିବାକୁ ଗଲା ତାହା ତାଙ୍କ ପକ୍ଷରେ ଗ୍ରହଣୀୟ ନ ହୋଇଥିଲେ ହେଁ, ଗାନ୍ଧୀ କଂଗ୍ରେସର ସ୍ୱାଧୀନ ନିଷ୍ପତ୍ତିରେ ବାଧା ଦେଇ ନ ଥିଲେ । ଏପରି କରିବା ଥିଲା ତାଙ୍କ ଅହିଂସାମାନ୍ତି । ଗାନ୍ଧୀଙ୍କ ଦୃଷ୍ଟିରେ, ଖାଲି ହତ୍ୟା ନ କରିବା ବା ଆଘାତ ନ କରିବାଠାରୁ ଅହିଂସା ଥିଲା ଅଧିକ ବ୍ୟାପକ । ଅନ୍ୟକୁ ଚିନ୍ତାରେ ସ୍ୱାଧୀନତା ଦେବା ଥିଲା ତାଙ୍କ ଅହିଂସାର ଅଙ୍ଗୀଭୂତ । ଯଦି ସେ ନିଜର ଅନୁଚରମାନଙ୍କ ଉପରେ

ହାକମି କରିବାକୁ ବସିଥାନ୍ତେ ତେବେ ସେ ହୋଇଥାନ୍ତେ ଉଗ୍ର ଏକଛତ୍ର-ଶାସକ । ସେ ଜାଣିଥିଲେ, ବହୁ କଂଗ୍ରେସ ନେତାଙ୍କର ଯୁଦ୍ଧ-ଉଦ୍ୟମରେ ସହଯୋଗ କରିବାକୁ ମତ । ସେଥିରେ ବାଧା ଦେବାକୁ ତାଙ୍କର ଇଚ୍ଛା ନ ଥିଲା ।

ଭବିଷ୍ୟତରେ ଦିନେ ନା ଦିନେ ବ୍ରିଟିଶ୍ ଓ ଆମେରିକାନ୍‌ଙ୍କ ଚରଫରୁ-କ୍ରିପସ୍ ପ୍ରସ୍ତାବ ଉପରେ ହୋଇଥିବା ଆଲୋଚନାର ପୂର୍ଣ୍ଣ ବିବରଣୀ ପ୍ରକାଶ ପାଇବ ( ଆଲୋଚନାର ଗୋଟିଏ ପର୍ଯ୍ୟାୟରେ ଆମେରିକାର ଲୁଇ ଜନ୍‌ସନ୍ ଉଭୟ ପକ୍ଷ ମଧ୍ୟରେ ମଧ୍ୟସ୍ଥି କରିଥିଲେ) । ଏ ସମ୍ପର୍କରେ କେତେକ କୌତୂହଳୋଦ୍ଦୀପକ କାଗଜାତ୍ର ଇତିମଧ୍ୟରେ ପ୍ରକାଶ ପାଇ ସାରିଲଣି ।

ମାର୍ଚ୍ଚ ୧୦ ତାରିଖ ଦିନ କ୍ରିପସ୍ ଭାରତ ଯାଉଛନ୍ତି ବୋଲି ଚର୍ଚ୍ଚିଲ୍ ଲଣ୍ଡନରେ ଘୋଷଣା କରିଥିଲେ । ଠିକ୍ ସେହିଦିନ ରୁଜ୍‌ଭେଲ୍ଟ ଭାରତ ବିଷୟରେ ଗୋଟିଏ ଲମ୍ବା ଜଳତାରବାର୍ତ୍ତା ଚର୍ଚ୍ଚିଲଙ୍କ ପାଖକୁ ପଠାଇ-ଥିଲେ । ୧୭୮୩ ଓ ୧୭୮୯ ମଧ୍ୟବର୍ତ୍ତୀ ଆମେରିକା ଇତିହାସର ଘଟଣାର ଉପଲକ୍ଷ୍ୟ ଦେଇ ରାଷ୍ଟ୍ରପତି ସୂଚାଇଥିଲେ, 'ପାଞ୍ଚ ଛ' ବର୍ଷ କାର୍ଯ୍ୟକାରୀ ହେବା ପାଇଁ ଗୋଟିଏ ମଧ୍ୟବର୍ତ୍ତୀକାଳୀନ ସରକାରର ବ୍ୟବସ୍ଥା କରାଯାଉ । ରାଷ୍ଟ୍ରପତି କହିଥିଲେ, 'ଏପରି କଲେ ହୁଏତ...... ଭାରତବାସୀଙ୍କ ମନରେ ଥିବା ତିକ୍ତଭାବ ମାସୋର ହୋଇଯିବ ଏବଂ ସେମାନେ ବ୍ରିଟିଶ୍ ସରକାର ପ୍ରତି ଅଧିକ ଅନୁରକ୍ତ ହୋଇଯିବେ......।'

ରୁଜ୍‌ଭେଲ୍ଟ୍ ଏହି ତାରବାର୍ତ୍ତାରେ ଆହୁରି କହିଥିଲେ ଭାରତ ବିଷୟରେ 'ମୁଣ୍ଡ ଘୂରାଇବା ମୋ'ର କାମ ନୁହେଁ; ମୁଁ ଆପଣଙ୍କୁ ସାହାଯ୍ୟ କରିବା ପାଇଁ ଯାହା କହିଲି ମାତ୍ର । ଆପଣଙ୍କୁ ଭଗବାନ୍‌ଙ୍କ ଦୋହାଇ ଏଥି-ଯୋଗୁଁ ମୋତେ ଭୁଲ ବୁଝିବେ ନାହିଁ ।'

ରବର୍ଟ୍ ଇ ଶେରଉଡ଼୍ ତାଙ୍କ ଲିଖିତ 'ରୁଜ୍‌ଭେଲ୍ଟ୍ ଓ ହପ୍‌କିନ୍‌ସ' ପୁସ୍ତକରେ ଏ ତାରବାର୍ତ୍ତା ଉଦ୍ଧାର କରି ଲେଖିଛନ୍ତି, 'ଭାରତ ବିଷୟରେ ମୁଣ୍ଡ ଘୂରାଇବା ମୋର କାମ ନୁହେଁ ବୋଲି ରୁଜ୍‌ଭେଲ୍ଟ୍ ଯାହା ଲେଖିଥିଲେ, ସମଗ୍ର ତାରବାର୍ତ୍ତାର ସେଇ ଟିକକ ସହିତ ମାତ୍ର ଚର୍ଚ୍ଚିଲ୍ ଏକମତ ହୋଇଥିଲେ ବୋଲି ମନେ ହୁଏ... ।' ଶେରଉଡ଼୍ ଆହୁରି ଲେଖିଛନ୍ତି, 'ଏ ଘଟଣାର ବହୁ ଦିନ ପରେ ହପ୍‌କିନସ୍ କହିଥିଲେ ଯେ, ଭାରତୀୟ ସମସ୍ୟାର ସମାଧାନ କରିବା ସକାଶ ରୁଜ୍‌ଭେଲ୍ଟ ଦେଇଥିବା ପ୍ରସ୍ତାବକୁ ଚର୍ଚ୍ଚିଲ୍ ଯେତେ କ୍ରୋଧର ସହିତ

ଗ୍ରହଣ କରିଥିଲେ, ସମଗ୍ର ଯୁଦ୍ଧକାଳରେ ରୁଜ୍‌ଭେଲ୍ଟ୍ ଦେଇଥିବା ଅନ୍ୟ କୌଣସି ପରାମର୍ଶ ପାଇ ସେ ସେତେ କ୍ରୁଦ୍ଧ ହୋଇଥିଲେ ବୋଲି ହପ୍‌କିନ୍‌ସ-ଙ୍କର ମନେ ହୋଇ ନ ଥିଲା । ଚର୍ଚ୍ଚିଲ୍‌ଙ୍କର ଜଣେ ଅତି ଅନ୍ତରଙ୍ଗ ଓ ବିଶ୍ୱସ୍ତ ସହକର୍ମୀ ମୋତେ କହିଛନ୍ତି, 'ଭାରତ ଏକମାତ୍ର ବିଷୟ ଯାହା ବିଷୟରେ କି ଉଇନ୍‌ଷ୍ଟନ୍ ଗଜେ ବି ଘୁଞ୍ଚିବାକୁ ପ୍ରସ୍ତୁତ ନ ଥିଲେ—ଏକଥା ପ୍ରେସିଡ଼େଣ୍ଟ୍-ରୁଜ୍‌ଭେଲ୍ଟ୍ ବୋଧହୁଏ ଜାଣିଥିବେ ।' ଗଜେ ନ କହି ଇଞ୍ଚେ କହିଥିଲେ କଥାଟି ଅଧିକ ଯଥାର୍ଥ ହୋଇଥାନ୍ତା ।

୧୯୪୨, ଏପ୍ରିଲ୍ ୧୨ ତାରିଖରେ ବ୍ରିଟିଶ୍ ପ୍ରଧାନମନ୍ତ୍ରୀଙ୍କ ମଫସଲ-ବାସଭବନ ଚେକର୍‌ସ୍‌ଠାରେ ହ୍ୟାରି ହପ୍‌କିନ୍‌ସ୍ ପ୍ରଧାନମନ୍ତ୍ରୀଙ୍କ ଅତିଥି ହୋଇଥିଲେ । ସେଇ ଦିନ ସେଇଠାରେ ରୁଜ୍‌ଭେଲ୍ଟ୍‌ଙ୍କଠାରୁ ଗୋଟିଏ ସମୁଦ୍ର ତାରବାର୍ତ୍ତା ପ୍ରଧାନମନ୍ତ୍ରୀ ପାଇଲେ । କ୍ରିପ୍‌ସଙ୍କ ଆଲୋଚନା ଯେପରି ବିଫଳ ନ ହୁଏ ସେଥିପ୍ରତି ସର୍ବଥା ପ୍ରଯତ୍ନ କରିବାକୁ ରୁଜଭେଲ୍ଟ୍ ଅନୁରୋଧ କରିଥାନ୍ତି । ରୁଜଭେଲ୍ଟ୍ ଆହୁରି ଗୋଟିଏ ତାରବାର୍ତ୍ତା ମଧ୍ୟ ପଠାଇଥିଲେ । ସେଥିରେ ସେ ଲେଖିଥିଲେ :

ଆପଣ ଆପଣଙ୍କ ବାର୍ତ୍ତାରେ ଲେଖିଛନ୍ତି, ଆମେରିକାର ଜନ-ସାଧାରଣ ଧରି ନେଇଛନ୍ତି ମୋଟାମୋଟି ଭାବରେ ଭାରତୀୟଙ୍କ ଦାବୀ ଆମେ ଗ୍ରହଣ ନ କରିବାରୁ କ୍ରିପ୍‌ସ୍‌ଙ୍କ ସମାଧାନ-ଉଦ୍ୟମ ବ୍ୟର୍ଥ ହୋଇଛି । ଦୁଃଖର ସହିତ ମୁଁ ଜଣାଉଛି ଯେ ଏହା ଠିକ୍ ନୁହେଁ । ଆମେରିକାର ସାଧାରଣ ଜନମତ ଏହାର ଠିକ୍ ଓଲଟା । ଆମେରିକାରେ ପ୍ରାୟ ସମସ୍ତେ କହୁଛନ୍ତି, ଭାରତୀୟମାନେ ସାମରିକ ଓ ନୌଯୁଦ୍ଧ ସମ୍ପର୍କୀୟ ସମସ୍ତ ଯୁଦ୍ଧ ଉଦ୍ୟମର ପରିଚାଳନା ଭାର ବିଶାରଦ ସାମରିକ କର୍ତ୍ତୃପକ୍ଷଙ୍କ ହାତରେ ଛାଡ଼ି ଦେବାକୁ ରାଜିଥିବା ସ୍ଥଳେ, ବ୍ରିଟିଶ୍ ସରକାର ଭାରତୀୟମାନଙ୍କୁ ସ୍ୱାୟତ୍ତଶାସନ ଦେବାକୁ ଅନିଚ୍ଛୁକ ହେବାରୁ ହିଁ କ୍ରିପସ୍‌ଙ୍କ କଥାବାର୍ତ୍ତାରେ ଅଚଳ ଅବସ୍ଥା ଉପୁଜିଛି । ଯୁଦ୍ଧପରେ ଭାରତର ଅନ୍ତର୍ଗତ ପ୍ରଦେଶମାନେ ଇଚ୍ଛାକଲେ ବ୍ରିଟିଶ୍ ସାମ୍ରାଜ୍ୟରୁ ଅଲଗା ହୋଇଯିବାର ଅଧିକାର ବ୍ରିଟିଶ୍ ସରକାର ଦେବାକୁ ପ୍ରସ୍ତୁତ ଥିବା ସ୍ଥଳେ, ଯୁଦ୍ଧବେଳେ ଭାରତକୁ ସ୍ୱାୟତ୍ତ-ଶାସନର ସମକକ୍ଷ ଅଧିକାର ଦେବାକୁ କାହିଁକି ଅମଙ୍ଗ ହେଉଛନ୍ତି ତାହା ଆମେରିକାର ଲୋକେ ବୁଝିବାକୁ ଅସମର୍ଥ ।

ରୁଜଭେଲ୍ଟ୍ ଆହୁରି ଲେଖିଥିଲେ, 'ମୁଁ ଖବର ପାଉଛି, ଗତ

ଗୁରୁବାର ରାତ୍ରରେ (ଏପ୍ରିଲ୍ ୯ ତାରିଖରେ) ରାଜନାମା ପ୍ରାୟ ହୋଇ ସାରିଥିଲା ।’

କ୍ରିପସ୍ ଭାରତୀୟ ନେତାମାନଙ୍କ ସଙ୍ଗେ ରାଜନାମା କରାଇବାକୁ ଆନ୍ତରିକ ଭାବେ ଚେଷ୍ଟା ଚଳାଇଥିଲେ । ବ୍ରିଟିଶ ସରକାର ଦେଇଥିବା ଚଠାକୁ ଭାରତୀୟମାନେ ପ୍ରତ୍ୟାଖ୍ୟାନ କରିବାରେ ସେ ନିଜପକ୍ଷରୁ ଗୋଟିଏ ନୂଆ ପ୍ରସ୍ତାବ କଂଗ୍ରେସକୁ ଦେଲେ । ଚର୍ଚ୍ଚିଲ୍ ହପ୍‌କିନ୍‌ସଙ୍କୁ କହିଲେ, ‘ଭାଇସ୍‌ରୟଙ୍କ ସଙ୍ଗେ ପରାମର୍ଶ ନ କରି କ୍ରିପ୍‌ସ୍ ଏ ନୂଆ ପ୍ରସ୍ତାବଟି ନେହେରୁଙ୍କୁ ଦେଇଥିଲେ’ ।

ଏହି ନୂଆ ପ୍ରସ୍ତାବଟି ଯୋଗୁଁ କଂଗ୍ରେସ ସଙ୍ଗେ ରାଜନାମା ସଂଭବ ହେଲାପରି ଲାଗୁଥିଲା । ହପ୍‌କିନ୍‌ସ ରୁଜଭେଲ୍‌ଟଙ୍କୁ ଜଣାଇଲେ, ‘ଏ ଭଳି ନୂଆ ପ୍ରସ୍ତାବ କ୍ରିପ୍‌ସ୍ ଆପଣା ମନକୁ ଦେଇଦେବାରେ ଗଭର୍ଣ୍ଣର ଜେନେରାଲ୍ କ୍ଷୁବ୍ଧ ହେଲେ । ଭାରତୀୟ ନେତାଙ୍କ ସଙ୍ଗେ କ୍ରିପସ୍ ଗୁଡ଼ାଏ ଲହଦହସ ହେବା ତାଙ୍କୁ ସୁଖ ଲାଗୁ ନ ଥିଲା ।’ ଗଭର୍ଣ୍ଣର୍ ଜେନେରାଲ୍ ଚର୍ଚ୍ଚିଲ୍‌ଙ୍କ ପାଖକୁ ତାର କଲେ । ବ୍ରିଟିଶ୍ ସରକାରଙ୍କ ବିନା ଅନୁମତିରେ ଦେଇଥିବା ପ୍ରସ୍ତାବ ଫେରାଇଆଣି ନିଜେ ଫେରି ଆସିବାକୁ ଚର୍ଚ୍ଚିଲ୍ କ୍ରିପ୍‌ସଙ୍କୁ ଆଦେଶ ଦେଲେ ।

ଲୁଇ ଜନସନ୍ ଏ କଥା ରୁଜଭେଲ୍‌ଟଙ୍କୁ ଜଣାଇଲେ । ଚର୍ଚ୍ଚିଲଙ୍କ ସଙ୍ଗେ ସାକ୍ଷାତ କରି କଥାବାର୍ତ୍ତା ପୁଣି ଚଳାଇବାକୁ ଅନୁରୋଧ କରିବା ସକାଶ ରୁଜ୍‌ଭେଲ୍‌ଟ୍ ହପ୍‌କିନ୍‌ସଙ୍କୁ ତାର କଲେ ।

ଶେରଉଡ୍ ଲେଖିଛନ୍ତି, ଖୁବ୍ ସମ୍ଭବ ଟିକିଏ ଉଗ୍ର ଭାବରେ ଚର୍ଚ୍ଚିଲ ନିଜର ଜବାବ୍ ହପ୍‌କିନ୍‌ସଙ୍କ ଜରିଆରେ ରୁଜଭେଲ୍‌ଟଙ୍କ ପାଖକୁ ପଠାଇଲେ । ମୋଟାମୋଟି ସେ କହିଥିଲେ, କଂଗ୍ରେସର ସଚ୍ଚୋଟପଣିଆରେ ତାଙ୍କର ବିଶ୍ୱାସ ନାହିଁ । ଶେର୍‌ଉଡ୍ ଲେଖିଛନ୍ତି, ‘ଚର୍ଚ୍ଚିଲ୍ ହପ୍‌କିନ୍‌ସଙ୍କୁ କହିଲେ, ସେ ପ୍ରଧାନମନ୍ତ୍ରୀତ୍ୱ ଛାଡ଼ି ସାଧାରଣ ନାଗରିକ ଜୀବନକୁ ଫେରିଗଲେ ଯଦି ଆମେରିକାର ଜନମତ ଶାନ୍ତ ହେବ ତେବେ ସେ ତାହା କରିବାକୁ ପ୍ରସ୍ତୁତ ଅଛନ୍ତି...।’ ସେ ଯାହାହେଉ ଆଲୋଚନାର ପୁନରାବୃତ୍ତି ହେବାର ଉପାୟ ନ ଥିଲା, କାରଣ ସେତେବେଳକୁ କ୍ରିପ୍‌ସ ଭାରତ ଛାଡ଼ିସାରିଥିଲେ । ହପ୍‌କିନ୍‌ସ ଅନୁଭବ କଲେ, ‘ଭାରତ ଗୋଟିଏ ବିଷୟ ଯହିଁରେ କି ଚର୍ଚ୍ଚିଲ୍ ଓ ରୁଜଭେଲ୍‌ଟ୍ ଏକମତ ହେବା ସମ୍ଭବ ନଥିଲା ।’

ଆପାତତଃ, ଗାନ୍ଧୀ ଓ ଚର୍ଚ୍ଚିଲ୍‌ଙ୍କ ମନର ମେଳ ହେବା ବି ସମ୍ଭବ ନ ଥିଲା ।

୧୯୩୫ ଖ୍ରୀଷ୍ଟାବ୍ଦରେ ଚର୍ଚ୍ଚିଲ୍ ଘୋଷଣା କରିଥିଲେ, 'ଗାନ୍ଧୀବାଦ ଓ ଗାନ୍ଧୀବାଦ ନାମରେ ଯାହା ଚାଲିଛି ଅବଶେଷରେ ତା'ର ମୁକାବିଲା କରିବାକୁ ହେବ ଏବଂ ତାକୁ ସମୂଳେ ନିପାତ କରିବାକୁ ପଡ଼ିବ ।' ଗାନ୍ଧୀବାଦ ଚାହୁଁଥିଲା, ଭାରତର ସ୍ୱାଧୀନତା । ୧୯୩୫ ପରେ, ପ୍ରଥମ ଥର ପାଇଁ ଏବେ ଚର୍ଚ୍ଚିଲ୍ ଶାସନର କର୍ତ୍ତୃତ୍ୱ କରୁଥାନ୍ତି । ଶ୍ରମିକଦଳର ସାମ୍ରାଜ୍ୟବାଦ-ବିରୋଧୀ କ୍ରିପ୍‌ସ ହେଲେ ଚର୍ଚ୍ଚିଲଙ୍କ ଶିକାର । ସେ ଥିଲେ ଚର୍ଚ୍ଚିଲ୍-ସରକାରର ଦୂତ ଏବଂ ଭାରତ ବିଷୟରେ ଚର୍ଚ୍ଚିଲଙ୍କ ମତ ଥିଲା, 'ଆମେ ଆମର କର୍ତ୍ତୃତ୍ୱ ବଜାୟ ରଖିବାକୁ ଚାହୁଁ' । ଚର୍ଚ୍ଚିଲ୍ ମନେ କରୁଥିଲେ ଭାରତ ବ୍ରିଟେନ୍‌ର ମୌରସୀ ସଂପତ୍ତି । ଯାହାକୁ ଛାଡ଼ିଦିଅ ବୋଲି ସେ କ୍ରିପ୍‌ସ୍‌କୁ ଅଧିକାର ଦିଅନ୍ତେ କିପରି ? ଚର୍ଚ୍ଚିଲ ପଦଚ୍ୟୁତ ହୋଇ କ୍ରିପ୍‌ସଙ୍କ ଶ୍ରମିକଦଳ ବିଲାତର ଶାସନ ଗାଦିକୁ ଆସିବାପରେ ଯାଇ ଭାରତ ସ୍ୱାଧୀନତା ପାଇଲା ।

ଚର୍ଚ୍ଚିଲ୍ ଓ ଗାନ୍ଧୀ ଉଭୟେ ଗୋଟିଏ ଗୋଟିଏ ଲକ୍ଷ୍ୟ ହାସଲ୍ କରିବାକୁ ଜୀବନ ପଣ କରିଥିଲେ । ଏହି ଦିଗରୁ ଦେଖିଲେ ଦୁହିଁଙ୍କର ସାମ୍ୟ ଦେଖାଯାଏ । ଉତ୍କୃଷ୍ଟ ଭାସ୍କର୍ଯ୍ୟ ଯେପରି ଖଣ୍ଡିଏ ପଥରରେ ଖୋଦିତ ହୋଇଥାଏ, ସେହିପରି ବଡ଼ଲୋକଙ୍କ ଜୀବନ ଗୋଟିଏ ଲକ୍ଷ୍ୟରେ ଆବଦ୍ଧ ହୋଇ ରହିଥାଏ । ଚର୍ଚ୍ଚିଲଙ୍କର ଏକାନ୍ତ ଅଭିନିବେଶ ଥିଲା ପ୍ରଥମ ଶ୍ରେଣୀର ଶକ୍ତି ରୂପେ ବ୍ରିଟେନ୍‌ର ମହତ୍ତ୍ୱ ବଜାୟ ରଖିବା । ଶାନ୍ତିପରେ ପୃଥିବୀର ପୁନର୍ଗଠନ କି ଭିତ୍ତିରେ କରାଯିବ ସେଥିପ୍ରତି ଯୁଦ୍ଧବେଳେ ସେ ଆଦୌ ଦୃଷ୍ଟି ଦେଉ ନ ଥିଲେ । ତାଙ୍କର ମନ ଯାଇ ବାନ୍ଧିହୋଇ ରହିଥିଲା ଅତୀତରେ । ସେ ଊନବିଂଶ ଶତାବ୍ଦୀର ଦାୟାଦ, ତାଙ୍କର ସମସ୍ତ ଶ୍ରଦ୍ଧା ସେହି ଊନବିଂଶ ଶତାବ୍ଦୀରେ ପୁଞ୍ଜୀଭୂତ ହୋଇଥିଲା । ସେ ସାମ୍ରାଜ୍ୟକୁ, ରାଜକୀୟ ଆଡ଼ମ୍ବରକୁ ଓ ଉଚ୍ଚନୀଚ ଭେଦଭାବକୁ ପସନ୍ଦ କରୁଥିଲେ । ଲଏଡ୍ ଜର୍ଜ ବ୍ରିଟେନ୍‌ର ଅଭିଜାତ ସମ୍ପ୍ରଦାୟ, ସାମନ୍ତ ଓ ସୈନ୍ୟାଧ୍ୟକ୍ଷଙ୍କୁ ଘୃଣା କରୁଥିଲେ; ପ୍ରଧାନମନ୍ତ୍ରୀ ଥିଲାବେଳେ ସେ ଏମାନଙ୍କ ମର୍ଯ୍ୟାଦା ହ୍ରାସ କରିବାକୁ ଚେଷ୍ଟା କରିଥିଲେ । କିନ୍ତୁ ଚର୍ଚ୍ଚିଲ ଚାହୁଁଥିଲେ ଚିରକାଳ ଏହି ଉଚ୍ଚଜାତି ଲୋକଙ୍କ ଗୌରବ ବଜାୟ ରଖିବାକୁ । ଏମାନଙ୍କ ପ୍ରତି ସେ ଆକୃଷ୍ଟ ଥିଲେ ବୋଲି

ନ କହି, ଯେଉଁ ଊନବିଂଶ ଶତାବ୍ଦୀ ଏମାନଙ୍କୁ ଗଢିଥିଲା ତାହାର ପ୍ରତି ଚର୍ଚ୍ଚିଲ ଏକାନ୍ତ-ଆସକ୍ତ ହୋଇ ରହିଥିଲେ ବୋଲି କହିଲେ ଠିକ୍ ହେବ । ଊନବିଂଶ ଶତାବ୍ଦୀ ହିଁ ବ୍ରିଟେନର ଗୌରବର ବେଳା । ଏହି ଶତକହିଁ ବ୍ରିଟେନର ଶାନ୍ତି ଓ ସୁଖର ଶତକ । ନେପୋଲିଅନଙ୍କ ଫ୍ରାନ୍ସର ପତନ ହୋଇଥାଏ, କେଇଜରଙ୍କ ଜର୍ମାନୀର ଅଭ୍ୟୁତ୍ଥାନ ହୋଇ ନ ଥାଏ—ଯାହାର ମଝିରେ ଶହେ ବର୍ଷ, ମହାରାଣୀ ଭିକ୍ଟୋରିଆଙ୍କ ଅମଳରେ ବ୍ରିଟିଶ ସାମ୍ରାଜ୍ୟର ଅଭିବୃଦ୍ଧି । ଅତୀତର ଏଇ ମହତ୍ତ୍ୱ ହିଁ ଥିଲା ଚର୍ଚ୍ଚିଲଙ୍କ ଆରାଧ୍ୟ ଦେବତା । ଦେଶର ମହତ୍ତ୍ୱର ପ୍ରତୀକ ଥିଲେ, ତାଙ୍କ ଦୃଷ୍ଟିରେ, ଦେଶର ଉଚ୍ଚଶ୍ରେଣୀର ଲୋକେ । ପାର୍ଲିମେଣ୍ଟାରୀ ଗଣତନ୍ତ୍ର ଥିଲା ସେହି ମହତ୍ତ୍ୱର ପରିପୂରକ, ଓ ଭାରତ ଥିଲା ସେଇ ମହତ୍ତ୍ୱର ମଥାମଣି ।

ବ୍ରିଟେନର ଏହି ପୂର୍ବ ସମୃଦ୍ଧି ବଜାୟ ରଖିବାକୁ ଚର୍ଚ୍ଚିଲ୍ ଦ୍ୱିତୀୟ ମହାଯୁଦ୍ଧ ଲଢ଼ୁଥିଲେ । ଅର୍ଦ୍ଧ-ଉଲଗ୍ନ ଫକୀରକୁ ବ୍ରିଟେନର ରାଜ୍ୟଲକ୍ଷ୍ମୀଙ୍କୁ ହରଣ କରିବାକୁ ସେ ଦିଅନ୍ତେ କପରି ? ଚର୍ଚ୍ଚିଲଙ୍କ କଥା ଯଦି କାଏମ୍ ରହିଥାନ୍ତା ତେବେ ଗାନ୍ଧୀ ବଡ଼ଲାଟଙ୍କ ପ୍ରାସାଦର ପାବଚ୍ଛରେ ଉଠି ସନ୍ଧିସର୍ତ୍ତ ଦେବାକୁ ବା ସମାଧାନ ବିଷୟରେ ଆଲୋଚନା କରିବାକୁ ଯିବାର ଅବସର ପାଇ ନ ଥାନ୍ତେ ।

୧୯୪୦ରେ ସମ୍ରାଟଙ୍କ ପ୍ରଧାନ ସଚିବ ହେଲାଦିନୁଁ ୧୯୪୫ରେ ତାଙ୍କ ଦଳ ନିର୍ବାଚନରେ ହାରିବାଯାଏଁ ଚର୍ଚ୍ଚିଲଙ୍କର ଗାନ୍ଧୀଙ୍କ ସଂଗେ ନିରବଚ୍ଛିନ୍ନ ସଂଘର୍ଷ ଲାଗିଥିଲା । ଏ ସଂଘର୍ଷ ଲାଗିଥିଲା ବ୍ରିଟେନ୍‌ର ଅତୀତ ଓ ଭାରତର ଭବିଷ୍ୟତ ମଧ୍ୟରେ ।

ଥରେ ଜଣେ ବ୍ରିଟିଶ୍ ବ୍ୟଙ୍ଗଚିତ୍ରକର ଚର୍ଚ୍ଚିଲଙ୍କୁ କଟିବସ୍ତ୍ର ପିନ୍ଧାଇ ଚିତ୍ରରେ ଠିଆ କରିଦେଲେ ଓ ତା'ରି ପାଖ ପାନିଆଲରେ ଗାନ୍ଧୀଙ୍କୁ ଠିଆ କରିଦେଲେ ଉଚ୍ଚ ଟୋପି, ଦରବାରି କୋଟ୍ ଓ ଗାରଗାରିଆ ପେଣ୍ଟାଲୁନ୍ ପିନ୍ଧାଇ ; ଗାନ୍ଧୀଙ୍କ ମୁହଁରେ ଥାଏ ଗୋଟାଏ ଲମ୍ବା ଚୁରୁଟ ଓ ହାତରେ ଥାଏ ଚମଡ଼ାବ୍ୟାଗ୍ । ପୋଷାକପତ୍ରର ବାହ୍ୟ ପାର୍ଥକ୍ୟ ତଳେ ଦୁହିଙ୍କ ପ୍ରକୃତିରେ କେତେ ପାର୍ଥକ୍ୟ ତାହା ଏହି ଚିତ୍ର ଦୁଇଟିରୁ ସୂଚିତ ହେଉଥାଏ ।

ଚର୍ଚ୍ଚିଲ୍ ଥିଲେ ବାଇରନ୍‌ଙ୍କ ବର୍ଣ୍ଣିତ ନେପୋଲିଅନ୍‌ଙ୍କ ପରି । ରାଜନୀତିକ କ୍ଷମତାରେ ସେ ପାଉଥିଲେ କବିତାର ରସାସ୍ୱାଦ । ଶାନ୍ତିପ୍ରିୟ ଗାନ୍ଧୀଙ୍କ ଦୃଷ୍ଟିରେ ରାଜନୀତିକ କ୍ଷମତା ଥିଲା ଅଭିଶାପ ପରି ଘାତପ୍ରଦ ।

ବ୍ରିଟିଶ ଅଭିଜାତବଂଶୀୟ ଚର୍ଚ୍ଚିଲ୍ ଓ ବାଦାମିରଂଗ, ଶ୍ରେଷ୍ଠଜାତିରେ ଜନ୍ମ ଗାନ୍ଧୀ ଉଭୟେ ଥିଲେ ରକ୍ଷଣଶୀଳ ; କିନ୍ତୁ ଗାନ୍ଧୀଙ୍କ ରକ୍ଷଣଶୀଳତାରେ ପରଂପରା ପ୍ରତି ଅନ୍ଧାନୁଗତ୍ୟ ନ ଥିଲା । ବୟସ ବୃଦ୍ଧି ସଂଗେ ସଂଗେ ଚର୍ଚ୍ଚିଲ ଅଧିକରୁ ଅଧିକ ରକ୍ଷଣଶୀଳ ହେଲେ ; ଗାନ୍ଧୀ ହେଲେ ବିପ୍ଳବୀ । ଚର୍ଚ୍ଚିଲ ସାମାଜିକ ପରଂପରାକୁ ଶ୍ରଦ୍ଧା କରୁଥିଲେ ; ଗାନ୍ଧୀ ସମାଜର କଣ୍ଟକଣା ଭାଂଗିବାରେ ଲଗିଲେ । ଚର୍ଚ୍ଚିଲ ସବୁଶ୍ରେଣୀର ଲୋକଙ୍କ ସଂଗେ ମିଶୁଥିଲେ, କିନ୍ତୁ ନିଜ ଶ୍ରେଣୀର ଲୋକଙ୍କ ସଂଗେ ଚଳୁଥିଲେ ; ଗାନ୍ଧୀ ଚଳୁଥିଲେ ସମସ୍ତଙ୍କ ସଂଗେ । ଗାନ୍ଧୀଙ୍କ ଦୃଷ୍ଟିରେ ନୀଚତମ ଜାତିର ଭାରତୀୟ ଥିଲା ଭଗବାନଙ୍କ ସନ୍ତାନ, ହରିଜନ ; ଚର୍ଚ୍ଚିଲଙ୍କ ଦୃଷ୍ଟିରେ ଉଚ୍ଚନୀଚ ନିର୍ବିଶେଷରେ ପ୍ରତ୍ୟେକ ଭାରତୀୟ ଥିଲେ ବ୍ରିଟିଶ-ସିଂହାସନର ପାଦପୀଠ । ଚର୍ଚ୍ଚିଲ ଇଂଲଣ୍ଡକୁ ଶତ୍ରୁକବଳରୁ ରକ୍ଷା କରିବା ପାଇଁ ଜୀବନ ଦେବାକୁ ପ୍ରସ୍ତୁତ ଥିଲେ ; କିନ୍ତୁ ଭାରତକୁ ସ୍ୱାଧୀନ କରିବାକୁ ଯେଉଁମାନେ ଯତ୍ନଥିଲେ ତାଙ୍କ ନାମ ପଡିଲେ ତାଙ୍କର ହାଡ଼ ଡେଉଁଥିଲା ।

---

# ନବମ ପରିଚ୍ଛେଦ

## ଗାନ୍ଧୀଙ୍କ ସଙ୍ଗେ ମୋର ଏକ ସପ୍ତାହ

କେଡ଼େ ଦୁଃଖମୟ ଏ ଦେଶ ! ୧୯୪୨, ମେ ମାସରେ ଭାରତରେ ପାଦ ଦେବା ପରେ ମୋ ମନରେ ସର୍ବପ୍ରଥମେ ଏଇ ଧାରଣା ହୋଇଥିଲା ; ମୁଁ ଯେଉଁ ଦୁଇମାସ କାଳ ଏଠାରେ କଟାଇଲି ତଦ୍ଦ୍ୱାରା ମୋ ମନର ଏଇ ଭାବ ଆହୁରି ଦୃଢ଼ୀଭୂତ ହୋଇଥିଲା । ଭାରତୀୟ ଧନିକମାନଙ୍କ ମନରେ ସୁଖ ନ ଥାଏ ; ଦରିଦ୍ରର ତ ଦୁଃଖ ଥିବାର କଥା ; ଭାରତରେ ଥିବା ଇଂରେଜ ଲୋକେ ବି ନିଶ୍ଚିନ୍ତ ନ ଥାନ୍ତି ।

ଭାରତୀୟମାନେ କେତେ ଦରିଦ୍ର ଜାଣିବା ସକାଶ, ମଣିଷଙ୍କୁ ଭାରତରେ ସାମାନ୍ୟ ଧନ କେତେଠାରୁ ଅଧିକ ରହିବା ଦରକାର ପଡ଼ି ନ ଥିଲି । ଡକ୍ଟର ଆମ୍ବେଦକରଙ୍କ ସଂଗେ ମୁଁ ବମ୍ବେଇର ବସ୍ତି କେତୋଟି ଦେଖିଥିଲି । ଏଇଥିରେ ଲକ୍ଷାଧିକ ଲୋକ ବାସ କରୁଥିଲେ । ଆମେରିକା ଓ କେତେକ ଇଉରୋପୀୟ ଦେଶର କୃଷକମାନେ ଏଭଳି ଅସ୍ୱାସ୍ଥ୍ୟକର ଝୁପୁଡ଼ିରେ ଗୋରୁଗାଈ ରହିଲେ ବେମାରହେବାରୁ ତାଙ୍କର ପଇସା ବୁଡ଼ିଯିବ ବୋଲି ବଗୃର, ଗୋରୁଗାଈଙ୍କୁ ବି ଏଥିରେ ରଖିବାକୁ ରାଜି ହେବେ ନାହିଁ । ଗାଁମାନଙ୍କରେ କୃଷକମାନଙ୍କ ଅର୍ଦ୍ଧ-ଉଲଗ୍ନ ଅବସ୍ଥା ଦେଖି ମୋର ମନେ ହେଲା, ଗାନ୍ଧୀଙ୍କ ପୋଷାକ ଯାଙ୍କ ତୁଳନାରେ ଢେର ଭଲ ଓ ବେଶି । ଭାରତର ଅଧିକ ସଂଖ୍ୟକ ଲୋକ, ଅଧିକ ବୋଇଲେ ଖୁବ୍ ଅଧିକ, ସବୁବେଳେ ଭୋକରେ ଥାନ୍ତି—ସବୁବେଳେ ବୋଇଲେ ଆକ୍ଷରିକ ଅର୍ଥରେ ସବୁବେଳେ ।

ଇଂରେଜ ସରକାର ୧୯୩୧ର ଯେଉଁ ଜନଗଣନା ରିପୋର୍ଟ୍ ପ୍ରକାଶ କରିଛନ୍ତି ସେଥିରେ ଅଛି, 'ଭାରତୀୟମାନଙ୍କ ସମ୍ଭାବ୍ୟ ଆୟୁ, ସ୍ତ୍ରୀଲୋକଙ୍କ ପକ୍ଷରେ ୨୬.୫୬ ବର୍ଷ ଓ ପୁରୁଷଙ୍କ ପକ୍ଷରେ ୨୬.୯୧ ବର୍ଷ ।' ସାଧାରଣତଃ ଭାରତରେ ଜନ୍ମ ଗ୍ରହଣ କରିଥିବା ଲୋକ, ମାତ୍ର ୨୬ ବର୍ଷ ବଞ୍ଚିବ ବୋଲି ଆଶା କରିପାରେ ।

ଇଂରେଜ ସରକାରଙ୍କ ପକ୍ଷରୁ ବାହାର କରାଯାଇଥିବା ହିସାବରୁ ଜାଣିଲି, ପ୍ରତିବର୍ଷ ୨ କୋଟି ୫୦ ଲକ୍ଷ ଭାରତୀୟ ମେଲେରିଆ ଜ୍ୱରରେ ଆକ୍ରାନ୍ତ ହୁଅନ୍ତି ; ଯାଙ୍କ ଭିତରୁ ଅଳ୍ପ କେତେଜଣଙ୍କର ମାତ୍ର କୁଇନାଇନ୍-ଟିକିଏ କିଣିବାକୁ ସବଳ ଥାଏ । ପ୍ରତିବର୍ଷ ପାଞ୍ଚ ଲକ୍ଷ ଭାରତୀୟ କ୍ଷୟକାସ ରୋଗରେ ପ୍ରାଣ ହରାନ୍ତି ।

ଜଳବାୟୁ ଏହାର କାରଣ ବୋଲି କେତେକାଂଶରେ ମାତ୍ର କୁହା-ଯାଇ ପାରେ । ଭାରତରେ ବାସ କରୁଥିବା ଇଂରେଜ ଲୋକଙ୍କର ଗୋଟିଏ ଗୋଷ୍ଠୀରେ ପ୍ରତିବର୍ଷ ଯେତେ ଲୋକ ମରନ୍ତି, ସେଇ ପାଖରେ ବାସ କରୁଥିବା ସମସଂଖ୍ୟକ ଭାରତୀୟ ଗୋଷ୍ଠୀରେ ତହିଁର ପାଞ୍ଚଗୁଣ ଲୋକ ମରିବାର ଦେଖିଲି ।

ରୋଗ ଓ ମୃତ୍ୟୁ ସତ୍ତ୍ୱେ ଭାରତର ଜନସଂଖ୍ୟା ପ୍ରତିବର୍ଷ ୫୦ ଲକ୍ଷ କରି ବଢ଼ୁଥାଏ । ଏଇ ଥାଏ ଭାରତର ସର୍ବପ୍ରଧାନ ସମସ୍ୟା । ୧୯୨୧ରେ

ଭାରତରେ ଜନସଂଖ୍ୟା ଥିଲା ୩୦ କୋଟି ୪୦ ଲକ୍ଷ ; ୧୯୩୧ରେ ହେଲା ୩୩ କୋଟି ୮୦ ଲକ୍ଷ ; ୧୯୪୧ରେ ହୋଇଛି ୩୮ କୋଟି ୮୦ ଲକ୍ଷ । ଏ କୋଡ଼ିଏ ବର୍ଷ ଭିତରେ ଚାଷ ଜମିର ପରିମାଣ ଯେତିକି ଥିଲା ପ୍ରାୟ ସେତିକି ଅଛି, ଓ ଯନ୍ତ୍ରଶିଳ୍ପରେ ବିଶେଷ କିଛି ଅଭିବୃଦ୍ଧି ହୋଇନାହିଁ । ଦେଶ ଯେତିକି ଦରିଦ୍ର ଜନ୍ମର ହାର ସେତିକି ବଢ଼େ ; ପୁଣି ଜନ୍ମର ହାର ଯେତିକି ବଢ଼ୁଥାଏ, ଦେଶ ସେତିକି ଅଧିକ ଦରିଦ୍ର ହେଉଥାଏ ।

ବ୍ରିଟିଶ୍‌ଙ୍କ ଅମଳରେ ଭାରତର ଯେଉଁ ଉନ୍ନତି ହୋଇଛି, ବ୍ରିଟିଶ୍ ଜାତି ତା'ର ଉପରେ ଜୋରଦେଇ ପ୍ରଚାର କରୁଥାନ୍ତି । କିନ୍ତୁ ଭାରତକୁ ଯେଉଁ କ୍ଷୟରୋଗ ଆକ୍ରାନ୍ତ କରିଥାଏ ତାହା ସେମାନେ ଅସ୍ୱୀକାର କରୁ ନ ଥାନ୍ତି । ସେମାନେ କହୁଥାନ୍ତି ଯେ, ହିନ୍ଦୁଧର୍ମର ଭାଗ୍ୟବାଦୀ ବିଶ୍ୱାସ ଯୋଗୁଁ ଓ ମୁସଲମାନମାନେ ସବୁବେଳେ ପଛେଇ ରହୁଥିବାରୁ ଏପରି ହେଉଛି । ଭାରତୀୟମାନେ ସମସ୍ତ ଦୁଃଖଦୁର୍ଦ୍ଦଶା ପାଇଁ ଇଂଲଣ୍ଡକୁ ଦୋଷ-ଥାନ୍ତି । କ୍ରମେ ପରିସ୍ଥିତି ଏପରି ହେଉଥାଏ ଯେ, ଇଂରେଜମାନଙ୍କ ପକ୍ଷରେ ଭାରତରେ ନିଶ୍ଚିନ୍ତ ହୋଇ ରହି କାର୍ଯ୍ୟକରିବା କ୍ରମେ କ୍ରମେ କଷ୍ଟକର ହେଉଥାଏ ।

ଯେଉଁ ଇଂରେଜମାନେ ଶହେ ବର୍ଷରୁ ଅଧିକ କାଳ ହେଲା ପିତୃ-ପିତାମହ କ୍ରମରେ ଭାରତରେ ଚାକିରି କରିବାକୁ ବୃତ୍ତି କରି ଧରିଥିଲେ, ସେମାନେ ବୁଝି ପାରିଥାନ୍ତି ଯେ ଭାରତରେ ତାଙ୍କର ଭବିଷ୍ୟତ୍ ପାଇଁ ଆଶା ନାହିଁ । ଭାରତ ସେମାନଙ୍କ ଗୃହ ନ ଥାଏ ; ଏହା ଇଂରେଜ ଅଫିସର୍‌ମାନେ ଜାଣୁଥାନ୍ତି ଓ ଜାଣି, ଦୁଃଖିତ ଥାନ୍ତି । ବଡ଼ଲାଟଙ୍କ ପ୍ରାଇଭେଟ୍ ସେକ୍ରେଟାରୀ ସାର୍ ଜିଲ୍‌ବର୍ଟ ଲେଥ୍‌ୱେଟ୍, ଓ ଜଂଘିଲାଟ ଲର୍ଡ଼ ଓ୍ୱାଭେଲଙ୍କର ସହକାରୀ ମେଜର୍ ଜେନେରାଲ୍ ମୋଲସ୍‌ଓ୍ୱର୍ଥ୍ ଭାରତୀୟ ଗ୍ରୀଷ୍ମ ଋତୁର ମଧ୍ୟାହ୍ନରେ ସାଇକଲ୍ ଚଢ଼ି ଅଫିସକୁ ଯା ଆସ କରୁଥାନ୍ତି । ଉଭୟଙ୍କର ମଟରକାର ଥାଏ ଓ ଡ୍ରାଇଭର ଥାନ୍ତି । ଯୁଦ୍ଧବେଳେ ନିଜ ସୁଖ ସକାଶ ପେଟ୍ରୋଲ ନଷ୍ଟ କରିବେ ନାହିଁ ବୋଲି ସେମାନେ ଏହିପରି କରୁଥାନ୍ତି । ବ୍ରିଟିଶ୍ ଅଫିସର୍‌ଙ୍କ ମଧ୍ୟରେ ଅନେକେ ଥିଲେ ଭଲ ଲୋକ । କିନ୍ତୁ ଏ ଭଲଲୋକମାନଙ୍କ ଦ୍ୱାରା ଶାସିତ ନ ହୋଇ, ଖରାପ ହେଲେ ବି ନିଜ ଦେଶର ଲୋକଙ୍କ ଦ୍ୱାରା ଶାସିତ ହେବାକୁ ଭାରତ ପସନ୍ଦ କରୁଥିଲା । ସେମାନଙ୍କ ଗୃହ ନ ଥିବା ଭାରତକୁ ଶାସନ କରିବା ଇଂରେଜଙ୍କ ପକ୍ଷରେ ଆଉ ସୁଖକର ହେଉ

ନ ଥାଏ ; ଭାରତ ସେମାନଙ୍କୁ ଯେତେ ହତାଦର କରୁଥିଲା, ସେମାନେ ଭାରତ ପ୍ରତି ସେଇ ମାତ୍ରାରେ ବିରକ୍ତ ହୋଇଯାଇଥିଲେ । ଗାନ୍ଧୀଙ୍କ ଅହିଂସ ଆନ୍ଦୋଳନ କୋଡ଼ିଏ ବର୍ଷ ଚାଲିବା ଫଳରେ ଇଂରେଜମାନଙ୍କର, ସାମ୍ରାଜ୍ୟର ଭବିଷ୍ୟତରେ ବିଶ୍ୱାସ ତୁଟି ଯାଇଥିଲା ।

ନୂଆଦିଲ୍ଲୀର ଜଣେ ବିଶ୍ୱବିଦ୍ୟାଳୟ ଛାତ୍ରଙ୍କ ସଙ୍ଗେ ଦେଖା ହୋଇଥିଲା । ତାଙ୍କ ସଙ୍ଗୀମାନଙ୍କର ତାଙ୍କରି ଅନୁରୂପ ମନୋଭାବ ବୋଲି ଲକ୍ଷ୍ୟ କରିଥିଲି । ସେ କଟୁଭାଷାରେ ଇଂରେଜମାନଙ୍କ ପ୍ରତି ବିଦ୍ୱେଷପୂର୍ଣ୍ଣ ବକ୍ତୃତା ଦେବାପରେ ମୁଁ ତାଙ୍କୁ ପଚାରିଲି, 'ତୁମର ତ ଇଂରେଜଙ୍କ ବିରୁଦ୍ଧରେ ଘୋର ବିଦ୍ୱେଷ, ଆଚ୍ଛା କହିଲ ଦେଖି, ଜାପାନ ଭାରତକୁ ଆକ୍ରମଣ କରି ଅଧିକାର କରିବା କ'ଣ ତୁମର ଇଚ୍ଛା ?'

ସେ ଉତ୍ତର ଦେଲେ, 'ନା, ଆମେ ଭାରତୀୟମାନେ ଭଗବାନ୍‌ଙ୍କୁ ପ୍ରାର୍ଥନା କରୁଛୁ, ସେ ବ୍ରିଟିଶଙ୍କୁ ବଳ ଦିଅନ୍ତୁ ଯେ, ବ୍ରିଟିଶ୍‌ମାନେ ଯେଉଁ ମାଡ଼ ମୁଲେଇଛନ୍ତି ତାହା ଖାଇବାକୁ ଓ ଖାଇ ସମ୍ଭାଳିଯିବାକୁ ସମର୍ଥ ହୁଅନ୍ତୁ ।'

କେତେକ ଭାରତୀୟଙ୍କର ବ୍ରିଟିଶଙ୍କ ପ୍ରତି ବିଦ୍ୱେଷ ଏତେ ଅଧିକ ହୋଇ ପଡ଼ିଥିଲା ଯେ, ସେମାନେ ମନେ କରୁଥିଲେ ଇଂଲଣ୍ଡ ହାରିଯାଇ ଜାପାନ ଜିଣିଲେ ଭଲ ହୁଅନ୍ତା ।

କମ୍ୟୁନିଷ୍ଟଙ୍କ ବ୍ୟତୀତ ଆଉ କୌଣସି ଭାରତୀୟ ଦଳ ବା ଗୋଷ୍ଠୀ ଯୁଦ୍ଧ ଉଦ୍ୟମରେ ସହଯୋଗ କରୁ ନ ଥିଲେ । ଜୁନ୍, ୧୯୪୧ରେ ହିଟ୍‌ଲର୍ ରସିଆକୁ ଆକ୍ରମଣ କରିବା ପରେ, କମ୍ୟୁନିଷ୍ଟ୍‌ମାନେ ବ୍ରିଟେନକୁ ସମର୍ଥନ କଲେ; ଫଳତଃ ଭାରତରେ ଥିବା ବ୍ରିଟିଶସାମ୍ରାଜ୍ୟବାଦୀମାନଙ୍କୁ ଏହି କମ୍ୟୁନିଷ୍ଟମାନଙ୍କୁ ପ୍ରଶ୍ରୟ ଦେବାକୁ ପଡ଼ିଲା, କିନ୍ତୁ କମ୍ୟୁନିଷ୍ଟଙ୍କ ସଙ୍ଗେ ସାମ୍ରାଜ୍ୟବାଦୀଙ୍କ ଅସ୍ୱାଭାବିକ ସହଯୋଗ ବ୍ରିଟିଶ୍ ଅଫିସରମାନଙ୍କୁ ଅସ୍ୱସ୍ତିକର ହେଉଥାଏ ।

ବମ୍ବେଠାରେ ଲକ୍ଷେ ଲୋକଙ୍କର ଗୋଟିଏ ସଭାରେ ନେହେରୁ ବକ୍ତୃତା ଦେବା ବେଳେ ମୁଁ ଉପସ୍ଥିତ ଥିଲି । ଶୁଭ୍ର ପୋଷାକଧାରୀ ପିଙ୍ଗଳ-ମୁଖ ଜନତାର ମହାସମୁଦ୍ର ଭିତରେ କମ୍ୟୁନିଷ୍ଟ୍‌ମାନେ ଗୋଟିଏ ଦ୍ୱୀପ ପରି ରହି, ପ୍ରଶ୍ନ ପଚାରି ତାଙ୍କୁ ବିବ୍ରତ କରିବାରେ ଲାଗିଥାନ୍ତି । ଶେଷରେ ସେମାନେ ଏକ ସ୍ୱରରେ ଚିତ୍କାର କଲେ, 'ଏ ଲଢେଇ ଜନତାର ଲଢ଼େଇ ।'

ନେହେରୁ ଚିତ୍କାର କରି ଜବାବ୍ ଦେଲେ, 'ଏ ଲଢ଼େଇ ଯଦି

ଜନତାର ଲଢ଼େଇ ବୋଲି ବର୍ଣ୍ଣୁଛ, ତେବେ ଯାଅ, ଜନତାକୁ ପଚାର ।' ଏ ଜବାବ୍ ପାଇ ଓ ସଭାର ଜନସାଧାରଣଙ୍କର ସେମାନଙ୍କ ପ୍ରତି ପ୍ରତିକୂଳ ମନୋଭାବ ଦେଖି କମ୍ୟୁନିଷ୍ଟମାନେ ତୂନି ହୋଇଗଲେ । ସେମାନେ ବୁଝିଥିଲେ ଯେ ଜବାହାରଲାଲ ଯଥାର୍ଥ କଥା କହିଛନ୍ତି ; ଜନତାର ଲଢ଼େଇ ବୋଲି ଯେତେ ଚିତ୍କାର କଲେ କ'ଣ ହେଲା, ଜନତା କମ୍ୟୁନିଷ୍ଟଙ୍କ ସପକ୍ଷରେ ନ ଥିଲେ, ସେମାନେ ଥିଲେ କଂଗ୍ରେସର ସମର୍ଥକ ; ବ୍ରିଟିଶ ଲୋକେ ମଧ୍ୟ ଏହା ବେଶ୍ ଜାଣିଥିଲେ ।

ଏଇ ସଭାରେ ନେହେରୁ ଘୋଷଣା କରିଥିଲେ, 'ମୁଁ ନିଜେ ଅସ୍ତ୍ର-ଧରି ଜାପାନ ସଙ୍ଗେ ଲଢ଼ିବାକୁ ତିଆରି ଅଛି ; କିନ୍ତୁ ଲଢ଼ିବି ଯେବେ ସ୍ୱାଧୀନ ଦେଶର ନାଗରିକ ହୋଇ ଲଢ଼ିବି ।'

ନିରଙ୍କୁଶ ଶାସକ ଯେପରି ପୂର୍ଣ୍ଣ ଦମନନୀତି ପ୍ରୟୋଗ କରି ରାଜ୍ୟ-ଶାସନ କରିଥାଏ, ସେହିପରି ଭାରତକୁ ଦବେଇକରି ଶାସନ କରାଯାଇ ପାରିଥାନ୍ତା, ଯଦି ଭାରତର ଆଦୌ ସ୍ୱାଧୀନତା ନ ଥାନ୍ତା । କିନ୍ତୁ ସ୍ୱାଧୀନ ନୁହନ୍ତି ବୋଲି କହିବାର ଅଧିକାର ନେହେରୁଙ୍କୁ ମିଳିବାରୁ ହିଁ ଭାରତର ସ୍ୱାଧୀନତା ଅବଶ୍ୟମ୍ଭାବୀ ହୋଇ ପଡ଼ିଲା । ଏହି ଉଦ୍ଦେଶ୍ୟରେ, ଗାନ୍ଧୀ ସବୁବେଳେ ଦାବି କରି ଆସୁଥିଲେ ଯେ, ଅନ୍ତତଃ ଭାରତୀୟମାନଙ୍କୁ ମତ ପ୍ରକାଶ କରିବାର ସ୍ୱାଧୀନତା ମିଳୁ । ଏହାର ସୁଦୂରପ୍ରସାରୀ ପରିଣତି ଲଣ୍ଡନସ୍ଥ କର୍ତ୍ତାମାନେ ଦେଖି ନ ପାରିଥିଲେ ହେଁ, ଭାରତରେ ଥିବା ବ୍ରିଟିଶ ଶାସକମାନେ ବେଶ୍ ଦେଖି ପାରିଥିଲେ ।

ଭାଇସରୟଙ୍କ କାଉନ୍‌ସିଲର ଘରୋଇ ବିଭାଗ ସଦସ୍ୟ ସାର୍ ରେଜିନାଲ୍‌ଡ୍ ମ୍ୟାକସ୍‌ୱେଲଙ୍କ କୋଠିରେ ରାତ୍ରିଭୋଜନ ଖାଇଲାବେଳେ ସେ ମୋତେ କହିଥିଲେ, 'ଯୁଦ୍ଧ ସରିବାର ଦୁଇ ବର୍ଷ ପରକୁ ଆମେ ଆଉ ଏଠାରେ ନ ଥିବୁ ।' ସାର୍ ରେଜିନାଲ୍‌ଡ୍ ପୁଲିସ ବିଭାଗ ଓ ଆଭ୍ୟନ୍ତରୀଣ ନିରାପତ୍ତାର ଦାୟିତ୍ୱରେ ଥିଲେ । ଭାରତୀୟମାନେ ତାଙ୍କୁ ଘୃଣା କରୁଥିଲେ । ସାମ୍ରାଜ୍ୟ ପ୍ରତି ତାଙ୍କ ମନରେ କୌଣସି ମାୟା ନ ଥିଲା । ଚର୍ଚ୍ଚିଲ ସିନା ସାମ୍ରାଜ୍ୟର ସ୍ୱପ୍ନରେ ବିଭୋର ହୋଇ ଯାଉଥିଲେ, ସାର୍ ରେଜିନାଲ୍‌ଡ୍ ଅଂଗେ ନିଭାଉଥିଲେ ସାମ୍ରାଜ୍ୟ ପାଇଁ ପ୍ରତିଦିନ ତାଙ୍କୁ କେତେ ଘାଣ୍ଟି ହେବାକୁ ପଡ଼ୁଛି ।

ଭାଇସ୍‌ରୟ ନିଜେ ମୋତେ କହିଥିଲେ, 'ଆମେ ଭାରତରେ ଆଉ ରହିବାକୁ ଚାହୁନାହିଁ । ଅବଶ୍ୟ କଂଗ୍ରେସ ଆମର ଏହା ମନର କଥା

ବୋଲି ବିଶ୍ୱାସ କରେ ନାହିଁ । ସେ ଯାହା ହେଉ, ଆମେ ଏଠାରେ ଆଉ ରହିବୁ ନାହିଁ । ଯିବାକୁ ଆମେ ସଜବାଜ ହେବା ଆରମ୍ଭ କଲୁଣି ।'

ଭାଇସରୟଙ୍କର ଓ ଯେଉଁ ଇଂରେଜ ସଦସ୍ୟଙ୍କର ମନର ଏକଥା ମୁଁ ଭାରତୀୟମାନଙ୍କ ଆଗେ ପ୍ରକାଶ କରନ୍ତେ ସେମାନେ ଏହା ବିଶ୍ୱାସ କଲେ ନାହିଁ । ସେମାନେ ତୀବ୍ର ସମାଲୋଚନା ଆରମ୍ଭ କରିଦେଲେ । ସେମାନେ କହିଲେ ଦିଲ୍ଲୀର ଓ ନୂଆଦିଲ୍ଲୀ ଏବଂ ପ୍ରାଦେଶିକ ରାଜଧାନୀମାନଙ୍କରେ ଥିବା ବହୁସଂଖ୍ୟକ ଶ୍ରେଷ୍ଠ ଶ୍ରେଷ୍ଠ ସିଭିଲିଆନ ଭାରତର ସ୍ୱାଧୀନତାରେ ଅନ୍ତରାୟ ସୃଷ୍ଟି କରିବେ, ଅଥବା ଦେଶକୁ ଖଣ୍ଡ ଖଣ୍ଡ କରିବାର ବ୍ୟବସ୍ଥା କରି ସ୍ୱାଧୀନତାକୁ ବିକୃତ କରିଦେବେ ।

ନେହେରୁ କିନ୍ତୁ ମୋତେ କହିଥିଲେ, 'ଗାନ୍ଧୀ ଆମ ପିଠିକୁ ସିଧା କରି ଦେଇଛନ୍ତି ଏବଂ ଆମ ମେରୁ ହାଡ଼ରୁ ଟାଣ କରି ଦେଇଛନ୍ତି ।'

ପିଠି ଯଦି ସିଧା ରହିବ, ତେବେ ତା' ଉପରେ ଚଢ଼ିବ କିଏ ?

ସ୍ୱାଧୀନତା ନିକଟବର୍ତ୍ତୀ ହେଉଥାଏ । କିନ୍ତୁ ବର୍ତ୍ତମାନ ଏତେ ଅନ୍ଧାର ହୋଇଥାଏ ଯେ, ତାକୁ ଭେଦି ଭବିଷ୍ୟତକୁ ଦେଖିପାରିବା ଅସଂଭବ ହୋଇ ପଡ଼ିଥାଏ । ଭାରତରେ ଇତିହାସ ଏତେ ଦୀର୍ଘକାଳ ଅଚଳ ହୋଇ ପଡ଼ିଥାଏ ଯେ, ନିକଟରେ ଏହା କେତେ ଦ୍ରୁତଗତିରେ ଆଗେଇ-ଯିବ ତାହା କେହି ଅନୁମାନ କରି ପାରୁ ନ ଥାନ୍ତି । ପରିସ୍ଥିତି ଅଚଳ ହୋଇ ପଡ଼ିବାରୁ ଭାରତୀୟମାନେ ଉତ୍ତ୍ୟକ୍ତ ହୋଇ ଉଠୁଥାନ୍ତି ; ବ୍ୟର୍ଥତାର ହତାଶ-ଭାବ ଭାରତୀୟଙ୍କ ମନକୁ ତିକ୍ତ କରି ଦେଇଥାଏ ।

ବମ୍ବେରେ ମୁଁ ଜେ. ଆର. ଡି. ଟାଟାଙ୍କ ସଙ୍ଗେ କଥାବାର୍ତ୍ତା ହୋଇଥିଲି । ସେ ଇସ୍ପାତ, ରାସାୟନିକ ଦ୍ରବ୍ୟ, ଉଡ଼ାଜାହାଜ, ଲୁଗାକଳ, ହୋଟେଲ ପ୍ରଭୃତିର ବିରାଟ ଯୌଥକାରବାରର ମୁଖ୍ୟ ନାୟକ । ତାଙ୍କର ବାପା ଥିଲେ ପାର୍ସୀ ଓ ମା' ଫ୍ରାନ୍ସଦେଶର ମହିଳା । ସେ ଇଂରେଜ ଓ ଫ୍ରେଞ୍ଚ ଭାଷା ଭଲଭାବେ କହିପାରନ୍ତି । ସେ ଜଣେ ବୁଦ୍ଧିମାନ୍ ଓ ସଂସ୍କୃତି-ସଂପନ୍ନ ବ୍ୟକ୍ତି । ବିଦେଶୀମାନେ ତାଙ୍କ ଦେଶ ଶାସନ କରୁଥିବାରୁ ସେ ଦୁଃଖିତ ବୋଲି କହିଲେ । ତାଙ୍କ ଟେବୁଲରେ କେତେ ଗୁଡ଼ିଏ ଚିକ୍‌କଣ ଓ ଚକ୍‌ଚକ୍ କରୁଥିବା ଦୁଇ-ଇଞ୍ଚିଆ ଗୁଳା ଥୁଆ ହୋଇଥାଏ । ଯୁଦ୍ଧରେ ବ୍ୟବହୃତ ହେଉଥିବା ମୋଟା ଲୁହାପଟାର ଗାଡ଼ି (ଟ୍ୟାଙ୍କ)କୁ ଭେଦ କରିବା ପାଇଁ ଏ ଗୁଳା ସମର୍ଥ । ଟାଟାଙ୍କର ଗୋଟିଏ ଶିଳ୍ପଶାଳାରେ ଏହା ବ୍ରିଟିଶଙ୍କ

ପାଇଁ ତିଆର ହେଉଥାଏ । ଏହି ଗୁଳାମାନଙ୍କ ପାଖେ ତାଙ୍କର ଟେବୁଲରେ ଚନ୍ଦାମାଟିରେ ତଳେଇ ମହାତ୍ମା ଗାନ୍ଧୀଙ୍କର ଗୋଟିଏ ମୂର୍ତ୍ତି ଥାଏ ।

ଭାରତରେ ଛାଉଣୀ ପକାଇଥିବା ଜଣେ ଆମେରିକାନ୍ ସେନାଧ୍ୟକ୍ଷ କହିଲେ, 'ବାଲଟିଏ ପାଣିରେ ଟୋପେ ତେଲ ଯେପରି ଅଲଗାହୋଇ ଭାସୁଥାଏ, ବ୍ରିଟିଶ୍‌ମାନେ ଭାରତରେ ସେହିପରି ଅଛନ୍ତି ।'

ଭାଇସ୍‌ରୟ ମହାତ୍ମାଗାନ୍ଧୀଙ୍କ ବିଷୟରେ, ମୋ ସଙ୍ଗେ ଆଲୋଚନା କଲାବେଳେ କହିଥିଲେ, 'ଏ ବିଷୟରେ ସନ୍ଦେହ କରନାହିଁ । ବୁଢ଼ାଟି ହେଉଛି ଭାରତରେ ସବୁଠାରୁ ବଡ ସମସ୍ୟା··· । ମୋପ୍ରତି ହିଁ କେବଳ ତାଙ୍କର ଟିକିଏ ସଦ୍‌ଭାବ ଅଛି··· । ଦକ୍ଷିଣ ଆଫ୍ରିକାରୁ ଫେରି ସେ ଯଦି କେବଳ ମହାତ୍ମା ବା ଧର୍ମଗୁରୁ ହୋଇ ରହିଥାନ୍ତେ ତେବେ ସେ ଭାରତର ମହତ୍ତ୍ୱ ବହୁ ଉଚ୍ଚକୁ ନେଇ ପାରିଥାନ୍ତେ । କିନ୍ତୁ ସେ ରାଜନୀତିର ପ୍ରଲୋଭନରେ ପଡ଼ିଗଲେ । ତାଙ୍କୁ ସାନ ବୋଲି ମନେ କରନାହିଁ । ଭାରତରେ ତାଙ୍କର ପ୍ରଭାବ ବହୁତ ବେଶି ।'

ଭାଇସ୍‌ରୟ କହିଲେ, ଗାନ୍ଧୀ ବର୍ତ୍ତମାନ ଗୋଟାଏ କିଛି ପ୍ରକାର ଆଇନ୍ ଅମାନ୍ୟ ଆନ୍ଦୋଳନର କଳ୍ପନା କରୁଛନ୍ତି । ଲର୍ଡ଼ ଲିନ୍‌ଲିଥ୍‌ଗୋ କହିଲେ, 'ମୁଁ ଏ ପଦରେ ଛଅ ବର୍ଷ ରହିଲଣି । ଏହି ସଂଭାଳି କାର୍ଯ୍ୟ କରିବା ଏଠାରେ ମୁଁ ଶିକ୍ଷା କରିଛି । ସକାଳୁ ସନ୍ଧ୍ୟା ଗଡ଼ିଗଲା ଯାଏଁ ମୁଁ ଏଠାରେ ବସି ଚିଠିପତ୍ର, ବିବୃତି ଓ ବିବରଣୀ ପଢୁଥାଏ ଏବଂ ଯତ୍ନପୂର୍ବକ ସେ ସବୁର ବିଷୟବସ୍ତୁ ହଜମ କରୁଥାଏ । ମୁଁ ତରତରିଆ ହୋଇ କିଛି ଗୋଟାଏ କରି ବସିବି ନାହିଁ । କିନ୍ତୁ ମୁଁ ଯଦି ସ୍ଥିରଭାବେ ବୁଝିବି ଯେ ଗାନ୍ଧୀ ଯୁଦ୍ଧ-ଉଦ୍ୟମରେ ବାଧା ଦେଉଛନ୍ତି, ତେବେ ତାଙ୍କୁ ଜବତ୍ କରିବାକୁ ମୁଁ ବାଧ୍ୟ ହେବି ।' ଏହା କହି ସେ ତାଙ୍କ ହାତ ଟେବୁଲ୍ ଉପରେ ଏତେ ଜୋରରେ ବାଡ଼େଇ ଦେଲେ ଯେ ଟେବୁଲ ଉପରେ ଥିବା ଗୃହଟାଯାକ ଟେଲିଫୋନ୍ ଯନ୍ତ୍ର ଟିଣିଟିଣି ଶବ୍ଦ କଲା ।

ମୁଁ କହିଲି, ଗାନ୍ଧୀ ଯଦି ଜେଲରେ ମରିଯାନ୍ତି ତେବେ ବଡ଼ ଖରାପ ହେବ ।

ଭାଇସ୍‌ରୟ ଏକମତ ହୋଇ କହିଲେ, 'ସେ କଥା ଜାଣୁଛି । ସେ ବୁଢା ହୋଇଗଲେଣି । ପୁଣି, ତୁମେ ତ ଜାଣ ହେ ବୁଢ଼ାକୁ ଜବରଦସ୍ତି ଖୋଇ ହେବନାହିଁ । ସେ କୁକୁର ପରି, ମନ ହେଲା ତ ପେଟକୁ ପୂରି ଖାଇ

କରି ଦେଇପାରିବେ···। ମୋର ଆଶା, ଏସବୁ କିଛି ପ୍ରୟୋଜନ ହେବ ନାହିଁ କିନ୍ତୁ ମୋ ମୁଣ୍ଡରେ ଗୁରୁ ଦାୟିତ୍ୱ ରହିଛି । ବୁଢ଼ା ଯଦି ଯୁଦ୍ଧ ଉଦ୍ୟମରେ ବାଧା ଦିଏ ତେବେ ମୁଁ ତାହା କରେଇ ଦେବି ନାହିଁ ।'

କଳ୍ପିତ ଆଇନ୍ ଅମାନ୍ୟ ଆନ୍ଦୋଳନ ବିଷୟରେ ମହାତ୍ମାଙ୍କ ସଙ୍ଗେ ପରାମର୍ଶ କରିବାକୁ ନେହେରୁ ସେବାଗ୍ରାମ ଯାଉଥାନ୍ତି । ମୋ ସଙ୍ଗେ ଗାନ୍ଧୀଙ୍କର ସାକ୍ଷାତ୍‌କାରର ବନ୍ଦୋବସ୍ତ କରି ଦେବାକୁ ମୁଁ ତାଙ୍କୁ ଅନୁରୋଧ କଲି । ତୁରନ୍ତ ମୁଁ ଖଣ୍ଡିଏ ଟେଲିଗ୍ରାମ ପାଇଲି । ସେଥିରେ ଥାଏ : 'ସ୍ୱାଗତ, ମହାଦେବ ଦେଶାଇ' ।

କ୍ଷୁଦ୍ର ଓ୍ୱାର୍ଦ୍ଧା ସହରରେ ମୁଁ ରେଲଗାଡ଼ିରୁ ଓହ୍ଲାଇଲି । ଗାନ୍ଧୀ ତାଙ୍କର ଜଣେ ଲୋକକୁ ମୋତେ ଭେଟିବା ସକାଶ ଷ୍ଟେସନ୍‌କୁ ପଠାଇଥାନ୍ତି । କଂଗ୍ରେସ ଭବନର ଛାତ ଉପରେ ରାତିରେ ଶୋଇଲି । ରାତି ତମାମ ନାରଙ୍ଗୀ-ଧଳା-ସବୁଜ କଂଗ୍ରେସ ପତାକା ପବନରେ ଫଡ଼ଫଡ଼ ହୋଇ ଗୁପ୍ତବାର୍ତ୍ତା ଚାରିଆଡ଼େ ପଠାଉଥାଏ । ତହିଁ ଆରଦିନ ବଡ଼ିସକାଳୁ ଗାନ୍ଧୀଙ୍କ ଦାନ୍ତ ଡାକ୍ତରଙ୍କ ସଙ୍ଗେ ଗୋଟିଏ ଟାଙ୍ଗାରେ ବସି ସେବାଗ୍ରାମ ବାହାରିଲି । (ଟାଙ୍ଗାରେ ଦୁଇଟି ଚକ, ଗୋଟିଏ ଘୋଡ଼ା ଟାଣେ, ଯାତ୍ରୀମାନେ ଟାଙ୍ଗାବାଲାର ପଛଆଡ଼େ ଘୋଡ଼ାକୁ ପିଠିକରି ବସନ୍ତି ।) ଗାନ୍ଧୀଙ୍କ ଦାନ୍ତ ବିଷୟରେ କିଛି ଡାକ୍ତରଙ୍କଠାରୁ ଆଦାୟ କରିବାକୁ ମୁଁ ଚେଷ୍ଟାକଲି । କିନ୍ତୁ ସେ ମୋତେ ଶୁଣାଇଲେ ବ୍ରିଟିଶ୍ ରାଜନୀତି । ଧୂଳିରାସ୍ତା ଯାଇ ଯେଉଁଠାରେ ଗାଁ ଭିତରେ ପଶିଛି ସେଇଠି ଟାଙ୍ଗା ରହିଲା । ଗାନ୍ଧୀ ଆସି ସେଇଠାରେ ଠିଆ ହୋଇଥାନ୍ତି । ବ୍ରିଟିଶ୍ ଭଙ୍ଗୀରେ ସେ ମୋତେ 'ମିଷ୍ଟର୍ ଫିଶର୍' ବୋଲି ସମ୍ବୋଧନ କଲେ ; ଆମେ ଦୁହେଁ କରମର୍ଦ୍ଦନ କଲୁଁ । ତା'ପରେ ସେ ଦାନ୍ତ ଚିକିତ୍ସକଙ୍କ ସଙ୍ଗେ ସଂଭାଷଣ କରି ଆଶ୍ରମ ଆଡ଼କୁ ମୁହାଁଇଲେ । ମୁଁ ତାଙ୍କ ପଛେ ପଛେ ଗୋଟିଏ ବେଞ୍ଚ ପାଖକୁ ଗଲି । ସେ ବେଞ୍ଚରେ ବସି ପଡ଼ିଲେ, ଏବଂ ବେଞ୍ଚରେ ହାତ ଥୋଇ ବସିବାକୁ ସୂଚାଇ କହିଲେ, 'ବସନ୍ତୁ' । ପ୍ରଥମରେ ଯାଇ ସେ ଯେପରି ବେଞ୍ଚରେ ବସି ପଡ଼ିଲେ, ବେଞ୍ଚରେ ହାତ ଥୋଇ ଯେପରି ମୋତେ ସଙ୍କେତ ଦେଲେ, ସେଥିରୁ ମୁଁ ବୁଝିଲି, ସେ କହୁଛନ୍ତି, 'ଏ ମୋର ଘର, ସଙ୍କୋଚ ନ କରି ଆସ' । ସାଂଗେ ସାଂଗେ ମୋର ନିଜ ଘର ବୋଲି ତାକୁ ବିଚାରି ସମସ୍ତ ସଙ୍କୋଚ ଛାଡ଼ିଦେଲି ।

ପ୍ରଭିଦିନ ମୋତେ ଗାନ୍ଧୀଙ୍କ ସଂଗେ କଥାବାର୍ତ୍ତା ହେବାକୁ ଘଣ୍ଟେ-ଲେଖାଏଁ ମିଳିଲା । ସ୍ୱା ବାଦ୍ ଖାଇଲା ବେଳେ କଥାବାର୍ତ୍ତା ହେବାର ସୁଯୋଗ ମିଳୁଥାଏ । ପୁଣି ପ୍ରତ୍ୟହ ଥରେ ବା ଦୁଇଥର ତାଙ୍କ ସଂଗେ ବୁଲିଯାଏ । ମେଲାରେ ତାଙ୍କ ଶୋଇବାଖଟିଆରେ ବସି ସେ ଆମ୍ବ-ରସ ଖାଇବା ବେଳେ ମୁଁ ଯାଇ ପହଞ୍ଚେ ପ୍ରାତଃଭ୍ରମଣ ପାଇଁ । ଗୁମଚକୁ ଗୁମଚ ଆମ୍ବ ଦୋରୁଅ ଖାଇବା ଭିତରେ ସେ ଗୁରୁତର ଆଲୋଚନା ଆରମ୍ଭ କରିଦିଅନ୍ତି । ପ୍ରାତରାମ ସରିବାପରେ ସେ କସ୍ତୁରବାଙ୍କ ହାତରୁ ଖଣ୍ଡିଏ ତଉଲିଆ ଓ ପାଣି ବୋତଲଟିଏ ନିଅନ୍ତି । ବୋତଲଟି ଲମ୍ବା, ଗୁରକୁଣିଆ, ବେକ ସରୁଆ, ମୁହଁରେ କର୍କ ଦିଆ ହୋଇଥାଏ । ହାତ ଧୋଇ, ପୋଛି-ପୋଛି କରି ନିକଟବର୍ତ୍ତୀ କ୍ଷେତ ଭିତରେ ବୁଲିବାକୁ ବାହାରନ୍ତି । କସ୍ତୁରବାଙ୍କ ଗାଲ ପଶିଯାଇଥାଏ, ମୁହଁ ସଳଖ, ଦାନ୍ତପାଟି ସମତୁଲ । ସେ ଖୁବ୍ ମନୋଯୋଗ ଦେଇ ଗାନ୍ଧୀଙ୍କ କଥାକୁ କାନ ଦେଇଥାନ୍ତି ବୋଲି ମନେ ହେଲା । କିନ୍ତୁ ମୁଁ ଯେଉଁ ହପ୍ତାକ ରହିଲି ତା'ଭିତରେ ଥରେ ବି ସେ ସ୍ୱାମୀଙ୍କୁ ପଦେ କଥା କହିବାର ବା ସ୍ୱାମୀ ତାଙ୍କୁ ପଦେ କିଛି କହିବାର ମୁଁ ଶୁଣିନାହିଁ କି ଦେଖିନାହିଁ । ଗାନ୍ଧୀ ଖାଇଲା ବେଳେ ଓ ପ୍ରାର୍ଥନାସଭାରେ ବସି ଥିବାବେଳେ କସ୍ତୁରବା ତାଙ୍କର ଟିକିଏ ପଛରେ ବାଁ କାନ୍ଧ ଆଡ଼କୁ ବସି ନିସ୍ତାର ସହିତ ତାଙ୍କୁ ପଂଖା କରୁଥାନ୍ତି । କସ୍ତୁରବାଙ୍କ ଦୃଷ୍ଟି ସବୁବେଳେ ଗାନ୍ଧୀଙ୍କ ଉପରେ ଥାଏ, କିନ୍ତୁ ଗାନ୍ଧୀ ତାଙ୍କ ଆଡ଼କୁ କ୍ୱଚିତ୍ ଚାହାନ୍ତି । ତଥାପି କସ୍ତୁରବା ତାଙ୍କର ପାଖେ ପାଖେ ଥା'ନ୍ତୁ ବୋଲି ଗାନ୍ଧୀ ଚାହୁଁଥିବାପରି ମନେ ହୁଏ । ଦୁହିଁଙ୍କ ଭିତରେ ପ୍ରାଣର ପୂର୍ଣ୍ଣ ବିନିମୟ ଚାଲିଥିବା ପରି ମୁଁ ଲକ୍ଷ୍ୟ କରିଛି ।

ବୁଲିଲା ବେଳେ ଗାନ୍ଧୀ, ଦୁଇଜଣ ଝିଅ ଓ ପୁଅଙ୍କ କାନ୍ଧରେ ବାହୁ-ଲଗାଇ ଦିଅନ୍ତି, କିନ୍ତୁ ଚାଲନ୍ତି ଖୁବ୍ ତରତରରେ ଲମ୍ବ ଲମ୍ବ ପାହୁଣ୍ଡ ପକାଇ । ଏଭଳି ଚାଲିଲା ବେଳେ ସେ ଅନର୍ଗଳ କଥା କହି ଚାଲିଥାନ୍ତି । ତାଙ୍କର ଦମ୍ ଛୁଟେ ନାହିଁ, ସେ ହାଲିଆ ହେଲା ପରି ବି ଜଣାପଡ଼େ ନାହିଁ । ଅଧଘଣ୍ଟାରୁ କମ୍ ସେ ବୁଲନ୍ତି ନାହିଁ । ଫେରିଲା ବେଳକୁ ମୋର ବିଶ୍ରାମ ଦରକାର ହୋଇଥାଏ । ମୁଁ ଗୋଟାଏ ଖୁଣ୍ଟକୁ ଆଉଜି ଠିଆ ହୋଇ ପଡ଼ିଲି । ତାଙ୍କର କିନ୍ତୁ କଥା ଚାଲିଥାଏ ।

ଗାନ୍ଧୀଙ୍କର ବେଶ୍ ସୁଗଠିତ ଶରୀର । ତାଙ୍କ ଛାତି ବେଶ୍ ସୁନ୍ଦର,

ଗୁଡ଼ିକର ମାଂସପେଶୀ ଗୁଡ଼ିକ ପୁଷ୍ଟ, ସ୍ପଷ୍ଟ ବାହାରକୁ ବାହାରି ପଡୁଥାଏ । ତାଙ୍କର ଅଣ୍ଟା ସରୁ, ଗୋଡ଼ଗୁଡ଼ିକ ଲମ୍ବ, ସରୁ, କିନ୍ତୁ ଟାଣ । ତାଙ୍କ ଆଣ୍ଠୁ ଉପରର ମାଂସପେଶୀ ବାହାରକୁ ଫୁଟି ଦିଶୁଥାଏ । ତାଙ୍କ ଗୋଡ଼ର ହାଡ଼ ଗୁଡ଼ିକ ପ୍ରଶସ୍ତ ଓ ଶକ୍ତ । ତାଙ୍କ ହାତ ଦୁଇଟି ଲମ୍ବ, ଆଙ୍ଗୁଠି ଗୁଡ଼ିକ ଗୋଟା ଗୋଟା ଓ ଟାଣ । ତାଙ୍କ ଶରୀରର ବର୍ଣ୍ଣ ପିଙ୍ଗଳ, ଚର୍ମ ମସୃଣ ଓ ସୁସ୍ଥ । ସେତେବେଳକୁ ତାଙ୍କର ବୟସ ଚେସ୍ତରି । ତାଙ୍କ ଆଙ୍ଗୁଠିର ନଖ, ହାତ, ପାଦ, ମୋଟ ଉପରେ ସମସ୍ତ ଶରୀର ପରିଷ୍କାର ପରିଛନ୍ନ । ତାଙ୍କ କଟିବସ୍ତ୍ର, ଏବଂ ମଝିରେ ମଝିରେ ଖରାବେଳେ ମୁଣ୍ଡରେ ଦେଉଥିବା କନାର ଟୋପି ଏବଂ ଓଦା ଓ ଚଉଡ଼ା ହୋଇ ମୁଣ୍ଡରେ ଦିଆ ହୋଇଥିବା ତଉଲିଆ— ସବୁ ପୂରା ସଫେଦ୍ । ଥରେ ତାଙ୍କ ପିନ୍ଧା ଲୁଗାରେ ହଳଦିଆ ଆମ୍ବ-ରସ ଟିକିଏ ପଡ଼ିଗଲା । ସେ ଘଣ୍ଟାଏ କାଳ ଲାଗି ତାକୁ ଅନବରତ ନଖରେ ଘଷୁଥାନ୍ତି ।

ତାଙ୍କ ଶରୀର ବୁଢ଼ାଳିଆ ଦିଶୁ ନ ଥାଏ । ତାଙ୍କୁ ଦେଖିଲେ ସେ ବୁଢ଼ା ବୋଲି ମନେ ହୁଏ ନାହିଁ । ତାଙ୍କ ବୟସର ପ୍ରମାଣ ଦିଏ ତାଙ୍କର ମୁଣ୍ଡ । ମୁଣ୍ଡଟି ତାଙ୍କର ବଡ, ଉପରଭାଗ ଓସାରିଆ କ୍ରମେ ପୋଚ୍ଛ ହୋଇ ଆସି ମୁହଁ ପାଖେ ଗ୍ରେଟ ହୋଇଥାଏ । ଲମ୍ବ କାନ ଦୁଇଟି ସିଧା ହୋଇ ମୁଣ୍ଡର ଦୁଇପାଖେ ବାହାରି ପଡ଼ିଥାଏ । ଓପର ଓଠରେ କଳା ଧଳା ମିଶା ବାଳର ଖୁଣ୍ଟା ନିଶ । ଓପର ଓଠଟି ଏତେ ସରୁ ଯେ, ମୋଟା ଓ ତଳକୁ ଓହଳିଥିବା ନାକରେ ଘୋଡ଼େଇ ହୋଇପରି ଜଣା ପଡ଼ୁଥାଏ । ତାଙ୍କ ମୁହଁର ଭାବ ପ୍ରକାଶିତ ହୁଏ ଶାନ୍ତ ଓ ସରଳ ଆଖି ଦୁଇଟିଦ୍ୱାରା, ଓ ସମ୍ବେଦନଶୀଳ ନିମ୍ନୋଷ୍ଠଦ୍ୱାରା । ଏହି ନିମ୍ନୋଷ୍ଠ ପରିଚୟ ଦିଏ ତାଙ୍କ ଦୃଢ଼ତା ଓ ଆତ୍ମସଂଯମର ; ତାଙ୍କ ତପଃକ୍ଲେଶର ସଙ୍କେତ ମଧ୍ୟ ଏଇଥିରୁ ମିଳେ । ଆଖି ଓ ନିମ୍ନୋଷ୍ଠ ବାଦ୍ ତାଙ୍କ ମୁହଁର ଭାବ ପ୍ରକାଶ କରୁଥାଏ ତାଙ୍କର ନିତ୍ୟ ସହଚର ମୃଦୁହାସ । ହସିଲା ବେଳେ ତାଙ୍କର ଦାନ୍ତ ନ ଥିବା ମାଡ଼ି ଗୁଡ଼ିକ ଦିଶିଯାଏ । ( କେବଳ ଖାଇବା ବେଳେ ସେ ନକଲି ଦାନ୍ତ ବ୍ୟବହାର କରୁଥିଲେ , ଖାଇସାରିଲେ ତାକୁ କାଢ଼ି ସମସ୍ତଙ୍କ ଆଗେ ଧୋଇ ରଖି ଦେଉଥିଲେ । ସୁନା ଫ୍ରେମରେ ବନ୍ଧା, ପ୍ରତି ଆଖି ପାଇଁ ଦୁଇ ପ୍ରକାର ଶକ୍ତି ବିଶିଷ୍ଟ ଦେଖଣି ଲେଖାଏଁ କାଚ ଥିବା ଚଷମା ବ୍ୟବହାର କରୁଥିଲେ । ପ୍ରତିଦିନ ଲମ୍ବା ଖୁରରେ ଖିଅର ହେଉଥିଲେ । ଦିନେ ଦିନେ

ତାଙ୍କର କୌଣସି ଶିଷ୍ୟ ବା ଶିଷ୍ୟା ତାଙ୍କୁ ଖିଅର କରି ଦେଉଥିଲେ ।)

ତାଙ୍କ ସ୍ଥିର ଓ ନିଃଶଙ୍କ ଆଖି ଯୋଡ଼ିକ ଛାଡ଼ି ଦେଲେ, ତାଙ୍କ ମୁହଁର ଚେହେରା ଅସୁନ୍ଦର । ସ୍ଥିର ଭାବରେ ରହିଲା ବେଳେ ତାଙ୍କ ମୁହଁ ଅସୁନ୍ଦର ଦେଖାଯାନ୍ତା, କିନ୍ତୁ ସେ କ୍ୱଚିତ୍ ସ୍ଥିର ହୋଇ ରହୁଥିଲେ । କଥା କହୁଥାନ୍ତୁ ବା ଶୁଣୁଥାନ୍ତୁ, ସବୁବେଳେ ତାଙ୍କର ମୁହଁର ଭଙ୍ଗୀ ଜୀବନ୍ତ ଥାଏ ଓ ମନର ଭାବ ସେଥିରେ ପ୍ରତିବିମ୍ବିତ ହୋଇ ଫୁଟିଥାଏ । ସେ କ୍ଷୀଣ ସ୍ୱରରେ, ଏକଘାଇଆ ମାମୁଲି ଢଙ୍ଗରେ କଥା କହନ୍ତି (ଅନେକ ଭାରତୀୟ ଇଂରେଜୀ କହିଲାବେଳେ ଏଇଭଳି ଏକଘାଇଆ ଢ଼ଂଗରେ କଥା କହନ୍ତି )। ବେଳେ ବେଳେ ସେ ଗୋଟିଏ ହାତ ଟେକି ଆଂଗୁଠିରେ ଅବଲମ୍ବ କରି କଥା କହନ୍ତି । ଏହି ଅବଲମ୍ବରୁ ତାଂକ ମନର ଭାବ ଅଧିକ ସ୍ପଷ୍ଟ ହୁଏ । ଗାନ୍ଧୀଂକର ହାତ ଦୁଇଟି ବାସ୍ତବିକ ସୁନ୍ଦର ।

ଲଏଡ଼ ଜର୍ଜଙ୍କର ବଡ଼ ଲୋକର ଚେହେରା । ଚର୍ଚ୍ଚିଲ ଓ ଫ୍ରାଙ୍କ୍‌ଲିନ ଡ଼ି ରୁଜ୍‌ଭେଲଟଙ୍କର ଆକାର ଓ ଆକୃତିରେ ଯେଉଁ ବୈଶିଷ୍ଟ୍ୟ ଥିଲି ତାହା ତାଙ୍କୁ ଚାହିଁଲା ମାତ୍ରେ ଅନୁଭୂତ ହୁଏ । ଗାନ୍ଧୀଂକର ଏହା ନ ଥିଲି (ଲେନିନଂକର ବି ନ ଥିଲି ) । ବାହାରୁ ଦେଖିଲେ ତାଂକ ରୂପରେ କୌଣସି ବିଶିଷ୍ଟତା ନ ଥିଲି ; ଟିକିଏ ଯାହା ଥିଲି ତାହା ବୋଧ-ହୁଏ ତାଙ୍କ ନମ୍ରୋଷ୍ଠରେ । ଗାନ୍ଧୀଙ୍କ ବ୍ୟକ୍ତିତ୍ୱର ବୈଶିଷ୍ଟ୍ୟ ଥିଲି ତାଙ୍କ ଗୁଣରେ, ତାଙ୍କର ଅତୀତ ଓ ବର୍ତ୍ତମାନର କୃତିରେ । ଗାନ୍ଧୀଙ୍କ ସାନ୍ନିଧ୍ୟରେ ମୋର ତାଙ୍କ ପ୍ରତି ଭୟ ବା ସମ୍ଭ୍ରମ ହେଉ ନ ଥିଲି । ମୋତେ ଲାଗୁଥିଲି, ମୁଁ ଜଣେ ମେଳାପୀ, ଭଦ୍ର, ଆଦବ କାଇଦା ଶୂନ୍ୟ, ଅକଠୋର, ସଦାନନ୍ଦ, ବିଜ୍ଞ ଓ ସୁସଭ୍ୟ ବ୍ୟକ୍ତିଙ୍କ ସାନ୍ନିଧ୍ୟ ପାଇଛି । ତାଙ୍କ ବ୍ୟକ୍ତିତ୍ୱର ଅଦ୍‌ଭୁତ ପ୍ରଭାବ ମଧ୍ୟ ମୁଁ ଉପଲବ୍‌ଧି କରୁଥାଏ । ଗାନ୍ଧୀ ତାଙ୍କ ବ୍ୟକ୍ତିତ୍ୱର ବଳରେ ହିଁ ଅସାଧ୍ୟ ସାଧନ କରିପାରିଛନ୍ତି । ତାଙ୍କ ଅକ୍ତିଆରରେ ଟାଣୁଆ ସଂଗଠନ ନାହିଁ—କଂଗ୍ରେସ ଗୋଟିଏ ସ୍ୱେଚ୍ଛାସେବୀ ଅନୁଷ୍ଠାନ ମାତ୍ର—ତାଙ୍କ ପଛରେ ସରକାରର ବଳ ନାହିଁ, ତଥାପି ନିଜର ବ୍ୟକ୍ତିତ୍ୱର ବଳରେ ସେ ପରସ୍ପର-ଠାରୁ ବିଚ୍ଛିନ୍ନ, ଏକତାହୀନ ଗୋଟାଏ ବିରାଟ ଦେଶର ସୁଦୁରବର୍ତ୍ତୀ ଅଞ୍ଚଳମାନଙ୍କରେ ବି ନିଜର ପ୍ରଭାବ ବିସ୍ତାର କରି ପାରିଛନ୍ତି, ଏପରି କି ପୃଥିବୀର ପରସ୍ପରବିରୋଧୀ ସମସ୍ତ ରାଷ୍ଟ୍ରମାନଙ୍କରେ ନିଜର ପ୍ରତିପତ୍ତି ଜାହିର କରି ପାରିଛନ୍ତି । ନିଜର ଲେଖାଦ୍ୱାରା ସେ ଏହା କରି ନାହାନ୍ତି । ଯଦିଓ

ତାଙ୍କ ପୁସ୍ତକ ଓ ପ୍ରବନ୍ଧାଦି ଭାରତ ବାହାରେ ପରିଚିତ ଏବଂ ତାଙ୍କ ପ୍ରବନ୍ଧାଦି ଭାରତିର ବିଭିନ୍ନ ପତ୍ରପତ୍ରିକାରେ ଉଦ୍ଧୃତ ହୋଇଛି, ତଥାପି ଏହା ଖୁବ୍ ଅଳ୍ପ ଲୋକଙ୍କ ନଜରରେ ପଡ଼ିଛି ବୋଲି ସ୍ୱୀକାର କରିବାକୁ ହେବ । ତାଙ୍କ ପ୍ରଭାବ ଓ ପ୍ରତିପତ୍ତି ବିସ୍ତାର କରିବାରେ ତାଙ୍କ ଲେଖାଲେଖି ସହାୟ ହୋଇ ନ ଥିଲା । ସେ ପ୍ରତ୍ୟକ୍ଷ ଭାବେ ଲୋକଙ୍କ ସମ୍ପର୍କରେ ଆସୁଥିଲେ, ଏବଂ ନିଜର କାର୍ଯ୍ୟ, ଆଦର୍ଶ ଏବଂ କେତୋଟି ସରଳ ଅଥଚ ସାଧାରଣତଃ ଅବଜ୍ଞାତ ନୀତି ପ୍ରତି ଗଭୀର ଆନୁଗତ୍ୟ ଯୋଗୁଁ ଲୋକଙ୍କୁ ପ୍ରଭାବିତ କରି ପାରିଥିଲେ । ସେ ନୀତି ଗୁଡ଼ିକ ହେଲା—ଅହିଂସା ଓ ସତ୍ୟ; କର୍ମଫଳ ଅପେକ୍ଷା ସାଧନର ଶୁଦ୍ଧତା ପ୍ରତି ଅଧିକ ଧ୍ୟାନ ଦେବା ।

ଆଧୁନିକ ଯୁଗର ଯେତେ ବଡ଼ଲୋକ—ଚର୍ଚ୍ଚିଲ୍, ରୁଜ୍‌ଭେଲ୍‌ଟ, ଲଏଡ୍ ଜର୍ଜ, ଷ୍ଟାଲିନ୍, ଲେନିନ୍, ହିଟଲର୍, ଉଡ୍‌ରୋ ଉଇଲସନ୍, କାଇଜର୍, ଲିନ୍‌କଲନ୍, ନେପୋଲିଅନ, ମେଟର୍‌ନିକ୍, ଟାଲିରାଁ ଆଦି ସମସ୍ତଙ୍କ ଅକ୍ତିଆରରେ ରାଷ୍ଟ୍ରର ଶାସନସଂସ୍ଥା ଥିଲା । ସରକାରର ବାହାରେ ଥାଇ ଗାନ୍ଧୀଙ୍କ ପରି ଲୋକଙ୍କ ମନକୁ ପ୍ରଭାବିତ କରି ପାରିଥିଲେ ଆଉ ଜଣେ ମାତ୍ର ଲୋକ—କାର୍ଲ ମାର୍କସ୍ । କିନ୍ତୁ ତାଙ୍କ ପ୍ରଚାରିତ ତତ୍ତ୍ୱ ନୂତନ ଏକ ଶାସନସଂସ୍ଥାର ବ୍ୟବସ୍ଥା ଦେଇଥିଲା ମାତ୍ର, ଲୋକଙ୍କ ଆଚରଣ ନିୟନ୍ତ୍ରିତ କରିବାକୁ ଚେଷ୍ଟା କରି ନ ଥିଲା । ଜନତାର ବିଚାରବୁଦ୍ଧିକୁ ପ୍ରଭାବିତ କରିବାକୁ ଗାନ୍ଧୀ ଯେଉଁ ଉଦ୍ୟମ କରିଥିଲେ, ସେଭଳି କରିଥିବା ଲୋକଙ୍କ ସନ୍ଧାନ କରିବାକୁ ହେଲେ ଶହଶହ ବର୍ଷ ପଛକୁ ଫେରିବାକୁ ହେବ । ସେଭଳି ଲୋକେ ସମସ୍ତେ ଥିଲେ ଅତୀତ ଯୁଗର ଧର୍ମ ପ୍ରବର୍ତ୍ତକ ଓ ପ୍ରଚାରକ । ଗାନ୍ଧୀ ଏ ଯୁଗରେ ପ୍ରମାଣ କରିଥିଲେ ଯେ, ଯୀଶୁଖ୍ରୀଷ୍ଟ ଏବଂ ଖ୍ରୀଷ୍ଟଧର୍ମର ଆରମ୍ଭ ବେଳର କେତେକ ଖ୍ରୀଷ୍ଟିଆନ୍ ପ୍ରଚାରକ, ବୁଦ୍ଧ, ହିନ୍ଦୁଜାତିର କେତେକ ଧର୍ମଗୁରୁ, ଓ ଗ୍ରୀକ୍ ଦେଶର ଋଷିମାନେ ଯେଉଁ ଭାବଧାରାର ପ୍ରଚାର କରି-ଥିଲେ, ତାହା ଏ ଯୁଗରେ ପ୍ରଚଳିତ ରାଜନୀତିରେ ମଧ୍ୟ ପ୍ରୟୋଗ କରାଯାଇ ପାରେ । ଗାନ୍ଧୀ ଭଗବତ୍‌ତତ୍ତ୍ୱ ବା ଧର୍ମ ବିଷୟରେ ପ୍ରଚାର କରି ନ ଥିଲେ । ତାଙ୍କ ନିଜର ଜୀବନରେ ଧର୍ମର ତତ୍ତ୍ୱ ପ୍ରତିଫଳିତ ହୋଇଥିଲା । କ୍ଷମତା ଓ, ଧନର ମଦକୁ କେହି ତ୍ୟାଗ କରି ଚଳି ନ ପାରିବା ବେଳେ, ସେ ପୁରାଣ ଯୁଗର ଆଦର୍ଶ ଧରି ଏ ଯୁଗରେ ଚଳି ପାରିଥିଲେ । ଇଲେକ୍‌ଟ୍ରିସିଟି, ରେଡ଼ିଓ, କଳପାଣି ଓ ଟେଲିଫୋନ୍ ନ ଥିବା ଗୋଟିଏ ଭାରତୀୟ ଗ୍ରାମର କ୍ଷୁଦ୍ର ମାଟି

ଘରେ ସେ ଶରୀରର ପାଞ୍ଚଭାଗରୁ ଚୈାରଭାଗ ମୁକୁଳା ରଖି ରହୁଥିଲେ । ଏଭଳି ଅବସ୍ଥାରେ ରହୁଥିବା ଲୋକକୁ ଭୟ କରିବା, ଗୁରୁ ବୋଲି ମାନିଯିବା, ବା ସ୍ବାଙ୍କର ଆଦର୍ଶକୁ ପ୍ରଶଂସା କରି ବୁଲିବା ଏ ଯୁଗରେ ସମ୍ଭବ ନୁହେ । ଗାନ୍ଧୀ ଥିଲେ ଯଥାର୍ଥରେ ମାଟିର ମଣିଷ । ସେ ଉପଲବ୍ଧି କରିଥିଲେ ଯେ ଦୈନନ୍ଦିନ ଚଳଣିର ଛୋଟଛୋଟ କଥାରେ ହିଁ ଜୀବନର ସାର୍ଥକତା ।

ଗାନ୍ଧୀ ମୋତେ କହିଲେ, 'ଏଥର ତୁମର ଜୋତା ପିନ୍ଧ ଓ ଟୋପି ଲଗାଅ । ଏ ସ୍ଥାନରେ ଏ ଦୁଇଟି ଜିନିଷ ନିତାନ୍ତ ପ୍ରୟୋଜନ । ରୌଦ୍ରା-ଘାତରେ ଯେପରି ଝାଇଁ ନ ମାରେ ସେଥିପ୍ରତି ସାବଧାନ ରହ ।' ସେତେବେଳେ ଉତ୍ତାପ ଥାଏ ଶହେ ଦଶ ଡିଗ୍ରୀ । କୁଡ଼ିଆ ଘରର ଭିତର ବ୍ୟତୀତ ବାହାରପଟେ ସୁସ୍ଥ ନ ଥାଏ କହିଲେ ଚଳେ । କୁଡ଼ିଆଗୁଡ଼ିକର ଭିତର ଜଳନ୍ତା ଚୁଲି ପରି ତାତିଥାଏ । କୌତୁକରେ ଆଦେଶ ଦେଲାଭଳି ଭାଷାରେ କିନ୍ତୁ ସୌହାର୍ଦ୍ଦ୍ୟ-ପୂର୍ଣ୍ଣ ସ୍ୱରରେ ସେ କହିଲେ, 'ସାଙ୍ଗରେ ଆସ' । ମୁଁ ତାଙ୍କ ପଛେ ପଛେ ସମସ୍ତେ ଏକାଠି ଖାଇବା ସକାଶ ନିର୍ଦ୍ଦିଷ୍ଟ ଭୋଜନାଳୟକୁ ଗଲି । ଏ ଲମ୍ବା ହଲଟିର ଦୁଇ ପାଖରେ ଲମ୍ବା ତାଟି ଘେରା ହୋଇଥାଏ । ଏ ଦୁଇ ତାଟିର ଶେଷ ମୁଣ୍ଡରେ ଆଉ ଗୋଟିଏ ତାଟି ଥାଏ । ଏହିପରି ତିନିପଟରେ ତାଟିର କାନ୍ଥ । ଯେଉଁ ପାଖେ ଆମେ ହଲ ଭିତରେ ପଶିଲୁଁ ସେ ପଟ ଠିଆ ମେଲା ।

ବାଟ ପାଖରେ ଗୋଟିଏ ଆସନରେ ଗାନ୍ଧୀ ବସିଲେ । ତାଙ୍କର ବାଁ ପଟରେ ବସିଲେ କସ୍ତୁରବା ଓ ଡାହାଣ ପଟେ ନରେନ୍ଦ୍ର ଦେବ । ସେ ଜଣେ ଭାରତୀୟ ସମାଜବାଦୀ ନେତା; ସ୍ବାଙ୍କର ଶ୍ବାସ ରୋଗ ଭଲ କରିବାର ଭାର ମହାତ୍ମାଜୀ ନେଇଥାନ୍ତି । ମୁଁ ବସିଲି ନରେନ୍ଦ୍ର ଦେବଙ୍କ ଡାହାଣ ପାଖେ । ମୋଟରେ ପ୍ରାୟ ୩୦ ଜଣ ଖାଇବସିଲେ । ସ୍ତ୍ରୀଲୋକମାନେ ଏକପାଖିଆ ହୋଇ ବସିଥାନ୍ତି । ମୋ ସାମନାରେ ବସିଥାନ୍ତି କେତେଜଣ ସାନ ସାନ ପିଲା । ସମସ୍ତଙ୍କର ଆଖିଟିମାନ ଉଜ୍ଜ୍ୱଳ, ମୁହଁ ପିଙ୍ଗଳ ବର୍ଣ୍ଣ, ବୟସ ୩ଠାରୁ ୮ ଭିତରେ । ପ୍ରତ୍ୟେକେ ଖଣ୍ଡିଏ ଖଣ୍ଡିଏ ନଡ଼ାଚଟେଇରେ ବସିଥାନ୍ତି; ପ୍ରତ୍ୟେକଙ୍କ ଆଗରେ ଥୁଆ ହୋଇଥାଏ ଗୋଟିଏ ଗୋଟିଏ ପିତଳ ଥାଳୀ । ଆଶ୍ରମବାସୀ ସ୍ତ୍ରୀ ଓ ପୁରୁଷ ପରିବେଷକ କେତେଜଣ ଖାଲି ଗୋଡ଼ରେ ନିଃଶବ୍ଦରେ ଯିବା ଆସିବା କରି ସମସ୍ତଙ୍କ ଥାଳରେ ଖାଦ୍ୟସାମଗ୍ରୀ ବାଢ଼ୁ-ଥାନ୍ତି । ଗାନ୍ଧୀଙ୍କ ଗୋଡ଼ ପାଖେ ଗୁଡ଼ିଏ ଡେକଚି ଓ କଡ଼େଇ ରଖା ହୋଇ-

ଥାଏ । ସେ ମୋ ଆଡ଼କୁ ଗୋଟିଏ କଂସା ଗିନା ବଢ଼ାଇ ଦେଲେ । ସେଥିରେ ପରିବା ଝୋଳଥାଏ । ଝୋଳରେ ଖଣ୍ଡ ଖଣ୍ଡ କଖାରୁ, ଏବଂ ସ୍ଲେଟ ସ୍ଲେଟ ହୋଇ କଟା ହୋଇଥିବା ଶାଗ ପଡ଼ିଥିବା ପରି ମନେ ହେଲା । ଜଣେ ସ୍ତ୍ରୀ ଲୋକ ମୋ ଥାଳୀରେ ଲୁଣ ଟିକିଏ ଦେଇଗଲେ ଏବଂ ଆଉ ଜଣେ ମୋ ପାଖେ ଆଣି ଗୋଟିଏ ଗ୍ଲାସରେ ଗରମ ପାଣି ମୁନ୍ଦାଏ ଥୋଇଲେ; ଆଉ ଜଣେ ଆଣି ଥୋଇଦେଲେ ଗିନେ ଗରମ ଦୁଧ । ଯେ ଦୁଧ ଦେଇଥିଲେ ସେ ଆଉଥରେ ଆସି ଦୁଇଟା ସ୍ଲେଟ ସିଝା ଆଳୁ ଦେଇଗଲେ । ଆଳୁରେ ଚୋପା ଲାଗିଥାଏ । ତା ସାଙ୍ଗେ କଅଁଳିଆ ଗହମରୁଟି କେଇଖଣ୍ଡ ବି ଦେଲେ । ରୁଟି ସେକା ହୋଇ ମାଟିଆବର୍ଣ୍ଣ ହୋଇଥାଏ । ଗାନ୍ଧୀଙ୍କ ଆଗରେ ଥୁଆ ହୋଇଥିବା ଗୋଟିଏ ଡେକଚିରୁ, ଗାନ୍ଧୀ କାଗଜ ପରି ପତଳା ଗହମ ରୋଟି ଖଣ୍ଡେ ମୋ ହାତକୁ ବଢ଼ାଇ ଦେଲେ ।

ବଢ଼ାବଢ଼ି ସରିଲା ପରେ ଗୋଟାଏ ଘଣ୍ଟି ବାଜିଲା । ଧଳା ହାଫ୍-ପ୍ୟାଣ୍ଟ ପିନ୍ଧିଥିବା ଜଣେ ହୃଷ୍ଟପୁଷ୍ଟ ଲୋକ ପରଷିବା ବନ୍ଦ କରି ସିଧା ହୋଇ ଆମ ମଝିରେ ଠିଆ ହେଲେ । ସେ ଆଖିକୁ ଅଧା ବୁଜି ଦେଇଥାନ୍ତି, ଦୁଇ-ପତା ଭିତରେ କେବଳ ଧଳା ଗାରଟିଏ ପଡ଼ିଲା ପରି ଟିକିଏ ଫାଙ୍କ ଥାଏ । ଦେଖିଲେ ମନେ ହେବ ସେ ଅନ୍ଧ । ଏହି ବ୍ୟକ୍ତି ଉଚ୍ଚ ସ୍ୱରରେ କ’ଣ ଗୁଡ଼ାଏ ବୋଲିବାକୁ ଆରମ୍ଭ କଲେ; ଗାନ୍ଧୀଙ୍କ ସମେତ ସମସ୍ତେ ଏଥିରେ ପାଳି ଧରିଲେ । ତିନିଥର ଶାନ୍ତି, ଶାନ୍ତି କହି ପ୍ରାର୍ଥନା ବନ୍ଦ ହେଲା । ଶାନ୍ତିର ଅର୍ଥ ମୋତେ ନରେନ୍ଦ୍ର ଦେବ ଇଂରେଜୀରେ ବୁଝାଇ ଦେଲେ ।

ପ୍ରତ୍ୟେକେ ଡାହାଣ ହାତର ଆଙ୍ଗୁଠିରେ ଖାଇବାକୁ ଆରମ୍ଭ କଲେ । ରୋଟିକୁ ଗୁରି ଚଉତି କରି ଭାଙ୍ଗି ଝୋଳରେ ବୁଡ଼ାଇ ଖାଉଥାନ୍ତି ଓ ସେଇ ରୋଟି ସାହାଯ୍ୟରେ ଝୋଳରୁ ପରିବା ଖଣ୍ଡମାନ ଅଣ୍ଟାଳି ଆଣୁଥାନ୍ତି । ମୋତେ ଗୋଟିଏ ସ୍ଲେଟ ଚାମଚ ମିଳିଲା, ଏବଂ ପରେ ରୋଟିରେ ବୋଳିବାକୁ ଟିକିଏ ଲହୁଣୀ ମିଳିଲା । ଗାନ୍ଧୀ ରୋଟି ଚୋବେଇବାରେ ଲାଗିଥାନ୍ତି; ମଝିରେ ମଝିରେ ଖାଇବା ବନ୍ଦ କରି ମୋତେ, ନରେନ୍ଦ୍ର ଦେବଙ୍କୁ ଓ କସ୍ତୁରବାଙ୍କୁ ଦୋଅଡ଼ ପରିଷୁଥାନ୍ତି ।

ସେଇ ଖାଇଲା ବେଳେ ସେ ମୋତେ ପ୍ରଥମ ରାଜନୀତିକ ପ୍ରଶ୍ନ ପଚାରିଲେ : ‘ତୁମେ ତ ୧୪ବର୍ଷ ରସିଆରେ କଟାଇଛ; ଷ୍ଟାଲିନ୍‌ଙ୍କ ସମ୍ବନ୍ଧରେ ତୁମର କି ଧାରଣା ?’

ମୋତେ ଭାରି ଗରମ ଲାଗୁଥାଏ; ଦୁଇଟିଯାକ ହାତ ଅଇଣ୍ଠା ହୋଇ ଅଠାଳିଆ ଲାଗୁଥାଏ; ଚକାମାଣ୍ଡି ପକାଇ ବସିବା ଯୋଗୁଁ ମୋ ବଳୀଗଣ୍ଠି, ଆଣ୍ଠୁ ଓ ପେଣ୍ଡ୍ରାର ଅସ୍ତିତ୍ୱ ମୁଁ ଅନୁଭବ କରିବାକୁ ଆରମ୍ଭ କରିଥାଏ । ସଂକ୍ଷେପରେ ଉତ୍ତର ଦେଲି, 'ଭାରି ସମର୍ଥ ଓ ଭାରି ନିର୍ମମ ।'

ସେ ପଚାରିଲେ, 'କ'ଣ ହିଟ୍‌ଲରଙ୍କ ପରି ନିର୍ମମ ?'

ମୁଁ କହିଲି, 'ନିକୃଷ୍ଟ ପକ୍ଷେ ତାଙ୍କରି ପରି ।'

ଟିକିଏ ରହିଯାଇ ସେ ମୋ ଆଡ଼କୁ ଚାହିଁ ପୁଣି ପଚାରିଲେ, 'ଆମ ବଡ଼ଲାଟଙ୍କ ସଙ୍ଗେ ଦେଖା କଲଣି ?'

ମୁଁ ହଁ କଲି, କିନ୍ତୁ ଏ ବିଷୟରେ ସେ ସେତେବେଳେ ଆଉ କିଛି ପଚାରିଲେ ନାହିଁ ।

ଟିକକ ପରେ କହିଲେ, 'ଯେତେ ଇଚ୍ଛା ସେତେ ପାଣି ପିଅ । ଆମେ ପିଇବା ପାଣିକୁ ଗରମ କରି ରଖିବାରେ ଖୁବ୍ ସାବଧାନ ଥାଉ । ଏଥର ଆମ୍ବ ଖାଅ ।'

ମୁଁ ଆମ୍ବର ଚୋପା ଛଡ଼ାଇବାକୁ ଲାଗିଲି । କେତେଜଣ, ଗାନ୍ଧୀ ବି, ହସିଦେଲେ । ଗାନ୍ଧୀ ମୋତେ ବୁଝାଇ ଦେଲେ ଯେ ଆମ୍ବକୁ ଆଗ ହାତରେ ଧରି ଟିକିଏ ଚପାଚପି କରିଦେଲେ ତାହା ନରମା ହୋଇଯାଏ । ତା'ପରେ ଭୁଣ୍ଡି ଛିଣ୍ଡାଇ ରସ ଶୋଷାଡ଼ି ଖାନ୍ତି । ଶେଷରେ କହିଲେ, 'ତୁମେ ଯେମିତି ଚୋପା ଛଡ଼ଉଥିଲ ସେ ଠିକ୍, ଆମ୍ବ ଭଲ ଅଛି କି ନାହିଁ ଜଣା ପଡ଼ିବ ।'

ଦିପହର ଖିଆ ହେଲା ଏଗାରଟା ବେଳେ; ରାତିଖିଆ ଠିକ୍ ସୂର୍ଯ୍ୟାସ୍ତ ପୂର୍ବରୁ । ତହିଁ ଆରଦିନ ମୋର ସକାଳ ଜଳଖିଆ ମୋ ରହିବା ଘରକୁ ଆସିଲା । ମୁଁ ଥାଏ ମାଟି କାନ୍ଥ, ବାଉଁଶଛାତ, ଅତିଥିକୁଟୀରରେ । ଆଶ୍ରମ-ବାସିନୀ ଖୁର୍ଶେଦ୍ ନାଓରୋଜୀ (ସ୍ୱ ଦାଦାଭାଇ ନାଓରୋଜୀଙ୍କ ନାତୁଣୀ) ମୋର ପ୍ରାତରାଶ ଆଣିଦେଇ ଯାନ୍ତି—ରୁ, ବିସ୍କୁଟ୍ ଅଥବା ପାଉଁରୁଟି, ମହୁ, ମାଖନ ଓ ଆମ୍ବ ।

ଦ୍ୱିତୀୟ ଦିନ ଦି'ପହର ଖିଆ ବେଳେ ଗାନ୍ଧୀ, ପରିବାଝୋଳ ଖାଇବାକୁ ମୋତେ ଗୋଟିଏ ବଡ଼ ଚାମଚ ଦେଲେ । ସେ କହିଲେ ତୁମ ଆକାରକୁ ଚାହିଁ ଏ ଚାମଚଟି ଭଲ ହେବ । ସେ ତାଙ୍କ ପାଖେ ଥିବା ପାତ୍ରରୁ ଗୋଟିଏ ସିଝା ପିଆଜ ଯାଚିଲେ । ସିଝା ପରିବର୍ତ୍ତରେ ଗୋଟିଏ କଞ୍ଚା ପିଆଜ

ଦେବାକୁ ମୁଁ କହିଲି । ସ୍ୱାଦହୀନ ଖାଦ୍ୟ ସାମଗ୍ରୀ ଭିତରେ କଞ୍ଚା ପିଆଜଟି ସୁଖପ୍ରଦ ହେଲା ।

ତୃତୀୟ ଦିନ ଦିପହରି ଖିଆ ବେଳେ ଗାନ୍ଧୀ କହିଲେ, 'ତୁମ ପରିବା ଝୋଳ ଗିନାଟା ମୋ ଆଡ଼କୁ ବଢ଼ାଅ, ମୁଁ କେତେଖଣ୍ଡ ପରିବା ବାଛି କରି ଦେବି ।' ମୁଁ କହିଲି, ଦୁଇଦିନ ଭିତରେ କଖାରୁ ଓ ଶାଗ ସିଝା ମୁଁ ଚାରିଥର ଖାଇ ସାରିଲିଣି; ଆଉ ଖାଇବାକୁ ଇଚ୍ଛା ନାହିଁ ।

ସେ ଅର୍ଥ କଲେ, 'ତୁମକୁ ପରିବା ସୁଖ ଲାଗେ ନାହିଁ ।'

ମୁଁ କହିଲି, 'ଲାଗଲାଗ ତିନଦିନ ଏକାରକମ ପରିବା ତରକାରୀର ସ୍ୱାଦ ଚଟା ଲାଗୁଛି ।'

ସେ ଉତ୍ସାହର ସହିତ ବ୍ୟବସ୍ଥା ଦେଲେ, 'ଯଥେଷ୍ଟ ଲୁଣ ଓ ଲେମ୍ବୁରସ ଏଥିରେ ଯୋଗ କର ।'

ମୁଁ ଟୀକା କଲି, 'ଲୁଣ ଲେମ୍ବୁ ଦେଇ ପରିବାର ସ୍ୱାଦ ମାରି ଦେବାକୁ ଆପଣ କହୁଛନ୍ତି ।'

ସେ ହସି ପକାଇ କହିଲେ, 'ନା, ପରିବାର ସ୍ୱାଦ ବଢ଼ାଇବାକୁ ।'

ମୁଁ କହିଲି, 'ଆପଣ ଏଡ଼େ ଅହିଂସାବାଦୀ ଯେ ସ୍ୱାଦକୁ ବି ମାରି-ଦେବାକୁ ଆପଣ ଚାହାନ୍ତି ନାହିଁ ।'

ସେ ଜବାବ୍ ଦେଲେ, 'ଲୋକେ ଯଦି ଏତିକିମାତ୍ର ମାରିବାକୁ ଚାହାନ୍ତେ ତେବେ ମୋର ଆପତ୍ତିର କାରଣ ରହନ୍ତା ନାହିଁ ।'

ମୁଁ ମୋ'ର ମୁହଁ ଓ ବେକରୁ ଝାଳପୋଛି କହିଲି, 'ମୁଁ ଆଉ ଥରେ ଭାରତ ଆସିଲାବେଳକୁ···।' ଗାନ୍ଧୀ ରୋଟି ଚୋବାଇବାରେ ଲାଗିଥାନ୍ତି । ମୁଁ ଭାବିଲି ସେ ମୋ କଥା ଶୁଣୁନାହାନ୍ତି, ତେଣୁ ମଝିରେ ବନ୍ଦ ହୋଇଗଲି ।

ଗାନ୍ଧୀ ପଚାରିଲେ, 'ହଁ, ଆଉଥରେ ଭାରତ ଆସିଲା ବେଳକୁ··?'

ମୁଁ କହିଲି, 'ସେବାଗ୍ରାମରେ ଆପଣ ଶୀତାତପ ନିୟନ୍ତ୍ରଣର ବ୍ୟବସ୍ଥା କରିଥିବେ, ନୋଚେତ୍ ଯାଇ ବଡ଼ଲାଟଙ୍କ କୋଠିରେ ରହିଥିବେ ।'

ଗାନ୍ଧୀ ସମ୍ମତି ଜଣାଇଲେ, 'ବହୁତ ଆଚ୍ଛା, ସେଇଆ କରିବା ।'

ଥଟ୍ଟା କୌତୁକକୁ ସେ ପ୍ରଶ୍ରୟ ଦେଉଥିଲେ । ଦିନେ ଓପରଓଳି ମୁଁ ତାଙ୍କ ସଙ୍ଗେ ଦୈନନ୍ଦିନ ସାକ୍ଷାତ୍କାର କରିବାକୁ ତାଙ୍କ କୁଟୀରକୁ ଆସିଲା ବେଳକୁ ସେ ନ ଥାନ୍ତି । କିଛି ସମୟପରେ ଆସି ସେ ଖଟିଆ ଉପରେ

ଲମ୍ବା ହୋଇ ପଡ଼ିଯାଇ କହିଲେ, 'ଆଜି ତୁମ ମାଡ଼ି ମୁଁ ଶୋଇକରି ଖାଇବି ।' ପ୍ରଶ୍ନ ପଚାରିବାକୁ ସ୍ୱେ ହେଲି ନିମନ୍ତ୍ରଣ । ଜଣେ ମୁସଲମାନ ସ୍ତ୍ରୀଲୋକ ଆସି ତାଙ୍କ ପେଟରେ ମାଟି ପଟି ଦେଲେ । ଗାନ୍ଧୀ କହିଲେ, 'ଏହା ଭବିଷ୍ୟତ୍ ସଙ୍ଗେ ମୋର ଯୋଗସୂତ୍ର ସ୍ଥାପନ କଲା ।' ମୁଁ କିଛି କହିଲି ନାହିଁ ।

ସେ କହିଲେ, 'କଥାଟା ଧରି ପାରିଲ ନାହିଁ ବୋଧହୁଏ ।'

ମୁଁ କହିଲି, 'ଧରିଲି ଯେ, ମୁଁ ମନେ କରୁଛି ଆପଣ ଅଦ୍ୟାପି ଖୁବ୍ ଅଳ୍ପବୟସ୍କ ଅଛନ୍ତି । ଆଜିଠାରୁ ମାଟିରେ ମିଶିବା କଥା ବିଚାରିବାର କାରଣ ନାହିଁ ।'

ସେ କହିଲେ, 'କାରଣ ନାହିଁ କାହିଁକି ? ଏହା ତ ଅବଶ୍ୟଂଭାବୀ । ତୁମେ, ମୁଁ ଓ ସମସ୍ତେ କାଲି ହେଉ ବା ଶହେ ବର୍ଷ ପରେ ହେଉ, ଏହି ପରିଣାମ ତ ନିଶ୍ଚୟ ପ୍ରାପ୍ତ ହେବା ।'

ଆଉ ଥରେ ସେ ଲଣ୍ଡନରେ ଲର୍ଡ଼ ସାଙ୍କିଙ୍କୁ କହିଥିବା ଗୋଟିଏ କଥା ମୋତେ ଶୁଣାଇଥିଲେ । ସେ ତାଙ୍କୁ କହିଥିଲେ, 'ଆପଣ କ'ଣ ବିଚାରୁଛନ୍ତି, ମୁଁ ଯଦି ମୋର ସ୍ୱାସ୍ଥ୍ୟ ବିଷୟରେ ବିଶେଷ ଯତ୍ନ ନ ନେଉଥାନ୍ତି, ତବେ ମୁଁ ମୋର ଏ ବାର୍ଦ୍ଧକ୍ୟରେ ଏତେ ସମର୍ଥ ଥାନ୍ତି ? ଦେହ ବିଷୟରେ ଯତ୍ନ ନେବା ମୋର ଦୋଷ ଭିତରୁ ଗୋଟିଏ ।'

ମୁଁ ଯୂା ଉପରେ ଟିପ୍ପଣୀ କଲି, 'ମୋର ବିଶ୍ୱାସ ଆପଣ ଦୋଷଶୂନ୍ୟ ।'

ସେ ହସି ପକାଇଲେ ଓ ସେଠାରେ ସମବେତ ଆଠ କି ଦଶଜଣ ଯାକ ଆଶ୍ରମବାସୀ ବି ହସି ଦେଲେ । ଆମର କଥାବାର୍ତ୍ତା ବେଳେ ପ୍ରାୟଶଃ ଏମାନେ ଉପସ୍ଥିତ ଥାନ୍ତି । (ଏମାନେ ଉପସ୍ଥିତ ରହିବାରେ ମୋର ଆପତ୍ତି ଅଛି କି ବୋଲି ସେ ପ୍ରଥମ ଦିନ ପଚାରିଥିଲେ । ମୋର କୌଣସି ଆପତ୍ତି ନାହିଁ ବୋଲି ମୁଁ କହିଥିଲି । )ଗାନ୍ଧୀ କହିଲେ, 'ତୁମର ଧାରଣା ଭୁଲ । ମୋର ବହୁତ ଦୋଷ । ତୁମେ ବିଦାୟ ନେବା ପୂର୍ବରୁ ମୋର ଶହେଖଣ୍ଡେ ଦୋଷ ଧରି ପାରିଥିବ । ଯଦି ନ ପାରିବ ମୁଁ ସେ ସବୁ ଧରିବାରେ ତୁମକୁ ସାହାଯ୍ୟ କରିବି ।'

ପ୍ରତ୍ୟେକ ଦିନ ଆମର ପ୍ରଶ୍ନୋତ୍ତର ଆରମ୍ଭ ହେବା ପୂର୍ବରୁ ସେ, ବସିବା ସକାଶ ତାଙ୍କ କୁଟୀରର ସବୁଠାରୁ ଥଣ୍ଡା ଜାଗାଟି ମୋ

ପାଇଁ ବାଛନ୍ତି । ତା'ପରେ ହସି ହସି କହନ୍ତି, 'ଏଥର ମାଉଡ଼ ମାରନ୍ଥାଙ୍କୁ ନିମନ୍ତ୍ରଣ କରୁଛି, ଚାଲଅ ।' କଥାବାର୍ତ୍ତା ପାଇଁ ନିର୍ଦ୍ଦିଷ୍ଟ ଘଣ୍ଟାଟି ସରି ଆସିଲା ବେଳକୁ ସେ ତାଙ୍କ 'ପାଞ୍ଚଟଙ୍କିଆ' ଓ୍ୱାଚ୍‌କୁ ଚାହିଁ କହନ୍ତି, 'ତୁମ ଘଣ୍ଟାକ ସରିଗଲା' । ସମୟର ଗତି ବିଷୟରେ ସେ ଏଭଳି ସତର୍କ ଥିଲେ ଯେ, ଘଣ୍ଟାକ ସରିଲା ବୋଲି ସେ ଘଣ୍ଟାକୁ ଚାହିଁଲା ବେଳକୁ ଠିକ୍ ଘଣ୍ଟାକ ସରିଥାଏ । ଗାନ୍ଧୀ ଥିଲେ ଘୋର ସମୟାନୁବର୍ତ୍ତୀ ।

ଦିନେ କଥାବାର୍ତ୍ତା ପରେ ମୁଁ ତାଙ୍କ କୁଟୀରରୁ ବିଦାୟ ନେଲା-ବେଳେ ସେ କହିଲେ, 'ଯାଅ, ପାଣି କୁଣ୍ଡରେ ବସ ।' 'ଯାଅ, ଦଉଡି ଉପରେ ବସ' ବୋଲି ଆମେରିକାରେ ଯେଉଁ ଅର୍ଥରେ କହନ୍ତି, ଭାରତୀୟ-ମାନେ ସେଇ ଅର୍ଥରେ ପାଣି କୁଣ୍ଡରେ ବସିବା କଥା କହନ୍ତି କି ବୋଲି ମୁଁ ମନେ ମନେ ବିଚାରିଲି । କିନ୍ତୁ ଗାନ୍ଧୀଙ୍କ କୁଟୀରଠାରୁ ଅତିଥି କୁଟୀରର ଯେଉଁ ଶହେ ଗଜ ବାଟ, ତାହା ଖରାରେ ସିଝି ଯାଇଥାଏ ; ମୁଁ ସେତକ ପାର ହୋଇ ମୋ ଘରେ ପଶିଲା ବେଳକୁ ମୋ ମୁଣ୍ଡର ଦିହ୍ଵ ଏକାବେଳକେ ଶୁଖିଗଲା ପରି ମୋତେ ଲାଗିଲା, ଓ ମୁଁ ମନେକଲି ପାଣି ଟବ୍‌ରେ ଯାଇ ବସିବା ବାସ୍ତବିକ ଗୋଟିଏ ଭଲ ପ୍ରସ୍ତାବ । ବସ୍ତୁତଃ ଏହା ଉପରେ ମୁଁ ଟିକିଏ ସଂଶୋଧନ ବି କରିଦେଲି । ଅତିଥିଭବନରେ ଗୋଟିଏ ବୋଲି ଘର— ସେଇ ଶୋଇବା ଘର ଓ ରହିବା ଘର । ତା'କୁ ଲାଗି ଗୋଟିଏ ଛୋଟ ବଖୁରିଥାଏ, ତାହା ପାଣି-ଘର । ସେ ଘରଟିର ସିମେଣ୍ଟ ଚଟାଣ । ବହୁ ପ୍ରକାରର ହାଣ୍ଡି, ମାଠିଆ, ଟବ୍ ଓ ଲୋଟାରେ ପାଣି ଭର୍ତ୍ତି ହୋଇଥାଏ । ପ୍ରତିଦିନ ଗୋଟିଏ ବୁଢ଼ୀ ଏଥିରେ ପାଣି ଭର୍ତ୍ତି କରି ଦେଇଯାଏ । ପ୍ରତିଦିନ ମୁଁ ଛ' ସାତ ଥର ଏହି ଗାଧୁଆ ଘରକୁ ଯାଏ ଓ ମୋର ପିନ୍ଧିଥିବା ପାଇଜାମା ଓ କୁରୁତା ଦି'ଖଣ୍ଡି ଓ ଚଟି ହଳକ କାଢ଼ି ଆଡ଼େଇ କରି ଥୋଇ, ଠିଆ ଠିଆ ଗୋଟିଏ ମଗ୍‌ରେ ପାଣି ଆଣି ଦେହରେ ଅଜାଡ଼ି ହୁଏ ।

ସବୁଠାରୁ ବେଶି କଷ୍ଟକର ହୁଏ ଏ ଗରମରେ ଟାଇପ୍ କରିବା । ଗାନ୍ଧୀଙ୍କ ସଙ୍ଗେ ଓ ଆଶ୍ରମବାସୀଙ୍କ ସଙ୍ଗେ ମୁଁ ଯାହା କଥାବାର୍ତ୍ତା ହୁଏ, ତାହାର ଏକ ପୂର୍ଣ୍ଣ ବିବରଣୀ ମୁଁ ପ୍ରତିଦିନ ଟାଇପ୍ କରି ରଖୁଥାଏ । ଏ ହପ୍ତାରେ ଦୁଇ ଦିନ ଜବାହାରଲାଲ ବି ଗାନ୍ଧୀଙ୍କ ପାଖକୁ ଆସିଥିଲେ । ତାଙ୍କ ସଙ୍ଗେ ହୋଇଥିବା କଥାବାର୍ତ୍ତାର ପୂର୍ଣ୍ଣ ବିବରଣୀ ମଧ୍ୟ ଟାଇପ୍ କରି

ଶିଖିଥିଲି । ଟାଇପ୍ କରିବାର ପାଞ୍ଚ ମିନଟ୍ ଭିତରେ ମୁଁ ହାଲିଆ ହୋଇ-ପଡ଼େ ; ଶରୀରତମାମ ଝାଳନାଳ ହୋଇପଡ଼େ । ପାଣି ଟବ୍‌ରେ ବସ୍ ବୋଲି ଗାନ୍ଧୀ ଯେଉଁ ପରାମର୍ଶ ଦେଲେ ସେଥିରେ ଉତ୍ସାହିତ ହୋଇ ମୁଁ ପାଣି ଭର୍ତ୍ତି ହୋଇଥିବା ଗାଧୁଆ କୁଣ୍ଡ ମଝିରେ ଗୋଟିଏ ଖ୍ରୋଟ କିରାସିନ ପଟା ବାକ୍ସ ରଖି ତା'ଉପରେ ଗୋଟିଏ ମୋଟା ତଉଲିଆ ଚଉତି କରି ରଖିଲି । ପାଣି ଟବ୍ ପାଖରେ ଗୋଟିଏ ବଡ଼ କିରାସିନ ପଟା ଡାବଲ ରଖି, ତା'ର ଉପରେ ମୋର ଖ୍ରୋଟ ଟାଇପ୍ ମେସିନ୍‌ଟି ରଖିଲି । ପାଣି ଟବ୍‌ରେ ଥିବା ଖ୍ରୋଟ ବାକ୍ସ ଉପରେ ବସି ମୁଁ ଟାଇପ୍ କରିବାକୁ ଆରମ୍ଭ କଲି । କେତେ ମିନଟ ପରେ ଦେହ ଝାଳେଇଲେ ଗୋଟାଏ ମଗ୍‌ରେ ଟବ୍‌ରୁ ପାଣି ଆଣି ମୋର ବେକ, ପିଠି ଓ ଗୋଡ଼ରେ ଅଜାଡ଼ୁ-ଥାଏ । ଏହି ଉପାୟରେ ମୁଁ ପୂରା ଘଣ୍ଟେ ଟାଇପ୍ କରିବାରେ ବି ହାଲିଆ ହୋଇ ନ ଥିଲି । ମୋର ଏ ନୂତନ ପଦ୍ଧତି ଦେଖି ଆଶ୍ରମରେ ଥଟ୍ଟା ତାମସା ଲାଗିଗଲା । ଏ ଆଶ୍ରମବାସୀମାନେ ଆମ୍ବିଳମୁହାଁ ଲୋକ ନ ଥିଲେ । ସମସ୍ତେ ଯେପରି ହସଖୁସିରେ ରହିବେ ସେ ବିଷୟରେ ଗାନ୍ଧୀ ନିଜେ ଦୃଷ୍ଟି ଦେଉଥାନ୍ତି । ଖ୍ରୋଟ ପିଲାଙ୍କୁ ଆଖିଠାରି, ମୁଖ ବିକୃତି କରି ହସାନ୍ତି ; ସରସ କଥାବାର୍ତ୍ତାରେ ବୟସ୍କ ଆଶ୍ରମବାସୀଙ୍କୁ ହସାନ୍ତି, ଏବଂ ତାଙ୍କ ସଙ୍ଗେ ଦେଖା କରିବାକୁ ବାହାରୁ ଯେଉଁମାନେ ଆସନ୍ତି ତାଙ୍କ ସଙ୍ଗେ ହସଖୁସି, ଥଟ୍ଟା ପରିହାସ ଲଗାନ୍ତି ।'

ମୋ ସଙ୍ଗେ ତାଙ୍କର ଗୋଟିଏ ଫଟୋ ଉଠାଇବାକୁ ମୁଁ ଅନୁରୋଧ କଲି । ସେ କହିଲେ, 'ଦୈବାତ୍ ଯଦି ଜଣେ ଫଟୋଗ୍ରାଫର୍ ଆସି ପହଞ୍ଚିଯାନ୍ତି ତେବେ ତୁମ ସଙ୍ଗେ ମୁଁ ଫଟୋରେ ଏକାଠି ବସିବାରେ ମୋର ଆପତ୍ତି ନାହିଁ ।'

ମୁଁ କହିଲି, 'ଏହା କହି ଆପଣ ମୋତେ ସବୁଠାରୁ ବହୁମୂଲ୍ୟ ସମ୍ମାନ ଦେଇଛନ୍ତି ।'

ସେ ପଚାରିଲେ, 'ସମ୍ମାନ ପାଇବାକୁ ତୁମର ଆକାଂକ୍ଷା ହୁଏ ?'

ମୁଁ କହିଲି, 'ଆମ ସମସ୍ତଙ୍କର କ'ଣ ଏ ଆକାଂକ୍ଷା ନ ଥାଏ ?'

ଗାନ୍ଧୀ କହିଲେ, 'ସେ କଥା ସତ, କିନ୍ତୁ ଅନେକ ସମୟରେ ସମ୍ମାନର ଯୋଗ୍ୟ ହେବା ସକାଶ ମଣିଷକୁ ବହୁତ ସହିବାକୁ ପଡ଼େ ।'

ମୁଁ ତାଙ୍କ ସଙ୍ଗେ ରହିବାର ସପ୍ତାହକ ଭିତରେ, ଅପ୍‌ଟନ୍

ସିନ୍‌କ୍ଲେଆର୍‌, ମିଚିଗାନ ଅନ୍ତର୍ଗତ ବ୍ୟାଟଲ୍‌ କ୍ରୀକ୍‌ର ଖାଦ୍ୟ-ବିଶେଷଜ୍ଞ ଡକ୍ଟର୍‌ କେଲଗ୍‌ ଓ ମିସେସ୍‌ ଏଲେନର୍‌ ରୁଜ୍‌ଭେଲ୍‌ଟ୍‌ଙ୍କୁ ମୁଁ ଜାଣେ କି ବୋଲି ସେ ପଚାରିଥିଲେ । କିନ୍ତୁ ବାହାରର ଖବର ଜାଣିବାକୁ ବିଶେଷ ଆଗ୍ରହ ତାଙ୍କର ଥିବାର ମୁଁ ଲକ୍ଷ୍ୟ କରି ନାହିଁ । ଯେଉଁ ବିଷୟମାନଙ୍କ ଉପରେ ସେ ଭଲ କରି କହିପାରିବେ ଏବଂ ତାଙ୍କୁ ଗୁଡ଼ାଏ ପ୍ରଶ୍ନ ପଚାରିବାକୁ ନ ପଡ଼ିବ, ସେହିପରି ବିଷୟ ଉପରେ ତାଙ୍କର ଅଧିକ ଧ୍ୟାନ ଥିଲା ।

ମୁଁ କହିଲି, ମୋତେ ଲୋକେ କହିଛନ୍ତି ଯେ, କଂଗ୍ରେସ ବଡ଼ ବଡ଼ ଶିଳ୍ପପତିମାନଙ୍କ ହାତମୁଠାରେ ଅଛି ଏବଂ ବମ୍ବେର ମିଲମାଲିକ-ମାନେ ଆପଣଙ୍କ ଖର୍ଚ୍ଚ ପାଇଁ ଟଙ୍କା ଦେଉଛନ୍ତି । ମୁଁ ପଚାରିଲି, 'ଲୋକଙ୍କର ଏ କଥାରେ କେତେ ଦୂର ସତ୍ୟ ଅଛି ?'

ଗାନ୍ଧୀ ଖୋଲିଖୋଲି କହିଲେ, 'ଦୁର୍ଭାଗ୍ୟର କଥା, ଏ ଅଭିଯୋଗମାନ ସତ୍ୟ । ନିଜର କାର୍ଯ୍ୟ ଚଳାଇବାକୁ କଂଗ୍ରେସ ହାତରେ ଯଥେଷ୍ଟ ପାଣ୍ଠି ନାହିଁ । ପ୍ରଥମେ ଆମେ ବିଚାରିଥିଲୁଁ, ପ୍ରତ୍ୟେକ କଂଗ୍ରେସ ମେମ୍ବରଠାରୁ ବାର୍ଷିକ ଚାରିଅଣା ଚାନ୍ଦା ନେବୁଁ ଓ ସେଇ ଟଙ୍କାରେ ଚଳିବୁଁ । କାର୍ଯ୍ୟରେ ତାହା ହୋଇ ପାରିଲା ନାହିଁ ।'

ମୁଁ ପୁଣି ପଚାରିଲି, 'କଂଗ୍ରେସର ବର୍ଷକୁ ଯାହା ଖର୍ଚ୍ଚ ହେଉଛି ସେଥିରୁ କେତେ ଭାଗ ଧନିକଙ୍କଠାରୁ ଆସୁଛି ?'

ସେ ସ୍ପଷ୍ଟ ମାନିଗଲେ, 'ପ୍ରାୟ ସବୁତକ ଖର୍ଚ୍ଚ ସେଇମାନଙ୍କଠାରୁ ଆସୁଛି । ଆମ ଏହି ଆଶ୍ରମ କଥା ଧରିଯାଉ । ଆମେ ଏଠାରେ ଯେପରି ଚଳିବାର ଦେଖୁଛ, ତହିଁରୁ ଆହୁରି କସ୍‌କାସ୍‌ରେ ଚଳି ହୁଅନ୍ତା । ସେପରି କଲେ, ପଇସା ବି ଆହୁରି କମ୍‌ ଖର୍ଚ୍ଚ ହୁଅନ୍ତା । କିନ୍ତୁ ଆମେ ତାହା କରୁନାହୁଁ । ଏଠାରେ ସବୁତକ ଖର୍ଚ୍ଚ ଆମର ଧନିକ ବନ୍ଧୁଙ୍କଠାରୁ ଆସୁଛି ।

(ଗୋଟାଏ ପ୍ରସିଦ୍ଧ ଶ୍ଳେଷୋକ୍ତି ଅଛି, ଏହା ଶ୍ରୀମତୀ ସରୋଜିନୀ ନାଇଡ଼ୁ କହିଥିଲେ ବୋଲି ଶୁଣିଲି । ଗାନ୍ଧୀ ଏହା ଶୁଣି ଖୁବ୍‌ ହସିଥିଲେ । ତାହା ହେଉଛି, 'ଗାନ୍ଧୀଙ୍କୁ ଦରିଦ୍ର ଭାବେ ରଖିବା ସକାଶେ ବହୁତଗୁଡ଼ାଏ ଟଙ୍କା ଦରକାର ହେଉଛି ।')

ମୁଁ ପଚାରିଲି, 'କଂଗ୍ରେସ ଯେ ଧନିକ ଗୋଷ୍ଠୀଙ୍କଠାରୁ ଟଙ୍କା ନେଇ ଚଳୁଛି, ଏହାଦ୍ୱାରା କଂଗ୍ରେସର ରାଜନୀତି ପ୍ରଭାବିତ ହେଉନାହିଁ କି ? ଏହା-

ଦ୍ଵାରା ଧନିକ ଶ୍ରେଣୀଙ୍କ ପ୍ରତି ନୈତିକ ଆନୁଗତ୍ୟ ହେବାର କଥା ନୁହେ କି ?'

ଗାନ୍ଧୀ କହିଲେ, 'ଅବଶ୍ୟ ଏହାଦ୍ଵାରା ଭିତରେ ଭିତରେ ସେମାନଙ୍କଠାରେ ଋଣୀ ହେବାକୁ ପଡ଼ୁଛି । କିନ୍ତୁ ବସ୍ତୁତଃ ଦେଖିବାକୁ ଗଲେ ଆମ୍ଭେମାନେ ଧନିକମାନଙ୍କ ମନୋଭାବଦ୍ଵାରା ଆଦୌ ପ୍ରଭାବିତ ହେଉନାହୁଁ । ଆମେ ଯେ ପୂର୍ଣ୍ଣ ସ୍ଵାଧୀନତା ଦାବି କରୁଛୁଁ, ସେଥିପାଇଁ ତ ସେମାନେ ବେଳେ ବେଳେ ବିବ୍ରତ ହେଉଛନ୍ତି···। ସେ ଯାହାହେଉ, ଧନିକଙ୍କ ସାହାଯ୍ୟ ଉପରେ କଂଗ୍ରେସ ନିର୍ଭର କରିବା ଦୁର୍ଭାଗ୍ୟର ବିଷୟ । ମୁଁ 'ଦୁର୍ଭାଗ୍ୟ' ଶବ୍ଦ ବ୍ୟବହାର କରୁଛି । ଧନିକଙ୍କଠାରୁ ସାହାଯ୍ୟ ଆଣିବା ଫଳରେ ଆମର କର୍ମପଦ୍ଧତି କଳୁଷିତ ହେଉନାହିଁ ।'

ମୁଁ ପଚାରିଲି, 'ସାମାଜିକ ଓ ଆର୍ଥନୀତିକ ସମସ୍ୟାମାନଙ୍କୁ ପୂରାପୂରି ଅବଜ୍ଞା କରି କଂଗ୍ରେସ ଯେ କେବଳ ଜାତୀୟବାଦ ଓ ରାଜନୀତିକ ସ୍ଵାଧୀନତା ଉପରେ ଜୋର ଦେଉଛି, ତାହା ଏହି ଧନିକମାନଙ୍କ ସାହାଯ୍ୟର ଅନ୍ୟତମ ଫଳ ନୁହେ କି ?'

ଗାନ୍ଧୀ କହିଲେ, 'ନା । ବେଳକୁ ବେଳ କଂଗ୍ରେସ ସମାଜ ସଂସ୍କାର ଓ ଆର୍ଥନୀତିକ ଯୋଜନା ପ୍ରଣୟନରେ ଆଗକୁ ଆଗକୁ ବଢ଼ୁଛି । ଏହା ମୁଖ୍ୟତଃ ପଣ୍ଡିତ ନେହେରୁଙ୍କ ପ୍ରଚେଷ୍ଟାରେ ହେଉଛି । ଏ ବିଷୟରେ କଂଗ୍ରେସର ପ୍ରସ୍ତାବ ଓ ଯୋଜନାମାନଙ୍କର ପ୍ରତିଲିପି ମୁଁ ତୁମ ପାଇଁ ସଂଗ୍ରହ କରାଇଦେବି ।'

ଗାନ୍ଧୀଙ୍କ ଆଶ୍ରମର ଖର୍ଚ୍ଚ, ହରିଜନ ଓ କୃଷକମାନଙ୍କର ଉନ୍ନତି ପକାଶ ସେ ଗଢ଼ିଥିବା ଅନୁଷ୍ଠାନମାନଙ୍କର ଖର୍ଚ୍ଚ, ମୌଳିକ ଶିକ୍ଷା ଓ ଜାତୀୟ ଭାଷାର ପ୍ରଚାର ଓ ପ୍ରସାର ପାଇଁ ହେଉଥିବା ଖର୍ଚ୍ଚର ଅଧିକାଂଶ ଆସୁଥିଲା ଘନଶ୍ୟାମ ଦାସ ବିରଳାଙ୍କଠାରୁ । ସେ ଜଣେ କୋଟିପତି ଲୁଗାକଳ-ମାଲିକ । ନଇଦିଲ୍ଲୀରେ ଥିବା ତାଙ୍କ ଘରେ ମହାତ୍ମାଜୀ ବେଳେ ବେଳେ ରହୁଥିଲେ । ୧୯୨୦ ଖ୍ରୀଷ୍ଟାବ୍ଦରେ କଲିକତାଠାରେ ଗାନ୍ଧୀଙ୍କ ସଙ୍ଗେ ବିରଳାଙ୍କର ପ୍ରଥମେ ଭେଟ ହେଲା । ସେତେବେଳେ ବିରଳା ଜଣେ ତରୁଣ ଦଲାଲ । ଗାନ୍ଧୀ ହାବଡ଼ା ରେଲ ଷ୍ଟେସନରେ ଓହ୍ଲାଇବା ପରେ, ସହରକୁ ଆସିବାକୁ ତାଙ୍କ ପାଇଁ ଯେଉଁ ଘୋଡ଼ାଗାଡ଼ି ଠିକ୍ ହୋଇଥିଲା, ସେଥିରୁ ଘୋଡ଼ାଙ୍କୁ ଫିଟାଇ ଦେଇ ବିରଳା ଓ ତାଙ୍କର କେତେକ ଯୁବକ ବନ୍ଧୁ ଘୋଡ଼ାଗାଡ଼ିକୁ ଭିଡ଼ି ଭିଡ଼ି କଲିକତାର ରାସ୍ତାରେ ନେଇଥିଲେ । ବିରଳା ହୋଇଗଲେ ଗାନ୍ଧୀଙ୍କର

ଭକ୍ତ । ମହାତ୍ମାଙ୍କର କେତେକ କର୍ମପଦ୍ଧତି ପ୍ରତି ବିରଳାଙ୍କର ସମର୍ଥନ ନ ଥିଲା କିନ୍ତୁ ଏହାଦ୍ୱାରା ଉଭୟଙ୍କର ସଂପର୍କରେ କୌଣସି ଆଞ୍ଚ ଆସିନାହିଁ । ବିରଳା କହନ୍ତି, ଗାନ୍ଧୀ ତାଙ୍କର 'ପିତା' । ଗାନ୍ଧୀଙ୍କ ଅରଟରେ ଯଦି ବିରଳାଙ୍କର ବିଶ୍ୱାସ ଥାନ୍ତା ତେବେ ସେ ତାଙ୍କ ଲୁଗାକଳମାନ ବନ୍ଦ କରି ଦେଇଥାନ୍ତେ । ସେ ସୂତାକଟାରେ ବିଶ୍ୱାସ କରୁ ନ ଥିଲେ । ସ୍ତ୍ରୀ-ବିୟୋଗ ହେବା ପରେ ବିରଳା ପୁନର୍ବାର ଗ୍ରହଣ ନ କରି 'ବ୍ରହ୍ମଚାରୀ' ହେଲେ । ବୋଧହୁଏ ଗାନ୍ଧୀ ଓ ବିରଳାଙ୍କ ମଧ୍ୟରେ ଘନିଷ୍ଠ ସଂପର୍କର ଏହା ଗୋଟିଏ କାରଣ । ଗାନ୍ଧୀ ସର୍ବପ୍ରଥମେ, ୧୯୩୩ ଖ୍ରୀଷ୍ଟାବ୍ଦରେ ବିରଳାଙ୍କ ଘରକୁ ଯାଇ ସେଠାରେ ଦଶ ଦିନ ରହିଥିଲେ । ତା'ପରେ ବହୁବାର ସେ ଅଳ୍ପ ବା ବେଶି ଦିନ ପାଇଁ ବିରଳା ଭବନରେ ରହିଲେ । କିନ୍ତୁ ଅଧିକାଂଶ ସମୟରେ, କିଙ୍ଗସ୍ ଓ୍ୱେ ନିକଟବର୍ତ୍ତୀ ଦିଲ୍ଲୀ ହରିଜନ ବସ୍ତିରେ ଗାନ୍ଧୀ ରହିବାକୁ ପସନ୍ଦ କରୁଥିଲେ । ଗାନ୍ଧୀଙ୍କର ସେଠାରେ ରହିବା ଖର୍ଚ୍ଚ ଦୈନିକ ପଚିଶ ଟଙ୍କା ହେଉଥିଲା ଓ ତାହା ବିରଳା ବହନ କରୁଥିଲେ । ସେବାଗ୍ରାମ ଆଶ୍ରମ, ଏହାର ଚିକିତ୍ସାଳୟ ଓ ଗୋଶାଳାର ପରିଚାଳନା ପାଇଁ ବିରଳାଙ୍କୁ ବାର୍ଷିକ ପଚିଶ ହଜାର ଟଙ୍କା ବହନ କରିବାକୁ ପଡ଼ୁଥିଲା । ୧୯୩୫ ଖ୍ରୀଷ୍ଟାବ୍ଦ ପରେ ସେ ଆଶ୍ରମର ଏ ଦାୟିତ୍ୱ ନିଜେ ବହନ କରିଥିଲେ । ଗାନ୍ଧୀଙ୍କୁ କେବେ କେତେ ଦେଇଛନ୍ତି ତାହାର ହିସାବ ବିରଳା ରଖି ନାହାନ୍ତି । କିନ୍ତୁ ଗାନ୍ଧୀ ନିଜ ହାତରେ ପ୍ରତ୍ୟେକ, ଛୋଟ କାଟ ଖର୍ଚ୍ଚର ବି, ହିସାବ ରଖୁଥିଲେ ଏବଂ ଥରେ ଏ ଖର୍ଚ୍ଚର ଫର୍ଦ୍ଦ ବିରଳାଙ୍କ ହାତରେ ଦେଇଥିଲେ । ବିରଳା ଖର୍ଚ୍ଚ ଫର୍ଦ୍ଦକୁ ନ ଚାହିଁ ଗାନ୍ଧୀଙ୍କ ଆଗରେ ଚିରି ଦେଲେ । ଯୁ ବାଦ୍, ଗାନ୍ଧୀଙ୍କ ସମର୍ଥନରେ ସ୍ଥାପିତ ବହୁ ଲୋକମଙ୍ଗଳ ଅନୁଷ୍ଠାନକୁ ବିରଳା ସାହାଯ୍ୟ କରିଥିଲେ । ଗାନ୍ଧୀଙ୍କ କାର୍ଯ୍ୟରେ ବିରଳା କୋଟି କୋଟି ଟଙ୍କା ଖଟାଇଛନ୍ତି । ଗାନ୍ଧୀଙ୍କ ସଂଗେ ସଂପର୍କ ଥିବା ଯୋଗୁଁ ବିରଳା ସମାଜରେ ମର୍ଯ୍ୟାଦା ଲାଭ କରିଥିଲେ, ଓ ଆତ୍ମସନ୍ତୋଷ ପାଇଥିଲେ ; ବ୍ୟବସାୟଗତ ସୁବିଧା ମଧ୍ୟ ପାଇଥିବା ସଂଭବ ; କାରଣ ଗାନ୍ଧୀଙ୍କଠାରୁ ବହୁ ରାଜନୀତିକ ଗୁପ୍ତ ତଥ୍ୟ ସେ ପାଉଥିଲେ । କିନ୍ତୁ ଏ ସବୁ ସତ୍ତ୍ୱେ, ପ୍ରୟୋଜନ ହୋଇଥିଲେ, ସେ ବିରଳାଙ୍କ ଲୁଗାକଳ ଶ୍ରମିକମାନଙ୍କ ଧର୍ମଘଟରେ ନେତୃତ୍ୱ ନେଇଥାନ୍ତେ, ଯେପରି ତାଙ୍କର ବନ୍ଧୁ ଓ ଆର୍ଥିକ ସାହାଯ୍ୟ-ଦାତା ଆହମଦାବାଦର ଅମ୍ବାଲାଲ ସାରାଭାଇଙ୍କ ଶ୍ରମିକ-ଧର୍ମଘଟରେ ସେ ନେତୃତ୍ୱ ନେଇଥିଲେ ।

ପୁଞ୍ଜିବାଦୀଙ୍କ ଶୋଷଣର ବିରୋଧ କରିବା ବେଳେ ବି, ପୁଞ୍ଜିବାଦୀଙ୍କ ପ୍ରତି ତାଙ୍କର ସଦ୍‌ଭାବ ଥିଲା । ସେହିପରି ବ୍ରିଟିଶ ସାମ୍ରାଜ୍ୟର ବିରୋଧ କଲାବେଳେ ବି ତାଙ୍କର ଇଂରେଜମାନଙ୍କ ପ୍ରତି ସଦିଚ୍ଛା ଓ ସଦ୍‌ଭାବ ଥିଲା । ଲଣ୍ଡନରେ ଯେ ସେ ଚର୍ଚିଲଙ୍କ ଆତିଥ୍ୟ ସ୍ୱୀକାର କରିଥାନ୍ତେ ଓ ତାଙ୍କ ଘରେ ରହିବାକୁ ରାଜି ହୋଇଥାନ୍ତେ ଏଥିରେ ସନ୍ଦେହ ନାହିଁ । ତାଙ୍କ ନିଜର ଆତ୍ମଶୁଦ୍ଧି ଓ ଜାତୀୟ ଆକାଂକ୍ଷା ବିଷୟରେ ତାଙ୍କର ଏଭଳି ପ୍ରଗାଢ଼ ପ୍ରତ୍ୟୟ ଥିଲା ଯେ, ତାଙ୍କୁ ଠକାଇ ଦେଇ କିଏ ଅକ୍ତିଆର କରି ପାରିବ ବୋଲି ସେ ମନରେ ବି ଭାବି ପାରୁ ନ ଥିଲେ । ଗାନ୍ଧୀଙ୍କ ଦୃଷ୍ଟିରେ କେହି ଅସ୍ପୃଶ୍ୟ ନ ଥିଲେ । ବିରଳା ହୁଅନ୍ତୁ ବା କମ୍ୟୁନିଷ୍ଟ ହୁଅନ୍ତୁ, ହରିଜନ ହୁଅନ୍ତୁ ବା ସାମ୍ରାଜ୍ୟ-ବାଦୀ ହୁଅନ୍ତୁ ସମସ୍ତଙ୍କ ପ୍ରତି ତାଙ୍କର ଥିଲା ସମାନ ଶ୍ରଦ୍ଧା । ଯେଉଁଠାରେ ସେ ମହତ୍ତ୍ୱର କ୍ଷୀଣ ଝୁଲ ସେ ଦେଖୁଥିଲେ, ସେଠାରେ ସେ ଝୁଲକୁ ତାଉ ଦେଇ ପ୍ରଜ୍ୱଳିତ କରିବାକୁ ଉଦ୍ୟମ କରୁଥିଲେ । ମନୁଷ୍ୟ-ସ୍ୱଭାବର ବିଭିନ୍ନତା ଓ ମନୁଷ୍ୟ-ପ୍ରବୃତ୍ତିର ବିଚିତ୍ରତାକୁ ସେ ସ୍ୱୀକାର କରି ସମସ୍ତଙ୍କ ପ୍ରତି ସହିଷ୍ଣୁ ଥିଲେ ।

୧୯୪୨ର ଜୁନ୍‌ମାସରେ ଯେଉଁ ସପ୍ତାହଟି ଗାନ୍ଧୀଙ୍କ ଆଶ୍ରମରେ କଟାଇଥିଲି, ତାହାର ଆରମ୍ଭରେ ସ୍ପଷ୍ଟ ଜଣାପଡ଼ିଲା ଯେ, ଗାନ୍ଧୀ ଗୋଟାଏ ଆଇନ୍ ଅମାନ୍ୟ ଆନ୍ଦୋଳନ ଆରମ୍ଭ କରିବାକୁ ଦୃଢ଼ ସଂକଳ୍ପ କରିଥାନ୍ତି । ଏ ଆନ୍ଦୋଳନର ଉଦ୍ଦେଶ୍ୟ ଭାରତ ଛାଡ଼ି ଯିବାକୁ ଇଂଲଣ୍ଡକୁ ବାଧ୍ୟ କରିବା । 'ଭାରତ ଛାଡ଼' ଏ ଆନ୍ଦୋଳନର ଦୁଆ ହେବ ବୋଲି ମଧ୍ୟ ଜଣା ପଡ଼ିଥିଲା ।

ଗାନ୍ଧୀ ବିଶ୍ୱାସ କରୁଥିଲେ ଯେ, ଭାରତକୁ ଛାଡ଼ି ଇଂଲଣ୍ଡ ନିଜର ଆତ୍ମଶୁଦ୍ଧି ନ କଲେ ଯୁଦ୍ଧରେ ଜୟ ହେବ ନାହିଁ କି ବିଶ୍ୱଶାନ୍ତି ଲାଭ କରି ହେବ ନାହିଁ ।

ହଠାତ୍ ଅପରାହ୍ଣରେ, ବ୍ରିଟିଶ୍ ସରକାର ବିରୁଦ୍ଧରେ ଆଇନ୍ ଅମାନ୍ୟ ଆନ୍ଦୋଳନ କରିବାକୁ କାହିଁକି ପ୍ରରୋଚିତ ହେଉଛନ୍ତି ତାହାର କାରଣ ମୋତେ ସବିସ୍ତାର କହିଲା ପରେ ମୁଁ ତାଙ୍କୁ କହିଲି, 'ମୁଁ ମନେ କରୁଛି, ବର୍ତ୍ତମାନ ପରିସ୍ଥିତିରେ ଏକଦମ୍ ଭାରତ ଛାଡ଼ି ଚାଲିଯିବା ବ୍ରିଟିଶଙ୍କ ପକ୍ଷରେ ସମ୍ଭବ ହେବ ନାହିଁ । ସେପରି କଲେ ସେମାନେ ଭାରତକୁ ଜାପାନ ହାତରେ ଭେଟି ସ୍ୱରୂପ ଦେଇ ଚାଲି ଯାଉଛନ୍ତି ବୋଲି ବୁଝିବାକୁ

ହେବ । ଭାରତ ଛାଡ଼ି ଚାଲିଯିବାକୁ ଇଂଲଣ୍ଡ ରାଜି ହେବ ନାହିଁ କି ଏପରି ଦାବିକୁ ଆମେରିକା ସମର୍ଥନ କରିବ ନାହିଁ । ଆପଣ ଯଦି ଦାବି କରି ବସନ୍ତି ଯେ, ବ୍ରିଟେନ୍ ଭାରତରୁ ବାହିନୀ ଉଠାଇ ଏକାବେଳକେ ରମାନା ହୋଇଯିବ, ତେବେ ଆପଣ ନ ହେବା କଥା ହେବାକୁ ଚାହୁଁଛନ୍ତି ; ଗଛର ଚାଲ ଛଡ଼ାଇ ଦେଇ ତାକୁ ବଞ୍ଚିବାକୁ କହିବା ପରି ଏକଥା । ବ୍ରିଟିଶ୍‌ମାନେ ତାଙ୍କ ସୈନ୍ୟ ଭାରତରୁ ଉଠାଇ ନିଅନ୍ତୁ ବୋଲି ଆପଣ ବୋଧହୁଏ ଚାହୁଁନାହାନ୍ତି । ଚାହୁଁଛନ୍ତି ?’

ଅନ୍ତତଃ ଦୁଇ ମିନିଟ୍ ଯାଏଁ ଗାନ୍ଧୀ କିଛି କହିଲେ ନାହିଁ । ଆମ ବସିଥିବା ଘରର ନିସ୍ତବ୍ଧତା ସତେ ଯେପରି କାନକୁ ଶୁଭୁଥାଏ ।

ଅବଶେଷରେ ଗାନ୍ଧୀ କହିଲେ, ‘ତୁମେ ଠିକ୍ କହୁଛ । ବ୍ରିଟିଶ ସେନା ଚାଲିଯା’ନ୍ତୁ ବୋଲି ମୁଁ କହୁନାହିଁ । ବ୍ରିଟେନ୍, ଆମେରିକା ଓ ଅନ୍ୟ ଯେ କୌଣସି ଦେଶ ଏଠାରେ ସେନା ରଖିପାରିବେ ଏବଂ ଭାରତକୁ ସାମରିକ ଘାଟି କରି ଏଇଠାରୁ ଯୁଦ୍ଧ ଚଳାଇ ପାରିବେ । ଜାପାନ ଏ ଯୁଦ୍ଧରେ ଜିଣୁ, ଏହା ମୁଁ ଚାହେଁ ନାହିଁ । କିନ୍ତୁ ଏ ବିଷୟରେ ମୁଁ ସ୍ଥିର-ନିର୍ଣ୍ଣିତ ଯେ, ଭାରତୀୟମାନେ ଯଦି ସ୍ୱାଧୀନତା ନ ପା’ନ୍ତି ତେବେ ବ୍ରିଟେନ୍ ଯୁଦ୍ଧରେ ଯଶସ୍ୱୀ ହେବ ନାହିଁ । ଭାରତ ଉପରେ କର୍ତ୍ତୃତ୍ୱ ଜାରି କରୁଥିବା ଯାଏ ବ୍ରିଟେନ୍ ଅପେକ୍ଷାକୃତ ଦୁର୍ବଳ ରହିବ ଏବଂ ତା’ର ଆଚରଣ ନୈତିକ ଦୃଷ୍ଟିରେ ସମର୍ଥିତ ହୋଇ ପାରିବ ନାହିଁ । ବ୍ରିଟେନ୍ ପରାଭୂତ ହେବା ମୁଁ ଚାହେଁ ନାହିଁ ।’

ମୁଁ କହିଲି, ‘ଯଦି ଗଣତାନ୍ତ୍ରିକ ରାଷ୍ଟ୍ରମାନେ ଭାରତକୁ ସାମରିକ ଘାଟି କରିବାକୁ ମାନିଯିବାକୁ ହୁଏ, ତେବେ ଆହୁରି ଅନେକ କଥା ମାନିଯିବାକୁ ହେବ । ସେନା ତ ଶୂନ୍ୟରେ ରହି ପାରିବେ ନାହିଁ । ଉଦାହରଣ ସ୍ୱରୂପ, ପାଶ୍ଚାତ୍ୟ ମିତ୍ର ପକ୍ଷ ରେଳ ଚଳାଚଳ ସୁସଂଗଠିତ ହେବା ପାଇଁ ଚାହିଁବେ ।’

ଗାନ୍ଧୀ ଆଗ୍ରହର ସହିତ କହିଲେ, ‘ହଁ ନିଶ୍ଚୟ, ରେଳ ଚଳାଚଳ ନିୟନ୍ତ୍ରିତ କରିବା ତାଙ୍କ ହାତରେ ରହିବ । ଯୁଦ୍ଧ ସରଞ୍ଜାମ ଯେଉଁ ବନ୍ଦର-ମାନଙ୍କରେ ଆସି ଓହ୍ଲାଇ ଯିବ ସେ ବନ୍ଦରମାନଙ୍କର କାର୍ଯ୍ୟ ପରିଚାଳନା ସୁଷ୍ଠୁ ଭାବେ ହେବା ମଧ୍ୟ ସେମାନେ ଚାହିଁବେ । ବମ୍ବେ ଓ କଲିକତାରେ ଦଙ୍ଗା ହାଙ୍ଗାମା ହେବା ସେମାନେ ଚାହିଁବେ ନାହିଁ । ଏ ସବୁ ବିଷୟରେ ଭାରତର ସହଯୋଗ ଓ ସାହଚର୍ଯ୍ୟ ସେମାନେ ଚାହିଁବେ ହିଁ ଚାହିଁବେ ।’

ମୁଁ ପଚାରିଲି, 'ଗୋଟିଏ ଲିଖିତ ସନ୍ଧିପତ୍ରରେ ଏହି ସବୁ ସହଯୋଗ-ମୂଳକ ବ୍ୟବସ୍ଥା ଲିପିବଦ୍ଧ ହେବାରେ ଆପଣଙ୍କର ମତ କ'ଣ ?'

ସେ କହିଲେ, 'ହଁ, ଏଭଳି ଗୋଟିଏ ଚୁକ୍ତିପତ୍ର ଲିପିବଦ୍ଧ ହେବାରେ ଆମେ ରାଜି ।'

ମୁଁ ପଚାରିଲି, 'ଆପଣ ଏ ସବୁ କଥା ଆଗରୁ କହି ରଖି ନାହାନ୍ତି କାହିଁକି ? ମୋତେ ସ୍ୱୀକାର କରିବାକୁ ପଡ଼ୁଛି ଯେ, ଆପଣଙ୍କ ପ୍ରସ୍ତାବିତ ଆଇନ୍ ଆନ୍ଦୋଳନ କଥା ଶୁଣିଲା ବେଳେ, ମୋର ଏହା ପ୍ରତି ପ୍ରତିକୂଳ ମନୋଭାବ ହେଉଥିଲା । ମୋର ମନେ ହେଉଥିଲା, ଏଭଳି ଆନ୍ଦୋଳନ-ଦ୍ୱାରା ଯୁଦ୍ଧ ଉଦ୍ୟମ ବ୍ୟାହତ ହେବ । ମୋର ମତ, ଏ ଯୁଦ୍ଧରେ ପ୍ରାଣପଣେ ଲଢ଼ି ଆମ୍ଭମାନଙ୍କୁ ବିଜୟ ହାସଲ କରିବାକୁ ପଡ଼ିବ । ଯଦି ଜର୍ମାନ୍ ଓ ଜାପାନ ଜିଣନ୍ତି ତେବେ ପୃଥିବୀର ଘୋର ବିପର୍ଯ୍ୟୟ ହେବ ବୋଲି ମୋତେ ଦିଶୁଛି । ଆମ ପକ୍ଷ ଯଦି ଜିଣେ ତେବେ, ପୃଥିବୀର ଅବସ୍ଥାରେ ଉନ୍ନତି ହେବାର ସୁଯୋଗ ମିଳିବ ବୋଲି ମୋର ବିଶ୍ୱାସ ।'

ସେ ଆପତ୍ତି କଲେ, 'ଏ ବିଶ୍ୱାସରେ ମୁଁ ତୁମ ସଙ୍ଗେ ଏକମତ ନୁହେଁ । ବ୍ରିଟେନ୍ ଅନେକ ସମୟରେ ଛଳନାର ପରିଚ୍ଛଦରେ ନିଜକୁ ଆଚ୍ଛାଦିତ କରେ । ସେ ଆଜି ଯେଉଁ ପ୍ରତିଶ୍ରୁତି ଦିଏ, ପରେ ତାକୁ ପାଳନ କରେ ନାହିଁ । ତେବେ ମୁଁ ମାନୁଛି ଯେ, ଗଣତନ୍ତ୍ର ରାଷ୍ଟ୍ରମାନେ ଯଦି ଜିଣନ୍ତି ତେବେ ପୃଥିବୀର ଅବସ୍ଥାରେ ଉନ୍ନତି ହେବାରେ ଅପେକ୍ଷାକୃତ ଅଧିକ ସମ୍ଭାବନା ଅଛି ।'

ମୁଁ କହିଲି, 'ଯୁଦ୍ଧ ପରେ ଯେଉଁ ସନ୍ଧିପତ୍ର ସ୍ୱାକ୍ଷରିତ ହେବ ତଦନୁସାରେ ଭବିଷ୍ୟତର ରୂପରେଖ ସୂଚିତ ହେବ ।'

ସେ ମୋ କଥାକୁ ସଂଶୋଧନ କରି କହିଲେ, 'ଯୁଦ୍ଧବେଳେ ଏମାନେ ଯେଭଳି ଆଚରଣ କରିବେ ତଦ୍ଦ୍ୱାରା ଭବିଷ୍ୟତର ଗତି ସୂଚିତ ହେବ । ଭବିଷ୍ୟତ ପାଇଁ ଦିଆ ହେବା ପ୍ରତିଶ୍ରୁତିକୁ ମୁଁ ପସନ୍ଦ କରେ ନାହିଁ । ଯୁଦ୍ଧ ପରେ ସ୍ୱାଧୀନତା ମିଳିବ ବୋଲି କହିଲେ ମୁଁ ଭଲ ଯିବ ନାହିଁ । ମୋର ଏଇ ମୁହୂର୍ତ୍ତରେ ସ୍ୱାଧୀନତା ଦରକାର । ତାହା ଦେଲେ, ଯୁଦ୍ଧରେ ଜିଣିବାକୁ ଇଂଲଣ୍ଡ ସମର୍ଥ ହେବ ।'

ମୁଁ ପୁଣି ପଚାରିଲି, 'ଆପଣଙ୍କର ଏ ପରିକଳ୍ପନା ଆପଣ ଭାଇସ୍‌ରୟଙ୍କୁ ଆଗରୁ ଜଣାଇ ନାହାନ୍ତି କାହିଁକି ? ମିତ୍ର ପକ୍ଷର ଯୁଦ୍ଧଘାଟୀ-

ରୂପେ ଭାରତ ବ୍ୟବହୃତ ହେବା ବିଷୟରେ ଆପଣଙ୍କର ଆପତ୍ତି ନାହିଁ ବୋଲି ଭାଇସ୍‌ରୟଙ୍କୁ ଜଣାଇଦେବା ଉଚିତ ।'

ସେ ଦୁର୍ବଳ ଯୁକ୍ତି ଦେଖାଇଲା ପରି କହିଲେ ; ମୋତେ ତ ଏହା କେହି ମାଗି ନାହାଁନ୍ତି ?'

ବ୍ରିଟିଶ୍ ଓ ଅନ୍ୟ ରାଷ୍ଟ୍ରର ସୈନ୍ୟବାହିନୀକୁ ଭାରତରେ ରହିବାକୁ ଦେବାକୁ ଗାନ୍ଧୀ ରାଜି ହୋଇଯିବାର ଦେଖି ତାଙ୍କର କେତେଜଣ ଅତି ଅନ୍ତରଙ୍ଗ ସହକର୍ମୀ କ୍ଷୁବ୍ଧ ହେଲେ । ସେମାନେ ମନେ କଲେ, ସେ ମୋତେ ଯେଉଁ ବିବୃତି ଦେଲେ ତାହା ତାଙ୍କ ପକ୍ଷରେ ଗୋଟାଏ ମାରାତ୍ମକ ଭୁଲ । କିନ୍ତୁ ଗାନ୍ଧୀ ସର୍ବସାଧାରଣରେ ବିଜ୍ଞପ୍ତି ଦେଇ ପରିଷ୍କାର କହିଲେ ଯେ, ସେ ବୁଝି ବିଚାରି ନିଜର ମତ ପରିବର୍ତ୍ତନ କରିଛନ୍ତି । ମୋ ସଙ୍ଗେ ତାଙ୍କର ସାକ୍ଷାତ୍‌କାର ହେବାର ଅବ୍ୟବହିତ ପରେ ସେ ହରିଜନରେ ଲେଖିଲେ, 'ମୁଁ ଏ ବିଷୟରେ ପ୍ରଥମେ ଯେଉଁ ଲେଖା ଲେଖିଥିଲି, ଆପାତତଃ ତହିଁରେ ଗୋଟାଏ ଫାଙ୍କ ରହିଯାଇଥିଲା । ମୋ ସଙ୍ଗେ ସାକ୍ଷାତ୍ କରିବାକୁ ଆସୁଥିବା ବହୁ ବନ୍ଧୁଙ୍କ ମଧ୍ୟରୁ ଜଣେ ଏହି ଖାପଛଡ଼ା ବିଷୟଟି ମୋ ଦୃଷ୍ଟିକୁ ଆଣିବାମାତ୍ରେ ମୁଁ ତାହା ପୂରଣ କରି ଦେଇଛି । ନିରାଟଭାବରେ ସାଧୁ ପନ୍ଥା ଧରି ଚାଲିବା ଅହିଂସା ଧର୍ମର ମୂଳ କଥା । ଏପରି ଚାଲିବାଦ୍ୱାରା ଯାହା କ୍ଷତି ହେଉପଛେ ସେଥିରେ ଭ୍ରୂକ୍ଷେପ କରିବା ଉଚିତ ନୁହେଁ । ମୁଁ ଯାହା କରିଛି ତାହା ଯଦି ମୋର ଦୁର୍ବଳତା ବୋଲି ମୋ ଦେଶବାସୀ ମନେ କରନ୍ତି ତେବେ ସେହି ଦୁର୍ବଳତାକୁ ବରଦାସ୍ତ କରିନେବେ । ମିତ୍ର ପକ୍ଷକୁ ଏଭଳି କୌଣସି କାର୍ଯ୍ୟ କରିବାକୁ ମୁଁ ଆହ୍ୱାନ କରି ନ ପାରେ, ଯଦ୍ଦ୍ୱାରା ତାଙ୍କର ନିଶ୍ଚୟ ଯୁଦ୍ଧରେ ପରାଜୟ ହେବ । ସେଭଳି ଦାବି କରିବା ମୋ ପକ୍ଷରେ ପାପ ହୁଅନ୍ତା... । ହଠାତ୍ ଯଦି ମିତ୍ରପକ୍ଷର ସେନା ଭାରତରୁ ବାହାରିଯାନ୍ତି ତେବେ ପରିଣାମରେ ଜାପାନ ଭାରତ ଦଖଲ କରିଯାଇପାରେ ଓ ଚୀନର ପରାଜୟ ଅବଶ୍ୟମ୍ଭାବୀ ହୋଇଯାଇପାରେ । ମୋର କାର୍ଯ୍ୟଦ୍ୱାରା ଏଭଳି ବିପର୍ଯ୍ୟୟ ହୋଇପାରେ ବୋଲି ମୁଁ ପ୍ରଥମେ ଏକାବେଳକେ କଳ୍ପନା କରି ନ ଥିଲି... ।'

ଗାନ୍ଧୀ ତାଙ୍କ ସଙ୍ଗେ ଦେଖା କରିବାକୁ ଚାହାନ୍ତି ବୋଲି ଭାଇସ୍‌ରୟଙ୍କୁ କହିବା ସକାଶ, ମୁଁ ଆଶ୍ରମ ଛାଡ଼ିବା ବେଳେ, ମହାଦେବ ଦେଶାଇ ମୋତେ ଅନୁରୋଧ କଲେ । ମୁଁ ଯେତେ ଦୂର ବୁଝିଥିଲି, ମହାତ୍ମାଜୀ ବ୍ରିଟିଶ

ସରକାରଙ୍କ ସଙ୍ଗେ ସାଲିସ୍ କରିବାକୁ, ହୁଏତ ଆଇନ୍ ଅମାନ୍ୟ ଏକାବେଳକେ ବନ୍ଦ କରି ଦେବାକୁ ପ୍ରସ୍ତୁତ ଥିଲେ । ମୁଁ ଯାଇ ନୂଆ ଦିଲ୍ଲୀରେ ପହଞ୍ଚିବା ପରେ ଗାନ୍ଧୀଙ୍କଠାରୁ ଖଣ୍ଡିଏ ଚିଠି ପାଇଲି । ତା'ସଙ୍ଗେ ପ୍ରେସିଡେଣ୍ଟ ରୁଜ୍ଭେଲ୍ଟଙ୍କ ପାଖକୁ ପଠାଇବା ସକାଶ ଖଣ୍ଡିଏ ଚିଠି ସେ ପଠାଇଥାନ୍ତି । ମୋ ଚିଠିରେ ତାଙ୍କ ସ୍ୱଭାବସିଦ୍ଧ ଢଙ୍ଗରେ ସେ ଲେଖିଥାନ୍ତି, 'ରୁଜଭେଲ୍ଟଙ୍କ ପାଖକୁ ପଠାଇବା ସକାଶ ଯେଉଁ ଚିଠି ଦେଇଛି ତାହା ଯଦି ତୁମ ମନକୁ ନ ପାଇବ, ତେବେ ଚିରିଦେବ ।'

ମହାତ୍ମାଜୀ ସବୁବେଳେ ନିଜର ମତ ତ୍ୟାଗ କରିବାକୁ ବା କୋହଳ କରିବାକୁ ପ୍ରସ୍ତୁତ ଥିଲେ । ସେ ମୋ ଚିଠିରେ ଲେଖିଥିଲେ, 'ତୁମ ରାଷ୍ଟ୍ରପତିଙ୍କୁ କହ, ମୋ ସଂକଳ୍ପରୁ ମୋତେ ନିବର୍ତ୍ତାଇ ଦିଆଯାଉ ବୋଲି ମୁଁ ଚାହେଁ' । ସେ ଯାହାହେଉ, ତାଙ୍କର କିନ୍ତୁ ଦୃଢ଼ଧାରଣା ଥିଲା ଯେ, ଯୁଦ୍ଧବେଳେ ଭାରତକୁ ସ୍ୱାୟତ୍ତଶାସନ ଦେବା ଉଚିତ । ଏ ଦାବିର ଯଥାର୍ଥତା ଯଦି ମିତ୍ର ପକ୍ଷର ରାଷ୍ଟ୍ରମାନେ ନ ବୁଝନ୍ତି ତେବେ ସେମାନଙ୍କୁ ବୁଝାଇବା ସକାଶ ସେ ଆଇନ୍ ଅମାନ୍ୟ ଆନ୍ଦୋଳନ ଆରମ୍ଭ କରିଦେବେ । ଗାନ୍ଧୀ ମୋତେ, ମୁଁ ଆଶ୍ରମରେ ଥିଲାବେଳେ ଦିନେ ଅପରାହ୍ଣରେ କହିଥିଲେ, 'ତୁମ ରାଷ୍ଟ୍ରପତି ଚତୁର୍ବିଧ ସ୍ୱାଧୀନତା ବିଷୟରେ ଘୋଷଣା କରିଛନ୍ତି ; ସ୍ୱାଧୀନ ହେବାକୁ ଦାବି କରିବାର ସ୍ୱାଧୀନତା ଏହାର ଅଙ୍ଗୀଭୂତ କି ନୁହେଁ ?'

ଗାନ୍ଧୀ ବୁଝିଥିଲେ, ଗଣତନ୍ତ୍ର ରାଷ୍ଟ୍ରମାନେ ଭାରତ ପ୍ରତି ଯେଉଁ ଆଭିମୁଖ୍ୟ ଧରିଛନ୍ତି ତାହା ନୈତିକ ଦୃଷ୍ଟିରୁ ସମର୍ଥନୀୟ ନୁହେ । ଭାରତ ପ୍ରତି ଧରିଥିବା ଆଭିମୁଖ୍ୟ ବଦଳାଇବାଦ୍ୱାରା ରୁଜ୍ଭେଲ୍ଟ ବା ଲିନ୍ଲିଥ୍ଗୋ, ତାଙ୍କ ସଂକଳ୍ପରୁ ତାଙ୍କୁ ନିବର୍ତ୍ତାଇ ପାରିବେ ବୋଲି ସେ ଆଶା କରୁଥିଲେ । ତା' ଯଦି ସେମାନେ ନ କରନ୍ତି ତେବେ ନିଜ କର୍ମପନ୍ଥାରେ ଗାନ୍ଧୀଙ୍କର କୌଣସି ଦ୍ୱିଧା ନ ଥିଲା । ନେହେରୁ ଓ ଆଜାଦଙ୍କର ଦ୍ୱିଧା ଥାଏ । ମହାତ୍ମା ଗାନ୍ଧୀଙ୍କ ସଙ୍ଗେ ମତଭେଦ ହେବାରୁ ତ ରାଜଗୋପାଳାଚାରୀ କଂଗ୍ରେସ ନେତୃମଣ୍ଡଳରୁ ଇସ୍ତଫା ଦେଇ ବାହାରି ଯାଇଥାନ୍ତି । ଗାନ୍ଧୀଙ୍କୁ କିନ୍ତୁ ତାଙ୍କ ମତରୁ ଟାଳି ହେଉ ନ ଥାଏ । ସେ ଆଜାଦ ଓ ନେହେରୁଙ୍କୁ ନିଜ ମତରେ ମଙ୍ଗାଇ ଦେଲେ । ନେହେରୁ ବିଚାରିଥିଲେ ଯେ, ଭାରତର ଆଭ୍ୟନ୍ତରୀଣ ଅବସ୍ଥା ଓ ଆନ୍ତର୍ଜାତିକ ପରିସ୍ଥିତି ଦୃଷ୍ଟିରେ ଆଇନ ଅମାନ୍ୟ

ଆନ୍ଦୋଳନ ସମର୍ଥିତ ହେବନାହିଁ । ଗାନ୍ଧୀ କହିଥିଲେ, 'ମୁଁ ଜବାହାରଙ୍କ ସଙ୍ଗେ ଦିନ ଦିନ ଧରି ଯୁକ୍ତି କଲି । ସେ ଯେଉଁଭଳି ଉଦ୍‌ବେଗର ସହିତ ମୋ ମତ ବିରୁଦ୍ଧରେ ଲଢ଼ିଲେ ତାହା ବର୍ଣ୍ଣନା କରିବାକୁ ଭାଷା ପାଉନାହିଁ ।' ଗାନ୍ଧୀ ଏହାର କାରଣ ଦର୍ଶାଇ କହିଛନ୍ତି, ତାଙ୍କର ରୁଷ୍ ଓ ଚୀନ ସଙ୍ଗେ ବ୍ୟକ୍ତିଗତ ସମ୍ପର୍କ ଥିବାରୁ, 'ଚୀନ ଓ ରୁସିଆର ଆସନ୍ନ ବିପର୍ଯ୍ୟୟର ଆଶଙ୍କାରେ ସେ ଅତ୍ୟଧିକ ମନସ୍ତାପ ଭୋଗ କରୁଥାନ୍ତି··· । ସେହି ମନସ୍ତାପ ଯୋଗୁଁ ସେ (ବ୍ରିଟିଶ) ସାମ୍ରାଜ୍ୟ ବିରୁଦ୍ଧରେ ତାଙ୍କର ତିକ୍ତତାକୁ ପାସୋରି ପକାଇଥାନ୍ତି ।' କିନ୍ତୁ ଜବାହାରଲାଲ ଗାନ୍ଧୀଙ୍କ ଆଶ୍ରମ ଛାଡ଼ିବା ପୂର୍ବରୁ, ଗାନ୍ଧୀଙ୍କ ଭାଷାରେ 'ତାଙ୍କ ବାସ୍ତବ ପରିସ୍ଥିତି ଉପରେ ପର୍ଯ୍ୟବସିତ ଯୁକ୍ତିଜାଲ'ରେ ଜବାହାର 'ଅଭିଭୂତ' ହୋଇ ପଡ଼ିଲେ । ବସ୍ତୁତଃ ନେହେରୁ ପ୍ରସ୍ତାବିତ ଆଇନ୍ ଅମାନ୍ୟ ଆନ୍ଦୋଳନର ଏଡ଼େ ଅଟଳ ସମର୍ଥକ ହୋଇପଡ଼ିଲେ ଯେ, ମୁଁ ଯେତେବେଳେ ବମ୍ବେଠାରେ, ଗାନ୍ଧୀ ଭାଇସ୍‌ରୟଙ୍କ ସଙ୍ଗେ ଦେଖା କରିବା ଉଚିତ କି ନୁହେଁ ପଚାରିଲି, ସେ ଉତ୍ତର ଦେଲେ, 'ଦେଖା କରିବାର କି ପ୍ରୟୋଜନ ?' ଗାନ୍ଧୀ କିନ୍ତୁ ଲିନ୍‌ଲିଥ୍‌ଗୋଙ୍କ ସଙ୍ଗେ ସାକ୍ଷାତ୍ କରିବାକୁ ଆଶା ଧରି ରହିଥାନ୍ତି ।

ଆଜାଦ୍ ଓ ନେହେରୁ ଯେଉଁ କାର୍‌ରେ ଓ୍ୱାର୍ଦ୍ଧାର କଂଗ୍ରେସ ଭବନକୁ ଫେରିଲେ, ମୁଁ ସେଇ କାର୍‌ରେ ଜୁନ୍ ୧୦ ତାରିଖ ଦିନ ଆଶ୍ରମରୁ ବିଦାୟ ନେଲି । କେତେ ଘଣ୍ଟା ପରେ ସେଇ କାର୍ ସେବାଗ୍ରାମ ଫେରିଲା, ଆଜାଦ୍ ଓ ନେହେରୁଙ୍କ ସଙ୍ଗେ ଆହୁରି ଆଲୋଚନା କରିବା ପାଇଁ ଗାନ୍ଧୀଙ୍କୁ ଆଣିବା ସକାଶ । ଓପରଓଳି ତିନିଟା ବେଳେ ଗାନ୍ଧୀ ଏକୁଟିଆ ଚାଲି ଚାଲି କଂଗ୍ରେସଭବନକୁ ଆସିଲେ । ଓ୍ୱାର୍ଦ୍ଧାଠାରୁ ୬ ଫର୍ଲଙ୍ଗ୍ ଦୂରରେ କାର୍ ଅଚଳ ହୋଇଯାଇଥିଲା । ଗାନ୍ଧୀ ଓହ୍ଲାଇପଡ଼ି, ଜୁନ୍ ମାସ ଅପରାହ୍ଣର ପୋଡ଼ି ପକାଉଥିବା ଭାରତୀୟ ସୂର୍ଯ୍ୟ ତେଜରେ ସେତିକିବାଟ ଚାଲି ଚାଲି ଆସି ପହଞ୍ଚିଲେ । କଂଗ୍ରେସ ଭବନରେ ଆସି ପହଞ୍ଚିଲା ବେଳକୁ ସେ ବେଶ୍ ପ୍ରଫୁଲ୍ଲ ଦିଶୁଥାନ୍ତି । ଯଦିବା ସେ ପଥଶ୍ରାନ୍ତ ହୋଇଥାନ୍ତି ; ତାହା ଜଣାପଡ଼ୁ ନ ଥାଏ । 'ଶିଳ୍ପ ଯୁଗର ଏହି ନବ୍ୟ ଯାନ୍ତ୍ରିକ ବିଭବ' ଉପରେ ବିଶେଷ ନିର୍ଭର କରାଯାଇ ନ ପାରେ ବୋଲି ଟିପ୍ପଣୀ କରିବାରେ ତାଙ୍କର ଯେଉଁ ଆନନ୍ଦ ହୋଇଥିଲା, ତା'ରି ତୋଡ଼ରେ ତାଙ୍କ ପଥଶ୍ରାନ୍ତି ପଛକୁ ପଡ଼ିଯାଇଥିଲା ବୋଲି ମନେ ହୁଏ ।

ତାଙ୍କଠାରେ କେମିତି ଗୋଟାଏ ମୋହିନୀ ଶକ୍ତି ଥିଲା । ସ୍ୱଭାବତଃ ତାଙ୍କ ବ୍ୟକ୍ତିତ୍ୱରେ ଗୋଟାଏ ବିଶିଷ୍ଟତା ଥିଲା ; ତାଙ୍କର ପ୍ରକୃତି ଥିଲା ଶାନ୍ତ, କିନ୍ତୁ ସେହି ଶାନ୍ତ ପ୍ରକୃତି ସଙ୍ଗେ ତାଙ୍କଠାରେ କିପରି ଗୋଟାଏ ପ୍ରଚ୍ଛନ୍ନ ଶକ୍ତି ଥିଲା ଯଦ୍ଦ୍ୱାରା ସେ ପ୍ରତିପକ୍ଷଙ୍କୁ ଅଭିଭୂତ କରି ପାରୁଥିଲେ । ତାଙ୍କ ସଙ୍ଗେ ବୌଦ୍ଧିକ ଆଲୋଚନା କଲେ ମଣିଷ ମୁଗ୍ଧ ହେଉଥିଲା, କାରଣ ସେ ଖୋଲାମନରେ କଥାବାର୍ତ୍ତା ହେଉଥିଲେ ଏବଂ ତାଙ୍କ ମନ କିପରି ଗତି କରୁଛି ତାହା ସ୍ପଷ୍ଟ ଦିଶୁଥିଲା । ସେ ତାଙ୍କର ମତାମତ ଆଗରୁ ଠିକ୍‌ଠାକ୍ କରି ସୁସମ୍ପନ୍ନ ଭାବେ ପ୍ରକାଶ କରୁ ନ ଥିଲେ । ସେ ଆଲୋଚନାକ୍ରମରେ ନିଜର ମତକୁ ରୂପ ଦେଉଥିଲେ ; କି ଭାବରେ ଚିନ୍ତା କରି ନିଜ ମତକୁ ସେ ସର୍ବାଙ୍ଗସୁନ୍ଦର କରୁଛନ୍ତି ତାହା ବାହାରକୁ ଦିଶୁଥିଲା ବୋଲି କୁହାଯାଇ-ପାରେ । ତାଙ୍କ ସଙ୍ଗେ କଥାବାର୍ତ୍ତା କଲାବେଳେ ଖାଲି ତାଙ୍କ ତୁଣ୍ଡର କଥା ଶୁଣାଯାଉ ନ ଥିଲା, ତାଙ୍କ ଚିନ୍ତାର ଧାରା ମଧ୍ୟ କାନରେ ପଶୁଥିଲା । ତେଣୁ ସେ ତାଙ୍କ ମତକୁ ଶେଷରୂପ ଦେଲାବେଳେ, ଆଲୋଚନାକାରୀ ତାଙ୍କ ମନର ଗତି ଧରିପାରି କି ଭାବରେ ସେ ଉପସଂହାରରେ ପହଞ୍ଚିଲେ ଜାଣି ତାଙ୍କ ମତର ଯଥାର୍ଥତା ଧରି ପାରୁଥିଲା । ତେଣୁ ପ୍ରଚାରକ ଭଳି କଥାବାର୍ତ୍ତା କରିବା ତାଙ୍କ ପକ୍ଷରେ ଦରକାର ହେଉ ନ ଥିଲା ; ସେ ବନ୍ଧୁ ସଙ୍ଗେ ଆଳାପ କଲା ପରି କହୁଥିଲେ ଓ ବକ୍ତୃତା ଦେଉଥିଲେ । ଅପର ଲୋକକୁ ଉପଦେଶ ବା ନିର୍ଦ୍ଦେଶ ଦେବା ସକାଶେ ଚେଷ୍ଟା ନ କରି ସେ ତା' ସଙ୍ଗେ ଭାବବିନିମୟ କରିବାକୁ ଚାହୁଁଥିଲେ ଓ ବ୍ୟକ୍ତିଗତ ସୌହାର୍ଦ୍ଦ୍ୟ ସ୍ଥାପନ କରିବାକୁ ଅଧିକ ଆଗ୍ରହ ପ୍ରକାଶ କରୁଥିଲେ ।

ନିଜର ମତ ପରିଷ୍କାର ଭାବେ ପ୍ରକାଶ କରିବାକୁ ଅନିଚ୍ଛୁକ ଥିଲା ବେଳେ ବି ସେ ମନ ଖୋଲି କଥାବାର୍ତ୍ତା କରୁଥିଲେ । ସ୍ୱାଧୀନତା ପରେ ଭାରତ କି କର୍ମସୂଚୀ ଗ୍ରହଣ କରିବ ସେ ବିଷୟରେ ମୁଁ ତାଙ୍କର ପରିକଳ୍ପନା ଓ ଯୋଜନା ବିଷୟରେ ଜାଣିବାକୁ ଚାହୁଁଥିଲି । ସେ ଯୁକ୍ତି ଜାଲରେ ମୋତେ ଏପାଖ ସେପାଖ କରି ଶେଷରେ କହିଲେ, 'ସ୍ୱାଧୀନ ଭାରତ କ୍ଷିପ୍ରଗତିରେ ଯନ୍ତ୍ରଶିଳ୍ପର ବିକାଶ କରିବା ଦରକାର, ଏହି କଥା ମୋ ତୁଣ୍ଡରୁ ଶୁଣିବା ନିମନ୍ତେ ତୁମେ ବଳାଜୋର କରୁଛ । ମୁଁ ଏହା ସ୍ୱୀକାର କରିବାକୁ ପ୍ରସ୍ତୁତ ନୁହେଁ । ବର୍ତ୍ତମାନର ମୁଖ୍ୟ ସମସ୍ୟା, ବ୍ରିଟିଶ୍ ଶାସନରୁ ଭାରତକୁ ମୁକ୍ତ କରିବା । ତାହା ହେଲା ପରେ, ଭାରତର କ'ଣ ଦରକାର, ବାହ୍ୟ

ଶାପରୁ ମୁକ୍ତ ରହି, ବିଶ୍ବର କରିବାକୁ ଆମେ ସମର୍ଥ ହେବୁ । ବର୍ତ୍ତମାନ ବ୍ରିଟିଶ ସରକାର ଆମ ଦେଶରେ କେତେଗୁଡ଼ିଏ ଯନ୍ତ୍ରଶିଳ୍ପର ପ୍ରତିଷ୍ଠା ପାଇଁ ଅନୁମତି ଦେଇଛନ୍ତି, ଓ ଆଉ କେତେଗୁଡ଼ିଏ ନିଷିଦ୍ଧ କରି ଦେଇଛନ୍ତି । ସ୍ୱାଧୀନ-ଭାରତରେ ଏ ପର-ମୁଖାପେକ୍ଷିତା ରହିବ ନାହିଁ । ତେଣୁ ମୋ ବିଶ୍ବରରେ, ସର୍ବପ୍ରଥମ କାର୍ଯ୍ୟପନ୍ଥା ବ୍ରିଟିଶ ପ୍ରଭୁତ୍ୱର ବିଲୋପ କରିବା ।'

ବସ୍ତୁତଃ ଏଇ କଥା କହିବାକୁ ତାଙ୍କ ମନର ଭାବ ହୋଇଥିଲି ; ସେ ନିଜ ମନର ଭାବ ଲୁଚାଇବାକୁ ଚେଷ୍ଟା କରି ନ ଥିଲେ । ଯାହା କହିବି, ଯାହା ଲୁଚାଇବି ଏଭଳି ଚାଲୁଣି ତାଙ୍କ ମସ୍ତିଷ୍କରେ ନ ଥିଲି । ଦୃଷ୍ଟାନ୍ତସ୍ୱରୂପ ସେ ଦିନେ ମୋତେ କହିଲେ, ଯୁଦ୍ଧର ସମାପ୍ତି କରିବା ସକାଶ ପ୍ରବର୍ତ୍ତାଇବାକୁ ସେ ଜାପାନ ଯିବାକୁ ଇଚ୍ଛା କରନ୍ତି । ସାଙ୍ଗେ ସାଙ୍ଗେ କିନ୍ତୁ ସେ ଯୋଡ଼ି-ଦେଲେ : ଜାପାନ ଯିବାକୁ ତାଙ୍କୁ ସୁଯୋଗ ମିଳିବ ନାହିଁ । ଏବଂ ଗଲେ ମଧ୍ୟ ଜାପାନ ତାଙ୍କ କଥା ଶୁଣି ଯୁଦ୍ଧ ବନ୍ଦ କରି ଦେବନାହିଁ ।

ସେ ଆହୁରି ମଧ୍ୟ କହିଲେ : ଜାପାନ ଯିବାକୁ ସେ ଯେଉଁ ଇଚ୍ଛା ପ୍ରକାଶ କଲେ, ତାହା କାଗଜରେ ବାହାରିଲେ ଲୋକେ କଦର୍ଥ କରିବେ । ଏପରି ସ୍ଥଳେ ଗାନ୍ଧୀ ଏଭଳି ଇଚ୍ଛା ପ୍ରକାଶ କଲେ କାହିଁକି ? ଏକମାତ୍ର କାରଣ, ତାଙ୍କ ମନରେ ଏଭଳି ଇଚ୍ଛାର ଉଦୟ ହେଲା ।

ଗାନ୍ଧୀଜୀ ଦୃଢ଼ଭାବେ କହିଥିଲେ ଯେ, ସ୍ୱାଧୀନ ଭାରତରେ ମିଳିତ-ରାଜ୍ୟ-ସଂଘ ଢଙ୍ଗର ସଂବିଧାନ ଦରକାର ହେବ ନାହିଁ । ଏପରି ନ ହେଲେ ପ୍ରକାଣ୍ଡ ଭାରତ ଦେଶକୁ ଶାସନ କରିବାରେ କିଭଳି ଅସୁବିଧା ସବୁ ଉପୁଜିବ ମୁଁ ଦେଖାଇଲି । ଏ ସବୁ ସେ ଗ୍ରାହ୍ୟ କଲେ ନାହିଁ । ମୁଁ ନିରସ୍ତ ହେଲି । କିନ୍ତୁ ଶେଷରେ ସେ କହିଲେ, 'ମୁଁ ଜାଣେ, ମୋର ବ୍ୟକ୍ତିଗତ ବିରୋଧ ସତ୍ତ୍ୱେ, ଭାରତରେ ମିଳିତ-ରାଜ୍ୟ-ସଂଘ ଧରଣର ଗୋଟିଏ କେନ୍ଦ୍ର-ସରକାର ପ୍ରତିଷ୍ଠିତ ହେବ ।' ଏଇଭଳି ଯୁକ୍ତି-ବୃତ୍ତି ଗାନ୍ଧୀଙ୍କର ପ୍ରକୃତିସିଦ୍ଧ । ସେ ଆଗ ଗୋଟିଏ ମତ ବ୍ୟକ୍ତ କରନ୍ତି ; ସମସ୍ତ ପ୍ରତିବାଦ ସତ୍ତ୍ୱେ ସେ ଏହି ମତକୁ ଧରି ବସନ୍ତି; କିନ୍ତୁ ଶେଷରେ ହସି ଦେଇ ମାନି ଯାଆନ୍ତି ଯେ, ତାଙ୍କ ମତ କାର୍ଯ୍ୟରେ ହେବା ସଂଭବ ନୁହେ । ସାଲିସ ପାଇଁ କଥାବାର୍ତ୍ତା କଲାବେଳେ ଏ ରୀତି ଯୋଗୁଁ ବହୁ ସମୟକ୍ଷେପ ହେବା ଏବଂ ଅପର ପକ୍ଷ ବିରକ୍ତ ହେବାର ବିଶେଷ ସଂଭାବନା । କିନ୍ତୁ ଦୁଇ ବ୍ୟକ୍ତିଙ୍କ ଭିତରେ ମତଗତ ଆଲୋଚନା ବେଳେ ଏ ରୀତି ବଡ଼ ଚିତ୍ତାକର୍ଷକ ଓ ଭାବୋଦ୍ଦୀପକ ହୁଏ । ନିଜେ ଗାନ୍ଧୀ

ଆଗରୁ ଯାହା କହିଥାନ୍ତି, ଶେଷ ଆଡ଼କୁ ସେଥିରେ ବସ୍ମିତ ହୁଅନ୍ତି । ତାଙ୍କର ମନର ଗତି, ନଦୀର ସ୍ରୋତ ପରି ଚିର-ଚଞ୍ଚଳ । ନିଜର କଥା ଠିକ୍ ବୋଲି ପ୍ରମାଣ କରିବାକୁ ସମସ୍ତେ ଚାହାନ୍ତି, ଗାନ୍ଧୀ ମଧ୍ୟ ଚାହୁଥିଲେ । କିନ୍ତୁ ବହୁ ସମୟରେ ନିଜ ଚିନ୍ତାର ଭ୍ରାନ୍ତିକୁ ସରଳଭାବେ ସ୍ୱୀକାର କରିଯାଇ ସେ ଯୁକ୍ତିତର୍କରେ, ଅପ୍ରତ୍ୟାଶିତ ଭାବେ ବିଜୟ ହାସଲ କରିପାରୁଥିଲେ ।

ବୟସାଧିକ ଲୋକଙ୍କର ସ୍ୱଭାବ, ସେମାନେ ନିଜର ପୂର୍ବସ୍ମୃତିରେ ଆନନ୍ଦ ଅନୁଭବ କରନ୍ତି । ଲର୍ଡ଼ ଜର୍ଜଙ୍କ ସଙ୍ଗେ କଥାବାର୍ତ୍ତା କରି ଦେଖିଛି, କୌଣସି ଚଳନ୍ତି ବିଷୟରେ ମୋ ପ୍ରଶ୍ନର ଉତ୍ତର ଦେଉ ଦେଉ, ସେ ପ୍ରଥମ ମହାଯୁଦ୍ଧ ବେଳେ କିଭଳି ଯୁଦ୍ଧ-ଉଦ୍ୟମ ଚଳାଇଥିଲେ, ଓ ଏ ଶତାବ୍ଦୀର ପ୍ରାରମ୍ଭରେ କୌଣସି ସାମାଜିକ ସଂସ୍କାର କି ଭାବରେ କରାଇଥିଲେ କହି ବସନ୍ତି । କିନ୍ତୁ ଗାନ୍ଧୀଙ୍କ ସଙ୍ଗେ କଥାବାର୍ତ୍ତା କରି ଦେଖିଛି, ୭୩ ବର୍ଷ ବୟସରେ ମଧ୍ୟ, ସେ ଅତୀତ କଥାର ଆଲୋଡ଼ନ ଆଦୌ କରନ୍ତି ନାହିଁ । ତାଙ୍କ ମନ ଭବିଷ୍ୟତରେ ଆବଦ୍ଧ ଥାଏ । ବୟସର ପ୍ରଭାବ ତାଙ୍କ ଉପରେ ପଡ଼ି ନ ଥାଏ, କାରଣ ସେ ଅନନ୍ତ ଭବିଷ୍ୟତ ଗର୍ଭରେ ନେଇ ନିଜ ମନକୁ ରଖିଥାନ୍ତି । ବର୍ତ୍ତମାନର ଘଣ୍ଟା ମିନିଟ୍ ତାଙ୍କୁ ବଡ଼ ଦିଶୁଥାଏ, କାରଣ ଅନନ୍ତ କାଳର ଏହି କ୍ଷୁଦ୍ର ମାପକାଠିରେ ସେ ଅନନ୍ତ ଭବିଷ୍ୟତର ଗତି ନିର୍ଣ୍ଣୟ କରିବାକୁ ଚାହୁଥାନ୍ତି ।

ଗାନ୍ଧୀଙ୍କର ଖାଲି ଯେ ପ୍ରଭାବ ଥିଲା ତାହା ନୁହେଁ, ତାଙ୍କଠାରେ ଥିଲା ପ୍ରଭୁତ୍ୱ । ଏ ପ୍ରଭୁତ୍ୱ ସରକାରୀ କ୍ଷମତାଠାରୁ ଏକ ଦୃଷ୍ଟିରେ କମ୍ ହେଲେହେଁ, ଅନ୍ୟ ଦୃଷ୍ଟିରେ ଥିଲା ଅଧିକ । ସରକାରୀ କ୍ଷମତା ଉଦ୍ଭୁତ ହୁଏ ଗୋଟାଏ ସରକାରୀ ସଂସ୍ଥାରୁ । କିନ୍ତୁ ପ୍ରଭୁତ୍ୱ ବ୍ୟକ୍ତିଗତ ବିଭବ । ପ୍ରତିପତ୍ତିଶାଳୀ ଜନନାୟକଙ୍କଠାରେ ଏ ଦୁଇଟି ଯାକ ଗୁଣ ଅଳ୍ପ ବହୁତେ ମିଶିକରି ଥାଏ । ସ୍ୱେଚ୍ଛାଚାରୀ ଶାସକ ହାତରେ ଥାଏ କେବଳ ଶାସନତାନ୍ତ୍ରିକ କ୍ଷମତା ; ଏହାର ସବୁବେଳେ ଅପପ୍ରୟୋଗ କରିବାରୁ ସେ କାଳକ୍ରମେ ନିଜର ବ୍ୟକ୍ତି କୈନ୍ଦ୍ରିକ ପ୍ରଭୁତ୍ୱ ହରାଇ ବସେ । ଗାନ୍ଧୀ ସରକାରୀ କ୍ଷମତା ଚାହୁ ନ ଥିବାରୁ ତାଙ୍କ ବ୍ୟକ୍ତିଗତ ପ୍ରଭୁତ୍ୱ ବଢ଼ିବାରେ ଲାଗିଥିଲା । ସରକାରୀ କ୍ଷମତା ଅନ୍ୟର ଲହୁ ଲୁହରେ ପୁଷ୍ଟ ହୁଏ ; ପ୍ରଭୁତ୍ୱ ପୁଷ୍ଟ ହୁଏ ନିଜର ସେବା, ସଦ୍‌ଭାବ ଓ ଶ୍ରଦ୍ଧାରେ ।

ଦିନେ ସଂଧ୍ୟାରେ ମୁଁ ଯାଇ ମହାଦେବ ଦେଶାଇଙ୍କ ପାଖେ ବସିଲି ;

ସେ ସୂତା କାଟୁଥାନ୍ତି । ମୁଁ ତାଙ୍କୁ କହିଲି : ମୁଁ ଖୁବ୍ ଧ୍ୟାନ ଦେଇ ଗାନ୍ଧୀଙ୍କ କଥା ଶୁଣୁଛି ; ଶୁଣି ଯାହା ଲେଖୁଛି ତା'କୁ ମଧ୍ୟ ପରେ ମନୋଯୋଗ ସହ ପଢ଼ୁଛି । ଲୋକଙ୍କ ଉପରେ ତାଙ୍କର ଏତେ ପ୍ରଭାବ କିପରି ଅକ୍ଷୁଣ୍ଣ ରହିଛି ତାହା ତାଙ୍କ କଥା ଶୁଣି ଓ ମୋ ଲେଖା ପଢ଼ି, ଭାବି ବିସ୍ମିତ ହେଉଛି । ପରୀକ୍ଷାମୂଳକ ଭାବେ ମୁଁ ଗୋଟାଏ ସିଦ୍ଧାନ୍ତ କରିଛି ଯେ, ତାଙ୍କ ଭାବାବେଗ ଯୋଗୁଁ ତାଙ୍କର ଲୋକଙ୍କ ଉପରେ ଏତେ ପ୍ରଭାବ ।

ଦେଶାଇ କହିଲେ, 'ଆପଣଙ୍କ ସିଦ୍ଧାନ୍ତ ଠିକ୍ ।'

ମୁଁ ପୁଣି ପଚାରିଲି, 'କିନ୍ତୁ ଏ ଭାବାବେଗ ମୂଳରେ କ'ଣ ଅଛି ?'

ଦେଶାଇ ବୁଝାଇ ଦେଲେ, 'ଜନ୍ମତଃ ମନୁଷ୍ୟର ଯେଉଁ କାମନା, ବାସନା ଥାଏ, ତା'କୁ ସଂଯତ କରି ଉନ୍ନତ ମାର୍ଗରେ ଚାଳିତ କଲେ ଏ ଶକ୍ତି ଆସେ ।'

ମୁଁ ପଚାରିଲି, 'ମନୁଷ୍ୟର କାମଶକ୍ତିକୁ ସଂଯତ କରିବା କଥା କହୁଛନ୍ତି ?'

ସେ କହିଲେ, 'ଖାଲି କାମଶକ୍ତି ନୁହେଁ, କ୍ରୋଧ, ବ୍ୟକ୍ତିଗତ ଉଚ୍ଚାଭିଳାଷ ପ୍ରଭୃତି ସମସ୍ତ ରିପୁର ସଂଯମ .....। ଗାନ୍ଧୀ ଏ ସବୁ ପ୍ରବୃତ୍ତିକୁ ବଶୀଭୂତ କରିଛନ୍ତି, ଫଳରେ ତାଙ୍କଠାରେ ପ୍ରଭୂତ ମାନସିକ ବଳ ଓ ଭାବୋଚ୍ଛ୍ୱାସର ସଂଚାର ହୋଇଛି ।'

ଗାନ୍ଧୀଙ୍କର ଏ ଭାବୋଚ୍ଛ୍ୱାସ ମଧ୍ୟ ସଂଯତ, ଓ ଶାନ୍ତ ଭାବରେ ଜାଗ୍ରତ ଥାଏ । ତାଙ୍କ ଭାବାବେଗ ତୀବ୍ର ନ ହୋଇ ଥାଏ ପ୍ରଶାନ୍ତ, ତାଙ୍କ ଦୃଢ଼ତାରେ ଥାଏ ନମନୀୟତା, ତାଙ୍କର ଅଧୀରତାର ପରିପଟେ ଧୈର୍ଯ୍ୟର ଆବରଣ ଥାଏ । ଗାନ୍ଧୀଙ୍କ ଅନୁଚର ଓ ବ୍ରିଟିଶ କର୍ତ୍ତୃପକ୍ଷ, ତାଙ୍କ ଭାବୋଚ୍ଛ୍ୱାସ, ଦୃଢ଼ତା ଓ ଅଧୀରତାରେ ଅନେକ ସମୟରେ ଚିଡ଼ୁଥାନ୍ତି, କିନ୍ତୁ ଏହା ସଙ୍ଗେ ସଙ୍ଗେ ତାଙ୍କଠାରେ ଥିବା ନମ୍ରତା, ନମନୀୟତା, ଓ ଧୈର୍ଯ୍ୟ ଥିବାରୁ, ଗାନ୍ଧୀଙ୍କ ପ୍ରତି ସେମାନଙ୍କର ଶ୍ରଦ୍ଧା ଓ ସମ୍ମାନ କ୍ଷୁଣ୍ଣ ହୁଏ ନାହିଁ ।

ଗାନ୍ଧୀ ନିଜ କାର୍ଯ୍ୟର ସମର୍ଥନ ପାଇଁ ଆଗ୍ରହୀ ଥିଲେ; ବିଶ୍ୱବିଖ୍ୟାତ ରବୀନ୍ଦ୍ରନାଥ ତାଙ୍କ ସଙ୍ଗେ ଏକମତ ହେବାରେ ସେ ବିଶେଷ ଆନନ୍ଦିତ ହୋଇଥିଲେ । କିନ୍ତୁ ଦରକାର ମନେ କଲେ, ସେ ନିଜର ଅନ୍ତରଙ୍ଗ ସହକର୍ମୀ ଓ ସମଗ୍ର ପୃଥିବୀର ମତାମତକୁ ଅବଜ୍ଞା କରିପାରୁଥିଲେ ।

ଗାନ୍ଧୀ ଥିଲେ ଜଣେ ଚାଣୁଆ ଲୋକ । ଏ ଚାଣପଣର ମୂଳରେ ଥିଲା

ତାଙ୍କ ବ୍ୟକ୍ତିତ୍ୱର ବଳ, ଧନସମ୍ପତ୍ତିର ଦର୍ପ ନୁହେଁ ! ନିଜର ମଣିଷପଣିଆ ଅର୍ଜିବାକୁ ସେ ଚାହୁଁଥିଲେ, ଧନ ଅର୍ଜିବାକୁ ନୁହେଁ । ଆତ୍ମଜ୍ଞାନ ଲାଭ କରିବା ଫଳରେ ତାଙ୍କୁ ମିଳିଥିଲା ଆନନ୍ଦ । କାହାକୁ ବା କୌଣସିଥିକୁ ଭୟ ନ ଥିବାରୁ ସେ ସତ୍ୟପଥରେ ଚାଲି ପାରୁଥିଲେ । ନିଃସ୍ୱ ହୋଇଥିବାରୁ ସେ ନିଜର ନୀତିପାଇଁ ନିଜକୁ ବଳି ଦେଇ ପାରୁଥିଲେ ।

ବ୍ୟକ୍ତିଗତ ଆଚରଣର ନୈତିକତା ସଙ୍ଗେ ସାଧାରଣ କାର୍ଯ୍ୟର ସମନ୍ୱୟ ଗାନ୍ଧୀଙ୍କ ଜୀବନରେ ପ୍ରତିଫଳିତ ହୋଇଥିଲା । ଯେତେବେଳେ ବିବେକ ଗୃହର ସଂକୀର୍ଣ୍ଣ ବେଷ୍ଟନୀରେ ଆବଦ୍ଧ ହୋଇ ରହିଯାଇ, ନିଜର ଦୋକାନ, ଅଫିସ୍, ହାଟ ବଜାର ଓ ସ୍କୁଲଘରକୁ ନ ଆସେ ସେତିକିବେଳେ ଦୁର୍ନୀତି ପ୍ରଶ୍ରୟ ପାଏ; ନିଷ୍ଠୁରତା ଓ ସ୍ୱୈରାଚାରର ଦେଶକୁ ଆକ୍ରାନ୍ତ କରେ ।

ଗାନ୍ଧୀ ରାଜନୀତିରେ ନୀତିଶାସ୍ତ୍ରର ନିର୍ଦ୍ଦେଶ ମିଶାଇ ରାଜନୀତିକୁ ସମୃଦ୍ଧ କରିଥିଲେ । ସନାତନ ଓ ସାର୍ବଜନୀନ ମୂଲ୍ୟମାନର ଅନୁବର୍ତ୍ତୀ ହୋଇ ସେ ଦୈନନ୍ଦିନ କାର୍ଯ୍ୟ ସାଧନରେ ତତ୍ପର ଥିଲେ । ପ୍ରତ୍ୟେକ ଛୋଟ ଛୋଟ ଘଟଣାରେ ସେ ସନାତନ ସତ୍ୟର ସନ୍ଧାନ କରୁଥିଲେ । ସାଧାରଣତଃ ମନୁଷ୍ୟର ଦୈନନ୍ଦିନ କାର୍ଯ୍ୟ, ଲାଭାଲାଭର ଯେଉଁ ଗତାନୁଗତିକ ଧାରାରେ ଚାଲେ ତାହାକୁ ଛାଡ଼ି ସେ ଉଚ୍ଚତର ଧାରାରେ ଚାଲୁଥିଲେ । ବ୍ୟକ୍ତିଗତ ସ୍ୱାଚ୍ଛନ୍ଦ୍ୟ ବା ଯଶର ଆକାଂକ୍ଷାରେ ଆବଦ୍ଧ ନ ରହି ସେ ସାମାଜିକ ମଙ୍ଗଳର ପରମାଣୁକୁ ବିଦୀର୍ଣ୍ଣ କରି, ନୂତନ ଓ ପ୍ରଚଣ୍ଡ ଶକ୍ତିର ଆବିଷ୍କାର କରି ପାରିଥିଲେ । ଫଳରେ ସାମାଜିକ ଦୋଷ ଓ କୁସଂସ୍କାର ବିରୁଦ୍ଧରେ ସେ ଯେଉଁ ଅସ୍ତ୍ରପ୍ରୟୋଗ କରିବାକୁ ସମର୍ଥ ହେଉଥିଲେ, ପ୍ରାୟଶଃ ତାହାର ପ୍ରତିରୋଧ କରି ହେଉ ନ ଥିଲା । ସମସ୍ତଙ୍କଠାରେ ଯେଉଁ ଶକ୍ତି ଅନ୍ତର୍ନିହିତ ଥିଲେ ମଧ୍ୟ, ସମସ୍ତେ ଯାହାକୁ କାର୍ଯ୍ୟରେ ଲଗାଇ ପାରନ୍ତି ନାହିଁ, ସେହି ଶକ୍ତିକୁ କାର୍ଯ୍ୟରେ ଲଗାଇ ପାରିବାରେ ହିଁ ଗାନ୍ଧୀଙ୍କର ବିଶିଷ୍ଟତା ଓ ମହତ୍ତ୍ୱ ।

ରବୀନ୍ଦ୍ରନାଥ ଲେଖିଥିଲେ, 'ହୁଏତ ଗାନ୍ଧୀ (ଜୀବଦ୍ଦଶାରେ) ସଫଳ-କାମ ହେବେ ନାହିଁ । ଜନତାକୁ ଅନ୍ୟାୟମାର୍ଗରୁ ସନ୍ମାର୍ଗକୁ ଆଣିବାରେ ବୁଦ୍ଧ ଓ ଯୀଶୁଖ୍ରୀଷ୍ଟ ଯେପରି ବିଫଳ ହୋଇଥିଲେ, ଗାନ୍ଧୀ ମଧ୍ୟ ସେହିପରି ହେବେ ; କିନ୍ତୁ ଯେତିକିରେ ତାଙ୍କର ଜୀବନ ବ୍ୟର୍ଥ ହେବ ନାହିଁ । ନିଜର ଜୀବନକୁ ସେ ଚିରକାଳ ପାଇଁ ଜନତାର ଶିକ୍ଷାଳୟ କରି ଯାଇଥିବାରୁ ସେ ଚିରସ୍ମରଣୀୟ ହୋଇ ରହିବେ ।'

# ଦଶମ ପରିଚ୍ଛେଦ

## ମନର ବଳ

୧୯୪୨ ଖ୍ରୀଷ୍ଟାବ୍ଦର ମେ, ଜୁନ୍ ଓ ଜୁଲାଇ ମାସରେ ମନେ ହେଉଥିଲା, ସତେ ଯେପରି ଭାରତର ବାୟୁମଣ୍ଡଳରେ ବାୟୁର ଗୁପ ହୋଇଯିବାରୁ ଶ୍ୱାସରୁଦ୍ଧ ହୋଇ ଯାଉଛି । ବ୍ରିଟିଶ୍ ସେନାଧ୍ୟକ୍ଷମାନେ, ଆମେରିକାନ୍ ସେନାଧ୍ୟକ୍ଷ-ଯୋଶେଫ୍ ଡବଲ୍ୟୁ · ଷ୍ଟିଲ୍‌ୱେଲ୍ ନିଜ ନିଜ ସେନାର ଅବଶିଷ୍ଟ ସୈନ୍ୟଙ୍କୁ ଧରି, ହଜାର ହଜାର ଭାରତୀୟ ବାସ୍ତୁହରାଙ୍କ ସାଙ୍ଗରେ, ମାଡ଼ି ଆସୁଥିବା ଜାପାନୀଙ୍କଠାରୁ ରକ୍ଷା ପାଇବା ପାଇଁ ବର୍ମାରୁ ପଳାଇ ଆସୁଥାନ୍ତି । ଜାପାନ ମାଡ଼ି ଆସି ଭାରତର ପଡ଼ିଶାରେ ପହଞ୍ଚି ଯାଇଥାଏ । ଭାରତକୁ ଶତ୍ରୁର ଆକ୍ରମଣରୁ ରକ୍ଷା କରିବା ସକାଶ ଇଂଲଣ୍ଡ ଆପାତତଃ ଅସମର୍ଥ ହୋଇ ପଡ଼ିଥାଏ । ନିଜେ ନିତାନ୍ତ ନିରୁପାୟ ହୋଇ ପଡ଼ିଥିବାରୁ, ମତ ପ୍ରକାଶ କରିବାକୁ ସାହସ କରୁଥିବା ଭାରତୀୟମାନେ ବିରକ୍ତ ଓ ଉତ୍ତ୍ୟକ୍ତ ଦେଉଥାନ୍ତି । ଜାତି ଏତେ ବଡ଼ ସଂକଟରେ ପଡ଼ିଥାଏ; ଉଦ୍‌ବେଗ ବେଳକୁ ବେଳ ବଢ଼ୁଥାଏ; ଘୋର ବିପଦ ଆସି ଦ୍ୱାରଦେଶରେ ଉପସ୍ଥିତ; ନିଜ ଦେଶାତ୍ମବୋଧର ପରିଚୟ ଦେବାକୁ ସୁଯୋଗ ଆଗରେ ରହିଛି; ଅଥଚ ଭାରତୀୟଙ୍କର କଥା କେହି ଶୁଣିବାକୁ ନାହିଁ, ନିଜର ମନ ଅନୁସାରେ କାର୍ଯ୍ୟ କରିବାକୁ ଭାରତର କ୍ଷମତା ନାହିଁ ।

ଏ ପରିସ୍ଥିତି ଗାନ୍ଧୀଙ୍କ ପକ୍ଷରେ ଅସହ୍ୟ ହୋଇ ପଡ଼ିଲା । ଦୁଃଖ-ଦୁର୍ଦ୍ଦଶାକୁ ଆଦରି ନେବା ତାଙ୍କର ପ୍ରକୃତି-ବିରୁଦ୍ଧ । ଭାରତୀୟମାନଙ୍କୁ ନିଜର ଭାଗ୍ୟ ନିଜେ ନିର୍ଣ୍ଣୟ କରିବାକୁ ପଡ଼ିବ, ଏକଥା ସେ ନିଜର ଲକ୍ଷ ଲକ୍ଷ ଅନୁଚରଙ୍କୁ ଭଲ ରୂପେ ଶିଖାଇ ସାରିଛନ୍ତି ବୋଲି ତାଙ୍କର ଦୃଢ଼ ବିଶ୍ୱାସ ଥାଏ ।

ବ୍ରିଟିଶ୍ ସରକାରଙ୍କଠାରୁ ସ୍ୱାୟତ୍ତ ଶାସନର ପ୍ରସ୍ତାବ ଧରି କ୍ରିପ୍‌ସ୍ ସାହେବ ଆସିବାରେ ବହୁ ଭାରତୀୟଙ୍କର ହୃଦୟରେ ଆଶାର ସଂଚ୍ଚାର

ହୋଇଥିଲା । ସେମାନେ ମନେ କରିଥିଲେ, ହୁଏତ ଆତ୍ମନିୟନ୍ତ୍ରଣ କରିବାକୁ ଭାରତକୁ ଅଧିକାର ମିଳିବ । ସେ ଆଶା ତ ଏବେ ଧୂଳିସାତ୍ ହେଲା। ନିଜର ଭାଗ୍ୟ ମୀମାଂସା ହେବା ବେଳେ, ନିଜ ଦେଶର ପତନକୁ ନିଷ୍କ୍ରିୟ ଭାବେ ପଡ଼ିରହି ଚାହିଁ ଥିବାକୁ ହେବ । ସମଗ୍ର ଦେଶରେ ଉତ୍ତେଜନା ବ୍ୟାପିଗଲା ।

ପରେ ଯେଉଁ ଘଟଣା ସବୁ ଘଟିଗଲା ତାକୁ ବିଚାରକୁ ନେଲେ ପରିଷ୍କାର ଜଣା ପଡୁଛି, ୧୯୪୨, ୧୯୪୩ ବା ୧୯୪୪ରେ ଭାରତକୁ ସ୍ୱାୟତ୍ତ ଶାସନ ଦେଇଥିଲେ ଖୁବ୍ ଭଲ ହୋଇଥାନ୍ତା । କାରଣ, ଯୁଦ୍ଧ ଲାଗିଥିବା ଯାଏଁ ବ୍ରିଟେନ୍ ଓ ଅନ୍ୟାନ୍ୟ ମିତ୍ର ରାଜ୍ୟର ସୈନ୍ୟମାନେ ଭାରତରେ ରହିପାରିବେ ବୋଲି ଭାରତ ରାଜି ଥିବାରୁ, ସେତିକବେଳେ ଗୋଟିଏ ଅସ୍ଥାୟୀ ଭାରତୀୟ ସରକାରକୁ କ୍ଷମତା ଅର୍ପଣ କରିଥିଲେ, ଦଙ୍ଗା ହାଙ୍ଗାମାର ସଂଭାବନା ନ ଥାନ୍ତା କି ଭାରତୀୟ ସରକାର ଅଲଗା କରି ଜାପାନ ସଙ୍ଗେ ସନ୍ଧି କରିବାର ଆଶଂକା ନ ଥାନ୍ତା । ପ୍ରକୃତ କ୍ଷମତା ବ୍ରିଟିଶଙ୍କ ହାତରେ ହିଁ ରହିଥାନ୍ତା । ଯୁଦ୍ଧ ପରେ ୧୯୪୭ରେ ଭାରତ ସ୍ୱାଧୀନତା ପାଇବା ଫଳରେ ଯେଉଁ ଲକ୍ଷ ଲକ୍ଷ ଲୋକ ପ୍ରାଣ ହରାଇଲେ, କୋଟି କୋଟି ଲୋକ ନାନା ପ୍ରକାର ଯନ୍ତ୍ରଣା ପାଇ ଛିନ୍ନଛିନ୍ନ ହୋଇଗଲେ ତାହାର ନିରାକରଣ ହୋଇ ପାରିଥାନ୍ତା ।

ଭବିଷ୍ୟତରେ ଯେଉଁ ଦୁର୍ଗତି ହେଲା ଗାନ୍ଧୀ ତା'କୁ ଏତେବେଳୁ ଜାଣି ପାରିଥିଲେ ବୋଲି କୁହାଯାଇ ନ ପାରେ । କିନ୍ତୁ ସେ ଏତିକ ବେଶ୍ ଜାଣି ପାରିଥିଲେ ଯେ, ଶାସନସଂସ୍ଥାରେ ତୁରନ୍ତ ପରିବର୍ତ୍ତନ କରିଦେବା ନିତାନ୍ତ ପ୍ରୟୋଜନ । ତୁରନ୍ତ ସ୍ୱାଧୀନ ଜାତୀୟ ସରକାର ସ୍ଥାପନା କରିବା ନିକାଶ ସେ ଇଂଲଣ୍ଡ ଉପରେ ଯଥାସମ୍ଭବ ଚାପ ପକାଇବାକୁ ଦୃଢ଼-ସଂକଳ୍ପ ହୋଇଥିଲେ ।

ଗାନ୍ଧୀଙ୍କର ପ୍ରସ୍ତାବ ଥିଲା : 'ବ୍ରିଟିଶ ସେନାର ଗତିବିଧିରେ କୌଣସି ବାଧା ଦେବେ ନାହିଁ; କିନ୍ତୁ ଯୁଦ୍ଧ-ଉଦ୍ୟମରେ ବ୍ରିଟିଶଙ୍କ ସଂଗେ ସହଯୋଗ କରିବେ ନାହିଁ; ଜାପାନୀମାନେ ଭାରତ ଆକ୍ରମଣ କଲେ ସେମାନଙ୍କ ବିରୁଦ୍ଧରେ ସଂପୂର୍ଣ୍ଣ ଅହିଂସ ପ୍ରତିରୋଧ କରିବେ ।'

ଭାରତୀୟମାନଙ୍କ ପକ୍ଷରୁ ପ୍ରଶ୍ନ ହୋଇଥିଲା, 'ଯଦି ଜାପାନୀମାନେ ଭାରତରେ ପଶନ୍ତି, ତେବେ ଅହିଂସ ଉପାୟରେ ଆମେ ତାଙ୍କର କିଭଳି ପ୍ରତିରୋଧ କରିବା ?'

ଗାନ୍ଧୀ ହରିଜନ ପତ୍ରିକାର ୧୯୪୨, ଜୁନ୍ ୧୪ ତାରିଖ ସଂଖ୍ୟାରେ ଏହାର ଉତ୍ତର ଦେଇଥିଲେ, 'ଆକ୍ରମଣକାରୀଙ୍କୁ ଗ୍ରାସ ଓ ବାସ ଦେବାକୁ ହେବ ନାହିଁ । ସେମାନଙ୍କ ସଙ୍ଗେ କୌଣସି ପ୍ରକାର ସଂପର୍କ ରଖିବାକୁ ହେବ ନାହିଁ । ସେମାନେ ଯେପରି ଅନୁଭବ କରିବେ ଯେ, ସେମାନେ ଏଠାକୁ ଆସିବା ଭାରତବାସୀ ଚାହାନ୍ତି ନାହିଁ । କିନ୍ତୁ ପ୍ରଶ୍ନକର୍ତ୍ତା ଯେପରି କଳ୍ପନା କରିଛନ୍ତି, ସେପରି ସହଜରେ ବା ନିର୍ବିଘ୍ନରେ ଜାପାନୀମାନେ ଭାରତକୁ ଆସିବା ସଂଭବ ନୁହେଁ, ଏବଂ ଆସିଲେ ମଧ୍ୟ ନରମଭାବେ ଆମର ସହଯୋଗ ଚାହିଁବା ବି ଆଶା କରାଯାଇ ନ ପାରେ । ସେମାନେ ବନ୍ଧୁଭାବେ ଆମ ଦେଶକୁ ଆସିବେ ବୋଲି ଯେଉଁମାନେ ବିଶ୍ବାସ କରୁଛନ୍ତି ସେମାନେ ଭ୍ରାନ୍ତ······ । ସେମାନଙ୍କ ଆକ୍ରମଣର ପ୍ରତିରୋଧ କରିବାକୁ ହେବ । ଆମର ଦେଶବାସୀ ଯଦି ଜାପାନୀଙ୍କର ବର୍ବର ଆକ୍ରମଣର ସମ୍ମୁଖୀନ ହୋଇ ନ ପାରିବେ, ଯଦି ମରିବାକୁ ଡରିବେ, ତେବେ ଆକ୍ରାନ୍ତ ଅଞ୍ଚଳ ଛାଡ଼ି ପଛକୁ ପଳାଇ ଯିବାକୁ ହେବ । ସେପରି କଲେ ବାଧ୍ୟ ହୋଇ ସେମାନଙ୍କ ସେବା ବା ସାହାଯ୍ୟ କରିବାକୁ ପଡ଼ିବ ନାହିଁ ।'

୨୬ ତାରିଖ ଜୁଲାଇରେ, ସେଇଭଳିଆ ପ୍ରଶ୍ନମାନଙ୍କର ଉତ୍ତର ଦେଇ ଗାନ୍ଧୀ ଲେଖିଥିଲେ, 'ମୁଁ ବରଂ ଗୁଳି ଖାଇ ମରିବି ଜାପାନୀ, ବା ଅନ୍ୟ କୌଣସି ଶକ୍ତିଠାରେ ଆତ୍ମସମର୍ପଣ କରିବି ନାହିଁ ।' ଏ ଅବସ୍ଥାରେ ତାଙ୍କର ପରି ମୃତ୍ୟୁକୁ ଶ୍ରେୟସ୍କର ମନେ କରନ୍ତୁ ବୋଲି ସେ ବନ୍ଧୁମାନଙ୍କୁ ପରାମର୍ଶ ଦେଇଥିଲେ ।

ଗାନ୍ଧୀ ଥିଲେ ନିରାଟ ଶାନ୍ତି-ବାଦୀ । ଆକ୍ରମଣକାରୀ ସେନାକୁ ଅହିଂସ ଉପାୟରେ ପରାସ୍ତ କରିବାରେ ସଫଳ ହେବାଦ୍ୱାରା ଭାରତ ଅହିଂସାର ଗୋଟିଏ ନାହିଁ ନ ଥିବା ପ୍ରମାଣ ଦେଉ ବୋଲି ସେ ଇଚ୍ଛା କରିବାର କଥା । କିନ୍ତୁ ଦେଶ ଦେଶ ମଧ୍ୟରେ ଭୀଷଣ ମରଣାନ୍ତକ ସଂଗ୍ରାମ ଚାଲିଛି, ଏକଥା ପାସୋରି ଦେଇ ନିଜ ଆଦର୍ଶକୁ ଧରି ରହିବା ଭଳି ଅବାସ୍ତବ-ବାଦୀ ସେ ନ ଥିଲେ । ୧୯୪୨, ଜୁନ ୧୪ ତାରିଖର ହରିଜନରେ ସେ ପରିଷ୍କାର ଘୋଷଣା କରିଥିଲେ, 'ଧରି ଯଦି ଭାରତରେ ଜାତୀୟ ସରକାର ଗଢ଼ାଯାଏ, ଏବଂ ସେ ସରକାର ମୋର ପ୍ରତ୍ୟାଶା ମୁତାବକ କାର୍ଯ୍ୟ କରେ ତେବେ ଆକ୍ରମଣକାରୀ ଶକ୍ତି ବିରୁଦ୍ଧରେ ପ୍ରତିରୋଧ ଚଳାଇବା ବିଷୟରେ ଗୋଟିଏ ଚୁକ୍ତିପତ୍ର ମିଳିତ ଜାତିମାନଙ୍କ ସଙ୍ଗେ କରିବା ଏହାର ପ୍ରଥମ

କାର୍ଯ୍ୟ ହେବ । ଭାରତ କୌଣସି ଫାସିଷ୍ଟ ଶକ୍ତି ସଙ୍ଗେ ମିତ୍ରତା ରଖିବ ନାହିଁ, ଏବଂ ମିଳିତ ଜାତିମାନଙ୍କୁ ସାହାଯ୍ୟ କରିବାକୁ ଏହା ନୈତିକତା ଦୃଷ୍ଟିରୁ ବାଧ୍ୟ, ଏ ବିଷୟରେ ଭାରତର କୌଣସି ମତଦ୍ୱୈଧ ନାହିଁ ।'

ଗାନ୍ଧୀଙ୍କର ଏ ଘୋଷଣା ମିତ୍ର ପକ୍ଷର ଉତ୍ସାହପ୍ରଦ ହେବାର କଥା । ଏ ବିଷୟକୁ ଆଉ ଟିକିଏ ଖୋଲି କରି କହିବାକୁ ଲଣ୍ଡନର ରୟେଟର୍ସ ସଂବାଦ ସରବରାହ ସଂସ୍ଥା ଗାନ୍ଧୀଙ୍କୁ ଅନୁରୋଧ କରିଥିଲେ । ଗାନ୍ଧୀ ସାମୁଦ୍ରିକ ତାରବାର୍ତ୍ତାରେ କହି ପଠାଇଥିଲେ, 'ସ୍ୱାଧୀନ ଭାରତ ମିତ୍ର ପକ୍ଷର ବନ୍ଧୁ ଭାବରେ କ'ଣ କରି ପାରିବ ତାହାର ସୀମା ନିର୍ଣ୍ଣୟ କରିବା ନିଷ୍ପ୍ରୟୋଜନ । ମୋର ତ ମନରେ ଥିଲା, ଜାପାନର ଆକ୍ରମଣ ବିରୁଦ୍ଧରେ ଚୀନକୁ ରକ୍ଷା କରିବା ସକାଶ ଭାରତ ମିତ୍ର ଶକ୍ତିଙ୍କ ସଙ୍ଗେ ଚୁକ୍ତି କରିଥାନ୍ତା ।'

ତେବେ କ'ଣ ଗାନ୍ଧୀ ଯୁଦ୍ଧ-ଉଦ୍ୟମରେ ସାହାଯ୍ୟ କରିବାକୁ ରାଜି ? ନାଁ । ମିତ୍ର ପକ୍ଷର ସୈନ୍ୟମାନଙ୍କୁ ଭାରତରେ ଛାଉଣୀ ପକାଇବାକୁ ଦିଆଯିବ । ଭାରତୀୟମାନେ ବ୍ରିଟିଶ ସେନାରେ ନାମ ଲେଖାଇ ପାରିବେ, ଆନୁସଙ୍ଗିକ ସାହାଯ୍ୟ ମଧ୍ୟ କରିବାକୁ ପ୍ରସ୍ତୁତ ହେବେ । କିନ୍ତୁ ବ୍ୟକ୍ତିଗତ ଭାବେ ଯଦି ଗାନ୍ଧୀଙ୍କର ମତ ନିଆଯାଏ, ତେବେ ସେ କହିବେ, ଭାରତୀୟ ସେନାକୁ ଭାଙ୍ଗି ଦିଆଯାଉ ଏବଂ ଭାରତର ନବଗଠିତ ଜାତୀୟ ସରକାର, 'ନିଜର ସମସ୍ତ ଶକ୍ତି, ସମ୍ମାନ ଓ ସାହାଯ୍ୟ ବିନିଯୋଗ କରି ସମଗ୍ର ପୃଥିବୀରେ ଶାନ୍ତି ସ୍ଥାପନ କରିବାକୁ ସଚେଷ୍ଟ ହେଉ ।

ଏଭଳି ଘଟିବ ବୋଲି ଗାନ୍ଧୀ ନିଜେ ଆଶା କରନ୍ତି କି ? ନା । ସେ କହିଥିଲେ, ଜାତୀୟ ସରକାର ଗଢ଼ା ହେଲା ପରେ, 'ମୋର କଥା ଅରଣ୍ୟ ରୋଦନ ପରି ହୋଇଯିବ, ହୁଏତ ଜାତୀୟବାଦୀ ଭାରତ ଉନ୍ମତ୍ତ ଭାବେ ଯୁଦ୍ଧରେ ମିଶିଯିବ ।'

ଅନ୍ୟ କୌଣସି କାରଣରୁ ନ ହେଲେ ବି, ନିଷ୍କ୍ରିୟତା-ଜନିତ ନୈରାଶ୍ୟର ଉତ୍ପୀଡ଼ନରୁ ରକ୍ଷା ପାଇବା ନିମନ୍ତେ ଜାତୀୟବାଦୀ ଭାରତ ଉନ୍ମତ୍ତ ଭାବେ ଯୁଦ୍ଧରେ ମିଶି ଯାଇଥାନ୍ତା । ଏକଥା ସତ ଯେ, ନେହେରୁ, ଆଜାଦ୍ ଓ ରାଜଗୋପାଳାଚାରୀ ସ୍ୱାଧୀନତା ପାଇଁ ସ୍ୱାଧୀନ ସରକାର ଦାବି କରୁଥିଲେ; କିନ୍ତୁ ଯୁଦ୍ଧରେ ଯୋଗ ଦେବା ସକାଶ ମଧ୍ୟ ତାଙ୍କର ଅଭିପ୍ରାୟ ଥିଲା । ସେ ତିନିହେଁଯାକ ଫାସିଷ୍ଟ ଶକ୍ତିର ଘୋର ବିରୋଧୀ ଓ ସେ ବିରୋଧ

ଯୁଦ୍ଧକ୍ଷେତ୍ରରେ ଦେଖାଇବାକୁ ଉତ୍ସୁକ ଥିଲେ । ନେହେରୁ କହିଥିଲେ, 'ଆମେ ସବୁ ପ୍ରକାରେ ଫାସିଷ୍ଟ ଶତ୍ରୁଙ୍କ ସଙ୍ଗେ ଲଢ଼ିବାକୁ ତିଆର । ଅହିଂସ ଉପାୟରେ ପ୍ରତିରୋଧ କରିବୁ ; ଅସ୍ତ୍ରଶସ୍ତ୍ର ଧରି ଲଢ଼ିବୁ ; ଏ ଯୁଦ୍ଧକୁ ଜନତାର ଯୁଦ୍ଧ ବୋଲି ଘୋଷଣା କରିବୁ ; ଜନତାବାହିନୀ ଗଢ଼ିବୁ ; ଉତ୍ପାଦନ ବଢ଼ାଇବାକୁ ସବୁମତେ ଉଦ୍ୟମ କରିବୁଁ···।' କିନ୍ତୁ ଏ ସବୁ କରିବାକୁ ଯଦି ବ୍ରିଟେନ୍ ଭାରତକୁ ଅଧିକାର ନ ଦିଏ, ତେବେ ଭାରତ ଏସବୁ ଛାଡ଼ି, ସ୍ୱାଧୀନତା ସଂଗ୍ରାମକୁ ହିଁ ଚଳାଇ ରଖିବ । ନେହେରୁ ଆହୁରି ଘୋଷଣା କଲେ, 'ଏ ମୁହୂର୍ତ୍ତରେ ଆମେ ଯଦି ନିଷ୍କ୍ରିୟ ହୋଇ ରହୁ, ତେବେ ଆତ୍ମହତ୍ୟା କଲି ପରି ହେବ···। ଏପରି କଲେ ଆମ ଦେଶ ନିର୍ବୀର୍ଯ୍ୟ ହୋଇ ଧ୍ୱଂସ ହୋଇଯିବ ।' ଭାରତ ନିର୍ବୀର୍ଯ୍ୟ ହୋଇଯିବ, ଏ ଭୟ ସତତ ମନରେ ରହି ଭାରତୀୟ ନେତାମାନଙ୍କୁ କର୍ମପ୍ରେରଣା ଦେଉଥାଏ । ଏହି ବିଷୟରେ ଗାନ୍ଧୀ ମଧ୍ୟ ଅଭିଯୋଗ କରିଥିଲେ, 'ଆଜି ସମଗ୍ର ଭାରତ ହୀନବୀର୍ଯ୍ୟ ହୋଇ ଯାଇଛି ।' ପନ୍ଥା ଭିନ୍ନ ହେଲେହେଁ, ଗାନ୍ଧୀ ଓ ନେହେରୁ ଉଭୟେ ଭାରତୀୟ ଲୋକଙ୍କୁ ବୀର ଓ ଶୂର କରି ଗଢ଼ିବାକୁ ସଚେଷ୍ଟ ଥିଲେ । ଗାନ୍ଧୀ ଚାହୁଁଥିଲେ ଜନତାର ଆତ୍ମବିଶ୍ୱାସ ଜାଗ୍ରତ କରି ସେମାନଙ୍କୁ ମନରେ ବଳୀୟାନ୍ କରିବେ । ଗାନ୍ଧୀଙ୍କୁ ଦେଖା କରିବାକୁ ଯେଉଁ ଭାରତୀୟ ଓ ବୈଦେଶିକମାନେ ଯାଉଥିଲେ ସେମାନଙ୍କ ମନରେ ଗାନ୍ଧୀ ଏହି ଭାବ ଜାଗ୍ରତ କରୁଥିଲେ ।

୧୯୪୨ର ଗ୍ରୀଷ୍ମଋତୁ ଯେତୁଁ ଯେତୁଁ ଅତିକ୍ରାନ୍ତ ହେବାକୁ ବସିଲା, ତେତୁଁ ତେତୁଁ ସ୍ପଷ୍ଟ ହୋଇଗଲା ଯେ, ପ୍ରତ୍ୟାଖ୍ୟାତ କ୍ରିପସ୍ ପ୍ରସ୍ତାବରୁ, ଲଣ୍ଡନ ଦାଢ଼େ ମଧ୍ୟ ଆଗେଇବ ନାହିଁ । ଓ୍ୱାସିଂଟନରୁ କିଛି ଗୋଟାଏ ସଂକେତ ମିଳିବ ବୋଲି ନେହେରୁ ଅପେକ୍ଷା କରୁଥିଲେ । ଭାରତରେ, କ୍ରିପ୍ସ୍ ପ୍ରସ୍ତାବ ବ୍ୟର୍ଥ ହେବା ପରେ, ଆଉ ଗୋଟାଏ ଉଦ୍ୟମ ଚାଲୁ କରିବା ପାଇଁ ରୁଜ୍-ଭେଲ୍ଟ ଚର୍ଚ୍ଚିଲଙ୍କୁ ପ୍ରବର୍ତ୍ତାଇବେ ବୋଲି ସେ ଆଶା କରିଥିଲେ । ଏଣେ କଂଗ୍ରେସବାଲାଙ୍କ ମଧ୍ୟରୁ କେହି କେହି ସନ୍ଦେହ କରୁଥିଲେ ଯେ, ଏତେବେଳେ ଆଇନ୍ ଅମାନ୍ୟ କରିବାକୁ ଆହ୍ୱାନ ଦେଲେ ହୁଏତ ଲୋକେ ଚଳିବେ ନାହିଁ । ଆଉ କେହି କେହି ଆଶଂକା କରୁଥିଲେ, ଆଇନ୍ ଅମାନ୍ୟ ଏତେ-ବେଳେ ଆରମ୍ଭ କରିଦେଲେ ତାହା ଅହିଂସ ନ ରହି ହିଂସାପୂର୍ଣ୍ଣ ଆନ୍ଦୋଳନରେ ରୂପାନ୍ତରିତ ହୋଇଯିବ । ଗାନ୍ଧୀଙ୍କ ମନରେ କିନ୍ତୁ କୌଣସି

ଦ୍ୱିଧା ନ ଥାଏ । ଜାତି ଆତ୍ମପ୍ରତିଷ୍ଠା ଅର୍ଜନ କରିବା ସକାଶ, ଜୟ ପରାଜୟକୁ ଭ୍ରୂକ୍ଷେପ ନ କରି, ଆଗେଇ ଯିବାକୁ ପ୍ରସ୍ତୁତ ଅଛି ବୋଲି ଗାନ୍ଧୀ ଉପଲବ୍ଧି କରୁଥାନ୍ତି ।

କଂଗ୍ରେସ କାର୍ଯ୍ୟକାରୀ କମିଟି ଜୁଲାଇ ୧୪ ତାରିଖରେ ଓ୍ୱାର୍ଦ୍ଧାଠାରେ ବସି ସିଦ୍ଧାନ୍ତ କଲେ, 'ଭାରତରେ ବ୍ରିଟିଶ ରାଜତ୍ୱ ଅବିଳମ୍ବେ ସାଙ୍ଗ ହେବାକୁ ପଡ଼ିବ ।' ବୈଦେଶିକ ପ୍ରଭୁତ୍ୱ, 'ଯେତେ ସଦୁଦ୍ଦେଶ୍ୟପୂର୍ଣ୍ଣ ହେଲେ ବି' ଦେଶ ପକ୍ଷରେ ଅମଙ୍ଗଳକର, ଏବଂ 'ନିରବଚ୍ଛିନ୍ନଭାବେ ଅନିଷ୍ଟକର ।' କ୍ରିପ୍‌ସ୍‌ଙ୍କ ଉଦ୍ୟମ ବିଫଳ ହେବା ପରେ ଲୋକଙ୍କ ମନରେ ଯେଉଁ ନୈରାଶ୍ୟ ଜାତ ହୋଇଛି 'ତା ଫଳରେ ବ୍ରିଟେନ ବିରୁଦ୍ଧରେ ତିକ୍ତତା କ୍ଷିପ୍ର ଗତିରେ ଭାରତର ସବୁ ପ୍ରାନ୍ତରେ ବଢ଼ି ଯାଇଛି ଓ ଜାପାନୀ ସୈନ୍ୟମାନେ ଗୋଟାକ ପରେ ଗୋଟାଏ ବିଜୟ ହାସଲ କରିବାରେ ଲୋକଙ୍କର ମନରେ ଆନନ୍ଦ ବଢ଼ିବାରେ ଲାଗିଛି । ଭାରତୀୟ ଲୋକଙ୍କର ଏ ମନୋଭାବ ଦେଖି କାର୍ଯ୍ୟକାରୀ କମିଟି ଗଭୀର ଉଦ୍‌ବେଗ ଅନୁଭବ କରୁଛନ୍ତି ଏବଂ ମନେ କରୁଛନ୍ତି ଯେ, ଏ ମନୋଭାବକୁ ରୋକ ନ ଦେଲେ, ଲୋକେ ବିନା ପ୍ରତିବାଦରେ ଜାପାନର ଭାରତ ଆକ୍ରମଣକୁ ସ୍ୱାଗତ କରିନେବେ । କମିଟି କିନ୍ତୁ ଦୃଢ଼ ମତ ପୋଷଣ କରନ୍ତି ଯେ, ଭାରତ ଭୂମିରେ ସବୁ ପ୍ରକାର ଆକ୍ରମଣର ବିରୋଧ କରିବାକୁ ହେବ··· । ବ୍ରିଟେନ ପ୍ରତି ବର୍ତ୍ତମାନ ଯେଉଁ ତିକ୍ତତା ଲୋକଙ୍କ ମନରେ ବଢ଼ି ଚାଲିଛି, ତାକୁ ସଦ୍‌ଭାବରେ ରୂପାନ୍ତରିତ କରିବାକୁ କଂଗ୍ରେସ ଚାହେଁ, ଏବଂ ଫାସିଷ୍ଟଙ୍କ ବିରୁଦ୍ଧରେ ଭାରତ ମିଳିତ ଯୁଦ୍ଧ-ଉଦ୍ୟମରେ ସ୍ୱ-ଇଚ୍ଛାରେ ଯୋଗ ଦେଉ ବୋଲି ମଧ୍ୟ କଂଗ୍ରେସ ଇଚ୍ଛା କରେ··· । କିନ୍ତୁ ଭାରତ ସ୍ୱାଧୀନତାର ଦୀପ୍ତିରେ ଦୀପ୍ତିମନ୍ତ ହେଲେ ଯାଇ ଏହା ସଂଭବ ହେବ ।'

ପ୍ରସ୍ତାବରେ ଆହୁରି ମଧ୍ୟ ଉଲ୍ଲେଖ କରାଯାଇଥିଲା ଯେ, କଂଗ୍ରେସ ମିତ୍ର ଶକ୍ତିଙ୍କ ଯୁଦ୍ଧ ଉଦ୍ୟମରେ କୌଣସି ପ୍ରତିବନ୍ଧକ ସୃଷ୍ଟି କରିବାକୁ ଚାହେଁ ନାହିଁ, ତେଣୁ, 'ଭାରତରେ ମିତ୍ର ପକ୍ଷର ସେନାଛାଉଣୀ ଅବସ୍ଥାପିତ ହେବାରେ କଂଗ୍ରେସର ଆପତ୍ତି ନାହିଁ··· ।'

ପ୍ରସ୍ତାବର ଉପସଂହାରରେ ଥିଲା : ଏ ନିବେଦନ ଯଦି ଶୁଣା ନ ଯାଏ ତେବେ କଂଗ୍ରେସ 'ଅନିଚ୍ଛାସତ୍ତ୍ୱେ' ଆଇନ୍ ଅମାନ୍ୟ ଆନ୍ଦୋଳନ ଆରମ୍ଭ

କରିବାକୁ 'ବାଧ୍ୟ ହେବ' । ଏ ଆନ୍ଦୋଳନ 'ମହାତ୍ମା ଗାନ୍ଧୀଙ୍କ ନେତୃତ୍ୱରେ ପରିଚାଳିତ ହେବା ଅବଶ୍ୟଂଭାବୀ ।'

ଏ ପ୍ରସ୍ତାବକୁ ନିଖିଳ ଭାରତ କଂଗ୍ରେସ କମିଟି ଗ୍ରହଣ କରିବା ଆହୁରି ବାକୀ ଥାଏ । କାର୍ଯ୍ୟକାରୀ କମିଟି ଅପେକ୍ଷା ଏଥିରେ ଅଧିକ ସଭ୍ୟ । ଏ କମିଟିର ବୈଠକ ଅଗଷ୍ଟ ମାସର ପ୍ରଥମ ସପ୍ତାହକୁ ଡକା ହେଲା । ଇତି-ମଧ୍ୟରେ ଗାନ୍ଧୀଜୀ ସେବାଗ୍ରାମଠାରୁ 'ପ୍ରତ୍ୟେକ ଜାପାନବାସୀଙ୍କୁ' ଶିରୋନାମାରେ ଗୋଟିଏ ନିବେଦନ ପ୍ରକାଶ କଲେ । ସେ ନିବେଦନ ଆରମ୍ଭରେ ଗାନ୍ଧୀ ଲେଖିଥିଲେ, 'ବ୍ୟକ୍ତିଗତଭାବେ ଆପଣମାନଙ୍କ ପ୍ରତି ମୋ ମନରେ କୌଣସି ଅଶ୍ରଦ୍ଧା ନ ଥିଲେ ହେଁ, ଆପଣଙ୍କ ଦେଶ ଚୀନ ଆକ୍ରମଣ କରିବାରେ ମୁଁ ତୀବ୍ର ଭାବେ ବିରକ୍ତ ହୋଇଛି । ଏକଥା ସର୍ବପ୍ରଥମ ମୁଁ ମାନିନେବା ଉଚିତ ମନେ କରୁଛି··· । ଆପଣମାନେ ସାମ୍ରାଜ୍ୟ-ବାଦୀ-ସୁଲଭ ଦୁରଭିଳାଷକୁ ଖସି ଆସିଛନ୍ତି । ଏହା ଧ୍ରୁବ ସତ୍ୟ ଯେ, ଆପଣଙ୍କର ଏ ଅଭିଳାଷ ପୂର୍ଣ୍ଣ ହେବ ନାହିଁ । ଲଭ ଭିତରେ ଏତିକି ହୋଇପାରେ, ଆପଣମାନଙ୍କର ଏ ଦୁରଭିଳାଷ ଫଳରେ ଏସିଆର ବହୁ ରାଷ୍ଟ୍ର ପରସ୍ପରଠାରୁ ବିଚ୍ଛିନ୍ନ ହୋଇଯିବେ । ଏହାଦ୍ୱାରା, ଆପଣମାନଙ୍କ ଅଜାଣତରେ, ବିଶ୍ୱରାଷ୍ଟ୍ର-ସଂଘ ଓ ବିଶ୍ୱଭ୍ରାତୃତ୍ୱ ପ୍ରତିଷ୍ଠାରେ ବାଧା ଉପୁଜିବ । ବିଶ୍ୱଭ୍ରାତୃତ୍ୱ ପ୍ରତିଷ୍ଠିତ ନ ହେଲେ ମାନବଜାତିର ଭବିଷ୍ୟତ ଅନ୍ଧକାରାଚ୍ଛନ୍ନ ।'

ଭାରତୀୟ ଦୁଃସ୍ଥିତିର ସୁଯୋଗ ନେଇ, ଭାରତ ଆକ୍ରମଣ ନ କରି-ବାକୁ ଏ ନିବେଦନରେ ସେ ଟୋକିଓସ୍ଥ ଜାପାନୀ କର୍ତ୍ତାମାନଙ୍କୁ ତାଗିଦ୍ କରିଥିଲେ । ଭାରତରେ ପାଦ ଦେଲେ ଆପଣମାନେ ଭାରତ ପକ୍ଷରୁ ସ୍ୱତଃ ସ୍ୱାଗତ ସଂବର୍ଦ୍ଧନା ପାଇବେ ବୋଲି ଯଦି ଭାବି ନେଇଛନ୍ତି ତେବେ, ପରିଣାମରେ ଅତୀବ ଦୟନୀୟଭାବେ ଆପଣଙ୍କର ଏ ଭ୍ରାନ୍ତି ଦୂର ହେବ ···। ପ୍ରତିରୋଧ କରିବାକୁ ଆମ ଦେଶର ଯେତେ ଶକ୍ତି ଅଛି, ସେ ଶକ୍ତି ଆପଣଙ୍କ ବିରୁଦ୍ଧରେ ପ୍ରୟୋଗ କରିବାରେ ପଶ୍ଚାତ୍‌ପଦ ହେବୁ ନାହିଁ··· ।'

ଏହା ପରେ ସେ ବମ୍ବେ ଗଲେ । ସେଠାରେ 'ନିଉୟର୍କ ହେରାଲ୍ଡ ଟ୍ରିବ୍ୟୁନ୍'ର ପ୍ରତିନିଧି ଏ. ଟି. ଷ୍ଟୀଲ୍‌କୁ କହିଥିଲେ, 'ଯଦି ମୋତେ କେହି ବୁଝାଇ ଦେଇପାରେ ଯେ, ଯୁଦ୍ଧ ମଝିରେ ଯୁଦ୍ଧ ଉଦ୍ୟମରେ ଅନ୍ତରାୟ ନ ହୋଇ ବ୍ରିଟିଶ ସରକାର ଭାରତକୁ ସ୍ୱାଧୀନତା ଦେଇ ନ ପାରେ, ତେବେ ସେଭଳି ଲୋକର ଯୁକ୍ତି ମୁଁ ଧ୍ୟାନ ଦେଇ ଶୁଣିବାକୁ ପ୍ରସ୍ତୁତ ଅଛି ।'

ଷ୍ଟିଲ୍ ପଚାରିଲେ, 'ତାଙ୍କ ଯୁକ୍ତିରେ ଯଦି ଆପଣଙ୍କର ହୃଦ୍‌ବୋଧ ହୁଏ, ତେବେ ଆପଣ ଆନ୍ଦୋଳନ ବନ୍ଦ କରିଦେବେ ତ ?'

ଗାନ୍ଧୀ ଉତ୍ତର ଦେଲେ, 'ଅବଶ୍ୟ । ଏଥିରେ ଆଉ ପ୍ରଶ୍ନ କରିବାର କ'ଣ ଅଛି ? ମୋର ତ ଏକମାତ୍ର ଅଭିଯୋଗ ଯେ, ସବୁଯାକ ଭଲଲୋକ ଦୂରରୁ ମୋତେ ନିଦେଶ ଦେଉଛନ୍ତି, ଅଭିଶାପ ବି ଦେଉଛନ୍ତି, କିନ୍ତୁ ମୋତେ ଡାକି ପଦେ କହିଦେବାକୁ ଅନୁଗ୍ରହ କରୁନାହାନ୍ତି ।

ଲିନ୍‌ଲିଥ୍‌ଗୋ ୧୯୩୯ ଓ ୧୯୪୦ରେ ଗାନ୍ଧୀଙ୍କ ସଙ୍ଗେ ଦେଖା କରି କଥାବାର୍ତ୍ତା ହୋଇଥିଲେ । ତା'ପରେ ଆଉ ମୁଲାକାତ୍ ନାହିଁ ।

ଅଗଷ୍ଟ ୭ ତାରିଖରେ ନିଖିଳ ଭାରତ କଂଗ୍ରେସ କମିଟିର ବହୁଶତ କଂଗ୍ରେସନେତା ବୈଠକରେ ଯୋଗ ଦେବାକୁ ବମ୍ବେରେ ସମବେତ ହେଲେ । ୭ ଓ ୮ ତାରିଖ ଦୁଇଦିନ ତମାମ ଏମାନେ କାର୍ଯ୍ୟକାରୀ କମିଟି ତିଆରି କରିଥିବା ପ୍ରସ୍ତାବ ଉପରେ ଆଲୋଚନା କଲେ ଓ ମୂଳ ପ୍ରସ୍ତାବକୁ ସାମାନ୍ୟ ଅଦଳ ବଦଳ କରି ଗ୍ରହଣ କଲେ । ଏମାନେ ମୂଳ ପ୍ରସ୍ତାବରେ ଗୁଡ଼ ହୋଇଥିବା ଗୋଟିଏ କଥା ଯୋଡ଼ି ଦେଲେ : ଭାରତର ଜାତୀୟ ସରକାର ଯେତେ ଶସ୍ତ୍ରଧାରୀ ସେନା ଓ ଅହିଂସ ପ୍ରତିରୋଧକାରୀ ସଂଗ୍ରହ କରିପାରିବେ, ତାଙ୍କୁ ଲଗାଇ ଆକ୍ରମଣର ମୁକାବିଲା କରିବେ— ଏଥିରେ ଗାନ୍ଧୀଙ୍କ ମତବିରୋଧୀ ଯେଉଁ ଇଙ୍ଗିତ ଟିକିକ ରହିଲା ତାକୁ ନେହେରୁ-ଆଜାଦପନ୍ଥୀମାନେ ଯୋଡ଼ିଦେଲେ । ଆଲୋଚନା ବେଳେ ବାରିଥିବା ଗୋଟିଏ ପ୍ରତିବଂଧକ ମଧ୍ୟ ଉଠାଇ ଦେଇ ମୂଳ ପ୍ରସ୍ତାବରେ ଯୋଗ କଲେ ଯେ, ନେତାମାନେ ଗିରଫ ହେବାଦ୍ୱାରା ନିର୍ଦ୍ଦେଶ ପଠାଇବାକୁ ଅସମର୍ଥ ହେବାକୁ କର୍ମୀମାନେ ସାବଧାନ ରହିବେ ଏବଂ ଆଗରୁ ଦିଆଯାଇ-ଥିବା ସାଧାରଣ ନିର୍ଦ୍ଦେଶ ଅନୁଯାୟୀ କାର୍ଯ୍ୟ କରିବେ । ଏହି ସାଧାରଣ ନିର୍ଦ୍ଦେଶ ଥିଲା, 'ଅହିଂସା ଏହି ଆନ୍ଦୋଳନର ଏକମାତ୍ର ପ୍ରଧାନ ମାର୍ଗ… ।'

ଅଗଷ୍ଟ ୮ ତାରିଖ ରାତିର ଅବ୍ୟବହିତ ପରେ ଗାନ୍ଧୀ ନିଖିଳ ଭାରତ କଂଗ୍ରେସ କମିଟିର ସଦସ୍ୟମାନଙ୍କୁ ଭାଷଣ ଦେଇଥିଲେ । ସେ ଜୋର ଦେଇ କହିଥିଲେ, 'ଯଥାର୍ଥ ଆନ୍ଦୋଳନ ଏଇ ମୁହୂର୍ତ୍ତରେ ଆରମ୍ଭ ହୋଇ ଯାଉନାହିଁ । ଆପଣମାନେ ଆଜି ମୋ ହାତରେ କେତେକ କ୍ଷମତା ଅର୍ପଣ କରିଛନ୍ତି ମାତ୍ର । ମୋର ପ୍ରଥମ କାର୍ଯ୍ୟ ହେବ, ମୁଁ ମହାମହିମ ଭାଇସ୍‌ରୟଙ୍କୁ ଭେଟିବି ଓ କଂଗ୍ରେସ ଦାବି ଗ୍ରହଣ କରିଯିବାକୁ

ତାଙ୍କୁ ନିବେଦନ କରିବି । ଏହା କହିବାରେ ଦୁଇ ତିନି ସପ୍ତାହ ବିତି ଯାଇପାରିରେ । ଇତିମଧ୍ୟରେ ଆପଣମାନେ କହିବେ କ'ଣ ? ତାହା ମୁଁ ଆପଣମାନଙ୍କୁ କହୁଛି । ଅରିଚ ତ ସମସ୍ତଙ୍କ ପାଖେ ଅଛି···ଆପଣମାନଙ୍କୁ ପ୍ରତ୍ୟେକଙ୍କୁ ଆଉ ଟିକିଏ କିଛି କରିବାକୁ ହେବ···ଆପଣମାନେ ପୁରୁଷ, ସ୍ତ୍ରୀ ନିର୍ବିଶେଷରେ, ପ୍ରତ୍ୟେକେ ଏଇ ମୁହୂର୍ତ୍ତରୁ ନିଜକୁ ସ୍ୱାଧୀନ ବୋଲି ମନେ କରନ୍ତୁ, ଏବଂ ଏଭଳି କାର୍ଯ୍ୟ କରନ୍ତୁ ଯହିଁରୁ ଜଣାଯିବ ଯେ ଆପଣମାନେ ଏ ସାମ୍ରାଜ୍ୟବାଦର ପାଦତଳେ ଆଉ ଚପି ହୋଇ ନାହାନ୍ତି··· ।' ଏଇଠାରେ ଗାନ୍ଧୀ ବସ୍ତୁବାଦୀଙ୍କ ଚିନ୍ତାର ଧାରାକୁ ବଦଳାଇଦେଲେ । ସେମାନେ କହନ୍ତି, ବାସ୍ତବ ପରିସ୍ଥିତି ମନୋବୃତ୍ତିକୁ ନିର୍ଣ୍ଣୟ କରେ । ଗାନ୍ଧୀଙ୍କ ମତରେ ତାହା ନୁହେଁ । ମନୋବୃତ୍ତି ବାସ୍ତବ ପରିସ୍ଥିତିକୁ ବଦଳାଇ ଦେଇପାରେ । ଥରେ ସେ କହିଥିଲେ, 'ମଣିଷ ଯାହା ଭାବେ, ତାହା ହୁଏ (ମନ ଯେଉଁ, ପ୍ରଭୁ ତେଉଁ) ।'

ସଦସ୍ୟମାନେ ଶୋଇବାକୁ ଗଲେ । ଗାନ୍ଧୀ, ନେହେରୁ ଓ ଆଉ କେତେ କୋଡ଼ି ନେତାଙ୍କୁ କେତେ ଘଣ୍ଟା ପରେ—ସୂର୍ଯ୍ୟୋଦୟ ପୂର୍ବରୁ— ପୁଲିସ ନିଦରୁ ଉଠାଇ ଜେଲଖାନାକୁ ନେଇଗଲେ । ଗାନ୍ଧୀ, ୟେର-ବାଡ଼ାରେ ଥିବା ଆଗାଖାଁଙ୍କ ପ୍ରାସାଦକୁ ନିଆ ହେଲେ । ୟେର୍‌ବାଡ଼ା ପୁନା ନିକଟରେ । ଶ୍ରୀମତୀ ନାଇଡ଼ୁ, ମୀରା ବହେନ୍, ମହାଦେବ ଦେଶାଇ, ପ୍ୟାରେଲାଲ ନାୟାରଙ୍କୁ ସେତିକିବେଳେ ଗିରଫ୍ କରି ଗାନ୍ଧୀଙ୍କ ସହିତ ରଖା-ଗଲା । ତତ୍ପରଦିନ କସ୍ତୁରବା ଘୋଷଣା କଲେ ଯେ, ଗାନ୍ଧୀ ବମ୍ବେର ଯେଉଁ ସଭାରେ ଭାଷଣ ଦେବେ ବୋଲି କଥା ହୋଇଥିଲା, ସେଥିରେ ସେ ତାଙ୍କ ପରିବର୍ତ୍ତେ ଭାଷଣ ଦେବେ । ଏଇ ଘୋଷଣା କରିବାରୁ ତାଙ୍କୁ ଗିରଫ୍ କରାଗଲା । ଗାନ୍ଧୀଙ୍କୁ ଚିକିତ୍ସା ଓ ସେବା କରୁଥିବା ଡକ୍ଟର୍ ସୁଶୀଳା ନାୟାରଙ୍କ ସଙ୍ଗେ କସ୍ତୁରବାଙ୍କୁ ନେଇ ଜେଲ୍‌ଖାନାରେ ଗାନ୍ଧୀଙ୍କ ସଙ୍ଗେ ରଖାଗଲା । ବ୍ରିଟିଶ ସରକାର ଗାନ୍ଧୀଙ୍କ ସୁଖସ୍ୱାଚ୍ଛନ୍ଦ୍ୟ ପ୍ରତି ବେଶ୍ ବିଚାରଶୀଳ ହୋଇଥିଲେ । ଗାନ୍ଧୀଙ୍କ ସହିତ ଏକ ସପ୍ତାହ କଟାଇବା ପରେ ମୁଁ ବଡ଼ଲାଟଙ୍କ ସଙ୍ଗେ ସାକ୍ଷାତ କଲି, ଏବଂ ସେବାଗ୍ରାମଠାରେ ଗାନ୍ଧୀ ବଡ଼ଲାଟଙ୍କ ପାଖକୁ ଯେଉଁ ବାର୍ତ୍ତା ପଠାଇଥିଲେ ତାହା ବଡ଼ଲାଟଙ୍କୁ ଜଣାଇଲି । ଗାନ୍ଧୀ ଲିନ୍‌ଲିଥ୍‌ଗୋଙ୍କ ସଙ୍ଗେ ଦେଖା କରିବାକୁ ଇଚ୍ଛାପ୍ରକାଶ କରିଥାନ୍ତି । ଭାଇସ୍‌ରୟ ଉତ୍ତର ଦେଲେ, 'ଏ ବିଷୟ ଉଚ୍ଚ ରାଜନୀତିକ

ବସ୍ତୁରସାପେକ୍ଷ । ଏଦ୍ୱାରା ଶ୍ରେୟାଶ୍ରେୟ ବସ୍ତୁର କରି ନିଷ୍ପତ୍ତି କରିବାକୁ ହେବ । ୧୯୪୨ରେ, ଚର୍ଚ୍ଚିଲଙ୍କୁ, ଶାସନକର୍ତ୍ତୃତ୍ୱରେ ଥାଇ, ଭାରତୀୟ ଆଇନ୍ ଅମାନ୍ୟ ଆନ୍ଦୋଳନର ମୁକାବିଲା କରିବାକୁ ସର୍ବପ୍ରଥମ ସୁଯୋଗ ମିଳିଲା । ବ୍ରିଟିଶ ଗଭର୍ଣ୍ଣମେଣ୍ଟ ପ୍ରତିପକ୍ଷ ସଙ୍ଗେ ଆଲୋଚନା କରିବା ଅପେକ୍ଷା ଆନ୍ଦୋଳନକୁ ଦମନ କରିବାକୁ ଶ୍ରେୟସ୍କର ମନେ କଲେ ।

ଗାନ୍ଧୀଙ୍କୁ ଜେଲଖାନାରେ ପୂରାଇ ଜେଲଫାଟକ ବନ୍ଦ କରିଦେବା ସଙ୍ଗେ ସଙ୍ଗେ ଧ୍ୱଂସର କବାଟ ଫିଟିଗଲା । ପୋଲିସ-ଥାନା ଓ ସରକାରୀ ଅଫିସମାନଙ୍କରେ ନିଆଁ ଲଗାଇ ଦିଆଗଲା, ଟେଲିଗ୍ରାଫ୍ ତାର କଟା ହୋଇଗଲା, ରେଲରାସ୍ତାର ସଂଯୋଜକ ଗଣ୍ଠି କାଢ଼ି ନିଆଗଲା, ବ୍ରିଟିଶ ସରକାରୀ କର୍ମଚାରୀଙ୍କ ଉପରେ ଆକ୍ରମଣ ହେଲା, କେତେକଙ୍କୁ ପ୍ରାଣରେ ମାରିଦିଆଗଲା । ଧ୍ୱଂସ କରିବାକୁ ବଦ୍ଧପରିକର ଲୋକେ ଜଣ ଜଣ ହୋଇ, ଓ ଦଳବାନ୍ଧି ଦେଶ ତମାମ ବ୍ୟାପିଗଲେ । ଅଳ୍ପଦିନ ମଧ୍ୟରେ ଶକ୍ତିଶାଳୀ ଗୁପ୍ତ ଆନ୍ଦୋଳନ ଚାରିଆଡ଼େ ଗଢ଼ି ଉଠିଲା । ଅଧିକାଂଶ ସ୍ଥଳରେ ଏ ଆନ୍ଦୋଳନକୁ ନେତୃତ୍ୱ ଦେଲେ କଂଗ୍ରେସ ଦଳର ଅନ୍ୟତମ ଶାଖା ସମାଜବାଦୀ ଦଳ । ଏ ଦଳର ନେତୃବୃନ୍ଦ ଜୟ ପ୍ରକାଶ ନାରାୟଣ, ଶ୍ରୀମତୀ ଅରୁଣା ଆସଫ୍ ଅଲ୍ଲି ପ୍ରମୁଖ ଗୁପ୍ତଭାବରେ ଦେଶତମାମ ବୁଲି ବୁଲି ବିଦ୍ରୋହକୁ ତାଉ ଦେଉଥାନ୍ତି । ଏମାନେ ଥିଲେ ଗାନ୍ଧୀଜୀଙ୍କର ରାଜନୀତିକ ସଂସ୍ଥାନ, ଅଳ୍ପଦିନ ହେଲା କାର୍ଲମାର୍କସ୍‌ଙ୍କ ଦୀକ୍ଷା ନେଇଥାନ୍ତି । ବିଦ୍ରୋହ ମଚାଇ ଏମାନେ ଲୋକଦୃଷ୍ଟିରେ ଜାତୀୟ ବୀରର ଗୌରବ ପାଇଗଲେ । ଧୀର ଶାନ୍ତ ନାଗରିକମାନେ ଏମାନଙ୍କୁ ନିଜ ଘରେ ଲୁଚାଇ ରଖୁଥାନ୍ତି, ଟଙ୍କା ସାହାଯ୍ୟ କରୁଥାନ୍ତି ; ଏଣେ ପୁଲିସ ଯାଙ୍କୁ ଖୋଜି ବୁଲୁଥାନ୍ତି । ମହାମହିମ ସମ୍ରାଟ୍‌ଙ୍କର ହୁକୁମ୍‌ନାମା ଆଉ ସମସ୍ତଙ୍କ ଉପରେ ଚାଲୁ ହୋଇ ପାରିଲା ନାହିଁ, ତାଙ୍କର କର୍ମଚାରୀମାନେ, ଭାରତୀୟମାନଙ୍କଦ୍ୱାରା ଗଠିତ ଗ୍ରାମ୍ୟ, ସହର ଓ ଜିଲାର ସ୍ୱାଧୀନ ସରକାରଙ୍କ ସୀମା ଭିତରେ ଆଉ ଦେଖା ଦେଲେ ନାହିଁ । ଏହି ସ୍ୱାଧୀନ ସରକାରମାନେ ସରକାରର ଗୋଟାଏ ଗୋଟାଏ ଗୁଞ୍ଜ ମାତ୍ର ; ପ୍ରକୃତ ଶାସନକାର୍ଯ୍ୟ ଏମାନେ ବିଶେଷ କିଛି କରୁ ନ ଥିଲେ ବା କରିବାକୁ ସମର୍ଥ ନ ଥିଲେ । ଅରାଜକତା ପ୍ରଚାରରେ ମାତ୍ର ଏମାନଙ୍କର ଉପଯୋଗିତା ସୀମାବଦ୍ଧ ଥିଲା । ସେ ଯାହା ହେଉ, କେତେକ ଅଞ୍ଚଳରେ, ବିଶେଷ କରି ତିଳକଙ୍କ ଯୁଦ୍ଧପ୍ରିୟ ମହାରାଷ୍ଟ୍ର

ଅଞ୍ଚଳରେ, ୧୯୪୪ ପର୍ଯ୍ୟନ୍ତ ବ୍ରିଟିଶ୍ ସରକାରଙ୍କ ଅଫିସରମାନେ ଶାସନ-କାର୍ଯ୍ୟ ଚଳାଇବାକୁ ଫେରି ପାରି ନ ଥିଲେ ।

ଗାନ୍ଧୀ ମଧ୍ୟ ଯୁଦ୍ଧଖୋର ମନୋବୃତ୍ତି ଧରିଥାନ୍ତି । ଯେ କୌଣସି ଆନ୍ଦୋଳନ ବା ଲୋକହିତକର ଉଦ୍ୟମର କେନ୍ଦ୍ରବିନ୍ଦୁରେ ଯାଇ ପହଞ୍ଚିବାର ଅଦମ୍ୟ ସାମର୍ଥ୍ୟ ମହାତ୍ମାଙ୍କର ଥିଲା । ବନ୍ଦୀଶାଳରେ ଆବଦ୍ଧ ଥିଲେ ବି, ତାଙ୍କ ବ୍ୟକ୍ତିତ୍ୱର ପ୍ରଭାବ, ଆଗାଖାଁ ପ୍ରାସାଦର ଜନବିରଳ ହତାର ବେଷ୍ଟନୀ ଭାଙ୍ଗି ବାହାରି ପ୍ରଥମେ ବ୍ରିଟିଶ ସରକାରର ମନକୁ ଓ ପରେ ଭାରତୀୟ ଜନତାର ମନକୁ ଘେରିଗଲା ।

ଜେଲ୍‌ରେ ପ୍ରବେଶ କରିବା ମାତ୍ରେ ସେ ବମ୍ବେର ଗଭର୍ଣ୍ଣର୍ ସାର୍ ରୋଜର୍ ଲ୍ୟୁମ୍‌ଲଙ୍କ ପାଖକୁ ଖଣ୍ଡିଏ ଚିଠି ଲେଖିଲେ । ଏଥିରେ ସେ ଅଭିଯୋଗ କରିଥିଲେ ଯେ, ତାଙ୍କୁ ରେଲରୁ ଜେଲଖାନାକୁ ମଟରକାର୍‌ରେ ଅଣାଗଲା କିନ୍ତୁ ଅନ୍ୟମାନଙ୍କୁ ଟ୍ରକ୍‌ରେ ଅଣାଗଲା । କେବଳ 'ତାଙ୍କର ବିଶେଷ ଖାଦ୍ୟ ବ୍ୟତୀତ' ଅନ୍ୟ କୌଣସି ବିଷୟରେ ସେ ଅନ୍ୟ କଏଦୀଙ୍କ-ଠାରୁ ଅଧିକ ବା ବିଶେଷ ସୁବିଧା ପାଇବାକୁ ଚାହାନ୍ତି ନାହିଁ ବୋଲି ଲେଖିଥିଲେ । ସେ ଆହୁରି ଲେଖିଥିଲେ ଯେ, ଆଗାଖାଁ ପ୍ରାସାଦ ସୁପ୍ରଶସ୍ତ ସ୍ଥାନ ; ରୋଗରେ ପଡ଼ିଥିବା ସର୍ଦ୍ଦାର ପଟେଲ୍ ଏବଂ ତାଙ୍କର ସେବା କରୁଥିବା ତାଙ୍କ ଝିଅଙ୍କୁ ଏଠାକୁ ଆଣିଲେ ଭଲ ହୁଅନ୍ତା । ଶେଷରେ ସେ ଲେଖିଥିଲେ, ରେଲ୍‌ରେ ଆସିବାବେଳେ ସେ ଖବରକାଗଜରେ ସରକାରଙ୍କର ଗୋଟିଏ ବିବୃତ୍ତି ଦେଖିଥିଲେ । ସରକାର ଯେଉଁ ଦମନନୀତି ଆରମ୍ଭ କରିଛନ୍ତି ତାହାର ଯଥାର୍ଥତା ଏ ବିବୃତ୍ତିରେ ପ୍ରମାଣ କରିବାକୁ ଚେଷ୍ଟା ହୋଇଛି । 'ସେଥିରେ ଏଭଳି କେତେକ ନିତାନ୍ତ ଭୁଲ କଥାର ଉଲ୍ଲେଖ ଅଛି, ଯାହାର ପ୍ରତିବାଦ କରିବାକୁ ମୋତେ ଅନୁମତି ମିଳିବା ଉଚିତ । ଜେଲ ବାହାରେ କ'ଣ ଘଟୁଛି ତାହା ଯଦି ମୁଁ ଜାଣି ନ ପାରିବି, ତେବେ ଏ ପ୍ରତିବାଦ ଓ ଏଭଳି ଅନ୍ୟ ପ୍ରତିବାଦ ମୁଁ କରିବାକୁ ସମର୍ଥ ହେବି ନାହିଁ ।' କିନ୍ତୁ ଜେଲଖାନାରେ ତାଙ୍କୁ ଖବରକାଗଜ ଦେବାକୁ ମନା ଥିଲା ।

ଲ୍ୟୁମ୍‌ଲଙ୍କ ସେକ୍ରେଟାରୀ ଜବାବ ଦେଲେ ଯେ, ଗାନ୍ଧୀ ଖବରକାଗଜ ପାଇପାରିବେ ନାହିଁ କି ପଟେଲ ଆଗାଖାଁ ପ୍ରାସାଦକୁ ଅଣା ହୋଇ ପାରିବେ ନାହିଁ । କିନ୍ତୁ ଚାହିଁଲେ, ଗାନ୍ଧୀ ନିଜ ପରିବାରକୁ ଚିଠି ଦେଇ ପାରନ୍ତି ।

ଗାନ୍ଧୀ ଜବାବ ଦେଲେ, '୩୫ ବର୍ଷରୁ ଅଧିକ କାଳ ହେଲା ମୁଁ ମୋ ପରିବାରରେ ବାସ କରିବା ଛାଡ଼ି ଦେଲାଣି ଏବଂ ଆଶ୍ରମରେ ବାସ-କରୁଛି' ଏକଥା କ'ଣ ସରକାର ଜାଣନ୍ତି ନାହିଁ ? ହରିଜନ ମଙ୍ଗଳ, ଖଦି ଓ ଜାତୀୟଭାଷାର ବିକାଶ ନିମନ୍ତେ ସେ ଯେଉଁ ସ୍ୱେଚ୍ଛାସେବକ ଅନୁଷ୍ଠାନମାନ ଗଢ଼ିଛନ୍ତି ତାହାର ପରିଚାଳନା ବିଷୟରେ ଖବର ରଖିବାକୁ ସେ ଚାହାନ୍ତି ବୋଲି ଦାବି କଲେ । ସରକାର ଏ ଚିଠି ଉପରେ ଗୋଟାଏ ସୁବିଧା ମଞ୍ଜୁର କଲେ , ସେ ଆଶ୍ରମବାସୀଙ୍କୁ ବ୍ୟକ୍ତିଗତ ପତ୍ର ଲେଖିପାରନ୍ତି, କିନ୍ତୁ ଏଥିରେ ତାଙ୍କ ଅନୁଷ୍ଠାନମାନଙ୍କ ବିଷୟ ଲେଖା ଯିବନାହିଁ । ଗାନ୍ଧୀ ଏ ସୁବିଧା ଗ୍ରହଣ କରିବାକୁ ନାରାଜ ହେଲେ ।

ଏଥର ଗାନ୍ଧୀ ବଡ଼ଲାଟଙ୍କ ଉପରେ ଦୃଷ୍ଟି ପକାଇଲେ । ଯେଉଁ ସମୟରେ, ପ୍ରେସିଡେଣ୍ଟ ରୁଜ୍‌ଭେଲ୍‌ଟ ଭାରତୀୟ ସମସ୍ୟାରେ ହସ୍ତକ୍ଷେପ କରିବାକୁ ଆରମ୍ଭ କରିଥିଲେ ଓ ଚର୍ଚ୍ଚିଲ୍ ଜବାବ ଦେଇଥିଲେ ଯେ, ଯୁକ୍ତରାଷ୍ଟ୍ର ଆମେରିକା ଲୋକଙ୍କ ବିରକ୍ତିର ଉପଶମ କରିବାକୁ ସେ ଇସ୍ତଫା ଦେବାକୁ ପ୍ରସ୍ତୁତ, ସେଇ ସମୟରୁ, ବ୍ରିଟିଶ ସରକାରଙ୍କ ଭାରତୀୟ ନୀତି ପ୍ରତି ଆମେରିକାର ସମର୍ଥନ ପାଇବା ସକାଶ ବ୍ରିଟେନ ପକ୍ଷରୁ ଗୋଟାଏ ପ୍ରକାଣ୍ଡ ପ୍ରଚାରସଂସ୍ଥା କାର୍ଯ୍ୟକାରୀ ହୋଇଥାଏ । ଗାନ୍ଧୀ ଏକଥା ଜାଣିଥିଲେ । ଅଗଷ୍ଟ ୧୪ ତାରିଖରେ, ଭାଇସ୍‌ରୟଙ୍କ ପାଖକୁ ଜେଲରୁ ପଠାଇଥିବା ପ୍ରଥମ ଚିଠିରେ ଗାନ୍ଧୀ ଅଭିଯୋଗ କଲେ ଯେ, ଆମେରିକାରେ ପ୍ରଚାରିତ ପ୍ରଚାରପତ୍ରମାନଙ୍କରେ 'ସତ୍ୟର ଅପଳାପ ହେଉଛି ଓ ମିଥ୍ୟାସଂବାଦର ପ୍ରଚାର' ହେଉଛି । ଏ ପତ୍ରଟି ବହୁପୃଷ୍ଠା ସଂବଳିତ ହୋଇଥିଲା । ଲିନ୍‌ଲିଥ୍‌ଗୋ 'ପ୍ରିୟ ମିଷ୍ଟର୍ ଗାନ୍ଧୀ' ବୋଲି ସଂବୋଧନ କରି ଗୋଟିଏ ମାତ୍ର ଅନୁଚ୍ଛେଦ ଥିବା ଖଣ୍ଡିଏ ଚିଠିରେ ଉତ୍ତର ଦେଇ ପଠାଇଲେ । ସେ ଲେଖିଥିଲେ, 'ଆପଣ ଯେଉଁ ସମାଲୋଚନା କରିଛନ୍ତି ତାହା ଗ୍ରହଣ କରିବା ବା ସରକାରୀ ନୀତି ବଦଳାଇବା ସଂଭବ ନୁହେଁ ।'

ଗାନ୍ଧୀ ଆଉ କିଛି ନ ଲେଖି କେତେ ମାସ ତୁନି ରହିଗଲେ । ୧୯୪୨ ଖ୍ରୀଷ୍ଟାବ୍ଦର ସର୍ବାଶେଷ ଦିନ ସେ ଲେଖିଲେ, 'ପ୍ରିୟ ଲର୍ଡ଼ ଲିନ୍‌ଲିଥ୍‌ଗୋ ! ଏଟିକି ମୋର ନିତାନ୍ତ ବ୍ୟକ୍ତିଗତ ପତ୍ର··· । ଆପଣଙ୍କ ବିରୁଦ୍ଧରେ ଯେଉଁ ଭାବ ମୋ ହୃଦୟକୁ ବ୍ୟଥିତ କରୁଛି ତାକୁ ପ୍ରକାଶ ନ କରି ମୁଁ ପୁରୁଣା ବର୍ଷକୁ ସରିବାକୁ ଦେବା ଠିକ୍ ହେବ ନାହିଁ ବୋଲି ଏହା

ଲେଖୁଛି । ମୋ'ର ବିଶ୍ୱାସ ଥିଲା ଆପଣ ମୋର ବନ୍ଧୁ···। କିନ୍ତୁ ଅଗଷ୍ଟ ୯ ତାରିଖରୁ ଏ ପର୍ଯ୍ୟନ୍ତ ଯାହାସବୁ ଘଟିଗଲାଣି ତାହା ଦେଖି, ଆପଣ ମୋତେ ବନ୍ଧୁ ବୋଲି ମନେ କରୁ ନ ଥିବେ ବୋଲି ମୋର ସନ୍ଦେହ ହେଉଛି । ଆପଣଙ୍କ ସଙ୍ଗେ ମୁଁ ଯେତେ ଘନିଷ୍ଠ ସମ୍ପର୍କରେ ଆସିଥିଲି, ସେତେ ଘନିଷ୍ଠ ସମ୍ପର୍କ ଆପଣଙ୍କ ଆସନରେ ପୂର୍ବେ ବସିଥିବା କୌଣସି ବ୍ୟକ୍ତିଙ୍କ ସଙ୍ଗେ ମୋର ହୋଇ ନ ଥିଲା ।' ତା'ପରେ ତାଙ୍କ ହୃଦୟକୁ ଯାହା ଆପାତତଃ ସର୍ବାଧିକ ବ୍ୟଥା ଦେଇଥିଲା ସେ କଥା ସେ ପ୍ରକାଶ କରି ଲେଖିଲେ, 'ଅତ୍ୟୁଗ୍ର ଆଦେଶ ଦେବା ପୂର୍ବରୁ ଆପଣ ମୋତେ ଡକାଇଲେ ନାହିଁ କାହିଁକି ? ଆପଣଙ୍କ ମନରେ ଯେଉଁ ସନ୍ଦେହ ଥିଲା ତାହା ମୋତେ କହି, ମୋର କୈଫିୟତ୍ ନେଇ ପ୍ରକୃତ ତଥ୍ୟ ବୁଝିବାକୁ ଉଦ୍ୟମ ନ କଲେ କାହିଁକି ? ଅନ୍ୟମାନେ ମୋତେ ଯେଉଁ ରୂପରେ ଦେଖନ୍ତି ମୁଁ ସେଇ ରୂପରେ ନିଜକୁ ଦେଖିବାକୁ ଖୁବ୍ ସମର୍ଥ ।' ସରକାର ଗାନ୍ଧୀଙ୍କ ବିରୁଦ୍ଧରେ ଅଭିଯୋଗ କରିଥାନ୍ତି ଯେ, ଦେଶବ୍ୟାପୀ ଧ୍ୱଂସାକାଣ୍ଡ ପାଇଁ ଗାନ୍ଧୀ ଦାୟୀ ଏବଂ ଏ ସବୁକୁ ନିନ୍ଦା କରି ଗାନ୍ଧୀ ବିବୃତି ଦେବା ଉଚିତ । କେବଳ ସରକାରୀ ପକ୍ଷର କଥା ଶୁଣି ସେ ଏଭଳି ବିବୃତି ଦେବେ କିପରି ? କୈଫିୟତ ଦେବାକୁ ସ୍ୱାଧୀନତା ନ ଦେଇ ଖାଲି ଅଭିଯୋଗ ବାଢ଼ିବାଦ୍ୱାରା ତାଙ୍କର ଓ ତାଙ୍କ ଅନୁଚରମାନଙ୍କର ସଦୁଦ୍ଦେଶ୍ୟ ସତ୍ତ୍ୱେ ସମସ୍ତଙ୍କୁ ନେଇ ଜେଲ୍‌ରେ ପୂରାଇବାଦ୍ୱାରା ସରକାର, 'ନିର୍ଦ୍ଦୋଷ ଲୋକଙ୍କ ପ୍ରତି ଅନ୍ୟାୟ କରିଛନ୍ତି ।'

ତେଣୁ ଗାନ୍ଧୀ ଉପସଂହାରରେ ଜଣାଇଲେ, ସେ ସ୍ଥିର କରିଛନ୍ତି, 'ଅନଶନ କରି ନିଜ ଶରୀରକୁ କ୍ଳେଶ ଦେବେ' । ଏହା ତାଙ୍କର ଶେଷ ଉପାୟ ; କିନ୍ତୁ ଅନଶନ କରିବାକୁ ବାଧ୍ୟ ନ ହେଲେ ସେ ଆନନ୍ଦିତ ହୁଅନ୍ତେ । 'ମୋର ଗୋଟିଏ ବା ବହୁତଗୁଡ଼ିଏ ଭୁଲ ହୋଇଛି ବୋଲି ମୋତେ ବୁଝାଇ ଦେଲେ ମୁଁ ଉପଯୁକ୍ତ ପ୍ରାୟଶ୍ଚିତ୍ତ କରିବାକୁ ପ୍ରସ୍ତୁତ ଅଛି। ଇଚ୍ଛା କଲେ ଆପଣ ମୋତେ ଡକାଇ ପାରନ୍ତି···। ନ ଡକାଇଲେ ବି, ଯଦି ଆପଣଙ୍କର ସଦିଚ୍ଛା ଥାଏ , ତେବେ ପ୍ରତିକାରର ବହୁ ଉପାୟ ଦିଶିବ···। ନୂଆ ବର୍ଷ ଆମ ସମସ୍ତଙ୍କୁ ଶାନ୍ତି ବିଧାନ କରୁ !

ଆପଣଙ୍କର ଅନ୍ତରଙ୍ଗ ବନ୍ଧୁ,

ଏମ୍. କେ. ଗାନ୍ଧୀ ।'

ଏ ଚିଠି ବଡ଼ଲାଟଙ୍କୁ ମିଳିଲା ୧୪ ଦିନ ପରେ ; ଗ୍ରେଟ ଗ୍ରେଟ ଅଫିସର୍‌ମାନେ ଏହାକୁ ତାଙ୍କ ପାଖକୁ ପଠାଇବାରେ ବିଳମ୍ବ କରି ଦେଇ-ଥିଲେ । 'ବ୍ୟକ୍ତିଗତ' ବୋଲି ଉପରେ ଲେଖି ବଡ଼ଲାଟ ପ୍ରତ୍ୟୁତ୍ତର ଦେଲେ । ଏ ଚିଠିଟି ଥିଲା ଦୁଇ ପୃଷ୍ଠାର । ପ୍ରଥମେ କେତେ ଦିନ ସଂବାଦପତ୍ର ଯୋଗାଇ ଦିଆଯାଇ ନ ଥିଲେହେଁ ପରେ ଗାନ୍ଧୀଙ୍କୁ ସବୁ ଖବରକାଗଜ ମିଳୁଛି । ଘରପୋଡ଼ି ଓ ହତ୍ୟାର ଖବର ସବୁ ଗାନ୍ଧୀ ପାଉଛନ୍ତି । ଏପରି ସ୍ଥଳେ; ଲର୍ଡ଼ ଲିନ୍‌ଲିଥ୍‌ଗୋ ଲେଖିଲେ, 'ମୁଁ ଅତ୍ୟନ୍ତ ଦୁଃଖିତ ଯେ···ଏସବୁ ହିଂସାକାଣ୍ଡ ଓ ଅପରାଧ ବିରୁଦ୍ଧରେ ପଦେ ହି କଥା ଆପଣଙ୍କ ଚିଠିରେ ନାହିଁ ।' ଏ ସବୁ କାଣ୍ଡ ସହିତ ସଂପୃକ୍ତ ନୁହନ୍ତି ବୋଲି ଗାନ୍ଧୀ ଯଦି କହିବାକୁ ଚାହାନ୍ତି; ତେବେ ଲିନ୍‌ଲିଥ୍‌ଗୋ ଲେଖିଥିଲେ, 'ଏତେ ବର୍ଷ ହେଲା ମୋତେ ଭଲ କରି ଜାଣିଥିବାରୁ ଆପଣ ବିଶ୍ୱାସ କରନ୍ତୁ ଯେ, ମୁଁ ପୂର୍ବରେ ଯେପରି ଆପଣଙ୍କ ପତ୍ରମାନଙ୍କୁ ଗମ୍ଭୀର ଧ୍ୟାନ ଦେଇ ପଢ଼ୁଥିଲି ଏ ପତ୍ରକୁ ମଧ୍ୟ ସେହିପରି ପଢ଼ି ଉଚିତ ବିଚାର କରିବି···ଆପଣଙ୍କର ଅନ୍ତରଙ୍ଗ ଲିନ୍‌ଲିଥ୍‌ଗୋ ।'

ଗାନ୍ଧୀଙ୍କ ପ୍ରତ୍ୟୁତ୍ତର ଏହିପରି ଆରମ୍ଭ ହେଲା, 'ଆପଣଙ୍କଠାରୁ ଉତ୍ତର ପାଇବାର ଆଶା ମୋର ପ୍ରାୟଶଃ ଦୂର ହୋଇ ଯାଇଥିଲା । ମୋର ଅଧୀରତାକୁ କ୍ଷମା କରିବେ । ଆପଣଙ୍କ ଚିଠିପାଇ ମୋର ମନରେ ଏତିକି ସାନ୍ତ୍ୱନା ହେଉଛି ଯେ, ଆପଣଙ୍କ ଦୃଷ୍ଟିରେ ମୁଁ ଏ ପର୍ଯ୍ୟନ୍ତ ପତିତ ହୋଇ-ନାହିଁ । ଡିସେମ୍ବର ୩୧ ତାରିଖରେ ମୁଁ ଦେଇଥିବା ଚିଠିରେ ମୁଁ ଆପଣଙ୍କ ବିରୁଦ୍ଧରେ ଗୁଡ଼ାଏ ଅଭିଯୋଗ କରିଥିଲି । ଆପଣଙ୍କ ଚିଠିରେ ଆପଣ ମୋ ଉପରେ ଗୁଡ଼ାଏ ପ୍ରତିଅଭିଯୋଗ କରିଛନ୍ତି··· । ଏକଥା କହିବା ବାହୁଲ୍ୟ ଯେ, ୯ ତାରିଖ ଅଗଷ୍ଟଠାରୁ ଦେଶରେ ଯେଉଁ ଘଟଣା ସବୁ ଘଟିଯାଇଛି ସେଥିପାଇଁ ମୁଁ ବିଶେଷ ଦୁଃଖିତ । କିନ୍ତୁ ଏ ସବୁଥିପାଇଁ ଭାରତ ସରକାର ଦାୟୀ ବୋଲି ମୁଁ ଆଗରୁ କହି ରଖି ନାହିଁ କି ? ପୁଣି, ଯେଉଁ ଘଟଣା ସବୁ ଉପରେ ମୁଁ ପ୍ରଭାବ ପକାଇ ପାରିବି ନାହିଁ, ଯେଉଁ ଘଟଣା ସବୁକୁ ମୁଁ ଜବତ୍ କରି ପାରିବା ଅବସ୍ଥାରେ ନାହିଁ, ତା' ଉପରେ, ଗୋଟିଏ ପକ୍ଷରୁ ଶୁଣି ମୁଁ କୌଣସି ମତ ବ୍ୟକ୍ତ କରିବା ଉଚିତ ହୁଅନ୍ତା ନାହିଁ । ଅଗଷ୍ଟ ୮ ତାରିଖ ରାତିରେ ମୁଁ ଘୋଷଣା କରିଥିଲି ଯେ, ଆପଣଙ୍କ ସଙ୍ଗେ ସାକ୍ଷାତ କରିବାକୁ ମୁଁ ଅନୁମତି ମାଗିବି । ମୋତେ ଯଦି ଆପଣ ସାକ୍ଷାତ୍ ଦେଇଥାନ୍ତେ ଏବଂ ସେ ପର୍ଯ୍ୟନ୍ତ ଦମନନୀତିକୁ ବନ୍ଦ କରିଥାନ୍ତେ; ତେବେ

ମୋର ଦୃଢ଼ ବିଶ୍ୱାସ, ସାମୁହିକ ମଙ୍ଗଳ ବ୍ୟତୀତ କାହାର କୌଣସି ଅନିଷ୍ଟ ଘଟି ନ ଥାନ୍ତା···ସେ ଯାହାହେଉ ମୁଁ ଭୁଲ କରିଛି ବୋଲି ମୋର ହୃଦ୍‌ବୋଧ କରି ଦିଅନ୍ତୁ, ମୁଁ ଯଥୋଚିତ ପ୍ରାୟଶ୍ଚିତ୍ତ କରିବି ।'

ଲିନ୍‌ଲିଥ୍‌ଗୋ ତୁରନ୍ତ ଜବାବ ଦେଲେ, କିନ୍ତୁ ଜଣାଇ ଦେଲେ ଯେ, 'କଂଗ୍ରେସ ଆନ୍ଦୋଳନ, ଏବଂ କଂଗ୍ରେସର ପୂର୍ଣ୍ଣ ଅଧିକାରପ୍ରାପ୍ତ ନେତାଭାବେ, ବ୍ୟକ୍ତିଗତଭାବେ ଆପଣ ଦୁଃଖଦାୟକ ହିଂସାକାଣ୍ଡ ଓ ଅପରାଧମାନଙ୍କ ପାଇଁ ପୂର୍ଣ୍ଣତଃ ଦାୟୀ ବୋଲି ବିଚାରିବା ବ୍ୟତୀତ ମୋ ପକ୍ଷରେ ଅନ୍ୟ ପନ୍ଥା ନାହିଁ ।' ସରକାରଙ୍କର ଦୋଷ ବୋଲି ଗାନ୍ଧୀ ଯେଉଁ ଅଭିଯୋଗ କରିଥିଲେ ତାକୁ ବଡ଼ଲାଟ ପ୍ରତ୍ୟାଖ୍ୟାନ କଲେ । ସେ ମହାତ୍ମାଙ୍କୁ ଅନୁରୋଧ କଲେ, 'ଆପଣ ଅଗଷ୍ଟ ୮ ତାରିଖର ସିଦ୍ଧାନ୍ତକୁ ଏବଂ ସେଥିରେ ନିର୍ଦ୍ଦିଷ୍ଟ କର୍ମପନ୍ଥାକୁ ବର୍ଜନ କରନ୍ତୁ ବା ତାହିଁ ସଙ୍ଗେ ନିଜର ସଂପର୍କ ନାହିଁ ବୋଲି ମାନିଯାନ୍ତୁ ଏବଂ ଭବିଷ୍ୟତରେ ଏଭଳି ଘଟଣା ଘଟିବ ନାହିଁ ବୋଲି ମୋତେ ଦୃଢ଼ ପ୍ରତିଶ୍ରୁତି ଦିଅନ୍ତୁ···।' ଏ ପତ୍ର ଆଦୌ ବିଳମ୍ବ ନ କରି ଗାନ୍ଧୀଙ୍କ ପାଖେ ପହଞ୍ଚାଇ ଦେବା ସକାଶେ ସେ ବମ୍ବେର ଲାଟଙ୍କୁ ନିର୍ଦ୍ଦେଶ ଦେଇଥିଲେ ।

ଗାନ୍ଧୀଙ୍କ ପ୍ରତ୍ୟୁତ୍ତରରେ ଦୃଢ଼ଭାବେ ଜଣାଇ ଦିଆଗଲା ଯେ, ସରକାର ହିଁ 'ଲୋକଙ୍କୁ କେଞ୍ଚା ଦେଇ ପାଗଳ ପରି କରିଦେଲେ ।' ୮ ତାରିଖର କଂଗ୍ରେସ ସିଦ୍ଧାନ୍ତ ମିଳିତ ରାଷ୍ଟ୍ରମାନଙ୍କ ପ୍ରତି ଓ ଇଂଲଣ୍ଡ ପ୍ରତି ସଦ୍‌ଭାବ-ସଂପନ୍ନ ଥିଲା । କିନ୍ତୁ ସରକାର 'ସିଂହପରି' ହିଂସ୍ର ଭାବରେ ଆକ୍ରମଣ କଲେ । ନେତାମାନଙ୍କୁ ଅଯୌକ୍ତିକଭାବେ ଗିରଫ୍ କରିଦେବାରୁ ହିଁ ସବୁ ଗଣ୍ଡଗୋଳ ହେଲା । ଏ ସବୁ ସତ୍ତ୍ୱେ ଓ ସେ ଜୀବନ ତମାମ ଅହିଂସା ପାଇଁ ନିଜକୁ ଉତ୍ସର୍ଗ କରିଥିବା ସ୍ଥଳେ ବଡ଼ଲାଟ ହିଂସାକାଣ୍ଡ ପାଇଁ ତାଙ୍କୁଇ ଦୋଷୁଛନ୍ତି । 'ମୋ ଅନ୍ତରରେ ହେଉଥିବା ବ୍ୟଥାର ଉପଶମ ପାଇଁ ମୁଁ ଯଦି କଥା ପଦେ ବି ନ ପାଇଲି, ତେବେ ସତ୍ୟାଗ୍ରହୀପାଇଁ ଅଭିପ୍ରେତ ଏକମାତ୍ର ଆଇନ୍‌ର ହିଁ ମୁଁ ଆଶ୍ରୟ ନେବି, ଅର୍ଥାତ୍ ମୋର ଶାରୀରିକ ସାମର୍ଥ୍ୟକୁ ଚାହିଁ ମୁଁ ଅନଶନ କରିବି ।' ସେ ଜଣାଇଦେଲେ ଏହା ଫେବ୍ରୁଆରି ୯ ତାରିଖରେ ଆରମ୍ଭ ହେବ ଏବଂ ୨୧ ଦିନ ପରେ ସରିବ । 'ସାଧାରଣତଃ ଅନଶନ ବେଳେ ମୁଁ ଟିକିଏ ଲୁଣ ପକାଇ ପାଣି ପିଏ । ଆଜିକାଲି ମୋ ଦେହରେ ପାଣି ଚଳୁନାହିଁ । ତେଣୁ ମୁଁ ପାଣିକୁ ଦେହରେ ଚଳାଇ ନେବା ସକାଶେ ସେଥିରେ ଟିକିଏ ଲେମ୍ବୁରସ ପକାଇବି । ମୁଁ

ଆମରଣ ଅନଶନ କରିବାକୁ ଚାହେଁ ନାହିଁ । ଭଗବାନଙ୍କ ଅନୁଗ୍ରହରେ ମୁଁ ଏ ପରୀକ୍ଷାରେ ଉତ୍ତୀର୍ଣ୍ଣ ହେବାକୁ ଚାହେଁ । ମୋର ମନରେ ଥିବା ଉଦ୍‌ବେଗର ଯଦି ସରକାର ଉପଶମ କରନ୍ତି ତେବେ ୨୧ ଦିନ ଆଗରୁ ଅନଶନ ଭଙ୍ଗ କରାଯାଇପାରେ ।'

ଏହାର ଉତ୍ତର ଗୋଟିଏ ଲମ୍ବା ବହୁପୃଷ୍ଠାର ଚିଠିରେ ବଡ଼ଲାଟ ତୁରନ୍ତ ପଠାଇଲେ । ଶୋଚନୀୟ ଗଣ୍ଡଗୋଳ ସବୁ ପାଇଁ ସେ ତଥାପି କଂଗ୍ରେସକୁ ଦାୟୀ କଲେ । ବଡ଼ଲାଟ୍‌ଙ୍କ ଏକ୍‌ଜିକ୍ୟୁଟିଭ୍ କାଉନସିଲ୍‌ର ଘରୋଇ ବିଭାଗ ସଭ୍ୟ ସାର୍ ରେଜିନାଲ୍‌ଡ୍ ମ୍ୟାକ୍‌ସ୍ୱେଲ୍ ଆସେମ୍ବ୍ଲିରେ ଏ ବିଷୟରେ ଗୋଟିଏ ବିସ୍ତୃତ ବିବରଣୀ ଦେଇଥାନ୍ତି ; ସେ ବିବୃତିର ଏକ କପି ବନ୍ଦୀଙ୍କ ନିକଟ ପଠାଇବାକୁ ବଡ଼ଲାଟ ଆଦେଶ ଦେଲେ । ବଡ଼ଲାଟ ନିଜ ଚିଠିରେ କଂଗ୍ରେସ ବିରୁଦ୍ଧରେ ଅଭିଯୋଗ ପୁଣି ଦୃଢ଼ଭାବେ କରି କେତେକ ଘଟଣାର ପୁଂଖାନୁପୁଂଖ ବିବରଣୀ ଯୋଗାଇ-ଦେଲେ । ବଡ଼ଲାଟ ଲେଖିଲେ, 'ଶେଷରେ, ଆପଣଙ୍କ ସ୍ୱାସ୍ଥ୍ୟ ଓ ବୟସ ଦୃଷ୍ଟିରୁ, ଆପଣ କରିଥିବା ଅନଶନ-ସଂକଳ୍ପ ଯୋଗୁଁ ବିଶେଷ ଦୁଃଖିତ ହେଉଛି ।' ବଡ଼ଲାଟ ଆଶା ପ୍ରକାଶ କରିଥିଲେ ଯେ, ଗାନ୍ଧୀ ଅନଶନ ସଂକଳ୍ପ ତ୍ୟାଗ କରିବେ । ଯଦି ତ୍ୟାଗ ନ କରନ୍ତି, ତେବେ ଯାହା ଘଟିବ ସେଥିପାଇଁ ଗାନ୍ଧୀ ନିଜେ ଦାୟୀ ହେବେ । 'ମୁଁ ମନେ କରୁଛି, ରାଜନୈତିକ ଉଦ୍ଦେଶ୍ୟରେ ଅନଶନ କରିବା ଗୋଟାଏ ପ୍ରକାର ରାଜନୈତିକ ଧମକାଣି ; ନୈତିକ ଦୃଷ୍ଟିରୁ ଏଭଳି କାର୍ଯ୍ୟ ସମର୍ଥିତ ହୋଇ ନ ପାରେ । ପୂର୍ବରେ ଆପଣ ନିଜେ ଯାହା ଲେଖିଛନ୍ତି, ସେଥିରୁ ମନେହୁଏ, ଧମକାଇ ରାଜନୈତିକ ଉଦ୍ଦେଶ୍ୟ ହାସଲ କରିବା ଆପଣ ନୈତିକତା-ବିରୁଦ୍ଧ ବୋଲି ନିଜେ ମନେ କରନ୍ତି ।'

ଯୁା ବାଦ୍, ଗାନ୍ଧୀ ପୂର୍ବରେ ଲେଖିଥିଲେ ଯେ, ଯେଉଁମାନେ ତୁମକୁ ସୁଖ ପାନ୍ତି ତାଙ୍କ ବିରୁଦ୍ଧରେ ଅନଶନ କରିପାରି ; ନିରଙ୍କୁଶ ଶାସକ ବିରୁଦ୍ଧରେ ଅନଶନ କରିବା ଅନୁଚିତ ।

ଫେରନ୍ତା ଡାକରେ ଉତ୍ତର ଦେଇ ଗାନ୍ଧୀ ଜଣାଇ ଦେଲେ ଯେ, ତାଙ୍କ ଅନଶନ ସଂକଳ୍ପ ପୂର୍ବବର୍ତ୍ତୀ ତାଙ୍କର କୌଣସି ଲେଖାର ବିରୋଧୀ ନୁହେଁ । 'ମୋର ମନେ ହୁଏ, ମୋର ଏଭଳି କୌଣସି ଲେଖା ଆପଣ ନିଜେ ପଢ଼ି ନାହାନ୍ତି···ଏହା ରାଜନୈତିକ ଉଦ୍ଦେଶ୍ୟ ହାସଲ କରିବା ପାଇଁ

ଗୋଟାଏ ଧମକାଣ ବୋଲି ଆପଣ ମୋ ଅନଶନକୁ ଦୁର୍ନାମ ଦେବା ସତ୍ତ୍ୱେ, ମୁଁ ଘୋଷଣା କରୁଛି, ଆପଣଙ୍କଠାରୁ ନ୍ୟାୟ ପାଇବାକୁ ଅକ୍ଷମ ହୋଇ ମୁଁ ଏ ଅନଶନଦ୍ୱାରା, ଭଗବାନ୍‌ଙ୍କ ବିଚାରାଳୟରେ ନ୍ୟାୟ ପାଇବାକୁ ନିବେଦନ କରୁଛି । ଆପଣ ସର୍ବକ୍ଷମତାସଂପନ୍ନ ସରକାରର ପ୍ରତିନିଧି, ମୁଁ—ନିଜର ଦେଶ ସେବା କରିବା ଜରିଆରେ ସମଗ୍ର ମାନବଜାତିକୁ ସେବା କରିବାପାଇଁ ଉଦ୍ୟତ ଜଣେ କ୍ଷୁଦ୍ର କର୍ମୀ ମାତ୍ର । ଆମ ଦୁହିଙ୍କ ଭିତରୁ କାହାର କଥା ଠିକ୍ ତାହା ଆମର ଉତ୍ତରପୁରୁଷଗଣ ବିଚାର କରିବେ ।'

ଅନଶନ ଆରମ୍ଭ ହେବାକୁ ଦୁଇଦିନ ଥାଏ, ସରକାର ପକ୍ଷରୁ ପ୍ରସ୍ତାବ ଆସିଲା ଯେ, ଅନଶନ ଚାଲିଥିବା ପର୍ଯ୍ୟନ୍ତ ଗାନ୍ଧୀଙ୍କୁ ଜେଲ-ମୁକ୍ତ କରାଯିବ । ସେ ଓ ତାଙ୍କ ବନ୍ଦୀ ସହଚରମାନେ ଯହିଁ ଇଚ୍ଛା ତହିଁ ଯିବା ଆସିବା କରିପାରିବେ । ଗାନ୍ଧୀ ଏଥିରେ ରାଜି ହେଲେ ନାହିଁ । ସେ କହିଲେ, ମୋତେ ଯଦି ମୁକ୍ତ କରି ଦିଆଯିବ ତେବେ ମୁଁ ଅନଶନ ବନ୍ଦ ରଖିବି, ପୁଣି ଯେଉଁ ଦିନ ଧରିବ ସେଇଦିନ ଅନଶନ ଆରମ୍ଭ କରିବି । ଏହା ଶୁଣି ସରକାର ସର୍ବସାଧାରଣରେ ଘୋଷଣା କରିଦେଲେ ଯେ, ଫଳ ଖରାପ ହେଲେ ସେଥିପାଇଁ ଗାନ୍ଧୀ ନିଜେ ଦାୟୀ । ପୁଣି, ସରକାର ପକ୍ଷରୁ ଅନୁମତି ମିଳିଲା, ଅନଶନ ବେଳେ ତାଙ୍କର ଯେଉଁ ଡାକ୍ତରମାନଙ୍କୁ ପାଖରେ ରଖିବାକୁ ମନ, ତାଙ୍କୁ ଡକାଇ ଆଣିପାରିବେ, ଏବଂ ବାହାରୁ ତାଙ୍କର ବନ୍ଧୁମାନଙ୍କୁ ବି ଜେଲଖାନାକୁ ଡକାଇ ପାରିବେ ।

ନିର୍ଦ୍ଦିଷ୍ଟ ତାରିଖର ଦିନକ ପରେ ୧୯୪୩, ଫେବୃୟାରି ୧୦ ତାରିଖରେ ଅନଶନ ଆରମ୍ଭ ହେଲା । ପ୍ରଥମ ଦିନ ସେ ବେଶ୍ ପ୍ରଫୁଲ୍ଲ ଥିଲେ, ଏବଂ ଦୁଇଦିନ ଯାଏଁ ତାଙ୍କର ଅଭ୍ୟାସ ଅନୁସାରେ ସକାଳେ ଓ ସଂଧ୍ୟା-ବେଳେ ଅଧଘଣ୍ଟାଏ ଲେଖାଏଁ ବୁଲି ଯାଉଥିଲେ । ତା'ପରେ ହଠାତ୍ ତାଙ୍କ ସ୍ୱାସ୍ଥ୍ୟ ସଂପର୍କୀୟ ବିବୃତିମାନ ଦିନକୁ ଦିନ ଉଦ୍‌ବେଗ୍‌ସୂଚକ ହେବାକୁ ଲାଗିଲା । ଷଷ୍ଠଦିନ, ସରକାରୀ ବ୍ରିଟିଶ୍ ଡାକ୍ତରମାନଙ୍କ ସମେତ ଛଅଜଣ ଡାକ୍ତର ବିବୃତି ଦେଲେ ଯେ, ଗାନ୍ଧୀଙ୍କ ଅବସ୍ଥା ପୂର୍ବାପେକ୍ଷା ଆହୁରି 'ଅଧିକ ଖରାପ' ହୋଇଛି । ତହିଁ ଆରଦିନ ସକାଳେ ଭାଇସ୍‌ରୟଙ୍କ ଏକ୍‌ଜିକ୍ୟୁଟିଭ୍ କାଉନ୍‌ସିଲରେ ଥିବା ତିନିଜଣ ଭାରତୀୟ ସଦସ୍ୟ, ସାର୍ ହୋମି ମୋଦି, ମିଷ୍ଟର୍ ଏନ୍. ଆର୍. ସରକାର ଓ ମିଷ୍ଟର୍ ଆନେ କାଉନ୍-ସିଲ୍‌ର ସଦସ୍ୟପଦ ଇସ୍ତଫା ଦେଇ ଦେଲେ । ଏମାନେ ଯେ ବଡ଼ଲାଟଙ୍କ

କାଉନ୍‌ସିଲ୍‌ର ମେମ୍ବର ଥିଲେ, ଏଥିରୁ ଜଣାପଡ଼ୁଛି, ଏମାନେ କଂଗ୍ରେସ-ବିରୋଧୀ ଓ ସରକାରଙ୍କ ପକ୍ଷର ଲୋକ ଥିଲେ । ଚଣ୍ଡଗୋଲ ପାଇଁ ସରକାର ଗାନ୍ଧୀଙ୍କ ଉପରେ ଅଯଥା ଦୋଷାରୋପ କରିବାରୁ ଗାନ୍ଧୀଙ୍କୁ ଅନଶନ କରିବାକୁ ହୋଇଛି ବୋଲି କାରଣ ଦେଖାଇ ଏମାନେ ଇସ୍ତଫା ଦେଲେ । କେନ୍ଦ୍ର ବ୍ୟବସ୍ଥା ସଭାରେ ଗାନ୍ଧୀଙ୍କ ଅନଶନ ଉପରେ ବିତର୍କ ହେଲା । ଗାନ୍ଧୀଙ୍କୁ ଖଲାସ କର ବୋଲି ଭାରତର ସବୁ ପ୍ରାନ୍ତରୁ ସରକାରଙ୍କଠାରେ ଦାବି କରାଗଲା । ଅନଶନ ଆରମ୍ଭ ହେବାର ଏଗାରଦିନ ପରେ ଲିନ୍‌ଲିଥ୍‌ଗୋ ଗାନ୍ଧୀଙ୍କୁ ଖଲାସ କରିବାକୁ ସମସ୍ତ ଦାବି ଖାରଜ କରିଦେଲେ ।

କଲିକତାରୁ ଡକ୍‌ଟର୍ ବି. ସି. ରାୟ ଗାନ୍ଧୀଙ୍କୁ ଦେଖିବାକୁ ଆସିଲେ । ବ୍ରିଟିଶ ଡାକ୍ତରମାନେ ଜରୁରି ପରାମର୍ଶ ଦେଲେ, ଗାନ୍ଧୀଙ୍କୁ ବଞ୍ଚାଇବା ସକାଶ ଶିରାରେ ଇଞ୍ଜେକ୍‌ସନ୍‌ଦ୍ୱାରା ଖାଦ୍ୟ ଦିଆଯାଉ । ଭାରତୀୟ ଡାକ୍ତରମାନେ କହିଲେ, ଏପରି କଲେ ଗାନ୍ଧୀଙ୍କର ମୃତ୍ୟୁ ହୋଇଯିବ । ଗାନ୍ଧୀ ଇଞ୍ଜେକ୍‌ସନ୍ ଦେବାର ସବୁବେଳେ ବିରୋଧୀ ଥିଲେ । ସେ ଯୁକ୍ତି ଦେଉଥିଲେ, ପାଟିବାଟେ ଖାଉଥିବା ଔଷଧକୁ ଶରୀର ନ ରୁଚିଲେ ନିଷ୍କାସନ କରିଦେଇପାରେ, କିନ୍ତୁ ଇଞ୍ଜେକ୍‌ସନ୍ ଦେଇଦେଲେ ଶରୀର ନାଚାର । ତେଣୁ ଇଞ୍ଜେକ୍‌ସନ୍ ନେବାକୁ ସେ କସ୍ମିନ୍‌କାଳେ ମଙ୍ଗୁ ନ ଥିଲେ । ଇଂଜେକ୍‌ସନ୍ ଶରୀର ପ୍ରତି ଏକରକମ ହିଂସା ।

ଯେରୁଦାବାଡ଼ାରେ ବହୁ ଲୋକ ଆସି ଜମିଲେ । ଆଗାଖାଁ ପ୍ରାସାଦର ଅଗଣାକୁ ଜନସାଧାରଣଙ୍କୁ ପ୍ରବେଶାଧିକାର ଦିଆଗଲା । ସେ ଯେଉଁ ଘରେ ଶୋଇଥାନ୍ତି ସେ ଘରବାଟେ ଜଣକ ପଛରେ ଜଣେ ଧାଡ଼ିବାନ୍ଧି ଗାନ୍ଧୀଙ୍କୁ ଦେଖି ଦେଖି ଚାଲିଯିବାକୁ ବି ଅନୁମତି ମିଳିଲା । ଦେବଦାସ ଓ ରାମଦାସ—ତାଙ୍କର ପୁତ୍ରଦ୍ୱୟ—ଆସି ପହଞ୍ଚିଥାନ୍ତି । ବ୍ରିଟିଶ୍ କ୍ୱେକର୍ ସମ୍ପ୍ରଦାୟର ସଭ୍ୟ ହୋରେସ୍ ଆଲେକ୍‌ଜାଣ୍ଡର୍ ଆସି ଗାନ୍ଧୀଙ୍କ ମୁକ୍ତି ପାଇଁ ସରକାରଙ୍କୁ ପ୍ରବର୍ତ୍ତାଇବାକୁ ଚେଷ୍ଟା କଲେ । ତାଙ୍କ ଉଦ୍ୟମ ବ୍ୟର୍ଥ ହେଲା । ଭାଇସ୍‌ରୟଙ୍କ କାଉନ୍‌ସିଲ୍‌ରୁ ସଦ୍ୟ ଇସ୍ତଫା ଦେଇଥିବା ମିଷ୍ଟର୍ ଆନେ ମୁମୂର୍ଷୁ ମହାତ୍ମାଙ୍କୁ ଦେଖିବାକୁ ଆସିଲେ ।

ଗାନ୍ଧୀ, ଲୁଣ ଓ ଲେମ୍ବୁରସ ନ ପକାଇ ଖାଲି ପାଣି ପିଉଥିଲେ । ଅରୁଚି ହୋଇ ବାନ୍ତି ମାଡ଼ିବାରୁ ସେ ବଡ଼ କଷ୍ଟ ପାଉଥାନ୍ତି । ତାଙ୍କ ମୂତ୍ରାଶୟ କାମ କରୁ ନ ଥାଏ ; ରକ୍ତରେ ମଇଳା ମିଶି ବିଷ୍ଟଳା ହୋଇ ଯାଇଥାଏ ।

ଅନଶନର ତ୍ରୟୋଦଶ ଦିନରେ ନାଡ଼ି ଅତି କ୍ଷୀଣ ହୋଇଗଲା, ଦେହ କାକର ହୋଇଗଲା ଓ ଝାଳେଇଲା । କସ୍ତୁରବା ପବିତ୍ର ତୁଳସୀ ମୂଳରେ ବସି ଭଗବାନଙ୍କୁ ଡାକୁଥାନ୍ତି ; ସେ ଆଶଂକା କରୁଥାନ୍ତି ଯେ ଗାନ୍ଧୀଙ୍କର ଅନ୍ତିମ କାଳ ପାଖେଇ ଆସୁଛି ।

ଅବଶେଷରେ ମହାତ୍ମାଙ୍କୁ ବହୁତ ପ୍ରବର୍ତ୍ତାଇବାରେ ସେ ପିଇବା ପାଣିରେ ସଜ ମୋସାମ୍ବି ଫଳର ରସ କେତେ ଟୋପା ପକାଇ ପିଇବାକୁ ରାଜି ହେଲେ । ବାନ୍ତି ବନ୍ଦ ହୋଇଗଲା । ଗାନ୍ଧୀଙ୍କୁ ଟିକିଏ ଆରାମ ଲାଗିଲା ।

ମାର୍ଚ୍ଚ ୨ ତାରିଖରେ, ୬ ଆଉନ୍ସ୍ କମଳାରସରେ ପାଣି ମିଶାଇ ଗ୍ଲାସେ ସରବତ୍ କସ୍ତୁରବା ଗାନ୍ଧୀଙ୍କୁ ବଢ଼ାଇ ଦେଲେ । ୨୦ ମିନଟ୍‌ରେ ଗାନ୍ଧୀ ଟିକିଏ ଟିକିଏ କରି ସେତକ ପିଇଲେ । ସେ ଡାକ୍ତରମାନଙ୍କୁ ଧନ୍ୟବାଦ ଦେଉ ଦେଉ ବହୁତ କାନ୍ଦିଲେ । ପରବର୍ତ୍ତୀ ଚାରିଦିନ କାଳ ସେ କେବଳ କମଳାରସ ଖାଇ ରହିଲେ ; ତା'ପରେ ଛେଳି ଦୁଧ, ଫଳରସ ଓ ଫଳଚକଟା ପଥ୍ୟରେ ରହିଲେ ।

ଭାରତର ପ୍ରଧାନ ପ୍ରଧାନ ବେକଂଗ୍ରେସ ନେତାମାନେ ଏଥର ଗାନ୍ଧୀଙ୍କ ମୁକ୍ତି ପାଇଁ ଉଦ୍ୟମ ଆରମ୍ଭ କରିଦେଲେ ଏବଂ ଭାରତ ସଙ୍ଗେ ମିଳାମିଶା କରିବା ଉଦ୍ଦେଶ୍ୟରେ ସରକାର ଦମନନୀତି ଛାଡ଼ି ଉଦାରନୀତି ଆରମ୍ଭ କରନ୍ତୁ ବୋଲି ଦାବି କଲେ । ଗାନ୍ଧୀଙ୍କ ସଙ୍ଗେ ବନ୍ଦୀଶାଳାରେ ସାକ୍ଷାତ କରିବାକୁ ସାର୍ ତେଜବାହାଦୁର୍ ସାପ୍ରୁ ପ୍ରମୁଖ କେତେଜଣ ମୁଖ୍ୟ ନେତା ସରକାରଙ୍କୁ ଅନୁମତି ମାଗିଲେ । ଲିନ୍‌ଲିଥ୍‌ଗୋ ନାସ୍ତି କରିଦେଲେ ।

ପୂର୍ବେ ଆମେରିକା ଯୁକ୍ତରାଷ୍ଟ୍ରର ଅଣ୍ଡର୍ ସେକ୍ରେଟାରି ଅବ୍ ଷ୍ଟେଟ୍ ଥିବା ଉଇଲିଅମ୍ ଫିଲିପ୍‌ସ୍, ରୁଜ୍‌ଭେଲ୍ଟଙ୍କ ବ୍ୟକ୍ତିଗତ ଦୂତ ହୋଇ ଭାରତରେ ଥିଲେ । ସେ ଏପ୍ରିଲ୍ ୨୫ ତାରିଖରେ ସ୍ୱଦେଶକୁ ବାହୁଡ଼ିବା ପୂର୍ବରୁ ବୈଦେଶିକ ସମ୍ବାଦପତ୍ର-ପ୍ରତିନିଧିମାନଙ୍କୁ କହିଲେ, 'ମିଷ୍ଟର୍ ଗାନ୍ଧୀଙ୍କ ସଙ୍ଗେ ଦେଖା କରି ଟିକିଏ କଥାବାର୍ତ୍ତା ହେବାକୁ ମୋର ଖୁବ୍ ଇଚ୍ଛା ଥିଲା । ସଂପୃକ୍ତ କର୍ତ୍ତୃପକ୍ଷଙ୍କୁ ମୁଁ ଏଥିପାଇଁ ଅନୁମତି ମାଗିଥିଲି କିନ୍ତୁ ସେମାନେ କହିଲେ, ଗାନ୍ଧୀଙ୍କ ସଙ୍ଗେ ଦେଖା କରିବା ସକାଶ ଅନୁମତି ସେମାନେ ଦେଇ-ପାରିବେ ନାହିଁ ।'

ଲିନ୍‌ଲିଥ୍‌ଗୋଙ୍କ ବ୍ୟବହାର ଯୋଗୁଁ ଗାନ୍ଧୀଙ୍କ ମନରେ ଅତି-ମାତ୍ରାରେ ତିକ୍ତଭାବ ହୋଇ ଯାଇଥିଲା ; ସାଧାରଣତଃ କାହା ପ୍ରତି ତାଙ୍କ ମନରେ ଏଭଳି ତିକ୍ତତା ଦେଖାଯାଏ ନାହିଁ । ତେଣୁ ଲିନ୍‌ଲିଥ୍‌ଗୋ ଭାରତ ଛାଡ଼ିବାକୁ ପ୍ରସ୍ତୁତ ହେଉଥିବା ବେଳେ, ୧୯୪୩ ସେପ୍‌ଟେମ୍ବର ୨୭ ତାରିଖରେ ଗାନ୍ଧୀ ତାଙ୍କ ପାଖକୁ ଏ ପତ୍ର ଖଣ୍ଡି ଲେଖିଥିଲେ । (ବଡ଼ଲାଟମାନେ ସାଧାରଣତଃ ପାଞ୍ଚବର୍ଷ ପାଇଁ ଆସନ୍ତି । ଯୁଦ୍ଧକାଳୀନ ଜରୁରି ଅବସ୍ଥା ଯୋଗୁଁ ଲିନ୍‌ଲିଥ୍‌ଗୋଙ୍କ ରହଣିକାଳ ପାଞ୍ଚବର୍ଷରୁ ବଢ଼ିଯାଇଥିଲା । ଶେଷରେ ଏଇ ସମୟକୁ ସେ ବିଦାୟ ନେଲେ ) !

ପ୍ରିୟ ଲର୍ଡ୍ ଲିନ୍‌ଲିଥ୍‌ଗୋ, ଆପଣ ଭାରତରୁ ବିଦାୟ ନେବାର ପ୍ରାକ୍‌କାଳରେ ଆପଣଙ୍କୁ ପଦେ କହିବାକୁ ମନ କରୁଛି ।

ମୁଁ ବହୁ ଉଚ୍ଚପଦବୀ-ପ୍ରାପ୍ତ ରାଜପୁରୁଷଙ୍କ ସଙ୍ଗେ ପରିଚିତ ହେବାର ସୌଭାଗ୍ୟ ପାଇଛି । କିନ୍ତୁ ଆପଣଙ୍କ ଯୋଗୁଁ ମୋତେ ଯେତେ ଗଭୀର ମନସ୍ତାପ ମିଳିଛି, ଆଉ କାହାରିଠାରୁ ସେତେ ମିଳି ନ ଥିଲା । ଦିନେ ଯାହାକୁ ଆପଣ ବନ୍ଧୁ ବୋଲି ଗ୍ରହଣ କରିଥିଲେ ସେ ଭଳି ଜଣେ ଲୋକ ବିରୁଦ୍ଧରେ ବି ଆପଣ ଅସତ୍ୟକୁ ପ୍ରଶ୍ରୟ ଦେଇପାରିଲେ, ଏକଥା ଭାବିଲେ ମୋ ମନରେ ଗଭୀର ଦୁଃଖ ହେଉଛି । ମୋର ଆଶା, ଓ ମୁଁ ଭଗବାନଙ୍କୁ ଏଥିପାଇଁ ପ୍ରାର୍ଥନା କରୁଛି, ଯେ ଏପରି ଦିନ ଆସିବ ଯେତେବେଳେ କି ଭଗବାନ୍‌ଙ୍କ କୃପାରେ ଆପଣ ଉପଲବ୍‌ଧି କରିବେ, ଆପଣ ଗୋଟାଏ ମହାଜାତିର ପ୍ରତିନିଧି ହୋଇ ସୁଦ୍ଧା ଘଟଣା-ଚକ୍ରରେ ଗୋଟାଏ ପ୍ରକାଣ୍ଡ ଭୁଲ କରି ବସିଥିଲେ । ଆପଣଙ୍କ ପ୍ରତି ସଦ୍‌ଭାବ ରଖି, ମୁଁ ଅଦ୍ୟାପି ଆପଣଙ୍କର ବନ୍ଧୁ ହୋଇ ରହିଛି ।

ଏମ୍. କେ. ଗାନ୍ଧୀ

ଲିନ୍‌ଲିଥ୍‌ଗୋ ଅକ୍‌ଟୋବର ୭ ତାରିଖରେ ଏହାର ଉତ୍ତର ଦେଲେ :

ପ୍ରିୟ ମିଷ୍ଟର୍ ଗାନ୍ଧୀ, ଆପଣଙ୍କ ସେପ୍‌ଟେମ୍ବର ୨୭ ତାରିଖ ଚିଠି ମୋର ହସ୍ତଗତ ହୋଇଛି । ମୋର କୌଣସି କଥା ଓ କାର୍ଯ୍ୟ ଫଳରେ ଆପଣଙ୍କ ମନରେ ଯେପରି ଭାବ ଜାତ ହୋଇଥିବାର ଆପଣ ଲେଖିଛନ୍ତି, ସେପରି ଭାବ ଜାତ ହୋଇଥିବାରୁ ମୁଁ ବାସ୍ତବିକ ଦୁଃଖିତ । ଯଥାସମ୍ଭବ ନମ୍ରଭାବରେ ଆପଣଙ୍କୁ ଏତିକି କହିବାକୁ ଆପଣ ନିଶ୍ଚୟ ଅନୁମତି ଦେବେ

ଯେ, ଯେଉଁ ଘଟଣାବଳୀକୁ ଆପଣ ଯେଉଁ ରୂପରେ ଅର୍ଥ କରିଛନ୍ତି, ମୁଁ ସେ ଘଟଣାବଳୀର ସେ ଅର୍ଥ ଗ୍ରହଣ କରିବାକୁ ନିତାନ୍ତ ଅସମର୍ଥ । ଏ କଥା ଆପଣଙ୍କୁ ପରିଷ୍କାର ଜଣାଇଦେବାକୁ ଚାହେଁ ।

ସମୟକ୍ରମେ ଓ ଦୀର୍ଘ ଅନୁଧ୍ୟାନ ଫଳରେ ଲୋକର ଚିନ୍ତା ଓ ଭାବଧାରାର ସଂଶୋଧନ ହୁଏ ବୋଲି ଆପଣ ଯାହା ସୂଚାଇଛନ୍ତି, ତାହା ଯଥାର୍ଥ—କୌଣସି ବିଜ୍ଞବ୍ୟକ୍ତି ଏହା ଅସ୍ୱୀକାର କରି ପାରିବ ନାହିଁ । କିନ୍ତୁ ସମୟ ଓ ଦୀର୍ଘ ଅନୁଧ୍ୟାନ ସବୁ ସମୟରେ ସମସ୍ତଙ୍କ ପ୍ରତି, ଫଳପ୍ରଦ ହୁଏ ।

ଆପଣଙ୍କର ଅନ୍ତରଙ୍ଗ, ଲିନ୍‌ଲିଥ୍‌ଗୋ ।

ଅନଶନ ପୂର୍ବରୁ ଓ ପରେ ଗାନ୍ଧୀ ଖୁବ୍ ଲମ୍ବା ଲମ୍ବା ଚିଠି ଲେଖିଥିଲେ । ଏଥିରୁ କେତୋଟି ତ ପୁସ୍ତିକା ଆକାର ହୋଇଥିଲା । ଏ ଚିଠି ସବୁ ପଠାଯାଇଥିଲା ସାର୍ ରେଜିନାଲ୍ଡ୍ ମ୍ୟାକ୍‌ସ୍‌ୱେଲ, ଲର୍ଡ଼ (ପୂର୍ବେ ସାର୍ ହରବର୍ଟ) ସାମୁଏଲ୍ ପ୍ରମୁଖ କେତେକଙ୍କ ପାଖକୁ । ଭାରତର ଅବସ୍ଥା ଓ ସେଥିରେ ଘଟୁଥିବା ଘଟଣାମାନଙ୍କ ବିଷୟରେ ସର୍ବସାଧାରଣରେ ସରକାର ପକ୍ଷରୁ ଯାହା ପ୍ରଚାର କରାଯାଉଥିଲା, ତାହାର ପ୍ରତିବାଦ କରିବା ଏ ପତ୍ରାବଳୀର ଉଦ୍ଦେଶ୍ୟ ଥିଲା । ଏଥିଭିତରୁ କୌଣସି ଚିଠି ସର୍ବସାଧାରଣରେ ପ୍ରକାଶିତ ହୋଇ ନ ଥିଲା ; ଓ ୧୯୪୩, ମେ ୧୫ ତାରିଖରେ ସାମୁଏଲ୍‌ଙ୍କ ପାଖକୁ ଲେଖା ହୋଇଥିବା ଚିଠି ଖଣ୍ଡି ୧୯୪୪, ଜୁଲାଇ ୨୫ ତାରିଖ ପର୍ଯ୍ୟନ୍ତ ତାଙ୍କ ପାଖରେ ପହଞ୍ଚି ପାରି ନ ଥିଲା । ଆଦ୍ୟପ୍ରାନ୍ତ ଗାନ୍ଧୀ ବ୍ୟାଖ୍ୟାନ କରୁଥିଲେ ଯେ, 'ଭାରତରେ ଘଟିଥିବା ଦୁର୍ଘଟଣାମାନଙ୍କ ସକାଶ ସେ ଦାୟିତ୍ୱ ଗ୍ରହଣ କରି ପାରିବେ ନାହିଁ' ; ଦ୍ୱିତୀୟତଃ ସେ କେବେହେଲେ ବ୍ରିଟିଶ୍‌ଙ୍କ ବିରୋଧୀ ବା ଜାପାନୀଙ୍କର ସପକ୍ଷ ନ ଥିଲେ ; ପୁଣି, ସରକାର ବିରୁଦ୍ଧରେ କୌଣସି କାର୍ଯ୍ୟପନ୍ଥା ଗ୍ରହଣ କରିବାରୁ ତାଙ୍କୁ ନିବର୍ତ୍ତାଇ ହୋଇଥାନ୍ତା ।

ପ୍ରକୃତ ତଥ୍ୟ ହେଉଛି : ଗାନ୍ଧୀ ଆଇନ୍ ଅମାନ୍ୟ ଆନ୍ଦୋଳନ (୧୯୪୨, ଅଗଷ୍ଟରେ) କାର୍ଯ୍ୟତଃ ଆରମ୍ଭ କରି ନ ଥିଲେ । ଆଇନ୍ ଅମାନ୍ୟ ଆନ୍ଦୋଳନ ଚାଲୁ କରିବାକୁ କଂଗ୍ରେସ ତାଙ୍କୁ ଅଧିକାର ଦେଇଥିଲା ମାତ୍ର । ଗାନ୍ଧୀ ପରିଷ୍କାର ଘୋଷଣା କରିଥିଲେ ଯେ ସେ ଆଦେଶ ନ ଦେବା ପର୍ଯ୍ୟନ୍ତ ଆନ୍ଦୋଳନ ଆରମ୍ଭ ହେବ ନାହିଁ । ପ୍ରଥମେ ସେ ଭାଇସରୟଙ୍କ ସଙ୍ଗେ ସାକ୍ଷାତ୍ କରିବାକୁ ଅନୁମତି ମାଗିବେ । ଦେଶ ଉତ୍ତେଜିତ ଅବସ୍ଥାରେ ଥାଏ ;

ଗାନ୍ଧୀ ଏ କଥା ଜାଣିଥିଲେ ; ହୁଏତ ସେ ଦାଣ୍ଡି ଲବଣଯାତ୍ରା ପରି ଏଭଳି ଗୋଟିଏ ଆଇନ୍ ଅମାନ୍ୟ ଆନ୍ଦୋଳନ ଆରମ୍ଭ କରିଥାନ୍ତେ, ଯଦ୍ଦ୍ୱାରା ବଡ଼ ଧରଣର ହିଂସାକାଣ୍ଡମାନ ଦେଶବ୍ୟାପୀ ହୋଇ ପାରି ନ ଥାନ୍ତା । ଗାନ୍ଧୀଙ୍କୁ ଯଦି ଜେଲଖାନାକୁ ନ ନେଇ ବାହାରେ ରହିବାକୁ ଦିଆ ଯାଇଥାନ୍ତା ତେବେ ସଂପତ୍ତି ନଷ୍ଟ କରିବା ଓ ନରହତ୍ୟା କରିବାରୁ ସେ ନିଜର ଅନୁଚରମାନଙ୍କୁ ନିବର୍ତ୍ତାଇ ପାରିଥାନ୍ତେ । ହୁଏତ ସେ ନିଜ ଅନୁଚରମାନଙ୍କ ଦୁର୍ବୃତ୍ତିର ପ୍ରତିବାଦରେ ଅନଶନ କରିଥାନ୍ତେ । ନିକୁଛପକ୍ଷେ ସେ ଦେଶବ୍ୟାପୀ ହିଂସାକାଣ୍ଡକୁ ରୋକି ଦେଇପାରିଥାନ୍ତେ । ସେ ଜେଲ ବାହାରେ ରହିବା-ଦ୍ୱାରା, ଯାହା ସବୁ ଘଟିଗଲା ତହିଁରୁ ଅଧିକ ହିଂସାକାଣ୍ଡ କଦାପି ଘଟି ନ ଥାନ୍ତା । ଗାନ୍ଧୀଙ୍କୁ ତାଲା ଠୁକି ଜେଲ ଭିତରେ ରଖି ପାରିଲେ—ଏହି ଆତ୍ମ-ସନ୍ତୋଷ ମାତ୍ର ବ୍ରିଟିଶ ସରକାର ପାଇଲେ । ଏ ଆତ୍ମସନ୍ତୋଷ ସଙ୍ଗେ ସଙ୍ଗେ ଗାନ୍ଧୀଙ୍କୁ ଜେଲରେ ରଖିଥିବାରୁ ବେଳେ ବେଳେ ସରକାରଙ୍କର ମୁଣ୍ଡବ୍ୟଥା ହେଉଥାଏ । ଏଥିରୁ ଅଧିକ କୌଣସି ଲାଭ ବ୍ରିଟିଶ ସରକାର ପାଇ ପାରିଲେ ନାହିଁ । ଗାନ୍ଧୀ ଜେଲମୁକ୍ତ ହୋଇଥିଲେ ବହୁ ଭାରତୀୟଙ୍କର ମନୋବୃତ୍ତି ଶାନ୍ତ ହୋଇ ରହିଥାନ୍ତା । ଗାନ୍ଧୀଙ୍କୁ ଗିରଫ କରିଦେବାରୁ ଏମାନେ ଉତ୍ତ୍ୟକ୍ତ ହୋଇଗଲେ । ଗାନ୍ଧୀଙ୍କୁ ଗିରଫ୍ କରିବାଦ୍ୱାରା, ଲୋକ-ସାଧାରଣଙ୍କର ଥିବା ସନ୍ଦେହ ଦୃଢ଼ୀଭୂତ ହୋଇଗଲା ଯେ, ଇଂଲଣ୍ଡ ଭାରତରୁ ତା'ର ନିରଙ୍କୁଶ ଅଧିକାର ଛାଡ଼ିବାକୁ ଚାହେନାହିଁ । ସେଇ ହେତୁ ବିପ୍ଳବ ଏଭଳି ଉତ୍କଟ ହୋଇଗଲା । ୧୯୪୩ରେ ବଙ୍ଗ ଦୁର୍ଭିକ୍ଷ ଯୋଗୁଁ ବିପ୍ଳବର ଉତ୍କଟତା ଆହୁରି ବଢ଼ିଗଲା । ସରକାରଙ୍କ ନିଜ ହିସାବରୁ ଜଣାଯାଏ, ଏ ଦୁର୍ଭିକ୍ଷରେ ୧୫ ଲକ୍ଷ ଲୋକ ପ୍ରାଣ ହରାଇଲେ । ଭାରତୀୟମାନେ ଦାବି କଲେ, ସରକାର ଚାହିଁଥିଲେ ଏ ଦୁର୍ଭିକ୍ଷ ନିବାରଣ କରି ପାରିଥାନ୍ତେ । ଅନ୍ତତଃ ପକ୍ଷେ ଜରୁରିକାଳୀନ ପରିସ୍ଥିତି ଘୋଷଣା କରି ଲୋକଙ୍କୁ ଖାଦ୍ୟ ଯୋଗାଇବାର ବ୍ୟବସ୍ଥା କରିପାରିଥାନ୍ତେ । ଅକ୍ଟୋବର, ୧୯୪୩ରେ ଭାଇସ୍‌ରୟଙ୍କ ସିଂହାସନ ଆରୋହଣ କରିବା ସାଙ୍ଗେ ସାଙ୍ଗେ ଲର୍ଡ଼ ୱାଭେଲ୍ ସର୍ବପ୍ରଥମେ ଏଇ କାର୍ଯ୍ୟରେ ମନୋନିବେଶ କରିଥିଲେ ।'

ସେ ଯାହା ହେଉ, ଗାନ୍ଧୀଙ୍କର ଏଥର କାରାବାସ ତାଙ୍କ ପକ୍ଷରେ ନିରବଚ୍ଛିନ୍ନ ଭାବେ ଦୁଃଖଦାୟକ ହୋଇଥିଲା । ଦେଶରେ ବ୍ୟାପକଭାବେ ହିଂସାକାଣ୍ଡ ଘଟିଲା, ଅଥଚ ତାକୁ ବନ୍ଦ କରିବାକୁ ସେ କିଛି କରି ପାରିଲେ

ନାହିଁ ବୋଲି ଦୁଃଖିତ ହେଉଥାନ୍ତି । ସରକାର ଭଲ କରି ଜାଣିଥିଲେ ଯେ, ସେ ଅହିଂସା-ବ୍ରତୀ ; ପୁଣି, ସରକାର ଜାଣିଥିଲେ ଯେ, ଗାନ୍ଧୀ କାର୍ଯ୍ୟତଃ ଆଇନ୍ ଅମାନ୍ୟ ଆନ୍ଦୋଳନ ସୁରୁ କରି ନାହାନ୍ତି ; ଅଥଚ ସରକାର ତାଙ୍କୁ ଦୋଷ ଦେଲେ ଯେ ତାଙ୍କର ଯୋଗୁଁ ଗଣ୍ଡଗୋଳ ସବୁ ଘଟିଛି । ଏ ଅଭିଯୋଗ କରିବା ସରକାରଙ୍କ ପକ୍ଷରେ ଅନ୍ୟାୟ ବୋଲି ଗାନ୍ଧୀ ଅନୁଭବ କଲେ ଓ ଅସତ୍ୟ ଉପରେ ନିର୍ଭର କରି ସରକାର ଏ ଅଭିଯୋଗ କରୁଛନ୍ତି ବୋଲି ଗାନ୍ଧୀ ବ୍ୟଥିତ ହେଲେ । ସରକାରଙ୍କ ବିଶ୍ବାସହୀନତା ଗାନ୍ଧୀଙ୍କୁ ମର୍ମନ୍ତୁଦ ଯନ୍ତ୍ରଣା ଦେଲା । ଏହାରି ବିରୁଦ୍ଧରେ ସେ ଅନଶନ କରିଥିଲେ – ତାଙ୍କୁ ଜେଲରୁ ମୁକ୍ତ ଦେବାକୁ ବ୍ରିଟିଶ୍ ସରକାରଙ୍କୁ ବାଧ କରିବାକୁ ନୁହେଁ । ଅନ୍ୟମାନେ କ'ଣ କରୁଛନ୍ତି, କି କୁତ୍ସା ରଟନା କରୁଛନ୍ତି ସେଥିପ୍ରତି ସିଦ୍ଧଯୋଗୀ କାନ ନ ଦେଇ ନିରୁଦ୍‌ବେଗରେ ରହି-ପାରିଥାନ୍ତା । କିନ୍ତୁ ଗାନ୍ଧୀ ଏ ପର୍ଯ୍ୟନ୍ତ ସେତେ ସିଦ୍ଧି ଅର୍ଜନ କରିପାରି ନ ଥିଲେ, ପୂର୍ଣ୍ଣ ଅନାସକ୍ତ ହୋଇ ପାରି ନ ଥିଲେ ।

ଏ ଦୁଃଖ ପ୍ରିୟଜନବିଚ୍ଛେଦ-ଜନିତ ବ୍ୟକ୍ତିଗତ ଶୋକ ଯୋଗୁଁ ଆହୁରି ଦୁଃସହ ହୋଇଗଲା । ଆଗାଖାଁ ପ୍ରାସାଦରେ ବନ୍ଦୀ ହେବାର ଛଅଟି ଦିନ ପରେ, ତାଙ୍କ ସଙ୍ଗେ ଧରା ହୋଇ ତାଙ୍କ ସଙ୍ଗେ ରଖା ହୋଇଥିବା ମହାଦେବ ଦେଶାଇଙ୍କର ହଠାତ୍ ହୃଦ୍‌ବେଦନା ହେଲା ଓ ସେ ଅଚେତ ହୋଇ ପଡ଼ିଲେ । ଗାନ୍ଧୀ ଡାକୁଥାନ୍ତି, 'ମହାଦେବ, ମହାଦେବ !'

ଗାନ୍ଧୀ କହୁଥାନ୍ତି, 'ଥରେ ଯଦି ଆଖି ଖୋଲି ମୋ ଆଡ଼େ ଚାହାନ୍ତା ତେବେ ମରନ୍ତା ନାହିଁ ।'

କସ୍ତୁରବା ଚିତ୍କାର କଲେ, 'ମହାଦେବ ! ଆଖି ଫିଟାଇ ଚାହଁ । ବାପୁ ଡାକୁଛନ୍ତି ପରା !'

କିନ୍ତୁ ପ୍ରାଣବାୟୁ ଉଡ଼ିଯାଇ ସାରିଥାଏ ।

ମହାଦେବ ଦେଶାଇଙ୍କୁ ପଚାଶ ବର୍ଷ ଟପି ଯାଇଥିଲା । ସେ ନିଷ୍ଠା ଓ ଦକ୍ଷତାର ସହିତ ୨୪ ବର୍ଷ କାଳ ଗାନ୍ଧୀଙ୍କର ସେବା କରିଥିଲେ । ସେ ଥିଲେ ଗାନ୍ଧିଙ୍କର ସେକ୍ରେଟାରି, ପରାମର୍ଶଦାତା, କର୍ମବୃତ୍ତାନ୍ତର ଲେଖନକାର, ବନ୍ଧୁ ଓ ପୁତ୍ର । ତାଙ୍କ ମୃତ୍ୟୁରେ ମହାତ୍ମାଜୀ ସ୍ତବ୍ଧ ହୋଇଗଲେ । ମହାଦେବ ଦେଶାଇଙ୍କ ଭସ୍ମାବଶେଷ ଆଗାଖାଁ ପ୍ରାସାଦ ବାଡ଼ିର ଯେଉଁଠାରେ ପୋତା ହୋଇଥିଲା ସେଠାକୁ ଗାନ୍ଧୀ ପ୍ରତ୍ୟହ ଯିବାକୁ ଲାଗିଲେ ।

ତା'ପରେ ଗାନ୍ଧୀଙ୍କ ଉପରେ ମାଡ଼ି ପଡ଼ିଲା ଉତ୍କଟତର ବ୍ୟକ୍ତିଗତ ଶୋକ ଓ ବିରହର ଘଟଣା ।

ଭାରତର ଭୂଗୋଳ ଓ ଅନ୍ୟ ବିଷୟମାନ ଜେଲଖାନାରେ ନିଜ ପତ୍ନୀଙ୍କୁ ଶିଖାଇବାରେ ଗାନ୍ଧୀ ବହୁତ ସମୟ ପରିଶ୍ରମ କରୁଥାନ୍ତି । କିନ୍ତୁ ପଞ୍ଜାବର ନଦୀମାନଙ୍କର ନାମ କସ୍ତୁରବା ମନେ ରଖି ପାରିଲେ ନାହିଁ । ଗାନ୍ଧୀଜୀ ତାଙ୍କୁ ଭୂଗୋଳ ପରୀକ୍ଷା କରିବାରେ, ସେ କହିଲେ, ଲାହୋର କଲିକତାର ରାଜଧାନୀ । ପ୍ରକୃତରେ ଲାହୋର ପଞ୍ଜାବର ରାଜଧାନୀ, ଓ କଲିକତା ବଙ୍ଗର ରାଜଧାନୀ । ଗୁଜୁରାଟି ଭାଷା ଲେଖିବାରେ ଓ ପଢ଼ିବାରେ ତାଙ୍କର ଦକ୍ଷତା ଆଣିବାକୁ ଗାନ୍ଧୀ ନିରବଚ୍ଛିନ୍ନ ଭାବେ ବହୁ ପରିଶ୍ରମ କଲେ । କିନ୍ତୁ ଫଳ କିଛି ହେଲା ନାହିଁ । ସେତେବେଳକୁ କସ୍ତୁରବାଙ୍କୁ ୭୪ ବର୍ଷ ।

ଶ୍ରୀମତୀ ଗାନ୍ଧୀଙ୍କୁ ସମସ୍ତେ ବା' ଅର୍ଥାତ୍ ମା' ବୋଲି ଡାକୁଥିଲେ । ସେ ପର୍ଯ୍ୟନ୍ତ ତାଙ୍କର ବ୍ରାହ୍ମଣମାନଙ୍କ ପ୍ରତି ମାନ୍ୟ ଥାଏ । ସେମାନେ ଉଚ୍ଚ ଜାତି ଓ ସେମାନଙ୍କଠାରେ ଅନନ୍ୟସାଧାରଣ ଶକ୍ତି ଅଛି ବୋଲି ସେ ବିଶ୍ୱାସ କରୁଥାନ୍ତି । ଥରେ ଜେଲରେ ରୋଷେଇ କରୁଥିବା ଜଣେ ବ୍ରାହ୍ମଣଙ୍କୁ ଆମେ ସମସ୍ତେ କେବେ ଖଲାସ ହେବୁ ବୋଲି ସେ ପ୍ରଶ୍ନ କରିଥିଲେ । କିନ୍ତୁ ପୂର୍ବରେ ଥିବା ଅସ୍ପୃଶ୍ୟମାନଙ୍କ ପ୍ରତି ଘୃଣା ଆଉ ତାଙ୍କର ନ ଥାଏ । ସେ ନିୟମିତଭାବେ ସୂତା କାଟୁଥାନ୍ତି ଓ ଗାନ୍ଧୀବାଦର ତତ୍ତ୍ୱ କିଛି ନ ବୁଝି ଗାନ୍ଧୀବାଦରେ ବିଶ୍ୱାସ କରୁଥାନ୍ତି । ଥରେ ସେ ଗାନ୍ଧୀଙ୍କ ଉପରେ ଚିଡ଼ି ଯାଇ କହିଥିଲେ, 'ପ୍ରବଳପ୍ରତାପୀ ସରକାର ସଙ୍ଗେ କଳି କରନାହିଁ ବୋଲି ମୁଁ ତୁମକୁ କହିଥିଲି ନା ନାହିଁ ? ମୋ କଥାକୁ କାନ ଦେଲ ନାହିଁ ; ଏବେ ସମସ୍ତେ କେମିତି ଦଣ୍ଡ ପାଉଥାଇଁ, ଦିଶୁଛିଟି ? ସରକାର ତାର ଅସୀମ ବଳ ଖଟାଇ ଲୋକଙ୍କୁ ଚୁପି ଦେବାରେ ଲାଗିଛି ।'

ଗାନ୍ଧୀ ଜବାବ୍ ଦେଲେ, 'ଏବେ ତୁମେ କ'ଣ କରିବାକୁ କହୁଛ ?··· ସରକାରଙ୍କୁ ଚିଠିଲେଖି କ୍ଷମା କର ବୋଲି ମାଗିବି ?'

ସାଙ୍ଗେ ସାଙ୍ଗେ ବା ଲେଉଟି ପଡ଼ିଲେ ; ନା, ସେ ତା କରିବାକୁ କହୁନାହାନ୍ତି । କିନ୍ତୁ ସାଂଗେ ସାଂଗେ ପୁଣି ଅଭିଯୋଗ କଲେ, 'ଭାରତ ଛାଡ଼ି ଚାଲିଯାଅ ବୋଲି ତୁମେ ଗୋରା ଲୋକଙ୍କୁ କହୁଛ କାହିଁକି ? ଆମ ଦେଶ ତ ଏତେ ବଡ଼ । ସମସ୍ତେ ଏଠାରେ ରହିଲେ କ'ଣ ଥାନ ନିଅଣ୍ଟ ହେବ ; ତାଙ୍କର ଯେବେ ମନ, ସେ ଏଠାରେ ରହନ୍ତୁ, କିନ୍ତୁ ଭାଇ ପରି ରହନ୍ତୁ ।'

ଗାନ୍ଧୀ ଉତ୍ତର ଦେଲେ, 'ମୁଁ ଆଉ କ'ଣ କରିଛି କି ? ଆମର ଶାସକ ଭାବେ ଯାହା ରହିଛନ୍ତି, ତାହା ଛାଡ଼ନ୍ତୁ ବୋଲି ମୁଁ କହୁଛି । ଇଂରେଜ-ଶାସକ ଏ ଦେଶ ଛାଡ଼ନ୍ତୁ ବୋଲି ମୁଁ କହୁଛି । ଶାସକପଣ ଛାଡ଼ିବା ପରେ, ଆଉ ତାଙ୍କ ସଙ୍ଗେ ଆମର କୌଣସି ବିରୋଧ ରହିବ ନାହିଁ ।

ବା' ବୁଝିଗଲେ, କହିଲେ, 'ହଁ ସେଇ କଥା' । ଆପାତତଃ ସ୍ୱାମୀଙ୍କର କଥାଭିତରେ ନ ପଶି ସେ ଦେବତା ପରି ତାଙ୍କୁ ପୂଜା କରୁଥାନ୍ତି ।

କସ୍ତୁରବାଇ କେତେଦିନ ହେଲା ସାମାନ୍ୟ ଅସୁସ୍ଥ ଥାନ୍ତି । ଡିସେମ୍ବର, ୧୯୪୩ରେ ତାଙ୍କର ଜାପ୍ୟ ହୋଇ ଥିବା କାଶରୋଗ ବାହାରି ପଡ଼ିଲା, ସେ ଖୁବ୍ ଅସୁସ୍ଥ ହୋଇ ପଡ଼ିଲେ । ଡକ୍ଟର୍ ଗିଲ୍ଡର୍ ଓ ଡକ୍ଟର୍ ନାୟାର୍ ତାଙ୍କର ଚିକିତ୍ସା କରୁଥାନ୍ତି, କିନ୍ତୁ ସେ ଖୋଜିଲେ ପ୍ରାକୃତିକ ଚିକିତ୍ସାବିଶାରଦ ଡକ୍ଟର୍ ଦିନଶାହ ମେହେଟାଙ୍କୁ ଓ ଜଣେ ଆୟୁର୍ବେଦ-ଚିକିତ୍ସକଙ୍କୁ । ଡକ୍ଟର୍ ମେହେଟା ଥରେ ଗାନ୍ଧୀଙ୍କର ଚିକିତ୍ସା କରିଥିଲେ । ପତ୍ନୀଙ୍କ ଇଚ୍ଛା ପୂରଣ କରିବା ସକାଶ ଗାନ୍ଧୀ ସରକାରଙ୍କ ପାଖକୁ ବାରଂବାର ଚିଠି ଲେଖି ବ୍ୟସ୍ତ କରିଦେଲେ, ଏ ଦୁଇଜଣ ଚିକିତ୍ସକଙ୍କୁ ଆଣି ରୋଗିଣୀ ପାଖରେ ହାଜର କରିବାକୁ । ଏମାନେ ଆସିଲେ । ଆୟୁର୍ବେଦ ଚିକିତ୍ସକ କେତେଦିନ ପର୍ଯ୍ୟନ୍ତ ନିଜର ବିଦ୍ୟା ଖଟାଇ ଖୁବ୍ ଚେଷ୍ଟା କଲେ । ଯୁାଙ୍କ ଚିକିତ୍ସା ଚାଲୁଥିଲାଯାକ ଆଧୁନିକ ଚିକିତ୍ସକମାନେ ରୋଗିଣୀ-ଠାରୁ ଆଡ଼େଇ ହୋଇ ରହିଥାନ୍ତି । ଆୟୁର୍ବେଦ ଚିକିତ୍ସକ ବ୍ୟର୍ଥ ହେଲେ ବୋଲି ମାନିବା ପରେ ଡକ୍ଟର ଗିଲଡର୍, ଡକ୍ଟର ନାୟାର ଓ ଡକ୍ଟର ଜୀବରାଜ ମେହେଟା ନିଜ ନିଜ ଚେଷ୍ଟା ଚଳାଇଲେ । କିନ୍ତୁ ଶେଷରେ ଏମାନେ ବି ନିରସ୍ତ ହେଲେ । କସ୍ତୁରବାଙ୍କ ପୁଅ ଓ ନାତିମାନଙ୍କୁ ଜେଲ ଭିତରକୁ ଆସିବା ସକାଶ ସରକାର ଅନୁମତି ଦେଲେ । କିନ୍ତୁ ସେ ବିଶେଷ କରି ଖୋଜୁଥାନ୍ତି, ପିତାମାତାଙ୍କଠାରୁ ଛାଡ଼ବାଡ଼ ହୋଇ ରହିଥିବା ତାଙ୍କ ପ୍ରଥମ ସନ୍ତାନ ହୀରାଲାଲଙ୍କୁ ।

ଗାନ୍ଧୀ ପତ୍ନୀଙ୍କ ଶଯ୍ୟା ପାଖେ ବହୁ ଘଣ୍ଟା ଲଗାଏତ ବସି ରହିଲେ । ସବୁ ପ୍ରକାର ଔଷଧ ଓ ମହୁପାଣି ବ୍ୟତୀତ ସବୁପ୍ରକାର ପଥ୍ୟ ବନ୍ଦ କରା-ଯାଉ ବୋଲି ସେ ଆଦେଶ ଦେଲେ । ଗାନ୍ଧୀ କହିଲେ, 'ଭଗବାନ୍‌ଙ୍କଠାରେ ଧ୍ୟାନ ରଖି ନିଶ୍ଚିନ୍ତ ହୋଇ ପଡ଼ି ରହିବା ବର୍ତ୍ତମାନ ଯୁା ପକ୍ଷରେ ସବୁଠାରୁ

ବଳ ଶ୍ରେୟ । ଭଗବାନ୍ ଯଦି ଅନୁଗ୍ରହ କରନ୍ତି ତେବେ ସେ ଏ ଯାତ୍ରା ରକ୍ଷା ପାଇଯିବ, ନ ହେଲେ ତାକୁ ମୁଁ ଚିରକାଳ ପାଇଁ ଛାଡ଼ିଦିଏ ପଛେ ଆଉ ତାକୁ ଗୁଡ଼ାଏ ଔଷଧ ଖୁଆଇ କଲବଲ କରିବି ନାହିଁ ।'

ସେ ସମୟରେ ଭାରତରେ ପେନସିଲିନ୍ ବିରଳ ଥାଏ । କଲିକତାରୁ ଉଡ଼ାଜାହାଜ ଯୋଗେ ପେନସିଲିନ୍ ଆସି ପହଞ୍ଚିଲା । ପେନସିଲିନ୍ ଦିଆଯାଉ ବୋଲି ଦେବଦାସ ଜିଦ୍ କରୁଥାନ୍ତି । ଗାନ୍ଧୀ ତାଙ୍କୁ କହିଲେ, 'ତୁ ଭଗବାନ୍‌ଙ୍କ ଉପରେ ବିଶ୍ୱାସ ନ ରଖୁଛୁ କାହିଁକି ? ମୃତ୍ୟୁଶଯ୍ୟାରେ ମଧ୍ୟ ତୋ ବୋଉ ଗୁଡ଼ାଏ ଔଷଧ ଖାଉ ବୋଲି ତୋ'ର ମନ ହେଉଛି ପରା ?'

ଗାନ୍ଧୀ ସେ ପର୍ଯ୍ୟନ୍ତ ଜାଣି ନ ଥିଲେ ଯେ ପେନସିଲିନ୍ ଇଞ୍ଜେକ୍‌ସନ୍‌ରେ ଦିଆଯାଏ । ଏହା ଶୁଣି ସେ ପେନସିଲିନ୍ ଦେବାକୁ ମନା କରି ଦେଲେ । ସେଦିନର ଅଧିକାଂଶ ସମୟ ଗାନ୍ଧୀ କସ୍ତୁରବାଙ୍କ ଶଯ୍ୟାରେ ବସି ତାଙ୍କର ଗୋଟିଏ ହାତ ଧରିଥାନ୍ତି । ସହବନ୍ଦୀମାନେ ହିନ୍ଦୁଭଜନ ଗାନ କରୁଥାନ୍ତି । ସରକାରଙ୍କଠାରୁ ତୁରନ୍ତ ଡାକରା ପାଇ ହରିଲାଲ ଫେବ୍ରୁଆରୀ ୨୧ ତାରିଖରେ ଆସି ପହଞ୍ଚିଲେ । ସେ ମଦ ନିଶାରେ ବିଭୋର ହୋଇଥାନ୍ତି । ତାଙ୍କୁ କସ୍ତୁରବାଙ୍କ ଆଗରୁ ଜୋର କରି ବାହାରକୁ ନେବାକୁ ପଡ଼ିଲା । କସ୍ତୁରବା ଗୁଡ଼ାଏ କାନ୍ଦି କପାଳରେ ହାତ ମାଇଲେ । (ହରିଲାଲ ଚିହ୍ନା ନ ଦେଇ ବାପାଙ୍କ ଶବ ସତ୍କାର ବେଳେ ଶ୍ମଶାନରେ ଥିଲେ ଏବଂ ସେ ରାତି ଦେବଦାସଙ୍କ ଘରେ କଟାଇଲେ । ବମ୍ବେର ଗୋଟିଏ ଯକ୍ଷ୍ମା ଚିକିତ୍ସାଳୟରେ ୧୯୪୮, ଜୁନ୍ ୧୯ ତାରିଖରେ ସେ ସର୍ବଜନ-ପରିତ୍ୟକ୍ତ ଅବସ୍ଥାରେ ଜୀବନ ତ୍ୟାଗ କଲେ ।)

ତତ୍ପରଦିନ ଗାନ୍ଧୀଙ୍କ କୋଳରେ ମୁଣ୍ଡ ରଖି କସ୍ତୁରବା ଜୀବନ ଛାଡ଼ିଲେ । ଶ୍ମଶାନରେ ଗାନ୍ଧୀ ଭଗବତ୍ ପ୍ରାର୍ଥନା ବୋଇଲେ । ଏହା ହିନ୍ଦୁ, ପାର୍ସି, ମୁସ୍‌ଲିମ୍ ଓ ଖ୍ରୀଷ୍ଟିଆନ୍ ଧର୍ମଶାସ୍ତ୍ରମାନଙ୍କରୁ ଆହୃତ ହୋଇଥିଲା । ଦେବଦାସ ମୁଖାଗ୍ନି ଦେଲେ । ଭସ୍ମାବଶେଷ ଜେଲଖାନାର ହତାରେ ମହାଦେବ ଦେଶାଇଙ୍କ ଭସ୍ମାବଶେଷ ପାଖରେ ପୋତା ହେଲା ।

ଗାନ୍ଧୀ ଶ୍ମଶାନରୁ ଆସି ନିଜ ଶଯ୍ୟା ଉପରେ ତୂଷ୍ଣୀ ହୋଇ ବସି ରହିଲେ; ମଝିରେ ମଝିରେ କସ୍ତୁରବାଙ୍କ ସ୍ମୃତି ମନକୁ ଆଲୋଡ଼ିତ କରନ୍ତେ ସେ କହୁଥାନ୍ତି : 'ବା'କୁ ଛାଡ଼ି କପରି ବଞ୍ଚିହେବ ଭାବି ପାରୁ ନାହିଁ......।

ସେ ଚାଲିଯିବାରୁ ହୃଦୟରେ ଗୋଟାଏ ଶୂନ୍ୟ ସ୍ଥାନ ରହିଗଲା; ଏହା ଆଉ ପୂର୍ଣ୍ଣ ହେବନାହିଁ ·····। ଆମେ ୬୨ ବର୍ଷକାଳ ଏକାଠି କଟାଇଛୁ·····। ଯଦି ପେନସିଲିନ୍ ଇଞ୍ଜେକ୍ସନ୍ ଦେବାକୁ ହିଁ କରିଥାନ୍ତି ତେବେ ସେ କ'ଣ ବଞ୍ଚିଥାନ୍ତା ? ପେନସିଲିନ୍ କଦାପି ତାକୁ ରକ୍ଷା କରି ପାରି ନ ଥାନ୍ତା······ ହଉ, ସେ ତ ମୋ କୋଡ଼ରେ ଚାଲିଗଲା···ଯା ଠାରୁ ଆଉ କ'ଣ ବା ଅଧିକ ହୋଇଥାନ୍ତା······ମୋତେ ଖୁବ୍ ଖୁସୀ ଲାଗୁଛି ।'

ରାଜନୀତିକ ବିଷୟରେ ନୂଆ ଭାଇସ୍‌ରୟ ଲର୍ଡ୍ ଓ୍ୱାଭେଲଙ୍କ ସଙ୍ଗେ ଗାନ୍ଧୀଙ୍କର ଚିଠି ପତ୍ର ଚାଲିଥାଏ । କସ୍ତୁରବାଙ୍କ ମୃତ୍ୟୁର ଅବ୍ୟବହିତ ପରେ, ମହାତ୍ମାଜୀଙ୍କୁ ଦେଇଥିବା ଖଣ୍ଡିଏ ଚିଠିରେ ଓ୍ୱାଭେଲ ଲେଖିଲେ, 'ଏହି ଅବସରରେ ଶ୍ରୀମତୀ ଗାନ୍ଧୀଙ୍କ ମୃତ୍ୟୁ ଯୋଗୁଁ ମୋର ସ୍ତ୍ରୀ ଓ ମୋ ପକ୍ଷରୁ ଆପଣଙ୍କୁ ଗଭୀର ସମବେଦନା ଜଣାଉଛି । ଏତେବର୍ଷକାଳ ଏକ ସଙ୍ଗେ କଟାଇବା ପରେ ତାଙ୍କର ବିରହ ଆପଣଙ୍କୁ କିପରି ବାଧୁଥିବ ଆମେ ଦୁହେଁ ବୁଝି ପାରୁଛୁ ।'

ଗାନ୍ଧୀଙ୍କ ହୃଦୟକୁ ଏ ସମବେଦନା ସ୍ପର୍ଶ କରିଥିଲା । ସେ ଉତ୍ତର ଦେଲେ, 'ଜୀବନ୍ତ କଳବଳରୁ ସେ ମୁକ୍ତି ପାଇଲେ । ତାଙ୍କ ମରଣକୁ ମୁଁ ତାଙ୍କ ପକ୍ଷରୁ ସ୍ୱାଗତ କରିଛି ; କିନ୍ତୁ ତାଙ୍କ ମୃତ୍ୟୁ ମୋତେ ଯେତେ ବାଧିବ ବୋଲି ବିଚାରିଥିଲି ତହିଁରୁ ବେଶି ବାଧିବାର ମୁଁ ଅନୁଭବ କରୁଛି ।' ଏହା ଲେଖିସାରି ପୂର୍ବରୁ କେବେ ଦେଖି ନ ଥିବା ଓ୍ୱାଭେଲଙ୍କୁ ସେ ତାଙ୍କ ଦାମ୍ପତ୍ୟ ଜୀବନର ଅନ୍ତରତମ କଥା ବର୍ଣ୍ଣନା କରିବାକୁ ଲାଗିଲେ । ସେ ଲେଖିଲେ, 'ଆମେ ଦୁଇଜଣ ସାଧାରଣ ପତିପତ୍ନୀଙ୍କଠାରୁ ଅଲଗାଭାବେ ଚଳୁଥିଲୁଁ । ୩୭ ବର୍ଷ ବୟସରେ ଆମେ ଦୁହେଁ ବ୍ରହ୍ମଚର୍ଯ୍ୟ ଅବଲମ୍ବନ କରିବା ପରେ, ଆମର ସଂପର୍କ ଯେପରି ଘନିଷ୍ଠ ହୋଇଗଲା, ପୂର୍ବେ ସେପରି ହୋଇ ନ ଥିଲା । ଆମେ ଦୁଇଜଣ ପରସ୍ପରଠାରୁ ଅଲଗା— ଏ ଭାବ ଏକାବେଳକେ ଦୂର ହୋଇଗଲା···ଫଳରେ ସେ ବାସ୍ତବିକ ଖାଲି ମୋର ଅର୍ଦ୍ଧାଙ୍ଗିନୀ ନ ହୋଇ ମୋ ଅଙ୍ଗର ଅପେକ୍ଷାକୃତ ଭଲ ଅଧିକ ହୋଇ ଗଲେ ।'

କସ୍ତୁରବାଙ୍କ ମୃତ୍ୟୁର ଛଅ ସପ୍ତାହ ପରେ ଗାନ୍ଧୀଙ୍କୁ ଦିନେଛଡ଼ା ଦିନେ ପାଳିକରି ମେଲେରିଆ ଜର ହେଲା । ରୋଗ ସାଂଘାତିକ ନ ହେଲେ ବି କମ୍ପ ଆସିଲା ବେଳେ ଖୁବ୍ ଜୋରରେ ଆସିବାକୁ ଲାଗିଲା । ସେତେ-

ବେଳେ ସେ ବାଉଳା ଗୁଉଳା ହେଉଥାନ୍ତି । ଉତ୍ତାପ ୧୦୫ ଡିଗ୍ରୀକୁ ଉଠୁଥାଏ । ରକ୍ତ ପରୀକ୍ଷା କରିବାରେ ଦେଖାଗଲା ମେଲେରିଆ ଜୀବାଣୁ ରକ୍ତରେ ପ୍ରବଳ ହୋଇଛନ୍ତି । ପ୍ରଥମେ ସେ ବିଚାରିଥିଲେ ଉପବାସ ଓ ଫଳରସ ପଥ୍ୟରେ ଭଲ ହୋଇଯିବେ । ତେଣୁ ସେ କୁଇନାଇନ୍ ଖାଇବାକୁ ମନା କରି ଦେଇ ଥିଲେ । ଦୁଇଦିନ ପରେ ତାଙ୍କର ଆପତ୍ତି ଦୁର୍ବଳ ହୋଇଗଲା । ସେ ଦୁଇ-ଦିନରେ ମୋଟ ୩୩ଗ୍ରେନ୍ କୁଇନାଇନ୍ ଖାଇଲେ; ଜର ଛାଡ଼ିଗଲା । ପରେ ତାଙ୍କର ଏକାଧିକବାର ରକ୍ତ ପରୀକ୍ଷା ହୋଇ ଦେଖାଯାଇଛି, ମେଲେରିଆ ବିଜାଣୁ ପୂରା ନଷ୍ଟ ହୋଇ ଯାଇଥିଲେ । ମେଲେରିଆ ବି ଆଉ କେବେ ତାଙ୍କୁ ଧରି ନ ଥିଲା ।

ମେ ୩ ତାରିଖରେ ଗାନ୍ଧୀଙ୍କର ଚିକିତ୍ସକ ଗୋଟାଏ ବିବୃତି ଦେଲେ । ସେଥିରେ ସେମାନେ କହିଲେ ଯେ, ତାଙ୍କ ରକ୍ତହୀନତା ଅଧିକ ଖିତପ୍ରଦ ହୋଇଛି ଓ ତାଙ୍କର ରକ୍ତଚାପ ଖୁବ୍ କମିଯାଇଛି । 'ତାଙ୍କର ସାଧାରଣ ସ୍ୱାସ୍ଥ୍ୟର ଅବସ୍ଥା ପୁଣି ଗଭୀର ଉଦ୍‌ବେଗର କାରଣ ହୋଇ ପଡ଼ିଛି ।' ତାଙ୍କ ମୁକ୍ତି ପାଇଁ ଆନ୍ଦୋଳନ ଭାରତ ତମାମ ବ୍ୟାପିଗଲା । ଜେଲଖାନାର ଗୁରିପଟେ ବହୁସଂଖ୍ୟାରେ ସଶସ୍ତ୍ର ପ୍ରହରୀ ଜଗି ରହିଲେ । ମେ ୬ ତାରିଖର ସକାଳ ଆଠଟା ବେଳେ ଗାନ୍ଧୀ ଓ ତାଙ୍କର ସାଥି ବନ୍ଦୀ-ମାନଙ୍କୁ ମୁକ୍ତ କରି ଦିଆଗଲା । ପରେ ତାଙ୍କର ସ୍ୱାସ୍ଥ୍ୟ ପରୀକ୍ଷା କରି ଦେଖା-ଗଲା ଯେ, ତାଙ୍କର ଅନ୍ତ୍ରରେ ଆଙ୍କୁଡ଼ି ମୁହାଁ କୃମି ଓ ଆମାଶୟ ଜୀବାଣୁ ଥିଲେ ।

ଏଇ ହେଲା ଗାନ୍ଧୀଙ୍କ ଜୀବନରେ ଶେଷ ଜେଲ୍‌ବାସ । ମୋଟ ଉପରେ ସେ ଭାରତୀୟ ଜେଲ୍‌ମାନଙ୍କରେ ୨୦୮୯ ଦିନ ଏବଂ ଦକ୍ଷିଣ ଆଫ୍ରିକାର ଜେଲ୍‌ମାନଙ୍କରେ ୨୪୯ ଦିନ କଟାଇଥିଲେ ।

ଗାନ୍ଧୀ ବମ୍ବେ ଅନ୍ତଃପାତୀ ସମୁଦ୍ରତୀରବର୍ତ୍ତୀ ଜୁହୁଠାରେ, ଶାନ୍ତିକୁମାର ମୋରାର୍‌ଜୀଙ୍କ ଘରେ ବାସ କଲେ । ଯାଙ୍କର ବାପା ଗାନ୍ଧୀଙ୍କ ଜନ୍ମ-ସ୍ଥାନ ପୋରବନ୍ଦରରୁ ଆସିଥିଲେ । ଶ୍ରୀମତୀ ନାଇଡୁ, ଓ ଜବାହାରଲାଲ ନେହେରୁଙ୍କ ଭଉଣୀ ଶ୍ରୀମତୀ ପଣ୍ଡିତ ଏ ସମୟରେ ଏଇଠାରେ ଥାନ୍ତି ।

ଶ୍ରୀମତୀ ମୋରାର୍‌ଜୀ ଅନୁରୋଧ କଲେ, ମହାତ୍ମାଜୀ ଗୋଟିଏ ଚଳଚ୍ଚିତ୍ର ଦେଖନ୍ତୁ । ସେ ପର୍ଯ୍ୟନ୍ତ ଗାନ୍ଧୀଜୀ କଥା-ଅକୁହା ବା କଥାକୁହା କୌଣସି ଚଳଚ୍ଚିତ୍ର କେବେ ଦେଖି ନ ଥିଲେ । ବହୁତ ଲଗାଲଗି କଲା ପରେ ସେ ରାଜି

ହେଲେ । 'ମିସନ୍ ଟୁ ମସ୍କୋ' ବୋଲି ଗୋଟିଏ ଚଳଚ୍ଚିତ୍ର, ନିକଟବର୍ତ୍ତୀ ଏକ ପଲ୍ଲୀରେ ଦେଖା ହେଉଥାଏ । ଚଳଚ୍ଚିତ୍ର ଓ ପ୍ରୋଜେକ୍ଟର ପ୍ରଭୃତି ମୋରାର୍ଜୀଙ୍କ ବାସଭବନକୁ ଅଣାଗଲା ଏବଂ ପ୍ରାୟ ଶହେ ଜଣ ଦର୍ଶକ ଦର୍ଶିକାଙ୍କ ସଙ୍ଗେ ଗାନ୍ଧୀ ଏ ଛବିଟି ଦେଖିଲେ ।

ଶ୍ରୀମତୀ ମୋରାର୍ଜୀ କହିଲେ, 'ଆପଣଙ୍କୁ କେମିତି ଲାଗିଲା ?'

ଗାନ୍ଧୀ କହିଲେ, 'ମୋତେ ଭଲ ଲାଗିଲା ନାହିଁ ।' ସାହେବୀ ନାଚ, ଏବଂ ଦେହର ଅଧିକାଂଶ ଭାଗ ଅନାବୃତ ରଖିବା ଭଳି ପୋଷାକ ପିନ୍ଧି ସ୍ତ୍ରୀ ଲୋକଙ୍କୁ ଚଳଚ୍ଚିତ୍ରରେ ଦେଖି ସେ ଏହା ଶ୍ଳୀଳତା-ବିରୋଧୀ ବୋଲି ମତ ଦେଲେ ।

ବନ୍ଧୁମାନେ ଆପତ୍ତି କଲେ, ଗାନ୍ଧୀ ଗୋଟାଏ ବିଦେଶୀ ଚଳଚ୍ଚିତ୍ର ଦେଖିଲେ । ଭାରତରେ ପ୍ରସ୍ତୁତ ଗୋଟାଏ ଚଳଚ୍ଚିତ୍ର କାହିଁକି ନ ଦେଖିଲେ ? ବାଧ୍ୟ ହୋଇ ସେ 'ରାମରାଜ୍ୟ' ଚଳଚ୍ଚିତ୍ର ଦେଖିଲେ । ଏହା ରାମାୟଣବର୍ଣ୍ଣିତ ଆଦର୍ଶ ନୀତିବାନ୍ ରାଜା ରାମଙ୍କ ଚରିତ ।

ଗାନ୍ଧୀଙ୍କର ଅବସର ବିନୋଦନ ପାଇଁ କେହି ଜଣେ ଗାନ୍ଧୀଙ୍କ ଆଗରେ ପାର୍ଲ୍.ଏସ୍. ବକ୍‌ଙ୍କର ଖଣ୍ଡିଏ ଆମୋଦଦାୟକ ଓ ଶାନ୍ତିପୂର୍ଣ୍ଣ ପରିବେଶ ଚିତ୍ରଣ କରିଥିବା ପୁସ୍ତକ ପଢ଼ି ଶୁଣାଇଲେ । ବହିଟିର ନାମ 'ଆମର ପଡ଼ୋଶୀ ଚୀନ୍‌ର ବାଳକ ବାଳିକା' ( The Chinese Children Next Door)

ଡାକ୍ତରମାନେ ଗାନ୍ଧୀଙ୍କୁ ଆରୋଗ୍ୟ କରୁଥାନ୍ତି, ଓ ସେ ନିଜକୁ ମୌନ ରହି ଆରୋଗ୍ୟ କରୁଥାନ୍ତି; ଯାହାକୁ ସେ କହୁଥାନ୍ତି 'ଆରୋଗ୍ୟକାରୀ ମୌନତା ।' ପ୍ରଥମେ ଅହୋରାତ୍ର ମୌନ ରହୁଥିଲେ ; ଅଳ୍ପ କେତେ ସପ୍ତାହ ପରେ ଓପରଓଳି ୨ଟାରୁ ରାତି ୮ଟା ଭିତରେ କଥା କହିଲେ— ଏହା ହେଉଛି ପ୍ରାର୍ଥନାସଭାର ବେଳ ।

ତା'ପରେ, କେତେକ ସପ୍ତାହ ଏହିପରି ବିଶ୍ରାମ କରି ସେ ପୂରା ଦମ୍‌ରେ କାର୍ଯ୍ୟ ଆରମ୍ଭ କରିଦେଲେ ।

———

# ଏକାଦଶ ପରିଚ୍ଛେଦ

## ଜିନ୍ନା ଓ ଗାନ୍ଧୀ

ମହମ୍ମଦ ଆଲି ଜିନ୍ନା ଥିଲେ କଂଗ୍ରେସ-ବିରୋଧୀ ମୁସ୍‌ଲିମ୍ ଲିଗ୍‌ର ଅଧିନାୟକ ; ଓ ବିରୋଧୀ ଦଳରେ ଗାନ୍ଧୀଙ୍କ ସମକକ୍ଷ ପ୍ରତିଦ୍ୱନ୍ଦ୍ୱୀ ବୋଲି ନିଜକୁ ମନେ କରୁଥିଲେ । ସେ ବାସ କରୁଥିଲେ ଗୋଟିଏ ପ୍ରକାଣ୍ଡ ଅର୍ଦ୍ଧ-ଚନ୍ଦ୍ରାକୃତି ମାର୍ବଲ୍ ପ୍ରସ୍ତର ନିର୍ମିତ ପ୍ରାସାଦରେ । ଏହି ପ୍ରାସାଦରୁ ଗୋଟିଏ ସୁଗଠିତ, ମାର୍ବଲପ୍ରସ୍ତରର ପାବଚ୍ଛଶ୍ରେଣୀ ସମୁଦ୍ର ପର୍ଯ୍ୟନ୍ତ ପ୍ରଲମ୍ବିତ ହୋଇଥିଲା । ଏହି ସୋପାନର ମଝିରେ ମଝିରେ ସୁଗଠିତ ଚଟାଣମାନ ନିର୍ମିତ ହୋଇଥିଲା । ଦ୍ୱିତୀୟ ମହାଯୁଦ୍ଧ ଚାଲିଥିଲା ବେଳେ ସେ ଏ ପ୍ରାସାଦ ନିର୍ମାଣ କରାଇଥିଲେ । ୧୯୪୨ରେ ମୁଁ ତାଙ୍କ ସଙ୍ଗେ ଦେଖା କଲାବେଳେ ସେ ଦୁଃଖ କରି କହିଥିଲେ ଯେ, ଏ ପ୍ରାସାଦଟିର ସାଜସଜ୍ଜା ସେ ପର୍ଯ୍ୟନ୍ତ ସଂପୂର୍ଣ୍ଣ ହୋଇ ପାରି ନ ଥିଲା । ଏହି ବିରାଟ ପ୍ରାସାଦରେ ତାଙ୍କର କ୍ଷୁଦ୍ର ପାଠ-କକ୍ଷଟି ଏବଂ ଅନ୍ୟାନ୍ୟ ଅଂଶ ଦେଖି ମନେ ହୋଇଥିଲା ଏହାର ନିର୍ମାଣରେ ଜିନ୍ନାଙ୍କର ସୁରୁଚି ଓ ସ୍ୱଚ୍ଛଳତା ରୂପାୟିତ ହୋଇଛି । ଏ ପ୍ରାସାଦଟି ବମ୍ବେର ମାଲବାର ପାହାଡ଼ରେ ଅବସ୍ଥିତ ।

ଜିନ୍ନାଙ୍କର ଉଚ୍ଚତା ଛ'ଫୁଟରୁ ଉଚ୍ଚ କିନ୍ତୁ ଓଜନ ମାତ୍ର ୧୨୭ ପାଉଣ୍ଡ । ସେ ଥିଲେ ଅତି ପାତଳା ମଣିଷ । ତାଙ୍କର ମୁଣ୍ଡଟି ଥିଲା ସୁଠାମ, ଏବଂ ଘନ, ଲମ୍ବ ରଜତଶୁଭ୍ର କେଶରେ ପୂର୍ଣ୍ଣ ; ସେ କପାଳରୁ ପଛ ଆଡ଼କୁ ମୁଣ୍ଡ କୁଣ୍ଡାଉଥିଲେ । ତାଙ୍କର ଦାଢ଼ି ନିଶ ଚିକ୍‌କଣ ଭାବେ ଖିଅର କରିଥାନ୍ତି ; ମୁହଁରେ ପଳେ ବି ମାଂସ ନ ଥାଏ, ନାକଟି ଲମ୍ବ ଓ ଗରୁଡ଼ ନାକପରି ଏହା ବକ୍ରାଗ୍ର । ଜିନ୍ନାଙ୍କର ଆନମୁଣ୍ଡା ପଡ଼ି ଯାଇଥାଏ, ଗାଲ ଦୁଇଟି ପାଟି ଭିତରକୁ ପଶିଯାଇ ହନୁ ହାଡ଼ ଦୁଇଟି ମୁହଁରେ ଯୋଡ଼ାଏ ବନ୍ଧପରି ଦିଶୁଥାଏ ; ଦାନ୍ତଗୁଡ଼ିକ ଅସମାନ ଓ ରୁଗ୍ଣ । କଥା

ନ କହିଲା ବେଳେ ସେ ଚିବୁକକୁ ସାଙ୍କୁଡ଼େଇ ଦିଅନ୍ତି, ଓଠକୁ ଟାଣି କରି ପ୍ରଶସ୍ତ କପାଳକୁ କୁଞ୍ଚିତ କରି ଦିଅନ୍ତି । ଏତେବେଳେ ତାଙ୍କ ମୁହଁରେ ଦୃଢ଼ ସଂକଳ୍ପ ଅଙ୍କିତ ହୋଇଯାଏ ଓ କଥାବାର୍ତ୍ତା ହେଉଥିବା ଲୋକର ମନରେ ଭୟ ଆସେ । ସେ ପ୍ରାୟ ହସନ୍ତି ନାହିଁ କହିଲେ ଚଳେ ।

ସେ ପିନ୍ଧନ୍ତି ଆଣ୍ଠୁ ଯାଏଁ ଲମ୍ବିଥିବା ଈଷତ୍ ହଳଦିଆ ରଙ୍ଗର ଗୋଟିଏ କୁରୁତା । (ପଶ୍ଚିମ) ଭାରତରେ ଯେପରି ଚପାପ୍ୟାଣ୍ଟ ପିନ୍ଧନ୍ତି ସେହିପରି ପ୍ୟାଣ୍ଟ୍ ହଲେ ସେ ପିନ୍ଧିଥାନ୍ତି । ଏହା ତାଙ୍କ ହାଡ଼ୁଆ ଗୋଡ଼ରେ ମିଶିଯାଇ ଗୋଡ଼ରେ ପିନ୍ଧିଥିବା ଉତ୍କୃଷ୍ଟ ଚମଡ଼ାର ଜୋତା ଯାଏଁ ପହଞ୍ଚି-ଥାଏ । ଖଣ୍ଡେ 'କଳା ସୂତାରେ' ଗୋଟିଏ ଆଖିରେ ଲଗାଇବା ଚଷମା ଖଣ୍ଡେ ଛାତି ଉପରେ ଓହଳିଥାଏ । ସେ ଅନେକ ସମୟରେ ଇଂରେଜ ପୋଷାକ ପିନ୍ଧୁଥିଲେ । ୧୯୪୭, ମେ ୫ ତାରିଖର 'ନିଉୟର୍କ ଟାଇମ୍ସ୍' କାଗଜରେ ଜର୍ଜ ଇ· ଜୋନ୍ସ୍ ଲେଖିଥିଲେ, 'ଜିନ୍ନା ସମଗ୍ର ବ୍ରିଟିଶ ସାମ୍ରାଜ୍ୟରେ ଉତ୍କୃଷ୍ଟ ପୋଷାକ ପିନ୍ଧୁଥିବା ଲୋକଙ୍କ ଭିତରୁ ଜଣେ—ଏହା ନିଶ୍ଚିତ ଭାବେ କୁହାଯାଇପାରେ ।'

ଚମଡ଼ା ଓ ଗୁନ୍ଦ ଅଠାରେ କାରବାର କରୁଥିବା ଜଣେ ଧନୀ ମହାଜନଙ୍କର ଜିନ୍ନା ଥିଲେ ଜ୍ୟେଷ୍ଠ ସନ୍ତାନ । ସେ ଜନ୍ମ ହୋଇଥିଲେ ୧୮୭୭ ଖ୍ରୀଷ୍ଟାବ୍ଦର ଖ୍ରୀସ୍ମାସ ଦିବସରେ—ଗାନ୍ଧୀଙ୍କ ଜନ୍ମର ସାତବର୍ଷ ପରେ । ଗାନ୍ଧୀଙ୍କ ଜନ୍ମସ୍ଥାନ କାଥିଆବାଡ ଉପଦ୍ୱୀପରେ ଜିନ୍ନା ମଧ୍ୟ ଜନ୍ମ ହୋଇଥିଲେ । ତାଙ୍କର ବି ମାତୃଭାଷା ଥିଲା ଗୁଜରାଟି । 'ଜିନ୍ନା' ଗୋଟିଏ ହିନ୍ଦୁ ସାଙ୍ଗିଆ । ଅଳ୍ପ କେତେବର୍ଷ ଆଗରୁ ଜିନ୍ନାଙ୍କ ପରିବାର ମୁସଲମାନ ଧର୍ମ ଗ୍ରହଣ କରିଥିଲେ । ସେ ଥିଲେ 'ଖୋଜା' ସଂପ୍ରଦାୟର ଲୋକ । ଖୋଜା-ସଂପ୍ରଦାୟର ବହୁ ମୁସଲମାନଙ୍କର ହିନ୍ଦୁ ସାଙ୍ଗିଆ ; ସେମାନଙ୍କ ଭିତରୁ ଅନେକେ ହିନ୍ଦୁଙ୍କ ପରି ଏକାନ୍ନବର୍ତ୍ତୀ ପରିବାରରେ ବାସ କରନ୍ତି । ଅଷ୍ଟାଦଶ ଓ ଊନବିଂଶ ଶତାବ୍ଦୀରେ ଖୋଜାମାନେ ହିନ୍ଦୁ ଧର୍ମକୁ ଫେରି ଆସିବାକୁ ଉଦ୍ୟମ କରିଥିଲେ, କିନ୍ତୁ ହିନ୍ଦୁମାନେ ସେ ଉଦ୍ୟମକୁ ପ୍ରତ୍ୟାଖ୍ୟାନ କଲେ ।

ହିନ୍ଦୁ ଧର୍ମ ଓ ମୁସଲମାନ ଧର୍ମ ପରସ୍ପରଠାରୁ ସଂପୂର୍ଣ୍ଣ ଭିନ୍ନ ହେଲେହେଁ ଭାରତର ହିନ୍ଦୁ ଓ ମୁସଲମାନଙ୍କ ଚଳଣିରେ ବିଶେଷ ଅସାମଞ୍ଜସ୍ୟ ନ ଥିଲା । ଭାରତର ଅଧିକାଂଶ ମୁସଲମାନ ପୂର୍ବରେ ଥିଲେ ହିନ୍ଦୁ; ଭାରତ ଆକ୍ରମଣ କରିଥିବା ଆରବୀ, ଆଫଗାନ୍ ଓ ପାରସ୍ୟବାସୀଙ୍କଦ୍ୱାରା ଏମାନେ ମୁସଲମାନ

ଧର୍ମରେ ଦୀକ୍ଷିତ ହୋଇଥିଲେ । ଜିନ୍ନାଙ୍କଠାରୁ ଶୁଣିଲି ଭାରତ ମୁସଲମାନ ଜନତାଙ୍କ ମଧ୍ୟରେ ଶତକଡ଼ା ୭୫ ଭାଗ ହିନ୍ଦୁଧର୍ମରୁ ଦୀକ୍ଷିତ ହୋଇଥିବା ଲୋକ; ନେହେରୁଙ୍କ ମଧ୍ୟରେ ଏଭଳି ଦୀକ୍ଷିତ ମୁସଲମାନଙ୍କ ସଂଖ୍ୟା ଶହକେ ୯୫ ଭାଗ । ଭାରତର କେତେକ ଅଞ୍ଚଳରେ ମୁସଲମାନମାନେ ହିନ୍ଦୁ ମନ୍ଦିରର ଦେବତାଙ୍କୁ ମାନନ୍ତି । ବହୁ ଅଞ୍ଚଳରେ, ରୂପ, ପୋଷାକ, ଚାଲିଚଳଣି ଓ ଭାଷାରେ ହିନ୍ଦୁ ଓ ମୁସଲମାନଙ୍କୁ ବାରି ହୁଏ ନାହିଁ । ହିନ୍ଦୁଙ୍କର ପ୍ରଧାନ ଭାଷା ହିନ୍ଦୀ ଓ ମୁସଲମାନଙ୍କର ଉର୍ଦ୍ଦୁ । ଏ ଦୁଇଭାଷାର ଲିପି ଅଲଗା । ହିନ୍ଦୀ ଭାଷାରେ ବହୁତ ସଂସ୍କୃତ ଶବ୍ଦ ପଶିଛି, ଓ ଉର୍ଦ୍ଦୁରେ ପାରସୀୟ ଶବ୍ଦ ପଶିଛି । କିନ୍ତୁ ହିନ୍ଦୁମାନେ ଉର୍ଦ୍ଦୁ ବୁଝନ୍ତି, ଓ ମୁସଲମାନମାନେ ହିନ୍ଦୀ ବୁଝନ୍ତି । ହିନ୍ଦୁ ଧର୍ମ ଭାରତର ନିଜସ୍ୱ, ଏହା ଭାରତୀୟ ଲୋକଙ୍କର ମନୋ-ବୃତ୍ତିକୁ ପ୍ରଚ୍ଛନ୍ନଭାବେ ପ୍ରଭାବିତ କରିଥାଏ । ତେଣୁ ବଳପୂର୍ବକ ମୁସଲମାନ ଧର୍ମରେ ଦୀକ୍ଷିତ ହୋଇଥିବା ଲୋକଙ୍କ ମନରେ ମଧ୍ୟ ହିନ୍ଦୁ ଧର୍ମର ପ୍ରଭାବ ପ୍ରଚ୍ଛନ୍ନ ଭାବେ ରହିଥାଏ । ଧର୍ମଗୁରୁ ଓ ପ୍ରଚାରକମାନେ ଉଭୟ ସଂପ୍ରଦାୟ ମଧ୍ୟରେ ବିଭେଦ ସୃଷ୍ଟି କରିବାରେ ଓ ପରସ୍ପର ସଂପର୍କରେ ତିକ୍ତତା ଭରି କରିବାରେ ସଫଳକାମ ହୋଇଥିଲେ ମଧ୍ୟ ହିନ୍ଦୁ ଓ ମୁସଲମାନଙ୍କ ଭିତରେ ସୌହାର୍ଦ୍ଦ୍ୟ ସଂପୂର୍ଣ୍ଣ ଲୋପ ହୋଇ ପାରିନାହିଁ । ଜିନ୍ନା, ଗାନ୍ଧୀ, ନେହେରୁ, ବଲ୍‌ଡ଼ଇନ୍, ଓ୍ୱାଭେଲ୍ ଏବଂ ଗୋଟିକିଠାରୁ ସମସ୍ତ ବ୍ରିଟିଶ୍ ଅଫିସର୍, ହିନ୍ଦୁ ଓ ମୁସଲମାନ ଉଭୟ ସଂପ୍ରଦାୟର ଯାହାଙ୍କୁ ଦେଖିଲି ସମସ୍ତେ ଏକ ସ୍ୱରରେ ସ୍ୱୀକାର କରିଛନ୍ତି ଯେ, ଗ୍ରାମମାନଙ୍କରେ ହିନ୍ଦୁ ଓ ମୁସଲମାନ ଚାଲିକୁ ଚାଲି ବାନ୍ଧି ଶାନ୍ତିରେ ରହିଛନ୍ତି—ଏହି ଗ୍ରାମମାନଙ୍କରେ ଭାରତର ଶତକଡ଼ା ୮୦ ଲୋକ ବାସ କରନ୍ତି । ପୁଣି ଭାରତୀୟ ସୈନ୍ୟବାହିନୀରେ ମଧ୍ୟ ହିନ୍ଦୁ, ମୁସ୍‌ଲିମ୍, ଶିଖ୍, ଖ୍ରୀଷ୍ଟିଆନ୍, ବସ୍ତୁତଃ ସବୁ ଧର୍ମ ଓ ସଂପ୍ରଦାୟର ସୈନିକ, ଏକ ସଙ୍ଗେ ଖାନ୍ତି, ରହନ୍ତି, ଏକାଠି ତାଲିମ୍ ପାଇ ଲଢ଼େଇରେ ଠିଆ ହୁଅନ୍ତି; ଧର୍ମର ପାର୍ଥକ୍ୟ ଯୋଗୁଁ ଏମାନଙ୍କ ମଧ୍ୟରେ କେବେହେଁ କଳିତକରାଳ ହୁଏ ନାହିଁ ।

ମୁଁ ଜିନ୍ନାଙ୍କୁ ପୁଚ୍ଛିଲି, ଧର୍ମବିଦ୍ୱେଷ, ସ୍ୱତନ୍ତ୍ର ଜାତୀୟତା ଓ ଦେଶର ସୀମାସରହଦ୍ ଯେଉଁ ମାନବଜାତିର ମନ କଳୁଷିତ ହେଉଛି ଓ ଏହାର ଯୋଗୁଁ ଯୁଦ୍ଧ ଲାଗିଛି ; ପୃଥିବୀ ଚାହେଁ ପରସ୍ପର ପ୍ରତି ସଦ୍‌ଭାବ ; ଏତେବେଳେ ନୂଆ ବିଭେଦର ସୂତ୍ରପାତ କରିବା କାହାରି ଅଭିପ୍ରେତ ନୁହେଁ ।

ସେ ଉତ୍ତର ଦେଲେ, 'ତୁମେ ଜଣେ ଆଦର୍ଶବାଦୀ ; ମୁଁ କିନ୍ତୁ ବାସ୍ତବବାଦୀ । ବାସ୍ତବ ପରିସ୍ଥିତିକୁ ଦେଖି ମୁଁ ତଦନୁରୂପ କାର୍ଯ୍ୟ କରେ । ଫ୍ରାନ୍ସ୍ ଓ ଇଟାଲୀ ଏଇ ଦୁଇଟି ଦେଶକୁ ଦେଖ । ଉଭୟଙ୍କର ଚାଲିଚଳନ ଓ ଧର୍ମ ଏକ । ଉଭୟର ଭାଷା ଦୁଇଟିରେ ଖୁବ୍ ସାଦୃଶ୍ୟ ଅଛି । ଏ ସବୁ ସତ୍ତ୍ୱେ ଦୁଇଟି ଦେଶ କ'ଣ ସ୍ୱତନ୍ତ୍ର ହୋଇ ନାହାନ୍ତି ?'

ମୁଁ ପଚାରିଲି, 'ଇଉରୋପରେ ଯେଉଁ ବିଶୃଂଖଳା ଲାଗି ରହିଛି, ଆପଣ କ'ଣ ଏଠାରେ ସେଇ ଅବସ୍ଥା ସୃଷ୍ଟି କରିବାକୁ ଚାହାନ୍ତି ?'

ସେ କହିଲେ, 'ଏଠାରେ ବିଭିନ୍ନ ସଂପ୍ରଦାୟ ଭିତରେ ଯେଉଁ ଭେଦବୁଦ୍ଧି ରହିଛି ତାହାର ସମ୍ମୁଖୀନ ହୋଇ ତ ପ୍ରତିକାର କରିବାକୁ ହେବ ।'

ଜିନ୍ନାଙ୍କର ମୁସ୍‌ଲିମ୍ ଧର୍ମରେ ନିଷ୍ଠା ନ ଥିଲା । ମଦ ପିଇବା ଓ ଘୁଷୁରି ମାଂସ ଖାଇବା ଇସ୍‌ଲାମ୍ ଧର୍ମରେ ମନା ; ଜିନ୍ନା ମଦ ପିଉଥିଲେ ଓ ଘୁଷୁରି ମାଂସ ଖାଉଥିଲେ । ସେ ମସ୍‌ଜିଦ୍‌କୁ ପ୍ରାୟ ଯାଉ ନ ଥିଲେ ; ତାଙ୍କୁ ଆରବୀ ଭାଷା ଆଦୌ ଜଣା ନ ଥିଲା, ଉର୍ଦ୍ଦୁ ବି ଅତି ଅଳ୍ପ ଜାଣୁଥିଲେ । ଚାଳିଶ ପାର ହେବା ପରେ ସେ ଧର୍ମ ଛାଡ଼ି ୧୮ ବର୍ଷ ବୟସ୍କା ଜଣେ ପାର୍ସୀ ଯୁବତୀଙ୍କୁ ବିଭା ହେଲେ ।

ତାଙ୍କର ଏକମାତ୍ର ସନ୍ତାନ, ଗୋଟିଏ ସୁନ୍ଦରୀ ଝିଅ ଜଣେ ପାର୍ସୀଙ୍କୁ ବିଭା ହୋଇ ଖ୍ରୀଷ୍ଟିଆନ୍ ଧର୍ମ ଗ୍ରହଣ କରିବାରେ ସେ ତାଙ୍କୁ ତ୍ୟାଗ କରି ନିଜ ସଂପତ୍ତିର ଉତ୍ତରାଧିକାରରୁ ବଂଚିତ କରିଦେଲେ । ନିଜେ ଯେଉଁ ପାର୍ସୀ ଯୁବତୀଙ୍କୁ ବିଭା ହୋଇଥିଲେ ସେ ଜିନ୍ନାଙ୍କଠାରୁ ଛାଡ଼ପତ୍ର ନେଇ, ଅଳ୍ପଦିନ ପରେ, ୧୯୨୯ରେ ପ୍ରାଣତ୍ୟାଗ କଲେ । ଜୀବନର ଅବଶିଷ୍ଟ ଭାଗରେ ତାଙ୍କର ଭଉଣୀ ଫାତିମା ତାଙ୍କର ହେପାଜତ କଲେ । ସେ ଥିଲେ ଜଣେ ଦନ୍ତଚିକିତ୍ସକ ଏବଂ ତାଙ୍କର ଚେହେରା ଥିଲା ଜିନ୍ନାଙ୍କ ଚେହେରା ପରି । ସେ ସବୁବେଳେ ଜିନ୍ନାଙ୍କ ପାଖେ ପାଖେ ରହୁଥିଲେ ଏବଂ ଜିନ୍ନା ପ୍ରତ୍ୟେକ ବିଷୟରେ ଯାଙ୍କର ପରାମର୍ଶ ନେଉଥିଲେ । ଫାତିମା କହିଥିଲେ, 'ମୁସ୍‌ଲିମ୍ ସ୍ତ୍ରୀଲୋକମାନେ ପୁରୁଷମାନଙ୍କର ପଛରେ ରହିଲେ ବି, ବସ୍ତୁତଃ ପୁରୁଷମାନଙ୍କୁ ଚଳାନ୍ତି ।'

କର୍ମଜୀବନର ପ୍ରଥମ ଭାଗରେ ଜିନ୍ନା ହିନ୍ଦୁ ଓ ମୁସ୍‌ଲିମ୍‌ମାନଙ୍କ ଭିତରେ ମେଳ ଆଣିବା ପାଇଁ ଚେଷ୍ଟା କରିଥିଲେ । ଲଣ୍ଡନ୍‌ର ଲିଙ୍କନ୍

ଇନ୍‌ରେ ବାରିଷ୍ଟର ପଢ଼ି ଦେଶକୁ ଫେରି ସେ ବମ୍ବେରେ ଆଇନ୍ ବ୍ୟବସାୟ ଆରମ୍ଭ କରିଦେଲେ । ବାରିଷ୍ଟରିରେ ତାଙ୍କର ଖୁବ୍ ଭଲ ରୋଜଗାର ହେଲା । ତା'ପରେ ସେ ରାଜନୀତିରେ ମନପ୍ରାଣ ଢାଳିଦେଲେ । ସ୍ୱାଧୀନତା ମିଳିଲେ ହିନ୍ଦୁମାନେ ମୁସ୍‌ଲିମ୍‌ଙ୍କ ଉପରେ କ୍ଷମତା ଜାହିର କରି ବସିବେ ବୋଲି ଅଭିଯୋଗ ହେବାରେ ସେ ମୁସ୍‌ଲିମ୍ ଲିଗ୍ ସମ୍ମିଳନୀରେ ଭାଷଣ ଦେଇ କହିଥିଲେ, 'ଏ ଭୟକୁ ମନରେ ସ୍ଥାନ ଦିଅ ନାହିଁ । ଐକ୍ୟ ଓ ସହଯୋଗ ସ୍ୱାୟତ୍ତଶାସନର ମୂଳଦୁଆ । ଯେଉଁମାନେ ହିନ୍ଦୁ-ପ୍ରାଧାନ୍ୟର ଭୂତ ଦେଖାଉଛନ୍ତି ସେମାନେ ଏହି ମୂଳଦୁଆ ଦୋହଲାଇ ଦେବାକୁ ଇଚ୍ଛା କରନ୍ତି ।'

ଜିନ୍ନା ଏକ ସମୟରେ କଂଗ୍ରେସର ଅନ୍ୟତମ ନେତା ଥିଲେ । ମୁଁ ତାଙ୍କ ସଙ୍ଗେ ଦୁଇଥର ଦେଖା କରିଥିଲି । ପ୍ରଥମ ସାକ୍ଷାତରେ ସେ ମୋତେ କହିଲେ, 'ମୁଁ ଏ ଆନ୍ଦୋଳନରେ ୩୫ ବର୍ଷ କଟାଇଛି । ହୋମ୍-ରୁଲ୍ ଲିଗ୍‌ରେ ନେହେରୁ ମୋ ତଳେ କାମ କରିଥିଲେ । ଗାନ୍ଧୀ ମଧ୍ୟ ମୋ ତଳେ ଥିଲେ । ମୁଁ କଂଗ୍ରେସ ଦଳରେ ସକ୍ରିୟ ଅଂଶ ଗ୍ରହଣ କରିଥିଲି । ମୁସ୍‌ଲିମ ଲିଗ୍ ଯେତେବେଳେ ପ୍ରଥମେ ଗଠିତ ହେଲା, ସେତେବେଳେ ଏହାକୁ ସ୍ୱାଗତ କରିବାକୁ ମୁଁ କଂଗ୍ରେସକୁ ପ୍ରବର୍ତ୍ତାଇଥିଲି । ମୁଁ କହିଥିଲି ଯେ, ମୁସ୍‌ଲିମ୍-ମାନଙ୍କ ଏ ସଂଗଠନ ସ୍ୱାୟତ୍ତଶାସନ ପ୍ରାପ୍ତିର ପ୍ରଥମ ସୋପାନ ପରି । ୧୯୧୫ରେ ମୋର ପ୍ରବର୍ତ୍ତନାରେ କଂଗ୍ରେସ ଓ ମୁସ୍‌ଲିମ୍ ଲିଗ୍ ଉଭୟର ଅଧିବେଶନ ବମ୍ବେଠାରେ ଏକ ସମୟରେ ହୋଇଥିଲା । ଉଭୟଙ୍କ ମଧ୍ୟରେ ଏକତାର ଭାବ ଜାଗ୍ରତ କରିବାକୁ ମୁଁ ଏପରି କରିଥିଲି । ମୋର ଲକ୍ଷ୍ୟ ଥିଲା ହିନ୍ଦୁମୁସଲମାନଙ୍କ ଐକ୍ୟ ବିଧାନ କରିବା । ଏଭଳି ଏକତାରେ ନିଜର ବିପଦର ଆଶଙ୍କା କରି ବ୍ରିଟିଶ୍ ସରକାର ସାଧାରଣ ଖୋଲା ଅଧିବେଶନ ବନ୍ଦ କରାଇ ଦେଲେ । ଯାହା ହେଉ, ଘର ଭିତରେ, ବାହାର ଦର୍ଶକମାନଙ୍କୁ ଆସିବାକୁ ଅନୁମତି ନ ଦେଇ ବୈଠକ ଦୁଇଟିଯାକ ଚାଲିଲା । ୧୯୧୬ରେ ମଧ୍ୟ, ମୋର ପ୍ରବର୍ତ୍ତନାରେ ଉଭୟ ଦଳର ବାର୍ଷିକ ଅଧିବେଶନ ଲକ୍ଷ୍ନୌ-ଠାରେ ବସିଥିଲା ; ମୋର ଉଦ୍ୟମରେ ଲକ୍ଷ୍ନୌ ରାଜିନାମାରେ ଉଭୟ ଦଳ ଦସ୍ତଖତ କଲେ । ଉଭୟ ସଂପ୍ରଦାୟର ପ୍ରତିନିଧି ନିର୍ବାଚନ କପରି ଭାବରେ ହେବ ଏବଂ ସଂଖ୍ୟାନ୍ୟୂନ ମୁସ୍‌ଲିମ୍‌ଙ୍କୁ ସଂଖ୍ୟା ଅନୁପାତରେ ଯେତିକି ଜଣ ପ୍ରତିନିଧି ମିଳନ୍ତେ ତହିଁରୁ କେତେ ଅଧିକ ପ୍ରତିନିଧି ମିଳିବେ ସେ ବିଷୟରେ

ରାଜନ୍ୟାସ୍ୟା ହୋଇଗଲା । ୧୯୨୦ରେ ଗାନ୍ଧୀ ଆସି ଭାରତୀୟ ରାଜନୀତିରେ କର୍ତ୍ତୃତ୍ୱ କରିବା ପର୍ଯ୍ୟନ୍ତ ଏହିପରି ବୁଝାମଣାରେ ସବୁ ଚାଲିଥିଲା । ଏହି-ଠାରୁ ହିନ୍ଦୁ-ମୁସ୍‌ଲିମ୍ ସମ୍ପର୍କର ଅଧୋଗତି ଆରମ୍ଭ ହେଲା । ୧୯୩୧ରେ ଗୋଲଟେବୁଲ ବୈଠକବେଳେ ମୋର ସ୍ପଷ୍ଟ ଧାରଣା ହେଲା ଯେ, ହିନ୍ଦୁ-ମୁସ୍‌ଲିମ୍ ଏକତା ଅସମ୍ଭବ ; ଗାନ୍ଧୀ ଏ ଏକତା ପ୍ରତିଷ୍ଠିତ ହେବା ଚାହାନ୍ତି ନାହିଁ । ମୁଁ ହତାଶ ହୋଇଗଲି, ଓ ଭାରତକୁ ନ ଫେରି ବିଲାତରେ ରହିଯିବାକୁ ସ୍ଥିର କଲି । ଭାରତରେ ଥିବା ମୋର ସମ୍ପତ୍ତି ଓ ଘରବାଡ଼ି ବିକ୍ରୀ କରିବାକୁ ବି ଭାରତ ନ ଯାଇ ଜଣେ କାରପରଦାଜଦ୍ୱାରା ତାହା କରାଇନେଲି । ୧୯୩୫ ପର୍ଯ୍ୟନ୍ତ ମୁଁ ଇଂଲଣ୍ଡରେ ରହିଲି । ପ୍ରିଭି କାଉନ୍-ସିଲରେ ମୁଁ ବାରିଷ୍ଟରୀ କରୁଥାଏ । ସେଠାରେ ମୋର ପ୍ରସାର ବଢ଼ିବ ବୋଲି ଆଶା ନ ଥିଲା, କିନ୍ତୁ ମୁଁ ଆଶାତୀତ ଭାବେ ସଫଳ ହେଲି । ଭାରତକୁ ଫେରିବାକୁ ଆଦୌ ଇଚ୍ଛା ନ ଥାଏ । ପ୍ରତିବର୍ଷ କିନ୍ତୁ ଭାରତରୁ ଆସୁଥିବା ବନ୍ଧୁମାନେ ଦେଶର ଅବସ୍ଥା ମୋ ଆଗେ ବର୍ଣ୍ଣନା କରୁଥାନ୍ତି, ଏବଂ ମୁଁ ଦେଶକୁ ଫେରିଲେ ବହୁତ କିଛି କରିପାରନ୍ତି ବୋଲି କହୁଥାନ୍ତି । ଅବଶେଷରେ ମୁଁ ଫେରିବାକୁ ସମ୍ମତ ହେଲି ।'

ଏ ସବୁ ଏକା ରାହାକେ ଉତ୍ତେଜିତ ଭାବେ କହି ସେ ଅନେଃଶ୍ୱାସୀ ହେଲା ପରି ହୋଇଗଲେ । ଏତିକି କହି ସାରି ସେ ଟିକିଏ ତୂଷ୍ଣୀ ହେଲେ, ସିଗାରେଟ୍ ଟାଣିଲେ ଏବଂ ପୁଣି କହିବାକୁ ଲାଗିଲେ, 'ଗାନ୍ଧୀ ସ୍ୱୟଂ ଭାରତର ପ୍ରକୃତ ସ୍ୱାଧୀନତା ଚାହାନ୍ତି ନାହିଁ, ସେଇକଥା ପ୍ରମାଣ କରିଦେବାକୁ ମୁଁ ଏ ସବୁ କହୁଛି । ବ୍ରିଟିଶ୍ ଏ ଦେଶରୁ ଯାନ୍ତୁ ବୋଲି ସେ ପ୍ରକୃତରେ ଚାହାନ୍ତି ନାହିଁ । ସ୍ୱାଧୀନତା ଓ ରାଜନୀତି ଅପେକ୍ଷା ସେ ଅଧିକ ଶ୍ରଦ୍ଧା କରନ୍ତି ତାଙ୍କ ଧର୍ମକୁ ; ସେ ଚାହାନ୍ତି ହିନ୍ଦୁଧର୍ମର ପ୍ରତିଷ୍ଠା । ନେହେରୁ ବି ବ୍ରିଟିଶ୍ ଯାନ୍ତୁ ବୋଲି ଚାହାନ୍ତି ନାହିଁ । ଏମାନେ ଚାହାନ୍ତି ହିନ୍ଦୁ ରାଜ୍ ।'

ଲଣ୍ଡନରେ ଇକନମିଷ୍ଟ୍ କାଗଜରେ ୧୯୪୯, ସେପ୍ଟେମ୍ବର ୧୭ ତାରିଖରେ 'ଜିନ୍ନାଙ୍କ ସ୍ମୃତିରେ' ଶିରୋନାମାରେ ଗୋଟିଏ ନିବନ୍ଧ ପ୍ରକାଶ ପାଇଥିଲା । ଯେଉଁ ସାମ୍ବାଦିକ ଏହା ଲେଖିଥିଲେ ତାଙ୍କର ଜିନ୍ନାଙ୍କ ସଙ୍ଗେ ଘନିଷ୍ଠତା ଥିଲା । ସେ ଏ ନିବନ୍ଧରେ ପ୍ରକାଶ କରିଥିଲେ ଯେ, ଲଣ୍ଡନରେ ଜିନ୍ନା ଆଇନ୍ ବ୍ୟବସାୟ କରୁଥିଲା ବେଳେ 'ଜଣେ ବନ୍ଧୁ ନେହେରୁଙ୍କର ଗୋଟିଏ ଉକ୍ତି ଉଦ୍ଧାର କରି ତାଙ୍କୁ କହିଲେ, ନେହେରୁ ଜଣେ ବନ୍ଧୁଙ୍କ

ନୈଶଭୋଜ ସଭାରେ ବେପରବାୟୀଭାବେ ମନ୍ତବ୍ୟ ଦେଲେ, ଜିନ୍ନାଙ୍କ ପାରିବା ପଣ ଗଲାଣି ।" ଜିନ୍ନା ନେହେରୁଙ୍କୁ ଘୃଣା କରୁଥିଲେ ଓ ତୁଚ୍ଛ ମନେ କରୁଥିଲେ । ନେହେରୁଙ୍କ ଏ ଉକ୍ତିରେ ଉତ୍ତ୍ୟକ୍ତ ହୋଇ ଜିନ୍ନା ତୁରନ୍ତ ଲଣ୍ଡନରୁ ଅଫିସ୍ ଭାଙ୍ଗି ଭାରତ ଯାତ୍ରା କଲେ । ତାଙ୍କର ଉଦ୍ଦେଶ୍ୟ ଥିଲା, ତାଙ୍କର କରାମତ୍ ଗଲାଣି କି ଅଛି, "ନେହେରୁଙ୍କୁ ଦେଖାଇଦେବେ···" । କ୍ଲିଓପେଟ୍ରାଙ୍କ ନାକର ସୌନ୍ଦର୍ଯ୍ୟ ଇତିହାସର ଗତି ନିର୍ଣ୍ଣୟ କରିବାରେ ସମର୍ଥ ହୋଇଥିଲା । ଜିନ୍ନାଙ୍କ ଗର୍ବକୁ ସେଇଭଳି ଇତିହାସର ନିର୍ଣ୍ଣାୟକ ବୋଲି ବୋଧହୁଏ କୁହାଯାଇ ପାରେ ।'

'ନିଉୟର୍କ ଟାଇମସ୍' ସମ୍ବାଦପତ୍ରର ସାଂବାଦିକ ଜର୍ଜ ଇ· ଜୋନସ୍ ଜିନ୍ନାଙ୍କ ସହିତ ଏକାଧିକ ବାର ସାକ୍ଷାତ କରିଥିଲେ । ସେ ତାଙ୍କ 'ଭାରତରେ ବିଭ୍ରାଟ' ପୁସ୍ତକରେ ଲେଖିଛନ୍ତି, 'ଜିନ୍ନା ଜଣେ ବିଚକ୍ଷଣ ରାଜନୀତିକ କର୍ମୀ । କୌଣସି ନୈତିକ ବନ୍ଧନରେ ଆବଦ୍ଧ ହେବାକୁ ପରାଂମୁଖ ତାଙ୍କ ମନୋବୃତ୍ତି ଯୋଗୁଁ ତାଙ୍କୁ ମାକିଆଭେଲିଙ୍କ ସହିତ ତୁଳନା କରାଯାଇ ପାରେ··· । ତାଙ୍କର ବ୍ୟକ୍ତିଗତ ଦୋଷ ଭିତରେ ଥିବା ଅନ୍ୟ ପ୍ରତି ଦ୍ୱେଷଭାବ ରଖି ମନର କଥା ଖୋଲି ନ କହିବା, ନିଜ ବିଷୟରେ ଅଯଥା ଉଚ୍ଚ ଧାରଣା ପୋଷଣ କରିବା ଓ ସଙ୍କୀର୍ଣ୍ଣ ଦୃଷ୍ଟିକୋଣ ଧରିବା··· । ସେ ଥିଲେ ଅତି ମାତ୍ରାରେ ସନ୍ଦେହୀ ଲୋକ । ତାଙ୍କୁ ଜୀବନରେ ବହୁବାର ଲୋକେ ଦଗା ଦେଇଛନ୍ତି ବୋଲି ତାଙ୍କ ମନରେ ଧାରଣା ଥିଲା । ତାଙ୍କ ମନର ଶତ୍ରୁତା ଅତି ମାତ୍ରାରେ ଗୁପ୍ତ ରଖିବା ଫଳରେ ତାଙ୍କର ମସ୍ତିଷ୍କ ବିକୃତ ହେଲା ପରି ବୋଧ ହେଉଥିଲା । ସମସ୍ତଙ୍କଠାରୁ ଆଡ଼େଇ ହୋଇ ରହିବା ଫଳରେ ଏବଂ ଅନ୍ୟ ସମସ୍ତେ ତାଙ୍କୁ ଆଡ଼େଇ ହୋଇ ଚଳିବାକୁ ବସିଛନ୍ତି ବୋଲି ତାଙ୍କ ମନରେ ଧାରଣା ହେବା ଫଳରେ ସେ ଏତେ ଉଦ୍ଧତ ହୋଇଯାଇଥିଲେ ଯେ, ସାଧାରଣ ବ୍ୟବହାରରେ ସେ ଅସୌଜନ୍ୟ ଦେଖାଇବା ପର୍ଯ୍ୟନ୍ତ ଯାଉଥିଲେ··· ।'

ଜନତାର ସମର୍ଥନ ପାଇ ଗାନ୍ଧୀ ଧନିକ ଆଇନଜୀବୀମାନଙ୍କ କବ୍ଜାରୁ କଂଗ୍ରେସକୁ ମୁକ୍ତ କଲା ବେଳେ ଜିନ୍ନା କଂଗ୍ରେସରୁ ଓହରି ଯାଇଥିଲେ । ସେ ଗାନ୍ଧୀଙ୍କୁ ମୂଳରୁ ସୁଖ ପାଉ ନ ଥିଲେ । ସେକାଳେ ସାଧାରଣ ସଭା-ମାନଙ୍କରେ ସେ ଗାନ୍ଧୀଙ୍କ ବିଷୟ ଉତ୍ଥାପନ କଲାବେଳେ 'ମିଷ୍ଟର୍ ଗାନ୍ଧୀ' ବୋଲି କହୁଥିଲେ । ଅଧିକାଂଶ ଭାରତୀୟଙ୍କ ମତରେ, ଗାନ୍ଧୀଙ୍କୁ ମହାତ୍ମାଜୀ

ବା ଗାନ୍ଧିଜୀ ବୋଲି ନ କହି 'ମିଷ୍ଟର୍ ଗାନ୍ଧୀ' କହିବାଦ୍ୱାରା ତାଙ୍କୁ ଅସମ୍ମାନ ଦେଖାଯାଉଥିଲା । ମହାତ୍ମାଜୀ ବା ଗାନ୍ଧିଜୀ ବୋଲି କୁହନ୍ତୁ ବୋଲି ଶ୍ରୋତାମାନଙ୍କ ଭିତରୁ ଦାବି ହେବା ସତ୍ତ୍ୱେ ସେ ନିଜର ଜିଦ୍ ରଖି ମିଷ୍ଟର୍ ଗାନ୍ଧୀ ବୋଲି ପୁଣି କହୁଥିଲେ । ପରେ କିନ୍ତୁ, ଲଣ୍ଡନରୁ ଫେରି ଯେତେବେଳେ ସେ କଂଗ୍ରେସ-ବିରୋଧୀ ମୁସଲିମ୍ ଲିଗ୍‌ର, ସର୍ବମୟ କର୍ତ୍ତା ହେଲେ, ସେତେବେଳେ ନିଜ ପଦମର୍ଯ୍ୟାଦାକୁ ସେ ବିଶେଷ ଭାବେ ଜଗିବାକୁ ଲାଗିଲେ । ୧୯୩୯ରେ, ଯୁଦ୍ଧ ଲାଗିଯିବା ପରେ, ଭାଇସ୍‌ରୟ୍ ଗାନ୍ଧୀ ଓ ଜିନ୍ନାଙ୍କୁ ନିଜ ଭବନକୁ ଆସିବା ପାଇଁ ନିମନ୍ତ୍ରଣ କରିଥିଲେ । ଗାନ୍ଧୀ ଜିନ୍ନାଙ୍କ କୋଠିବାଟେ ଯାଇ ତାଙ୍କୁ ସାଙ୍ଗରେ ନେଇ ବଡ଼ଲାଟ ଭବନକୁ ଯିବାକୁ ପ୍ରସ୍ତାବ କଲେ । ଗାନ୍ଧୀ ଜିନ୍ନାଙ୍କୁ କେତେ ମାନ୍ୟ କରନ୍ତି ତାହାର ପରିଚୟ ଲୋକେ ଏଥିରୁ ପାଇବେ ବୋଲି ମନେ କରି ଜିନ୍ନା ଏ ପ୍ରସ୍ତାବ ଗ୍ରହଣ କଲେ । କିନ୍ତୁ ଗାନ୍ଧୀ ଆସି ଜିନ୍ନାଙ୍କ ଦ୍ୱାରେ ହାଜର ହେବାରେ, ଗାନ୍ଧୀଙ୍କ କାର୍‌ରେ ଜିନ୍ନା ଯିବାକୁ ନାହିଁ କରିଦେଲେ । ଦୁହେଁ ଯାକ ସେଠାରୁ ଜିନ୍ନାଙ୍କ ଗାଡ଼ିରେ ଗଲେ । ପରେ ଉଭୟଙ୍କ ଭିତରେ ଯେତେବେଳେ କଥାବାର୍ତ୍ତା ଚାଲିବାର ହେଲା, ଜିନ୍ନା ଜିଦ୍ କଲେ ଯେ କଥାବାର୍ତ୍ତା ଯେତେଦିନ ଚାଲିବ, ଜିନ୍ନାଙ୍କ ନିଜ ଭବନରେ ହିଁ ଚାଲିବ । ଗାନ୍ଧୀ ଶିଷ୍ଟାଚାରର ଏସବୁ ଖୁଣ୍ଟିନାଟିକୁ ଆଦୌ ଦୃଷ୍ଟି ଦେଉ ନ ଥିଲେ । ତେଣୁ ସେ ଜିନ୍ନାଙ୍କ କଥାରେ ଅକୁଣ୍ଠିତ ଭାବେ ରାଜି ହୋଇଗଲେ ।

ନିଃସନ୍ଦିଗ୍ଧ ଭାବେ କୁହାଯାଇ ପାରେ ଯେ ଅହଂକାର, ଈର୍ଷା ଓ ଘୃଣା ରାଜନୀତିକ ସଂପର୍କକୁ ବହୁଶଃ ପ୍ରଭାବିତ କରେ । ଇତିହାସର ବିଶିଷ୍ଟ ରାଜନୀତିକ କଳହର ମୂଳରେ ଥିଲା ବ୍ୟକ୍ତିଗତ ବିଦ୍ୱେଷ ଓ ଘୃଣା ; ପରେ ଘଟଣାଚକ୍ରରେ ସେ ସବୁ ରାଜନୀତିକ ବିଭ୍ରାଟର ରୂପ ନେଇଥିଲା । ଏ କଥା ସ୍ୱୀକାର କରିବାକୁ ହେବ ଯେ, ଜିନ୍ନା ମୁସଲିମ୍‌ଙ୍କ ନେତା ଥିଲେ ବା ନ ଥିଲେ, ହିନ୍ଦୁ-ମୁସଲିମ୍ ବିଦ୍ୱେଷର ଇତର ବିଶେଷ ହୋଇ ନ ଥାନ୍ତା । କିନ୍ତୁ ତାଙ୍କ ଉଗ୍ରଭାବ ଓ ଦ୍ୱେଷ ଓ ଅସୂୟା ଯୋଗୁଁ ଏ ବିଦ୍ୱେଷ ତାଉ ପାଇ ଅଧିକ ତେଜରେ ଜଳି ଉଠିଲା ।

କେବଳ ଜିନ୍ନାଙ୍କୁ ଛାଡ଼ିଦେଲେ, ମୁସଲିମ୍ ଲିଗ୍‌ର ପ୍ରତ୍ୟେକ ନେତୃସ୍ଥାନୀୟ ବ୍ୟକ୍ତି ଥିଲେ ବଡ଼ ବଡ଼ ଜମିଦାର ଓ ବହୁ ଜମିର ମାଲିକ ସଂଭ୍ରାନ୍ତ ଲୋକ । ଦେଶରେ କୃଷକମାନଙ୍କର ବିକ୍ଷୋଭ ଦିନକୁ ଦିନ ବଢ଼ିବାର ଲକ୍ଷ୍ୟ

କରି ଏମାନଙ୍କ ଦୁଶ୍ଚିନ୍ତା ବଢ଼ିବାକୁ ଲାଗିଥାଏ । ଉତ୍ତର-ପଶ୍ଚିମ ସୀମାନ୍ତ ପ୍ରଦେଶରେ, ସୀମାନ୍ତ ଗାନ୍ଧୀ ଖାଁ ଅବଦୁଲ୍ ଗଫର ଖାଁଙ୍କ ନେତୃତ୍ୱରେ କଂଗ୍ରେସ ଦଳ, ମୁସଲମାନ ଜମିଦାରଙ୍କ ବିରୁଦ୍ଧରେ ଜନତାକୁ ମତାଇଥାନ୍ତି । ବସ୍ତୁତଃ ସେଠା କଂଗ୍ରେସ ଦଳର ପ୍ରଧାନ କାର୍ଯ୍ୟ ଏହା ହିଁ ଥାଏ । ଯୁକ୍ତ-ପ୍ରଦେଶରେ ମୁସଲମାନ ଓ ହିନ୍ଦୁ ନିର୍ବିଶେଷରେ କୃଷକମାନେ ଏକଜୁଟ ହୋଇ ମୁସ୍‌ଲିମ୍ ଓ ହିନ୍ଦୁ ଜମିଦାରଙ୍କ ବିରୁଦ୍ଧରେ ଆନ୍ଦୋଳନ କରୁଥାନ୍ତି ।

ମୁସ୍‌ଲିମ୍ ଲିଗ୍‌କୁ ଟଙ୍କା ସାହାଯ୍ୟ କରୁଥିବା ମୁସ୍‌ଲିମ୍ ଜମିଦାର-ମାନେ ଧର୍ମର ଦୁଆ ଧରି ମୁସ୍‌ଲିମ୍ ଓ ହିନ୍ଦୁ କୃଷକମାନଙ୍କୁ ଫଟାଇବାକୁ ଉଦ୍ୟମ କରୁଥାନ୍ତି ।

ବ୍ୟବସାୟ ଓ କୁସୀଦ ବୃତ୍ତିରେ ଟଙ୍କା ଖଟାଇବା କୋରାଣରେ ନିଷିଦ୍ଧ ଥିବାରୁ ମୁସଲମାନଙ୍କ ଧନର ଅଧିକାଂଶ ଜମିରେ ଲାଗିଥାଏ । ହିନ୍ଦୁ ଓ ପାର୍ସୀ କଳକାରଖାନା ଓ ବ୍ୟବସାୟ ମାଲିକମାନେ ପ୍ରାୟଶଃ ନିଜ ନିଜ ଧର୍ମାବଲମ୍ବୀ ଲୋକଙ୍କୁ ନିଯୁକ୍ତ କରିବାକୁ ପସନ୍ଦ କରୁଥାନ୍ତି । ପୁଣି, ସରକାରୀ ଚାକିରିରେ ପ୍ରବେଶ କରିବାରେ ମୁସଲମାନଙ୍କୁ ବହୁ ବାଧାବିଘ୍ନର ସମ୍ମୁଖୀନ ହେବାକୁ ହେଉଥାଏ । ହିନ୍ଦୁ, ପାର୍ସୀ, ଓ ଖ୍ରୀଷ୍ଟିଆନ୍‌ଙ୍କ ତୁଳନାରେ ମୁସଲମାନଙ୍କ ଶିକ୍ଷାର ମାନ କମ୍ ଥାଏ । ବିଂଶ ଶତାବ୍ଦୀରେ ସହରମାନଙ୍କ ମୁସଲମାନ ମଧ୍ୟବିତ୍ତ ଶ୍ରେଣୀଙ୍କ ସଂଖ୍ୟା ବଢ଼ିବାକୁ ଲାଗିଲା । ବ୍ରିଟିଶ ସରକାରୀ ଚାକିରି ପାଇବାରେ ସାହାଯ୍ୟ କରିବାକୁ ସେମାନେ ଜିନ୍ନାଙ୍କ ମୁଖାପେକ୍ଷୀ ହେଲେ । ଜିନ୍ନା ତାହା କଲେ । କର୍ତ୍ତୃପକ୍ଷଙ୍କୁ ପ୍ରଭାବିତ କରି ସେ ବ୍ୟବସ୍ଥା କରାଇଲେ ଯେ, ବିଶ୍ୱବିଦ୍ୟାଳୟ କୃତିତ୍ୱ ଉପରେ ଅଧିକ ଜୋର ନ ଦେଇ ମୁସଲମାନଙ୍କୁ ତାଙ୍କ ସଂଖ୍ୟା-ଅନୁପାତରେ ନିର୍ଦ୍ଦିଷ୍ଟ ସଂଖ୍ୟକ ଚାକିରି ବିଭିନ୍ନ ବିଭାଗରେ ମିଳିବ ।

ମୁସ୍‌ଲିମ୍ ଉଚ୍ଚଶ୍ରେଣୀୟ (ଜମିଦାର) ଗୋଷ୍ଠୀ, ଓ ମଧ୍ୟବିତ୍ତ ଶ୍ରେଣୀ ଜିନ୍ନାଙ୍କ ନେତୃତ୍ୱ ଗ୍ରହଣ କରିବାକୁ ଆଗ୍ରହୀ ହୋଇଥାନ୍ତି । କିନ୍ତୁ ନିଜର ସଂଖ୍ୟା ଆଖିଦୃଷ୍ଟିଆ କରିବା ପାଇଁ ସେମାନେ କୃଷକମାନଙ୍କର ସମର୍ଥନ ଲୋଡ଼ୁଥାନ୍ତି । ଅବିଳମ୍ବେ ସେମାନେ ଉପଲବ୍ଧି କରିପାରିଲେ ଯେ, ଧର୍ମଗତ ମନୋଭାବକୁ ଉସ୍‌କାଇ ଦେଇ ପାରିଲେ ଏ ଉଦ୍ଦେଶ୍ୟ ଚରିତାର୍ଥ ହୋଇ-ପାରିବ । ପାକିସ୍ଥାନ ବୋଲି ମୁସଲମାନଙ୍କର ଗୋଟିଏ ସ୍ୱତନ୍ତ୍ର ରାଷ୍ଟ୍ର ଗଠନ କରିବାକୁ ଧ୍ୱନି ଦିଆଗଲା । ପ୍ରଚାର କରାଗଲା ଯେ, ପାକିସ୍ଥାନରେ କେବଳ

ମୁସଲମାନଙ୍କୁ ଉଚ୍ଚ ସରକାରୀ ଚାକରୀରେ ରଖାଯିବ, ଏବଂ ପାକିସ୍ଥାନରେ ଶିଳ୍ପ ବ୍ୟବସାୟ କରୁଥିବା ପାର୍ସୀ ଓ ହିନ୍ଦୁ ଶିଳ୍ପପତିଙ୍କ ଉପରେ କଟକଣା ରଖାଯିବ । ଜମିଦାରମାନଙ୍କର ହୃଦ୍‌ବୋଧ ହେଲା ଯେ, ସ୍ୱାଧୀନ, ଉଦାର-ମତି-ବାଦୀ ଧର୍ମନିରପେକ୍ଷ ଭାରତ ରାଷ୍ଟ୍ର ଅପେକ୍ଷା, ତାଙ୍କ ନିଜ ନିୟନ୍ତ୍ରଣରେ ଥିବା ପାକିସ୍ଥାନରେ ସେମାନଙ୍କ ସ୍ୱାର୍ଥରେ ଆଞ୍ଚ ଆସିବାର ଅପେକ୍ଷାକୃତ କମ୍ ଆଶଂକା ରହିବ । ସ୍ୱାଧୀନ, ମିଳିତ, ଭାରତ ରାଷ୍ଟ୍ର ସ୍ୱାୟତ୍ତଶାସନ ପାଇବାର ଅବ୍ୟବହିତ ପରେ ଭୂସ୍ୱତ୍ତ୍ୱ ଆଇନ୍‌ର ସଂଶୋଧନ କରି ଜମିଦାରୀ-ଉଚ୍ଛେଦ କରିବ ବୋଲି ସେତେବେଳକୁ ସମସ୍ତେ ମନେ କରି ସାରିଥିଲେ ।

ଭାରତରେ ମୁସଲମାନଙ୍କ ସଂଖ୍ୟା ମାତ୍ର ଦଶକୋଟି, କିନ୍ତୁ ହିନ୍ଦୁଙ୍କ ସଂଖ୍ୟା ୩୦ କୋଟି । ଏପରି ସ୍ଥଳେ ରାଜନୀତିକ ଦୃଷ୍ଟିରେ ମୁସ୍‌ଲିମ୍‌ମାନେ ନିଜର ସଂଖ୍ୟାଗରିଷ୍ଠତା ଦେଖାଇବା ଅସଂଭବ । କିନ୍ତୁ ରାଜନୀତିରେ ଯଦି ଧର୍ମଗତ ଲକ୍ଷ୍ୟ ପ୍ରଧାନ ସ୍ଥାନ ପାଏ ତେବେ ଅବସ୍ଥା ଭିନ୍ନ ରୂପ ଧରିବ । ୧୯୦୯ରେ ଲର୍ଡ୍ ମିଣ୍ଟୋ ବିଭିନ୍ନ ଧର୍ମୀଙ୍କ ପାଇଁ ସ୍ୱତନ୍ତ୍ର ନିର୍ବାଚନ ମଣ୍ଡଳୀର ବ୍ୟବସ୍ଥା କରି ଯେଉଁ ଶାସନସଂସ୍କାର ପ୍ରବର୍ତ୍ତିତ କରିଥିଲେ, ସେଥିରେ ଭାରତରେ ମୁସଲମାନମାନେ ସଂଖ୍ୟାର ବଳ ଦେଖାଇ ଶାସନକୁ ପ୍ରଭାବିତ କରିବାର ସମ୍ଭାବନା ନ ଥିଲା । କେତେଗୁଡ଼ିଏ ଅଞ୍ଚଳରେ ମାତ୍ର, ଯଥା: ଉତ୍ତର ପଶ୍ଚିମ ସୀମାନ୍ତ, ପଞ୍ଜାବ, ସିନ୍ଧ, ବେଲୁଚିସ୍ଥାନ, କାଶ୍ମୀର ଓ ବଙ୍ଗରେ ମୁସଲମାନଙ୍କ ସଂଖ୍ୟା ହିନ୍ଦୁଙ୍କ ସଂଖ୍ୟା ଅନୁପାତରେ ଅଧିକ ଥିଲା । ଜିନ୍ନା ଯେଉଁ ପାକିସ୍ଥାନର ପରିକଳ୍ପନା କରିଥିଲେ, ସେଥିରେ ମୁସଲମାନବହୁଳ ଏହି ଅଞ୍ଚଳମାନ ସାମିଲ ହେବ । ଏହାର ମୋଟ ମୁସ୍‌ଲିମ୍ ଜନସଂଖ୍ୟା ହେବ ୭କୋଟି । ଭାରତରୁ ଅଲଗା ହୋଇଯିବାରୁ ହିନ୍ଦୁ ପ୍ରାଧାନ୍ୟରୁ ଏହା ମୁକ୍ତହେବ—ମୁସଲମାନ-ବହୁଳ ପାକିସ୍ଥାନରେ ହିନ୍ଦୁ ଓ ଅନ୍ୟ ଧର୍ମାବଲମ୍ବୀଙ୍କ ସଂଖ୍ୟା ଅନୁପାତରେ ଖୁବ୍ ଅଳ୍ପ ହେବାର କଥା । ପାକିସ୍ଥାନ ଦାବି ହାସଲ କରିବାକୁ ହେଲେ ମୁସଲମାନଙ୍କ ମନରେ ଜାତୀୟ ଗୌରବର ଭାବ ସଙ୍ଗେ ଧର୍ମର ଉନ୍ମାଦନା ଜାଗ୍ରତ କରିବାକୁ ହେବ ବୋଲି ଜିନ୍ନା ହୃଦୟଙ୍ଗମ କଲେ । ଅବଶ୍ୟ ଅନ୍ୟ ଆଡ଼ୁ ଭୟ ଥାଏ—ପାକିସ୍ଥାନ ପାଇଁ ଧର୍ମଗତ ଉନ୍ମାଦନା ଜାଗ୍ରତ କରିବାକୁ ଯିବା ଫଳରେ, ତିନିକୋଟି ମାତ୍ର ମୁସ୍‌ଲିମ୍ ବାସକରୁଥିବା ହିନ୍ଦୁ-ବହୁଳ ଭାରତର ଅବଶିଷ୍ଟ ବିସ୍ତୃତ ଅଞ୍ଚଳରେ ମୁସଲମାନଙ୍କ ବିରୁଦ୍ଧରେ ପ୍ରତିକ୍ରିୟା ଜାତ ହୋଇପାରେ ।

ଏ ଭୟକୁ ଖାତିର ନ କରି ଜିନ୍ନା ପାକିସ୍ଥାନ ପାଇଁ ଧର୍ମ ନାମରେ ଆନ୍ଦୋଳନର ଡାକ ଦେବାକୁ ପ୍ରସ୍ତୁତ ହୋଇଗଲେ ।

ଅଧର୍ମୀ ଜିନ୍ନା ଧର୍ମ ନାମରେ ଗୋଟିଏ ରାଷ୍ଟ୍ର ଗଢ଼ିବାକୁ ଇଚ୍ଛା କଲାବେଳକୁ, ଏକାନ୍ତ ଧର୍ମନିଷ୍ଠ ଗାନ୍ଧୀ ଭାରତକୁ ଧର୍ମନିରପେକ୍ଷ ରାଷ୍ଟ୍ରରେ ପରିଣତ କରିବାକୁ ଚାହୁଁଥାନ୍ତି ।

ଗାନ୍ଧୀ-ନେହେରୁ-ଆଜାଦ-ରାଜଗୋପାଳାଚାରୀ ଧ୍ୱଜାରେ ଅଙ୍କିତ ସର୍ବଧର୍ମସମନ୍ୱୟ-ମୂଳକ ଭାରତୀୟ ଜାତୀୟତାର ପ୍ରତିଷ୍ଠାରେ ହିଁ ଭାରତର ବିଭିନ୍ନ ଧର୍ମାବଲମ୍ବୀଙ୍କ ଶାନ୍ତିପୂର୍ଣ୍ଣ ସହାବସ୍ଥାନର ସମ୍ଭାବନା ଥିଲା । ଅବଶ୍ୟ ହିନ୍ଦୁ-ମୁସଲମାନଙ୍କ ସଦ୍‌ଭାବ ସ୍ଥାୟୀ ହେବାକୁ ହେଲେ, ପରସ୍ପର ମଧ୍ୟରେ କେତେକ ବିଷୟରେ ସୁସମାଧାନ କରିବାକୁ, ପ୍ରତ୍ୟେକେ ଅନ୍ୟକୁ କେତେକ ସୁବିଧା ସୁଯୋଗ ଦେବାକୁ ହେବ । ବିଶେଷତଃ ଚାକିରି ବିଷୟରେ ଅତ୍ୟଧିକ ପ୍ରତିଦ୍ୱନ୍ଦିତା କମାଇ ଦେବା ସକାଶ ଆର୍ଥନୀତିକ ବିକାଶ ଉପରେ ଅଧିକ ଦୃଷ୍ଟି ଦେବାକୁ ପଡ଼ିବ ଏବଂ ଉଭୟ ସମ୍ପ୍ରଦାୟର ଲୋକଙ୍କୁ ବୃତ୍ତିକାରୀ ଧନ୍ଦା ଯୋଗାଇବା ସକାଶ ବ୍ୟବସାୟରେ ଉନ୍ନତି କରି ସେଥିରେ ଅଧିକ ଲୋକଙ୍କୁ ବୃତ୍ତି ଯୋଗାଇ ଦେବାର ବ୍ୟବସ୍ଥା କରିବାକୁ ହେବ । ଗାନ୍ଧୀଙ୍କର ମନୁଷ୍ୟର ସଦ୍‌ବୃତ୍ତି ଉପରେ ଅଟଳ ବିଶ୍ୱାସ ଥିଲା । ସେ ବିଚାରୁଥିଲେ, ଟିକିଏ ଧୈର୍ଯ୍ୟ ଧରି ଅପେକ୍ଷା କଲେ ଏ ସବୁ ହୋଇପାରିବ ।

ଅପରନ୍ତୁ, ଜିନ୍ନା ମୁହୂର୍ତ୍ତେ ଅପେକ୍ଷା କରିବାକୁ ଚାହୁଁ ନ ଥିଲେ ; ସେ ଦାବି କରୁଥିଲେ ମୁହୂର୍ତ୍ତେ ବିଳମ୍ବ ନ କରି ଭାରତକୁ ଦୁଇଭାଗ କରି ଦିଆଯାଉ । 'ନିଉୟର୍କ୍ ଟାଇମସ୍'ର ପ୍ରବୀଣ ବୈଦେଶିକ ସମ୍ବାଦଦାତା ହରବର୍ଟ୍ ଏଲ୍. ମାଥ୍ୟୁସ୍, ପଞ୍ଜାବର ମୁସଲିମ୍ ପ୍ରଧାନମନ୍ତ୍ରୀ ସିକନ୍ଦର୍ ହାୟାତ୍ ଖାଁଙ୍କର ଗୋଟିଏ ଅକପଟ ସ୍ୱୀକାରୋକ୍ତି ଉଦ୍ଧାର କରି ଲେଖିଥିଲେ ଯେ, ସିକନ୍ଦର ହାୟାତ୍ ଖାଁଙ୍କ ମତରେ, 'ବଙ୍ଗର ମୁସଲମାନ ଚୀନଦେଶବାସୀଙ୍କ ପରି ତାଙ୍କ ଦୃଷ୍ଟିରେ ବୈଦେଶିକ ।' ତଥାପି ଜିନ୍ନା ବିଶ୍ୱାସ କରୁଥିଲେ, ପଞ୍ଜାବ ଓ ବଙ୍ଗ ଉଭୟେ ଏକ ପାକିସ୍ଥାନର ଅନ୍ତର୍ଭୁକ୍ତ ହେବାକୁ ସମଭାବରେ ଉତ୍ସୁକ ।

ପ୍ରକୃତ କଥା ହେଉଛି, ଅନୁନ୍ନତ ଭାରତରେ ଯାତାୟାତର ଯଥେଷ୍ଟ ସୁବିଧା ନ ଥିବାରୁ, ସେଠାର ଲୋକେ, ମଧ୍ୟଯୁଗର ଇୟୁରୋପୀୟମାନଙ୍କ ପରି, ପ୍ରାଦେଶିକ ମମତାରେ ଆବଦ୍ଧ ହୋଇ ବାସ କରୁଥିଲେ । ଗାନ୍ଧୀ

ଚାହୁଁଥିଲେ ଜାତୀୟତାର ସିମେଣ୍ଟରେ ଏ ପ୍ରଦେଶମାନଙ୍କୁ ଯୋଡ଼ି ଏକ କରନ୍ତେ ; ଜିନ୍ନା ଚାହୁଁଥିଲେ ଧର୍ମର ଡିନାମାଇଟ୍ ଫୁଟାଇ ଭାରତକୁ ଦ୍ୱିଖଣ୍ଡ କରିବେ ।

ସର୍ଜନଙ୍କ ଛୁରୀରେ ସଦ୍ୟଃଭାବେ କାଟି ଭାରତକୁ ଦୁଇଖଣ୍ଡ କରିବାର ସମ୍ଭାବନା ନ ଥିଲା । ଏହା କରିବାକୁ ଦେଲେ କଂସେଇର ଦନ୍ତୁଡ଼ା ଛୁରୀ ଓ ଓଜନଦାର କଟୁରି ବ୍ୟବହାର କରିବାକୁ ହେବ । ହାଣୁ ହାଣୁ ହାଡ଼ ଭାଙ୍ଗି ଗୁଣ୍ଡା ହୋଇଯିବ, ମାଂସପେଶୀ ଦଳି ହୋଇଯିବ, ଶିରାପ୍ରଶିରା ଛିଡ଼ି ଉଡ଼ିଯିବ ଓ ମସ୍ତିଷ୍କର ଦହ ଛିନ୍ନଛିନ୍ନ ହୋଇଯିବା ଫଳରେ ମସ୍ତିଷ୍କର ବିଚାର କରିବାର ଶକ୍ତି ଲୋପ ପାଇଯିବ । ଯୁକ୍ତରାଷ୍ଟ୍ର ଆମେରିକା ବା ଫ୍ରାନ୍ସକୁ ବର୍ତ୍ତମାନ ଭାଗଭାଗ କରିବାକୁ ବସିଲେ ଯେଭଳି ବିଭ୍ରାଟ ହୁଅନ୍ତା, ଭାରତକୁ ଭାଗଭାଗ କଲେ ତହିଁରୁ କମ୍ ବିଭ୍ରାଟ ହେବାର ନୁହେଁ ।

ଦେଶ ବିଭାଗର ଏହି ଦୁଃଖାବହ ପରିଣତିର ଦୁଶ୍ଚିନ୍ତା ୧୯୪୪ରେ ଜେଲ୍‌ଖାନାରୁ ମୁକ୍ତ ହେବା ଦିନଠାରୁ ୧୯୪୮ରେ ଶେଷ ନିଃଶ୍ୱାସ ଛାଡ଼ିବା ପର୍ଯ୍ୟନ୍ତ ଗାନ୍ଧୀଙ୍କୁ ବିବ୍ରତ କରୁଥିଲା ।

ଜୁନ୍ ୧୯୪୪ରେ ରୋଗରୁ ଆଂଶିକ ମୁକ୍ତ ହୋଇ ଗାନ୍ଧୀ ରାଜନୀତିର ଆଖଡ଼ାକୁ ଫେରି ଆସିଲେ । ସାକ୍ଷାତ ଦେବା ନିମନ୍ତେ ସେ ଭାଇସ୍‌ରୟ ଓ୍ୱାଭେଲଙ୍କୁ ଅନୁରୋଧ କରି ପତ୍ର ଦେଲେ । ଓ୍ୱାଭେଲ ଉତ୍ତର ଦେଲେ, 'ଆମ ଦୁହିଙ୍କ ରାଜନୀତିକ ଆଭିମୁଖ୍ୟରେ ମୌଳିକ ପାର୍ଥକ୍ୟ ଥିବା ସ୍ଥଳେ, ବର୍ତ୍ତମାନ ଆମ ଦୁହିଙ୍କ ସାକ୍ଷାତ ଫଳରେ କୌଣସି ଲାଭ ହେବ ନାହିଁ ।'

ଏଥର ଗାନ୍ଧୀଙ୍କର ଦୃଷ୍ଟି ଜିନ୍ନାଙ୍କ ଉପରେ ନିବଦ୍ଧ ହେଲା । ଗାନ୍ଧୀ ସବୁବେଳେ ମନେ କରୁଥିଲେ ଯେ, କଂଗ୍ରେସ ଓ ମୁସ୍‌ଲିମ ଲିଗ୍ ମଧ୍ୟରେ ଯଦି ରାଜିନାମା ହୋଇଯିବ, ତେବେ ବ୍ରିଟେନ୍ ବାଧ୍ୟ ହୋଇ ଭାରତକୁ ସ୍ୱାୟତ୍ତ ଶାସନ ଦେବ ।

କଂଗ୍ରେସ ଓ ଲିଗ୍ ମଧ୍ୟରେ ରାଜିନାମା ସକାଶ ରାଜଗୋପାଳାଚାରୀ ଗୋଟାଏ ସୂତ୍ର ବାହାର କରିଥାନ୍ତି । ତାଙ୍କଦ୍ୱାରା ପ୍ରରୋଚିତ ହୋଇ ଗାନ୍ଧୀ ଜିନ୍ନାଙ୍କ ପାଖକୁ ୧୯୪୪, ଜୁଲାଇ ୧୭ ତାରିଖରେ ଖଣ୍ଡିଏ ପତ୍ର ଦେଇ କଥାବାର୍ତ୍ତା କରିବାକୁ ପ୍ରସ୍ତାବ ଦେଲେ । ଚିଠିର ଆଦ୍ୟରେ ଗାନ୍ଧୀ ସମ୍ବୋଧନ କରିଥିଲେ, 'ଭାଇ ଜିନ୍ନା' ଏବଂ ଶେଷରେ ଦସ୍ତଖତ କରିଥିଲେ, 'ଆପଣଙ୍କ ଭାଇ ଗାନ୍ଧୀ' । ଜିନ୍ନା ଉତ୍ତର ଦେଲେ, 'ପ୍ରିୟ ମିଷ୍ଟର୍ ଗାନ୍ଧୀ'ଙ୍କୁ ଏବଂ

ଦସ୍ତଖତ କଲେ, 'ଏମ୍. ଏ. ଜିନ୍ନା' । ପରବର୍ତ୍ତୀ ଚିଠିମାନଙ୍କରେ ଗାନ୍ଧୀ ଜିନ୍ନାଙ୍କୁ 'କ୍ୱାଏଦ-ଇ-ଆଜାମ' (ମହାନ୍ ନେତା) ବୋଲି ସମ୍ବୋଧନ କଲେ । ଜିନ୍ନା ଅଳ୍ପଦିନ ପୂର୍ବେ ଏ ସଂଜ୍ଞା ନିଜେ ଗ୍ରହଣ କରିଥାନ୍ତି । ତଥାପି ଜିନ୍ନାଙ୍କ ଚିଠିରେ ତାଙ୍କୁ ସମ୍ବୋଧନ କରାହେଉଥାଏ 'ପ୍ରିୟ ମିଷ୍ଟର୍ ଗାନ୍ଧୀ' ବୋଲି ।

ଉଭୟଙ୍କ ମଧ୍ୟରେ ବହୁ ଚିଠିର ବିନିମୟ ହେଲା । ସେପ୍ଟେମ୍ବର ୯ ତାରିଖ ଅପରାହ୍ଣ ୩ଟା ୫୫ ମିନିଟ୍‌ରେ ଗାନ୍ଧୀ ଜିନ୍ନାଙ୍କ ବମ୍ବେ ପ୍ରାସାଦକୁ ପ୍ରଥମ ସାକ୍ଷାତ ପାଇଁ ଆସିଲେ ଓ ରାତି ୭ଟା ପର୍ଯ୍ୟନ୍ତ ରହିଲେ । ୧୧ ତାରିଖ ଅପରାହ୍ଣ ୫ଟା ୩୦ ମିନିଟ୍‌ରେ ଦ୍ୱିତୀୟବାର ଆସି ଦୁଇଘଣ୍ଟା ରହିଲେ । ୧୨ ତାରିଖ ଦିନ ଅଢ଼େଇ ଘଣ୍ଟା ଦୁହେଁ ଆଲୋଚନା କଲେ ; ୧୩ ତାରିଖ ଦିନ ସାକ୍ଷାତ ହେଲା ଦୁଇଥର, ମୋଟ ସମୟ ସାଢ଼େ ତିନିଘଣ୍ଟା । ୧୪ ତାରିଖରେ ପୁଣି ଦେଖା ହେଲା, ୧୫ ତାରିଖରେ ପୁଣି ଦେଖା ହେଲା—ଏଇପରି ଚାଲିଲା । ପ୍ରତିଦିନ କଥାବାର୍ତ୍ତା ପରେ ଦୁହେଁ ଦୁହିଁଙ୍କୁ ଲମ୍ବା ଚିଠିମାନ ଲେଖନ୍ତି । ଏଥିରେ ସେ ଦିନର କଥାବାର୍ତ୍ତାର ବିବରଣୀ ଥାଏ ଓ ଆଗକୁ ଆଲୋଚନା କରିବାର ବିଷୟ ସୂଚିତ ହେଉଥାଏ । ଏଇ ଆଲୋଚନା ଭିତରେ ଥରେ ଗାନ୍ଧୀ ପ୍ରସ୍ତାବ ଦେଲେ, ସେ ପ୍ରଥମେ ମୁସଲିମ୍ ଲିଗ୍‌ର କାର୍ଯ୍ୟକାରୀ କମିଟି ଆଗରେ ନିଜର ଯୋଜନା ବାଢ଼ିବେ, ଏବଂ କାର୍ଯ୍ୟକାରୀ କମିଟି ଏହା ପ୍ରତ୍ୟାଖ୍ୟାନ କଲେ ଲିଗ୍‌ର ଗୋଟିଏ ସାଧାରଣ ଅଧିବେଶନରେ ସେ ଏ ଯୋଜନାକୁ ଉପସ୍ଥାପିତ କରିବେ । ଏଥିପାଇଁ ଅନୁମତି ଦେବାକୁ ସେ ଜିନ୍ନାଙ୍କୁ ଅନୁରୋଧ କଲେ । ଜିନ୍ନା କହିଲେ ଏହା, 'ବଡ଼ ଅସାଧାରଣ ଓ ଅଭୂତପୂର୍ବ' ପ୍ରସ୍ତାବ । ଏହା କହି ସେ ଗାନ୍ଧୀଙ୍କ ଅନୁରୋଧକୁ ପ୍ରତ୍ୟାଖ୍ୟାନ କରିଦେଲେ ।

ସେପ୍ଟେମ୍ବର ୨୭ ତାରିଖରେ କଥାବାର୍ତ୍ତା ବିଫଳ ହୋଇ ଭାଙ୍ଗିଗଲା । ତା'ପରେ ପରସ୍ପର ଦିଆନିଆ କରିଥିବା ଚିଠିପତ୍ର ଖବର କାଗଜମାନଙ୍କରେ ପ୍ରକାଶ କରି ଦିଆଗଲା ।

ଗାନ୍ଧୀ ଓ ଜିନ୍ନାଙ୍କ ମଧ୍ୟରେ ପ୍ରତିବନ୍ଧକ ହୋଇ ଠିଆ ହେଲା 'ଭାରତ ଦୁଇଟି ଜାତି' ମତବାଦ । ଜିନ୍ନା ଲେଖିଥିଲେ, 'ଆନ୍ତର୍ଜାତିକ ଆଇନ୍‌ର ପ୍ରତ୍ୟେକ ନୀତି ନିୟମ ଦୃଷ୍ଟିରୁ ଆମ୍ଭେମାନେ ଗୋଟିଏ ସ୍ୱତନ୍ତ୍ର ଜାତି । ଆମର ସଂସ୍କୃତି ଓ ସଭ୍ୟତା ସ୍ୱତନ୍ତ୍ର, ଆମର ଭାଷା ଓ ସାହିତ୍ୟ ସ୍ୱତନ୍ତ୍ର ;

କଳା ଓ ସ୍ଥାପତ୍ୟ, ନାମ ଓ ସାଂଜ୍ଞା, ଜାତୀୟ ମାନ ଓ ବିଚାରଧାରା, ବିଧିବଦ୍ଧ ଆଇନ୍ ଓ ବିବେକାନୁମୋଦିତ ବିଚାରଧାରା, ତିଥିମିତି ଓ ବର୍ଷଗଣନାର ପଦ୍ଧତି, ଇତିହାସ ଓ ପରଂପରା, ଜାତୀୟ ପ୍ରବୃତ୍ତି ଓ ଆଶା ଆକାଂକ୍ଷା— ଏସବୁ ଭାରତର ଅନ୍ୟମାନଙ୍କଠାରୁ ଆମର ସ୍ୱାତନ୍ତ୍ର୍ୟ ପ୍ରମାଣିତ କରେ ।'

ଜିନ୍ନାଙ୍କର ଏଭଳି ଅତିଶୟୋକ୍ତିର ବିରୋଧ କରିବାକୁ ଗାନ୍ଧୀ ଉଦ୍ୟତ ହୋଇ ନ ଥିଲେ । ସେ ଏତିକିମାତ୍ର କହିଲେ, 'ଗୋଟିଏ ଜାତିର କେତେକ ଲୋକ ଧର୍ମାନ୍ତର ଗ୍ରହଣ କରିଛନ୍ତି ବୋଲି ସେ ମୂଳ ଜାତିଠାରୁ ଅଲଗା ହୋଇ ଗୋଟିଏ ସ୍ୱତନ୍ତ୍ର ଜାତିରୂପେ ଗୃହୀତ ହେବାକୁ ଦାବି କରିବେ ଏହାର ଦୃଷ୍ଟାନ୍ତ ପୃଥିବୀର ଇତିହାସରେ ଖୋଜି ପାଉନାହିଁ ।' ଧର୍ମ ବଦଳିଗଲେ, କ'ଣ ମଣିଷର ସ୍ୱଭାବ ଓ ପ୍ରକୃତି ବଦଳିଯାଏ ? ଯଦି କେତେ କୋଟି ଭାରତୀୟ ଖ୍ରୀଷ୍ଟିଆନ୍ ହୋଇଯାନ୍ତି ତେବେ କ'ଣ ତୃତୀୟ ଏକ ଜାତି ଭାରତରେ ସୃଷ୍ଟି ହେବେ ? ସେହିପରି ଆଉ କେତେକୋଟି ଭାରତୀୟ ଇହୁଦି ଧର୍ମ ଗ୍ରହଣ କରିଗଲେ କ'ଣ ଗୋଟିଏ ଚତୁର୍ଥ ଜାତି ହୋଇଯିବ ?

ଏହି ମୌଳିକ ବିଷୟରେ ଉଭୟଙ୍କର ମତଭେଦ ହେବ ବୋଲି ତ ଆଗରୁ ଜଣାଥିଲା, ଏତେ ଆଲୋଚନା ହେଲା କାହିଁକି ?

ଗାନ୍ଧୀ ଆଲୋଚନା ବେଳେ ଅନୁଯୋଗ କରିଥିଲେ, 'ହିନ୍ଦୁ ଓ ମୁସଲମାନ ଦୁଇଟି ସ୍ୱତନ୍ତ୍ର ଜାତି, ଏ ବିଷୟରେ ଆମ ଦୁହିଁଙ୍କର ମତ ଅଲଗା ବୋଲି ସ୍ୱୀକାର କରି ସୁଦ୍ଧା, ଆମେ କ'ଣ ଗଣଭୋଟଦ୍ୱାରା ଏ ସମସ୍ୟାର ସମାଧାନ କରି ପାରିବା ନାହିଁ ?'

ଗାନ୍ଧୀ ପ୍ରସ୍ତାବ କଲେ : ବେଲୁଚିସ୍ଥାନ, ସିନ୍ଧ ଓ ଉତ୍ତରପଶ୍ଚିମ ସୀମାନ୍ତ ପ୍ରଦେଶ— ଏ ଯେଉଁ ତିନୋଟି ପ୍ରଦେଶରେ ମୁସଲମାନଙ୍କର ସଂଖ୍ୟା ଅଧିକ, ଏବଂ ବଙ୍ଗ, ଆସାମ ଓ ପଞ୍ଜାବ—ଏ ତିନି ପ୍ରଦେଶର ଯେଉଁ ଅଞ୍ଚଳମାନଙ୍କରେ ମୁସଲମାନଙ୍କ ସଂଖ୍ୟା ଅଧିକ, ସେହି ସେହି ପ୍ରଦେଶ ଓ ଅଞ୍ଚଳମାନଙ୍କରେ ଗଣଭୋଟ ନିଆଯିବ । ଭାରତରୁ ଅଲଗା ହୋଇଯିବାକୁ ଯଦି ଅଧିକ ସଂଖ୍ୟକ ମୁସଲମାନଙ୍କର ମତ ହୁଏ, ତେବେ ଏହି ପ୍ରଦେଶ ଓ ଅଞ୍ଚଳମାନଙ୍କୁ ନେଇ ଗୋଟିଏ ସ୍ୱତନ୍ତ୍ର ରାଷ୍ଟ୍ର, ଭାରତ ସ୍ୱାଧୀନ ହେବାର ଅବ୍ୟବହିତ ପରେ ଗଢ଼ାଯିବ ।' ଗାନ୍ଧୀ ଆହୁରି ମଧ୍ୟ କହିଲେ ଯେ, ଏହି ଦୁଇ ରାଷ୍ଟ୍ରର ପ୍ରତିନିଧିମାନେ ଏକତ୍ର ବସି ବୈଦେଶିକ ବ୍ୟାପାର, ଦେଶରକ୍ଷା,

ଦେଶ ଭିତରେ ଯାତାୟାତ ବ୍ୟବସ୍ଥା, ଶୁଳ୍କ, ବାଣିଜ୍ୟାଦି ବିଷୟରେ ମିଳିତ ଶାସନ-ବ୍ୟବସ୍ଥା କରିବାକୁ ସିଦ୍ଧାନ୍ତ କରିବେ ।

ଜିନ୍ନା ଏ ପ୍ରସ୍ତାବ ଶୁଣି ତିନଥର ନାହିଁ, ନାହିଁ, ନାହିଁ ବୋଲି କହିଲେ । ସେ ଚାହିଲେ, ଭାରତ ସ୍ୱାଧୀନ ହେବା ପରେ ନୁହେଁ, ବ୍ରିଟିଶ ସରକାର ଥାଉ ଥାଉ ଦେଶ ବିଭାଗ ହେବ ; ସେ ଚାହିଲେ, ଉଭୟ ଅଙ୍ଗର ସମ୍ପୂର୍ଣ୍ଣ ସ୍ୱାତନ୍ତ୍ର୍ୟ, କୌଣସି ବିଷୟରେ ମିଳିତ ଶାସନସଂସ୍ଥା ରହିବ ନାହିଁ ; ତୃତୀୟତଃ ଗଣଭୋଟ ନେବା ସକାଶ ତାଙ୍କର ଏକ ବିଚିତ୍ର ବ୍ୟବସ୍ଥା ଥିଲା, ତଦନୁସାରେ ଗଣଭୋଟ ହେଉ ବୋଲି ସେ ଦାବି କଲେ, ଗାନ୍ଧୀଙ୍କ ରୀତିରେ ନୁହେଁ ।

ଜିନ୍ନାଙ୍କ ଗଣଭୋଟ ପରିକଳ୍ପନା ଅନୁସାରେ, କେବଳ ମୁସଲମାନଙ୍କ ଭୋଟ ନିଆଯିବ । ଭୋଟ ଦେଉଥିବା ମୁସଲିମ୍‌ଙ୍କ ମଧ୍ୟରୁ ଅଧିକାଂଶ ଯଦି ପାକିସ୍ଥାନ ସପକ୍ଷରେ ଭୋଟ ଦେବେ, ତେବେ ସମଗ୍ର ପ୍ରଦେଶଟି ପାକିସ୍ଥାନର ଅନ୍ତର୍ଭୁକ୍ତ ହେବ । 'ବ୍ରିଟିଶ ଅଫିସରଙ୍କ ଅବଗତି ନିମନ୍ତେ' ଜିନ୍ନାଙ୍କ ଗଣଭୋଟ ପ୍ରସ୍ତାବର ଏକ ବିଶ୍ଳେଷଣ ଓ୍ୱାସିଂଟନରେ ଥିବା ବ୍ରିଟିଶ ଦୂତାବାସ ତରଫରୁ ହୋଇଥିଲା । ସେଥିରେ କୁହାଯାଇଥିଲା, 'କେବଳ ମୁସଲମାନଙ୍କ ଭୋଟ ଉପରେ ଭାରତର ବିଭକ୍ତୀକରଣ ନିର୍ଭର କରିବ ।'

ବ୍ରିଟିଶ ଜନଗଣନା ଅନୁସାରେ ଆସାମରେ ମୁସଲମାନଙ୍କ ସଂଖ୍ୟା ୩୪,୪୨,୪୭୯ ଓ ଅ-ମୁସଲମାନଙ୍କ ସଂଖ୍ୟା ୬୭,୬୨,୨୫୪ । ଜିନ୍ନା ଦାବି କରୁଥିଲେ, ୩୪, ୪୨, ୪୭୯ ମୁସଲମାନଙ୍କ ଭିତରୁ ଅଧିକାଂଶଙ୍କ ମତ ଅନୁସାରେ ସମଗ୍ର ଆସାମ-ପ୍ରଦେଶର ଭାଗ୍ୟ ନିର୍ଣ୍ଣୀତ ହେବ ।

ପଞ୍ଜାବ ପ୍ରଦେଶରେ ମୁସଲମାନଙ୍କ ସଂଖ୍ୟା ଥିଲା ୧,୬୨,୧୭, ୨୪୨ ଓ ଅ ମୁସଲମାନଙ୍କ ସଂଖ୍ୟା ୧,୨୨,୦୧,୫୭୭ , ଅର୍ଥାତ୍ ମୁସଲମାନମାନେ ପଞ୍ଜାବର ମୋଟ ଲୋକ ସଂଖ୍ୟାର ଶତକଡ଼ା ୫୬ରୁ ବେଶି ନ ଥିଲେ । ମୁସଲମାନ ଜନତା ଭିତରୁ, ଖୁବ୍ ବେଶି ହେଲେ, ୨୦ ବା ୩୦ ଲକ୍ଷ ଲୋକ ଭୋଟ ଦେବାକୁ ଅଧିକାରୀ ହୁଅନ୍ତେ । ଏହି ୨୦ ବା ୩୦ ଲକ୍ଷଙ୍କ ଭିତରୁ ଅଧିକାଂଶ ଯଦି ପକିସ୍ଥାନ ସପକ୍ଷରେ ଭୋଟ ଦେଇଥାନ୍ତେ, ତେବେ ୨ କୋଟି ୮୦ ଲକ୍ଷ ଜନସଂଖ୍ୟାବିଶିଷ୍ଟ ସମଗ୍ର ପଞ୍ଜାବ ପାକିସ୍ଥାନର ଅନ୍ତର୍ଭୁକ୍ତ ହୋଇଥାନ୍ତା ।

ବଙ୍ଗ ପ୍ରଦେଶରେ ମୁସଲମାନଙ୍କ ସଂଖ୍ୟା ସମଗ୍ର ଜନସଂଖ୍ୟାର ଶତକଡ଼ା ୫୨ ଭାଗ । ଭାରତରୁ ଅଲଗା ହେବାକୁ ଏଠାରେ ଯେଉଁ ମୁସଲମାନମାନେ ଭୋଟ ଦିଅନ୍ତେ ସେମାନେ ବସ୍ତୁତଃ ସମଗ୍ର ଜନସଂଖ୍ୟାର ଅଧାରୁ କମ୍ ନିଶ୍ଚୟ ହୁଅନ୍ତେ । ଜିନ୍ନାଙ୍କ ପ୍ରସ୍ତାବ ଅନୁସାରେ ଏହି ସଂଖ୍ୟା-ଲଘୁଙ୍କ ଭୋଟ ବଳରେ ସମଗ୍ର ବଙ୍ଗ ପ୍ରଦେଶ ପାକିସ୍ଥାନରେ ମିଶନ୍ତା ।

ଗାନ୍ଧୀ ଯେ ଏଭଳି ପ୍ରସ୍ତାବରେ ରାଜି ହେଲେ ନାହିଁ, ଏହା କହିବା ବାହୁଲ୍ୟମାତ୍ର । ମୁସଲମ୍ଙ୍କ ଭୋଟ ବଳରେ ବା ଆନ୍ଦୋଳନ ପ୍ରଭାବରେ ଜିନ୍ନା ଏ ଖଣ୍ଡରେ ପାକିସ୍ଥାନ ପ୍ରତିଷ୍ଠା କରିବାର ସଂଭାବନା ଦେଖୁ ନ ଥିଲେ । ତେଣୁ ସେ ଚାହୁଁଥିଲେ ବ୍ରିଟିଶ ସରକାର ଭାରତ ଛାଡ଼ିବା ପୂର୍ବରୁ ତାଙ୍କୁ ପାକିସ୍ଥାନ ଦେଇଯାନ୍ତୁ ।

ଓ୍ୱାସିଂଟନସ୍ଥ ବ୍ରିଟିଶ୍ ଦୂତାବାସ ପକ୍ଷରୁ (ବ୍ରିଟିଶ ରାଷ୍ଟ୍ରଦୂତ ଥିଲେ ଲର୍ଡ୍ ହାଲିଫାକ୍ସ) ଗାନ୍ଧୀ-ଜିନ୍ନାଙ୍କ କଥାବାର୍ତ୍ତା ଉପରେ ଯେଉଁ ବିଜ୍ଞପ୍ତି ପ୍ରକାଶ କରାଯାଇଥିଲା ସେଥିରେ ଲେଖାଥିଲା, 'ମିଷ୍ଟର୍ ଜିନ୍ନାଙ୍କ ପକ୍ଷଟା ହୋଇଛି ବଳୁଆ । ଗାନ୍ଧୀ ଯାହା ଏକାନ୍ତ କାମନା କରୁଛନ୍ତି, ଓ ଯାହା କି ତୁରନ୍ତ ପୂରଣ ହେଉ ବୋଲି ଚାହୁଁଛନ୍ତି ତାହା ଦେବା ଜିନ୍ନାଙ୍କ ହାତରେ ଅଛି । ବ୍ରିଟିଶ ସରକାର ସାଙ୍ଗେ ସାଙ୍ଗେ ଭାରତୀୟମାନଙ୍କୁ ସ୍ୱାୟତ୍ତଶାସନର ମୁଖ୍ୟ ଭାଗ ଦେଇଦିଅନ୍ତୁ, ଏଥିସକାଶ କଂଗ୍ରେସ ସଙ୍ଗେ ସହଯୋଗ କରି ମୁସଲମାନମାନେ ସରକାର ଉପରେ ଚାପ ଦିଅନ୍ତୁ ବୋଲି ଗାନ୍ଧୀଙ୍କର ଆକାଂକ୍ଷା । ଜିନ୍ନା ଇଚ୍ଛା କଲେ ଏ ସହଯୋଗ ଦେଇପାରିବେ··· । ଅପର ପକ୍ଷେ ଗାନ୍ଧୀଙ୍କ ହାତରେ ଜିନ୍ନାଙ୍କୁ ଦେବା ସକାଶ ଏପରି କିଛି ନାହିଁ, ଯାହା ପାଇବାକୁ ମିଷ୍ଟର ଜିନ୍ନା ଦୀର୍ଘକାଳ ଅପେକ୍ଷା କରି ନ ପାରିବେ । ଜିନ୍ନାଙ୍କ ବିଚାରରେ, ସ୍ୱାଧୀନତା ମିଳିବାର ସମ୍ଭାବନା ଯଦି ଆଜି ବର୍ଷେ ଦୁଇବର୍ଷ ପଛକୁ ହଟିଯାଏ ମୁସଲମାନଙ୍କର କିଛି ଯାଏ ଆସେ ନାହିଁ । ଭବିଷ୍ୟତର ଶାସନ-ସଂସ୍ଥାରେ ମୁସଲମାନଙ୍କ ସ୍ୱାର୍ଥ କିପରି ବଜାୟ ରହିବ, ଏହା ତାଙ୍କ ଦୃଷ୍ଟିରେ ସ୍ୱାଧୀନତାଠାରୁ ଅଧିକ ଗରୀୟାନ୍ । ତେଣୁ ଏ ଆଲୋଚନାରୁ ସ୍ପଷ୍ଟ ଜଣା-ଯାଉଛି ଯେ, ଜିନ୍ନା ଅପେକ୍ଷା କରି ରହିବାକୁ ତିଆର । ସେ ଯାହା ଚାହାନ୍ତି ତା'ର କେତେ ନିକଟକୁ ଗାନ୍ଧୀ, ଅବସ୍ଥା ଚକ୍ରରେ ପଡ଼ି, ଆପେ ଆସୁଛନ୍ତି ଦେଖିବାକୁ ସେ ଅପେକ୍ଷା କରି ରହିଛନ୍ତି ।'

ଜଣେ ବିଚକ୍ଷଣ ଦରଦସ୍ତୁକାରଙ୍କ ଗୃହକୁ ଏ ବୃତ୍ତିରେ ବଡ଼ ବିଚକ୍ଷଣ ଭାବେ ଫିଟାଇ ଦିଆ ହୋଇଛି । ଜିନ୍ନା ସ୍ୱାଧୀନତା ପାଇଁ ଅପେକ୍ଷା କରି ରହିବାକୁ ତିଆର । କିନ୍ତୁ ଗାନ୍ଧୀ ମନେ କରୁଥାନ୍ତି, ସ୍ୱାଧୀନତା ପାଇବାକୁ ଏଇ ହିଁ ପ୍ରକୃଷ୍ଟ ସମୟ ।

ଜିନ୍ନାଙ୍କ କଳ୍ପନା ଜଳ୍ପନାକୁ ଓଲଟ ପାଲଟ୍ କରି ଦେବା ପାଇଁ ଏତିକିବେଳେ ଇତିହାସ ଆସି ମଝିରେ ପଡ଼ିଲା । ଏହା ଦେଖି କର୍ମନିପୁଣ ଜିନ୍ନା ଇତିହାସକୁ ଓଲଟ୍‌ପାଲଟ କରିଦେଲେ ।

---

# ଦ୍ୱାଦଶ ପରିଚ୍ଛେଦ

## ସ୍ୱାଧୀନତାର ପ୍ରାକ୍‌କାଳରେ

୧୯୪୪, ଅଗଷ୍ଟ ୩୦ ତାରିଖରେ, ୱେଣ୍ଡେଲ୍ ୱିଲ୍‌କି ତାଙ୍କ ଓକିଲଖାନାରେ ମୋତେ ସାକ୍ଷାତ କରିବାକୁ ଦେଇଥିଲେ । ସେ ପ୍ରକୋଷ୍ଠଟିରୁ ନିଉୟର୍କ ବନ୍ଦର ପରିଷ୍କାର ଦିଶୁଥାଏ । ସେ ଥିଲେ ଜଣେ ଉଚ୍ଚକୋଟୀର ଲୋକ । ସେଇ ବର୍ଷ ସେପ୍‌ଟେମ୍ବର ମାସରେ ସେ ମରିଗିବାରେ ଆମେରିକା ଗୋଟିଏ ନିଧି ହରାଇଲା । ସେ ମୋତେ କହିଥିଲେ, 'ଯୁଦ୍ଧରେ ଆମର ବିଜୟ ଦଶଭାଗରୁ ସାତଭାଗ ହୋଇ ସାରିଲାଣି ସିନା, ଶାନ୍ତିର ସଂଭାବନା ପ୍ରାୟ ଦଶ ଭାଗରୁ ନଅଭାଗ ନଷ୍ଟ ହୋଇଗଲାଣି ।' ତା' ପବରୁ ସେ ପ୍ରାଚ୍ୟ ଦେଶମାନଙ୍କରେ ପର୍ଯ୍ୟଟନ କରି ଫେରିଥାନ୍ତି । ଇଉରୋପ ଓ ଏସିଆ ମଧ୍ୟରେ ଯେଉଁ ସଂଘର୍ଷ ସେ ଦେଶମାନଙ୍କରେ ପୂର୍ବରୁ ଚାଲିଥିଲା ତାହା ନୂତନରୂପରେ ଚାଲୁଥିବାର ସେ ଲକ୍ଷ୍ୟ କରି ଆସିଥାନ୍ତି । ପୂର୍ବମର ଶ୍ୱେତାଙ୍ଗମାନେ କୃଷ୍ଣକାୟ ଓ ପିଙ୍ଗଳ ବର୍ଣ୍ଣ ଲୋକଙ୍କ ଉପରେ ପ୍ରଭୁତ୍ୱ ଜାରି

କରି ରୁହିଥାନ୍ତି ଓ ଉପନିବେଶମାନଙ୍କରେ ସେଠାର ପୁରୁଣା ଅଧିବାସୀଙ୍କୁ ଦାସ ପରି ଖଟାଉଥାନ୍ତି । ସେ ଉପଲବ୍‌ଧି କରିଥାନ୍ତି ଯେ, ଯଦି ମହାସମର ପରେ ବିଶ୍ୱରେ ନୂତନ ସମାଜ-ସଂସ୍ଥାର ପ୍ରବର୍ତ୍ତନ ନ ହୁଏ ତେବେ ପୁଣି ଗୋଟାଏ ମହାସମରର ସୂତ୍ରପାତ ହୋଇଯିବ ।

ଅନ୍ୟମାନେ ମଧ୍ୟ କ୍ରମେ ଉପଲବ୍‌ଧି କରିବାକୁ ଆରମ୍ଭ କରୁ-ଥିଲେ ଯେ, ସ୍ୱେଚ୍ଛାଚାରୀ ଶାସକଙ୍କ ବିରୁଦ୍ଧରେ ଯେଉଁମାନେ ଲଢ଼ୁଛନ୍ତି, ତାଙ୍କ ଉପରେ ନୈତିକ ଚାପ ପଡ଼ୁଛି, ବିଶ୍ୱରେ ସ୍ୱାଧୀନତାର ପରିସର ବିସ୍ତାର କରିବାକୁ ।

ମହାସମରରେ ଇଂଲଣ୍ଡର ବିଜୟ ଯେତିକି ନିକଟବର୍ତ୍ତୀ ହେଉଥାଏ, ସେତିକି ପରିଷ୍କାରଭାବେ ଜଣା ପଡ଼ୁଥାଏ ଯେ, ଭାରତର ଶାସନସଂସ୍ଥାରେ ପରିବର୍ତ୍ତନ ଆଉ ବିଳମ୍ବ ସମ୍ଭବ ନାହିଁ ।

୧୯୪୫ ବେଳକୁ ଭାରତର ଲୋକେ ଦାସତ୍ୱ ବନ୍ଧନରୁ ମୁକ୍ତ ହେବା ପାଇଁ ଏତେ ଉଚ୍ଛନ୍ନ ହୋଇ ଯାଇଥିଲେ ଯେ, ତାଙ୍କୁ ଦବାଇ ରଖିବା ସହଜସାଧ୍ୟ ନ ଥିଲା । ପୁଣି ମହାସମରରେ ବ୍ରିଟେନ୍‌ର ଅତି ଅଧିକ କ୍ଷତି ହୋଇଥାଏ । ଏତେବେଳେ ଯଦି ଗାନ୍ଧୀ ଅହିଂସା ସଂଗ୍ରାମ ଆରମ୍ଭ କରି ଦିଅନ୍ତି, ବା ସେ ଦେଶରେ କର୍ତ୍ତୃତ୍ୱ ହରାଇବା ଫଳରେ ଯଦି ହିଂସାପୂର୍ଣ୍ଣ ଆନ୍ଦୋଳନ ଆରମ୍ଭ ହୋଇଯାଏ, ତେବେ ତାକୁ ଦବାଇବା ସକାଶ ପ୍ରୟୋଜନ ପ୍ରଭୂତ ଧନ ଓ ଜନ ବ୍ରିଟେନ୍ ତା'ର ବର୍ତ୍ତମାନ ଅବସ୍ଥାରେ ଯୋଗାଇ ପାରିବ ନାହିଁ । ଯେଉଁ କ୍ଳାନ୍ତି ଓ ଅବସାଦ ଯୋଗୁଁ, ଯୁଦ୍ଧ ପରେ ପରେ, ଗ୍ରୀସ, ଟର୍କୀ ଓ ଆରବ ଦେଶମାନଙ୍କୁ ଦେଇଥିବା ପ୍ରତିଶ୍ରୁତିକୁ ବ୍ରିଟେନ୍ ପାଳନ କରିବାକୁ ଅସମର୍ଥ ହେଲା ଏବଂ ଅନ୍ୟାନ୍ୟ କେତେକ ଘାଟି ଯାଗା ଛାଡ଼ି ଦେବାକୁ ବାଧ୍ୟ ହେଲା, ସେ କ୍ଳାନ୍ତି ଓ ଅବସାଦର ସଂକେତ ଯୁଦ୍ଧ ସରିବା ପୂର୍ବରୁ ବି ମିଳୁଥାଏ ।

ଏହାର ସଂକେତ ଆପାତତଃ ଲର୍ଡ଼ ଓ୍ୱାଭେଲ୍ ବିଶେଷ କରି ପାଇଥିଲେ । ଲିଓପୋଲ୍‌ଡ଼୍ ଏସ୍‌. ଆମେରି ସେ ସମୟରେ ଭାରତର ସେକ୍ରେଟାରି ଅବ୍ ଷ୍ଟେଟ୍ ଥାନ୍ତି । ସେ ଜୁନ୍ ୧୪, ୧୯୪୫ରେ କମନ୍‌ସ୍ ସଭାରେ କହିଥିଲେ, ଜାପାନ ବିରୁଦ୍ଧରେ ଯୁଦ୍ଧ ଯୋଗୁଁ ଯେଉଁ ଉଦ୍ୟମ ସବୁ କରିବାକୁ ପଡ଼ିଲା ତଦ୍ୱାରା ଓ ଯୁଦ୍ଧୋତ୍ତର କାଳ ପାଇଁ ଉନ୍ନୟନ ଯୋଜନା କରିବାକୁ ପଡ଼ିବାଦ୍ୱାରା ଭାରତ ସରକାର ଅତି ଭାରାକ୍ରାନ୍ତ ହୋଇ

ପଡ଼ୁଛି ; ସ୍ଥାବାଦ୍ ଭାରତରେ ଲାଗି ରହିଥିବା ରାଜନୀତିକ [redacted]ତେଜନା ଭାରତ ସରକାର ଉପରେ ବିଶେଷ ଚାପ ପକାଉଛି ।' ଏହି ସମୟରେ ଭାରତ ସରକାରର କର୍ଣ୍ଣଧାର ଥିଲେ ଲର୍ଡ଼୍ ଓ୍ୱାଭେଲ୍ ।

ଓ୍ୱାଭେଲ୍ ଥିଲେ ଜଣେ ସେନାଧ୍ୟକ୍ଷ, କବି ଓ ଅନନ୍ୟସାଧାରଣ ବ୍ୟକ୍ତି । ୧୯୪୨ରେ ଦିଲ୍ଲୀଠାରେ ତାଙ୍କ ସଙ୍ଗେ ମୋର ପ୍ରଥମ ସାକ୍ଷାତ ହୋଇଥିଲା । ସେତେବେଳେ ସେ ଖୁବ୍ ଶ୍ରାନ୍ତ ଦିଶୁଥିଲେ ବୋଲି ମୁଁ କହିଥିଲି । ସେ ସ୍ୱୀକାର କରି କହିଲେ, 'ହଁ', ଯୁଦ୍ଧରେ ଏକାଦିକ୍ରମେ ତିନିବର୍ଷ ହାରି ହାରି ଓ ପଛ ଘୁଞ୍ଚା ଦେଇ ଦେଇ ମୁଁ କ୍ଲାନ୍ତ ହୋଇ ପଡ଼ୁଛି । ତା'ପରେ ନାଜି ପ୍ରଧାନ ସେନାଧ୍ୟକ୍ଷ ରୋମେଲଙ୍କୁ ଖୁବ୍ ପ୍ରଶଂସା କରିବାକୁ ଆରମ୍ଭ କଲେ । ଏହି ରୋମେଲ୍ ଓ୍ୱାଭେଲଙ୍କୁ ତିନିବର୍ଷ କାଳ ଯୁଦ୍ଧରେ ହଟାଇଥିଲେ । ପରେ ତାଙ୍କ ସଙ୍ଗେ ମୁଁ ଯେତେ ଥର କଥାବାର୍ତ୍ତା ହୋଇଛି, ସେ ସବୁଥର ସେ କଥା ପ୍ରସଙ୍ଗରେ ରୋମେଲଙ୍କ କଥା ପକାନ୍ତି ଓ ସାମରିକ ପ୍ରତିଭାକୁ ପ୍ରଶଂସା କରନ୍ତି ।

ଓ୍ୱାଭେଲଙ୍କ ଦେହ ଥିଲା ଗୋଟାଏ ଟାଣ, ମୋଟା କାଠଗଡ଼ ପରି । ତାଙ୍କ ଗୋଡ଼ ଦୁଇଟି ଥିଲା ଶକ୍ତ ମାଂସପେଶୀଯୁକ୍ତ ଓ ଆଗକୁ ବଙ୍କେଇ ହୋଇ ଯାଇଥିଲା । ତାଙ୍କର କେଶ ଥିଲା ଘନ ଓ ଧଳା-ଚିତ୍ରିତ । ତାଙ୍କ ମୁହଁର ଚର୍ମ କୁଞ୍ଚିତ ଓ ଘନ ରେଖାଯୁକ୍ତ ହୋଇଥିଲା ; ଏ ସବୁଗୁଡ଼ିକ ଯାଇ ତାଙ୍କ କଣା ବା ଆଖି ମୂଳରେ ସରିଥିଲା ପରି ଦିଶୁଥିଲା । ନଷ୍ଟ ହୋଇଥିବା ଏହି ଆଖିଟି ଅଧେ ମେଲା ହୋଇ ରହିଥାଏ ; ତାଙ୍କ ସଙ୍ଗେ କଥାବାର୍ତ୍ତା ହେବା ଲୋକର ଦୃଷ୍ଟି ସ୍ୱତଃ ଯାଇ ଏହି ଆଖି ଉପରେ ନିବଦ୍ଧ ହୋଇଯାଏ । ତାଙ୍କ ଖାକି ପୋଷାକର ବାଁ ଛାତି ଉପରେ ପାଞ୍ଚ ଧାଡ଼ି ରଙ୍ଗିନ୍ ଫିତା (ସେନାଧ୍ୟକ୍ଷର ଲାଞ୍ଛନ) ରହି ସେ ସ୍ଥାନଟିକୁ ଉଜ୍ଜ୍ୱଳ କରିଥାଏ ।

ସେ ଦର୍ଶନଶାସ୍ତ୍ର ଉପରେ ଆଲୋଚନା କଲେ ଏବଂ ମାଥିଉ ଆର୍ନୋଲ୍ଡ଼୍‌ଙ୍କ କବିତାରୁ ଆବୃତ୍ତି କଲେ । ନୂଆଦିଲ୍ଲୀସ୍ଥ ତାଙ୍କ ଭବନର ପଶ୍ଚାତ୍‌ରେ ଥିବା ପ୍ରକାଣ୍ଡ ଉଦ୍ୟାନରେ ମୁଁ ତାଙ୍କ ସଙ୍ଗେ ବୁଲୁଥିଲି ବେଳେ, ପ୍ରଥମ ଯୁଦ୍ଧବେଳେ ସେ କକେସସ୍ ପର୍ବତ ତଳେ ଯୁଦ୍ଧ କରୁଥିବା ବେଳର ସ୍ମୃତି ମନେ ପକାଇଲେ ଓ 'ଆହ୍ଲାବେର୍ଡ଼ି' ସଙ୍ଗୀତର ଗୋଟିଏ ପଦ ଆବୃତ୍ତି କଲେ । ଜର୍ଜିଆ ଦେଶରେ ଲୋକେ ମଦ୍ୟପାନ କଲାବେଳେ ଏ ସଂଗୀତ ଗାନ କରନ୍ତି । ସେ ଆଦବ୍ କାଇଦା ନ ଧରି

ବନ୍ଧୁଭାବରେ କଥାବାର୍ତ୍ତା କରୁଥିଲେ । ବିରାଟ ସାମ୍ରାଜ୍ୟର ସେ ଜଣେ କର୍ତ୍ତା ବା ପ୍ରଧାନ ସେନାଧ୍ୟକ୍ଷ ବୋଲି ତାଙ୍କ ଆଚରଣରୁ ବାରି ହେଉ ନ ଥିଲା ।

ଓ୍ୱାଭେଲଙ୍କର ପୂଜ୍ୟ ବୀର ଥିଲେ ଜେନେରାଲ୍ ଆଲେନ୍‌ବି ; ଯାଙ୍କର ଅଧୀନରେ ସେ ପ୍ରଥମ ମହାଯୁଦ୍ଧରେ ସୈନ୍ୟ ଚାଳନା କରିଥିଲେ । ମୋ ସଂଗେ ଦେଖା ହେଲାବେଳେ ସେ ଆଲେନ୍‌ବିଙ୍କର ଏକ ଦୀର୍ଘ ଜୀବନୀ ଲେଖୁଥାନ୍ତି । ସୁନ୍ଦରଭାବରେ ଟାଇପ୍ ହୋଇ ନାଲି ଫିତାରେ ବନ୍ଧା ହୋଇ ରଖାହୋଇଥିବା ପାଣ୍ଡୁଲିପିରୁ କେତେକାଂଶ ସେ ମୋତେ ପଢିବାକୁ ଦେଲେ । ତାଙ୍କ ଗଦ୍ୟ ରଚନାର ଶୈଳୀ ଅତି ସୁନ୍ଦର । ଆଲେନ୍‌ବିଙ୍କ ଜୀବନୀର ସବୁଠାରୁ ଅଧିକ ନାଟକୀୟ ଘଟଣା, ଇଜିପ୍ଟ୍‌କୁ ରାଜନୀତିକ ଅଧିକାର ଦେବା ବିଷୟରେ ବ୍ରିଟିଶ ସରକାରଙ୍କ ସଙ୍ଗେ ତାଙ୍କର ଭୀଷଣ ସଂଘର୍ଷ । ପ୍ରଥମ ମହାଯୁଦ୍ଧ ପରେ ଆଲେନ୍‌ବି ଇଜିପ୍ଟର ହାଇ-କମିଶନର୍ ହେଲେ । ଏହି ପଦରେ ଅଧିଷ୍ଠିତ ଥିବା ସମୟରେ ଆଲେନବିଙ୍କର ହୃଦ୍‌ବୋଧ ହେଲା ଯେ, ଇଜିପ୍ଟ ଉପରେ ଥିବା ବ୍ରିଟିଶ କର୍ତ୍ତୃତ୍ୱ ସାଙ୍ଗ କରି ଇଜିପ୍ଟକୁ ସ୍ୱାୟତ୍ତଶାସନ ଦେଇ ଦେବା ଉଚିତ । କିନ୍ତୁ କାଇରୋଠାରୁ ସେ ଏ ବିଷୟରେ ଯେତେ ନିବେଦନ ଓ ପରାମର୍ଶ ଦେଲେ ତାହା ବ୍ରିଟିଶ ସରକାରର ଉଚ୍ଚ କର୍ତ୍ତୃପକ୍ଷଙ୍କୁ ଟଙ୍କାଇ ପାରିଲା ନାହିଁ । ତହୁଁ ସେ ଲଣ୍ଡନ ଆସିଲେ ଓ ମନ୍ତ୍ରୀମଣ୍ଡଳ ଆଗରେ ନିଜେ ନିଜର ପ୍ରସ୍ତାବ ପକାଇଲେ । ମନ୍ତ୍ରୀମଣ୍ଡଳରେ ଥାନ୍ତି ଲଏଡ଼୍ ଜର୍ଜ୍, ଲର୍ଡ୍ କର୍ଜନ୍, ମିଲନର୍ ଓ ଚର୍ଚ୍ଚିଲ୍ । ଏମାନେ କେହି କାହାକୁ ଊଣା ନୁହନ୍ତି ; ଇଜିପ୍ଟ୍‌କୁ ସ୍ୱାଧୀନତା ଦେବାର ସମସ୍ତେ ବିରୋଧୀ । ଓ୍ୱାଭେଲ ଲେଖିଛନ୍ତି 'ସବୁଠାରୁ ନ ଛୋଡ଼ବନ୍ଧା ଥିଲେ ଉଇନ୍‌ଷ୍ଟନ୍ ଚର୍ଚ୍ଚିଲ୍ ।' ଆଲେନ୍‌ବିଙ୍କ ଯୁକ୍ତି ମନ୍ତ୍ରୀମାନଙ୍କ ମତ ବଦଳାଇ ପାରିଲା ନାହିଁ । ତହୁଁ ସେ ଇସ୍ତଫା ଦେବେ ବୋଲି ଧମକ୍ ଦେଲେ । ଆଲେନ୍‌ବି ଥିଲେ ଜେରୁଜେଲମ୍‌ର ବିଜେତା ; ଯୁଦ୍ଧରେ ସେ ତୁର୍କୀର ମେରୁଦଣ୍ଡ ଭାଙ୍ଗିଥିଲେ । ତେଣୁ ବ୍ରିଟିଶ ଜନତାର ସେ ଥିଲେ ଶ୍ରଦ୍ଧା ଓ ସମ୍ମାନର ପାତ୍ର । ଜନତା ଉପରେ ଆଲେନ୍‌ବିଙ୍କ ପ୍ରଭାବ ଦୃଷ୍ଟେ, ପ୍ରଧାନମନ୍ତ୍ରୀ ଲଏଡ଼୍ ଜର୍ଜ ତାଙ୍କ ସଙ୍ଗେ ପ୍ରକାଶ୍ୟରେ ଅପଢ଼ ହେବାକୁ ଚାହିଁଲେ ନାହିଁ ; ଆଲେନ୍‌ବିଙ୍କ ଆଗରେ ବ୍ରିଟିଶ ସରକାର ଲଇଁଗଲେ ।

ମୁଁ ଓ୍ୱାଭେଲ୍‌ଙ୍କ ପାଖକୁ ଲେଖିଲି, 'ଆଜି ନୂଆ ଦିଲ୍ଲୀରେ ବ୍ରିଟିଶ ଶାସକଙ୍କ ମୁହଁରେ ଭାରତକୁ ସ୍ୱାଧୀନତା ଦେବା ବିରୁଦ୍ଧରେ ଯେଉଁ ଯୁକ୍ତି ଶୁଣାଯାଉଛି, ବୋଧହୁଏ ସେଇ ସବୁ ଯୁକ୍ତିକୁ ଲର୍ଡ଼୍ ଜର୍ଜ, କର୍ଜନ ଓ ଚର୍ଚ୍ଚିଲ୍ ଯ୍ୟାଲେନ୍‌ବିଙ୍କ ପ୍ରସ୍ତାବର ଆପାତ-ଅକାଟ୍ୟ ଯୁକ୍ତି ବୋଲି ସେତେବେଳେ ବାଢ଼ିଥିବେ । ଏ ସତ୍ତ୍ୱେ ଯ୍ୟାଲେନ୍‌ବି ନିଜ ମତରେ ଦୃଢ଼ ରହିଲେ ଏବଂ ଶେଷରେ ଜିଣିଲେ । ଆପଣ ତ ନିଜେ ବୁଝିଛନ୍ତି ଯେ, ଯ୍ୟାଲେନ୍‌ବି ନ୍ୟାଯ୍ୟ କଥା କହୁଥିଲେ ଓ ମନ୍ତ୍ରୀମଣ୍ଡଳ ତାଙ୍କର ବିରୋଧ କରି ଭୁଲ କରିଥିଲେ । ସରକାରମାନେ ଅନେକ ସମୟରେ ଏହିପରି ଭୁଲ କରନ୍ତି । ୧୯୧୯ରୁ ୧୯୩୯ ପର୍ଯ୍ୟନ୍ତ ୨୦ ବର୍ଷର ସମଗ୍ର ଇଯୁରୋପୀୟ ଇତିହାସ ସରକାରମାନଙ୍କର ଭୁଲ ନୀତି ଗ୍ରହଣ କରିବାର ଦୃଷ୍ଟାନ୍ତରେ ପୂର୍ଣ୍ଣ । ବ୍ରିଟିଶ ମନ୍ତ୍ରୀମଣ୍ଡଳ ଗତ କେତେବର୍ଷ କାଳ ଭିତରେ ଯାହା ସବୁ କରିଛନ୍ତି, ତା'ର ପରିପ୍ରେକ୍ଷୀରେ ତାଙ୍କର ସାଂପ୍ରତିକ ଭାରତୀୟ ନୀତି ବିଜ୍ଞତାର ପ୍ରାରକ ବୋଲି ମନେ ହେଉନାହିଁ ।'

ସେତେବେଳେ ଓ୍ୱାଭେଲ ଥିଲେ ଭାରତର ମୁଖ୍ୟ ସେନାଧ୍ୟକ୍ଷ; ତେଣୁ ସେ ନିଜର କାର୍ଯ୍ୟକ୍ରମ ଓ ଚିନ୍ତା ସାମରିକ ବ୍ୟାପାରରେ ହିଁ ଆବଦ୍ଧ ରଖିଥିଲେ । ଯାହାହେଉ, ୧୯୪୪ରେ ଚର୍ଚ୍ଚିଲ୍ ତାଙ୍କୁ ଭାଇସ୍‌ରୟ ପଦରେ ଅଧିଷ୍ଠିତ କଲେ ।

ମାର୍ଚ୍ଚ, ୧୯୪୫ରେ ଓ୍ୱାଭେଲ୍ ଲଣ୍ଡନ ଯାତ୍ରା କଲେ ।

୧୯୪୫, ମାର୍ଚ୍ଚ ୨୦ ତାରିଖରେ ଲଣ୍ଡନର 'ଦି ଟାଇମ୍‌ସ୍' ସଂବାଦ-ପତ୍ରରେ ଗୋଟିଏ ନିବନ୍ଧ ପ୍ରକାଶିତ ହେଲା । 'ସଂପାଦକଙ୍କୁ ପତ୍ର' ସ୍ତମ୍ଭରେ ପ୍ରକାଶିତ ହୋଇଥିବା ବହୁ ପତ୍ରର ସାରାଂଶ ସହିତ ନିଜର ମତ ଦେଇ 'ଦି ଟାଇମ୍‌ସ୍'ର ସଂପାଦକ ଲେଖିଥିଲେ, 'ଏ ଦେଶରେ ସମସ୍ତଙ୍କର ମତ ଯେ, ଭାରତର ରାଜନୀତିକ ସଂକଟର ସମାଧାନ ପାଇଁ ଆମ ସରକାରଙ୍କ ପକ୍ଷରୁ ଉଦ୍ୟମ ଆରମ୍ଭ କରାଯାଉ । ପ୍ରଥମତଃ ଆମ୍ଭମାନଙ୍କ ପ୍ରସ୍ତାବ, ସରକାରୀ ସଂସ୍ଥାର କର୍ମଚାରୀ ନିଯୁକ୍ତିରେ ଓ କାର୍ଯ୍ୟକ୍ରମରେ କ୍ରମଶଃ ପରିବର୍ତ୍ତନ କରାଯାଉ ; ଭାରତୀୟଙ୍କୁ ପୂର୍ଣ୍ଣ ସ୍ୱାୟତ୍ତଶାସନ ଦେବାର ଉପକ୍ରମ ସ୍ୱରୂପ ଏହା ଅବିଳମ୍ବେ ଆରମ୍ଭ ହେଉ । ଦ୍ୱିତୀୟତଃ, ଭାରତର ରାଜନୀତିକ ଦଳ ଓ ବିଭିନ୍ନ ସ୍ୱାର୍ଥସଂଶ୍ଳିଷ୍ଟ ଗୋଷ୍ଠୀମାନଙ୍କ ଭିତରେ ଯେଉଁ କନ୍ଦଳ ନିରବଚ୍ଛିନ୍ନ ଭାବରେ ଲାଗିରହିଛି ପରସ୍ପର ବିଭେଦ ବଢ଼ୁଛି ତାହା ଖାଲି ଭାରତୀୟ ନେତା-

ମାନଙ୍କ ପକ୍ଷରେ ନୁହେଁ ବ୍ରିଟିଶ୍ ସରକାର ନେତୃବୃନ୍ଦଙ୍କ ପକ୍ଷରେ ମଧ୍ୟ ନିନ୍ଦାର ବିଷୟ ···।'

ବ୍ରିଟିଶ ଜନମତ, ଏପରିକି ରକ୍ଷଣଶୀଳ ଦଳର ମତ ମଧ୍ୟ, ଭାରତ ବିଷୟରେ ଚର୍ଚ୍ଚିଲଙ୍କ ମିଳାମିଶା ପ୍ରତି ପରାଂମୁଖ ମନୋବୃତ୍ତିକୁ ଅସ୍ୱୀକାର କରିବାକୁ ଆରମ୍ଭ କରିଥାନ୍ତି ।

ଓ୍ୱାଭେଲ୍ ଲଣ୍ଡନରେ ପ୍ରାୟ ଦୁଇମାସ କାଳ ରହିଲେ । ରାଜନୀତିକ ଭବିଷ୍ୟତ୍‌ବକ୍ତାମାନେ ଭବିଷ୍ୟତ୍‌ବାଣୀ ଶୁଣାଉଥାନ୍ତି ଯେ; ଆସନ୍ନ ନିର୍ବାଚନରେ ଶ୍ରମିକ ଦଳର ବିଜୟ ହେବ । ବ୍ରିଟିଶ୍ ସରକାର ଯେଉଁ ନୀତି ଗ୍ରହଣ କରିବେ, ସାମ୍ରାଜ୍ୟର ଅନ୍ୟ ରାଜ୍ୟମାନଙ୍କରେ ସେଇ ନୀତିର ପ୍ରତିବିମ୍ବ ପଡ଼ିବା ସ୍ୱାଭାବିକ । ଓ୍ୱାଭେଲଙ୍କର ଭାଇସ୍‌ରୟ୍‌ପଣ ଆହୁରି ଗୃରିବର୍ଷ ଥାଏ ।

୧୯୪୫, ଏପ୍ରିଲ ମାସରେ ସାନ୍‌ଫ୍ରାନ୍‌ସିସ୍‌କୋ ସମ୍ମିଳନୀ ବସି ମିଳିତ ଜାତି ସଂଘର ସନନ୍ଦ ଗଠା କରିବାର ଅବ୍ୟବହିତ ପୂର୍ବେ ଭାରତୀୟ ଓ ବୈଦେଶିକ ସାଂବାଦିକମାନେ ଏ ଉପଲକ୍ଷ୍ୟେ ମହାତ୍ମା ଗାନ୍ଧୀଙ୍କଠାରୁ ଗୋଟିଏ ବିବୃତି ଗ୍ରହିଲେ । ସେହି ବିବୃତିରେ ମହାତ୍ମାଜୀ ଦୃଢ଼ଭାବେ ଘୋଷଣା କଲେ, 'ଭାରତର ଜାତୀୟତାକୁ ସ୍ୱୀକାର କରିବାଦ୍ୱାରା ହିଁ ଆନ୍ତର୍ଜାତିକ ଶାନ୍ତି ଉଦ୍‌ଭୂତ ହେବ ।'

ସେ ଆହୁରି କହିଲେ, 'ଯୁଦ୍ଧ ଓ ତା'ର ଆନୁସଙ୍ଗିକ ଘୋର ପ୍ରତାରଣା ଓ ପ୍ରବଞ୍ଚନାରେ ଆସ୍ଥା ଯଦି ନ ଛାଡ଼ନ୍ତି, ଏବଂ ପୃଥିବୀର ସମସ୍ତ ମାନବଗୋଷ୍ଠୀ ଓ ରାଜନୀତିକ ଜାତିକୁ ସମାନ ବୋଲି ବିଚାରି ଓ ସମସ୍ତଙ୍କୁ ସ୍ୱାଧୀନତା ଦେଇ, ସେଇ ସମାନତା ଓ ସ୍ୱାଧୀନତାର ଭିତ୍ତି ଉପରେ ଯଦି ଶାନ୍ତି ପ୍ରତିଷ୍ଠା କରିବାକୁ ଦୃଢ଼-ସଂକଳ୍ପ ନ ହୁଅନ୍ତି ତେବେ ମିତ୍ରପକ୍ଷ ନିଜେ ଶାନ୍ତି ପାଇବେ ନାହିଁ କି ବିଶ୍ୱରେ ଶାନ୍ତି ପ୍ରତିଷ୍ଠା କରି ପାରିବେ ନାହିଁ ···। ଭାରତକୁ ଯଦି ସ୍ୱାଧୀନତା ମିଳେ, ତେବେ ପୃଥିବୀର ସମସ୍ତ ଶୋଷିତ ମାନବ ଗୋଷ୍ଠୀ ସୁସ୍ପଷ୍ଟ ପ୍ରମାଣ ପାଇ ବିଶ୍ୱାସ କରିବେ ଯେ, ସେମାନଙ୍କର ସ୍ୱାଧୀନତା ନିକଟଭବିଷ୍ୟତରେ ମିଳିବ ଏବଂ ଆଜିଠାରୁ ସେମାନଙ୍କର ଆଉ କୌଣସି ପ୍ରକାର ଶୋଷଣ ହେବ ନାହିଁ ।'

ସେ ଆହୁରି କହିଲେ, 'ଶାନ୍ତି ନ୍ୟାୟ ଉପରେ ପ୍ରତିଷ୍ଠିତ ହେବା ଦରକାର । ତାହା ହେବାକୁ ହେଲେ ଏଥିରେ ଦଣ୍ଡର ବ୍ୟବସ୍ଥା ରହିବ

ନାହିଁ କି ପ୍ରତିହିଂସାପୂର୍ଣ୍ଣ ଭାବ ରହିବ ନାହିଁ । ଜର୍ମାନୀ ଓ ଜାପାନକୁ [redacted]ତ କରାଯିବ ନାହିଁ । ବଳବାନ୍ ପ୍ରତିହିଂସାପରାୟଣ ହୁଏ ନାହିଁ । ବିଜେତା ପ୍ରତିହିଂସା-ପରାୟଣ ନ ହେଲେ ଶାନ୍ତିର ଫଳ ସମସ୍ତେ ସମାନଭାବେ ଉପଭୋଗ କରି ପାରିବେ । ଶତ୍ରୁକୁ ମିତ୍ର କରିବା ପାଇଁ ସବୁମତେ ପ୍ରଯତ୍ନ କରିବାକୁ ହେବ । ଏପରି କଲେ ଯାଇଁ ମିତ୍ର ପକ୍ଷ ପ୍ରମାଣ କରି ଦେବେ ଯେ, ସେମାନେ ସମସ୍ତେ ଗଣତନ୍ତ୍ରରେ ବିଶ୍ୱାସ କରନ୍ତି । ଅନ୍ୟ କୌଣସି କାର୍ଯ୍ୟପନ୍ଥାରେ ଏ ପ୍ରମାଣ ମିଳିବା ସଂଭବ ନୁହେଁ ।'

କିନ୍ତୁ ଗାନ୍ଧୀଙ୍କର ଆଶଂକା ହେଉଥାଏ ଯେ, ସାନଫ୍ରାନ୍ସିସ୍କୋ କନଫରେନ୍ସର ଅନ୍ତରାଳରେ ରହିଛି 'ଭୟ ଓ ଅବିଶ୍ୱାସ, ଯହିଁରୁ ଯୁଦ୍ଧ ଜାତ ହୁଏ ।'

ଗାନ୍ଧୀ ଜାଣିଥିଲେ ଯେ, ସ୍ୱାଧୀନତା, ଶାନ୍ତିର ଯାଆଁଳା ଭାଇ, ଏବଂ ନିର୍ଭୀକତା ଏ ଦୁହିଙ୍କର ଜନକ । ୧୯୬୦ ପୂର୍ବରୁ ଭାରତ ଓ ଦକ୍ଷିଣ-ପୂର୍ବ ଏସିଆର ଅଧିକାଂଶ ଅଞ୍ଚଳ ସ୍ୱାଧୀନ ହେବା ବିଷୟରେ ଆଉ କାହାର ସନ୍ଦେହ ରହିଲା ନାହିଁ । ଏ ଦେଶଗୁଡ଼ିକ ସ୍ୱାଧୀନ ନ ହେବାଯାଏଁ ପାଶ୍ଚାତ୍ୟ ରାଷ୍ଟ୍ରମାନଙ୍କର ସମୟ ଦୁଃସ୍ୱପ୍ନରେ କଟିବ ଏବଂ ଇୟୁରୋପର ପୁନରୁତ୍ଥାନ ଅସଂଭବ ହୋଇ ପଡ଼ିବ, ଏଥିରେ ମଧ୍ୟ କାହାର ସନ୍ଦେହ ରହିଲା ନାହିଁ । ତୃତୀୟ ମହାଯୁଦ୍ଧ ଏଡ଼ିବାକୁ ହେଲେ, ଯେଉଁ ଦୋଷ ଯୋଗୁଁ 'ପୃଥିବୀର କ୍ଷୟ ରୋଗ' ହୋଇଛି ସେ ଦୋଷଗୁଡ଼ିକ ବିଜେତାମାନଙ୍କୁ ଦୂର କରିବାକୁ ପଡ଼ିବ । ସମନର୍ ୱେଲ୍ସ୍ 'କ୍ଷୟ ରୋଗଗ୍ରସ୍ତ ପୃଥିବୀ' ବିଷୟରେ କିଛି-ଦିନ ପୂର୍ବେ ଲେଖିଥିଲେ ।

ଏହି ଚିନ୍ତାଧାରା ଭାରତ ବିଷୟରେ ବ୍ରିଟେନ୍ର ଆଭିମୁଖ୍ୟକୁ ରୂପ ଦେବାକୁ ଆରମ୍ଭ କରୁଥାଏ ।

ସରକାରର ମତ ଟେଲିଗ୍ରାଫ୍ ଅଫିସରେ ବ୍ୟବହୃତ କାଗଜ-ଫିତା ପରି । ଏଥିରେ ଟେଲିଗ୍ରାମ ସବୁ ଟାଇପ୍ ହୋଇଯାଏ । ଗୋଟିଏ ଟେଲିଗ୍ରାମର ଶବ୍ଦ ଲୁଚି ଯିବା ପୂର୍ବରୁ ନୂଆ ଟେଲିଗ୍ରାମର ଶବ୍ଦ ଫିତାରେ ଦିଶିଥାଏ । ସେହିପରି ଏକ ସମୟରେ ସରକାରର ମତରେ ଦୁଇଟା ପରସ୍ପର-ବିରୋଧୀ ମତ କାର୍ଯ୍ୟକାରୀ ହେବାର ଦେଖାଯାଏ ; ଅନ୍ତତଃ ଦୁଇ ପରସ୍ପର ବିରୋଧୀ ମତର ଅଂଶବିଶେଷ ଏକ ସମୟରେ ସରକାରୀ କାର୍ଯ୍ୟରେ ପ୍ରତିଫଳିତ ହୋଇଥାଏ । ବସ୍ତୁତଃ ସରକାର ବୋଇଲେ ତ

ଜଣେ ଲୋକ ନୁହେଁ । ସରକାର ବହୁ ନରନାରୀଙ୍କ କାରବାର ; କେତେ-ଜଣ ସରକାର ମଞ୍ଚକୁ ଗୋଟାଏ ଆଡ଼େ ଟାଣିଲବେଳକୁ ଆଉ କେତେ-ଜଣ ଅନ୍ୟ ଆଡ଼କୁ ଟାଣୁଥାନ୍ତି ।

ଭାରତ ପାଇଁ ଆଉ ଗୋଟିଏ ପରିକଳ୍ପନା ବ୍ରିଟିଶ ସରକାରଙ୍କ-ଦ୍ୱାରା ମଞ୍ଜୁର କରାଇ ଓ୍ୱାଭେଲ ନୂଆ ଦିଲ୍ଲୀକୁ ଆଣିଲେ ଓ ଏହାକୁ ଜୁନ୍ ୧୪ ତାରିଖରେ ଘୋଷଣା କଲେ । ସେଇଦିନ କଂଗ୍ରେସର ସଭାପତି ମୌଲାନା ଅବୁଲ କାଲାମ୍ ଆଜାଦ୍, ଜବାହାରଲାଲ ନେହେରୁ ଓ ଅନ୍ୟ ଯେଉଁ ନେତାମାନେ ୧୯୪୨, ଅଗଷ୍ଟ ୯ ତାରିଖର ସକାଳୁ ଜେଲରେ ଥିଲେ, ସେମାନଙ୍କୁ ମୁକ୍ତ ଦେଲେ ଏବଂ ଭାରତର ମୁଖ୍ୟ ରାଜନୀତିକ ନେତାମାନଙ୍କୁ, ଭାରତର ଗ୍ରୀଷ୍ମକାଳୀନ ରାଜଧାନୀ ସିମଲାକୁ ଜୁନ ୨୫ ତାରିଖରେ ଆସିବାକୁ ନିମନ୍ତ୍ରଣ କଲେ ।

ବିନା ବିଚାରରେ ସରକାର ଏତେକାଳ ସେମାନଙ୍କୁ ଜେଲରେ ଆବଦ୍ଧ କରି ରଖିଥିବାରୁ କୌଣସି ତିକ୍ତଭାବ କଂଗ୍ରେସ ନେତାମାନେ କାର୍ଯ୍ୟରେ ପ୍ରକାଶ କଲେ ନାହିଁ । ସେମାନେ ସିମଲା ଆସିବାକୁ ରାଜି ହେଲେ । ମୁସ୍‌ଲିମ୍ ଲିଗ୍‌ର ସଭାପତି ଭାବେ ଜିନ୍ନା ଏ ସମ୍ମିଳନୀକୁ ଆସିଲେ; ଓ ଲିଆକତ୍ ଆଲି ଖାଁ ଆସିଲେ ଲିଗ୍‌ର ସଂପାଦକ ଭାବେ । ନିଜ ନିଜ ପ୍ରଦେଶର ଭୂତପୂର୍ବ ପ୍ରଧାନମନ୍ତ୍ରୀ ଭାବେ ଖିଜର୍ ହୟାତ୍ ଖାଁ ଓ ସାର୍ ନାଜିମୁଦ୍ଦିନ୍‌ଙ୍କୁ ନିମନ୍ତ୍ରଣ କରାଯାଇଥିଲା । ଯାହାଙ୍କ ବାଦ୍ ମାଷ୍ଟର୍ ତାରା ସିଂହ ଓ ମିଷ୍ଟର୍ ଶିବରାଜ, ଯଥାକ୍ରମେ ଶିଖ୍ ଓ ହରିଜନଙ୍କ ପ୍ରତିନିଧିଭାବେ ଯୋଗ ଦେଲେ । ଗାନ୍ଧୀ ଏ ସମ୍ମିଳନୀକୁ ନିମନ୍ତ୍ରଣ ପାଇ ନ ଥିଲେ ମଧ୍ୟ, ସିମଲା ଆସିଲେ ଏବଂ ଆଲୋଚନା ଚାଲିଥିବା ଯାଏଁ ରହିଲେ ।

ଓ୍ୱାଭେଲ୍‌ଙ୍କ ପରିକଳ୍ପନା ଅନୁସାରେ, 'ଭାଇସ୍‌ରୟ୍‌ଙ୍କ ଏକ୍‌ଜିକ୍ୟୁଟିଭ୍ କାଉନ୍‌ସିଲ୍‌ରେ ଦୁଇଜଣମାତ୍ର ଇଂରେଜ ରହିବେ—ବଡ଼ଲାଟ ଓ ଜଂଗୀଲାଟ । ଆଉ ସମସ୍ତେ ହେବେ ଭାରତୀୟ । ବୈଦେଶିକ ବ୍ୟାପାର, ଅର୍ଥ ଓ ପୁଲିସ୍ ପ୍ରଭୃତି ସମସ୍ତ ବିଭାଗ ଭାରତୀୟଙ୍କ ହାତରେ ରହିବ ।

କାଉନ୍‌ସିଲ୍‌ର ଭାରତୀୟ ମେମ୍ବରମାନଙ୍କୁ ଭାଇସ୍‌ରୟ୍ ନିଯୁକ୍ତ କରିବେ, କିନ୍ତୁ ସେ ପ୍ରତିଶ୍ରୁତି ଦେଲେ ଯେ, ବିଭିନ୍ନ ଦଳ ପକ୍ଷରୁ ଯେଉଁ ନାମ ତାଲିକା ଆସିବ ସେଇଥିରୁ ସେ କାଉନ୍‌ସିଲର୍ ନେବେ ।

କାଉନ୍‌ସିଲ୍‌ର ସିଦ୍ଧାନ୍ତ ନାକଚ କରିବାର ଅଧିକାର ଭାଇସ୍‌ରୟଙ୍କର ରହିବ, କିନ୍ତୁ ସେ ପରିଷ୍କାର ପ୍ରତିଶ୍ରୁତି ଦେଲେ ଯେ, ଏ ଅଧିକାର, ଅବଶ୍ୟ ଉପଯୁକ୍ତ କାରଣ ନ ଥାଇ ବ୍ୟବହୃତ ହେବ ନାହିଁ ।' ଅଧିକାଂଶ ଭାରତୀୟ ରାଜନୀତିକ ନେତା ଭାଇସ୍‌ରୟଙ୍କ ପ୍ରତିଶ୍ରୁତି ଗ୍ରହଣ କଲେ ; କାରଣ, ଭାଇସ୍‌ରୟ ଯଦି କାଉନ୍‌ସିଲ୍‌ର ସିଦ୍ଧାନ୍ତ ନାକଚ କରିବାର କ୍ଷମତା ମନଇଚ୍ଛା ପ୍ରୟୋଗ କରନ୍ତି, ତେବେ ତ ଭାରତୀୟ ମେମ୍ବରମାନେ ଇସ୍ତଫା ଦେଇ ପାରିବେ ଏବଂ ନିଜ ନିଜ ଦଳର ଆଉ କେହି ତାଙ୍କ ସ୍ଥାନରେ ନିଯୁକ୍ତ ହେବାକୁ ମନା କରି ଦେଇ ପାରିବେ ; ସେପରି ହେଲେ ଓ୍ୱାଭେଲ୍ ପରିକଳ୍ପନା ଓ ଲୋକ ସମର୍ଥନମୂଳକ ସରକାର ଏକାବେଳକେ ମାଟିଲ୍ ହୋଇଯିବ ।

ଏ ସବୁ ସତ୍ତ୍ୱେ ସିମଲା ସମ୍ମିଳନୀ ବିଫଳ ହେଲା । ଜିନ୍ନାଙ୍କ ଯୋଗୁଁ ଏହା ହେଲା ବୋଲି ଓ୍ୱାଭେଲ ଦୋଷ ଦେଲେ ।

ଓ୍ୱାଭେଲ୍ ଯୋଜନା ଅନୁସାରେ, ଭାଇସ୍‌ରୟଙ୍କ କାଉନ୍‌ସିଲରେ 'ମୁସଲମାନ ଓ ସବର୍ଣ୍ଣ ହିନ୍ଦୁଙ୍କ ସଂଖ୍ୟା ସମାନ ସମାନ' ରହିବାର କଥା । କଂଗ୍ରେସ ଏଥିରେ ଆପତ୍ତି କରିଥିଲା । ମୁସଲିମ୍ ଲିଗ୍ ତୁଳନାରେ କଂଗ୍ରେସ ବଡ଼ ଓ ବ୍ୟାପକ ଅନୁଷ୍ଠାନ । ସବର୍ଣ୍ଣ ହିନ୍ଦୁଙ୍କଠାରୁ ଅସବର୍ଣ୍ଣ ହିନ୍ଦୁଙ୍କୁ ଅଲଗା କରିବାକୁ ଯେଉଁ ଉଦ୍ୟମ ଚାଲିଥିଲା, କଂଗ୍ରେସ ମୂଳରୁ ତାହାର ବିରୋଧ କରି ଆସିଥାଏ । କିନ୍ତୁ କୌଣସିମତେ ଗୋଟାଏ ନିଷ୍ପତ୍ତି ହୋଇ ଯାଉ ବୋଲି କଂଗ୍ରେସ ଏତେ ଉଦ୍‌ଗ୍ରୀବ ଥିଲା ଯେ, କଂଗ୍ରେସ ଶେଷରେ ଏ ବ୍ୟବସ୍ଥାକୁ ମାନିଗଲା ।

ଓ୍ୱାଭେଲ୍ ସିମଳାରେ ଅକ୍ଳାନ୍ତ ଉଦ୍ୟମ ଚଳାଇଥାନ୍ତି; କଂଗ୍ରେସ ରାଜି ହୋଇଯିବାରେ ସେ ପ୍ରତ୍ୟେକ ଦଳର ନେତାମାନଙ୍କୁ ନିଜନିଜର ତାଲିକା ମାଗିଲେ । ସମସ୍ତେ ତାଲିକା ଦେଲେ, କିନ୍ତୁ ଜିନ୍ନା ଦେଲେ ନାହିଁ । ଓ୍ୱାଭେଲ୍ ସର୍ବସାଧାରଣରେ ଘୋଷଣା କଲେ, 'ମୁଁ ଅସ୍ଥାୟୀ ଭାବେ କାଉନ୍‌ସିଲରମାନଙ୍କର ଗୋଟିଏ ତାଲିକା ତିଆରି କଲି, ଓ ସେଥିରେ ମୁସ୍‌ଲିମ୍ ଲିଗ୍‌ର କେତେ ଜଣଙ୍କ ନାମ ରଖିଲି······କିନ୍ତୁ ମୁଁ ମୋ ଫଇସଲା ମିଷ୍ଟର୍ ଜିନ୍ନାଙ୍କୁ ଜଣାଇବାରେ, ସେ କହିଲେ ଯେ, ଏଥିରେ ମୁସ୍‌ଲିମ୍ ଲିଗ୍ ରାଜି ହୋଇ ପାରିବ ନାହିଁ । ସେ ମୋ ପ୍ରସ୍ତାବକୁ ଏତେ

ଦୃଢ଼ଭାବେ ପ୍ରତ୍ୟାଖ୍ୟାନ କଲେ ଯେ, ମୁଁ ସ୍ଥିର କଲି ଆଲୋଚନା ଆଉ ଚଳାଇ ରଖିବା ନିରର୍ଥକ ।'

ଜିନ୍ନା ଯେ ସିମଳା ସମ୍ମିଳନୀକୁ ଭଣ୍ଡୁର କରିଦେଲେ, ତାହାର ଗୋଟିଏ ମାତ୍ର ବୋଧଗମ୍ୟ ହେଉଛି; ସେ ଜିଦ୍ ଧରିଲେ ଯେ, ଭାଇସ୍‌ରୟଙ୍କ କାଉନ୍‌ସିଲରେ ଯେତେଜଣ ମୁସଲ୍‌ମାନ ସଭ୍ୟ ରହିବେ ସେ ସମସ୍ତଙ୍କ ନାମ ସେ, ଭାରତୀୟ ମୁସ୍‌ଲିମ୍‌ଙ୍କ ନେତା ଭାବେ, ଦେବେ ।

ସ୍ୱୀକାର କରିବାକୁ ହେବ ଯେ, ମହାଯୁଦ୍ଧ ଭିତରେ ମୁସ୍‌ଲିମ୍ ଲିଗ୍‌ର ପ୍ରତିପତ୍ତି ବଢ଼ିଯାଇଥିଲା । ଲିଗ୍ ବିରୋଧୀ ମୁସ୍‌ଲିମ୍ ପ୍ରାର୍ଥୀମାନଙ୍କୁ ଲିଗ୍‌ର ପ୍ରାର୍ଥୀମାନେ ଅଧିକାଂଶ ନିର୍ବାଚନରେ ପରାସ୍ତ କରିଥିଲେ । କିନ୍ତୁ ସିମଳା ସମ୍ମିଳନୀର ବାହାରେ ଥାଇ କଂଗ୍ରେସର ନୀତି ନିୟନ୍ତ୍ରଣ କରୁଥିବା ଗାନ୍ଧୀ ବା ଓ୍ୱାଭେଲ୍ ଦୁହିଁଙ୍କ ଭିତରୁ କେହି ସମଗ୍ର ଭାରତୀୟ ମୁସ୍‌ଲିମ୍ ଜନତାର ଏକଛତ୍ର ପ୍ରତିନିଧି ବୋଲି ଜିନ୍ନାଙ୍କୁ ସ୍ୱୀକାର କରି ପାରିଲେ ନାହିଁ । କଂଗ୍ରେସ ଭିତରେ ତ ବହୁ ମୁସଲମାନ ଥାନ୍ତି । ଆଜାଦ୍ ନିଜେ ଥିଲେ ମୁସଲମାନ ଓ କଂଗ୍ରେସ ଚାହୁଁଥିଲା ସେ ଭାଇସ୍‌ରୟଙ୍କ କାଉନ୍‌ସିଲ୍‌ରେ ରହିବେ । ପଞ୍ଜାବର ଭୂତପୂର୍ବ ପ୍ରଧାନମନ୍ତ୍ରୀ ଖିଜର୍ ହୟାତ୍ ଖାଁ ଜିନ୍ନାଙ୍କର ବିରୋଧୀ ଥିଲେ ଓ ପାକିସ୍ଥାନ ଚାହୁଁ ନ ଥିଲେ । ଭାରତର ଅନେକ ନେତୃସ୍ଥାନୀୟ ମୁସଲମାନଙ୍କର ମଧ୍ୟ ଏହି ମତ ଥିଲା ।

ପୁଣି କଂଗ୍ରେସ ଯଦି ନିଜକୁ ନିରୁତା ହିନ୍ଦୁ ଅନୁଷ୍ଠାନ ବୋଲି ମାନି ଯାଇଥାନ୍ତା, ତେବେ କଂଗ୍ରେସର ଚିରସ୍ୱୀକୃତ ଧର୍ମନିରପେକ୍ଷତା ଓ ଗାନ୍ଧୀ-ନୀତିର ବିରୁଦ୍ଧାଚରଣ କରିଥାନ୍ତା । କଂଗ୍ରେସର ଦୃଢ଼ ଅଭିଳାଷ ଥିଲା, ସେ ଏକଧର୍ମାବଲମ୍ବୀ ଅନୁଷ୍ଠାନ ବୋଲି ବିବେଚିତ ନ ହୋଇ ସମଗ୍ର ଜାତିର ପ୍ରତିନିଧିରୂପେ ଗୃହୀତ ହେବ । ଏପରି ସ୍ଥଳେ ଗୋଟିଏ ଧର୍ମ ସଂପ୍ରଦାୟର ଭିତରେ ଏହା ନିଜକୁ ଆବଦ୍ଧ ରଖିବାକୁ ରାଜି ହୋଇ ପାରିଲା ନାହିଁ ।

ସିମଳା ସମ୍ମିଳନୀପୋତ ଏହି ପାହାଡ଼ରେ ବାଜି ଚୂରମାର ହୋଇଗଲା । ଏଣେ ଜିନ୍ନାଙ୍କ ସହଯୋଗ ନ ଥାଇ କୌଣସି ସିଦ୍ଧାନ୍ତ କରିବାକୁ ଭାରତ ବା ବିଲାତର ଇଂରେଜ କର୍ତ୍ତୃପକ୍ଷ ପ୍ରସ୍ତୁତ ନ ଥିଲେ ।

ସିମଳା ସମ୍ମିଳନୀ ଚାଲିଥିଲା ବେଳେ ମହାଯୁଦ୍ଧର ଇଯୁରୋପରେ ସମାପ୍ତି ହେଲା । ଜୁଲାଇ ୨୬ ତାରିଖରେ, ଶ୍ରମିକ ଦଳ ଜାତି ଦଳକୁ

ଚୂଡ଼ାନ୍ତ ଭାବେ ପରାସ୍ତ କଲେ; କ୍ଲେମେଣ୍ଟ୍ ଆର. ଏ୍ୟାଟ୍‌ଲୀ ଚର୍ଚ୍ଚିଲ୍‌ଙ୍କ ସ୍ଥାନରେ ବିଲାତର ପ୍ରଧାନ ମନ୍ତ୍ରୀ ହେଲେ ।

ଅଗଷ୍ଟ ୧୪ ତାରିଖରେ ମିତ୍ରଶକ୍ତିମାନଙ୍କଠାରେ ଜାପାନ ଆତ୍ମ-ସମର୍ପଣ କଲା ।

ବ୍ରିଟେନ୍‌ର ଶ୍ରମିକ ସରକାର ସଙ୍ଗେ ସଙ୍ଗେ ଘୋଷଣା କଲେ ଯେ, 'ଭାରତରେ ଅବିଳମ୍ବେ ସ୍ୱାୟତ୍ତ ଶାସନ ପ୍ରବର୍ତ୍ତିତ' ହେବା ସେ ସିଦ୍ଧାନ୍ତ । ଓ୍ୱାଭେଲ୍‌ଙ୍କୁ ଲଣ୍ଡନ ଡକରା ହେଲା । ତାଙ୍କ ସଙ୍ଗେ ଆଲୋଚନା ହେବା ଫଳରେ ବ୍ରିଟିଶ୍ ସରକାର ଯାହା ନିଷ୍ପତ୍ତି କଲେ ତାହା ୧୯୪୫, ସେପ୍‌ଟେମ୍ବର ୧୯ ତାରିଖ ଦିନ, ଲଣ୍ଡନରେ ଏ୍ୟାଟଲୀ ଓ ନୂଆ ଦିଲ୍ଲୀରେ ଓ୍ୱାଭେଲ ଘୋଷଣା କଲେ ।

ଏହି ନିଷ୍ପତ୍ତିର ପ୍ରଥମ ସୋପାନ ଥିଲା, କେନ୍ଦ୍ର ଓ ପ୍ରାଦେଶିକ ବ୍ୟବସ୍ଥା ସଭାମାନଙ୍କୁ ନିର୍ବାଚନ । ତା' ପରେ ମୁଖ୍ୟ ରାଜନୀତିକ ଦଳମାନଙ୍କ ସହଯୋଗରେ ଏକ୍‌ଜିକ୍ୟୁଟିଭ କାଉନ୍‌ସିଲ୍ ଗଠନ କରିବାକୁ ଓ୍ୱାଭେଲ୍ ପୁଣି ଉଦ୍ୟମ ଆରମ୍ଭ କରିବେ ଏବଂ ପ୍ରଦେଶମାନଙ୍କରେ ଲୋକପ୍ରତିନିଧି-ଶାସନର ପୁନଃ-ପ୍ରବର୍ତ୍ତନ କରିବେ । ନିର୍ବାଚନର ଫଳାଫଳ ଅନୁକ୍ରମେ, ଏକତାବଦ୍ଧ ଭାରତର ସଂବିଧାନ ଗଢ଼ିବାକୁ ଗୋଟିଏ ସଭା ମଧ୍ୟ ଗଢ଼ିବେ ।

ବ୍ରିଟିଶ ସରକାରଙ୍କ ସଦୁଦ୍ଦେଶ୍ୟ ବିଷୟରେ ସ୍ୱଭାବତଃ ସନ୍ଦିହାନ ନିଖିଳଭାରତ କଂଗ୍ରେସ କମିଟି ବ୍ରିଟିଶ ସରକାରଙ୍କ ଏ ପ୍ରସ୍ତାବମାନ, 'ଅସ୍ପଷ୍ଟ, ଅପର୍ଯ୍ୟାପ୍ତ, ଓ ଅସନ୍ତୋଷ ଜନକ' ବୋଲି ଘୋଷଣା କଲେ । କିନ୍ତୁ ବ୍ରିଟିଶ ସରକାର କଂଗ୍ରେସକୁ ତୁଷ୍ଟ କରିବାକୁ ଲାଳାୟିତ ଥାନ୍ତି । ଆହୁରି ଅନେକ କଂଗ୍ରେସ-ବନ୍ଦୀଙ୍କୁ ମୁକ୍ତ କରାଗଲା ; ମାଲୟ ଓ ବର୍ମାରେ ବ୍ରିଟିଶ ଭାରତୀୟ ସୈନ୍ୟବାହିନୀରୁ ପଳାଇଯାଇ, ଭାରତୀୟ ଜାତୀୟ ସେନାବାହିନୀରେ ଯୋଗ ଦେଇଥିବା ତିନିଜଣ ବଡ଼ ସାମରିକ ଅଫିସରଙ୍କର ଲାଲ କିଲ୍ଲାରେ ବିଚାର ହୋଇ ଯାବଜ୍ଜୀବନ ଜେଲ ଦଣ୍ଡ ହୋଇଥିଲା; ସେମାନଙ୍କୁ ଛାଡ଼ି କରି ଦିଆଗଲା । ଅନ୍ୟ ଓକିଲଙ୍କ ସାଙ୍ଗରେ ନେହେରୁ ଏମାନଙ୍କ ପାଇଁ ବିଚାରାଳୟରେ ଓକିଲାତି କରିଥିଲେ ।

ପ୍ରତ୍ୟେକ ରାଜନୀତିକ ଦଳ ନିର୍ବାଚନରେ ଭାଗ ନେବା ପାଇଁ ରାଜି ହେଲେ ।

କଂଗ୍ରେସ, ଅମୁସଲମାନ ନିର୍ବାଚନମଣ୍ଡଳୀମାନଙ୍କରେ ବହୁ ସଂଖ୍ୟାରେ ଜିଣିଲେ, ଏବଂ ମୁସ୍‌ଲିମ୍ ଲିଗ୍ ମୁସଲମାନ ନିର୍ବାଚନମଣ୍ଡଳୀରେ ବହୁ ସଂଖ୍ୟାରେ ଜୟଯୁକ୍ତ ହେଲେ ।

କିନ୍ତୁ ରାଜନୀତିକ ଅଚଳ ଅବସ୍ଥା ପୂର୍ବପରି ଲାଗି ରହିଲା ।

ଡିସେମ୍ବର ୧୯୪୫ରେ ଓ୍ୱାଭେଲ କଲିକତାରେ ଭାଷଣ ଦେଇ ଭାରତବାସୀଙ୍କୁ ନିବେଦନ କଲେ ଯେ, 'ସେମାନେ ବର୍ତ୍ତମାନ ରାଜନୀତିକ ଓ ଆର୍ଥନୀତିକ ସୁଯୋଗର ଦ୍ୱାରଦେଶରେ ଆସି ପହଞ୍ଚିଯାଇଥିବା' ସ୍ଥଳେ ସମସ୍ତ ପ୍ରକାର ବିବାଦ ବିସଂବାଦ ଓ ଧ୍ୱଂସାକାଣ୍ଡରୁ ନିବର୍ତ୍ତିଯାନ୍ତୁ ।

ସେ ସମୟରେ ଗାନ୍ଧୀ ମଧ୍ୟ କଲିକତାରେ ଥିଲେ । ବଙ୍ଗଳାର ବ୍ରିଟିଶ୍ ଗଭର୍ଣ୍ଣର୍ ପଦବୀରେ ଥିବା ଅଷ୍ଟ୍ରେଲିଆ-ଅଧିବାସୀ ରିଚାର୍ଡ଼ କ୍ୟାସିଙ୍କ ସଙ୍ଗେ ସେ ବହୁ ଘଣ୍ଟା କାଳ ଆଲୋଚନା କରିଥିଲେ ; ଭାଇସ୍‌ରୟଙ୍କ ସଙ୍ଗେ ମଧ୍ୟ ଏକ ଘଣ୍ଟା କଟାଇଥିଲେ । କଲିକତାର ବଡ଼ଲାଟ-ଭବନରୁ ସେ ବାହାରିବା ବେଳେ ବିରାଟ ଜନତା ତାଙ୍କୁ ଘେରିଯାଇ ରାସ୍ତା ଅବରୋଧ କରିଦେଲେ, ଏବଂ ସେ କିଛି ନ କହିଲେ ବାଟ ଛାଡ଼ିବେ ନାହିଁ ବୋଲି ଅଡ଼ି ବସିଲେ । ଗାନ୍ଧୀ ମଟରକାର୍ ଉପରେ ଠିଆ ହୋଇ କହିଲେ, 'ଭାରତ ତାର ଶାନ୍ତିର ସନ୍ଦେଶ ଯୋଗୁଁ ପ୍ରାଚ୍ୟ ଭୂଖଣ୍ଡରେ ଏବେ ଏତେ ବଡ଼ ପ୍ରତିଷ୍ଠା ପାଇ ପାରିଛି ।' ଗାନ୍ଧୀ ଏତିକ କହିବା ପରେ ଜନତା ଦୁଇ ପାଖକୁ ଆଡ଼େଇ ହୋଇଯାଇ ତାଙ୍କ ଗାଡ଼ିକୁ ବାଟ ଛାଡ଼ି ଦେଲେ ; ଗାନ୍ଧୀ ଆଠ ମାଇଲ ଦୂରରେ ଥିବା ତାଙ୍କ ଆଶ୍ରମକୁ ଚାଲିଗଲେ । ସେ ଯିବା ପୂର୍ବରୁ ଓ ପରେ ଆଦ୍ୟପ୍ରାନ୍ତ ସଡ଼କ କଡ଼ରେ ଠିଆ ହୋଇଥିବା ଭାରତୀୟ ଲୋକେ ସଡ଼କରୁ ଧୂଳି ନେଇ ମୁଣ୍ଡରେ ମାରୁଥାନ୍ତି ।

ସେଇ ଦିନ ଜିନ୍ନା ବମ୍ବେଠାରେ ବକ୍ତୃତା ଦେଇ କହିଥିଲେ, "ପାକିସ୍ଥାନ ହେବାରେ ମୁଁ ରାଜି ; ସିନ୍ଧ, ବେଲୁଚିସ୍ଥାନ, ପଞ୍ଜାବ, ଉତ୍ତର-ପଶ୍ଚିମ ସୀମାନ୍ତ ପ୍ରଦେଶ, ବଙ୍ଗଳା ଓ ଆସାମ ଏହି ଛ'ଟି ପ୍ରଦେଶର ବର୍ତ୍ତମାନ ଯେଉଁ ସୀମାରେଖା ଅଛି ସେଇ ସୀମାରେଖା ବଜାୟ ରଖି, ଭାରତର ଏକ-ଚତୁର୍ଥାଂଶ ଅଞ୍ଚଳକୁ ନେଇ ପାକିସ୍ଥାନ ଗଠିତ ହେବାରେ ମୁଁ ରାଜି ।"—ମିଷ୍ଟର୍ ଗାନ୍ଧୀ ଯଦି ଏତିକମାତ୍ର କହି ଦିଅନ୍ତେ, ତେବେ ଦଶ ମିନିଟ୍ ଭିତରେ ଆମେ ଭାରତୀୟ ସମସ୍ୟାର ସମାଧାନ କରିପାରନ୍ତେ ।'

କିନ୍ତୁ ଏହା କରିବା ଗାନ୍ଧୀଙ୍କ ପକ୍ଷରେ ଅସମ୍ଭବ ଥିଲା ; ତେଣୁ ସେ ଏହା କରିଲେ ନାହିଁ ; ସେ ମନେ କରୁଥିଲେ ଭାରତକୁ ଖଣ୍ଡ ଖଣ୍ଡ କରିବା ଘୋର 'ଅଧର୍ମ' ।



# ଦ୍ୱାଦଶ ପରିଚ୍ଛେଦ

## ଭାରତର ଅନିଶ୍ଚିତାବସ୍ଥା

ଗାନ୍ଧି ଅନେକ ଦିନୁଁ କହି ଆସୁଥିଲେ ଯେ, ସେ ଶହେ ପଚିଶ ବର୍ଷ ବଂଚିବାକୁ ଚାହାନ୍ତି, କିନ୍ତୁ ଜୀବନ୍ତ ଶବ ହୋଇ, 'ବନ୍ଧୁ ବାନ୍ଧବ ଓ ସମାଜ ଉପରେ ବୋଝ ହୋଇ' ନୁହେଁ । ଏତେକାଳ ଶାରୀରିକ ସାମର୍ଥ୍ୟ ରହିବ କିପରି ? ଏ କଥା ବୁଝାଇବାକୁ ଯାଇ ସେ ପ୍ରଥମେ ବର୍ଣ୍ଣନା କଲେ, ଏ ପର୍ଯ୍ୟନ୍ତ ସେ ସମର୍ଥ ରହିଛନ୍ତି କିପରି । ୧୯୦୧ରେ ସେ ଔଷଧ ଶିଶି ଫୋପାଡ଼ିଦେଇ ତାହା ପରିବର୍ତ୍ତେ ପ୍ରାକୃତିକ ଚିକିତ୍ସାର ଆଶ୍ରୟ ନେଲେ, ଓ ଖାଇବା ପିଇବା ଓ ଶୋଇବାରେ ନିୟମ ମାନି ଚଳିଲେ । ସବୁଠାରୁ ବଡ଼ କଥା, ସେ 'ମନର ବୈରାଗ୍ୟ' ଅଭ୍ୟାସ କଲେ—ଦୀର୍ଘଜୀବନର ଏହି ବୈରାଗ୍ୟ ହିଁ ଗୁମରକାଠି । ଗାନ୍ଧୀ କହିଥିଲେ, ୧୨୫ ବର୍ଷ ବଞ୍ଚିବ ଯେ, ଫଳ ପ୍ରତି ଆକାଂକ୍ଷା ନ ରଖି ନିଜର କର୍ତ୍ତବ୍ୟ କରିଯାଉଥିବ ; ଏଥିପାଇଁ ମଣିଷର ଅଧିକାର ଅଛି ଏବଂ ମଣିଷ ଏ କାମନା କରିବା ଉଚିତ । କର୍ତ୍ତବ୍ୟ-ପରାୟଣତା ଓ କର୍ମଫଳରେ ଅନାସକ୍ତି—ଏଥିରୁ 'ଅନିର୍ବଚନୀୟ ଆନନ୍ଦ ମିଳେ', ଏହା 'ଅମୃତ' ପରି ମଣିଷକୁ ବଞ୍ଚାଇ ରଖେ । ଅନାସକ୍ତ କର୍ମ-ଯୋଗରେ ବିଷାଦ ବା ଅଧୀରତାର ଅବକାଶ ରହେ ନାହିଁ । ଅହଂକାର ମଣିଷକୁ ମାରେ ; ନିଃସ୍ୱାର୍ଥପରତା ଜୀବନକୁ ନିରାଲମ୍ବ କରେ ।

ମହାତ୍ମାଙ୍କ ଭାରତର ଏଇ ଘଡ଼ିସନ୍ଧି ବେଳେ ଆଉ ଗୋଟିଏ ନୂଆ କର୍ମପଦ୍ଧତି ଧରିଲେ ; ତାହା ପ୍ରାକୃତିକ ଚିକିତ୍ସା । ଯାହାକୁ ସେ କହିଲେ ତାଙ୍କ 'କନିଷ୍ଠ ସନ୍ତାନ' । ବଡ଼ ସନ୍ତାନମାନେ— ଖଦି, ଗ୍ରାମୋଦ୍ୟୋଗ, ଜାତୀୟ ଭାଷାର ବିକାଶ, ଖାଦ୍ୟ ଉତ୍ପାଦନ, ଭାରତର ସ୍ୱାଧୀନତା, ଭାରତୀୟ ଲୋକଙ୍କର ସର୍ବୋଦୟ ଓ ବିଶ୍ୱଶାନ୍ତି—ଏମାନଙ୍କ ପାଇଁ ପୂର୍ବାପର ତାଙ୍କର ସଯତ୍ନ ଉଦ୍ୟମ ଚାଲିଥାଏ । ନୂଆ ପିଲାଟି ପାଇଁ ଗୋଟିଏ ପ୍ରତିଷ୍ଠାନ ଗଢ଼ାଗଲା ; ଏହାର ତିନିଜଣ ତତ୍ତ୍ୱାବଧାରକଙ୍କ ମଧ୍ୟରେ ଗାନ୍ଧୀ ଜଣେ ହୋଇ ରହିଲେ । ଗାନ୍ଧୀଙ୍କ ଚିକିତ୍ସକ ଡକ୍ଟର୍ ଦୀନଶାହ ମେହେଟାଙ୍କର ପୁନା ନଗରୀରେ ଗୋଟିଏ ପ୍ରାକୃତିକ ଚିକିତ୍ସାଳୟ ଥିଲା । ଗାନ୍ଧୀଙ୍କ ପ୍ରାକୃତିକ ଚିକିତ୍ସା ପ୍ରତିଷ୍ଠାନ ସ୍ଥିର କଲେ ଏହାକୁ ପ୍ରଥମେ ହାତରେ ନିଆଯିବ, ଏବଂ କ୍ରମେ ଏହାକୁ ବଢ଼ାଇ ଗୋଟିଏ ପ୍ରାକୃତିକ ଚିକିତ୍ସା ବିଶ୍ୱବିଦ୍ୟାଳୟରେ ପରିଣତ କରିବାକୁ ହେବ ।

କିନ୍ତୁ ହଠାତ୍, ଗୋଟିଏ ମୌନ ସୋମବାର ଦିବସରେ ସେ ଏ ଯୋଜନା ତ୍ୟାଗ କରିବାକୁ ସ୍ଥିର କରିଦେଲେ । ସେ ନିଜର ପୂର୍ବ ଭ୍ରମ ସ୍ୱୀକାର କରି କହିଲେ, 'ହଠାତ୍ ମୋତେ ଦିଶିଗଲା ଯେ, ଦରିଦ୍ରଙ୍କ ପାଇଁ ଅନୁଷ୍ଠାନ ମୁଁ ଗୋଟିଏ ସହରରେ କରିବାକୁ ଯାଇ ମୂର୍ଖାମି କରିଛି ।' ସେ ଯାଇ ଦରିଦ୍ରଙ୍କ ପାଖରେ ପ୍ରାକୃତିକ ଚିକିତ୍ସାକୁ ପହଞ୍ଚାଇବାକୁ ପଡ଼ିବ ; ସେମାନେ ଏଥି ସକାଶ ତାଙ୍କ ପାଖରେ ଆସି ପହଞ୍ଚିବେ ବୋଲି ଆଶା କରିବା ଉଚିତ ନୁହେଁ । ଏହି ପ୍ରମାଦରୁ ସେ ଗୋଟିଏ ନୀତିଶିକ୍ଷା ବାହାର କଲେ : 'ନିଜର ମସ୍ତିଷ୍କ ଓ ମନ ଉଭୟଙ୍କୁ ଯେଉଁ କଥା ନ ପାଉଛି ତାହା ଜଣେ ମହାତ୍ମା କହିଲେ ମଧ୍ୟ ତାକୁ ଧ୍ରୁବ ସତ୍ୟ ବୋଲି ମାନିଯାଆନାହିଁ ।' ନିର୍ବିଚାରରେ ତାଙ୍କ କଥା ଲୋକେ ମାନିଯାନ୍ତୁ ଏହା ଗାନ୍ଧୀ ପସନ୍ଦ କରୁ ନ ଥିଲେ ।

ସେ ସ୍ଥିର କଲେ, ପ୍ରାକୃତିକ ଚିକିତ୍ସା କାର୍ଯ୍ୟ ଗୋଟିଏ ଗ୍ରାମରେ ଆରମ୍ଭ କରିବେ । ସେ ଲେଖିଥିଲେ, 'ଗ୍ରାମ ହିଁ ପ୍ରକୃତ ଭାରତ, ତାହାହିଁ ମୋର ଭାରତ ; ସେଇ ଭାରତର ସେବା କରିବାକୁ ମୁଁ ଜୀଇ ରହିଛି ।' କହିବା ସାଙ୍ଗେ ସାଙ୍ଗେ କାର୍ଯ୍ୟ ଆରମ୍ଭ ହୋଇଗଲା । ଗାନ୍ଧୀ ଯାଇ ଉରୁଳି ଗ୍ରାମରେ କେତେଦିନ ରହିଲେ । ଉରୁଳି ପୁନା-ଶୋଲାପୁର ରେଲଲାଇନରେ ଗୋଟିଏ ଗ୍ରାମ ; ଲୋକ ସଂଖ୍ୟା ୩ ହଜାର ; ପାଣିର ଖୁବ୍ ସୁବିଧା ;

ଜଳବାୟୁ ଭଲ , ଗୃହପଟେ ଗୁଡ଼ିଏ ଫଳବଗିଚ୍ଚ ; ପୋଷ୍ଟଅଫିସ୍ ଓ ଟେଲିଗ୍ରାମର ସୁବିଧା ଥାଏ, କିନ୍ତୁ ଟେଲିଫୋନ୍ ବ୍ୟବସ୍ଥା ନ ଥାଏ ।

ସେଇଠାରେ ପ୍ରାକୃତିକ ଚିକିତ୍ସା କେନ୍ଦ୍ର ସ୍ଥାପିତ ହେଲା । ପ୍ରଥମ ଦିନ ୩୦ ଜଣ ରୋଗୀ ଆସିଲେ ; ତାଙ୍କ ଭିତରୁ ୬ ଜଣଙ୍କୁ ଗାନ୍ଧୀ ନିଜେ ପରୀକ୍ଷା କଲେ । ପ୍ରତି ରୋଗୀଙ୍କୁ ସେ ଏକାଭଳି ଚିକିତ୍ସାର ବ୍ୟବସ୍ଥା ଦେଲେ : ଅନବରତ ଭଗବତ୍ ନାମ ଜପ, ସୂର୍ଯ୍ୟ କିରଣରେ ବସ, ମର୍ଦ୍ଦନ କରାଅ, ତଳପେଟ ପାଣିରେ ବୁଡ଼ାଇ ବସ, ଗାଈ ଦୁଧ, ଘୋଳଦହି, ଫଳରସ ଖାଅ ଓ ପ୍ରଚୁର ପାଣି ପିଅ । ତୁଣ୍ଡରେ ଖାଲି ଭଗବାନଙ୍କ ନାମ ବୋଇଲେ ତାହା ନାମ ଜପ ବୋଲାଇବ ନାହିଁ ; ନାମ ଜପିଲା ବେଳେ ସେ ନାମର ପ୍ରଭାବ ସମସ୍ତ ଅଙ୍ଗକୁ ପ୍ରଭାବିତ କରୁଥିବ, ଏବଂ ଜୀବନତମାମ୍ ସେ ନାମର ମହିମା ଅନୁଭବ କରିବାକୁ ପଡ଼ିବ । ଗାନ୍ଧୀ ସରଳଭାବରେ ବୁଝାଇ ଦେଉଥିଲେ,'ମଣିଷର ସମସ୍ତ ଆଧିବ୍ୟାଧିର କାରଣ ଗୋଟିଏ ; ତେଣୁ ସମସ୍ତ ଆଧିବ୍ୟାଧିର ପ୍ରତିକାର ମଧ୍ୟ ଗୋଟିଏ ହେବା ଉଚିତ ।' ସେ କହୁଥିଲେ, ପ୍ରାୟ ପ୍ରତ୍ୟେକ ଲୋକ ଆଧିବ୍ୟାଧିରେ ପୀଡ଼ିତ, ତେଣୁ ପ୍ରତ୍ୟେକଙ୍କ ପକ୍ଷରେ ନାମ ଜପ ମହୌଷଧ ଦରକାର । 'ରାମ, ରାମ, ରାମ, ରାମ' ବୋଲି ଜପ କଲାବେଳେ ଯଦି ଈଶ୍ୱରିକତା, ସାଧୁତା, ସେବା ଓ ନିଃସ୍ୱାର୍ଥପରତା ଉପରେ ମନର ଗଭୀର ଏକାଗ୍ରତା ରହିବ ତେବେ ମାଟିପଟି, କଟିସ୍ନାନ, ଓ ଅଭ୍ୟଙ୍ଗମର୍ଦ୍ଦନ ପ୍ରଭୃତିର ଆରୋଗ୍ୟକର ପ୍ରକ୍ରିୟା କ୍ଷିପ୍ରତର ଓ ଆଶୁଫଳପ୍ରଦ ହେବ ।

ଜଡ଼ ଶରୀର ଉପରେ ମନ ଓ ମନୋବୃତ୍ତିର କେତେ ପ୍ରଭାବ ତାହାର ପ୍ରମାଣ ଥିଲେ ନିଜେ ଗାନ୍ଧୀ । ଗାନ୍ଧୀଙ୍କ ପ୍ରୌଢ଼ାବସ୍ଥା ତମାମ ସେ ସ୍ୱାସ୍ଥ୍ୟ ବିଷୟରେ ବ୍ୟାପୃତ ଏପରି କି କିଶୋରାବସ୍ଥାରେ ମଧ୍ୟ ସେ ନିଜର ମୁମୂର୍ଷୁ ପିତାଙ୍କର ସେବା କରିଥିଲେ । ତାଙ୍କ ପାଖଆଖରେ ଯେ ପହଞ୍ଚୁଥିଲେ ତାଙ୍କୁ ସେ ଚିକିତ୍ସା କରୁଥିଲେ । ଅନ୍ୟର କଷ୍ଟ ଦେଖିଲେ ତାଙ୍କୁ କଷ୍ଟ ଲାଗୁଥିଲା । ଅନ୍ୟ ପ୍ରତି ଅନୁକଂପା ତାଙ୍କଠାରେ ଅପରିମେୟ ଭାବେ ଥିଲା ।

ସ୍ନେହମୟୀ ମା, ବୃଥାରେ ହେଲେ ବି, ଅନ୍ତରର ସହିତ କାମନା କରେ, ତା' ପିଲାର ରୋଗ ତା'କୁ ହେଲେ ହୁଅନ୍ତା । ସେହିପରି ଗାନ୍ଧୀ ବାରଂବାର ଅନଶନ କରି ନିଜ ଶରୀରକୁ ପୀଡ଼ା ଦେଲାବେଳେ ଆଶା

କରୁଥିଲେ, ଅସ୍ପୃଶ୍ୟମାନଙ୍କର, ଧର୍ମଘଟକାରୀଙ୍କର, ହିନ୍ଦୁ ଓ ମୁସଲମାନଙ୍କର ଦୁଃଖ ଯନ୍ତ୍ରଣା ଦୂର ହେଉ ବୋଲି । ଯେଉଁମାନେ ଅନ୍ୟକୁ ବା ତାଙ୍କୁ ପୀଡ଼ା ଦେଉଥିଲେ ତାଙ୍କ ପାଇଁ ମଧ୍ୟ ସେ ତପସ୍ୟା କରୁଥିଲେ ।

ଅନ୍ୟର ଦୁଃଖ ଅପନୋଦନ କରିବାକୁ, ଓ ଯନ୍ତ୍ରଣାର ଉପଶମ କରିବାକୁ ଗାନ୍ଧୀଙ୍କ ମନରୁ ଯେଉଁ ପ୍ରେରଣା ଆସୁଥିଲା ତାହା ଥିଲା ଗାନ୍ଧୀଙ୍କ ମନର ଗଭୀରତମ ଆକାଂକ୍ଷାର ପ୍ରତୀକ । ତାହାହିଁ ଥିଲା ତାଙ୍କ ପ୍ରେମର ସ୍ୱରୂପ, ତାଙ୍କ ଅହିଂସାର ଉତ୍ସ, ଓ ସେବାର ପ୍ରେରଣା । ଗାନ୍ଧୀ ବିଶ୍ୱାସ କରୁଥିଲେ, ତାଙ୍କ ଜୀବନର ବ୍ରତ ଥିଲା ଅନ୍ୟକୁ ନିରାମୟ କରିବା । ସେ ଥିଲେ ସମଗ୍ର ଭାରତର ଚିକିତ୍ସକ । ତାଙ୍କ ଜୀବନର ଶେଷ ଦୁଇ ବର୍ଷରେ ଭାରତ ତାଙ୍କୁ ଖୁବ କାମ ଯୋଗାଇଥିଲା ।

ଦେଶରେ ଦୁର୍ଭିକ୍ଷ ଘୋଟିଥାଏ, ଖାଦ୍ୟର ଦୁର୍ଭିକ୍ଷ, ବସ୍ତ୍ରର ଅଭାବ । ଗାନ୍ଧୀ ୧୯୪୬, ଫେବ୍ରୁଆରି ୧୭ ତାରିଖର ହରିଜନରେ ଲେଖିଥିଲେ, 'ଖାଦ୍ୟ ଓ ବସ୍ତ୍ରର ବ୍ୟବସାୟୀମାନେ ଖାଦ୍ୟ, ବସ୍ତ୍ର ମହଜୁଦ୍ କରି ରଖିବା ଉଚିତ ନୁହେଁ । ଏତେବେଳେ ଏ ବେପାରରେ ଅଧିକ ଲାଭକରିବାକୁ ଜନିଷ ମାଡ଼ି ବସିବା ମହାପାପ । ଯେଉଁଠି ପାଣି ଅଛି, ବା ଯେଉଁଠିକୁ ମଡ଼ାଇ ହେବ ସେପରି ପ୍ରତ୍ୟେକ କୃଷିଯୋଗ୍ୟ ଜମିରେ ଖାଦ୍ୟଶସ୍ୟ ଓ ପନିପରିବା ଲଗାଯାଉ ······। ଏ ସମୟରେ ବିବାହାଦି ପ୍ରତ୍ୟେକ ଉତ୍ସବର ଆଡ଼ମ୍ବର ବନ୍ଦ ରଖାଯିବା ଉଚିତ······।

ଗାନ୍ଧୀ ବଙ୍ଗ, ଆସାମ ଓ ମାନ୍ଦ୍ରାଜର ବିଭିନ୍ନ ଅଞ୍ଚଳରେ ବୁଲୁଥାନ୍ତି । ଥରେ ଗୋଟିଏ ସଭାରେ ଛଅ ଲକ୍ଷ ଲୋକ ଏକତ୍ରିତ ହୋଇଥିଲେ । 'ଅଧିକ ଖାଦ୍ୟ ଉପୁଜାଅ' ହୋଇଥାଏ ମହାତ୍ମାଜୀଙ୍କ ଦୁଆ । 'ସୂତା କାଟ' ବୋଲି ସେ ଶ୍ରୋତାମାନଙ୍କୁ ନିବେଦନ କଲେ; ସହରବାସୀଙ୍କୁ କହିଲେ 'ଗାଧୁଆ, ମୁହଁହାତ ଧୋଇବା, ଶୌଚ କରିବା ଆଦି କାର୍ଯ୍ୟରେ ଓ ରୋଷେଇ ଘରେ ଲାଗୁଥିବା ପାଣିରୁ ଟୋପାଏ ବି ପାଣି ନଷ୍ଟ ନ କରି ବାଡ଼ି ଅଗଣାରେ ମଡ଼ାଇ ଦିଅ । ସେଠାରେ ପରିବା ଓ ଶାକସବଜିର କିଆରୀ କର । ଯେଉଁଠାରେ ଜମିର ଅଭାବ ସେଠାରେ ମାଟି କୁଣ୍ଡରେ ଓ ରଦି ଟିଣରେ ବି ପରିବାପତ୍ରର ଗଛ ଲଗାଯାଇ ପାରିବ ।

ଖାଦ୍ୟାଭାବ କଥା ପଡ଼ିଲାରୁ ଭାରତର ଶିଶୁ-ଜନ୍ମର ହାର ଖୁବ୍ ଚଢ଼ାଥିବା ପ୍ରଶ୍ନ ଉଠିଲା । ଗାନ୍ଧୀ ଏ ବିଷୟରେ କହିଲେ, 'ମୁଁ ଏକଥା

କହିଦେବାକୁ ଚାହେଁ ଯେ, ଶଗାଙ୍କ ପରି ଆମ ଲୋକଙ୍କର ସଂଖ୍ୟା ଯେପରି ବଢ଼ିଚାଲିଛି ତାହା ନିଶ୍ଚୟ ବନ୍ଦହେବା ଦରକାର, ଏଥିରେ କୌଣସି ସନ୍ଦେହ ନାହିଁ । କିନ୍ତୁ ଜନ୍ମହାର ଏପରି ବନ୍ଦ କରିବାକୁ ହେବ, ଯେପରି ଜନ୍ମହାର ବନ୍ଦ କରିବାକୁ ଯାଇ ଆମେ ଅଧିକ ବିପତ୍ତିର ସମ୍ମୁଖୀନ ନ ହେବା । ଯେଉଁ ଉପାୟରେ ଜାତିର ମହତ୍ତ୍ୱ ବଢ଼ିବ ସେଇ ଭଳି ଉପାୟ ପ୍ରୟୋଗ କରି ଜନ୍ମହାର କମାଇବାକୁ ହେବ ।' ତାହାର 'ସର୍ବୋତ୍କୃଷ୍ଟ ଉପାୟ ହେଉଛି ଆତ୍ମସଂଯମ ।'

ଆବଶ୍ୟକ ଦ୍ରବ୍ୟମାନଙ୍କର ଅଭାବ ପଡ଼ିବାରୁ, ଲୋକେ ଦୋକାନ ବଜାର ଲୁଟି କରିବାକୁ ଉତ୍ତେଜିତ ହେଲେ; ନାନାବିଧ ହିଂସାକାଣ୍ଡ ଘଟିଲା । ବମ୍ବେରେ ଭୀଷଣ ଦଙ୍ଗା ହେଲା । କଲିକତା, ଦିଲ୍ଲୀ ପ୍ରଭୃତି ନଗରମାନଙ୍କରେ ଜନତା ଘରଦ୍ୱାର ପୋଡ଼ିଲେ, ତାଙ୍କ ସଙ୍ଗେ ମିଶି ଦୁଆ ବୋଲିବାକୁ ବାଟୋଇମାନଙ୍କୁ ବାଧ୍ୟ କଲେ, ଓ ବାଟରେ ଯାଉଥିବା ଇଂରେଜଙ୍କୁ ମୁଣ୍ଡରୁ ଟୋପି କାଢ଼ିବା ସକାଶେ ବଳାତ୍କାର କଲେ । ଏ ସବୁ ଦୁର୍ବୃତ୍ତି ପାଇଁ ଗାନ୍ଧୀ ଗଣ୍ଡଗୋଳକାରୀମାନଙ୍କୁ ତୀବ୍ର ଭର୍ତ୍ସନା କରୁଥାନ୍ତି । ବ୍ରିଟିଶ ସରକାରର ନୌବାହିନୀରେ ଚାକିରି କରୁଥିବା ଭାରତୀୟ ନାବିକମାନେ ବିଦ୍ରୋହ ଆରମ୍ଭ କରି ବସିଲେ ; ବହୁ କଂଗ୍ରେସ ନେତାମାନେ ସେମାନଙ୍କୁ ନିବର୍ତ୍ତାଇବାକୁ ବହୁ ଚେଷ୍ଟା କରିବାରେ ଯାଇ ସେମାନେ ବହୁ କଷ୍ଟରେ ବିଦ୍ରୋହରୁ ନିବର୍ତ୍ତିଲେ ।

ଗାନ୍ଧୀ, ୧୯୪୬ ଫେବୃଆରୀ ୧୦ ତାରିଖରେ ଲେଖିଥିଲେ, 'ଆଶା ହେଉଛି ଯେ, ନିକଟରେ ଆମ ଦେଶର ଶାସନ ଆମର ନିଜ ହାତକୁ ଆସିବ । ଏତେବେଳେ ବିଶୃଙ୍ଖଳା ଓ ଗୁଣ୍ଡାମି', ଯାହା କି ବଢ଼ିବାରେ ଲାଗିଥାଏ, 'ଏକାବେଳକେ ଲୋପ ହେବା ଉଚିତ; ତା' ପରିବର୍ତ୍ତେ ଦେଶରେ ଶାନ୍ତି, କଠୋର ଶୃଙ୍ଖଳା, ସହଯୋଗ, ଓ ସଦ୍‌ଭାବ ବିକଶିତ ହେବା ଦରକାର ।'......ତା'ପରେ ସେ ପୁଣି କହିଥିଲେ,'ମୁଁ ଆଶା କରି ରହିଛି ଯେ, ଯେତେବେଳେ ଦେଶକୁ ଚଳାଇବାର ପ୍ରକୃତ ଦାୟିତ୍ୱ ଦେଶବାସୀଙ୍କ ହାତକୁ ଆସିବ, ଏବଂ ବୈଦେଶିକ ସେନାର କର୍ତ୍ତୃତ୍ୱ ଆମ ମୁଣ୍ଡରୁ ଯିବ, ସେତେବେଳେ ଆମ ଦେଶର ଲୋକେ ନିଜର ସ୍ୱାଭାବିକ ଅବସ୍ଥାକୁ ଆସିବେ, ମର୍ଯ୍ୟାଦାବନ୍ତ ହେବେ ଏବଂ ନିଜର ଆବେଗ ଓ ଉତ୍ତେଜନାକୁ ଦମନ କରି ସଂଯତ ହେବାକୁ ସମର୍ଥ ହେବେ.....।'

ମାର୍ଚ୍ଚମାସରେ ସେ ଲେଖିଥିଲେ, 'ମୁଁ ନିଃସନ୍ଦେହ ଭାବେ ଏହା କହି ରଖିବାକୁ ଚାହେଁ ଯେ, ମୁଁ ଭାରତୀୟଙ୍କୁ ଯେତିକ ଆପଣାର ମନେ କରେ, ଇଂରେଜଙ୍କୁ ମଧ୍ୟ ସେତିକ ଆପଣାର ମନେ କରେ ।'

ପ୍ରଧାନ ମନ୍ତ୍ରୀ ଆଟ୍‌ଲି ଘୋଷଣା କଲେ ଯେ, ଭାରତକୁ କେଉଁ କେଉଁ ସର୍ତ୍ତରେ ସ୍ୱାଧୀନତା ଦିଆଯିବ ତାହା ନିର୍ଣ୍ଣୟ କରିବାକୁ ବ୍ରିଟିଶ ମନ୍ତ୍ରୀ-ମଣ୍ଡଳର ଗୋଟିଏ ପ୍ରତିନିଧି ଦଳ ନିକଟରେ ଭାରତକୁ ଯିବେ ; ଏହି ପ୍ରତିନିଧି ଦଳରେ ରହିବେ ଭାରତସଚିବ ଲର୍ଡ୍ ପେଥିକ୍ ଲରେନ୍‌ସ, ବୋର୍ଡ଼ ଅବ୍ ଟ୍ରେଡ଼ର ପ୍ରେସିଡେଣ୍ଟ୍ ସାର୍ ଷ୍ଟାଫୋର୍ଡ଼୍ କ୍ରିପସ୍, ଏବଂ ନୌବିଭାଗର ମୁଖ୍ୟ ଆଲବର୍ଟ୍ ଭି. ଆଲେକ୍‌ଜାଣ୍ଡାର୍ । ଗାନ୍ଧୀଜୀ ଏ ଘୋଷଣା ଉପରେ ବିବୃତି ଦେଇ କହିଲେ, 'ବ୍ରିଟିଶ୍ ସରକାର ଯାହା ଘୋଷଣା କରୁଛନ୍ତି ସେଥିରେ ଅଭିସନ୍ଧି ଆରୋପ କରିବା, ଏବଂ ଭବିଷ୍ୟତରେ କ'ଣ ଘଟିବ ମନେ ମନେ ଭାବି ନେଇ ଆରମ୍ଭରୁ କଳ କରିବାକୁ ବସିବାଦ୍ୱାରା ଆମ ନିଜ ଦୂରଦୃଷ୍ଟିର ଅଭାବ ହିଁ ପ୍ରମାଣିତ କରୁଥାଉଁ ବୋଲି ମୋର ଦୃଢ଼ ମତ । ବ୍ରିଟିଶ ସରକାରଙ୍କ ପ୍ରତିନିଧି ଦଳ କ'ଣ ସମଗ୍ର ଗୋଟାଏ ଜାତିକୁ ପ୍ରତାରଣା କରିବା ପାଇଁ ଆସୁଛନ୍ତି ? ଏଭଳି ଆଶଙ୍କା କରିବା ଭାରତର ପୁରୁଷଙ୍କ ପକ୍ଷରେ ଉଚିତ ନୁହେଁ କି ନାରୀଙ୍କ ପକ୍ଷରେ ଉଚିତ ନୁହେଁ ।'

ବ୍ରିଟିଶ୍‌ମନ୍ତ୍ରୀମଣ୍ଡଳର ପ୍ରତିନିଧିଦଳ ମାର୍ଚ୍ଚ ୨୩ ତାରିଖରେ ଇଂଲଣ୍ଡରୁ ଆସି ନୂଆ ଦିଲ୍ଲୀରେ ପହଞ୍ଚିଲେ ଏବଂ ଆସି ପହଞ୍ଚିବାମାତ୍ରେ ଭାରତୀୟ ନେତାମାନଙ୍କ ସଙ୍ଗେ ସାକ୍ଷାତ କରିବାକୁ ଆରମ୍ଭ କଲେ । ବ୍ରିଟିଶ୍ ମନ୍ତ୍ରୀ-ମାନଙ୍କସଙ୍ଗେ ସାକ୍ଷାତ କରିବାକୁ ଗାନ୍ଧୀ ଦିଲ୍ଲୀ ଆସିଲେ । ପେଥିକ୍ ଲରେନ୍‌ସ୍ ଲେଖିଥିଲେ, 'ମୁଁ ଅନୁରୋଧ କରିବାରେ, ଦିଲ୍ଲୀରେ ପରବର୍ତ୍ତୀ ମାସମାନଙ୍କ କଷ୍ଟଦାୟକ ଜଳବାୟୁ ସତ୍ତ୍ୱେ ସେ ଦିଲ୍ଲୀରେ ରହି, ଆମ୍ଭମାନଙ୍କ ଆଲୋ-ଚନାର ଶେଷ ପର୍ଯ୍ୟନ୍ତ ଆମ ସଙ୍ଗେ ଓ କଂଗ୍ରେସ କାର୍ଯ୍ୟକାରୀ କମିଟି ସଙ୍ଗେ ପୂର୍ଣ୍ଣ ସହଯୋଗ କରିଥିଲେ ।' ଗାନ୍ଧୀ ରହିଲେ ହରିଜନ ବସ୍ତିରେ । କ୍ରିପ୍‌ସ୍, ପେଥିକ୍ ଲରେନ୍‌ସ୍, ଆଲେକ୍‌ଜାଣ୍ଡାର, ବହୁ ଭାରତୀୟ ନେତା ନିୟମିତ ଭାବେ ସେଠାକୁ ଯାଇ ଗାନ୍ଧୀଙ୍କ ସହିତ ଦେଖା କରୁଥାନ୍ତି । ବେଳେବେଳେ ଗାନ୍ଧୀ ମଧ୍ୟ, ବ୍ରିଟିଶ୍ ପ୍ରତିନିଧି ଦଳ ବାସ କରୁଥିବା ୨ନମ୍ବର ୱିଲିଂଡନ୍ କ୍ରିସେଣ୍ଟ୍ କୋଠିକୁ ଯାଉଥିଲେ । ଗାନ୍ଧୀଙ୍କ ପ୍ରତ୍ୟେକ ଗତିବିଧି ଖବର କାଗଜରେ ଚାରିଆଡ଼େ ପ୍ରଚାରିତ ହେଉଥାଏ । ଥରେ ଏହି ପ୍ରଚାରକୁ

ଏଡ଼ବା ସକାଶ ଆଗରୁ ମସୁଧା କରି ସେ ପେଥିକ୍ ଲରେନ୍ସଙ୍କୁ ତାଙ୍କ ସାୟଂଭ୍ରମଣ ବେଳେ ଦୈବାତ୍ ଦେଖା ହେଲା ଭଳି ସାକ୍ଷାତ୍ କରିଥିଲେ ।

ସ୍ପଷ୍ଟ ଫଳ କିଛି ନ ହୋଇ କେତେ ସପ୍ତାହ ଯିବା ଆସିବା, କଥାବାର୍ତ୍ତା ଚାଲିବା ପରେ ବ୍ରିଟିଶ୍ ପ୍ରତିନିଧିମାନେ କଂଗ୍ରେସର ଚାରିଜଣ ଓ ମୁସଲିମ୍ ଲିଗ୍‌ର ଚାରିଜଣ ନେତାଙ୍କୁ ସିମଲାଠାରେ ତାଙ୍କ ସଙ୍ଗେ ସମ୍ମିଳିତ ହେବାକୁ ନିମନ୍ତ୍ରଣ କଲେ । ଗାନ୍ଧୀ ଏ ନିମନ୍ତ୍ରିତ ନେତାଙ୍କ ଭିତରେ ନ ଥିଲେ । ତଥାପି ପରାମର୍ଶ ପ୍ରୟୋଜନ ହେଲେ ଦେବା ସକାଶ ସେ ମଧ୍ୟ ଯାଇ ଭାରତର ଗ୍ରୀଷ୍ମକାଳୀନ ରାଜଧାନୀରେ ଉପସ୍ଥିତ ହେଲେ । ଏଠାରେ, ପ୍ରାରମ୍ଭିକ ଆଲୋଚନା ହେବା ପରେ, ନେହେରୁ ଓ ଜିନ୍ନା ଏକାନ୍ତରେ ବସି ଉପସ୍ଥିତ ସମସ୍ୟା ଉପରେ ଗୁଡ଼ାଏ ଘଣ୍ଟା ତର୍କ କଲେ; କିନ୍ତୁ କୌଣସି ରାଜିନାମା ହୋଇ ପାରିଲା ନାହିଁ । ଦୁଇଟିଯାକ ଭାରତୀୟ ଦଳରୁ କେହି ସମାଧାନର ପନ୍ଥା ବାହାର କରି ସେଥିରେ ଉଭୟ ପକ୍ଷର ରାଜିନାମା କରାଇବାର ଦାୟିତ୍ୱ ନେବାକୁ ମଙ୍ଗିଲେ ନାହିଁ ।

ପରିଶେଷରେ ଗାନ୍ଧୀ ବ୍ରିଟିଶ୍ ମନ୍ତ୍ରୀମଣ୍ଡଳର ପ୍ରତିନିଧି ଦଳଙ୍କୁ ପରାମର୍ଶ ଦେଲେ, ସେମାନେ ନିଜ ଆଡ଼ୁ ଗୋଟିଏ ସମାଧାନ ପ୍ରସ୍ତାବ ଭାରତୀୟ ଦଳମାନଙ୍କ ଆଗରେ ଉପସ୍ଥାପିତ କରନ୍ତୁ ।

ବ୍ରିଟିଶ୍ କ୍ୟାବିନେଟ୍ ମିଶନ୍‌ର ଯୋଜନା ୧୯୪୬, ମେ ୧୬ ତାରିଖରେ ପ୍ରକାଶ ପାଇଲା । ଭାରତରେ ବ୍ରିଟିଶ୍ ଆଧିପତ୍ୟ ସାଙ୍ଗ କରିବା ସକାଶ ଏହାହିଁ ଥିଲା ବ୍ରିଟିଶ ସରକାରଙ୍କ ଚରମ ପ୍ରସ୍ତାବ । ଗାନ୍ଧୀ ଏହିପରି ଭାବରେ ସ୍ୱା' ଉପରେ ତାଙ୍କର ମତ, ପ୍ରାର୍ଥନା ସଭାରେ ଘୋଷଣା କଲେ, 'ବ୍ରିଟିଶ୍ ପ୍ରତିନିଧି ଦଳଙ୍କ ଘୋଷଣା ତୁମ ମନକୁ ପାଉ ବା ନ ପାଉ, ଏହା ଅବଶ୍ୟ ସ୍ୱୀକାର କରିବାକୁ ହେବ ଯେ, ଏ ଘୋଷଣା ଭାରତର ଇତିହାସରେ ଗୋଟିଏ ଅତି ଗୁରୁତ୍ୱପୂର୍ଣ୍ଣ ଘଟଣା । ତେଣୁ ସାବଧାନତାର ସହିତ ଏହାର ବିଚାର କରିବା ପ୍ରୟୋଜନ ।'

ଗାନ୍ଧୀ ନିଜେ ଏହି ଘୋଷଣା ଉପରେ ଚାରିଦିନ କାଳ ଚିନ୍ତା ଓ ଆଲୋଡ଼ନ କଲେ । ତା'ପରେ ସେ ନିଜର ମତ ଦେଇ କହିଲେ, 'ତନ୍ନ ତନ୍ନ ପରୀକ୍ଷା କଲା ପରେ···ମୋର ହୃଦ୍‌ବୋଧ ହୋଇଛି ଯେ ବର୍ତ୍ତମାନ ପରିସ୍ଥିତିରେ ବ୍ରିଟିଶ ସରକାର ଏହାଠାରୁ ଆଉ କୌଣସି ଭଲ ପ୍ରସ୍ତାବ ଦେଇ ପାରି ନ ଥାନ୍ତେ ।'

ଭାରତୀୟ ଲୋକଙ୍କ ମନକୁ ସୁହାଉଥିବା ଗୋଟିଏ ସାଧାରଣ ଅଭିଯୋଗ ଖଣ୍ଡନ କରି ୧୯୪୭, ମେ ୨୭ ତାରିଖ ହରିଜନରେ ସେ ଲେଖିଲେ, 'କଂଗ୍ରେସ ଓ ମୁସଲିମ୍ ଲିଗ୍ କୌଣସି ସମାଧାନ କଲେ ନାହିଁ, କରି ପାରିଲେ ନାହିଁ, ଏପରି ସ୍ଥଳେ ଯଦି ଆମେ ଧରି ନେଉଁ ଯେ, କଂଗ୍ରେସ ଓ ମୁସଲିମ୍ ଲିଗର ମତାନ୍ତର ବ୍ରିଟିଶ ସରକାରଙ୍କ ଯୋଗୁଁ ହୋଇଛି ତେବେ ଆମର ଗୋଟାଏ ବଡ଼ ଭୁଲ ହେବ ।'

ମହାତ୍ମାଜୀ ସ୍ପଷ୍ଟ ଭାବେ କହିଲେ, 'ବ୍ରିଟିଶ ସରକାରଙ୍କର ଏକାନ୍ତ ଉଦ୍ଦେଶ୍ୟ, ଯଥାଶୀଘ୍ର ଭାରତରୁ ବ୍ରିଟିଶ ପ୍ରଭୁତ୍ୱ ଦୂର କରିବା ।'

କ୍ୟାବିନେଟ୍ ମିସନ୍‌ର ଘୋଷଣାରେ ପରିଷ୍କାର କୁହାଯାଇଥିଲା, 'ମୁସଲିମ୍ ଲିଗ୍‌ର ସମର୍ଥକଙ୍କ ବ୍ୟତୀତ, ପ୍ରାୟ ସମସ୍ତଙ୍କର ଏକାନ୍ତ ଇଚ୍ଛା, ଭାରତ ବିଖଣ୍ଡିତ ନ ହୋଇ ଏକ ହୋଇ ରହୁ । ଏକଥା ଆମ୍ଭମାନଙ୍କ ଆଗେ ଉପସ୍ଥାପିତ ପ୍ରଭୂତ ସାକ୍ଷ୍ୟ ପ୍ରମାଣରୁ ବେଶ୍ ପ୍ରତୀତ ହେଉଛି' ।

କିନ୍ତୁ ଏ ସବୁ ସତ୍ତ୍ୱେ, ଭାରତ ଏକ ହୋଇ ରହିଲେ ହିନ୍ଦୁ ସଂଖ୍ୟାଗରିଷ୍ଠ ଶାସନାଧୀନରେ କାଳ କାଳକୁ ରହି ସେମାନେ ପେଷି ହୋଇଯିବେ ବୋଲି ମୁସଲମମାନଙ୍କର ଯେଉଁ ଉତ୍କଣ୍ଠା ଓ ଆନ୍ତରିକ ଉଦ୍‌ବେଗ ରହିଛି ତାହା ଆମ୍ଭେମାନେ ଖୁବ୍ ଭଲ ଭାବେ ହୃଦୟଙ୍ଗମ କରିଛୁ । ଏ ଉଦ୍‌ବେଗ ଏତେ ତୀବ୍ର ଓ ମୁସଲିମ୍‌ମାନଙ୍କ ମଧ୍ୟରେ ଏତେ ବ୍ୟାପିଛି ଯେ, ଏହାର ପ୍ରତିକାର ବ୍ୟବସ୍ଥା ଖାଲି କାଗଜ ପତ୍ରରେ କରିବାକୁ ଗଲେ ତାହା ଦୂର ହୋଇ ପାରିବ ନାହିଁ । ଏ ଭଳି ବ୍ୟବସ୍ଥା କାର୍ଯ୍ୟତଃ କରିବାକୁ ହେବ, ଯଦ୍ଦ୍ୱାରା ମୁସ୍‌ଲିମ୍‌ମାନେ ତାଙ୍କ ସଂସ୍କୃତି, ଧର୍ମ, ଆର୍ଥନୀତିକ ଓ ଅନ୍ୟାନ୍ୟ ସ୍ୱାର୍ଥର ପରିପୂରକ ପ୍ରତ୍ୟେକ ବିଷୟରେ କର୍ତ୍ତୃତ୍ୱ ନିଶ୍ଚିତ ଭାବେ କରି ପାରିବେ ।'

ତେଣୁ କ୍ୟାବିନେଟ୍ ମିସନ୍ 'ଭାରତକୁ ଦୁଇଭାଗ କରିବାର ସମ୍ଭାବନା ବିଷୟରେ ପୁଂଖାନୁପୁଂଖ କରି ନିରପେକ୍ଷ ଭାବେ, ପରୀକ୍ଷା କରିଥିଲେ ।

ଏ ପରୀକ୍ଷାର ଫଳ କ'ଣ ହେଲା ?

ନିଜ ବକ୍ତୃତାରେ ସଂଯୋଜିତ ଜନସଂଖ୍ୟାଙ୍କର ତଥ୍ୟ ଉପରେ ନିର୍ଭର କରି କ୍ୟାବିନେଟ୍ ମିସନ୍ ପ୍ରମାଣ କରିଦେଲେ ଯେ, ପ୍ରସ୍ତାବିତ

ପାକସ୍ଥାନର ଉତ୍ତର-ପଶ୍ଚିମ ଖଣ୍ଡରେ ଅଣମୁସଲମାନଙ୍କ ଅନୁପାତ ହେବ ଶତକଡ଼ା ୩୬·୯୩ ଭାଗ ଓ ଉତ୍ତର-ପୂର୍ବ ଖଣ୍ଡରେ ଅଣମୁସଲମାନଙ୍କ ଅନୁପାତ ହେବ ୪୮.୩୧ ଭାଗ, ପାକସ୍ଥାନ ବାହାରେ ଦୁଇ କୋଟି ମୁସଲମାନ ଭାରତର ଅବଶିଷ୍ଟାଂଶରେ ସଂଖ୍ୟାଲଘୁ ସଂପ୍ରଦାୟ ହୋଇ ରହିଯିବେ । କ୍ୟାବିନେଟ୍ ମିସନ୍ ଏହିପରି ବିଶ୍ଳେଷଣ କରି ମତ ଦେଲେ, 'ମୁସ୍‌ଲିମ୍ ଲିଗ୍‌ର ଦାବି ଅନୁସାରେ ପାକସ୍ଥାନକୁ ସ୍ୱତନ୍ତ୍ର ଓ ସାର୍ବଭୌମ ରାଷ୍ଟ୍ରରୂପେ ଗଢ଼ିବାଦ୍ୱାରା ବି ସଂଖ୍ୟାଲଘୁ ସଂପ୍ରଦାୟମାନଙ୍କ ସମାସ୍ୟାର ସମାଧାନ ହୋଇ ପାରିବ ନାହିଁ ।'

ଅଣମୁସ୍‌ଲିମ୍ ଅଞ୍ଚଳ ବାଦ୍ ଦେଇ କ୍ଷୁଦ୍ରତର ପାକସ୍ଥାନ ରାଷ୍ଟ୍ରଟିଏ ଗଢ଼ିଲେ ସୁବିଧା ହେବ କି ନାହିଁ, ତା'ପରେ କ୍ୟାବିନେଟ୍ ମିସନ୍ ବିଚାର କଲେ । କିନ୍ତୁ ଏ ସମ୍ପର୍କରେ ସେ ଶେଷରେ ମତ ଦେଲେ ଯେ, 'ଏଭଳି ପାକସ୍ଥାନ ଆଦୌ କାର୍ଯ୍ୟକାରୀ ହୋଇ ପାରିବ ନାହିଁ ବୋଲି ମୁସ୍‌ଲିମ୍ ଲିଗ୍‌ର ମତ ।' ଏହା କରିବା ସକାଶେ ପଞ୍ଜାବ, ବଙ୍ଗ ଓ ଆସାମ ପ୍ରଦେଶ-ମାନଙ୍କୁ ଦୁଇ ରାଷ୍ଟ୍ର ମଧ୍ୟରେ ବାଣ୍ଟି ଦେବାକୁ ପଡ଼ିଥାନ୍ତା । କିନ୍ତୁ ଜିନ୍ନା ଦାବି କରୁଥିଲେ, ଏ ପ୍ରଦେଶ ତିନୋଟି ଯେପରି ଅଛି ସେହିପରି ପାକସ୍ଥାନରେ ମିଶୁ । ବ୍ରିଟିଶ୍ ମନ୍ତ୍ରୀମାନେ ସିଦ୍ଧାନ୍ତ କଲେ, 'ଆମ୍ଭମାନଙ୍କର ନିଜର ବି ହୃଦ୍‌ବୋଧ ହେଉଛି ଯେ, ପଞ୍ଜାବ ଓ ବଙ୍ଗକୁ ଭାଗ ଭାଗ କରି ସମାଧାନ କରିବାକୁ ବସିଲେ ଏହି ପ୍ରଦେଶମାନଙ୍କର ବହୁସଂଖ୍ୟକ ଲୋକଙ୍କ ମତ ବିରୁଦ୍ଧରେ ଯିବାକୁ ହେବ । ପଞ୍ଜାବ ଓ ବଙ୍ଗ ଉଭୟ ପ୍ରଦେଶର ଗୋଟିଏ ଗୋଟିଏ ସ୍ୱତନ୍ତ୍ର ଓ ନିଜସ୍ୱ ଭାଷା ଅଛି ; ପ୍ରତ୍ୟେକର ନିଜସ୍ୱ ଇତିହାସ ଓ ପରଂପରା ଅଛି । ପୁଣି ପଞ୍ଜାବକୁ ଦୁଇଭାଗ କଲେ ଶିଖଜାତିକୁ ଦୁଇଭାଗ କରିଦେବା ଅବଶ୍ୟଂଭାବୀ ; ପ୍ରତ୍ୟେକ ଭାଗରେ ବହୁସଂଖ୍ୟକ ଶିଖ ରହିଯିବେ ।'

କ୍ୟାବିନେଟ୍ ମିଶନ୍ ଆହୁରି ନିଷ୍ପତ୍ତି କଲେ ଯେ ଭାରତକୁ ଦ୍ୱିଖଣ୍ଡ କରିଦେଲେ ସମଗ୍ର ଉପମହାଦେଶର ପ୍ରତିରକ୍ଷା ବ୍ୟବସ୍ଥା ଦୁର୍ବଳ ହୋଇ ପଡ଼ିବ ଏବଂ ଏହାର ପରିବହନ ଓ ଯାତାୟାତ ବ୍ୟବସ୍ଥା ଭୀଷଣଭାବେ ବିପର୍ଯ୍ୟସ୍ତ ହୋଇ ପଡ଼ିବ । 'ପରିଶେଷରେ, ଭୌଗୋଳିକ ପ୍ରତିବନ୍ଧକ ବି ଅଛି । ପ୍ରସ୍ତାବିତ ପାକସ୍ଥାନର ଦୁଇ ଖଣ୍ଡ ମଝିରେ ପ୍ରାୟ ସାତଶହ ମାଇଲ୍ ବ୍ୟାବଧାନ ରହିଯିବ । ଯୁଦ୍ଧ ତଥା ଶାନ୍ତି ସମୟରେ, ପାକସ୍ଥାନର ଏଇ ଦୁଇ

ଖଣ୍ଡ ଭିତରେ ସଂଯୋଗ ରକ୍ଷାକରିବା ସକାଶ ହିନ୍ଦୁସ୍ଥାନର ସଦ୍‌ଭାବ ଉପରେ ପାକିସ୍ଥାନକୁ ନିର୍ଭର କରିବାକୁ ପଡ଼ିବ ।'

କ୍ୟାବିନେଟ୍ ମିଶନ୍ ଏହିପରି ଯୁକ୍ତି ଦେଖାଇ ଘୋଷଣା କରିଦେଲେ, 'ଏହିସବୁ କାରଣରୁ, ବର୍ତ୍ତମାନ ବ୍ରିଟିଶ୍ ସରକାର ହାତରେ ଯେଉଁ ଅଧିକାର ଅଛି, ତାକୁ ଦୁଇଟି ସାର୍ବଭୌମ ଓ ସଂପୂର୍ଣ୍ଣ ସ୍ୱତନ୍ତ୍ର ରାଷ୍ଟ୍ର ମଧ୍ୟରେ ବାଣ୍ଟି ଦେବା ସକାଶ ଆମେ ବ୍ରିଟିଶ୍ ସରକାରଙ୍କୁ ପରାମର୍ଶ ଦେବା ପାଇଁ ଅକ୍ଷମ ହେଉଛୁଁ ।'

ଅପରନ୍ତୁ, ବ୍ରିଟିଶ୍ ମନ୍ତ୍ରୀତ୍ରୟ ଗୋଟିଏ ଏକୀଭୂତ ଭାରତୀୟ ରାଷ୍ଟ୍ରର ପ୍ରସ୍ତାବ ଦେଲେ । ଏଥିରେ ବ୍ରିଟିଶ୍ ଶାସନାଧୀନ ଅଞ୍ଚଳ ଓ ଦେଶୀୟ ରାଜ୍ୟମାନ ଏକାଠି ରହିବେ । କେନ୍ଦ୍ରରେ ରାଷ୍ଟ୍ରସଂଘ ଢାଞ୍ଚାର ଶାସନତନ୍ତ୍ର ଚାଲୁ ହେବ । ଯାହାର ନିୟନ୍ତ୍ରଣରେ ବୈଦେଶିକ ବ୍ୟାପାର, ଦେଶରକ୍ଷା ଓ ଯାତାୟାତ ବିଭାଗମାନ ରହିବ । ରାଷ୍ଟ୍ରର କେନ୍ଦ୍ର ବ୍ୟବସ୍ଥା ସଭାରେ ଯେ କୌଣସି ଗୁରୁତର ସାଂପ୍ରଦାୟିକ ବା ଧର୍ମସଂବନ୍ଧୀୟ ବିଷୟରେ ସିଦ୍ଧାନ୍ତ କରିବାକୁ ହେଲେ ଖାଲି ସଂଖ୍ୟାଧିକ ଭୋଟରେ ତାହା ହୋଇ ପାରିବ ନାହିଁ ; ଏହି ସଂଖ୍ୟାଧିକ ସଦସ୍ୟଙ୍କ ଭିତରେ ମୋଟ ହିନ୍ଦୁ ସଦସ୍ୟଙ୍କ ସଂଖ୍ୟାଧିକ୍ୟ ଓ ମୁସଲମାନ୍ ସଦସ୍ୟଙ୍କ ସଂଖ୍ୟାଧିକ୍ୟ ରହିବା ପ୍ରୟୋଜନ ହେବ ।

ସଂପ୍ରତି ନିର୍ବାଚିତ ହୋଇଥିବା ପ୍ରାଦେଶିକ ବ୍ୟବସ୍ଥା ସଭାମାନେ ଜାତୀୟ ସଂବିଧାନ ପ୍ରଣୟନକାରୀ ମହାସଭାକୁ ସଦସ୍ୟ ନିର୍ବାଚନ କରିବେ ।

କ୍ୟାବିନେଟ୍ ମିଶନ୍ ଆହୁରି ମଧ୍ୟ ଘୋଷଣା କଲେ ଯେ, ଏ ସବୁ ହେବା ମଧ୍ୟରେ, ଲର୍ଡ଼ ଓ୍ୱାଭେଲ୍ କେନ୍ଦ୍ରରେ ଗୋଟିଏ ଅସ୍ଥାୟୀ ବା ମଧ୍ୟବର୍ତ୍ତୀକାଳୀନ ସରକାର ଗଠନ କରିବାକୁ ଅଗ୍ରସର ହେବେ ।

ସେଇ ଦିନ, ୧୯୪୬ ମେ, ୧୬ ତାରିଖରେ କ୍ରିପ୍‌ସ୍, ପେଥିକ୍ ଲରେନ୍‌ସ ଓ ଓ୍ୱାଭେଲ୍, ବେତାର ଭାଷଣ ଦେଇ ତାଙ୍କ ଯୋଜନାର ଦଫା-ଗୁଡ଼ିକ ବୁଝାଇ ଏହା ଭାରତ ପକ୍ଷରେ ଏକାନ୍ତ ସ୍ପୃହଣୀୟ ବୋଲି ବୁଝାଇ ଦେଲେ । ବର୍ତ୍ତମାନ ଦେଶତମାମ ଯେଉଁ ଦୁର୍ଭିକ୍ଷ ବ୍ୟାପିଛି ତତ୍ପ୍ରତି ଦୃଷ୍ଟି ଆକର୍ଷଣ କରି କ୍ରିପ୍‌ସ୍ ବୁଝାଇ ଦେଲେ ଯେ, ଏତେବେଳେ ଶାସନ ସଂସ୍ଥା ଯେପରି ଭୁସୁଡ଼ି ନ ପଡ଼ିବ ସେଥିପାଇଁ ସମସ୍ତେ ସାବଧାନ ହେବା ଉଚିତ । ସେ ଅନୁନୟ କରି କହିଲେ, 'ଆମେ ଯାହା କରୁଛୁ ତହିଁରେ କୌଣସି ଅଭିସନ୍ଧି

ଅଛୁ ବୋଲି ମୁହୂର୍ତ୍ତକ ପାଇଁ ମଧ୍ୟ କାହାର ମନରେ ସନ୍ଦେହ ନ ରହୁ ।'
ପେଥିକ୍ ଲରେନସ୍, ଭାରତବାସୀଙ୍କୁ ମହାନ୍ ଜାତି ବୋଲି ସଂବୋଧନ କରି ତାଙ୍କ ବକ୍ତୃତା ଆରମ୍ଭ କଲେ । ଏହି ପଦଟିରେ ଗମ୍ଭୀର ରାଜନୀତିକ ତାତ୍ପର୍ଯ୍ୟ ଥିଲା ; କାରଣ, ମୁସ୍‌ଲିମ୍ ନେତାମାନେ ତାଙ୍କ ଭାଷଣ ବା ବକ୍ତୃତି ଆଦିରେ ଭାରତବାସୀଙ୍କୁ କେତେବେଳେ ଏକ ଜାତି ବୋଲି ନ କହି 'ଭାରତର ଜାତିମାନେ' 'ବୋଲି କହୁଥିଲେ । କ୍ୟାବିନେଟ୍ ମିଶନ୍‌ର ଯୋଜନା ଗ୍ରହଣ କରି ନେବାକୁ ସେ ମୁସଲମାନଙ୍କୁ ପ୍ରବର୍ତ୍ତାଇଲେ । ସେ ବୁଝାଇ ଦେଲେ ଯେ, ଏହାଦ୍ଵାରା ସେମାନେ ପାକିସ୍ଥାନର ସମସ୍ତ ସୁଫଳ ଭୋଗ କରିପାରିବେ, କିନ୍ତୁ ସ୍ଵତନ୍ତ୍ର ପାକିସ୍ଥାନ ହୋଇଥିଲେ ଯେଉଁ ଅସୁବିଧା ହୋଇଥାନ୍ତା ସେଥିରୁ ରକ୍ଷା ମିଳିବ ।

ଭାରତର ଐକ୍ୟ ରକ୍ଷା କରିବାର ଆବଶ୍ୟକତା ବିଷୟରେ କହି ଓ୍ୱାଭେଲ୍ ଶେଷରେ ଆମେରିକାୟ କବି ଲଙ୍ଗ୍‌ଫେଲୋଙ୍କର ଗୋଟିଏ କବିତାରୁ ପଦେ ଆବୃତ୍ତି କରିଥିଲେ .

Thou too sail on, O ship of State
Sail on, O Union, strong and great,
Humanity with all its fears,
With all the hopes of future years
Is hanging breathless on thy Fate.

ଏହାର ଭାବାର୍ଥ ରେ ରାଷ୍ଟ୍ରତରୀ ! ତୁ ମଧ୍ୟ କାଳସାଗରରେ ପାଲ ଟାଣି ଆଗେଇ ଯା ! ରେ ରାଷ୍ଟ୍ରପୁଂଜର ମିଳିତ ସଂସ୍ଥା, ସମସ୍ତଙ୍କ ବଳରେ ତୁ ବଳୀୟାନ, ତୁ ମହାନ, ନିର୍ଭୟରେ ଆଗେଇ ଯା । ତୋ'ର ଭାଗ୍ୟରେ ନିର୍ଭର କରି ସମଗ୍ର ମାନବ ସମାଜ ତୋର ବର୍ତ୍ତମାନ ପରିସ୍ଥିତିରେ ବହୁ ଆଶଂକା କରି ଓ ତୋ'ର ଭବିଷ୍ୟତ ଉପରେ ବହୁ ଆଶା ରଖି ଉତ୍କଣ୍ଠିତ ହୋଇ ରୁହିଁ ରହିଛନ୍ତି ।

ମେ ମାସ ୨୧ ତାରିଖରେ ଜିନ୍ନା କ୍ୟାବିନେଟ୍ ମିଶନ୍ ଯୋଜନାକୁ ସମାଲୋଚନା କଲେ । ସେ ଜିଦ୍ ନ ଛାଡ଼ି କହିଲେ ଯେ, ଏକମାତ୍ର ସ୍ଵତନ୍ତ୍ର ପାକିସ୍ଥାନ ହିଁ ହିନ୍ଦୁ-ମୁସଲମାନ ସମସ୍ୟାର ଏକମାତ୍ର ସମାଧାନ । ପେଥିକ୍ ଲରେନ୍ସ୍, କ୍ରିପ୍ସ ଓ ଆଲେକଜାଣ୍ଡାର୍ ସ୍ଵତନ୍ତ୍ର ପାକିସ୍ଥାନ ବିରୁଦ୍ଧରେ ଗୁଡ଼ାଏ ବାଜେ ଓ ତାଙ୍କଦ୍ଵାରା ଖଣ୍ଡିତ ଯୁକ୍ତିକୁ ଧରି ବସିଥିବାରୁ ସେ

ଦୁଃଖିତ ହୋଇଥିଲେ । ସେ କ୍ୟାବିନେଟ୍ ମିଶନ୍ ବିରୁଦ୍ଧରେ ଅଭିଯୋଗ କରି କହିଲେ, '…ମୋର ମନେ ହୁଏ, କଂଗ୍ରେସର ଦାବି ପୂରଣ କରି ତାଙ୍କୁ ଶାନ୍ତ କରିବା ସକାଶ ଏମାନେ ଏ ଯୋଜନା ବାଢ଼ିଛନ୍ତି ।'

ଜିନ୍ନା କହିଲେ, କେନ୍ଦ୍ରରେ କେନ୍ଦ୍ରବ୍ୟବସ୍ଥା ସଭା ନ ରଖି କେବଳ କାର୍ଯ୍ୟନିର୍ବାହକ ଶାସକ-ସଂସ୍ଥା ଯଦି ରଖିବାର ବ୍ୟବସ୍ଥା ହୁଅନ୍ତା ଓ ଏଥିରେ ସମାନ ସଂଖ୍ୟାରେ ହିନ୍ଦୁ ଓ ମୁସଲମାନ ଶାସକ ରହନ୍ତେ ତେବେ କ୍ୟାବିନେଟ୍ ମିଶନ୍ ଯୋଜନାଠାରୁ ଏହା ତାଙ୍କ ପକ୍ଷରେ ଅଧିକ ଗ୍ରହଣୀୟ ହୁଅନ୍ତା । ଯଦି କେନ୍ଦ୍ରରେ ଗୋଟିଏ ବ୍ୟବସ୍ଥାସଭା ରହିବା ନିଶ୍ଚିତ ତେବେ ସେଥିରେ ମଧ୍ୟ ହିନ୍ଦୁ ଓ ମୁସଲମାନ ସଦସ୍ୟଙ୍କ ସଂଖ୍ୟା ସମାନ ସମାନ ରଖାଯାଉ ବୋଲି ସେ ମତ ଦେଲେ । ତୃତୀୟରେ ସେ କହିଥିଲେ ଯେ, କୌଣସି ବିଷୟରେ ବିବାଦ ହେଲେ ତାହାର ସମାଧାନ କରିବାକୁ ବ୍ୟବସ୍ଥାସଭା ଓ କାର୍ଯ୍ୟକାରୀ ଶାସନସଂସ୍ଥା ଉଭୟର ତିନି-ଚତୁର୍ଥାଂଶ ଭୋଟ ପ୍ରୟୋଜନ ବୋଲି ଉଲ୍ଲେଖ ରହିବା-ଦରକାର । ଜିନ୍ନା କ୍ୟାବିନେଟ୍ ମିଶନ୍ ଉପରେ ଦୋଷ ଦେଇ କହିଲେ ଯେ, ତାଙ୍କର ଏସବୁ ପ୍ରସ୍ତାବ କ୍ୟାବିନେଟ୍ ମିଶନ ଅଗ୍ରାହ୍ୟ କରି ଦେଇଛନ୍ତି । କ୍ୟାବିନେଟ୍ ମିଶନ୍ ଯେ ଜିନ୍ନାଙ୍କର ଏ ସବୁ କଥା ଅଗ୍ରାହ୍ୟ କରିଦେଲେ, ସେଥିରେ ଆଶ୍ଚର୍ଯ୍ୟ ହେବାର କିଛି ନାହିଁ । ଏଗୁଡ଼ିକ ଗ୍ରହଣ କରିଥିଲେ ଦେଶକୁ ଶାସନ କରିବା ଅସଂଭବ ହୋଇ ପଡ଼ିଥାନ୍ତା ।

ଜିନ୍ନାଙ୍କର ଏ ସମାଲୋଚନା ସତ୍ତ୍ୱେ, ଜୁନ୍ ୪ ତାରିଖରେ, ମୁସ୍‌ଲିମ୍ ଲିଗ୍ କ୍ୟାବିନେଟ୍ ମିଶନ୍‌ର ଯୋଜନାକୁ ଗ୍ରହଣ କରିଗଲେ ।

ବର୍ତ୍ତମାନ କଥା ରହିଲା କଂଗ୍ରେସଠାରେ । କଂଗ୍ରେସ କ'ଣ ସିଦ୍ଧାନ୍ତ କରିବ ?

କଂଗ୍ରେସ କାର୍ଯ୍ୟକାରୀ କମିଟି, ଦିଲ୍ଲୀର ଅବସାଦକର ଗ୍ରୀଷ୍ମ ଏବଂ ନିଃଶ୍ୱାସ ରୁଦ୍ଧ କରି ଦେଉଥିବା ଧୂଳିଝଡ଼ରୁ ଉଦ୍ଧାର ପାଇବା ପାଇଁ ପର୍ବତ-ବେଷ୍ଟିତ ଗ୍ରୀଷ୍ମନିବାସ ମସୋରିକୁ ଉଠିଗଲେ । ଗାନ୍ଧୀ ମଧ୍ୟ ସାଙ୍ଗରେ ଗଲେ ।

ସମଗ୍ର ଭାରତ ସତୃଷ୍ଣ ନୟନରେ ମସୋରି ଆଡ଼େ ଚାହିଁ ରହିଲେ । କାର୍ଯ୍ୟକାରୀ କମିଟି ଗାନ୍ଧୀଙ୍କ ସଙ୍ଗେ ଆଲୋଚନା ଚଳାଇଲେ । ଏ ଆଲୋଚନାର, ଭାରତଭାଗ୍ୟ ନିୟନ୍ତ୍ରଣ କରିବାରେ କେତେ ପ୍ରଭାବ ତାହା

କାର୍ଯ୍ୟକାରୀ କମିଟିର ମେମ୍ବରମାନେ ବୋଧହୁଏ ନିଜେ ସମ୍ୟକ୍ ଉପଲବ୍ଧି କରି ନ ଥିଲେ ।

ବୈଦେଶିକ ସାଂବାଦିକମାନେ ଗାନ୍ଧୀଙ୍କ ପଛେ ପଛେ ମସୋରୀ ଗୁଲିଲେ । ତାଙ୍କର ଭିତରୁ ଜଣେ ଗାନ୍ଧୀଙ୍କୁ ପଚାରିଲେ, 'ଆପଣ ଯଦି ଦିନକ ପାଇଁ ଭାରତର ନିରଙ୍କୁଶ ଶାସକ ହୁଅନ୍ତେ, ତେବେ କ'ଣ କରନ୍ତେ ?'

ସାଂବାଦିକ ଯଦି ଆଶା କରିଥିବେ ଯେ, କ୍ୟାବିନେଟ୍ ମିଶନ୍‌ର ପ୍ରସ୍ତାବ ଉପରେ ମତ ଦେବାକୁ କଂଗ୍ରେସ ଯେ ଏତେ ବିଳମ୍ବ କରୁଛନ୍ତି ତା'ର ଉପରେ ଗାନ୍ଧୀ କିଛି କହିବେ, ତେବେ ତାଙ୍କ ଆଶା ବିଫଳ ହେଲା । ଗାନ୍ଧୀ ଉତ୍ତର ଦେଲେ, 'ମୁଁ ଏ କ୍ଷମତା ଗ୍ରହଣ କରିବାକୁ ରାଜି ହୁଅନ୍ତି ନାହିଁ' ; ଯଦି ହୁଅନ୍ତେ, ତେବେ ନୂଆଦିଲ୍ଲୀର ହରିଜନମାନଙ୍କ ବସ୍ତି ସଫା କରିବାରେ ଏବଂ ଭାଇସ୍‌ରୟଙ୍କ ପ୍ରାସାଦକୁ ଗୋଟିଏ ଚିକିତ୍ସାଳୟରେ ପରିଣତ କରାଇବାରେ ସମଗ୍ର ଦିନଟି କଟାଇ ଦିଅନ୍ତେ । ଏହା କହି ସେ ବିସ୍ମିତ ହୋଇ ପଚାରିଲେ, 'ବଡ଼ଲାଟଙ୍କର ଏଡ଼େ ବଡ଼ ଘରଟାଏ କ'ଣ ପାଇଁ ଦରକାର ?'

ସାଂବାଦିକ ଦୁଗୁଣେଇ ହୋଇ ପଚାରିଲେ, 'ଆଚ୍ଛା, ମହାଶୟ, ଧରନ୍ତୁ ଆପଣଙ୍କୁ ଦ୍ୱିତୀୟ ଦିନ ମଧ୍ୟ ନିରଙ୍କୁଶ କ୍ଷମତା ମିଳନ୍ତା, ତେବେ ?'

ଗାନ୍ଧୀ ହସି ହସି ଉତ୍ତର ଦେଲେ, 'ପ୍ରଥମ ଦିନର କାର୍ଯ୍ୟ ଦ୍ୱିତୀୟ ଦିନକୁ ବି ଲମ୍ବିଯାନ୍ତା' ଏହା ଶୁଣି ଉପସ୍ଥିତ ଭାରତୀୟ ସମସ୍ତେ ହସି ଉଠିଲେ ।

କିନ୍ତୁ କ୍ୟାବିନେଟ୍ ମିଶନ୍ ଯୋଜନା ଉପରେ କୌଣସି ମତାମତ କଂଗ୍ରେସ ତରଫରୁ ବାହାରୁ ନ ଥାଏ ।

ଜୁନ୍ ୮ ତାରିଖରେ, ଗାନ୍ଧୀ ଗୋଟିଏ ମଟରଗାଡ଼ିରେ ନୂଆ ଦିଲ୍ଲୀକୁ ଫେରି ଆସିଲେ । ହିମାଳୟର ଶୀତଳ ବନାମାବେଷ୍ଟିତ ସାନୁ ଦେଶରୁ ପାଇନ୍ ବୃକ୍ଷର ସୌରଭ ଘେନି ବହି ଆସୁଥିବା ସମୀରଣ ସେବନ କରି ତାଙ୍କ ମନର କ୍ଳାନ୍ତି ଦୂର ହୋଇଥାଏ । ନୂଆ ଦିଲ୍ଲୀରେ କଂଗ୍ରେସ ନେତୃବୃନ୍ଦଙ୍କ ଆଲୋଚନା ଆହୁରି ଗ୍ଲିବ ବୋଲି ସ୍ଥିର ହୋଇଥାଏ । ବ୍ରିଟିଶ୍ ପ୍ରସ୍ତାବାବଳୀକୁ ଗ୍ରହଣ କରିବା ସକାଶ କଂଗ୍ରେସ କାର୍ଯ୍ୟକାରୀ କମିଟିକୁ ପ୍ରବର୍ତ୍ତାଇବା ପାଇଁ ରାଜଗୋପାଳାଚାରି ମାନ୍ଦ୍ରାଜରୁ ଦିଲ୍ଲୀ ଆସିଥାନ୍ତି ।

ସେ ସେତେବେଳକୁ କାର୍ଯ୍ୟକାରୀ କମିଟିର ମେମ୍ବର ନ ଥାନ୍ତି, ଗାନ୍ଧୀ ବି ନ ଥାନ୍ତି ।

ଆହୁରି ହପ୍ତାଏ ଚାଲିଗଲା, ତଥାପି, କ୍ୟାବିନେଟ୍ ମିଶନ୍‌ର ଯୋଜନାକୁ କଂଗ୍ରେସ ଗ୍ରହଣ କରିବ କି ନାହିଁ, ସେ ବିଷୟରେ ପଦେ ସୁଦ୍ଧା କଥା ଜଣା ପଡ଼ିଲା ନାହିଁ ।

ଜୁନ୍ ୧୬ ତାରିଖରେ ଲର୍ଡ଼ ଓ୍ୱାଭେଲ୍ ଘୋଷଣା କଲେ ଯେ, କେନ୍ଦ୍ରରେ ଯେଉଁ ଶାସନସଂସ୍ଥା ଗଢ଼ାହେବାର କଥା ସେବିଷୟରେ କଂଗ୍ରେସ ଓ ମୁସଲିମ୍ ଲିଗ୍ ଏକମତ ହୋଇ ପାରିଲେ ନାହିଁ । ତେଣୁ ଲର୍ଡ଼ ଓ୍ୱାଭେଲ୍ ନିଜ ବିଚାରରେ କେନ୍ଦ୍ର ଶାସନ ପାଇଁ ୧୪ ଜଣ ଭାରତୀୟଙ୍କୁ ବାଛୁଛନ୍ତି ବୋଲି ଜଣାଇ ଦେଲେ ।

ବର୍ତ୍ତମାନ କଂଗ୍ରେସ ଆଗରେ ଦୁଇଟି ସମସ୍ୟା ଠିଆ ହେଲା : କେନ୍ଦ୍ରର ଅସ୍ଥାୟୀ ସରକାରରେ ଯୋଗ ଦେବେ ନା ନାହିଁ । ଦ୍ୱିତୀୟତଃ ସଂବିଧାନ ପ୍ରଣୟନ ପାଇଁ ହେବାକୁ ଥିବା ମହାସଭାରେ ଯୋଗ ଦେଇ ସ୍ୱାଧୀନ ଏକତନ୍ତ୍ର ଭାରତ ପାଇଁ ସଂବିଧାନ ଗଢ଼ିବାରେ ଯୋଗ ଦେବେ ନା ନାହିଁ ।

---

# ଚତୁର୍ଦ୍ଦଶ ପରିଚ୍ଛେଦ

## ଗାନ୍ଧୀଙ୍କ ପାଖକୁ ମୋର ପୁନରାଗମନ

ମୁଁ ୧୯୪୬, ଜୁନ୍ ୨୫ ତାରିଖରେ ନୂଆ ଦିଲ୍ଲୀ ବ୍ୟୋମଯାନ-ବନ୍ଦରରେ ଅବତରଣ କରି ଇମ୍ପିରିଏଲ୍ ହୋଟେଲକୁ ଟାକ୍‌ସିରେ ଗଲି । କାଇରୋରୁ ବ୍ୟୋମପଥରେ ଆସି ମୁଁ ଶ୍ରାନ୍ତ ହୋଇଥାଏ ; ଖିଅର ହୋଇ ଗାଧୋଇବା ଜରୁରି ଦରକାର ଥାଏ । କିନ୍ତୁ ତୁରନ୍ତ ଗାନ୍ଧୀଙ୍କ

ସଙ୍ଗେ ସାକ୍ଷାତ କରିବାକୁ ମୋର ଆଗ୍ରହ ଦମନ କରିପାରିଲି ନାହିଁ । ଗାନ୍ଧୀଙ୍କ ସଙ୍ଗେ ପଦେ କଥା ହେବା ମୋର ଏଥର ଭାରତ-ଯାତ୍ରାର ପ୍ରଥମ କାର୍ଯ୍ୟ ହେବା ଉଚିତ ବୋଲି ମୋ ମନରେ ହୋଇଥାଏ । ତେଣୁ ହୋଟେଲରେ ମୋତେ କୋଠରିଟିଏ ମିଳିବ କି ନାହିଁ ସେ ବିଷୟରେ ନିଶ୍ଚିତ ଖବର ପାଇବାକୁ ଅପେକ୍ଷା ନ କରି, ମୋ'ର ଜିନିଷପତ୍ର ହୋଟେଲର ବାଟଘରେ ରଖି ଦେଇ ମୁଁ, ହରିଜନ ବସ୍ତିରେ ଥିବା ଗାନ୍ଧୀଙ୍କ ଶ୍ଲେଟ ପଥରକୁଡ଼ିଆକୁ ଯିବା ସକାଶ ଟ୍ୟାକ୍‌ସିରେ ବସିଲି ।

କୁଡ଼ିଆର ବାହାରେ, ପଡ଼ିଆରେ ଗାନ୍ଧୀ ସେତେବେଳକୁ ତାଙ୍କ ସାନ୍ଧ୍ୟ-ପ୍ରାର୍ଥନା ସଭାରେ ବସିଥାନ୍ତି । ପ୍ରାୟ ହଜାରେ ଲୋକ ପ୍ରାର୍ଥନା ସଭାରେ ଯୋଗ ଦେଇଥାନ୍ତି । ଗାନ୍ଧୀ ପିନ୍ଧିଥାନ୍ତି ଖଣ୍ଡେ କଟୀବସ୍ତ୍ର, ଉଦା ଧଳା ଗାମୁଛା ଖଣ୍ଡେ ଚଉତା ହୋଇ ମୁଣ୍ଡ ଉପରେ ଥାଏ ; ସେ ଚକାମାଣ୍ଡି ପକାଇ ପ୍ରତ୍ୟେକ ପାଦକୁ ଆର ଗୋଡ଼ର ଜଂଘ ଉପରେ ରଖି ଗୋଟିଏ ବଡ଼ କାଠମଞ୍ଚା ଉପରେ କେତେଜଣ ଶିଷ୍ୟଙ୍କ ସହିତ ବସିଥାନ୍ତି । ସେ ଆଖି ମୁଜିଥାନ୍ତି ; ବେଳେବେଳେ ଆଖି ଖୋଲୁଥାନ୍ତି ଏବଂ ହାତ ତାଳି ଦେଇ ପ୍ରାର୍ଥନା ସଙ୍ଗୀତରେ ତାଳ ଦେଉଥାନ୍ତି । ମଞ୍ଚାର ସାମନାରେ ଭୂଇଁରେ ନାରୀ ଉପାସିକାମାନେ ବସିଥାନ୍ତି ; ତାଙ୍କ ପଛରେ ପୁରୁଷମାନେ । କୌତୂହଳରେ ଯେଉଁମାନେ ଆସିଥାନ୍ତି ସେମାନେ ବସିଥିବା ଉପାସକ-ଉପାସିକାଙ୍କ ଚାରିପଟ କଡ଼ରେ ଠିଆ ହୋଇଥାନ୍ତି । କେତେଜଣ ଭାରତୀୟ ଓ ବୈଦେଶିକ ସାଂବାଦିକ ଏଠାରେ ଥାନ୍ତି । ମୃଦୁଳା ସାରାଭାଇ, ନେହେରୁ ଓ ଲେଡ଼ି କ୍ରିପ୍‌ସ୍ ମଧ୍ୟ ଥାନ୍ତି ।

ଉପାସନା ମଞ୍ଚରୁ ତଳକୁ ଓହ୍ଲାଇବା ପାଇଁ ତିନୋଟି କାଠ ପାହାଚ ଥାଏ । ସେଇବାଟେ ଗାନ୍ଧୀ ମଞ୍ଚରୁ ଓହ୍ଲାଇବେ । ମୁଁ ପାହାଚ-ମୂଳରେ ମୋ ଥାନ କରି ନେଲି । ମୋତେ ଦେଖି ସେ କହି ପକାଇଲେ, 'ବେଶ୍, ତୁମେ ବି ଆସି ହାଜର । ଆଚ୍ଛା, ଗତ ଚାରିବର୍ଷ ଭିତରେ ମୋ ଚେହେରାରେ କୌଣସି ଉନ୍ନତି ହୋଇ ନାହିଁ ବୋଧହୁଏ ।'

ମୁଁ ଉତ୍ତର ଦେଲି, 'ଆପଣଙ୍କ ମତର ବିରୋଧ କରିବା ମୋ ପକ୍ଷେ ଅସଂଭବ ।' ସେ ମୁଣ୍ଡକୁ ପଛକୁ ଝୁଙ୍କାଇ ଖୁବ୍ ହସିଲେ । ମୋ କହୁଣୀରେ ହାତ ପକାଇ ସେ ତାଙ୍କ କୁଟୀର ଆଡ଼କୁ ଚାଲିଲେ । ତା'ପରେ, ବୋଧହୁଏ ସେ ଠଉରାଇଲେ ଯେ, ମୁଁ ତାଙ୍କ ସଙ୍ଗେ କଥାବାର୍ତ୍ତା ହେବାକୁ

ଗୃହେଁ ; ତେଣୁ କହିଲେ, 'ହେଉଛି ଲେଡ଼ି କ୍ରିପ୍‌ସ୍ ମୋ ସଙ୍ଗେ କଥାବାର୍ତ୍ତା କରିବାକୁ ଅପେକ୍ଷା କରୁଛନ୍ତି । କାଲି ସକାଳେ ମୋ ସଙ୍ଗେ ବୁଲିବାକୁ ଆସିବ ।'

ଯା ପରେ, ସେଇ ସଂଧ୍ୟାରେ କଂଗ୍ରେସ-ପ୍ରେସିଡେଣ୍ଟ୍ ଅବୁଲ କାଲମ ଆଜାଦ୍‌ଙ୍କ ଘରକୁ ମୁଁ ରାତ୍ରିଭୋଜନ ପାଇଁ ଗଲି । ନେହେରୁ, ମିଷ୍ଟର୍ ଆସଫ୍ ଅଲି ଓ କାର୍ଯ୍ୟକାରୀ କମିଟିର ଅନ୍ୟ ମେମ୍ବରମାନେ ମଧ୍ୟ ସେଠାରେ ରାତ୍ରିଭୋଜନ କରିବାକୁ ଆସିଥାନ୍ତି । ସମସ୍ତଙ୍କ ମନ ଭାରାକ୍ରାନ୍ତ ଥିଲା ପରି ମନେ ହେଉଥାଏ । ବେତାରପ୍ରଚାରିତ ସରକାରୀ ସଂବାଦ ସମସ୍ତେ ବିଶେଷ ମନୋଯୋଗ ଦେଇ ଶୁଣିବାର ଲକ୍ଷ୍ୟ କଲି । ସେଇଦିନ କେତେ ଘଣ୍ଟା ଆଗରୁ କଂଗ୍ରେସ ନିଜର ଶେଷ ନିଷ୍ପତ୍ତି କ୍ୟାବିନେଟ୍ ମିଶନ୍ ଓ ଓ୍ୱାଭେଲଙ୍କ ପାଖକୁ ପଠାଇ ସାରିଥାନ୍ତି, କିନ୍ତୁ ଏ ବିଷୟରେ ଲୋକସାଧାରଣଙ୍କୁ ଜଣାଇବା ସକାଶ କୌଣସି ବିବୃତ୍ତି ଦେଇ ନ ଥାନ୍ତି ।

ମୁଁ, ବୁଝିନେଲି, ଭାରତର ଭବିଷ୍ୟତ ପାଇଁ ସଂବିଧାନ ଗଢ଼ିବା ବିଷୟରେ କଂଗ୍ରେସ ବ୍ରିଟିଶ୍ ପ୍ରସ୍ତାବ ଗ୍ରହଣ କରିଥାନ୍ତି, କିନ୍ତୁ କେନ୍ଦ୍ରର ଅସ୍ଥାୟୀ ସରକାରରେ ଭାଗ ନେବାକୁ ନାସ୍ତି କରି ଦେଇଥାନ୍ତି ।

ତତ୍ପରଦିନ ସକାଳେ, ମୁଁ ଭୋରରୁ ଉଠି କପେ ଦୁଧ-ନ-ପଡ଼ିଥିବା ନିଖ ଉଷୁମ ଚା ଓ କଦଳୀଟାଏ ଖାଇ, ଗୋଟାଏ ଟ୍ୟାକ୍‌ସି ଡାକି, ଗାନ୍ଧୀଙ୍କ କୁଟୀରରେ ଯାଇ ଠିକ୍ ସାଢ଼େ ୫ ଟାରେ ପହଞ୍ଚିଲି । ତାଙ୍କ ସାଙ୍ଗେ ଅଧଘଣ୍ଟାଏ ପ୍ରାତଭ୍ରମଣ କଲି । କ୍ୟାବିନେଟ୍ ମିଶନ୍ ସଙ୍ଗେ ଯେଉଁ କଥାବାର୍ତ୍ତା ଚାଲିଥିଲା ତାହାହିଁ ଥିଲା ତାଙ୍କ କଥାବାର୍ତ୍ତାର ବଡ଼ଭାଗ ।

ବିରଳା ଭବନରେ ମୁଁ ପଟେଲ ଓ ରାଜଗୋପାଳାଚାରୀଙ୍କ ସଙ୍ଗେ ମଧ୍ୟାହ୍ନ-ଭୋଜନ କଲି । ସେଇ ଭବନରେ ମିସ୍ ସ୍ଲେଡ୍‌ଙ୍କ ସଙ୍ଗେ ଘଣ୍ଟେ କଥାବାର୍ତ୍ତା ହେଲି ଏବଂ ସଂଧ୍ୟାବେଳଟା ପଟେଲଙ୍କ ସଙ୍ଗେ କଟାଇଲି ।

ତତ୍ପରଦିନ, ଜୁଲାଇ ୨୭ ତାରିଖ, ମୁଁ ପୁଣି ସାଢ଼େ ୫ ଟାରେ ଗାନ୍ଧୀଙ୍କ ପାଖକୁ ଯାଇ ତାଙ୍କ ସଙ୍ଗେ ଅଧଘଣ୍ଟେ ଭ୍ରମଣ କଲି । ୯ଟା ୩୦ ମିନିଟ୍‌ରେ ସାର୍ ଷ୍ଟାଫୋର୍ଡ୍ କ୍ରିପ୍‌ସ୍ ଓ ଲେଡ଼ି କ୍ରିପସ୍‌ଙ୍କ ସଙ୍ଗେ ସାକ୍ଷାତ କଲି । ବନ୍ଧୁତ୍ୱ ପରିବେଶରେ ସେ ଦୁହିଁଙ୍କ ସଙ୍ଗେ କଥାବାର୍ତ୍ତା ହେଲି ଓ ବହୁତ କଥା ଜାଣିଲି । ଭଡ଼ା କରିଥିବା ଟ୍ୟାକ୍‌ସିଟି ଛାଡ଼ି ନ ଦେଇ ଅଟକାଇଥାଏ ;

କାରଣ, ୧୦।୩୦ ମିନଟରେ ଜିନ୍ନାଙ୍କ ସଙ୍ଗେ ସାକ୍ଷାତ୍ କରିବାକୁ ଆଗରୁ କଥା କରିଥାଏ ।

ଜିନ୍ନାଙ୍କ କୋଠି ଅଭିମୁଖେ ଅଳ୍ପ କିଛି ବାଟ ଯିବା ପରେ ଟ୍ୟାକ୍‌ସି ଖୁଁ ଖୁଁ କରିବାକୁ ଲାଗିଲା ଏବଂ ଏକାବେଳକେ ନିର୍ଜୀବ ହୋଇ ଠିଆ ହୋଇଗଲା । ଶିଖ୍ ଗାଡ଼ିବାଲା ବନେଟ୍ ଉଠାଇ ତାକୁ ଜୀବନ ଦେବା ପାଇଁ କିଛି ସମୟ ଠୁକ୍‌ଠାକ୍ କରି ସମୟ ନଷ୍ଟ କରିବା ବେଳକୁ ଜିନ୍ନାଙ୍କ ସଙ୍ଗେ ସାକ୍ଷାତ କରିବା ସମୟ ନିକଟ ହୋଇ ଯାଉଛି ବୋଲି ମୋର ବିଚଳିତ ଭାବ ବଢ଼ିବାରେ ଲାଗିଥାଏ; ଗୋଟିଏ ସରକାରୀ ଗାଡ଼ି ଅଟକାଇ ଡ୍ରାଇଭରକୁ କିଛି ଉପରି ରୋଜଗାର କରିବାକୁ ପ୍ରବର୍ତ୍ତାଇଲି କିନ୍ତୁ ଫଳ ନ ହେବାରୁ ଗୋଟାଏ ଟାଙ୍ଗା ଭଡ଼ା କଲି । ଘୋଡ଼ା ଆପାତତଃ କ୍ଷୁଧିତ ହୋଇଥିବାରୁ, ଚାଳକର କୋରଡ଼ା ମାଡ଼ ଓ ଗାଳିଗୁଲଜର ବିଶେଷ ଫଳ ହେଲା ନାହିଁ । ମୁଁ ଜିନ୍ନାଙ୍କ ଦୁଆରମୁହଁରେ ପହଞ୍ଚିଲା ବେଳକୁ ମୋର ୩୫ ମିନଟ ବିଳମ୍ବ ହୋଇ ଯାଇଥାଏ । ବହୁତ କରି ଦୋଷ ମାଗିଲି; କୈଫିୟତ୍ ଦେଲି ଯେ ମୋ ଟ୍ୟାକ୍‌ସି ବାଟରେ ଭାଙ୍ଗି ପଡ଼ିଲା, ଅନ୍ୟ ଟ୍ୟାକ୍‌ସି ମିଳିଲା ନାହିଁ, ଟାଙ୍ଗାଟା ଅତି ବିଳମ୍ବ କଲା, ସମୟାନୁବର୍ତ୍ତୀ ନ ହୋଇ ପାରିଲେ ମୋତେ ଭାରି ଖରାପ ଲାଗେ ଇତ୍ୟାଦି । ସେ ଆଦରହୀନ ସ୍ୱରରେ କହିଲେ, 'ମୋର ବିଶ୍ୱାସ ଆପଣ ବିଶେଷ ଆହତ ହୋଇ ନାହାନ୍ତି ।' ପୁଣି କୈଫିୟତ୍ ଦେଲି, ଗାଡ଼ିର କୌଣସି ଦୁର୍ଘଟଣା ହୋଇ ନାହିଁ, ଇଞ୍ଜିନ୍ ବିଗିଡ଼ିଗଲା ଯେ ଡ୍ରାଇଭରର ସମସ୍ତ ଚେଷ୍ଟା ସତ୍ତ୍ୱେ ଚଳିଲା ନାହିଁ । ସେ ଭୃତ୍ତରେ ସହାନୁଭୂତି ଜଣାଇଲେ ; କିନ୍ତୁ ତାଙ୍କ ସ୍ୱରରେ ବାହ୍ୟାଡ଼ମ୍ବର ମାତ୍ର ଲକ୍ଷ୍ୟ କଲି । ସେ ମୋ ଗାଡ଼ି ଖରାପ ହୋଇଯିବା କଥା ଉପରେ କହି ଲାଗିଥାନ୍ତି ।

ଟ୍ୟାକ୍‌ସି ଓ ଟାଙ୍ଗାର ଆଲୋଚନାରୁ କୌଣସି ମତେ ନିଷ୍କୃତି ପାଇବାରେ ମୁଁ ପଚାରି ଦେଲି, 'ଭାରତ ନିକଟରେ ସ୍ୱାଧୀନତା ପାଇବାର ସୂଚନା ମିଳୁଛି ।'

ସେ ଏହାର କୌଣସି ଜବାବ୍ ଦେଲେ ନାହିଁ । ଅନ୍ୟ କିଛି ବି କହିଲେ ନାହିଁ । ସେ ତାଙ୍କର ଥୋଡ଼ିରେ ହାତ ରଖି ପଛ ଆଡ଼କୁ ଆଉଜି ଆଉଜି ସ୍ଥିରଦୃଷ୍ଟିରେ ମୋ ଆଡ଼କୁ ଚାହିଁଲେ ; ତା' ପରେ ଠିଆ ହୋଇ

ପଡ଼ ବଦାୟ ନେବାକୁ ମୋ ଆଡ଼େ ହାତ ବଢ଼ାଇ କହିଲେ, 'ଏଥର ମୋତେ ଯିବାକୁ ହେବ ।'

ତାଙ୍କୁ ମୋ ପାଇଁ ଗୁଡ଼ାଏ ଅପେକ୍ଷା କରିବାକୁ ପଡ଼ିବାରୁ ମୁଁ କ୍ଷମା ମାଗିଲି । ଗାଡ଼ିଟା ଏପରି ଖରାପ ହୋଇଯିବ ବୋଲି ଜାଣିବାର ଉପାୟ ନ ଥିଲା ବୋଲି କାରଣ ଦେଖାଇ ଆଉ ଦିନେ ନୂଆ ଦିଲ୍ଲୀରେ ସେ ଥିବା ଭିତରେ ଦେଖା କରି ପାରିବି କି ବୋଲି ପଚାରିଲି । ସେ ଠୋ କରି ନାହିଁ କରିଦେଲେ; ସେ କାର୍ଯ୍ୟବ୍ୟସ୍ତ ରହିବେ; ଏଠା କାମ ଛିଣ୍ଡିବା ମାତ୍ରେ ସେ ବମ୍ବେ ଚାଲିଯିବେ । ମୁଁ କହିଲି, ମୋର ବି ବମ୍ବେ ଯିବାର ଅଛି । ସେଠାରେ ଦେଖା ହୋଇ ପାରିବ କି ? ନା, ସେଠାରେ ବି ତାଙ୍କର ଫୁରସତ୍ ନାହିଁ । ଏତେବେଳକୁ ସେ ମୋତେ ତାଙ୍କ ବାହାର ଦୁଆର ପର୍ଯ୍ୟନ୍ତ ନେଇ ଆସିଥାନ୍ତି । ମୋର ବିଳମ୍ବ ହେଲା ବୋଲି ସେ ଚିଡ଼ିଗଲେ, ନା ଭାରତୀୟ ସ୍ୱାଧୀନତା ଆସନ୍ନ ପ୍ରାୟ ବୋଲି ମୁଁ କହିବାରୁ ଚିଡ଼ିଗଲେ, ତାହା ମୁଁ ଜାଣିବାର ଆଉ ଉପାୟ ରହିଲା ନାହିଁ ।

ସପ୍ତାହର ଶେଷ ଭାଗରେ ମୁଁ ଭାରତର ରାଜନୀତିକ ସମସ୍ୟା ବିଷୟରେ ଯେତେ ତଥ୍ୟ ସଂଗ୍ରହ କରିବା ସମ୍ଭବ, ସେତେ ସଂଗ୍ରହ କରି-ନେଲି । ଏ ବିଷୟରେ ପଟେଲଙ୍କ ତୀକ୍ଷ୍ଣ ବିଚାର ବୁଦ୍ଧି ମୋର ଭାରି ସହାୟ ହେଲା । ଜୁଲାଇ ପହିଲା, ସୋମବାର ଦିନ ମୁଁ ଉଡ଼ାଜାହାଜ ଯୋଗେ ବମ୍ବେ ଗଲି ଏବଂ ମଙ୍ଗଳବାର ସନ୍ଧ୍ୟାରେ ଡକ୍ଟର୍ ଦୀନଶା ମେହେଟାଙ୍କ ପ୍ରାକୃତିକ ଚିକିତ୍ସା କେନ୍ଦ୍ରରେ ତିନିଦିନ କଟାଇବାକୁ ବାହାରିଲି । ଗାନ୍ଧୀ ସେଠାରେ ରହିଥାନ୍ତି । ମୋ ରହିବା ସମୟର କେତେକାଂଶ ନେହେରୁ ମଧ୍ୟ ସେଠାରେ କଟାଇଥିଲେ ।

ଜୁଲାଇ ୫ତାରିଖରେ ମୁଁ ଗାନ୍ଧୀଙ୍କ ସଙ୍ଗେ ବମ୍ବେ ଆସିଲି ଓ ୬, ୭ ତାରିଖ ଦୁଇ ଦିନ ନିଖିଳଭାରତ କଂଗ୍ରେସ କମିଟିର ବୈଠକରେ ଯୋଗ ଦେଲି । କାର୍ଯ୍ୟକାରୀ କମିଟି କ୍ୟାବିନେଟ୍ ମିଶନ୍‌ର ପ୍ରସ୍ତାବ ଉପରେ ଯେଉଁ ନିର୍ଦ୍ଧାରଣ କରିଥିଲା, ତା'ରି ଉପରେ ଏଠାରେ ବିତର୍କ ହେଲା । ଏ ବିଷୟରେ ଗାନ୍ଧୀଙ୍କ ଭାଷଣ ମଧ୍ୟ ନି. ଭା. କଂ. କମିଟିରେ ମୁଁ ଶୁଣିବାର ସୁଯୋଗ ପାଇଲି ।

ଏହା ପରେ, ସେଇ ମାସରେ, ସମାଜବାଦୀ ନେତା ଜୟପ୍ରକାଶ ନାରାୟଣଙ୍କ ସଙ୍ଗେ ମୁଁ ମହାରାଷ୍ଟ୍ରରେ ଗସ୍ତ କଲି । ଜୁଲାଇ ୧୬ ତାରିଖରେ,

ବର୍ଷା ଜଳରେ ଆର୍ଦ୍ର ପର୍ବତାବଳୀ ଉପରେ ଥିବା ପଞ୍ଚଗନିଠାରେ ଆମେ ପହଞ୍ଚିଲି, ଓ ସେଠାରେ ଗାନ୍ଧୀଙ୍କ ସଙ୍ଗେ ୪୮ ଘଣ୍ଟା କଟାଇଲି ।

୧୯୪୨ ଠାରୁ ଯୁଦ୍ଧ ଭିତରେ, ବୟସ, ଗାନ୍ଧୀଙ୍କ ଉପରେ ପ୍ରଭାବ ପକାଇଲା ପରି ଜଣାଯାଉ ନ ଥାଏ । ଅବଶ୍ୟ ପୂର୍ବ ପରି ତାଙ୍କ ପାଦୁଣ୍ଡି ବଡ଼ ନ ଥିଲା, ଓ ପଦକ୍ଷେପ ସବଳ ନ ଥିଲା । କିନ୍ତୁ ଚାଲିବାରେ ସେ ଆଗେ ଯେପରି କ୍ଳାନ୍ତ ହେଉ ନ ଥିଲେ, ଏବଂ ଦିନ ପରେ ଦିନ ଅନ୍ୟ ସଙ୍ଗେ ସାକ୍ଷାତ୍ କରି ଆଲୋଚନା କରିବାରେ ଯେପରି ହାଲିଆ ହେଉ ନ ଥିଲେ, ଏବେ ବି ସେଇଆ ଦେଖିଲି ।

ନୂଆଦିଲ୍ଲୀରେ ମୁଁ ତାଙ୍କ ସଙ୍ଗେ ପ୍ରଥମ ଦିନ ବୁଲିଗଲା ବେଳେ, ସେ ଆଗକରି ପଚାରିଥିଲେ, ରୁସିଆ ସଙ୍ଗେ ଯୁଦ୍ଧ ଲାଗିଯିବ ବୋଲି ଯେଉଁ ଜନରବ ପ୍ରଚାରିତ ହେଉଥିଲା ସେଇ ବିଷୟରେ । ମୁଁ କହିଲି : ହଁ, ପୁଣି ଯୁଦ୍ଧ ହେବ ବୋଲି ଅବଶ୍ୟ ଖୁବ୍ ଶୁଣାଯାଉଛି; କିନ୍ତୁ ଖୁବ୍ ସମ୍ଭବ ଏହା ଜନରବରେ ହିଁ ରହିଯିବ । ତା'ପରେ ମୁଁ ଅନ୍ୟ ପ୍ରସଙ୍ଗ ଉଠାଇ କହିଲି, 'ଆପଣ ଏଥର ପାଶ୍ଚାତ୍ୟଦେଶମାନଙ୍କ ପ୍ରତି ଆପଣଙ୍କର ଦୃଷ୍ଟି ଫେରାନ୍ତୁ ।'

ସେ ଉତ୍ତର ଦେଲେ, 'କିଏ, ମୁଁ ? ମୁଁ ତ ଭାରତକୁ ମୋ କଥାରେ ଉଦ୍‌ବୁଦ୍ଧ କରି ପାରି ନାହିଁ ; ଭାରତର ଚାରିଆଡ଼େ କେତେ ହିଂସାମୂଳକ ଉତ୍ପାତ ଚାଲିଛି, ଦେଖୁଛ ତ ? ଗୁଳି ଫୁଟିଗଲା ପରେ ତା'ର ଯେଉଁ ଫମ୍ପା ଖୋଳଟା ଅବଶେଷ ରହେ, ମୁଁ ସେଇ ।'

ମୁଁ କହି ଲାଗିଲି : ଦ୍ୱିତୀୟ ମହାଯୁଦ୍ଧ ପରେ ବହୁ ଇଉରୋପୀୟ ଓ ଆମେରିକାବାସୀ ଅନୁଭବ କରୁଛନ୍ତି, ଆଧ୍ୟାତ୍ମିକତାର ଏକ ଶୂନ୍ୟତା । ଏଶୂନ୍ୟତାର ଅନ୍ତତଃ ଗୋଟାଏ କୋଣ ଗାନ୍ଧୀ ପୂର୍ଣ୍ଣକରି ପାରନ୍ତେ । ଭାରତରେ ବୈଷୟିକ ବିଭବର ଅଭାବ; ତେଣୁ ହୁଏତ ଭାରତର ଗୋଟାଏ ଭ୍ରାନ୍ତ ଧାରଣା ହୋଇଛି ଯେ, ବୈଷୟିକ ବିଭବ ମିଳିଲେ ଲୋକ ସୁଖ ପାଏ । ଆମ ଦେଶରେ ଆମେ ବୈଷୟିକ ବିଭବ ଉପଭୋଗ କରୁଛୁଁ, କିନ୍ତୁ ଏଥିରୁ ତ ସୁଖ ଆସୁନାହିଁ । ଏ ବିଷୟରେ ସମାଧାନ ପାଇଁ ପାଶ୍ଚାତ୍ୟ ଦେଶମାନେ ଅଣ୍ଡାଳି ହେଉଛନ୍ତି ।

ଗାନ୍ଧୀ କହିଲେ, 'ମୁଁ ଜଣେ ଏସିଆବାସୀ ; ଏସିଆବାସୀଟାଏ ମାତ୍ର । ମୋ କଥା ସେ କାହିଁ ଶୁଣିବେ ?' ଏହା କହି ସେ ହସିଲେ ।

ଟିକିଏ ତୃମ୍ପ ହୋଇଯାଇ ପୁଣି କହିଲେ, 'ହଁ, ପ୍ରଭୁ ଯିଶୁ ତ ପୁଣି ଏସିଆ-ବାସୀ ଥିଲେ !'

ଏହି କଥାବାର୍ତ୍ତାରେ ଓ ଧ୍ୟାର ପରବର୍ତ୍ତୀ କଥାବାର୍ତ୍ତାମାନଙ୍କରେ ମୋର ମନେ ହେଲା, ତାଙ୍କ କଥାରେ ଗୋଟାଏ କପଟ ହତାଶ ଭାବ ପ୍ରକାଶ ପାଉଛି; କିନ୍ତୁ ପ୍ରକାଶିତ କଥାର ପଛରେ ଥାଏ ଆଶାର ଗୋଟିଏ ଅସ୍ପଷ୍ଟ ଧ୍ୱନି : ୧୨୫ ବର୍ଷ ଯଦି ସେ ବଞ୍ଚନ୍ତି, ତେବେ ଜୀବନର କାର୍ଯ୍ୟ ଶେଷ କରି ଯିବାକୁ ବହୁତ ସମୟ ମିଳିବ ।

ପୁନାରେ ପ୍ରାକୃତିକ ଚିକିତ୍ସା କେନ୍ଦ୍ରର ପଥର ଘରେ ମୁଁ ଯାଇ ପହଞ୍ଚିଲି ବେଳକୁ ରାତି ସାଢ଼େ ଆଠଟା । ଗାନ୍ଧୀ ଯେଉଁ କୋଠରୀରେ ଥିଲେ, ଜଣେ କର୍ମୀ ସେ କୋଠରୀ ମୋତେ ଦେଖାଇ ଦେଲେ ; ମୁଁ ଭିତରକୁ ପଶିଗଲି । ସେ ଗୋଟିଏ ମଶୁଣିରେ ବସିଥାନ୍ତି ; ଖଣ୍ଡେ ଧଳା ଗୁଦଡ଼ରେ ତାଙ୍କର ବେକଠାରୁ ବଳାଗଣ୍ଠି ପର୍ଯ୍ୟନ୍ତ ଆବୃତ ଥାଏ । ସେ ମୁହଁ ଟେକି ଚାହିଁଲେ ନାହିଁ । ଲେଖୁଥିବା ପୋଷ୍ଟକାର୍ଡ଼ ଖଣ୍ଡି ଲେଖିସାରି ସେ ମୁଣ୍ଡ ଟେକିଲେ, କହିଲେ, 'ଓଃ' । ମୁଁ ତାଙ୍କ ଆଗରେ ଆଣ୍ଠୁ ମାଡ଼ି ତାଙ୍କ କର-ମର୍ଦ୍ଦନ କଲି । ସ୍ୱାଗତ ଜଣାଇବାର ତାଙ୍କର ଏ ଢଙ୍ଗଟି ତାଙ୍କର ଉତ୍ତରାଧି-କାରୀଙ୍କ ଭିତରୁ କେହି ରଖି ପାରି ନାହାନ୍ତି । ତାଙ୍କ କରମର୍ଦ୍ଦନ ଓ ହାସ୍ୟରେ କି ମନ୍ତ୍ରଶକ୍ତି ଥିଲା, ମନେ ହେଉଥିଲା ସତେ ଯେପରି ସେ ଦୁଇ ବାହୁରେ ମଣିଷକୁ କୁଣ୍ଢାଇ ପକାଉଛନ୍ତି ଓ ମଣିଷକୁ, ତାଙ୍କ ଘରକୁ ଓ ସମଗ୍ର ଭାରତକୁ ନିଜର ମନେ କରି ନିଃସଙ୍କୋଚରେ ଚଳିବାକୁ ଆବେଦନ କରୁଛନ୍ତି ।

ମୋତେ ସେ ପ୍ରଥମ ପ୍ରଶ୍ନ କଲେ, ତୁମେ 'ଡେକାନ୍ କୁଇନ୍' (ଦାକ୍ଷିଣାତ୍ୟର ରାଣୀ) ଟ୍ରେନ୍‌ରେ ଆସିଲ ପରା ? ସେ ଟ୍ରେନରେ ଖାଦ୍ୟ ଯୋଗାଇବାର ବ୍ୟବସ୍ଥା ନ ଥାଏ ।

ମୁଁ କହିଲି, ମୋର ତଦ୍ଦ୍ୱାରା କୌଣସି ଅସୁବିଧା ହୋଇନାହିଁ । ରାତି ଭୋଜନର ନିମନ୍ତ୍ରଣ ମୋତେ ଆଗରୁ ମିଳି ସାରିଥାଏ । ମୋ ଆଡ଼ୁ ମୁଁ ଆରମ୍ଭ କଲି, 'ଏଠାର ଜଳବାୟୁ ବଡ଼ ରମଣୀୟ ମନେ ହେଉଛି । ସେବାଗ୍ରାମରେ ଖରାଦିନେ ଯେଉଁ ତାପ ସେଥିରେ ଆପଣ ମିଛରେ ଶରୀରକୁ କ୍ଳେଶ ଦେଉଥିଲେ ।' ମୁଁ ୧୯୪୨ ଗ୍ରୀଷ୍ମକାଳରେ ତାଙ୍କୁ ସେବା-ଗ୍ରାମରେ ଭେଟିଥିଲି ।

ସେ ଆପତ୍ତି କଲେ, 'ନା,ନା, ସେବାଗ୍ରାମରେ କ୍ଳେଶ କେଉଁଠି ନ ଥିଲା । କିନ୍ତୁ ଦିଲ୍ଲୀରେ ମୋତେ, ଗାଧୁଆ କୁଣ୍ଡରେ ବରଫ ପକାଇ, ତୁମେ ସେବାଗ୍ରାମରେ ବସିଲା ପରି, ବସିବାକୁ ପଡ଼ୁଥିଲା । ସେଇଥିରେ ବସି ଭଦ୍ର ଲୋକଙ୍କ ସଙ୍ଗେ ସାକ୍ଷାତ କରିବାକୁ ମୁଁ ଲଜ୍ଜା ବୋଧ କରୁ ନ ଥିଲି । ସେଇ କୁଣ୍ଡରେ ବସି ଚିଠି ଓ ପ୍ରବନ୍ଧାଦି ଡାକି ଦେଉଥିଲି ମଧ୍ୟ । ବାସ୍ତବିକ ପୁଣାର ଜଳବାୟୁ ବଡ଼ ରମଣୀୟ ।' ସେ ବେଶ୍ ନିଶ୍ଚିନ୍ତ ଥିଲା ପରି ଜଣା ପଡ଼ୁଥାନ୍ତି ।

ଟିକିଏ ପରେ—ମୋ'ର କୌଣସି ପ୍ରଶ୍ନର ଉତ୍ତରରେ ନୁହେଁ—ସେ ହିଂସା ବିଷୟରେ ସୁବିସ୍ତର ଭାବେ କହିବାକୁ ଲାଗିଲେ । ସେ କହିଲେ, 'ପ୍ରଥମେ ଶୁଣ, ଦକ୍ଷିଣ ଆଫ୍ରିକା କଥା । ନିକଟରେ ସେଠାରେ ହୋଇଥିବା ଆନ୍ଦୋଳନରେ ଜଣେ ଲୋକକୁ ହତ୍ୟା କରାଯାଇଛି । ବିଚରାର କୌଣସି ଦୋଷ ନ ଥିଲା । ପୁଣି, ଭାରତୀୟ ଲୋକଙ୍କୁ ଗଛରେ ବାନ୍ଧି ବେତମାଡ଼ ହୋଇଛି । ଏଇ ତ ତୁମର 'ଲିଞ୍ଚ୍ ଲ' (କ୍ରୁଦ୍ଧ ଜନତା ବିଚାର ଅଦାଲତର ଅପେକ୍ଷା ନ ରଖି ଯାହାକୁ ଦୋଷୀ ବୋଲି ବିଚାରନ୍ତି ତା'କୁ ସାଙ୍ଗେ ସାଙ୍ଗେ ମାରିଦେବା ବ୍ୟବସ୍ଥା) । ଏବେ ଆମର ଆହମଦାବାଦରେ ହିନ୍ଦୁ ମୁସଲ-ମାନଙ୍କର ଯେଉଁ ଦଙ୍ଗା ହୋଇଛି । ଏ ସବୁରେ ଦୁଃଖ ଏତିକି ଯେ ଗୋଟାଏ ପକ୍ଷ ଶସ୍ତ୍ର ପ୍ରୟୋଗ ଓ ହତ୍ୟା ଆରମ୍ଭ କରିବା ସାଙ୍ଗେ ସାଙ୍ଗେ ଅପର ପକ୍ଷ ସେଇଆ କରିବାରେ ମାତି ଯାଉଛନ୍ତି । ଯଦି ଗୋଟାଏ ପକ୍ଷ ନିଜ ପକ୍ଷର ହତ୍ୟା ପାଇଁ ପ୍ରତିହିଂସା ନେବାକୁ ବାହାରି ନ ପଡ଼ନ୍ତା ତେବେ ଦଙ୍ଗାହାଙ୍ଗମା ସେଇଠାରେ ବନ୍ଦ ହୋଇଯାନ୍ତା । ପାଲେଷ୍ଟାଇନ୍‌ରେ ତ ଏଇଆ ଚାଲିଛି । ଇହୁଦୀଙ୍କ ପକ୍ଷରେ ନ୍ୟାୟ ଅଛି । ବ୍ରିଟିଶ୍ ପାର୍ଲମେଣ୍ଟ୍‌ର ମେମ୍ବର ସିଡ଼ନି ସିଲଭର୍‌ମ୍ୟାନଙ୍କୁ ମୁଁ କହୁଛି ଇହୁଦୀମାନଙ୍କର ଦାବି ନ୍ୟାଯ୍ୟ । ଆରବ୍‌ମାନେ ପାଲେଷ୍ଟାଇନ୍‌କୁ ଦାବି କରୁଛନ୍ତି ; କିନ୍ତୁ ପାଲେଷ୍ଟାଇନ୍ ଉପରେ ଇହୁଦୀ-ମାନଙ୍କର ଦାବି, ଆରବମାନଙ୍କର ବହୁପୂର୍ବରୁ, ଅଛି । ପ୍ରଭୁ ଯିଶୁ ତ ନିଜେ ଥିଲେ ଇହୁଦୀ । ଇହୁଦୀ ଧର୍ମକାନନର ସେ ଥିଲେ ସର୍ବଶ୍ରେଷ୍ଠ ପୁଷ୍ପ ।

ତାଙ୍କର ଚାରିଗୋଟି ଶିଷ୍ୟଙ୍କର ଚାରିଗୋଟିଯାକ କାହାଣୀରୁ ଏକଥା ବେଶ୍ ଜାଣି ପାରିବ । ଏ ଚାରିଜଣ ଶିଷ୍ୟଙ୍କର ମନ ଥିଲା ନିଷ୍କପଟ; ସେମାନେ ଯିଶୁଙ୍କ ବିଷୟରେ ପ୍ରକୃତ କଥାଟା ସରଳଭାବେ କହିଯାଇଛନ୍ତି । କିନ୍ତୁ ତାଙ୍କ ଶିଷ୍ୟ ପଲ୍, ଇହୁଦୀ ନ ଥିଲେ, ସେ ଥିଲେ ଗ୍ରୀକ୍; ପୁଣି ତାଙ୍କର ଥିଲା

କଥା କେନେଇ ଚୁନେଇ କହିବାର ଶକ୍ତି, ନିଜର କଥାକୁ ଯୁକ୍ତି ଓ ତର୍କ ବଳରେ ସିଦ୍ଧ କରିବାର ପ୍ରତିଭା ; ତେଣୁ ସେ ଯିଶୁଙ୍କର ବାଣୀକୁ ବିକୃତ ରୂପ ଦେଇଥିଲେ । ଯିଶୁଙ୍କର ପ୍ରଧାନ ବୈଶିଷ୍ଟ୍ୟ ଥିଲା ତାଙ୍କ ପ୍ରେମର ବଳ । ଖ୍ରୀଷ୍ଟିଆନ୍ ଧର୍ମର ଏଇ ବୈଶିଷ୍ଟ୍ୟ ପାଶ୍ଚାତ୍ୟ ଦେଶକୁ ଯାଇ ନଷ୍ଟ ହୋଇ-ଗଲା । ଏହା ହୋଇଗଲା ରାଜ ଅନୁଗତ ଧର୍ମ ।

ହିଟଲରଙ୍କ ଜର୍ମାନୀରେ ଇହୁଦୀମାନଙ୍କ ଅବସ୍ଥା ବିଷୟରେ କହିବାକୁ ସେ ପୁଣି ଆରମ୍ଭ କଲେ । କିନ୍ତୁ ଟିକିଏ ପରେ କହିଲେ, 'ଆଜି ରାତିରେ ତୁମ ସଙ୍ଗେ କୌଣସି କଥା ପକାଇବାକୁ ମୋର ଇଚ୍ଛା ନ ଥିଲା; ତୁମେ ପଥଶ୍ରାନ୍ତ, ପୁଣି ଖାଇନାହଁ ।'

ମୁଁ ଯିବାକୁ ଉଠି କହିଲି, 'ଆପଣଙ୍କର ସୁନିଦ୍ରା ହେଉ ।'

'ମୋର ତ ସବୁବେଳେ ସୁନିଦ୍ରା ହୁଏ । ଅଧିକନ୍ତୁ ଆଜି ଥିଲା ମୋର ମୌନ ଦିବସ । ଦିନରେ ଗୁରୁଥର ନିଦ ହୋଇଗଲା । ହରିକାଠରେ ପଡ଼ି-ଥିଲି ବେଳେ ତ ଶୋଇପଡ଼ିଲି ।'

ଜଣେ ଡାକ୍ତରାଣୀ ଏହାର ଅର୍ଥ କରିଦେଲେ, 'ମର୍ଦ୍ଦନ ହେବା ବେଳେ ।'

ଗାନ୍ଧୀ ପ୍ରବର୍ତ୍ତାଇଲେ, 'ଆମ ଏଠାରେ ତୁମର ବି ମର୍ଦ୍ଦନଟାଏ ହେବା ଦରକାର ।'

ରାତିଭୋଜନ ପରେ, ଖୋଲା ପଥର ପିଣ୍ଡିରେ ପଡ଼ିଥିବା ଗାନ୍ଧୀଙ୍କ ଶଯ୍ୟା ପାଖ ଦେଇ ମୁଁ ମୋ କୋଠରୀକୁ ଯାଉଥିଲି । ତାଙ୍କର ପାଦ ଓ ପେଣ୍ଡାକୁ ଦୁଇଜଣ ଶିଷ୍ୟା ଚପି ଦେଉଥାନ୍ତି । ଗୋଟାଏ କାଠ ତକ୍ତା ଉପରେ ଖରଡ଼ି ଗଦି ପଡ଼ିଥାଏ, ମୁଣ୍ଡ ପଟେ ଏଇ ଗଦି ତଳେ ଦୁଇଟା ଇଟା ଥାଏ, ଗୋଡ଼ଠାରୁ ମୁଣ୍ଡକୁ ଉଚ୍ଚରେ ରଖିବାକୁ । ଏଇ ତାଙ୍କର ଶଯ୍ୟା; ଯାହା ଉପରେ ମଶାରି ଟଣା ହୋଇଥାଏ । ଆଉ କେତେଜଣ ଯୁବତୀ ତାଙ୍କ ଶେଯ ପାଖେ ମଶିଣାରେ ବସି ହସୁଥାନ୍ତି । ଗାନ୍ଧୀ ମୋତେ ଡାକି କହିଲେ, 'ତୁମେ ମୋ ସଙ୍ଗେ ପ୍ରାତର୍ଭୋଜନ କରିବାକୁ ଯଥାସମୟରେ ଉଠିବ । ତାଙ୍କର ପ୍ରଥମ ପ୍ରାତରାଶର ସମୟ ଭୋର ଗୁରିଟା ବୋଲି ସେ ମୋତେ କହିଲେ ।

'ମୋତେ ଏ ପ୍ରାତରାଶରୁ ଅବ୍ୟାହତି ଦେଲେ ଭଲ ହୁଅନ୍ତା ।'

ତେବେ ଦ୍ୱିତୀୟ ପ୍ରାତରାଶ ବେଳକୁ ଆସ । ୫ ଟାରେ ।'

ମୁଁ ମୁହଁକୁ ବିକୃତ କଲି; ତାହା ଦେଖି ସମସ୍ତେ ହସିଲେ।

ଗାନ୍ଧୀ କହିଲେ, 'ହଉ ତେବେ, ତୁଷାରୀ ପ୍ରାତଃଭ୍ରମଣରେ ଯୋଗ ଦେବ । ତାହା ନ'ଟା ବେଳେ । କାଲି ୭ଟାରେ ଉଠିବ ତା' ହେଲେ ।'

ମୋର ନିଦ ଭାଙ୍ଗିଲା ସାଢ଼େ ଛ'ଟାରେ । ମୁଁ ଅଗଣାକୁ ବାହାରି ପଡ଼ି ଦେଖିଲି, ସେ ଜଣେ ଭାରତୀୟ ଭଦ୍ରବ୍ୟକ୍ତିଙ୍କ ସଙ୍ଗେ ଗପ କରୁଛନ୍ତି । ସେ ମୋତେ କୁଶଳପ୍ରଶ୍ନ କଲେ । ଦୁହେଁ ତାଙ୍କ ସଙ୍ଗେ ପ୍ରାତର୍ଭ୍ରମଣରେ ଗଲୁଁ ।

ମୁଁ କାଲି ରାତି କଥା ଆରମ୍ଭ କରି କହିଲି, 'ପଲ୍ ଯିଶୁଙ୍କ ବାଣୀକୁ ବିକୃତ କରିଦେଲେ ବୋଲି ଆପଣ କାଲି କହୁଥିଲେ । ଆପଣଙ୍କର ଶିଷ୍ୟ ହୋଇ ଯେଉଁମାନେ ଅଛନ୍ତି ସେମାନେ ସେଇଆ କରିବେ ବୋଧହୁଏ ?'

ସେ ଉତ୍ତର ଦେଲେ, 'ଏ ଆଶଙ୍କା ଯେ ତୁମେ ଆଜି ନୂଆ କରି କରୁଛ ତାହା ନୁହେଁ । ମୁଁ ଏମାନଙ୍କ ପେଟ ଭିତର କଥା ଜାଣୁଛି । ମୁଁ ଜାଣୁଛି, ଏମାନେ ବି ସେଇପରି କରିବାକୁ ଚେଷ୍ଟା କରି ପାରନ୍ତି । ମୁଁ ଜାଣେ, ଭାରତ ମୋ କଥାରେ ନାହିଁ । ଅହିଂସାର ମହତ୍ତ୍ୱ ବିଷୟରେ ମୁଁ ସେପରି ବେଶି ଭାରତୀୟଙ୍କୁ ଅବହିତ କରି ପାରିନାହିଁ ।'

ଦକ୍ଷିଣ ଆଫ୍ରିକାରେ କୃଷ୍ଣାଙ୍ଗ ଓ ପିଙ୍ଗଳାଙ୍ଗ ଲୋକଙ୍କ ଉପରେ ହେଉଥିବା ନିର୍ଯାତନା ବିଷୟ ସେ ପୁଣି ସୁବିସ୍ତର ଭାବେ କହିଲେ । ଯୁକ୍ତରାଷ୍ଟ୍ର ଆମେରିକାରେ ନିଗ୍ରୋଙ୍କ ପ୍ରତି ହେଉଥିବା ବ୍ୟବହାର ବିଷୟରେ ମୋତେ ପଚାରିଲେ । ଶେଷରେ ମନ୍ତବ୍ୟ ଦେଲେ, 'ସଂଖ୍ୟାଲଘୁଙ୍କ ପ୍ରତି କିଭଳି ବ୍ୟବହାର କରାଯାଉଛି, ତାହା ହିଁ ଯେ କୌଣସି ସଭ୍ୟତାର ମାପକାଠି ।'

ଜଣେ ବଳିଷ୍ଠ ସିଂହଳୀ ମୋତେ ମର୍ଦ୍ଦନ କଲେ । ସେ ମୋ ମାଂସପେଶୀଗୁଡ଼ିକୁ ଏଭଳି ଦଳିଦେଲେ ଯେ ମୋତେ କାଠିଲା । ଶେଷରେ କିନ୍ତୁ ମୋତେ ବେଶ୍ ଆରାମ ଲାଗିଲା । ସେଠାରୁ ଯାଇ ମୁଁ ଗାନ୍ଧୀଙ୍କ କୋଠରୀ ଭିତରକୁ ପଶିଲି । କୋଠରୀର ଦ୍ୱାର ପରିବର୍ତ୍ତେ ଓହଳିଥାଏ ଗୋଟିଏ ପର୍ଦ୍ଦା; ମୁଁ ତାକୁ ଆଡ଼େଇ ଦେଇ ଭିତରକୁ ପଶିବାର ତାଙ୍କ ଆଖିରେ ପଡ଼ିବାରୁ ସେ କହିଲେ, 'ଆସ, ତୁମ ପାଇଁ ବେଳ ଅବେଳ ନାହିଁ ।' ସେ ହରିଜନ ପତ୍ରିକା ପାଇଁ ଇଂରେଜୀରେ

ଗୋଟିଏ ନିବନ୍ଧ ଲେଖୁଥାନ୍ତି ଏବଂ ଦେଶୀ ଭାଷାରେ ତିନିଜଣ ଭାରତୀୟଙ୍କ ସଙ୍ଗେ କଥାବାର୍ତ୍ତା ହେଉଥାନ୍ତି । ମୁଁ ଏଗାରଟା ଯାଏଁ ତାଙ୍କ କୋଠରୀକୁ ଯା ଆସ କରୁଥାଏ । ଲେଖା ସରିଲାପରେ ରାଜକୁମାରୀ ଅମୃତ କୌର ରଏଟର୍ସ ସଂବାଦ ସରବରାହ ସଂସ୍ଥାରୁ ଆସିଥିବା ସମ୍ବାଦାବଳୀ ତାଙ୍କୁ ପଢ଼ି ଶୁଣାଉଥାନ୍ତି । ଅମୃତ କୌର ଜଣେ ରାଜାଙ୍କର କନ୍ୟା, ଖ୍ରୀଷ୍ଟିଆନ୍ ଧର୍ମ ଗ୍ରହଣ କରିଥାନ୍ତି । ସେ ତାଙ୍କର ପ୍ରଧାନ ଇଂରେଜୀଭାଷା ସେକ୍ରେଟାରୀ ହୋଇଥାନ୍ତି । ଗାନ୍ଧୀ ସଂବାଦ ଶୁଣୁ ଶୁଣୁ ମଝିରେ 'ହୁଁ' ବୋଲି କହୁଥାନ୍ତି । ଦକ୍ଷିଣ ଆଫ୍ରିକା ସଂପର୍କୀୟ ସମ୍ବାଦ ଶୁଣି ସେ ଦୁଃଖରେ ମୁଣ୍ଡ ହଲାଉଥାନ୍ତି । ବିଶେଷଭାବେ ଭାରତରେ ପ୍ରଚାରିତ ହେବା ପାଇଁ ଆସିଥିବା ଗୋଟିଏ ରେଡ଼ିଓଗ୍ରାମରେ ଥାଏ, 'ପ୍ରେସିଡେଣ୍ଟ୍ ଟ୍ରୁମାନ୍, କାଲି ଭାରତୀୟଙ୍କ ଆମେରିକାରେ ପ୍ରବେଶ ଓ ଆମେରିକାର ନାଗରିକତ୍ୱ-ପ୍ରାପ୍ତି ଆଇନ୍‌କୁ ମଞ୍ଜୁର କଲେ ।' ଏ ଆଇନ୍‌ର ଧାରାମାନଙ୍କ ବିଷୟରେ ବିବରଣୀ ଗାନ୍ଧୀ ମୋତେ ପଚାରି ବୁଝିଲେ ; କେତେ ଜଣ ଭାରତୀୟ ଯାଇ ପାରିବେ ଏବଂ ଆମେରିକୀୟ ନାଗରିକତା ଲାଭ କରିପାରିବେ ଶୁଣିଲେ; ଯୁକ୍ତରାଷ୍ଟ୍ର ଚୀନା ଓ ଜାପାନୀଙ୍କୁ ଏ ସୁବିଧା ଦେଇଛନ୍ତି କି ବୋଲି ପଚାରିଲେ. ।

ଏ ସବୁ କଥା କହିସାରି ମୁଁ କହିଲି, 'ଏବେ ଏ ଯେଉଁ ଆଇନ୍‌ଟି ଭାରତୀୟମାନଙ୍କ ପାଇଁ ପାସ୍ ହେଲା, ସେଥିପାଇଁ ଅନ୍ୟ ସମସ୍ତଙ୍କ ଅପେକ୍ଷା ଅଧିକ ଭାବେ ଦାୟୀ ଆମେରିକାର ଇଣ୍ଡିଆ ଲିଗ୍‌ର ସଭାପତି ମିଷ୍ଟର୍ ଜେ. ଜେ. ସିଂହ । ଆପଣ ତାଙ୍କ ପାଖକୁ ଖଣ୍ଡିଏ ଚିଠି ଦେବେ ?' ଗାନ୍ଧୀ ହଁ ବୋଲି କହିଲେ, ଏବଂ ଅଳ୍ପ କେତେଦିନ ପରେ ମିଷ୍ଟର୍ ଜେ. ଜେ. ସିଂହଙ୍କ ପାଖକୁ ଲେଖିଥିବା ଚିଠିଟି ମୋତେ ଦେଲେ ।

ଡକ୍ଟର୍ ମେହେଟାଙ୍କ ପତ୍ନୀ, ଗୁଲବାଇ ଗୋଟିଏ ବେଲାରେ ଦେଉଳିଆ କରି ବେଲଏ,ଗ୍ରେପ ଛଡ଼ା ହୋଇ ଥିବା ଗ୍ରେଟ ଗ୍ରେଟ କରି କଟା ହୋଇଥିବା ଫଳଖଣ୍ଡ ଆଣି ମୋ ପାଖେ ମଶିଣାରେ ଥୋଇଲେ । ଗାନ୍ଧୀ ତାଙ୍କ ଦ୍ୱିତୀୟ ପ୍ରାତରାଶ ଖାଇ ସାରିଥାନ୍ତି, ତେଣୁ ମୁଁ , ଗାନ୍ଧୀ କହିଲା ବେଳେ ସେତକ ଖାଉଥାଏ । ସେ କହିଲେ, ସେ ଶ୍ରେଣୀହୀନ ଓ ଜାତିହୀନ ଭାବରେ ଭାରତକୁ ଗଢ଼ିବାକୁ ଚେଷ୍ଟା କରୁଛନ୍ତି । ଭାରତରେ ସମସ୍ତେ ଏକ ଜାତି

ହେବେ, ଏବଂ ବ୍ରାହ୍ମଣମାନେ ହରିଜନଙ୍କ ସଙ୍ଗେ ବିବାହ ସଂପର୍କ ସ୍ଥାପନ କରିବେ, ସେଇ ଦିନକୁ ସେ ସନ୍ତୁଷ୍ଟ ଭାବେ ଗୃହିଁ ରହିଛନ୍ତି । ସେ ଦୃଢ଼ ସ୍ୱରରେ କହିଲେ, 'ମୁଁ ଜଣେ ସମାଜ-ବିପ୍ଳବୀ । ହିଂସା ଅସମାନତାରୁ ଜାତ ହୁଏ, ଓ ସମାନତାରୁ ଜାତହୁଏ ଅହିଂସା ।' ଗାନ୍ଧୀଙ୍କ ଧର୍ମ ତାଙ୍କ ସମାଜ-ବିଜ୍ଞାନରେ ଜଡ଼ିତ ହୋଇ ଯାଇଥାଏ ।

ମୁଁ କହିଲି, ମୁଁ ଜାଣେ, କୃଷ୍ଣାଙ୍ଗ ଓ ପିଙ୍ଗଳାଙ୍ଗ ଜାତିମାନଙ୍କ ପ୍ରତି ଦକ୍ଷିଣ ଆଫ୍ରିକାରେ ବିଦ୍ୱେଷ ବଢ଼ିଥିବାରୁ ସେ ଖୁବ୍ କ୍ଷୁବ୍ଧ ହେଉଛନ୍ତି; ସେ ଏହା ବିରୁଦ୍ଧରେ କୋଡ଼ିଏ ବର୍ଷ କାଳ ଲଢ଼ିଥିଲେ । ତା' ପରେ ମୁଁ କହିଲି, 'ମୋର ଆଶା, ଆପଣ ଏ ବିଷୟରେ କୌଣସି ହିଂସାତ୍ମକ କାର୍ଯ୍ୟ କରି ବସିବେ ନାହିଁ । ଆପଣ ତ ଜଣେ ହିଂସ୍ର ଲୋକ ।' ସେ ହସିଲେ । ମୁଁ ଉକ୍ତିର ପ୍ରମାଣ ଯୋଗାଇଲି, 'ଆପଣଙ୍କ ଅନଶନରୁ କେତୋଟିର ମୂଳରେ ହିଂସା ହିଁ ଥିଲା ।'

ସେ ଟିପ୍ପଣୀ କଲେ, 'ଖାଲି କଥାର ଉଗ୍ରତାରେ ମୁଁ ଆବଦ୍ଧ ହେବି ବୋଲି ତୁମେ ଗୃହୁଁଛ ।'

ମୁଁ ହଁ କଲି ।

ସେ କହିଲେ, 'ମୁଁ କେତେବେଳେ ଅନଶନ କରିବି ନିଜେ ଜାଣେ ନାହିଁ । ଭଗବାନ୍ହିଁ ତାହା ନିର୍ଣ୍ଣୟ କରି ଦିଅନ୍ତି । ଅନଶନ କରିବାର ପ୍ରେରଣା ଗୃହଁ କିନ ମୋ ମନରୁ ଆସେ । ମୁଁ କିନ୍ତୁ ବିଚାରହୀନ ଭାବେ ସେପରି କିଛି କରିବି ନାହିଁ । ମୋର ମରିବାକୁ ତ ଇଚ୍ଛା ନାହିଁ ।'

କ୍ୟାମ୍ବ୍ରିଜ୍ ବିଶ୍ୱବିଦ୍ୟାଳୟର ଉପାଧିପ୍ରାପ୍ତ ଜଣେ ତେଜସ୍ୱୀ ତରୁଣ, ନାମ ସୁଧୀର ଘୋଷ, ଗାନ୍ଧୀଙ୍କଠାରୁ ବିଦାୟାଶିଷ ନେବାକୁ ଆସି ପହଞ୍ଚିଲେ । ସେ ବିଲାତ ଯାଉଥାନ୍ତି ଏବଂ ଗାନ୍ଧୀଙ୍କଠାରୁ ପ୍ରଧାନମନ୍ତ୍ରୀ ଷ୍ଟାଟ୍ଲିଙ୍କଠାକୁ ନିଜର ପରିଚୟ-ପତ୍ର ଖଣ୍ଡେ ନେଉଥାନ୍ତି । ଶ୍ରୀ ଘୋଷ ଗାନ୍ଧୀଙ୍କ ପକ୍ଷରୁ କ୍ୟାବିନେଟ୍ ମିଶନ ସଙ୍ଗେ ଦୌତ୍ୟକାର୍ଯ୍ୟ କରିଥିଲେ; ସୂକ୍ଷ୍ମ ରାଜନୀତିକ ସମସ୍ୟାମାନଙ୍କ ବିଷୟରେ ସେ ବିଚକ୍ଷଣ ଭାବେ କ୍ୟାବିନେଟ୍ ମିଶନ୍ ସଙ୍ଗେ ଗାନ୍ଧୀଙ୍କ ପକ୍ଷରୁ କଥାବାର୍ତ୍ତା କରିଥିବା ଫଳରେ ଗାନ୍ଧୀ ପ୍ରୀତ ହୋଇ, ଏବେ ତାଙ୍କୁ ପ୍ରଧାନମନ୍ତ୍ରୀ ଷ୍ଟାଟ୍ଲି, ପେଥିକ୍ ଲରେନ୍ସ୍ ଓ ଅନ୍ୟାନ୍ୟଙ୍କ ସଙ୍ଗେ ତାଙ୍କ ପକ୍ଷରୁ ଯୋଗସୂତ୍ର ରକ୍ଷା କରିବାକୁ ପଠାଉ ଥାନ୍ତି । ବିଭିନ୍ନ ରାଷ୍ଟ୍ରମାନଙ୍କର କର୍ତ୍ତାଙ୍କ ପରି ଗାନ୍ଧୀ ନିଜେ ନିଜର

'ବୈଦ୍ଦେଶିକ ମନ୍ତ୍ରୀ' ହେବାକୁ ଇଚ୍ଛା କରୁଥାନ୍ତି । ସାଧାରଣତଃ ସାଂବଧାନକ ବୈଦେଶିକ ମନ୍ତ୍ରୀ କର୍ତ୍ତାଙ୍କର ଏପରି ଜବରଦସ୍ତିରେ କ୍ଷୁବ୍ଧ ହୋଇଥାନ୍ତି ।

ସେଇଦିନ ଓପରଓଳି, ସାନ୍ଧ୍ୟ ପ୍ରାର୍ଥନା ସଭା ପୂର୍ବରୁ ୨୦ରୁ ୩୦ ବର୍ଷ ଭିତରର ଜଣେ ଭାରତୀୟ ଯୁବକ ମୋ ସଙ୍ଗେ ସାକ୍ଷାତ କରିବାକୁ ଆସିଲେ; ହିନ୍ଦୁ ମହାସଭା ପକ୍ଷରୁ ପ୍ରକାଶିତ ଖଣ୍ଡେ ସାପ୍ତାହିକ ପତ୍ରର ସେ ସମ୍ପାଦକ ବୋଲି କହିଲେ । ସାପ୍ତାହିକ ପତ୍ରଟି ପୁନାରୁ ପ୍ରକାଶିତ ହେଉ-ଥାଏ । ସେ ସେଥିପାଇଁ ମୋ' ଠାରୁ ଗୋଟିଏ ସନ୍ଦେଶ ନେବାକୁ ଅନୁରୋଧ କଲେ । ମୁଁ କହିଲି, ମୁସ୍‌ଲିମ୍ ଲିଗ୍‌କୁ ମୁଁ ଯେଉଁ ଦୃଷ୍ଟିରେ ଦେଖେ, ହିନ୍ଦୁ ମହାସଭାକୁ ତହିଁରୁ ଭଲ ଦୃଷ୍ଟିରେ ଦେଖେ ନାହିଁ । ଉଭୟେ ରାଜନୀତିରେ ଧର୍ମକୁ ଜଡ଼ିତ କରିବାକୁ ଚାହାନ୍ତି । ଟିକିଏ ରୂଢ଼ ଭାବରେ ମୁଁ କହିଲି, 'ହିନ୍ଦୁ ମହାସଭା ଚାହେଁ, ଭାରତରେ ହିନ୍ଦୁ ପ୍ରାଧାନ୍ୟ ରହିବ । ଶ୍ୱେତାଙ୍ଗଙ୍କର ପ୍ରାଧାନ୍ୟ ଭାରତରେ ରହୁ ବୋଲି ଆପଣ କ'ଣ ଚାହାନ୍ତି ?' ଏତିକରେ ଭଦ୍ରଲୋକ ଚାଲିଗଲେ ।

ପ୍ରାକୃତିକ ଚିକିତ୍ସା କେନ୍ଦ୍ରର ଚାରିପଟେ ଗୋଟିଏ ମାଟି ବାଡ଼ ଥାଏ । ବାଡ଼ର ଭିତର ପଟେ ଗୋଟିଏ କାଠ ମଞ୍ଚ ଉପରେ ବସି ଗାନ୍ଧୀ ଓ ତାଙ୍କ ବନ୍ଧୁମାନେ ପ୍ରାର୍ଥନା ସଭା ଚଳାଇଥାନ୍ତି; ଆରପଟ ପଡ଼ିଆରେ ଶହ ଶହ ପୁନାବାସୀ ଠିଆ ହୋଇଥାନ୍ତି । ପ୍ରାର୍ଥନା ସଙ୍ଗୀତ ବୋଲା ହେବା ବେଳେ ବର୍ଷା ଆରମ୍ଭ ହେଲା; ପ୍ରାର୍ଥନାସଭାରେ ସମବେତ ଲୋକେ ନିଜ ନିଜ ଛତା ଟେକିଲେ । ପଛରେ ଥିବା ଲୋକଙ୍କ ଆଡ଼ୁ ପ୍ରତିବାଦସୂଚକ ସ୍ୱର ଶୁଭିଲା; ଛତା ସବୁ ବୁଜା ହୋଇଗଲା । ଜଣେ କିଏ କେବଳ ଗାନ୍ଧୀଙ୍କ ଉପରେ ଖଣ୍ଡେ ଛତା ଟେକିଲେ । ବାହାର ପଟେ ଅଳ୍ପ କେତେ ଶହ ଗଜ ଦୂରରେ ଦୁଇଟି ଭାରତୀୟ କ୍ରିକେଟ୍ ଖେଳାଳୀ ଦଳ ବିଦେଶୀ ଧଳା କନାର ପୋଷାକ ପିନ୍ଧି କ୍ରିକେଟ୍ ଖେଳୁଥାନ୍ତି ।

ରାତିଭୋଜନ ପୂର୍ବରୁ ତାଙ୍କ ସଙ୍ଗେ ଟିକିଏ ବୁଲି ଆସିବାକୁ ଗାନ୍ଧୀ ମୋତେ ଡାକିଲେ । ମୁଁ ମୃଦୁ ପ୍ରତିବାଦ କରି କହିଲି, 'ଏଭଳି ବର୍ଷାରେ ଆପଣ କ'ଣ ବୁଲି ବାହାରୁଛନ୍ତି ?'

ସେ ମୋ ଆଡ଼କୁ ହାତ ବଢ଼ାଇ କହିଲେ, 'ଆସ, ଆସ, ବୁଢ଼ା ମଣିଷ !'

ମୋ ପାଇଁ ସ୍ୱତନ୍ତ୍ରଭାବେ ଗୋଟିଏ ବଖରା ଦିଆ ହୋଇଥାଏ । ଗାନ୍ଧୀ ଯେଉଁ ପିଣ୍ଡିରେ ଶୁଅନ୍ତି, ତାହା ମୋ ଘରର ବାହାର ଦୁଆର ସାମନାରେ । ସନ୍ଧ୍ୟା ଗଡ଼ିଗଲା ପରେ ମୁଁ ଶୋଇବାକୁ ଗଲାବେଳେ ଗାନ୍ଧୀଙ୍କ ଖଟିଆ ପାଖ-ଦେଇ ଗଲି । ମୁଁ କିଛି ନକହି ହାତ ଉଠାଇ ତାଙ୍କୁ ସଂବର୍ଦ୍ଧନା ଜଣାଇ ମୋ' ଘର ଭିତରେ ପଶିବାକୁ ଯାଉଛି ସେ ମୋତେ ଡାକି କହିଲେ, 'ଆଜି ଭଲ କରି ଶୋଇବାକୁ ପଡ଼ିବ, ଶୁଅ; କିନ୍ତୁ ଭୋର ଚାରିଟାରେ ଆମ ପ୍ରାର୍ଥନା ଶବ୍ଦରେ ଆମେ ତୁମର ନିଦ ଭାଙ୍ଗିଦେବୁ ।'

ମୁଁ କହିଲି, 'ମୋର ବିଶ୍ୱାସ, ତାହା ହୋଇ ପାରିବ ନାହିଁ ।' ଏହା କହି ମୁଁ ତାଙ୍କ ଖଟ ପାଖକୁ ଗଲି ।

ଶ୍ରୀମତୀ ମେହେଟାଙ୍କୁ ହିନ୍ଦୁସ୍ତାନୀ ବା ଗୁଜରାଟିରେ କ'ଣ କହିଲେ, ମୋର ମନେ ହେଲା ତାଙ୍କୁ ଭର୍ତ୍ସନା କରୁଛନ୍ତି । ଗାନ୍ଧୀ ମୋତେ କହିଲେ, 'ଆମେ ତମର ବିଷୟରେ କଥାବାର୍ତ୍ତା ହେଉଛୁ; ତୁମର ବୋଧହୁଏ ତାହା ଜାଣିବାକୁ କୌତୂହଳ ହେଉଛି ।'

ମୁଁ ଉତ୍ତର ଦେଲି, 'ମୋ ବିଷୟରେ କଥାବାର୍ତ୍ତା ହେଉଛନ୍ତି ବୋଲି ମୁଁ କେଜାଣି କେମିତି ଜାଣି ପାରିଥିଲି । ମୋ ବିଷୟରେ କଥାବାର୍ତ୍ତା ହେଉଛନ୍ତି ବୋଲି କହି, କଣ କଥାବାର୍ତ୍ତା ହେଉଛନ୍ତି ନ କହିବାଦ୍ୱାରା ଏବେ ଆପଣ ମୋର ଅବସ୍ଥା ଆହୁରି ଖରାପ କରୁଛନ୍ତି । ଆପଣ କଥାଟା ସଫା ନ କହିବା ପର୍ଯ୍ୟନ୍ତ ମୁଁ ଆପଣଙ୍କ ବିରୁଦ୍ଧରେ ସତ୍ୟାଗ୍ରହ କରିବି ।'

ସେ ହସି ହସି କହିଲେ, 'ବହୁତ ଆଚ୍ଛା ।'

'ମୁଁ ଆପଣଙ୍କ ଶେଯ ପାଖେ ରାତି ତମାମ ବସିବି ।'

ପ୍ରଫୁଲ୍ଲ ଚିତ୍ତରେ ଗୀତ ଗାଇଲା ପରି ସେ କହିଲେ, 'ଚାଲୁ ତେବେ ।'

'ମୁଁ ଏଇଠି ବସି ବସି ଆମେରିକୀୟ ସଙ୍ଗୀତ ଗାନ କରିବି ।'

'ବହୁତ ଆଚ୍ଛା, ତେବେ ତ ତୁମ ଗୀତର ତାନରେ ମୋର ନିଦ ହୋଇଯିବ ।'

ଉପସ୍ଥିତ ସମସ୍ତେ ଆମର ଏ କୌତୁକରେ ଆମୋଦ ଅନୁଭବ କରୁଥାନ୍ତି ।

ଗାନ୍ଧୀଙ୍କ ହସ ମୁହଁ ଓ ମନ ଉଭୟର ; ଏଥିରେ ଆମୋଦ ଥାଏ ଓ ମନର ମେଳ ଥାଏ; ଅନ୍ତତଃ ଆମୋଦ ସଙ୍ଗେ ଅନ୍ୟର କଥା ଓ

କାର୍ଣ୍ଣିରେ ଅନ୍ତରାୟ ନ ହେବାର ପ୍ରବୃତ୍ତି ଥାଏ । ଅସି ଯୁଦ୍ଧବେଳେ ଶିର-ସ୍ତ୍ରାଣର ଉପର ଅଂଶ ଉପରକୁ ଉଠିଯାଇ ତଳଅଂଶ ତଳକୁ ଖସି ଯିବାରେ ବି ଯେଉଁ ଲୋକ ବ୍ୟସ୍ତ ନହୋଇ ବେପରୁଆ ହସି ପାରେ, ଗାନ୍ଧୀଙ୍କ ହସ ସେଇ ଲୋକର ହସ ପରି ।

ବହୁତ ଡେରି ହୋଇ ଯାଇଥାଏ, ମୁଁ ସମସ୍ତଙ୍କଠାରୁ ବିଦାୟ ନେଲି । ମିସେସ୍ ମେହେଣ୍ଟାଙ୍କ ଠାରୁ ଶୁଣିଲି, ମୋତେ ୯ଟା ବେଳେ ଜଳଖିଆ ନ ଦେଇ, ତାଙ୍କ କୋଠରୀରେ ୧୧ଟାବେଳେ ଦେଇଥିବାରୁ, ଏବଂ ସେପରି କରିବାଦ୍ୱାରା ସମସ୍ତଙ୍କ ମଧ୍ୟାହ୍ନ ଭୋଜନର ସମୟ ଗଡ଼ିଯିବାରୁ ଗାନ୍ଧୀ ଭର୍ତ୍ସନା କରିଥିଲେ । ମିସେସ ମେହେଣ୍ଟାଙ୍କର ଦ୍ୱିତୀୟ ଦୋଷ, ସେ, ସମସ୍ତେ ଜଳଖିଆ ବେଳେ ଯାହା ଖାଇଲେ ତାହା ମୋତେ ନ ଦେଇ ସ୍ୱତନ୍ତ୍ର ଖାଦ୍ୟ ଦେଇଥିଲେ । ଆଶ୍ରମରେ କାହାରି ପ୍ରତି କୌଣସି ପ୍ରକାର ଭିନ୍ନାଭିନ୍ନ କରିବାର ନୁହେଁ ।

ସକାଳୁ ଉଠିଲା ବେଳକୁ ମୋତେ ବେଶ୍ ଫୁର୍ତ୍ତି ଲାଗୁଥାଏ । ମୁଁ ଗାନ୍ଧୀଙ୍କ କୋଠରୀ ଭିତରକୁ ଗଲି । ସେ ମୋତେ ବୁଲିଯିବାକୁ ଡାକିଲେ । ଭାରତର ରାଜନୈତିକ ପରିସ୍ଥିତିରେ ଯୁଦ୍ଧ ପରେ କଣ କରାଯାଇ ପାରେ ବୋଲି ଗାନ୍ଧୀଙ୍କର ମତ ମୁଁ ପଚାରିଲି । ଗାନ୍ଧୀ ସାଙ୍ଗେ ସାଙ୍ଗେ ଉତ୍ତର ଦେଲେ, 'ମିଳିତ ସରକାର ଗଢ଼ିବା ପାଇଁ ବ୍ରିଟେନ୍ କଂଗ୍ରେସକୁ ନିଶ୍ଚୟ ଆହ୍ୱାନ କରିବ । ମୋର ବିଶ୍ୱାସ, ପ୍ରତ୍ୟେକ ସଂଖ୍ୟାଲଘୁ ସଂପ୍ରଦାୟ ଏ ସରକାରରେ ସହଯୋଗ କରିବେ ।'

'ମୁସ୍‌ଲିମ୍ ଲିଗ୍‌ର ସଦସ୍ୟମାନେ ଏ ସରକାରରେ ଯୋଗ ଦେବା ଆପଣଙ୍କ ଇଚ୍ଛା କି ?'

ସେ ଉତ୍ତର ଦେଲେ 'ନିଶ୍ଚୟ; ମିଷ୍ଟର୍ ଜିନ୍ନା ଇଚ୍ଛା କଲେ, ଏ ସରକାରର ଗୋଟିଏ ବିଶେଷ ଗୁରୁତ୍ୱପୂର୍ଣ୍ଣ ପଦବୀରେ ଆସୀନ ହେବେ ।'

ଜଣେ ଭାରତୀୟ ଯୁବତୀଙ୍କ ସଙ୍ଗେ କଥାବାର୍ତ୍ତା ହେବାକୁ ସେ କିଛି ସମୟ ପାଇଁ ମୋ ପାଖରୁ ଚାଲିଗଲେ । ଯୁବତୀଙ୍କର ସଙ୍ଗେ ପୂର୍ବ ଦିନ, ବାରଣ୍ଡାର ଏ ମୁଣ୍ଡରୁ ସେ ମୁଣ୍ଡ ଯା ଆସ କରି ଉତ୍ତେଜିତ ଭାବେ କଥାବାର୍ତ୍ତା ହେବାର ମୁଁ ଲକ୍ଷ୍ୟ କରିଥିଲି । କିଛି ସମୟ ପରେ ଯୁବତୀଟି ଚାଲି ଯାଇଥିଲେ ଏବଂ ଜଣେ ଯୁବକ ଗାନ୍ଧୀଙ୍କ ପାଖକୁ ଆସି ସେହିପରି ଯା ଆସ କରି ପ୍ରାୟ ପନ୍ଦର ମିନିଟ ପର୍ଯ୍ୟନ୍ତ କଥାବାର୍ତ୍ତା ହୋଇ ଗଲେ । ପରେ ପ୍ୟାରେଲାଲ୍‌ଙ୍କଠାରୁ

ମୁଁ ଏ ଦୁହିଁଙ୍କର ପରିଚୟ ପାଇଥିଲି । ଯୁବତୀଟି ଅସ୍ପୃଶ୍ୟ ଜାତିର, ଗୋଟାଏ ଦୁର୍ଘଟଣା ଫଳରେ ଟିକିଏ ଖୋଟେଇଥାନ୍ତି । ଯୁବକ ଜଣକ ବ ହରିଜନ, ଯୁବତୀଟିର ସ୍ୱାମୀ; ତାଙ୍କର କହୁଣୀଠାରୁ ଗୋଟିଏ ହାତ ଡାକ୍ତରଖାନାରେ କଟା ହୋଇଥାଏ । ସେ ଦୁହିଁଙ୍କ ଭିତରେ ପଡ଼ୁ ନ ଥିବାରୁ ଗାନ୍ଧୀ ତାଙ୍କୁ ମେଳେଇ ଦେବାକୁ ଚାହୁଁଥାନ୍ତି ।

ଯୁବତୀଟି ସଙ୍ଗେ କଥାବାର୍ତ୍ତା ହୋଇ ଗାନ୍ଧୀ ଫେରିବା ପରେ ଆମେ ପୁଣି ଭ୍ରମଣ ଆରମ୍ଭ କଲୁଁ । ସେ ଇଯୁରୋପ ଓ ଋଷିଆ ବିଷୟରେ ଆଲୋଚନା ଆରମ୍ଭ କଲେ । ମୁଁ କହିଲି, ମସ୍କୋର ପୃଥିବୀ-ସଭ୍ୟତାକୁ ଦେବାକୁ କିଛି ନାହିଁ; ଏହା ଜାତୀୟବାଦୀ ହୋଇ ସାମ୍ରାଜ୍ୟବାଦୀ ଗତି ଧରିଲାଣି । ସ୍ଲାଭ ଗୋଷ୍ଠୀର ଲୋକେହିଁ ପୃଥିବୀରେ ଶ୍ରେଷ୍ଠ ବୋଲି ସେ ମନେ କରିବାକୁ ଆରମ୍ଭ କଲାଣି । ଏ ମନୋବୃତ୍ତି ପାଶ୍ଚାତ୍ୟ ଦେଶମାନଙ୍କ ଆଶା ଆକାଂକ୍ଷା ପୂରଣ କରି ପାରିବ ନାହିଁ । ପାଶ୍ଚାତ୍ୟ ଗଣତାନ୍ତ୍ରିକ ରାଷ୍ଟ୍ରମାନେ ଉପଲବ୍ଧି କରିବାକୁ ଆରମ୍ଭ କଲେଣି ଯେ, ଆନ୍ତର୍ଜାତିକ ମନୋବୃତ୍ତି ଓ ଆଧ୍ୟାତ୍ମିକତାଦ୍ୱାରା ହିଁ ବିଶ୍ୱଶାନ୍ତି ସମ୍ଭବ ହେବ ।

ଗାନ୍ଧୀ ପଚାରିଲେ, 'ପାଶ୍ଚାତ୍ୟ ଦେଶକୁ ମୁଁ ଯାଏଁ ବୋଲି କାହିଁକି ଚାହୁଁଛ ?'

ମୁଁ କହିଲି, 'ଆପଣ ପାଶ୍ଚାତ୍ୟ ଦେଶମାନଙ୍କୁ ଯାନ୍ତୁ ବୋଲି ମୁଁ କହୁନାହିଁ । ସେମାନଙ୍କୁ ଆପଣଙ୍କ ବାଣୀ ଶୁଣାନ୍ତୁ ।'

ସେ ଉତ୍ତର ଦେଲେ, 'ଦୁଇଦୁଇ ମିଶି ଚାରି ହୁଏ, ଏକଥା ମୁଁ କହିଲେ ପାଶ୍ଚାତ୍ୟ ଦେଶମାନଙ୍କର କ'ଣ ଭଲ ଲଭ ହେବ ? ଯଦି ସେମାନେ ଉପଲବ୍ଧି କଲେଣି ଯେ, ହିଂସା ଓ ପଶୁବଳ ଅନିଷ୍ଟକର, ତେବେ ମୁଁ ଯାଇ ସ୍ୱତଃ-ପ୍ରତିଭାତ ଏଇ ସତ୍ୟର ପୁନରାବୃତ୍ତି କଲେ କ'ଣ ବା ଅଧିକା ହେବ ? ପୁଣି, ମୋର ତ ଏଠା କାର୍ଯ୍ୟ ସରିନାହିଁ ।'

ମୁଁ କହିଲି, 'ସେ ଯାହାହେଉ, ପାଶ୍ଚାତ୍ୟ ଦେଶମାନେ ଆପଣଙ୍କୁ ଚାହୁଁଛନ୍ତି । ଆପଣଙ୍କ ବାଣୀ ବସ୍ତୁବାଦର ପ୍ରତିରୋଧକ, ତେଣୁ ଷ୍ଟାଲିନ୍-ବାଦ ଓ ରାଷ୍ଟ୍ରସର୍ବସ୍ୱବାଦର ଏହାହିଁ ପ୍ରତିଷେଧକ ।' ୧୯୪୮ଠାରୁ ଭାରତରେ ହିଂସାବାଦର କିପରି ବୃଦ୍ଧି ହୋଇଛି ସେ କହିବାକୁ ଲାଗିଲେ ।

ସହରକୁ ପଡ଼ିଥିବା ରାସ୍ତା ଉପରେ ଗାନ୍ଧୀ ଏ ପାଖ ସେ ପାଖ ହେବାର ଦେଖି ବାଟୋଇମାନେ ଏକାଠି ଠିଆ ହୋଇ ତାଙ୍କ ଆଡ଼କୁ ଚାହିଁ-

ଥାନ୍ତି । ନିକଟରେ କଳକାରଖାନା ଥାଏ; ବେଳେ ବେଳେ ତହିଁରୁ ସିଟି ବାଜୁଥାଏ । କିନ୍ତୁ ଏସବୁ ସତ୍ତ୍ୱେ ଗାନ୍ଧୀଙ୍କର କଥା ବନ୍ଦ ହେଉ ନ ଥାଏ; ନିଜର ସ୍ୱର ବି ସେ ଚଡ଼ା କରୁ ନଥାନ୍ତି; ସମସ୍ତ ଗୋଳମାଳ ଭିତରେ ସେ ସ୍ୱାଭାବିକ ସ୍ୱରରେ କହି ଚାଲିଥାନ୍ତି ।

'ଗାନ୍ଧୀଙ୍କ ସହିତ ଏକ ସପ୍ତାହ' (A week with Gandhi) ବୋଲି ମୁଁ ଯେଉଁ ବହି ଲେଖିଥିଲି ତାହା ପଢ଼ିଛନ୍ତି କି ବୋଲି ମୁଁ ତାଙ୍କୁ ପଚାରିଲି । ସେ ପଢ଼ିଥିଲେ ଏବଂ କେତେକ ଛୋଟକାଟ ଭ୍ରମ ସତ୍ତ୍ୱେ (ଉଦାହରଣ ସ୍ୱରୂପ ମୁଁ କସ୍ତୁରବାଙ୍କ ବୟସ ଭୁଲ କରିଥିଲି) ବହିଟି ଭଲ ହୋଇଛି ବୋଲି କହିଲେ । ମୋର 'ଲୋକେ ଓ ରାଜନୀତି' ( Men and Politics) ପୁସ୍ତକଟି ମଧ୍ୟ ସେ ପଢ଼ିଥିଲେ । ଯାହାକୁ ସେ ପଢ଼ିଥିଲେ ତାଙ୍କ 'ଲାଇବ୍ରେରୀ'ରେ ; ତାଙ୍କ ପାଇଖାନା ଥିଲା ତାଙ୍କ ଲାଇବ୍ରେରୀ, ସେଠାରେ ଗୋଟିଏ ସେଲ୍‌ଫ୍‌ରେ କେତେ ଖଣ୍ଡି ବହି ରଖିଥାନ୍ତି ।

ନେହେରୁ କୃଷ୍ଣ ମେନନ୍‌ଙ୍କୁ ସାଙ୍ଗରେ ଧରି ଚକରାଟା କେନ୍ଦ୍ରରେ ଆସି ପହଞ୍ଚିଲେ । ଏହି କୃଷ୍ଣମେନନ୍ ପରେ ହେଲେ ଲଣ୍ଡନରେ ଭାରତର ହାଇ କମିଶନର୍ । ଗାନ୍ଧୀ ମୋତେ କହିଥିଲେ, 'ମନର କଥାକୁ ବାଗ୍ମିତାରେ ପଲ୍ଲବିତ କରି ପ୍ରକାଶ କରିବାର ପ୍ରବୃତ୍ତି ନେହେରୁଙ୍କର ଅଛି ।' ନେହେରୁ, ମେନନ୍, ମୁଁ ଓ ଆଉ କେତେଜଣ ପ୍ରଶସ୍ତ ସମୃଦ୍ଧ-ଭୋଜନାଳୟରେ ବସି ମଧ୍ୟାହ୍ନଭୋଜନ କଲୁଁ । ମୋ ପାଇଁ ମାଂସ ଚପ୍ ବଢ଼ା ହେଲା । ନେହେରୁ ମାଗିବାରୁ ଆମେ ଦୁହେଁ ତାହାକୁ ବାଣ୍ଟିକରି ଖାଇଲୁଁ ।

ନେହେରୁ ଯେ ମାଂସ ଖାଉଥିଲେ ଓ ସିଗ୍‌ରେଟ୍ ଟାଣୁଥିଲେ ଏହା ଗାନ୍ଧୀଙ୍କୁ ଜଣା ଥିଲା । ସେ ଆପତ୍ତି କରୁ ନ ଥିଲେ । କିନ୍ତୁ ଗାନ୍ଧୀଙ୍କ ଆଗରେ ନେହେରୁ କେବେଁ ସିଗ୍‌ରେଟ୍ ଟାଣୁ ନ ଥିଲେ (ତାଙ୍କ ଆଗରେ କେବଳ ଅବୁଲ୍ କଲାମ୍ ଆଜାଦ୍ ସିଗ୍‌ରେଟ୍ ଟାଣୁଥିଲେ ; ଆଜାଦ୍ ଆସିବାର ଜାଣିଲେ ଆଗରୁ ସିଗରେଟ୍ ପାଉଁସ ରଖିବାକୁ ଗୋଟିଏ ଦାନି ଆଣି ଥୋଇବା ସକାଶେ ଗାନ୍ଧୀ ଶିଷ୍ୟମାନଙ୍କୁ ନିର୍ଦ୍ଦେଶ ଦେଉଥିଲେ ) । ନିଜର ମନର ଭାବକୁ ମନୋରଞ୍ଜକ ଭାବେ, କମନୀୟ ରୀତିରେ ଓ ସମ୍ବେଦନ-ପୂର୍ଣ୍ଣଭାବେ ପ୍ରକାଶ କରିବାରେ ନେହେରୁଙ୍କର ଅସୀମ ପ୍ରତିଭା ଥିଲା । ଗାନ୍ଧୀ ତାଙ୍କୁ ଜଣେ ଶବ୍ଦ-କଳାକାର ବୋଲି କହୁଥିଲେ । ହ୍ୟାରୋ ଓ କ୍ୟାମ୍ବ୍ରିଜରେ

ଦୀର୍ଘ କାଳ ଶିକ୍ଷା ପାଇଥିବା ଯୋଗୁଁ ତାଙ୍କର ଅଭାବ ବ୍ରିଟିଶ୍ ଢଙ୍ଗ ହୋଇ ଯାଇଥିଲା, ଏବଂ ପରେ ଜେଲ୍ ଖାନାରେ ବହୁବର୍ଷ କଟାଇବା ଫଳରେ ତାଙ୍କ ମନ ଅତି ଶକ୍ତ ହୋଇଯାଇଥିଲା । ୧୯୪୨ରୁ ୧୯୪୫ ପର୍ଯ୍ୟନ୍ତ ଦୀର୍ଘ କାରାବାସ ଭିତରେ ତାଙ୍କର କେଶ ଏକାବେଳକେ ଶୁକ୍ଳ ହୋଇ ଯାଇଥିଲା ଏବଂ ମସ୍ତକର ଅଧିକାଂଶ ଚନ୍ଦା ହୋଇ ଯାଇଥିଲା, ତଥାପି ତାଙ୍କର ଲାବନ୍ୟର କୌଣସି ହାନି ହୋଇ ନ ଥାଏ । ରାଜନୈତିକ ଜୀବନ ଓ ପାରିବାରିକ ଜୀବନ, ଉଭୟରେ ସେ ବହୁ ଯନ୍ତ୍ରଣା ସହିଛନ୍ତି । ସେ ହସି ଦେଲା ବେଳେ ତାଙ୍କ ପାଟିର ଦୁଇଟିଯାକ ସୁନ୍ଦର, ଶୁଭ୍ର ଦନ୍ତପଂକ୍ତି ଦିଶିଯାଏ । ତାଙ୍କ ହାସ୍ୟ ହୃଦୟରେ ପୁଲକ ଆଣେ, ଏବଂ ତାଙ୍କ ଅନିଚ୍ଛା-ସତ୍ତ୍ୱେ, ସେଥିରୁ ବିଷାଦର ମୂର୍ଚ୍ଛନା ଆସି ହୃଦୟକୁ ଦ୍ରବୀଭୂତ କରିଦିଏ ।

ଗାନ୍ଧୀ ନେହେରୁଙ୍କୁ ପୁତ୍ର ପରି ସ୍ନେହ କରୁଥିଲେ ଏବଂ ନେହେରୁ ତାଙ୍କୁ ପିତା ପରି ଭକ୍ତି କରୁଥିଲେ । ଗାନ୍ଧୀ ଓ ତାଙ୍କ ମନୋବୃତ୍ତିରେ ଗଭୀର ପାର୍ଥକ୍ୟ ଏହା ନେହେରୁ ଛପାଇ ରଖୁ ନ ଥିଲେ । ବହୁ ସମୟରେ ସେ ଏ ବିଷୟରେ କହୁଥିଲେ ଓ ଲେଖୁଥିଲେ । ଗାନ୍ଧୀ ନେହେରୁଙ୍କ ସ୍ପଷ୍ଟବାଦିତାକୁ ସ୍ୱାଗତ କରୁଥିଲେ । ସେମାନଙ୍କ ଅନ୍ତରରେ ପରସ୍ପର ପ୍ରତି ଯେଉଁ ଆକର୍ଷଣ ତାହା ମତାମତର ସମାନତା ଉପରେ ପ୍ରତିଷ୍ଠିତ ନ ଥିଲା ।

ନେହେରୁଙ୍କ ଅନ୍ତରର ଗଭୀରତମ ପ୍ରଦେଶରେ ଏପରି ଗୋଟାଏ କିଛି ଶକ୍ତି ଅଛି, ଯାହା କି ଆତ୍ମସମର୍ପଣ ବିରୁଦ୍ଧରେ ବିଦ୍ରୋହ କରି ଉଠେ । ଗାନ୍ଧୀଙ୍କ କଥାକୁ ବିନା ପ୍ରତିବାଦରେ ଅଧିକାଂଶ ଭାରତୀୟ ନେତା ମାନି-ନିବାର ଦେଖି ସେ ବିରକ୍ତ ହେଉଥିଲେ । ସେ କିନ୍ତୁ ଗାନ୍ଧୀଙ୍କ ସଙ୍ଗେ ତର୍କ କରୁଥିଲେ, ପ୍ରତିବାଦ କରୁଥିଲେ ଓ ତାଙ୍କ କଥାରେ ଦୋଷ ବାରୁଥିଲେ—ଯଦିଓ ଶେଷରେ ସମସ୍ତଙ୍କ ପରି ତାଙ୍କ କଥାକୁ ମାନି ନେଉଥିଲେ । ତାଙ୍କ ବ୍ୟକ୍ତିତ୍ୱର ସ୍ୱାତନ୍ତ୍ର୍ୟ ରଖିବା ସକାଶେ ନେହେରୁ ସବୁବେଳେ ଲଢ଼ିବାକୁ ତିଆର ଥାନ୍ତି । ତାଙ୍କୁ କେହି କିଣିବାକୁ ବସିଲେ ସେ ଟିପ ଗୁଡ଼ନ୍ତି ନାହିଁ । କିନ୍ତୁ ଶେଷରେ ଯେତେବେଳେ ସେ ଆତ୍ମସମର୍ପଣ କରନ୍ତି, ସେତେବେଳେ ସେ ନମ୍ର ଓ ବିନୀତ ଭାବେ ଆତ୍ମସମର୍ପଣ କରନ୍ତି । ଗାନ୍ଧୀଙ୍କୁ ଜବାହାରଙ୍କ ଦୁର୍ବଳତା ଜଣାଥିଲା ଏବଂ ଜବାହାର ବି ନିଜର ଅଭାବ କେଉଁଠି କ୍ରମେ କ୍ରମେ ଜାଣିବାକୁ ସମର୍ଥ ହୋଇଥିଲେ । ଜୀବନତମାମ ରାଜନୀତି କରିଥିଲେ ହେଁ, ମହାତ୍ମାଜୀ ଓ ପଟେଲଙ୍କ ପରି, ଜବାହାରଲାଲ ଦଳଗତ ରାଜନୀତିର

ଜଟିଳତା ଭିତରେ ପଶି ପାରି ନ ଥିଲେ । ସେ ଜନଗଣଙ୍କୁ ମାତ୍ର ନିର୍ଦ୍ଦେଶ ଦେବାକୁ ଜନନେତା, ଶାସନ ସଂସ୍ଥାରେ ହସ୍ତକ୍ଷେପ କରିବା ଲୋକ ନୁହନ୍ତି । ସରକାରର ମାତ୍ର ସେ ବାହାରେ ବ୍ୟାଖ୍ୟାନ କରିବାରେ ଦକ୍ଷ ; ଭିତରେ ସେ ମାତ୍ରକୁ ରୂପ ଦେବା ତାଙ୍କର କାମ ନୁହେଁ । ସେ କେବଳ ଶିକ୍ଷିତ ଲୋକଙ୍କୁ ପ୍ରଭାବିତ କରନ୍ତି ; କିନ୍ତୁ ସେମାନଙ୍କ ବୁଦ୍ଧିକୁ ପ୍ରଭାବିତ କରି ନ ପାରି, ହୃଦୟକୁ ପ୍ରଭାବିତ କରିବାରେ ସମର୍ଥ ହୁଅନ୍ତି । ଭାରତରେ ଏ ଶକ୍ତି ଖୁବ୍ କାମ ଦିଏ । ଜବାହାର ଧନ, ବିଦ୍ୟା ଓ ପଦମର୍ଯ୍ୟାଦାରେ ଉଚ୍ଚ ଅଭିଜାତ ସମ୍ପ୍ରଦାୟର ଲୋକ ; ଅବଶ୍ୟ ତାଙ୍କ ଆଭିଜାତ୍ୟ ଜନାନୁରାଗର ଅନ୍ତରାୟ ହୁଏ ନାହିଁ । ପୃଥିବୀର ପ୍ରଭାବଶାଳୀ ରାଷ୍ଟ୍ରଚାଳକଙ୍କ ଭିତରେ ସେ ଅନ୍ୟତମ ହେଲେ ହେଁ, ପ୍ରବୀଣ ରାଷ୍ଟ୍ରନାୟକର ଗୁଣ ତାଙ୍କଠାରେ ନାହିଁ । ସେ ଜଣେ ଭଦ୍ର ଲୋକ, ରାଷ୍ଟ୍ରଚାଳକ ଗୋଷ୍ଠୀରେ ଭୁଲରେ ପଶି ଯାଇଛନ୍ତି । ଲୋକେ ତାଙ୍କୁ ସ୍ତୁତି କରନ୍ତି ; ଏହାର ଫଳ ଜବାହାରଲାଲ ତାଙ୍କ ଶାସନସଂସ୍ଥାର ପ୍ରକୃତ ଚାଳକଙ୍କୁ ଦେଇ ଦିଅନ୍ତି ।

ଭାରତବର୍ଷରେ ନେହେରୁଙ୍କର ଅନେକ ସମୟରେ ହଠାତ୍ ବଦ୍‌ମେଜାଜର ଉଚ୍ଛ୍ୱାସ ବାହାରି ପଡ଼େ, ଏବଂ ସେ ହଠାତ୍ କ୍ରୋଧ ପ୍ରକାଶ କରି ଦିଅନ୍ତି । ବେଳେବେଳେ ସେ ଯାହାଙ୍କ ଉପରେ ରାଗି ଉଠନ୍ତି ତାଙ୍କ ଉପରେ ହାତ ଉଠାଇ ଦିଅନ୍ତି । ତାଙ୍କର ଅସୀମ ଶାରୀରିକ ବଳ ଓ ସାହସ । ବେଳେବେଳେ ସାମ୍ବାଦିକ ସମ୍ମିଳନୀମାନଙ୍କରେ ସେ ଲୋକମତକୁ ଚେଡ଼ି ବିଚାରହୀନ ଭାବେ କଥା କହି ଦିଅନ୍ତି । ଏସବୁ ନିଜର ଶକ୍ତି ଆହରଣ କରିବାକୁ ଚେଷ୍ଟା ବୋଲି ଧରାଯାଇପାରେ । ତାଙ୍କଠାରେ ଯାହା ନ ଥିଲା, ଗାନ୍ଧୀଙ୍କଠାରେ ସେଇ ମନର ବଳ ଓ ଚରିତ୍ରର ନିର୍ମଳତା ଦେଖି ଜବାହାରଲାଲ ଗାନ୍ଧୀଙ୍କ ପ୍ରତି ଏତେ ଆକୃଷ୍ଟ ହୋଇଥିଲେ ଓ ତାଙ୍କର ବଶୀଭୂତ ହୋଇଥିଲେ -- ଏହା ନିଃସନ୍ଦେହରୂପେ କୁହାଯାଇପାରେ ।

ନେହେରୁଙ୍କ ପୁସ୍ତକାବଳୀରୁ ତାଙ୍କ ଅନ୍ତରର ଶ୍ରୀ, ଆଦର୍ଶର ମହତ୍ତ୍ୱ ସଙ୍ଗେ ତାଙ୍କ ଆତ୍ମାଭିମାନର ପରିଚୟ ମିଳେ । କିନ୍ତୁ ଗାନ୍ଧୀଙ୍କର ଦୃଷ୍ଟି ସବୁବେଳେ ନିଜଠାରୁ ମୁକ୍ତ ରହି ବାହାରେ ଖେଳୁଥିଲା । ତାଙ୍କ ନିଜର ବ୍ୟକ୍ତିତ୍ୱ ବା ସ୍ୱାର୍ଥ ତାଙ୍କ ମୁଣ୍ଡରେ କେତେବେଳେ ବୋଝ ହେଉ ନ ଥିଲା । ନେହେରୁଙ୍କୁ କିନ୍ତୁ ସବୁବେଳେ ନିଜର ସମସ୍ୟା ସମାଧାନ କରିବାରେ ବ୍ୟସ୍ତ ହେବାକୁ ପଡ଼ୁଥିଲା ।

ପ୍ରାକୃତିକ ଚିକିତ୍ସାକେନ୍ଦ୍ରରେ ମୋ' ରହଣିର ସେଇ ଦ୍ୱିତୀୟ ଦିନ, ଓପରଓଳି ନେହେ[illegible] ମୋ ଶେଯରେ ଗୋଡ଼ ଜାକି ଘଣ୍ଟେକାଳ ବସିଲେ, ସେ କୋଠରୀ [illegible]ଏ ବୋଲି ଚିଡ଼ିକି, ମୁଁ ତାକୁ ଅଧିକାର କରିଥାଏ। ଅଳ୍ପ ଦିନ [illegible]ାଙ୍କ ପ୍ରିୟ ଜନ୍ମଭୂମି କାଶ୍ମୀରକୁ ବୁଲି ଯାଇଥିଲେ। କାଶ୍ମୀର ମହାରାଜା ତାଙ୍କୁ ରାଜ୍ୟର ସୀମା ଭିତରକୁ ପଶିବାପାଇଁ ଅନୁମତି ଦେଲେ ନାହିଁ। ସୀମାନ୍ତରେ ଜଣେ ସଙ୍ଗୀନ-ଖଞ୍ଜା ରାଇଫଲ୍‌ଧାରୀ ସୈନ୍ୟ ତାଙ୍କୁ ରୋକିବାରେ ସେ ତା' ସଙ୍ଗେ ଧସ୍ତାଧସ୍ତି ଆରମ୍ଭ କରିଦେଲେ। ଏଇ ଘଟଣା ବର୍ଣ୍ଣନା କରି ସେ ସେଦିନ ମୋତେ କହିଲେ, 'ଏଣେ ମୁଁ କ୍ୟାବିନେଟ୍ ମିଶନ୍ ସଙ୍ଗେ ଆଲୋଚନାରେ ଲାଗିଛି, ତେଣେ ସେ ମୋତେ କାଶ୍ମୀର ଭିତରେ ପଶିବାକୁ ମନା କରାଗଲା, ତାହା କାଶ୍ମୀରର ବ୍ରିଟିଶ୍ ପଲିଟିକେଲ ଏଜେଣ୍ଟ୍ ଭାଇସ୍‌ରୟଙ୍କୁ ନ ପଚାରି କଦାପି କରି ନଥିବେ ବୋଲି ମୋର ଦୃଢ଼ ବିଶ୍ୱାସ। ଏପରି ସ୍ଥଳେ ଇଂରେଜମାନେ ପ୍ରକୃତରେ ଭାରତ ଛାଡ଼ିବାକୁ ବସିଛନ୍ତି ବୋଲି ବୋଧ ହେଉ ନାହିଁ।

କୃଷ୍ଣମେନନ୍‌ଙ୍କର ମଧ୍ୟ ଜବାହରଲାଲଙ୍କ ପରି ବ୍ରିଟିଶ ସରକାରଙ୍କ ଆନ୍ତରିକତାରେ ଅବିଶ୍ୱାସ ଥିବାର ଦେଖିଲି।

ସେ ନିଜକୁ ସାମ୍ୟବାଦୀ ବୋଲି ମନେ କରନ୍ତି କି, ଏ ପ୍ରଶ୍ନ ମୁଁ ନେହେରୁଙ୍କୁ ପଚାରିଲି। ସେ କହିଲେ, 'ହଁ, ମୁଁ ସାମ୍ୟବାଦୀ, କିନ୍ତୁ ମାର୍କସ୍-ପନ୍ଥୀ ନୁହେଁ। ମୁଁ ସାମ୍ୟବାଦୀ ହେଲେ ହେଁ କୌଣସି ନିର୍ଦ୍ଦିଷ୍ଟ ସାମ୍ୟବାଦ-ମୀତି ମାନେ ନାହିଁ।' (୧୯୫୮ରେ ନୂଆ ଦିଲ୍ଲୀଠାରେ ସେ ମୋତେ କହିଥିଲେ, ଯହୁଁ ଯହୁଁ ତାଙ୍କର ବୟୋବୃଦ୍ଧି ହେଉଛି, ସେ ଲୋକର ଗୃହୀତ ମତବାଦ ଅପେକ୍ଷା ତା'ର ବ୍ୟକ୍ତିଗତ ଚରିତ୍ରଦ୍ୱାରା ଲୋକର ମହତ୍ତ୍ୱ ନିର୍ଣ୍ଣୟ କରିବାକୁ ଠିକ୍ ମନେ କରୁଛନ୍ତି। ସେ ପୁଣି କହିଲେ ଯେ, ଇତିମଧ୍ୟରେ ସେ ଖ୍ରୀଷ୍ଟ, ବୁଦ୍ଧ, ବିଶେଷତଃ ବୁଦ୍ଧଙ୍କ ଆଡ଼କୁ ଅଧିକ ଆକୃଷ୍ଟ ହୋଇଛନ୍ତି, ତେଣୁ ମାର୍କସ୍, ଲେନିନ୍ ଓ ଷ୍ଟାଲିନ୍‌ଙ୍କଠାରୁ ଦୂରେଇ ଯାଇଛନ୍ତି। ପୁଣି, ସେ ଗାନ୍ଧୀଙ୍କ ଚିନ୍ତାଧାରା ପ୍ରତି ଅଧିକ ଆକୃଷ୍ଟ ହେଉଛନ୍ତି ବୋଲି କହିଲେ)।

ଓପରଓଳି କେତେ ଘଣ୍ଟା ସେ ନିରୋଳାରେ ଗାନ୍ଧୀଙ୍କ ସଙ୍ଗେ କଟାଇଲେ; ସେ ଭିତରେ ଆଉ କେହି ଗାନ୍ଧୀଙ୍କ ପାଖକୁ ଯାଇ ନଥିଲେ। ଓପରଓଳି ଗଡ଼ିଗଲା ପରେ ମୁଁ ଗାନ୍ଧୀଙ୍କ କୋଠରୀକୁ ଯାଇ ଦେଖିଲି, ସେ ସୂତାକଟାରେ ଲାଗିଛନ୍ତି। ମୁଁ କହିଲି, ଆପଣ ସୂତାକଟା ଛାଡ଼ି ଦେଲେଣି

ବୋଲି ମୋର ଧାରଣା ହୋଇଥିଲା । ସେ ଉତ୍ତରରେ ମୋତେ ପଚାରିଲେ, 'ଗାନ୍ଧିଜୀଙ୍କୁ ଯେ, ଗାଡ଼ିବ କେମିତି ? ଭାରତରେ ୪୦କୋଟି ଲୋକ ଅଛନ୍ତି । ଏଥିରୁ ୧୦କୋଟିଙ୍କୁ ପିଲା, ବାଉଳା ଇତ୍ୟାଦି ବାଦ୍ ଦେଇ ଦିଅ । ବାକି ତିରିଶ କୋଟି ନରନାରୀ ଯଦି ଦିନକୁ ଘଣ୍ଟାଏ ମାତ୍ର ସୂତା କାଟନ୍ତି ତେବେ ଆମକୁ ସ୍ୱରାଜ୍ୟ ମିଳିଯିବ ।'

ମୁଁ ପଚାରିଲି, 'ଏହାର ଆର୍ଥନୀତିକ ଲାଭ ଯୋଗୁଁ ନା ଆଧ୍ୟାତ୍ମିକ ପ୍ରଭାବରେ ?'

ସେ ଉତ୍ତର ଦେଲେ, 'ଉଭୟ ଆଉ । ଜଣେ ହିଟ୍‌ଲର୍ ହୁକୁମ ଦେଉଛି ବୋଲି ନୁହେଁ, ସମସ୍ତେ ଏକ ଆଦର୍ଶରେ ଅନୁପ୍ରାଣିତ ହୋଇଛନ୍ତି ବୋଲି, ଯଦି ୩୦ କୋଟି ଲୋକ ଦିନକେ ଥରେ ଏକ ହିଁ କାର୍ଯ୍ୟ କରି ବସନ୍ତି ତେବେ ଯେଉଁ ଏକଲକ୍ଷ୍ୟତାର ସୃଷ୍ଟି ହେବ ସେଥିରେ ସ୍ୱାଧୀନତା ବଳେ ବଳେ ଆସିଯିବ ।'

ମୁଁ କହିଲି, 'ମୋ ସଙ୍ଗେ କଥାବାର୍ତ୍ତାରେ ଆପଣ ସୂତାକଟା ବନ୍ଦ କରିବା ଦ୍ୱାରା ତା' ହେଲେ ସ୍ୱରାଜ୍ୟ ବିଳମ୍ବିତ ହେଉଛି ।'

ସେ କହିଲେ 'ହଁ, ତୁମ ଯୋଗୁଁ ସ୍ୱରାଜ୍ୟ ଛ' ଗଜ ପଛେଇ ଗଲାଣି ।'

ଅହମେଦାବାଦରେ ସାଂପ୍ରଦାୟିକ ଗଣ୍ଡଗୋଳ ଲାଗି ରହିଥାଏ । ସେ ବିଷୟ ଜଣାଇବା ପାଇଁ ବମ୍ବେ ପ୍ରଦେଶରେ ପ୍ରଧାନମନ୍ତ୍ରୀ ଖେର୍ ଓ ଘରୋଇ ବିଭାଗ ମନ୍ତ୍ରୀ ଦେଶାଇ ଗାନ୍ଧୀଙ୍କ ପାଖେ ଆସି ପହଞ୍ଚିଲେ । ରାତି ୯ଟାରେ ନେହେରୁ ଓ ମେନନ୍‌ଙ୍କ ସଙ୍ଗେ ମୁଁ ଦେଶାଇଙ୍କ ପୁନା ବାସ-ଭବନକୁ ଗଲି । ଗଣ୍ଡଗୋଳ ପାଇଁ ସମସ୍ତ ଦୋଷ ଦେଶାଇ ମୁସଲମାନ୍‌ଙ୍କ ଉପରେ ଲଦିଲେ । ରାତି ଅଧର ଅଳ୍ପ ସମୟ ପୂର୍ବେ ନେହେରୁ ଓ ମେନନ୍ ବମ୍ବେ ଯିବାକୁ ଟ୍ରେନ୍ ଧଇଲେ ।

ତତ୍‌ପରଦିନ ସକାଳେ ଦଶଜଣ ସହଯାତ୍ରୀଙ୍କ ସହିତ ଗାନ୍ଧୀ ଓ ମୁଁ ଚାଲି ଚାଲି ପୁନା ରେଲ୍‌ଷ୍ଟେସନ୍‌କୁ ଯାଇ ବମ୍ବେ ଯିବାକୁ ଏକସ୍‌ପ୍ରେସ୍ ଧରିଲୁ । ଆମ ସମସ୍ତଙ୍କ ପାଇଁ ଗୋଟିଏ ସ୍ୱତନ୍ତ୍ର ଥାର୍ଡ୍ କ୍ଲାସ ଡବା ଦିଆଗଲା । ଏ ଡବାର ଦୁଇ ପାଖକୁ ଲାଗି ଏ ମୁଣ୍ଡ୍ର ସେ-ମୁଣ୍ଡ ପର୍ଯ୍ୟନ୍ତ ଦୁଇଟି ଶକ୍ତ କାଠ ବେଞ୍ଚ, ଓ ମଝିରେ ଆଉ ଗୋଟିଏ ବେଞ୍ଚ । ବାଟସାକ ଘୋର ବର୍ଷା ହେଲା । ଅଳ୍ପ ସମୟ ପରେ ଛାତରୁ ଏବଂ ଝରକା ଓ ଦୁଆର ସନ୍ଧିରୁ

ଡବା ଭିତରେ ପାଣି ପଡ଼ିଲା ଓ ପଶିଲା । ଡବାର ଚଟାଣରେ ପ୍ରଶସ୍ତ ପାଣି-ଗାଡ଼ିଆମାନ ସୃଷ୍ଟି ହେଲା । ବାଟରେ ଗାଡ଼ି ରହୁଥିବା ଷ୍ଟେସନମାନଙ୍କରେ ସ୍ଥାନୀୟ କଂଗ୍ରେସ ନେତାମାନେ ଆମ ଡବାରେ ପଶି ଗାନ୍ଧୀଙ୍କ ସଙ୍ଗେ କଥାବାର୍ତ୍ତା କରୁଥାନ୍ତି । ସ୍ୱାର ଭିତରେ ଯେଉଁ ସମୟ ମିଳୁଥାଏ ସେଥିରେ ଗାନ୍ଧୀ ହରିଜନ ପାଇଁ ଗୋଟିଏ କ୍ଷୁଦ୍ର ପ୍ରବଂଧ ଲେଖିଲେ, ଓ ଆଉ ଗୋଟିଏ ସଂଶୋଧନ କଲେ । ଥରେ ସେ ମୋ ଆଡ଼କୁ ଚାହିଁ ଟିକିଏ ହସିଲେ, ଆମ ଦୁହିଁଙ୍କ ଭିତରେ ଦୁଇଚାରି ପଦ କଥାବାର୍ତ୍ତା ହେଲା । ତାଙ୍କ ସଂପାଦକୀୟ କାର୍ଯ୍ୟ ସରିବାରେ ସେ କାଠ ବେଞ୍ଚରେ ଲମ୍ବ ହୋଇଗଲେ ଏବଂ ମୁହୂର୍ତ୍ତକ ଭିତରେ ଆରାମରେ ଶୋଇଗଲେ । ପ୍ରାୟ ୧୫ ମିନଟ୍ ପର୍ଯ୍ୟନ୍ତ ନିଦ ହେଲା ।

ଗାନ୍ଧୀ ଝରକା ପାଖରେ ବସିଥାନ୍ତି । ପ୍ରତି ଷ୍ଟେସନ୍‌ରେ ପ୍ରବଳ ବର୍ଷା ସତ୍ତ୍ୱେ ବିରାଟ ଜନତା ଜମିଥାନ୍ତି । ଗୋଟାଏ ଷ୍ଟେସନ୍‌ରେ ଦୁଇ ଜଣ ପିଲା ଆସି ଗାନ୍ଧୀଙ୍କ ଝରକା ପାଖେ ବାହାରେ ଡେଇଁ ଡେଇଁ ଉଠୁଥାନ୍ତି ଏବଂ ହାତ ଦେଖାଇ ଚିତ୍କାର କରୁଥାନ୍ତି, 'ଗାନ୍ଧୀଜୀ, ଗାନ୍ଧୀଜୀ, ଗାନ୍ଧୀଜୀ ।' ଦୁହିଁଙ୍କ ବୟସ ପ୍ରାୟ ୧୦ ବର୍ଷ ଲେଖାଏଁ , ତାଙ୍କ ପିଙ୍ଗଳ-ଚର୍ମ ପାଣିରେ ସୁଡ଼ୁବୁଡ଼ୁ ହୋଇଥାଏ, ମୁଣ୍ଡବାଳରୁ ପାଣି ବୋହି ଯାଉଥାଏ, ଗାନ୍ଧୀ ଏମାନଙ୍କ ଆଡ଼କୁ ଚାହିଁ ମୃଦୁ ହାସ୍ୟ କଲେ ।

ମୁଁ ପଚାରିଲି, ଏମାନଙ୍କ ଦୃଷ୍ଟିରେ ଆପଣ କ'ଣ ?

ସେ ତାଙ୍କର ହାତ ଦୁଇଟିକୁ ମୁଠା କରି ନିଜର ଦୁଇ ହନୁ-ହାଡ଼ରେ ରଖିଲେ, ହାତ ମୁଠାର ବୁଢ଼ା ଆଙ୍ଗୁଠି ଦୁଇଟି ଉପରକୁ ଉଠିଥାଏ ; ମୋତେ କହିଲେ 'ମୁଣ୍ଡରେ ଶିଂଘ ଥିବା ଗୋଟିଏ ମଣିଷ ; ଗୋଟାଏ ବିଚିତ୍ର ଦୃଶ୍ୟ ।'

ବମ୍ବେ ଷ୍ଟେସନରେ ଲୋକ ଭିଡ଼ରୁ ରକ୍ଷା ପାଇବା ପାଇଁ ଗାନ୍ଧୀ ବମ୍ବେ ଅନ୍ତଃପାତୀ ଗୋଟିଏ ଛୋଟ ଷ୍ଟେସନ୍‌ରେ ଓହ୍ଲାଇ ଗଲେ । ସେ ଓ କଂଗ୍ରେସର ଅନ୍ୟ ନେତାମାନେ ନିଖିଳ ଭାରତ କଂଗ୍ରେସ କମିଟିର ଏକ ଅଧିବେଶନ ନିମନ୍ତେ ବମ୍ବେଠାରେ ସମବେତ ହେଉଥାନ୍ତି । କାର୍ଯ୍ୟକାରୀ କମିଟି ଭବିଷ୍ୟତ ପାଇଁ ସଂବିଧାନ ଗଢ଼ିବାକୁ ଆହୂତ ମହାସଭାରେ ଯୋଗ ଦେବାକୁ ସମ୍ମତ ଓ ମଧ୍ୟବର୍ତ୍ତୀକାଳୀନ ସରକାରରେ ଯୋଗଦେବାକୁ

ଅସମ୍ମତ ହୋଇ ଯେଉଁ ପ୍ରସ୍ତାବ ପାସ୍ କରିଥାନ୍ତି ତା'ଉପରେ ମତ ଦେବାକୁ ନି.ଭା.କଂ. କ ର ଅଧିବେଶନ ଡକା ଯାଇଥାଏ ।

ଏହି କମିଟିର ଦୁଇଦିନବ୍ୟାପୀ ଅଧିବେଶନ ପାଇଁ ଥିଏଟର୍ ପ୍ରେକ୍ଷାଳୟ ପରି ଗୋଟାଏ ହଲ ନିର୍ମିତ ହୋଇଥାଏ । ମଞ୍ଚର ଚଟାଣ ଶୁଭ୍ର ଖଦ୍ଦରେ ଆବୃତ ହୋଇଥାଏ । ଏହାଠାରୁ କଥଞ୍ଚିତ୍ ସୂକ୍ଷ୍ମ ଖଦ୍ଦି-ପରିହିତ ନେତାମାନେ ମଞ୍ଚର ଚଟାଣରେ ବସିଥାନ୍ତି ଓ ପଛପଟ ପର୍ଦ୍ଦାକୁ ଲାଗି ରଖାହୋଇଥିବା ପ୍ରକାଣ୍ଡ ତକିଆମାନଙ୍କରେ ଆଉଜିଥାନ୍ତି । ମଞ୍ଚର ବାଁ ପଟକୁ ଟିକିଏ ପଛରେ ଗୋଟାଏ ବଡ଼ ଖଟ ପରି ଆସନ ପଡ଼ିଥାଏ । ଏହା ମଧ୍ୟ ଶୁଭ୍ର ଖଦ୍ଦରେ ଆବୃତ ହୋଇଥାଏ । ଏଥିରେ କେହି ବସି ନ ଥାନ୍ତି । ଏ ଅଧିବେଶନରେ ସଭାପତିତ୍ୱ କରୁଥାନ୍ତି ନେହେରୁ । ସେ ପିନ୍ଧିଥାନ୍ତି ଗୋଟିଏ ଟପା ଧଳା ଖଦ୍ଦର ପାଇଜାମା; ଲଗାଇଥାନ୍ତି ଜଂଘର ଅଧାପର୍ଯ୍ୟନ୍ତ ଲମ୍ବିଥିବା ଗୋଟିଏ ଧଳା କୁରୁତା ; ତା' ଉପରେ ଥାଏ, ବାଦାମୀ ରଙ୍ଗର ଗୋଟିଏ ହାତକଟା ଫତେଇ । ତାଙ୍କ ଚଉକି ପାଖରେ ରଖା ହୋଇଥିବା ଗୋଟିଏ ମାଇକ୍ରୋଫୋନ୍ (କଥାକୁହା ଯନ୍ତ୍ର) ସେ ବ୍ୟବହାର କରୁଥାନ୍ତି । ନିଖିଳଭାରତ କଂଗ୍ରେସ କମିଟିର ବିଧିବଦ୍ଧ ମେମ୍ବର ୨୫୦ ଜଣଙ୍କ ସଙ୍ଗେ, ଶହ ଶହ ଦର୍ଶକ ଏବଂ କେତେ କୋଡ଼ି ଭାରତୀୟ ଓ ବୈଦେଶିକ ସାମ୍ବାଦିକ ମଞ୍ଚର ସମ୍ମୁଖବର୍ତ୍ତୀ ହଲରେ ବସିଥାନ୍ତି ।

ନାଟକର ପ୍ରେକ୍ଷାଳୟ ପରି ଟିକିଏ ଖାଲୁଆ ହୋଇଥିବା ହଲରୁ ମଞ୍ଚକୁ ଉଠିବା ପାଇଁ କାଠର ଗ୍ଲେଟ ପାହାଚଟିଏ ହୋଇଥାଏ । ମଞ୍ଚକୁ ବକ୍ତୃତା ଦେବାକୁ ଯାଉଥିବା ମେମ୍ବର ଏହି ପାହାଚ ମୂଳରେ ନିଜର ଚପଲ ଗୁଡ଼ି ଖାଲି ଗୋଡ଼ରେ ମଞ୍ଚ ଉପରେ ଥିବା ମାଇକ୍ରୋଫୋନ୍ ପାଖକୁ ଯାଉଥିଲେ ।

ବକ୍ତୃତା ଚାଲିଥାଏ ; ଜଣେ ନାରୀ ପଛପଟ ପରଦା ଆଡ଼େଇ ଆସିଲେ ଏବଂ ଗୋଟିଏ ଗ୍ଲେଟିଆ ଚେପଟା ବାକ୍ସ ଖାଲି ଥିବା ଖଟିଆ ଉପରେ ଥୋଇ ଦେଇ ଚାଲିଗଲେ । ତା'ର ଟିକିକ ପରେ ଗାନ୍ଧୀ ପ୍ରବେଶ କଲେ; ଖଟିଆ ଉପରେ ବସି ବାକ୍ସଟି ଫିଟାଇଲେ ଓ ସୂତାକାଟିବାରେ ଲାଗିଲେ । ସେ ସଭାଗୃହରେ ଦେଖା ଦେବାମାତ୍ରେ ସମସ୍ତେ ଟିକିଏ ଠିଆ ହୋଇ ତାଙ୍କୁ ଅଭିବାଦନ କଲେ । ଗାନ୍ଧୀ ମୃଦୁହାସ୍ୟ କରି ଏ ଅଭିବାଦନ

ଗ୍ରହଣ କଲେ । ହାତ ତାଳି ଦେଇ ବା ଚିତ୍କାର କରି ଅଭିବାଦନ କରିବା ଏଠାରେ ଅଭଦ୍ରତା ବୋଲି ବିବେଚିତ ହୁଏ ।

ଦ୍ୱିତୀୟ ଦିନ, ସୋମବାର, ଜୁଲାଇ ୭ ତାରିଖ । ଗାନ୍ଧୀ ତାଙ୍କର ନିତ୍ୟନୈମିତ୍ତିକ କଟିବସ୍ତ୍ର ପିନ୍ଧି, ଶୁଭ୍ରଖଦି ଆଚ୍ଛାଦିତ ଖଟିଆ ଉପରେ ବସି ରହି କମିଟିକୁ ନିଜର ବକ୍ତବ୍ୟ ଶୁଣାଇଲେ । ମାଇକ୍ରୋଫୋନ୍‌ର ଚୁଙ୍ଗା ମୁହଁରେ ସେ ହିନ୍ଦୁସ୍ଥାନୀରେ ବକ୍ତୃତା ଦେଲେ । କିନ୍ତୁ ଯନ୍ତ୍ରରେ କ'ଣ ଦୋଷ ହୋଇଥିବାରୁ ତାଙ୍କ ସ୍ୱର ପରିଷ୍କାର ଶୁଣା ଯାଉ ନ ଥାଏ ।

ଯାହାହେଉ ସେ ଲିଖିତ ବକ୍ତୃତା ନ ପଢ଼ି ଭିତରୁ ଯାହା କହିଲେ, ତାହା ହରିଜନରେ ଏବଂ ଭାରତର ପ୍ରତ୍ୟେକ ଦୈନିକ କାଗଜରେ ଅବିକଳ ପ୍ରକାଶିତ ହୋଇଥିଲା । ତାଙ୍କ ଭାଷଣରେ ପ୍ରାୟ ୧୭୦୦ ଶବ୍ଦ ଥିଲା ଏବଂ ସେ ତାହା ଧୀରେ ଧୀରେ କହି ପ୍ରାୟ ୧୫ ମିନିଟରେ ସାରିଲେ । ତାଙ୍କ କୋଠରୀରେ ସେ ଜଣେ ଲୋକକୁ ଯେପରି ଢଙ୍ଗରେ କଥା କହନ୍ତି, ସଭାରେ ବି ସେହିପରି କହିଥିଲେ ।

ସେ କହିଲେ :

ମୁଁ ଶୁଣିଲି, କ୍ୟାବିନେଟ୍ ମିଶନ୍‌ଙ୍କ ପ୍ରସ୍ତାବ ଉପରେ ମୁଁ ପୂର୍ବରେ ଯାହା ସବୁ କହିଛି ତଦ୍ଦ୍ୱାରା ଜନସାଧାରଣଙ୍କ ମନରେ ନାନାପ୍ରକାର ଗୋଳମାଳ ଓ ଭ୍ରାନ୍ତି ଜାତ ହୋଇଛି । ମୁଁ ଜଣେ ସତ୍ୟାଗ୍ରହୀ, ତେଣୁ ସତ୍ୟକୁ କୌଣସିପ୍ରକାର ବିକୃତ ନକରି କହିବାକୁ ସବୁବେଳେ ଚେଷ୍ଟା କରେ; ସତ୍ୟ ବ୍ୟତୀତ କିଛି ମୁଁ କହେ ନାହିଁ । ଆପଣମାନଙ୍କଠାରୁ କିଛି ଲୁଚାଇ ରଖିବା ମୋର କେବେବେଳେ ଇଚ୍ଛା ନୁହେ । କିଛି ମନରେ ଗୋପନ କରି ରଖିବାକୁ ମୁଁ ଘୃଣାକରେ । କିନ୍ତୁ ଯେତେ ହେଲେ ବି ଭାଷା ମନର ଭାବ ପ୍ରକାଶ କରିବାରେ ପ୍ରାୟଶଃ ପୂର୍ଣଭାବେ ସମର୍ଥ ହୁଏ ନାହିଁ । କୌଣସି ଲୋକ ମନର ଅନୁଭୂତି ଓ ଭାବକୁ ସମ୍ପୂର୍ଣରୂପେ ଭାଷାରେ ଫୁଟାଇ ପାରେ ନାହିଁ । ପୂର୍ବର ତ୍ରିକାଳଦର୍ଶୀ ମନୁଋଷି ଓ ଧର୍ମପ୍ରବର୍ତ୍ତକମାନେ ମଧ୍ୟ ଏହା ପାରିନାହାନ୍ତି ... ।

ଦିଲ୍ଲୀର ଗୋଟିଏ ବକ୍ତୃତାରେ ଏହି କ୍ୟାବିନେଟ ମିଶନର ପ୍ରସ୍ତାବ-ମାନଙ୍କ ବିଷୟରେ ମୁଁ କହିବା କଥା ଯାହା ପ୍ରଚରିତ ହୋଇଛି ତାହା ସତ୍ୟ । ମୁଁ କହିଥିଲି, ପ୍ରଥମେ ମୁଁ ଯେଉଁଠାରେ ଆଲୋକ ଦେଖୁଥିଲି ସେଠାରେ ବର୍ତ୍ତମାନ ଅନ୍ଧାର ଦେଖୁଛି । ସେ ଅନ୍ଧାର ଏ ପର୍ଯ୍ୟନ୍ତ ଘୁଞ୍ଚି

ନାହିଁ । କିନ୍ତୁ ଏତ ତାହା ଯ୍ହା ଭିତରେ ଆହୁରି ଗାଢ଼ ହୋଇଛି । ମୋ ବାଟ ଯଦି ପରିଷ୍କାର ଭାବେ ମୁଁ ଦେଖି ପାରିଥାନ୍ତି ତେବେ ସଂବିଧାନ-ସଭା ବିଷୟରେ ନିଜର ସିଦ୍ଧାନ୍ତକୁ ପ୍ରତ୍ୟାଖ୍ୟାନ କରିଦେବା ସକାଶେ ମୁଁ କାର୍ଯ୍ୟକାରୀ କମିଟିକୁ କହି ଦେଇଥାନ୍ତି । କାର୍ଯ୍ୟକାରୀ କମିଟିର ମେମ୍ବରମାନଙ୍କ ସଙ୍ଗେ ମୋର ସଂପର୍କ ଆପଣମାନଙ୍କୁ ଅଜ୍ଞାତ ନୁହେ । ବାବୁ ରାଜେନ୍ଦ୍ର ପ୍ରସାଦ ଜଣେ ହାଇକୋର୍ଟ ଜଜ୍ ହୋଇ ପାରିଥାନ୍ତେ, କିନ୍ତୁ ସେ ସ୍ୱଇଚ୍ଛାରେ ଚମ୍ପାରଣରେ ମୋ କଥାର ଅନୁବାଦକ ଓ ମୋର କିରାଣୀ କାର୍ଯ୍ୟ କରିବାକୁ ଆଦରି ନେଲେ । ତା'ପରେ ଅଛନ୍ତି ସର୍ଦ୍ଦାର (ପଟେଲ) । ସେ ତ ମୋର ବୋଲ-କରା ବୋଲି ଅପବାଦ ଅର୍ଜିଛନ୍ତି । ସେ ଯ୍ହାକୁ ଅପବାଦ ମନେ ନକରି ଓଲଟି ଖ୍ୟାତି ବୋଲି ବଡ଼େଇ କରନ୍ତି । ପୂର୍ବେ ସେ ଇଂରେଜ-ଢାଞ୍ଚାରେ ପୋଷାକ ପିନ୍ଧୁଥିଲେ ଓ ଖାନା ଖାଉଥିଲେ । କିନ୍ତୁ ମୋ ସଙ୍ଗେ ମିଶିବାକୁ ସ୍ଥିର କଲା ଦିନୁଁ ମୋ କଥା ତାଙ୍କୁ ବେଦବାକ୍ୟ ପରି ହୋଇଛି । ସେ ମଧ୍ୟ ଆଜି ମୋ ସଙ୍ଗେ ଏ ବିଷୟରେ ଏକମତ ହୋଇପାରୁନାହାନ୍ତି । ରାଜେନ୍ଦ୍ର ବାବୁ ସର୍ଦ୍ଦାର ଉଭୟେ କହୁଛନ୍ତି : ଏଥିପୂର୍ବରୁ ସବୁ ଘଟଣାରେ ମୋର ଅନ୍ତରର ପ୍ରେରଣାକୁ ବୁଦ୍ଧିର ବିଚାରଦ୍ୱାରା ସମର୍ଥିତ କରି ପାରୁଥିଲି ଏବଂ ମୋର ନିର୍ଦ୍ଦେଶ, ତାଙ୍କର ମନ ଓ ମସ୍ତିଷ୍କ ଉଭୟର ସମାନଭାବେ ଅନୁକୂଳ ହେଉଥିଲା; ଏଥର ମୁଁ ସେପରି କରି ପାରିନାହିଁ । ମୁଁ ତାଙ୍କୁ କହୁଛି, ମୋର ନିଜ ଅନ୍ତରରେ ଏ ବିଷୟରେ ନାନା ଆଶଂକା ଓ ସନ୍ଦେହ ପୂରି ରହିଛି, କିନ୍ତୁ କାହିଁକି, ତାହା ମୁଁ ବିଚାରି ଠିକ୍ କରି ପାରୁନାହିଁ ; ଯଦି ପାରିଥାନ୍ତି ତେବେ ସିଧାସଳଖ କ୍ୟାବିନେଟ୍ ମିଶନର ସମଗ୍ର ପ୍ରସ୍ତାବ ପ୍ରତ୍ୟାଖ୍ୟାନ କରିଦେବାକୁ କହି ଦେଇଥାନ୍ତି । ସେମାନଙ୍କ ସାବଧାନତା ପାଇଁ ମୁଁ ମୋର ସନ୍ଦେହ ଓ ଆଶଂକା ତାଙ୍କ ଆଗେ ଉପସ୍ଥାପିତ କରିବା ଉଚିତ ମନେ କଲି । ସେମାନେ ତାହା ଶୁଣି ତାଙ୍କ ବୁଦ୍ଧିର କଷଟିରେ ମୋ କଥା କଷନ୍ତୁ ; ଏବଂ ମୋ କଥା ଠିକ୍ ବୋଲି ପରିଷ୍କାର ବୁଝିଲେ ମାନନ୍ତୁ, ନହେଲେ ନାହିଁ— ଏହାହିଁ ଥିଲା ମୋର ଉଦ୍ଦେଶ୍ୟ ।

କାର୍ଯ୍ୟକାରୀ କମିଟି ଗାନ୍ଧୀଙ୍କ ସଂଶୟର ଯୁକ୍ତିଯୁକ୍ତତା ବୁଝି ପାରିଲେ ନାହିଁ; ତେଣୁ ଗୋଟିଏ ମଧ୍ୟପନ୍ଥା ଗ୍ରହଣ କରି ଭବିଷ୍ୟତ ସମ୍ବିଧାନ ପ୍ରଣୟନ କରିବା ବିଷୟରେ କ୍ୟାବିନେଟ୍ ମିଶନ୍‌ର ପ୍ରସ୍ତାବ ଗ୍ରହଣ କଲେ ଓ ମଧ୍ୟ-ବର୍ତ୍ତୀକାଳୀନ ସରକାରରେ ଯୋଗ ଦେବାକୁ ନାସ୍ତି କଲେ । ନିଖିଳ ଭାରତ

କଂଗ୍ରେସ କମିଟିର ସାମ୍ୟବାଦୀ ଗୋଷ୍ଠୀ ଓ ଆଉ କେତେକ ମେମ୍ବର କାର୍ଯ୍ୟକାରୀ କମିଟିର ଏହି ମଝିମଝିଆ ନିଷ୍ପତ୍ତିର ବିରୋଧ କରୁଥାନ୍ତି । ସେମାନେ ଚାହୁଁଥାନ୍ତି, ସାଂବିଧାନିକ ମହାସଭା ଓ ମଧ୍ୟବର୍ତ୍ତୀ ସରକାର ଉଭୟଙ୍କୁ ବର୍ଜନ କରାଯାଉ । ଗାନ୍ଧୀ କୌଣସି ଯୁକ୍ତିଯୁକ୍ତ କାରଣଦ୍ୱାରା ତାଙ୍କ ଅନ୍ତରର ପ୍ରେରଣାକୁ ସମର୍ଥିତ କରି ନ ପାରିଥିଲେହେଁ, ତାଙ୍କର ସେହି ପ୍ରେରଣା ଅନୁସାରେ ନିଖିଳ ଭାରତ କଂଗ୍ରେସ କମିଟି ଚାଳିତ ହେଉ ବୋଲି ଏମାନେ ଦାବି କରୁଥାନ୍ତି ।

ଗାନ୍ଧୀ ତାଙ୍କ ବକ୍ତବ୍ୟ କହି ଚାଲିଲେ, '……କାଲି ଜୟପ୍ରକାଶ ନାରାୟଣ କହିଲେ, ପ୍ରସ୍ତାବିତ ସଂବିଧାନ-ମହାସଭାରେ ଯୋଗ ଦେବାରେ ବିପଦ ଅଛି, ତେଣୁ ଆପଣମାନେ କାର୍ଯ୍ୟକାରୀ କମିଟିର ପ୍ରସ୍ତାବ ପ୍ରତ୍ୟାଖ୍ୟାନ କରନ୍ତୁ । ମୁଁ ତାଙ୍କର ଏକଥା ଶୁଣି ବିସ୍ମିତ ହେଲି । ଜୟ ପ୍ରକାଶଙ୍କ ପରି ଜଣେ ପୋଖତ ଯୋଦ୍ଧାଙ୍କ ମୁହଁରୁ ଏଭଳି ଡରକୁଳା କଥା ଶୁଣିବାକୁ ମୁଁ ପ୍ରସ୍ତୁତ ନଥିଲି……। ସତ୍ୟାଗ୍ରହୀ ଡର କ'ଣ ଜାଣେ ନାହିଁ, ପରାଜୟର ଆଶଂକା କରେ ନାହିଁ ।

'ପୁଣି, ଇଂରେଜମାନେ ଯାହା କରନ୍ତି ସବୁ ଖରାପ, ଏହା ସତ୍ୟାଗ୍ରହୀ କହିବ ବୋଲି ମୁଁ ପ୍ରତ୍ୟାଶା କରେ ନାହିଁ । ଇଂରେଜମାନେ ସ୍ୱଭାବତଃ ମନ୍ଦ ନୁହନ୍ତି । ଇଂରେଜମାନଙ୍କ ଭିତରେ ଭଲ ଲୋକ ଅଛନ୍ତି, ମନ୍ଦ ଲୋକ ଅଛନ୍ତି । ପ୍ରତ୍ୟେକ ମାନବ ଗୋଷ୍ଠୀରେ ଭଲ ଅଛନ୍ତି, ମନ୍ଦ ଅଛନ୍ତି । ଆମେ ନିଜେ ମଧ୍ୟ ଦୋଷ-ମୁକ୍ତ ନୁହେଁ । ଇଂରେଜଙ୍କ ଭିତରେ ଯଦି କିଛି ଗୁଣ ନଥାନ୍ତା, ତେବେ ସେମାନେ ଆଜି ଏତେ ବଡ଼ ହୋଇ ନଥାନ୍ତେ । ଆମେ ଆମ ଭିତରେ କଳି କଲେ ଓ ଆମକୁ ଶୋଷଣ କରିବାକୁ ତାଙ୍କୁ ସୁଯୋଗ ଦେଲେ ବୋଲି ସିନା ଇଂରେଜମାନେ ଭାରତକୁ ଆସି ଆମକୁ ଶୋଷଣ କରିଛନ୍ତି । ଭଗବାନଙ୍କ ଏ ସୃଷ୍ଟିରେ, ଅବିମିଶ୍ରିତ ମନ୍ଦର ଶ୍ରୀବୃଦ୍ଧି କଦାପି ହୁଏ ନାହିଁ । ସଇତାନର ରାଜ୍ୟରେ ମଧ୍ୟ ଭଗବାନଙ୍କର କର୍ତ୍ତୃତ୍ୱ ଜାହିର ହୋଇ ରହିଛି, କାରଣ ଭଗବାନଙ୍କର ପ୍ରଚ୍ଛନ୍ନ ସମ୍ମତିରେ ହିଁ ସଇତାନ୍ ରାଜତ୍ୱ କରେ ।' ଏହା ପରେ ସେ ଅହିଂସା ଓ ୧୯୪୨ର ଆଇନ୍ ଅମାନ୍ୟ ଆନ୍ଦୋଳନ ବିଷୟରେ କହିଲେ ।

'ଆପଣମାନଙ୍କର ଧୈର୍ଯ୍ୟ ରହିବା ଦରକାର, ବିନୟ ଓ ଅନାସକ୍ତି ରହିବା ଦରକାର……। ସାଂବିଧାନିକ ସଭା ଗୋଲାପଫୁଲ ବିଛା ହୋଇ-

ଥିବା ଝିଲିଙ୍କ ନୁହେଁ, ଏହା କଣ୍ଟା ବିଦ୍ଧ ହୋଇଥିବା ଶେଯ । କିନ୍ତୁ ଆପଣମାନେ ଡରି ଯାଇ କର୍ତ୍ତବ୍ୟକୁ ଏଡ଼ି ଦେଲେ ଚଳିବ ନାହିଁ……।

'ଆମ୍ଭେମାନେ ହୃଦୟରୁ ଭୟ ପରିହାର କରି, ଆତ୍ମବିଶ୍ୱାସ ଓ ସାହସରେ କର୍ତ୍ତବ୍ୟର ସମ୍ମୁଖୀନ ହେବା……। ମୋ ମନରେ ଯେଉଁ ଅନ୍ଧକାର ଘୋଟି ରହିଛି ସେଥିପାଇଁ ଭାବି ହୁଅନ୍ତୁ ନାହିଁ । ଭଗବାନ୍ ଏ ଅନ୍ଧାର ଦୂର କରିବେ, ଆଲୋକ ଦେବେ ।'

ସମସ୍ତେ ଦୁଇ ତିନଥର କରତାଳି ଦେଲେ ।

କାର୍ଯ୍ୟକାରୀ କମିଟିର ପ୍ରସ୍ତାବ ସପକ୍ଷରେ ୨୦୪ ଭୋଟ ହେଲା, ବିପକ୍ଷରେ ୫୧ । ବିପକ୍ଷରେ ୫୧ଟି ଭୋଟ, ବହୁତ ବେଶି ବୋଲି ବିବେଚିତ ହେଲା । ଖାଲି ଗାନ୍ଧୀ, ନେହେରୁ କାହିଁକି, କଂଗ୍ରେସ କମିଟିର ଅଧିକାଂଶଙ୍କ ମନରେ ବ୍ରିଟିଶ୍ ସରକାରଙ୍କ ଆନ୍ତରିକତା ବିଷୟରେ ଯେଉଁ ସନ୍ଦେହ ପ୍ରଚ୍ଛନ୍ନ ହୋଇ ରହିଥିଲା, ତାହା ଏହି ବିପକ୍ଷ ଭୋଟରେ ବାହାରକୁ ଦିଶିଲା । ବ୍ରିଟିଶ ପ୍ରଭୁତ୍ୱର ୧୫୦ ବର୍ଷାଧିକ କାଳ ପରେ, ଓ ବ୍ରିଟିଶ ସାମ୍ରାଜ୍ୟର ପ୍ରତ୍ୟକ୍ଷା-ଧୀନରେ ୮୯ ବର୍ଷ ରହିବା ଫଳରେ, କୌଣସି ଭାରତୀୟ ବ୍ରିଟିଶ ପ୍ରତି ଅବିଶ୍ୱାସକୁ ଅନ୍ତରରୁ ପୂରାପୂରି ବହିଷ୍କାର କରି ପାରି ନଥିଲେ ।

ବମ୍ବେରେ ଖରାଦିନର ମୌସୁମୀ ବର୍ଷାକାଳରେ ଯେଉଁ ଗୁଳୁଗୁଳି ପାଗ ହୁଏ ସେଥିରେ ସନ୍ତପ୍ତ ହୋଇ କିଛି ଦିନ ବମ୍ବେରେ ରହିଲି । ତା' ପରେ ଜୟପ୍ରକାଶ ନାରାୟଣ ଓ ତାଙ୍କ ସ୍ତ୍ରୀ ପ୍ରଭାବତୀଙ୍କ ସଙ୍ଗେ ମହାରାଷ୍ଟ୍ର ଦେଶ ଭିତର ଦେଇ ଗାନ୍ଧୀ ନୂଆ ହୋଇ ଯାଇ ରହୁଥିବା ପଞ୍ଚ-ଗାମୀକୁ ଯାତ୍ରା କଲୁଁ । ଆଗ ରେଳ ଯୋଗେ ଗଲୁ ପୁନାକୁ ଓ ସେଠାରୁ ମଟରକାର ଧରିଲୁଁ ।

ସହର ଛାଡ଼ି ଯିବାର କେତେ ମାଇଲ ପରେ ପୁରୁଣା କାର ଖଣ୍ଡି ବାରଂବାର ଅସଜ ହେବାକୁ ଲାଗିଲା ; ଆମ୍ଭେମାନେ ବାଧ୍ୟ ହୋଇ ଯାତ୍ରୀବାହୀ ବସ୍‌କୁ ଆଶ୍ରା କଲୁଁ । ରାସ୍ତା ଉପରେ ଠାଏ ଠାଏ ସାମ୍ୟବାଦୀ-ମାନଙ୍କ ପକ୍ଷରୁ ଜୟପ୍ରକାଶଙ୍କୁ ଭେଟିବାର ଆୟୋଜନ ହୋଇଥାଏ । ବାଟରେ ଛ'ଠା ଏମାନେ ଭେଟିଥିଲେ ; ଛ'ଠାଯାକ ବସ୍ ଅଟକିଲା । ଜୟପ୍ରକାଶ, ପ୍ରଭାବତୀ ଓ ମୁଁ ବସ୍‌ରୁ ବାହାରକୁ ଆସୁ ; ସ୍ଥାନୀୟ ଲୋକଙ୍କ ପକ୍ଷରୁ କ୍ଷୁଦ୍ର ବକ୍ତୃତାରେ ସମ୍ବର୍ଦ୍ଧନା କରାଯାଏ ; ଆମେ ପ୍ରତ୍ୟେକେ ଗଳାରେ ଖୁବ୍ ସୁଗନ୍ଧ ପୁଷ୍ପର ଗୋଟିଏ ଗୋଟିଏ ମାଳା ପାଉଁ ; ଆମ ପ୍ରତ୍ୟେକଙ୍କ ହାତରେ

ଖୁବ୍ ଟାଣ ହୋଇ ବନ୍ଧା ହୋଇଥିବା ଗୋଟିଏ ଗୋଟିଏ ପୁଷ୍ପଗୁଚ୍ଛ ବା ଫେଣାଏ ଲେଖାଏଁ ପାଚିଲା କଦଳୀ ଦିଆଯାଏ । କେତେକ ଜାଗାରେ ଆମେ ସଭାରୁ ଆସି ବସ୍‌ରେ ବସିବା ପରେ ଜଣେ ଜଣେ ସ୍ତ୍ରୀଲୋକ ଆସି ଗୋଟିଏ ଗୋଟିଏ ଧାତୁନିର୍ମିତ ପିଚକାରୀରୁ ବର୍ଣ୍ଣହୀନ ସୁଗନ୍ଧ ଅତର ଟିକିଏ ଟିକିଏ ଆମ ଆଙ୍ଗୁଠିର ଗଣ୍ଠିରେ ଲଗାଇ ଦେଇଯାନ୍ତି । ସୁଗନ୍ଧରେ ଆବୃତ ହୋଇ ଓ ବସ୍ ତମାମ ସୁଗନ୍ଧି ବିତରଣ କରି ଆମେ ବସରେ ବୁଲିଥାଉଁ । ବାରଂବାର ହେଉଥିବା ଏ ସଂଭାଷଣ ଉତ୍ସବମାନଙ୍କରେ ବସ୍‌ର ଯାତ୍ରୀମାନେ ଓ ବସ୍‌ର ଡ୍ରାଇଭର୍ ଧୈର୍ଯ୍ୟ ନ ହରାଇ, ଆପତ୍ତି ନ କରି, ଆମକୁ ଅପେକ୍ଷା କରି ରହିଥାନ୍ତି ।

ସଂଧ୍ୟାରେ ସତାରାଠାରେ ଗୋଟିଏ ସଭାରେ ଭାଷଣ ଦେବାକୁ ଜୟପ୍ରକାଶ ରହିଗଲେ ; ମୁଁ ଓ ପ୍ରଭାବତୀ ମାଗି ଅଣା ହୋଇଥିବା ଗୋଟିଏ କାର୍‌ରେ, କୁହୁଡ଼ି ଭିତରେ ପାହାଡ଼ ପର୍ବତ ଭେଦକରି ପାଞ୍ଚଗନି ଆସିଲୁଁ । ଆମେ ଆସି ପହଞ୍ଚିଲା ବେଳକୁ ରାତି ଅଧ । ରାସ୍ତାରେ ଯେଉଁ ଜଣକେତେ ପଥଚାରୀ ହାବୁଡ଼ିଲେ ସେମାନେ ଗାନ୍ଧୀଙ୍କ ଠିକଣା ଦେଇ ପାରିଲେ ନାହିଁ । ବାଟରେ ଯେତେଟା ଗ୍ରୀଷ୍ମନିବାସ ପଥର ଘର ପଡ଼ୁଥାଏ ଆମେ ସେଠାରେ ଓହ୍ଲାଇ ପାହାଚ ଚଢ଼ି ଅଳନ୍ଦକୁ ଯାଉ ଓ କିଏ ଶୋଇଛି କି ବୋଲି ଚାହୁଁ । ଏହିପରି ଖୋଜି ଖୋଜି ଗୋଟିଏ ଅଳନ୍ଦରେ ଗାନ୍ଧୀ ଶିଷ୍ୟ ପରିବେଷ୍ଟିତ ହୋଇ ଶୋଇବାର ଦେଖିଲୁଁ ।

ସକାଳ ହେଲା । ପ୍ରଭାବତୀ ଗାନ୍ଧୀଙ୍କ ପାଦରେ ମୁଣ୍ଡ ଲଗାଇଲେ; ଗାନ୍ଧୀ ଅମାୟିକ ଶ୍ରଦ୍ଧାରେ ତାଙ୍କ କେଶରେ ହାତ ଲଗାଇଲେ । ମଧ୍ୟାହ୍ନ ଭୋଜନ ସମୟକୁ ଜୟପ୍ରକାଶ ଆସି ପହଞ୍ଚିଲେ । ସେଦିନ ସେ ଓ ମୁଁ ଦୁଇଜଣ ହିଁ ଗାନ୍ଧୀ-ନିବାସରେ ଅଭ୍ୟାଗତ ; ଗାନ୍ଧୀଙ୍କ ସଙ୍ଗେ ମୋତେ କଥାବାର୍ତ୍ତା ହେବା ପାଇଁ ପ୍ରଚୁର ସୁଯୋଗ ମିଳିଲା ।

ଦିଲ୍ଲୀଠାରେ ମୁଁ ଭାରତର ରାଜନୀତିକ ପରିସ୍ଥିତିର କଣ ନୂଆ କଥା ଜାଣିଲି ବୋଲି ସେ ମୋତେ ପ୍ରଥମେ ପଚାରିଲେ । ଯେଉଁମାନେ ସାମ୍ବିଧାନିକ ମହାସଭାରେ ଯୋଗଦେବାର ପକ୍ଷପାତୀ ଓ ଯେଉଁମାନେ ବିରୋଧୀ—ୟେ ଉଭୟଙ୍କ ବିରୁଦ୍ଧରେ ତୀବ୍ର ମତାନ୍ତର ଥିବାର ମୁଁ ଲକ୍ଷ୍ୟ କରିଥିଲି ।

ଗାନ୍ଧୀ—ସଂବିଧାନ-ସଭା ବିପ୍ଳବାତ୍ମକ ନୁହେଁ ବୋଲି ମୁଁ ମନେ କରେ ନାହିଁ । ମୋର ଦୃଢ଼ ବିଶ୍ୱାସ ଏହା ଆଇନ୍ ଅମାନ୍ୟ ଆନ୍ଦୋଳନର ଅଭାବ ସଂପୂର୍ଣ୍ଣ ରୂପେ ପୂରଣ କରିପାରିବ ।

ଲୁଇ ଫିଶର୍—ଆପଣ କ'ଣ ମନେ କରୁଛନ୍ତି ବ୍ରିଟିଶ୍ ସରକାରଙ୍କର ଆନ୍ତରିକତା ଅଛି ।

ଗାନ୍ଧୀ—ମୋର ବିଶ୍ୱାସ ଏଥର ତାଙ୍କର ଆନ୍ତରିକତା ରହିବ ।

ଲୁ.ଫି—ସେମାନେ ଭାରତ ଛାଡ଼ିବାକୁ ପ୍ରକୃତରେ ଚାହାନ୍ତି ବୋଲି ଆପଣଙ୍କର ବିଶ୍ୱାସ ହେଉଛି ?

ଗାନ୍ଧୀ—ହଁ ।

ଲୁ.ଫି—ମୋର ମଧ୍ୟ ସେଇ ବିଶ୍ୱାସ । କିନ୍ତୁ ମୁଁ ଜୟପ୍ରକାଶଙ୍କୁ ବୁଝାଇ ପାରୁନାହିଁ । ଧରନ୍ତୁ, ଯଦି ବ୍ରିଟିଶ ନ ଯାନ୍ତି, ତେବେ ତ ଆପଣଙ୍କ ସାଙ୍ଗରେ ଆପଣ ପ୍ରତିବାଦ କରିବେ, ଜୟପ୍ରକାଶଙ୍କ ସାଙ୍ଗରେ ନୁହେଁ ?

ଗାନ୍ଧୀ—ନା, ଜୟପ୍ରକାଶଙ୍କୁ ମୋ ସଙ୍ଗେ ମିଶିବାକୁ ପଡ଼ିବ । ମୁଁ ଜୟପ୍ରକାଶଙ୍କ ବିରୁଦ୍ଧରେ ଥାଇ ଆନ୍ଦୋଳନ କରିବି ନାହିଁ । ୧୯୪୨ ରେ ମୁଁ କହିଥିଲି, ମୁଁ ଥଳକୂଳର କିନାରା ନ କରି ମହାସମୁଦ୍ରକୁ ନାଆ ପେଲି ଦେଉଛି । ଏଥର ମୁଁ ସେପରି କରିବି ନାହିଁ । ସେତେବେଳେ ମୁଁ ଲୋକଙ୍କୁ ଚିହ୍ନି ନ ଥିଲି । ଏଥର ଚିହ୍ନିଲିଣି ; ମୁଁ କ'ଣ ପାରିବି କ'ଣ ନ ପାରିବି ଜାଣିଗଲିଣି ।

ଲୁ.ଫି—ହିଂସାକାଣ୍ଡ ଘଟିବ ବୋଲି ଆପଣ ୧୯୪୨ ରେ ଜାଣି ନ ଥିଲେ ?

ଗାନ୍ଧୀ—ସେ କଥା ଠିକ୍ ।

ଲୁ.ଫି—ଯଦି ସାଂବିଧାନିକ ସଭା ବିଫଳ ହୁଏ ତେବେ ଆପଣ ଆଇନ୍ ଅମାନ୍ୟ ଆନ୍ଦୋଳନ ଆରମ୍ଭ କରିବେ ନାହିଁ । ତା' ହେଲେ ।

ଗାନ୍ଧୀ— ନା, ସେ ସୁଦ୍ଧା ସାମ୍ୟବାଦୀ ଓ କମ୍ୟୁନିଷ୍ଟଙ୍କ ଯଦି ଅକ୍ତିଆର କରି ନ ପାରିବି, ତେବେ ମୋ ଆନ୍ଦୋଳନ ଆରମ୍ଭ କରିବି ନାହିଁ ।

ଲୁ.ଫି—କିନ୍ତୁ ସେମାନଙ୍କୁ ଅକ୍ତିଆର କରିବା ତ ସମ୍ଭବ ମନେ ହେଉନାହିଁ ......।

ଗାନ୍ଧୀ—ଭାରତର ବାୟୁମଣ୍ଡଳରେ ଏତେ ମାତ୍ରାରେ ହିଂସାପୂର୍ଣ୍ଣ ଭାବ ଥିବାଠାରେ ମୁଁ ଆଇନ୍ ଅମାନ୍ୟ କଥା ମନକୁ ବି ଆଣି ପାରୁନାହିଁ। ଦେଖୁଛି, କେତେକ ସବର୍ଣ୍ଣ ହିନ୍ଦୁ ଅସ୍ପୃଶ୍ୟମାନଙ୍କ ପ୍ରତି ନ୍ୟାୟ୍ୟ ବ୍ୟବହାର କରୁ ନାହାନ୍ତି।

ଲୁ.ଫି—କେତେକ ସବର୍ଣ୍ଣ ହିନ୍ଦୁ ବୋଲି ଆପଣ ଯାହା କହୁଛନ୍ତି ତା'ର ଅର୍ଥ କେତେକ କଂଗ୍ରେସବାଲା ନୁହେ କି ?

ଗାନ୍ଧୀ—କଂଗ୍ରେସବାଲାଙ୍କ ଭିତରେ ଏ ଶ୍ରେଣୀର ଲୋକ ବେଶୀ ନାହାନ୍ତି। ସେ ଯାହା ହେଉ, ଏ ଭଳି କେତେ ଜଣ ଅଛନ୍ତି ଯେଉଁମାନେ ମନରୁ ଅସ୍ପୃଶ୍ୟଙ୍କ ପ୍ରତି ଘୃଣା ଛାଡ଼ି ପାରି ନାହାନ୍ତି। ସେଇ ହେଉଛି ଦୁଃଖ...। ମୁସ୍‌ଲିମ୍‌ମାନେ ମଧ୍ୟ ମନେ କରନ୍ତି ସେମାନଙ୍କ ପ୍ରତି ଅନ୍ୟାୟ ହେଉଛି। ଧର୍ମନିଷ୍ଠ ହିନ୍ଦୁଙ୍କ ଘରେ ମୁସଲମାନଙ୍କ ସଙ୍ଗେ ଏକ ଆସନରେ ହିନ୍ଦୁ ବସୁନାହାନ୍ତି ଏବଂ ନିଜ ସଙ୍ଗେ ମୁସଲମାନଙ୍କୁ ଖାଇବାକୁ ବସାଉ ନାହାନ୍ତି। ଏ ସବୁ ଛଳ ଧର୍ମ। ଭାରତ ଛଳ ଧର୍ମରେ ବୁଡି ରହିଛି। ଭାରତକୁ ସତ୍ ଧର୍ମ ଗ୍ରହଣ କରିବାକୁ ହେବ।

ଲୁ.ଫି—ଆପଣ ତ କଂଗ୍ରେସକୁ ନିଜ ମାର୍ଗରେ ଚଳାଇ ପାରିଲେ ନାହିଁ ?

ଗାନ୍ଧୀ—ନା, ପାରିଲି ନାହିଁ। ତେବେ ସାମାନ୍ୟ କିଛି ହୋଇ ପାରିଛି। ମଦୁରାରେ ହରିଜନମାନଙ୍କୁ ମନ୍ଦିରରେ ପଶିବାକୁ ଦିଆଯାଉଛି। ଆଉ କେତେକ ସ୍ଥାନରେ ମଧ୍ୟ ଦିଆଯାଉଛି। ଏସବୁ ମନ୍ଦିରରେ ସବର୍ଣ୍ଣ ହିନ୍ଦୁମାନେ ଅସବର୍ଣ୍ଣଙ୍କ ସଙ୍ଗେ ଏକାଠି ପୂଜା କରୁଛନ୍ତି।

ସକାଳର କଥାବାର୍ତ୍ତା ଏତିକରେ ସରିଲା। ଗାନ୍ଧୀ 'ସନ୍ଧାଣି ଆଲୁଅର ମୁହଁ ଭିତର ଆଡ଼କୁ' ବୁଲାଇଥାନ୍ତି ; ଅନ୍ୟମାନଙ୍କ ଦୋଷ ଦର୍ଶାଇବା ପରିବର୍ତ୍ତେ ଏ ଆଲୋକ କଂଗ୍ରେସ ଓ ହିନ୍ଦୁଙ୍କ ଦୋଷ ଉପରେ ପଡ଼ୁଥାଏ। କେତେକ ହିନ୍ଦୁ ଏ ପ୍ରକ୍ରିୟାକୁ ପସନ୍ଦ କରୁ ନ ଥାନ୍ତି। ସେମାନେ ଜିନ୍ନା ଓ ଇଂରେଜଙ୍କ ଉପରେ ଦୋଷ ଲଦି ଦେଇ ସନ୍ତୁଷ୍ଟ ହେବାକୁ ଚାହୁଁଥାନ୍ତି।

ଅପରାହ୍ଣର ପ୍ରଥମ ଭାଗରେ ଜୟପ୍ରକାଶ ଗାନ୍ଧୀଙ୍କ ସଙ୍ଗେ ଘଣ୍ଟାଏ କଥାବାର୍ତ୍ତା ହେଲେ । ଗାନ୍ଧୀଙ୍କର ଜଣେ ମହିଳା-ସେକ୍ରେଟାରୀ ଏ କଥାବାର୍ତ୍ତାରୁ ଯାହା ଟିପିଥିଲେ ତହିଁର କେତେକାଂଶ ଅନୁବାଦ କରି ମୋତେ ଶୁଣାଇ ଦେଲେ ।

ଜୟପ୍ରକାଶ—କଂଗ୍ରେସ ଦେଶର ଶକ୍ତି ସଂଗଠିତ କରିବାପାଇଁ ଚେଷ୍ଟା କରୁନାହିଁ । କଂଗ୍ରେସରେ ଗୁଣ ଓ ଯୋଗ୍ୟତାର ଆଦର ଆଉ ନାହିଁ । ଜାତି ଓ ପାରିବାରିକ ସଂପର୍କ ଆଜକାଲି କଂଗ୍ରେସରେ ବେଶି ବିକାଉଛି । ଏହି କାରଣ ଯୋଗୁଁ ହିଁ ଆମେ ସାମ୍ୟବାଦୀମାନେ ସାଂବିଧାନିକ ସଭାରେ ଯୋଗ ଦେବାକୁ ଚାହୁଁ ନାହିଁ । ଆମର ଧାରଣା ହୋଇଛି ଯେ, କାର୍ଯ୍ୟକାରୀ କମିଟି ନିରୁପାୟ ହୋଇ ଏ ପ୍ରସ୍ତାବ ଗଠା କରିଥିଲେ । ସେମାନେ ବିଚାରିଲେ, 'ବ୍ରିଟିଶ୍ ପ୍ରସ୍ତାବ ଗ୍ରହଣ ନ କରି ଆଉ କ'ଣ କରିବା ?' ଏହା ଦୁର୍ବଳ ଲୋକର ମନୋବୃତ୍ତି । କଂଗ୍ରେସ ଓ ମୁସ୍‌ଲିମ୍ ଲିଗ୍ ମଧ୍ୟରେ କପରି ରାଜିନାମା ହୋଇ ପାରିବ ତାହାର ଉପାୟ ବ୍ରିଟିଶ ସରକାର ଉଦ୍‌ଭାବନ କରିବେ ବୋଲି ଏମାନେ ଆଶା କରନ୍ତି । ଆମର ମତ, ଆମେ ବ୍ରିଟିଶଙ୍କୁ କହିଥାନ୍ତେ, "ଆଗ ତୁମେ ଯାଅ । ହିନ୍ଦୁ ମୁସଲମାନ ସମସ୍ୟା ଆମେ ଆପେ ସମାଧାନ କରିବୁଁ ।" ବ୍ରିଟିଶ ଯଦି ଆମ କଥା ନ ଶୁଣନ୍ତେ, ତେବେ ଆମକୁ ନେଇ ପୁଣି ଜେଲରେ ଠୁକନ୍ତେ ।

ଗାନ୍ଧୀ—ଜେଲ ତ ଚୋର ଡକାୟତଙ୍କ ପାଇଁ ଜେଲ୍ । ମୋ ପାଇଁ ଏହା ରାଜାପ୍ରାସାଦ । ଥୋରୋଙ୍କ ପୁସ୍ତକ ପଢ଼ିବା ପୂର୍ବରୁ ମଧ୍ୟ ମୁଁ ଜେଲ ବରଣ କରିବା ଅଭିଯାନ ଆରମ୍ଭ କରିଥିଲି । ଟଲଷ୍ଟୟ ଲେଖିଥିଲେ ମୁଁ ଗୋଟାଏ ନୂଆ କଥା ଆବିଷ୍କାର କରିଛି । ସେ ଏହା ଗୋଟିଏ ରୁଷୀୟ ଦୈନିକ ପତ୍ରରେ ଲେଖିଥିଲେ । ଜଣେ ରୁଷୀୟ ମହିଳା ଏହାର ଅନୁବାଦ କରି ମୋତେ ଦେଇଥିଲେ । ମୁଁ ଜେଲ ଭିତରେ ଥାଇ ସରକାର ସଙ୍ଗେ ଲଢ଼ିଛି । ଜେଲ୍ ଯିବାର ମୂଳତତ୍ତ୍ୱ ଯଦି ଠିକ ରହେ ତେବେ ତଦ୍ୱାରା ସ୍ୱରାଜ୍ୟଲାଭ ହୋଇପାରେ······। କିନ୍ତୁ ବର୍ତ୍ତମାନ ପରିସ୍ଥିତିରେ ଜେଲ ଯିବା ଗୋଟାଏ ପ୍ରହସନ ମାତ୍ର ହୋଇଯିବ ।

ଜୟପ୍ରକାଶ—ଏଥର ଆମେ ଇଂରେଜଙ୍କୁ ଜେଲ୍‌ରେ ଠୁଁକିବା ।

ଗାନ୍ଧୀ—କାହିଁକି ? କେମିତି ? ଏଭଳି କରିବାର ତ କୌଣସି କାରଣ ନାହିଁ । ଏହା କେବଳ ଗୋଟାଏ କଥାର ଗଳ୍ପ ; ତୁମ ଭଳି ଲୋକର

ଭୂଣ୍ଡରୁ ଏ ବାହାରିବାର ନୁହେଁ । ହିଂସାମୂଳକ ଯୁଦ୍ଧ ପରେ ମଧ୍ୟ ପ୍ରତି-ପକ୍ଷକୁ ଦଣ୍ଡ ଦେବା ପ୍ରୟୋଜନ ହେବାର ନୁହେଁ । ଯୁଦ୍ଧ ପରେ ହିଟଲର୍‌ଙ୍କୁ ଶାସ୍ତି ଦେବେ ବୋଲି ଚର୍ଚ୍ଚିଲ୍ ଏଇଭଳି ଧମକ ଚମକ ଦେଇଥିଲେ । ନାଜି 'ଯୁଦ୍ଧ-ଅପରାଧୀମାନଙ୍କୁ ଦଣ୍ଡ ଦେବାକୁ ଯାଇ ଗତ ଯୁଦ୍ଧର ବିଜେତାମାନେ କି ମୂର୍ଖତା ଓ ଦୌରାତ୍ମ୍ୟ କରି ବସିଛନ୍ତି ଦେଖ । ଏହି ଅପରାଧୀମାନଙ୍କର ବିଚାର କରିବାକୁ ଯେ ବସିଛନ୍ତି ତାଙ୍କ ଭିତରୁ କେତେକ ତ ଭୁଲ୍-ଅପରାଧୀ ।

କଂଗ୍ରେସ ଅନେକ ପ୍ରଦେଶରେ ସରକାର ଗଠନ କରିଥାଏ । ଜୟପ୍ରକାଶ ଓ ଗାନ୍ଧୀ ଏହି ପ୍ରଦେଶମାନଙ୍କରେ ଦୁର୍ନୀତି ଓ ପ୍ରିୟାପ୍ରୀତି ତୋଷଣ ଅନ୍ତମାନରେ ବଢ଼ି ଯାଉଥିବାର ଦେଖୁଥାନ୍ତି । ପୁଣି ସାମ୍ୟବାଦୀ ଓ କେତେକ ଅସାମ୍ୟବାଦୀ କଂଗ୍ରେସବାଲା ମଧ୍ୟ ବ୍ରିଟିଶଙ୍କ ବିରୁଦ୍ଧରେ ଶେଷଥର ପାଇଁ ଗୋଟାଏ ଆନ୍ଦୋଳନ କରିବାକୁ ଗୌରବର କଥା ବୋଲି ମନେ କରୁଥିଲେ । ସେମାନେ ବିଶ୍ୱାସ କରୁଥିଲେ, ଅଧୀନ କରିଥିବା ଶକ୍ତିକୁ ବଳପୂର୍ବକ ନ ତଡ଼ିଲେ ଯଥାର୍ଥ ସ୍ୱାଧୀନତା ମିଳେ ନାହିଁ । ସେମାନେ ସନ୍ଦେହ କରୁଥାନ୍ତି ଯେ, ମୁସଲିମ୍ ଲିଗ୍‌ର ପ୍ରଚ୍ଛନ୍ନ ସହଯୋଗରେ, ବ୍ରିଟିଶ୍ ସରକାର ଭାରତରେ କିଛି ନା କିଛି ଅଧିକାର ରଖି ନେବାକୁ ନିଶ୍ଚୟ ଇଚ୍ଛା କରିବେ । ତେଣୁ ଜୟପ୍ରକାଶ ବୈଧାନିକତା-ବିରୋଧୀ, ଆଇନ୍-ବିରୋଧୀ, ଯୁଦ୍ଧଖୋର ମନୋବୃତ୍ତି ଧରିଥାନ୍ତି ; ଅପରପକ୍ଷେ, ୧୯୪୨, ୪୩, ୪୪ରେ ସାମ୍ୟବାଦୀଙ୍କ କୃତ ଓ ଅନ୍ୟମାନଙ୍କ କୃତ ହିଂସା-କାଣ୍ଡ ଦେଖି ଗାନ୍ଧୀଙ୍କର ଆଖି ଖୋଲି ହୋଇ ଯାଇଥାଏ, ଏବଂ କର୍ମଜୀବନରେ ପୂର୍ବେ ତାଙ୍କ ମନରେ ଯାହା ବା ଟିକିଏ ବିବାଦ କରିବାର ମନୋବୃତ୍ତି ଥିଲି ତାହା ବିଶେଷଭାବେ କମି ଯାଇଥାଏ । ତେଣୁ କ୍ୟାବିନେଟ୍ ମିଶନ୍‌ର ପ୍ରସ୍ତାବାବଳୀ ବିଷୟରେ ତାଙ୍କ ମନରେ ଯେଉଁ 'ସଂଶୟ' ଥିଲି ତାହା ତାଙ୍କ ପକ୍ଷରେ ଅତ୍ୟଧିକ କଷ୍ଟଦାୟକ ହୋଇଥାଏ । ସେ ଆଇନ୍-ଅମାନ୍ୟରୂପ ଅଭିନବ ଅସ୍ତ୍ରଟି ନିଜ ହାତରେ ତିଆରି କରିଥିଲେ ; ଦେଶରେ ବ୍ୟାପକ ଭାବେ ହିଂସାକାଣ୍ଡ ଘଟିବା ଯୋଗୁଁ ସେ ଅସ୍ତ୍ରଟି ତାଙ୍କ ହାତରୁ ଖସି ପଡ଼ିଥାଏ । ତେଣୁ ସାଂବିଧାନିକ ମହାସଭାକୁ ସେ ତାଙ୍କର ଏକମାତ୍ର ବିକଳ୍ପ ଅସ୍ତ୍ର ବୋଲି ମନେ କରୁଥାନ୍ତି ।

ଗାନ୍ଧୀ ଏ ସମୟରେ ଦୁଃସହ ମନସ୍ତାପର ଯେଉଁ ପଥର ଯାତ୍ରୀ ହେଲେ, ସେ ପଥର ପରିସମାପ୍ତି ହେଲା ତାଙ୍କ ମୃତ୍ୟୁରେ ।

ସେଦିନ ଉପରଓଳି ଗାନ୍ଧୀ ମୋତେ ଘଣ୍ଟାକରୁ ଅଧିକ ସମୟ ଦେଲେ । ସେ ଆମେରିକାର ନିଗ୍ରୋ-ସମସ୍ୟାର ପୁନରୁତ୍ଥାପନ କଲେ । କିଛିସମୟ ପରେ ମୁଁ କହିଲି, 'ମୁଁ ଭାରତକୁ ଆସି କେତେଜଣ ବିଚକ୍ଷଣ ଲୋକଙ୍କ ସମ୍ପର୍କରେ ଆସିଛି···।'

ଗାନ୍ଧୀ—ଏଁ, ଆସିଛ ? ସେମାନଙ୍କ ସଂଖ୍ୟା ବେଶି ବୋଲି ମନେ-ହେଉନାହିଁ ।

ଲୁ.ଫି—ଆପଣ, ଓ ଆଉ ଦୁଇ ତିନିଜଣ ।

ସେ ହସିଲେ । ମୁଁ ପୁଣି କହିଲି, କେତେଜଣ କହୁଛନ୍ତି, ହିନ୍ଦୁ-ମୁସଲମାନଙ୍କ ସଂପର୍କ ବର୍ତ୍ତମାନ ପୂର୍ବଠାରୁ ଭଲ ଅଛି, ଆଉ କେତେଜଣ କହୁଛନ୍ତି ଖରାପ ହୋଇଛି ।

ଗାନ୍ଧୀ—ଜିନ୍ନା ଏବଂ ଅନ୍ୟ ମୁସ୍‌ଲିମ୍ ନେତାମାନେ ଏକ ସମୟରେ କଂଗ୍ରେସରେ ଥିଲେ । କଂଗ୍ରେସରେ ହିନ୍ଦୁ ପ୍ରାଧାନ୍ୟ ଯୋଗୁଁ ସେମାନେ କଂଗ୍ରେସରେ ହିନ୍ଦୁଙ୍କ ଅନୁଗ୍ରହପାତ୍ର ବୋଲି ମନେ କରି କ୍ଷୋଭରେ କଂଗ୍ରେସ ଛାଡ଼ି ଚାଲିଗଲେ । ପ୍ରଥମାବସ୍ଥାରେ କଂଗ୍ରେସର ମୁଖ୍ୟ ନେତାମାନେ ଥିଲେ ବ୍ରହ୍ମବିଦ୍ୟାବିତ୍ । ମିସେସ୍ ଆନି ବେସାନ୍ତ ମୋତେ ବିଶେଷ ଭାବେ ଆକୃଷ୍ଟ କରିଥିଲେ । ମ୍ୟାଡ଼ାମ୍ ବ୍ଲାଭଟ୍‌ସ୍କି ବ୍ରହ୍ମବିଦ୍ୟାର ପ୍ରଚାର କରିଥିଲେ । ହିନ୍ଦୁ ଧର୍ମର ଏହା ସର୍ବଶ୍ରେଷ୍ଠ ସ୍ୱରୂପ । ବ୍ରହ୍ମବିଦ୍ୟାହିଁ ବିଶ୍ୱଭ୍ରାତୃତ୍ୱ । ବନ୍ଧୁମାନେ ମୋତେ ଲଣ୍ଡନରେ ମିସେସ୍ ବେସାନ୍ତଙ୍କ ସଙ୍ଗେ ପରିଚିତ କରାଇଥିଲେ । ମୁଁ ସେତେବେଳେ ବମ୍ବେରୁ ଯାଇଥିବା ଜଣେ ଛାତ୍ର ମାତ୍ର । ଇଂରେଜଙ୍କର ଉଚ୍ଚାରଣ-ଶୈଳୀ ମୁଁ ଧରିପାରୁ ନ ଥାଏ । ତାହା ହୋଇଥାଏ ମୋ ପକ୍ଷରେ ପ୍ରଧାନ ପ୍ରତିବନ୍ଧକ । ମିସେସ୍ ବେସାନ୍ତଙ୍କ ସଙ୍ଗେ ପରିଚିତ ହେବା ସକାଶ ମୁଁ ନିଜକୁ ନିତାନ୍ତ ଅନୁପଯୁକ୍ତ ମନେ କରୁଥାଏ । ସଂସ୍କୃତିସମ୍ପନ୍ନ ମୁସଲିମ୍‌ମାନେ ବ୍ରହ୍ମବିଦ୍ୟା ସମିତିରେ ଯୋଗ ଦେଉଥାନ୍ତି । କ୍ରମେ କଂଗ୍ରେସ ମେମ୍ବରଙ୍କ ସଂଖ୍ୟା ବଢ଼ିଲା, ଏବଂ କଂଗ୍ରେସ ମେମ୍ବରଙ୍କ ଭିତରେ ଅଧିକାଂଶ ହିନ୍ଦୁ ଥିବାରୁ କଂଗ୍ରେସରେ ସେମାନଙ୍କ ପ୍ରାଧାନ୍ୟ ବଢ଼ିଲା । ମୁସ୍‌ଲିମ୍‌ମାନେ ଧର୍ମାନ୍ଧ, କିନ୍ତୁ ଧର୍ମାନ୍ଧତାଦ୍ୱାରା ଧର୍ମାନ୍ଧତାର ପ୍ରତିକାର କରି ହେବ ନାହିଁ । ସୌଜନ୍ୟର ଅଭାବରେ ଲୋକେ ବିଗିଡ଼ିଯାନ୍ତି । ବିଚକ୍ଷଣ ମୁସ୍‌ଲିମ୍‌ମାନେ

କଂଗ୍ରେସ ପ୍ରତି ବିତଶ୍ରଦ୍ଧ ହୋଇଗଲେ । ସେମାନେ ହିନ୍ଦୁଙ୍କଠାରେ ବିଶ୍ୱଭ୍ରାତୃତ୍ୱ ଭାବ ଦେଖିଲେ ନାହିଁ । ସେମାନେ କହନ୍ତି ଇସଲାମ ଧର୍ମରେ ବିଶ୍ୱଭ୍ରାତୃତ୍ୱ ବିଦ୍ୟମାନ, କିନ୍ତୁ ବସ୍ତୁତଃ ଇସ୍‌ଲାମ୍‌ରେ ଭ୍ରାତୃତ୍ୱ ମୁସ୍‌ଲିମ୍ ସମ୍ପ୍ରଦାୟରେ ସୀମାବଦ୍ଧ ।

ବ୍ରହ୍ମବିଦ୍ୟା ହିଁ ପ୍ରକୃତ ବିଶ୍ୱଭ୍ରାତୃତ୍ୱ । ହିନ୍ଦୁମାନେ ନିଜ ଧର୍ମକୁ ସବୁ ଧର୍ମଠାରୁ ବଡ଼ ବୋଲି ଯେଉଁ ଧାରଣା ପୋଷଣ କରନ୍ତି ତାହା କଂଗ୍ରେସ ଓ ଲିଗ୍ ଭିତରେ ଜାତ ହୋଇଥିବା ବିଭେଦ ପାଇଁ କେତେକାଂଶରେ ଦାୟୀ । ଜିନ୍ନା ଜଣେ ପ୍ରତିଭାବାନ୍ ବ୍ୟକ୍ତି, କିନ୍ତୁ ଉନ୍ମାର୍ଗଗାମୀ । ସେ ଜଣେ ଧର୍ମଗୁରୁ ବୋଲି ବିଶ୍ୱାସ କରନ୍ତି ।

ଲୁ.ଫି—ସେ ଜଣେ ଖାସା ଓକିଲ ।

ଗାନ୍ଧୀ—ତୁମେ ତାଙ୍କୁ ଚିହ୍ନି ନାହଁ । ୧୯୪୪ରେ ମୁଁ ତାଙ୍କ ସଙ୍ଗେ ୧୮ଦିନ କାଳ ଆଲୋଚନା କରିଥିଲି । ତା'ରି ବଳରେ ମୁଁ କହୁଛି, ସେ ବାସ୍ତବିକ୍ ଇସ୍‌ଲାମର ରକ୍ଷାକର୍ତ୍ତା ବୋଲି ନିଜକୁ ମନେ କରନ୍ତି ।

ଲୁ.ଫି—ପ୍ରକୃତି ଓ ମନୋଭାବରେ ମୁସ୍‌ଲିମ୍‌ମାନେ ଖୁବ୍ ଉଦାରଚିତ୍ତ । ସେମାନଙ୍କଠାରେ ମହତ୍ତ୍ୱ ଅଛି, ସେମାନେ ବନ୍ଧୁଭାବାପନ୍ନ ।

ଗାନ୍ଧୀ—ସେ କଥା ସତ ।

ଲୁ.ଫି – କିନ୍ତୁ ଜିନ୍ନା ନିର୍ମମ, ନିଷ୍କରୁଣ । ତାଙ୍କର ଶରୀର ପରି ମନଟା ବି ପାତଳା । ସେ କେବଳ ଗୋଟାଏ ପକ୍ଷ ପାଇଁ ଓକିଲାତି କରିପାରନ୍ତି; କୌଣସି ମୌଳିକ ମତର ବିସ୍ତାର କରନ୍ତି ନାହିଁ ।

ଗାନ୍ଧୀ—ସେ ଜଣେ ପାତଳା ଲୋକ ସତ, କିନ୍ତୁ ସେ ଫାଙ୍କିବାଜ୍ ନୁହନ୍ତି । ସରଳବିଶ୍ୱାସୀ ମୁସ୍‌ଲିମ୍‌ର ମନକୁ ସେ ମନ୍ତ୍ରମୁଗ୍ଧ କରି ଦେଇଛନ୍ତି ।

ଲୁ.ଫି—ଅନ୍ଲୋନ୍ନତ ଭାରତରେ ନୂଆ ହୋଇ ମୁଣ୍ଡ ଟେକୁଥିବା ମୁସ୍‌ଲିମ୍ ମଧ୍ୟବିତ୍ତ ଶ୍ରେଣୀଙ୍କୁ କିପରି ଉପଯୁକ୍ତ ସ୍ଥାନ ମିଳିବ ସେଇ ଚିନ୍ତାରୁ ହିଁ ମୁସ୍‌ଲିମ୍-ହିନ୍ଦୁ ବିବାଦର ଉଦ୍‌ଭବ ହୋଇଛି ବୋଲି ବେଳେ ବେଳେ ମୁଁ ମନେ କରେ । ଭାରତ ଅଦ୍ୟାପି ବୈଷୟିକ ଉନ୍ନତିର ଏଭଳି ନିମ୍ନସ୍ତରରେ ଅଛି ଯେ ଦରିଦ୍ରଙ୍କୁ

ମଧ୍ୟ ଉପଯୁକ୍ତ ଗ୍ରାସାଚ୍ଛାଦର ସୁଯୋଗ ଜୁଟିବା କଷ୍ଟକର । ପୂର୍ବରୁ ଉନ୍ନତ ହୋଇ ସୁବିଧା ସୁଯୋଗ ମାଡ଼ି ବସିଥିବା ହିନ୍ଦୁ ମଧ୍ୟବିତ୍ତ ଶ୍ରେଣୀ ସଙ୍ଗେ ପ୍ରତିଦ୍ୱନ୍ଦିତା କରିବାରେ ସାହାଯ୍ୟ ଦେଇ ଜିନ୍ନା ମୁସ୍‌ଲିମ୍ ମଧ୍ୟବିତ୍ତ ଶ୍ରେଣୀଙ୍କୁ ହାତ କରିଛନ୍ତି । ବର୍ତ୍ତମାନ ସେ ମୁସ୍‌ଲିମ୍ ଜମିଦାର ଓ ରୟତଙ୍କ ଭିତରେ ଥିବା ବିଭେଦ ଦୂର କରିବାରେ ଲାଗିଛନ୍ତି । ତାହା ସଂଭବ ହେଉଛି ପାକିସ୍ଥାନ ଦୁଆଦ୍ୱାରା ।

ଗାନ୍ଧୀ—ତୁମେ ଠିକ୍ ଠଉରେଇଛ । କିନ୍ତୁ ଜିନ୍ନା ଏ ପର୍ଯ୍ୟନ୍ତ କୃଷକଙ୍କୁ ହାତ କରିବାରେ ସଫଳ ହୋଇ ନାହାନ୍ତି । ସେ ସେଥିପାଇଁ ଚେଷ୍ଟା କରୁଛନ୍ତି ମାତ୍ର କୃଷକର ଜମିଦାର ବା ମଧ୍ୟବିତ୍ତ ଶ୍ରେଣୀ ସଙ୍ଗେ କୌଣସି ପ୍ରକାର ଐକ୍ୟ ନାହିଁ । ଜମିଦାର-ମାନେ କୃଷକଙ୍କୁ ଚୁପି କରି ରଖିଛନ୍ତି । ଭୋଟ ଅଧିକାର ଦରିଦ୍ରଙ୍କ ପାଏ ପହଁଞ୍ଚିନାହିଁ । ପହଞ୍ଚିଲେ ବା କି ଲଭ ? ବ୍ରିଟେନ୍‌ର ମଧ୍ୟ ଭୋଟରମାନେ କିଛି ନ ବୁଝି ଭୋଟ ଦିଅନ୍ତି ।

ଲୁ.ଫି—ମୁଁ ମନେ କରୁଛି, ବ୍ରିଟେନ୍‌ର ଭୋଟରମାନେ ନିଜର ଅଧିକାର ବୁଝନ୍ତି । ଅନ୍ତତଃ ପୂର୍ବରେ ଯେତେ ବୁଝୁଥିଲେ ଆଜକାଲି ତହିଁରୁ ଅଧିକ ବୁଝନ୍ତି ।

ଗାନ୍ଧୀ—ହୋଇଥିବ ; ତଥାପି ସେମାନେ ବିଶେଷ କିଛି ବୁଝନ୍ତି ନାହିଁ ।

ଲୁ.ଫି— କଂଗ୍ରେସରେ ହିନ୍ଦୁ ଛାପା ମରା ହୋଇଥିବା ସ୍ଥଳେ, ଏହା ମୁସଲିମ୍‌ଙ୍କୁ କିପରି ଆପଣାର କରି ପାରିବ ?

ଗାନ୍ଧୀ—ତାହା ଆଖି ପିଛୁଳାକେ ହୋଇ ପାରିବ, ଯଦି ସବର୍ଣ୍ଣ ହିନ୍ଦୁ ଅସବର୍ଣ୍ଣଙ୍କୁ ନିଜ ସଙ୍ଗେ ସମାନ ଅଧିକାର ଉପଭୋଗ କରିବାକୁ ଦିଏ । ହିନ୍ଦୁ ଧର୍ମକୁ ଆତ୍ମଶୁଦ୍ଧି କରିବାକୁ ପଡ଼ିବ । ଏହା ହୋଇପାରିବ ବୋଲି ମୋର ଦୃଢ଼ ଆଶା ଅଛି । ବର୍ତ୍ତମାନ ବି ଏ ଦିଗରେ ଅଗ୍ରଗତି ଚାଲିଛି କିନ୍ତୁ ଅତି ଧୀର ମନ୍ଥର ଭାବେ...... ।

ଲୁ.ଫି—ହିନ୍ଦୁ ଓ ଅସ୍ପୃଶ୍ୟଙ୍କ ମଧ୍ୟରେ ଯାହା ବା ସଂପର୍କ ଅଛି,

ହିନ୍ଦୁଙ୍କର ମୁସ୍‌ଲିମ୍‌ଙ୍କ ସଙ୍ଗେ ତହିଁରୁ କମ୍ ସଂପର୍କ ଥିବାର ମୁଁ ଜାଣୁଛି ।

ଗାନ୍ଧୀ—ଉପରସ୍ତରରେ ହିନ୍ଦୁ ଓ ମୁସଲମାନଙ୍କର ରାଜନୀତିକ ସଂପର୍କ କମି କମି ଯାଉଛି··· ।

ଲୁ.ଫି—ଜିନ୍ନା ମୋତେ ୧୯୪୨ ରେ କହିଥିଲେ ଆପଣ ଭାରତକୁ ସ୍ୱାଧୀନତା ମିଳୁ ବୋଲି ଚାହାନ୍ତି ନାହିଁ ।

ଗାନ୍ଧୀ—ତେବେ ମୁଁ କ'ଣ ଆଉ ଚାହେଁ ?

ଲୁ.ଫି—ସେ କହିଥିଲେ ଆପଣ ଚାହାନ୍ତି ହିନ୍ଦୁରାଜ୍ ।

ଗାନ୍ଧୀ—ତାଙ୍କର ଏହି ମହାଭ୍ରମ । ସେ ଯାହା କହିଲେ ତାହା ନିତାନ୍ତ ହାସ୍ୟାସ୍ପଦ । ମୁଁ ତ ମୁସ୍‌ଲିମ୍, ହିନ୍ଦୁ, ବୌଦ୍ଧ, ଖ୍ରୀଷ୍ଟିୟାନ୍, ଇହୁଦୀ, ପାର୍ସୀ—ସବୁ । ମୁଁ ହିନ୍ଦୁରାଜ୍ ଚାହେଁ ବୋଲି କହିବାରୁ ସେ ମୋତେ ଆଦୌ ଚିହ୍ନନ୍ତି ନାହିଁ ବୋଲି ମୁଁ ଜାଣୁଛି । ସେ ତୁମକୁ ସତ୍ୟ କହି ନାହାନ୍ତି । ସେ କଳାକୁ ଧଳା କରିବା ଓକିଲଙ୍କ ପରି କଥା କହିଛନ୍ତି । ବଦ୍ଧ-ପାଗଳ ଏଭଳି ଅଯଥା ଦୋଷାରୋପ କରେ···ମୋର ବିଶ୍ୱାସ ମୁସଲିମ୍ ଲିଗ୍ ସଂବିଧାନ-ସଭାରେ ଯୋଗ ଦେବ । କିନ୍ତୁ ଶିଖ୍‌ମାନେ ନାହିଁ କରି ଦେଲେଣି । ସେମାନେ ତ ଇହୁଦୀଙ୍କ ପରି ଅକଡ଼ବାଗିଆ ।

ଲୁ.ଫି—ଆପଣ ତ ନିଜେ ଅକଡ଼ବାଗିଆ ।

ଗାନ୍ଧୀ—ଏଁ, ମୁଁ ?

ଲୁ.ଫି—ହଁ, ଆପଣ ଅକଡ଼ବାଗିଆ । ଯାହା ଧରିଥିବେ ସେଇଆ । ପ୍ରତ୍ୟେକ କଥା ଆପଣଙ୍କ ମନ ଅନୁସାରେ ହେଉ ବୋଲି ଆପଣ ଚାହାନ୍ତି । ଆପଣ ଜଣେ ସ୍ୱୈରାଚାରୀ ନିରଙ୍କୁଶ ଶାସକ, କେବଳ ଆପଣଙ୍କ ମେଜାଜ୍‌ଟି ଭଲ, ନରମ ।

ଏକଥା ଶୁଣି ଗାନ୍ଧୀଙ୍କ ସେକ୍ରେଟାରୀମାନେ ଓ ଶିଷ୍ୟମାନେ ସମସ୍ତେ ହସିଲେ । ଗାନ୍ଧୀ ବି ପୂର୍ଣ୍ଣପ୍ରାଣରେ ଏ ହସରେ ଯୋଗ ଦେଲେ ।

ଗାନ୍ଧୀ—ମୁଁ ନିରଙ୍କୁଶ ଶାସକ ? କିନ୍ତୁ ମୋର ଯେ ଆଦୌ କ୍ଷମତା ନାହିଁ । ମୁଁ କଂଗ୍ରେସକୁ ମନାଇ ପାରିଲି ନାହିଁ । କଂଗ୍ରେସ ବିରୁଦ୍ଧରେ ମୋର ଭଡ଼ାଏ ଅଭିଯୋଗ ଅଛି ।

ଲୁ.ଫି—ଅଠର ଦିନ ଜିନ୍ନାଙ୍କ ସଙ୍ଗେ କଥାବାର୍ତ୍ତା ହୋଇ ଆପଣ କ'ଣ ଜାଣିଲେ ?

ଗାନ୍ଧୀ—ମୁଁ ଜାଣିଲି ଯେ, ସେ ଜଣେ ପାଗଳ । ପାଗଳ ବି ବେଳେ ବେଳେ ପାଗଳାମି ଛାଡ଼ି ବିଚାରବନ୍ତ ହୋଇଥାଏ । ତାଙ୍କ ସଙ୍ଗେ ଏତେ ଗୁଡ଼ାଏ ଦିନ କଥାବାର୍ତ୍ତା ହୋଇ ବିଫଳ ହେବାରେ ମୁଁ ଆଦୌ ଦୁଃଖିତ ହୋଇନାହିଁ । ମୋର ପ୍ରତ୍ୟେକ ବିଫଳତା ସଫଳତାର ସୋପାନ ହୋଇଆସିଛି । ସେ ପାଗଳ ହୋଇଥିବାରୁ ତାଙ୍କ ସଙ୍ଗେ କଥାବାର୍ତ୍ତାରେ ମୁଁ ଠିକଏ ବି ଆଗେଇ ପାରିଲି ନାହିଁ । କିନ୍ତୁ ସେ ଭିତରେ ସେ ମୋ ପ୍ରତି ଯେପରି ବ୍ୟବହାର ଦେଖାଇଲେ ସେଥିରେ ବହୁ ମୁସ୍‌ଲିମ ବିରକ୍ତ ହୋଇଥିଲେ ।

ଲୁ.ଫି—ଏବେ ଏ ସମସ୍ୟାର ସମାଧାନ କ'ଣ ?

ଗାନ୍ଧୀ—ଜିନ୍ନାଙ୍କର ଆଉ ୨୫ ବର୍ଷ ବ୍ୟାପୀ କର୍ମଜୀବନ ଅଛି ।

ଲୁ.ଫି—ଆପଣ ଯେତେଦିନ ବଂଚିବେ ସେ ତ ସେତେ ଦିନ ବଂଚିବାକୁ ଚାହାନ୍ତି ।

ଗାନ୍ଧୀ—ତେବେ ମୋତେ ୧୨୫ ବର୍ଷ ହେବା ପର୍ଯ୍ୟନ୍ତ ତାଙ୍କୁ ବଂଚିବାକୁ ପଡ଼ିବ ।

ଲୁ.ଫି—କିନ୍ତୁ ଆପଣ ଆଦୌ ନ ମରିବା ଉଚିତ । ଆପଣ ମଲେ ତ ସେ ମରିବେ । ତେଣୁ ଆପଣ ହେବେ ନରହନ୍ତା । (ହାସ୍ୟ) ଆପଣ ମରିବାର ପରଦିନ ସେ ମରିବେ ।

ଗାନ୍ଧୀ—ଜିନ୍ନାଙ୍କୁ କୌଣସି ଦୁର୍ନୀତି ବା ପ୍ରଲୋଭନ ବଶ କରି ପାରିବ ନାହିଁ । ତାଙ୍କର ମନର ବଳ ଖୁବ୍...... । ଯଦି ଜିନ୍ନା ସମ୍ବିଧାନ ସଭାରେ ନ ପଶନ୍ତି ତେବେ ବ୍ରିଟିଶ୍ ସରକାର ହାଡ଼ବଢ଼େଇ ନ ଯାଇ କ୍ୟାବିନେଟ୍ ମିଶନ୍‌ର ଯୋଜନା ଏକାକୀ କାର୍ଯ୍ୟକାରୀ କରିବାକୁ ଆମକୁ ଡାକିବା ଉଚିତ । ଜିନ୍ନାଙ୍କ ଜୋରଜବରଦସ୍ତି ଆଗରେ ବ୍ରିଟିଶ୍ ରାଜ ଲଇଁଯିବା ଉଚିତ ନୁହେ । ଚର୍ଚ୍ଚିଲ୍ ତ ହିଟ୍‌ଲର୍ ଆଗରେ ଲଇଁ ନ ଥିଲେ ।

ଲୁ.ଫି—ବ୍ରିଟିଶ୍ କାହାର ଜୋର ଜବରଦସ୍ତିରେ ଲଇଁନ୍ତି ନାହିଁ । ସେମାନେ ଲଇଁନ୍ତି ଅବସ୍ଥାଚକ୍ରର ତାଡ଼ନାରେ··· ।'

ତହିଁ ଆରଦିନ ସକାଳେ ମୋର ପାଖ କୋଠରୀରେ ସୁଶୀଳା ପାଇ ଗୀତ ଗାଉଥିବାର ଶୁଣିଲି । ସେ ଜଣେ ଶିକ୍ଷୟିତ୍ରୀ, ଗାନ୍ଧୀଙ୍କ ଗୋଷ୍ଠୀରେ କିଛିଦିନ ହେଲା ଆସି ଯୋଗ ଦେଇଥାନ୍ତି । ସେ ବାରଣ୍ଡାକୁ ବାହାରିବାରେ, କାହିଁକି ଗୀତଗାଉଥିଲେ ବୋଲି ମୁଁ ପଚାରିଲି ।

ସେ ଉତ୍ତର ଦେଲେ, 'ଆନନ୍ଦ ଲାଗିଲା ବୋଲି ।

ମୁଁ ପୁଣି ପଚାରିଲି 'ଆନନ୍ଦର କାରଣ କ'ଣ ?'

ସେ କହିଲେ, 'ବାପୁଙ୍କ ପାଖରେ ଥାଇଁ ବୋଲି ତ ଆମ ସମସ୍ତଙ୍କର ଆନନ୍ଦ ।'

ସେଇଦିନ ଜୟପ୍ରକାଶ ଓ ମୁଁ ବମ୍ବେ ଯାଉଥାଉଁ । ପ୍ରଭାବତୀ ଗାନ୍ଧୀଙ୍କ ପାଖେ ରହିବେ ବୋଲି କଥା ହୋଇଥାଏ । ସେ ବହୁବର୍ଷ ଗାନ୍ଧୀଙ୍କ ସାଥିରେ କାର୍ଯ୍ୟକରି ଆସିଥିଲେ । ଗାନ୍ଧୀଙ୍କ ଅନୁଚରବର୍ଗଙ୍କ ଭିତରେ ଯେତେ ସ୍ତ୍ରୀଲୋକ—ମିସ୍ ସ୍ଳେଡ୍, ରାଜକୁମାରୀ ଅମୃତକୌର, ସୁଶୀଳା ନାୟାର୍, ପ୍ରଭାବତୀ ନାରାୟଣ ଓ ଅନ୍ୟମାନେ—ସେ ସମସ୍ତେ ଗାନ୍ଧୀଙ୍କୁ ସୁଖ ପାଉଥିଲେ ଓ ଗାନ୍ଧୀ ସେମାନଙ୍କୁ ପ୍ରତ୍ୟେକଙ୍କୁ ସୁଖ ପାଉଥିଲେ । ଏହା ଥିଲା ପିତା ଓ କନ୍ୟାର ସ୍ନେହ ସମ୍ପର୍କ ; ଅବଶ୍ୟ ସାଧାରଣ ପିତୃକନ୍ୟା ସମ୍ପର୍କଠାରୁ ଅଧିକ ଜୀବନ୍ତ ଓ ଅଧିକ ପରସ୍ପର ନିର୍ଭରଶୀଳ । ବାପୁଙ୍କଠାରୁ ଅନ୍ତର ହୋଇଗଲେ ବା ତାଙ୍କର ଶାରୀରିକ ସ୍ୱାସ୍ଥ୍ୟ ବିଷୟରେ ଉଦ୍‌ବିଗ୍ନମନା ହୋଇଗଲେ ମିସ୍ ସ୍ଳେଡ୍ ବେରାମ୍ ହୋଇ ପଡ଼ୁଥିଲେ । ମହାତ୍ମାଜୀଙ୍କ ସଙ୍ଗେ ତାଙ୍କର ସମ୍ପର୍କ ଏ ଯୁଗରେ ଅନାବିଳ ନିଷ୍କାମ ପ୍ରେମ-ସମ୍ପର୍କର ଏକ ଜ୍ୱଳନ୍ତ ଉଦାହରଣ । ମହାତ୍ମାଜୀ ଅନେକ ସମୟରେ ମିସ ସ୍ଳେଡ୍‌ଙ୍କୁ କହୁଥିଲେ, ଏ ମର ଶରୀର ନଷ୍ଟ ହୋଇ ଯିବା ପରେ ଆଉ ବିଚ୍ଛେଦ ହେବ ନାହିଁ । ମୁଁ ତୁମର ଆହୁରି ନିକଟତର ହୋଇଯିବି । ଶରୀର ହିଁ ହୋଇଛି ଅନ୍ତରାୟ ।

ରାଜକୁମାରୀ ଓ ମିସ୍ ସ୍ଳେଡ୍ ତାଙ୍କ ହାତକୁ ଚୁମ୍ବନ ଦେଉଥିଲେ, ପ୍ରତ୍ୟଭିବାଦନରେ ଗାନ୍ଧୀ ଏ ଦୁହିଙ୍କ କପୋଳକୁ ଆଉଁସୁଥିଲେ । ଗାନ୍ଧୀ କହୁଥିଲେ: ସେ ଯେ କାମକୁ ଜୟ କରିଛନ୍ତି, ତାହା ସ୍ତ୍ରୀମାନଙ୍କ ଛୁଇଁ ନ ମାଡ଼ିବା ଯୋଗୁଁ ନୁହେଁ, ଏହି କଥା ପ୍ରମାଣ କରିବାକୁ ସେ ଇଚ୍ଛା କରି, ସ୍ତ୍ରୀଜନ ବେଷ୍ଟିତ ହୋଇ ରହୁଥିଲେ । କିନ୍ତୁ ୧୯୩୬ରେ ତାଙ୍କର 'କାମବିକାରଦ୍ୟୋତକ ସ୍ୱପ୍ନ' ହେବାରେ ସେ ଛ' ସପ୍ତାହ ମୌନବ୍ରତ

ପାଳିଲେ ଓ ସ୍ତ୍ରୀଲୋକଙ୍କ କାନ୍ଧରେ ଭର ଦେଲେ ନାହିଁ । ହରିଜନରେ ଏ ବୃତ୍ତାନ୍ତ ଲେଖିବା ପୂର୍ବରୁ ସେ ଘଟଣାଟି ତାଙ୍କର ନାରୀସେକ୍ରେଟାରୀମାନଙ୍କୁ କହି ଦେଇଥିଲେ । ଏମାନଙ୍କଠାରୁ ସେ ତାଙ୍କର ଅନ୍ତରର କଥା ଲୁଚଉ ନ ଥିଲେ ।

ନିଜଠାରୁ ଆଉ କାହା ପ୍ରତି ଗାନ୍ଧୀ ଅଧିକ ଆଦର ଦେଖାଉଛନ୍ତି ମନେ ହେଲେ, ଶିଷ୍ୟାମାନଙ୍କ ମଧ୍ୟରୁ କେହି କେହି ଈର୍ଷା କରୁଥିଲେ । ଏକଥା ଗାନ୍ଧୀ ଜାଣିଥିଲେ ଏବଂ ସବୁବେଳେ ପକ୍ଷପାତିତାଶୂନ୍ୟ ହୋଇ ଚଳିବାକୁ ଚେଷ୍ଟା କରୁଥିଲେ । ଶିଷ୍ୟାମାନଙ୍କର ସେବା ଓ ଏକ-ନିଷ୍ଠତାରେ ସେ ଆପ୍ୟାୟିତ ହେଉଥିଲେ । ଗାନ୍ଧୀଙ୍କ ପ୍ରତି ଆକର୍ଷଣ ଯୋଗୁଁ ଏ ନାରୀମାନେ ଅବିବାହିତା ରହିଥିଲେ ନା ବିଭା ନ ହୋଇ ଥିବାରୁ ଗାନ୍ଧୀଙ୍କ ପ୍ରତି ଅନୁରକ୍ତା ରହିଥିଲେ ଏକଥା ଠଉରାଇବାକୁ ଚେଷ୍ଟା କରିବା ପଣ୍ଡଶ୍ରମ ମାତ୍ର । ଜଣେ ତ ବିଭା ହୋଇଥିଲେ, କିନ୍ତୁ ବିବାହ ପରେ ବି ବ୍ରହ୍ମଚର୍ଯ୍ୟ ବ୍ରତ ପାଳନ କରି ଗାନ୍ଧୀଙ୍କ ପାଖେ ରହିଗଲେ । ଏହି ନାରୀମାନେ ଗ୍ରୀକ୍‌ପୁରାଣବର୍ଣ୍ଣିତ ରଣରଙ୍ଗିମୀ ଆମାଜନମାନଙ୍କ ପରି ଗାନ୍ଧୀବାଦର ନିରଳସ ଓ ନିର୍ଭୀକ ସେବିକା ହୋଇ ରହିଥିଲେ ।

ଗାନ୍ଧୀଙ୍କ ପ୍ରତି ଶ୍ରଦ୍ଧାବାନ୍ ରବୀନ୍ଦ୍ର ନାଥ ଗାନ୍ଧୀଙ୍କ ବିଷୟରେ ଲେଖିଛନ୍ତି, 'ମନୁଷ୍ୟଜୀବନର ନୈତିକ ବିକାଶ ପଥରେ ପ୍ରତିକୂଳ ବୋଲି ସେ ସ୍ତ୍ରୀ-ସେବୀ ଜୀବନକୁ ନିନ୍ଦା କରିଛନ୍ତି ଏବଂ 'କ୍ରେଜର୍ ସନାଟା'ର ଲେଖକଙ୍କର ସ୍ତ୍ରୀ-ସମ୍ଭୋଗ ପ୍ରତି ଯେତେ ଭୟ ଥିଲା ଯାଙ୍କର ବି ତହିଁରୁ କମ୍ ନ ଥିଲା । କିନ୍ତୁ ଟଲଷ୍ଟୟ ମନେ କରୁଥିଲେ ଯେ ସ୍ତ୍ରୀମାନେ ପୁରୁଷଙ୍କୁ ପାପପଥରେ ପ୍ରଲୋଭିତ କରନ୍ତି ; ତେଣୁ ସେ ଘୃଣାରେ ସ୍ତ୍ରୀମାନଙ୍କଠାରୁ ଦୂରରେ ରହିବାକୁ ପସନ୍ଦ କରୁଥିଲେ । ଏଭଳି ଘୃଣା ଗାନ୍ଧୀଙ୍କଠାରେ ନ ଥିଲା । ବସ୍ତୁତଃ ସ୍ତ୍ରୀମାନଙ୍କ ପ୍ରତି ତାଙ୍କର ଶ୍ରଦ୍ଧା ତାଙ୍କ ଚରିତ୍ରର ମହତ୍ତମ ଏବଂ ସର୍ବାବସ୍ଥାରେ ସ୍ଥାୟୀ ବୈଶିଷ୍ଟ୍ୟ ମଧ୍ୟରେ ପରିଗଣିତ ହୋଇଛି । ସେ ଯେଉଁ ମହାନ୍ ଆନ୍ଦୋଳନକୁ ନେତୃତ୍ୱ ଦେଉଛନ୍ତି, ତହିଁର ସର୍ବଶ୍ରେଷ୍ଠ ଓ ବିଶ୍ୱସ୍ତ ସହକର୍ମୀଙ୍କ ମଧ୍ୟରେ ସେ ଦେଶର କେତେଜଣ ମହିଳାଙ୍କୁ ସ୍ଥାନ ଦେଇଛନ୍ତି ।

ଜୁଲାଇ ୧୮ ତାରିଖରେ ମହାତ୍ମାଙ୍କ ସଙ୍ଗେ ମୋର ଶେଷ କଥାବାର୍ତ୍ତା

ହୋଇଥିଲ । ମୁଁ ଆରମ୍ଭ କଲି, 'ଆପଣ "ଅନ୍ଧାରରେ ଅଣ୍ଡାଳୁ ଯାହା ପାଇଛନ୍ତି" ବୋଲି କହୁଛନ୍ତି ଅର୍ଥାତ୍ ଆପଣଙ୍କ ଅନ୍ତରର ପ୍ରେରଣା ଅନୁସାରେ ଯଦି କାର୍ଯ୍ୟକାରୀ କମିଟି ସିଦ୍ଧାନ୍ତ କରିଥାନ୍ତେ ତେବେ ତ କ୍ୟାବିନେଟ୍ ମିଶନ୍‌ର ସମ୍ବିଧାନ-ସଭା ଯୋଜନାକୁ ବି ପ୍ରତ୍ୟାଖ୍ୟାନ କରିଥାନ୍ତେ ।'

ଗାନ୍ଧୀ– ହଁ, କିନ୍ତୁ ମୁଁ ତାହା କରିଇ ଦେଲି ନାହିଁ ।

ଲୁ. ଫି— ଅର୍ଥାତ୍ ଆପଣ କହିବାକୁ ଚାହାନ୍ତି ଯେ, ଆପଣ ଆପଣଙ୍କ ଅନ୍ତରର ପ୍ରେରଣା ଉପରେ ଜୋର ଦେଲେ ନାହିଁ ।

ଗାନ୍ଧୀ—ନା, ମୁଁ ତହିଁରୁ ଅଧିକ କିଛି କଲି । ସେମାନେ ଯଦି ନିଜେ ମୋ ପ୍ରେରଣାର ଅନୁରୂପ ଚିନ୍ତା ନ କରୁଛନ୍ତି, ତେବେ ମୋ ପ୍ରେରଣା ଅନୁସାରେ କାର୍ଯକାରୀ ହୁଅନ୍ତୁ ନାହିଁ ବୋଲି ମୁଁ ବାରଣ କଲି । ମୁଁ ସେପରି ନ କରିଥିଲେ କ'ଣ ହୋଇଥାନ୍ତା ଅନୁମାନ କରିବା ନିଷ୍ପ୍ରୟୋଜନ । ବସ୍ତୁତଃ, ଡକ୍ଟର ରାଜେନ୍ଦ୍ର ପ୍ରସାଦ ମୋତେ ପଚାରିଥିଲେ, "ଆମେ ବୁଝୁଁ ବା ନ ବୁଝୁଁ, କ୍ୟାବିନେଟ୍ ମିଶନ୍‌ର ସମ୍ବିଧାନ ସଭା ସମ୍ପର୍କୀୟ ପ୍ରସ୍ତାବ ଗ୍ରହଣ କର ନାହିଁ ବୋଲି ଆମକୁ ମନା କରିବାକୁ ଆପଣଙ୍କ ଅନ୍ତରର ପ୍ରେରଣା ଆପଣଙ୍କୁ ନିର୍ଦ୍ଦେଶ ଦେଉଛି ନା ନାହିଁ ?" ମୁଁ ଉତ୍ତର ଦେଲି, "ନା, ନିଜର ବିଚାରବୁଦ୍ଧି ଉପରେ ନିର୍ଭର କର , ମୋର ବିଚାର ବୁଦ୍ଧି ମୋ ଅନ୍ତରର ପ୍ରେରଣାକୁ ସମର୍ଥନ ନ କରିବା ସ୍ଥଳେ ମୁଁ ଏ ଦାୟିତ୍ୱ ନେଇ ପାରିବି ନାହିଁ । ମୋ' ଅନ୍ତରର ପ୍ରେରଣା ମୋ ବିଚାର ବିରୁଦ୍ଧରେ ବିଦ୍ରୋହ କରୁଛି । ତୁମଠାରୁ କିଛି ଲୁଚାଇବି ନାହିଁ ବୋଲି ତୁମ ପାଖେ ମୋ ଅନ୍ତରର ସଂଶୟ ପ୍ରକାଶ କଲି । ମୋର ବିଚାର-ବୁଦ୍ଧି ମୋ ଅନ୍ତରର ପ୍ରେରଣାକୁ ସମର୍ଥନ ନ କଲେ ମୁଁ ପ୍ରେରଣା ଅନୁସାରେ କିଛି କରେ ନାହିଁ ।"

ଲୁ.ଫି—କିନ୍ତୁ ଆପଣ ନିଜେ ମୋତେ କହିଛନ୍ତି, ବେଳେ ବେଳେ ଆପଣ ଆପଣଙ୍କ ପ୍ରେରଣା ଅନୁସାରେ କାର୍ଯ୍ୟକାରୀ ହୋଇଛନ୍ତି । ଉଦାହରଣ ସ୍ୱରୂପ ଆପଣଙ୍କର କେତୋଟି ଅନଶନ ପୂର୍ବରୁ ଆପଣଙ୍କ ଅନ୍ତରରୁ ଆପଣ ପ୍ରେରଣା ପାଇଥିଲେ ।

ଗାନ୍ଧୀ – ହଁ, କିନ୍ତୁ ସେ ସବୁ ସ୍ଥଳରେ ବି ଅନଶନ କାର୍ଯ୍ୟତଃ ଆରମ୍ଭ ହେବା ପୂର୍ବରୁ ମୋର ବିଚାର ବୁଦ୍ଧି ମୋ ପ୍ରେରଣାକୁ ସମର୍ଥନ କରିଥିଲା···।

ଲୁ.ଫି—ତେବେ ଆପଣ ବର୍ତ୍ତମାନର ରାଜନୀତିକ ପରିସ୍ଥିତିରେ ଅନ୍ତରର ଏ ପ୍ରେରଣା କଥାଟା ଆଣି କାହିଁକି ପୂରାଇଲେ ?

ଗାନ୍ଧୀ—ମୁଁ ତାହା କରି ନାହିଁ । ସେମାନଙ୍କ ପ୍ରତି ବିଶ୍ୱାସରେ ଏକ-ନିଷ୍ଠ ରହି ଯାହା କରିବାର କଥା ମୁଁ କରିଛି । କ୍ୟାବିନେଟ୍ ମିଶନ୍‌ର ସଦୁଦ୍ଦେଶ୍ୟରେ ମୋର ବିଶ୍ୱାସ ଅବିଚଳିତ ଭାବେ ରଖିବାକୁ ମୁଁ ଚାହିଁଥିଲି । ତେଣୁ ମୁଁ ତାଙ୍କୁ ଜଣାଇ ଦେଇଥିଲି ଯେ, ତାଙ୍କ ପ୍ରସ୍ତାବ ଉପରେ ମୋ ଅନ୍ତରରେ ସଂଶୟ ହେଉଛି । ମୁଁ ନିଜକୁ ନିଜେ ଏଇପରି ବୁଝାଇଲି, "ଧର, ସେମାନଙ୍କ ଉଦ୍ଦେଶ୍ୟ ମନ୍ଦ ; ତେବେ ମୋ ଚିଠି ପାଇ ସେମାନେ ଲଜ୍ଜିତ ହେବେ । ସେମାନେ ମନେ ମନେ ବିଚାରିବେ, 'ସେ ଯାହା କହୁଛି, ତାହା ସେ'ର ମନରେ ସ୍ୱତଃ ଜାତ ହେଉଛି ବୋଲି କହୁଛି, ଯୁକ୍ତି ଦେଇପାରୁନାହିଁ । ଯୁକ୍ତି ତ ଆମକୁ ଜଣା ।' ତାଙ୍କ ବିଚାରରେ ମୋର ସଂଶୟ ଯୁକ୍ତିଯୁକ୍ତ ହେବାରୁ ସେମାନଙ୍କ ବିବେକ ସେମାନଙ୍କୁ ଦଂଶନ କରିବ ।"

ଲୁ.ଫି—ସେମାନଙ୍କୁ ବିବେକ ତ ଦଂଶନ କରିନାହିଁ । ତେବେ କ'ଣ ସେମାନଙ୍କ ଉଦ୍ଦେଶ୍ୟ ସାଧୁ ବୋଲି ପ୍ରମାଣିତ ହେଉନାହିଁ ?

ଗାନ୍ଧୀ—ହେଉ । ମୁଁ ପ୍ରଥମେ ତାଙ୍କ ପ୍ରସ୍ତାବାବଳୀକୁ ଯେଉଁ ସାର୍ଟିଫିକେଟ୍ ଦେଇଛି, ସେଥିରୁ ପଦେ ବି ପ୍ରତ୍ୟାହାର କରୁନାହିଁ ।

ଲୁ.ଫି—ଆପଣ ହିଂସାକାଣ୍ଡକୁ ଭୟ କରିବା ହେତୁ ଏଭଳି ନିରାଟ ବୈଧାନିକତାର ଧାରା ଧରିଛନ୍ତି ବୋଧହୁଏ ।

ଗାନ୍ଧୀ—ମୁଁ ଏତିକିମାତ୍ର କହୁଛି, ଆମେ ନିଶ୍ଚୟ ସାଂବିଧାନିକ ସଭାରେ ଯୋଗ ଦେବା ଏବଂ ସେଥିକୁ କାର୍ଯ୍ୟକାରୀ କରିବାକୁ ଉଦ୍ୟମ କରିବା । ଯଦି କ୍ୟାବିନେଟ୍ ମିଶନ୍‌ର ମତଲବ୍ ଖରାପ ତେବେ ବିଳେ କ୍ରମେ ଧରାପଡ଼ିଯିବ । ଆମର କିଛି କ୍ଷତି ହେବ ନାହିଁ ; ଯାହା କ୍ଷତି ହେବ ତାଙ୍କର ଓ ସମଗ୍ର ମାନବ-ସଭ୍ୟତାର ।

ଲୁ.ଫି—ସେ ଯାହାହେଉ, ମୋ ମନରେ ଧାରଣା ହେଉଛି—ଆପଣ, ଭାରତୀୟ ଜାତୀୟ ବାହିନୀ ଓ ସୁଭାଷଚନ୍ଦ୍ର ବୋଷ ଦେଶରେ ଯେଉଁ ମନୋଭାବ ଜାତ କରି ଦେଇଛନ୍ତି, ତାକୁ ଇ ଡରୁଛନ୍ତି (ସୁଭାଷଚନ୍ଦ୍ର ବୋଷ ଜାତୀୟ ବାହିନୀର ନେତା । ଦ୍ୱିତୀୟ ମହାଯୁଦ୍ଧ ବେଳେ ସେ ଜର୍ମାନୀ ଓ ଜାପାନ ଯାଇଥିଲେ) । ଏ ମନୋଭାବ ସମଗ୍ର ଭାରତରେ ବ୍ୟାପି ଯାଇଛି । ସୁଭାଷ ଭାରତୀୟ ଯୁବଶକ୍ତିର ମନରେ ଗଭୀର ପ୍ରଭାବ ପକାଇ ପାରିଛନ୍ତି । ଏମାନେ ବର୍ତ୍ତମାନ ଭାରତ-ପ୍ରେମରେ ଏତେ ଉଦ୍‌ବୁଦ୍ଧ ଯେ, ଭଲମନ୍ଦର ବିଚାରକୁ ପସନ୍ଦ କରିବେ ନାହିଁ ।

ଗାନ୍ଧୀ—ସମଗ୍ର ଭାରତ ଉପରେ ସୁଭାଷଙ୍କର ପ୍ରଭାବ ପଡ଼ିନାହିଁ । ସମଗ୍ର ଭାରତ ବୋଇଲେ ବିରାଟ ବସ୍ତୁ । ଦେଶର ଯୁବକ ଯୁବତୀଙ୍କ ଭିତରୁ ଗୋଟାଏ ଅଂଶ ମାତ୍ର ତାଙ୍କର ପ୍ରଭାବରେ ପଡ଼ିଛନ୍ତି । ଭଗବାନ୍ ଭାରତବାସୀଙ୍କ ପାଇଁ ଶାନ୍ତଭାବ ଓ ନିରୀହତା ଏକଚାଟିଆ କରି ରଖିଛନ୍ତି । 'ନିରୀହ ହିନ୍ଦୁ' ବୋଲି ଆମକୁ ଦୁର୍ନାମ ଦିଆଯାଏ । ମୁଁ ଯାକୁ ମନେକରେ ଆମର ପ୍ରଶସ୍ତି ବୋଲି ; ଠିକ୍ ଯେପରି ଚର୍ଚ୍ଚିଲ୍ ମୋତେ 'ଉଲଗ୍ନ ଫକୀର' ବୋଲି ଯାହା କହିଥିଲେ ତା'କୁ ମୁଁ ପ୍ରଶସ୍ତି ବୋଲି ଗ୍ରହଣ କରିଥିଲି, ଏବଂ ସେ କଥା ତାଙ୍କୁ ବି ଜଣାଇ ଦେଇଥିଲି । ମୁଁ ଚର୍ଚ୍ଚିଲଙ୍କ ପାଖକୁ ଲେଖିଥିଲି, ଲଙ୍ଗଳା ଫକୀର ହେବାକୁ ମୋର କାମନା, କିନ୍ତୁ ଏ ପର୍ଯ୍ୟନ୍ତ ହୋଇପାରିନାହିଁ ।

ଲୁ.ଫି—ସେ ଆପଣଙ୍କ ଚିଠିର ଜବାବ ଦେଲେ ?

ଗାନ୍ଧୀ—ହଁ, ସେ ଭାଇସ୍‌ରୟଙ୍କ ଜରିଆରେ ମୋ ଚିଠିର ପ୍ରାପ୍ତି-ସ୍ୱୀକାର ବଡ଼ ଭଦ୍ରଭାଷାରେ କରିଥିଲେ । ସେ କଥା ଥାଉ··· ସରଳ ସ୍ତ୍ରୀଲୋକମାନେ, ଯେଉଁମାନଙ୍କୁ ସଭ୍ୟତା ସ୍ପର୍ଶ କରିନାହିଁ, ଏବଂ ଯେଉଁମାନେ ସଭ୍ୟତାଦ୍ୱାରା ସଂସ୍କୃତିଚ୍ୟୁତ ହୋଇ ନାହାନ୍ତି, ସେମାନେ ସମସ୍ତେ ମୋ ପଟେ ଅଛନ୍ତି ।

ଲୁ.ଫି—ଆପଣ ତ ପୁଣି ବୋଷଙ୍କୁ ତାରିଫ୍ କରନ୍ତି । ଆପଣ ତ ବିଶ୍ୱାସ କରନ୍ତି, ସେ ଅଦ୍ୟାପି ଜୀବିତଅଛନ୍ତି (ଉଡ଼ାଜାହାଜ ଦୁର୍ଘଟଣାରେ ତାଙ୍କର ମୃତ୍ୟୁହେବାର ଖବର ଏହାଆଗରୁ ବାହାରିଥିଲା । )

ଗାନ୍ଧୀ—ବୋଷଙ୍କ ନାମରେ ଯେଉଁ କାହାଣୀ ଓ ପ୍ରଶସ୍ତି ପ୍ରଚାରିତ ହେଉଛି ତାକୁ ମୁଁ ପ୍ରଶ୍ରୟ ଦେଉନାହିଁ । ତାଙ୍କ ସଙ୍ଗେ ମୁଁ ଏକମତ ହେଉ ନ ଥିଲି । ସେ ବଂଚିଛନ୍ତି ବୋଲି ମୁଁ ଏବେ ଆଉ ବିଶ୍ୱାସ କରୁନାହିଁ । ଏକ ସମୟରେ ସେ ବଂଚିଛନ୍ତି ବୋଲି ମୋ'ର ଅନ୍ତରର ପ୍ରେରଣା ହୋଇଥିଲା ; କାରଣ, ସେତେବେଳେ ସେ ଇଂଲଣ୍ଡର ଆଦିମ ଯୁଗର ରବିନ୍‌ହୁଡ଼ଙ୍କ ପରି ଜନମାନସରେ ପ୍ରତିଷ୍ଠା ଲାଭ କରିଥିଲେ ।

ଲୁଂଫି— ମୋର କହିବାର କଥା ଏଇ : ବୋଷ୍ ଜର୍ମାନୀ ଓ ଜାପାନ ଯାଇଥିଲେ ; ଦୁଇଟିଯାକ ଫାସିଷ୍ଟ୍ ଦେଶ ଥିଲା । ଯଦି ସେ ଫାସିଷ୍ଟ୍ ନୀତିର ସମର୍ଥକ ତେବେ ତାଙ୍କ ପ୍ରତି ଆପଣଙ୍କର ସମର୍ଥନ ନ ଥିବାର କଥା । ଯଦି କହନ୍ତି ଯେ, ସେ ଥିଲେ ସ୍ୱଦେଶବତ୍ସଳ, ଏବଂ ଜର୍ମାନୀ ଓ ଜାପାନର ସହାୟତାରେ ଭାରତ ମୁକ୍ତିପାଇବ ବୋଲି ବିଶ୍ୱାସ କରୁଥିଲେ, ତାହା ପୁଣି ବିଶେଷ କରି ୧୯୪୪ରେ,ତବେ ସେ ଥିଲେ ନିର୍ବୋଧ ; ଜନନାୟକ-ମାନେ ନିର୍ବୋଧ ହେବା ଚଳେ ନାହିଁ ।

ଗାନ୍ଧୀ—ଦେଖୁଛି, ଜନନାୟକମାନଙ୍କ ବିଷୟରେ ତୁମର ଖୁବ୍ ଉଚ୍ଚଧାରଣା । କିନ୍ତୁ ମୁଁ ମନେକରେ ସେମାନେ ଅଧିକାଂଶ ନିର୍ବୋଧ···ଯାହାହେଉ, ମୋତେ ଘୋର ପ୍ରତିକୂଳ ପରିସ୍ଥିତିରେ କାମ କରିବାକୁ ହେଉଛି······। ଦେଶରେ ଘୋର ହିଂସାବୃତ୍ତି ସର୍ବସ୍ୱ ହୋଇ ରହିଛି । ମୁଁ ମୋ ଉପାୟରେ ଏହାର ମୁକାବିଲା କରିବାରେ ଲାଗିଛି । ମୋର ଦୃଢ଼ବିଶ୍ୱାସ ଏ ଯେଉଁ ହିଂସାବୃତ୍ତି ସୃଷ୍ଟି ରହିଛି ତାହା ଯଥାକାଳରେ ଆପେ ଆପେ ଲୀନ ହୋଇଯିବ···। ଏହା ସ୍ଥାୟୀ ହୋଇ ନ ପାରେ ; କାରଣ, ଏହା ଭାରତୀୟ ସଂସ୍କୃତିର ପ୍ରତିକୂଳ । କିନ୍ତୁ ଖାଲି କଥାରେ ମୂଲ୍ୟ କ'ଣ ? ମୁଁ ବିଶ୍ୱାସ କରେ ଯେ, ଏକ ଦୁର୍ବୋଧ୍ୟ ଦୈବିଶକ୍ତିର ନିର୍ଦ୍ଦେଶରେ ଆମର ଭାଗ୍ୟ ନିୟନ୍ତ୍ରିତ ହେଉଛି—ସେ ଶକ୍ତିକୁ ଭଗବାନ କହିପାର, ବା ଅନ୍ୟ କୌଣସି ନାମ ଦେଇପାର ।

———

# ପଞ୍ଚଦଶ ପରିଚ୍ଛେଦ

## ତୀର୍ଥଯାତ୍ରୀର ତୀର୍ଥାଟନ

ଅସ୍ଥାୟୀ କେନ୍ଦ୍ର ସରକାର ପାଇଁ କଂଗ୍ରେସ ଯେଉଁ ନାମ ତାଲିକା ଦେବାର କଥା ସେଥିରେ ଜଣେ ମୁସଲମାନଙ୍କ ନାମ ଅନ୍ତର୍ଭୁକ୍ତ କରିବାକୁ ଚାହୁଁଥିଲେ । ଜିନ୍ନା ଏଥିରେ ଘୋର ଆପତ୍ତି କରିବାରୁ ଓ୍ୱାଭେଲ କଂଗ୍ରେସର ଏ ଦାବୀ ରକ୍ଷା କରିବାକୁ ରାଜି ହେଲେ ନାହିଁ । ତେଣୁ କଂଗ୍ରେସ ଅସ୍ଥାୟୀ ସରକାରରେ ଯୋଗ ଦେବେ ନାହିଁ ବୋଲି ଜଣାଇ ଦେଲେ । ଓ୍ୱାଭେଲ୍ ଅବଶ୍ୟ ପ୍ରକାଶ୍ୟରେ ପ୍ରତିଶ୍ରୁତ ହୋଇଥିଲେ ଯେ, ବର୍ତ୍ତମାନ ଗଠିତ ହେବାକୁ ଯାଉଥିବା ସରକାର ଯେଉଁ ସର୍ତ୍ତ ଓ ପ୍ରକାରରେ ଗଠିତ ହେଉଛି ତାହା ଭବିଷ୍ୟତ ପାଇଁ ନଜିର୍ ହୋଇ ରହିବ ନାହିଁ । କଂଗ୍ରେସ କିନ୍ତୁ ଆଶଂକା କଲେ, ଏହା ଭବିଷ୍ୟତକୁ ନଜିର୍ ହୋଇ ରହିଯିବ, ତେଣୁ ଜଣେ ବି କଂଗ୍ରେସଭାବାପନ୍ନ ମୁସ୍‌ଲିମ୍ କେନ୍ଦ୍ର ମନ୍ତ୍ରୀମଣ୍ଡଳରେ ରହିବେ ନାହିଁ ବୋଲି ଜିନ୍ନାଙ୍କ ଜିଦ୍‌କୁ କଂଗ୍ରେସ ଦୃଢ଼ଭାବରେ ଅସ୍ୱୀକାର କଲେ ।

ଓ୍ୱାଭେଲ୍ କଂଗ୍ରେସ ଓ ମୁସ୍‌ଲିମ୍ ଲିଗ୍‌କୁ କେନ୍ଦ୍ର ସରକାର ପାଇଁ ପୁଣି ଥରେ ନାମ ତାଲିକା ମାଗିଲେ । ଏଥର କଂଗ୍ରେସର ମତାନୁବର୍ତ୍ତୀ ହୋଇ ସେ ସର୍ତ୍ତ ଦେଲେ ଯେ, କୌଣସି ପକ୍ଷ ଅପର ପକ୍ଷର ତାଲିକାରୁ କାହାର ନାମ କାଟି ପାରିବେ ନାହିଁ । ଏଥର ଜିନ୍ନା ଅସ୍ଥାୟୀ ସରକାରରେ ଭାଗ ନେବାକୁ ନାହିଁ କରି ଦେଲେ । ତହୁଁ ୧୯୪୬, ଅଗଷ୍ଟ ୧୨ ତାରିଖରେ ଓ୍ୱାଭେଲ୍ କେନ୍ଦ୍ର ସରକାର ଗଢ଼ିବା ନିମନ୍ତେ ଏକମାତ୍ର ନେହେରୁଙ୍କୁ ଆହ୍ୱାନ କଲେ । ନେହେରୁ ଜିନ୍ନାଙ୍କ ଦ୍ୱାରସ୍ଥ ହେଲେ ଏବଂ କେନ୍ଦ୍ର ସରକାରରେ ମୁସ୍‌ଲିମ୍ ଲିଗ୍ ଯେଉଁ ଯେଉଁ ସ୍ଥାନ ନେବାକୁ ଚାହାନ୍ତି ନିଅନ୍ତୁ ବୋଲି ଯାଚିଲେ । ଜିନ୍ନା ଏ ପ୍ରସ୍ତାବ ଏକାବେଳକେ ପ୍ରତ୍ୟାଖ୍ୟାନ କରନ୍ତେ ନେହେରୁ ନିଜ ଦାୟିତ୍ୱରେ ସରକାର ଗଠନ କଲେ । ଏଥିରେ ସେ ରଖିଲେ ଛଅଜଣ କଂଗ୍ରେସବାଲା—ପାଞ୍ଚଜଣ ସବର୍ଣ୍ଣ ହିନ୍ଦୁ ଓ ଜଣେ ହରିଜନ । ଏ ଛ'ଜଣଙ୍କ

ବ୍ୟକ୍ତିତ ଜଣେ ଖ୍ରୀଷ୍ଟିଆନ୍, ଜଣେ ଶିଖ୍, ଜଣେ ପାର୍ସି, ଏବଂ ମୁସ୍‌ଲିମ୍ ଲିଗ୍‌ରେ ନଥିବା ଦୁଇଜଣ ମୁସଲିମ୍ ରଖିଲେ । ଏ ତାଲିକା ଗ୍ରହଣ କରି ଓ୍ୱାଭେଲ୍ ଘୋଷଣା କଲେ, ସ୍ବାଙ୍କ ସାଙ୍ଗକୁ ମୁସ୍‌ଲିମ୍ ଲିଗ୍ ନିଜ ମେମ୍ବରଙ୍କ ଭିତରୁ ପାଞ୍ଚଜଣଙ୍କ ନାମ ସୁପାରିସ୍ କରି ପାରନ୍ତି । ଜିନ୍ନା କାହାର ନାମ ସୁପାରିସ୍ କରିବାକୁ ଆଗ୍ରହୀ ହେଲେ ନାହିଁ ।

ମୁସ୍‌ଲିମ୍ ଲିଗ୍ ଅଗଷ୍ଟ ୧୬ ତାରିଖକୁ 'ପ୍ରତ୍ୟକ୍ଷ (ସିଧାସଳଖ) କର୍ମର ଦିବସ' ରୂପେ ପାଳନ କରିବାକୁ ଘୋଷଣା କଲେ । ଚୈାରିଦିନବ୍ୟାପୀ ଭୀଷଣ-ଦଙ୍ଗା କଲିକତାରେ ମାଡିଗଲା । ଲର୍ଡ ପେଥିକ୍ ଲରେନ୍‌ସ୍ ଲେଖି-ଯାଇଛନ୍ତି, 'ସରକାରୀ ସୂତ୍ରରୁ ଜଣାଯାଏ ଯେ, ଏଥିରେ ୫ ହଜାର ଲୋକ ମଲେ, ଓ ୧୫ ହଜାର ଆହତ ହେଲେ; କିନ୍ତୁ ବେସରକାରୀ ହିସାବରେ ଏ ସଂଖ୍ୟାମାନ ଆହୁରି ଅଧିକ ବୋଲି ପ୍ରକାଶ ପାଇଛି ।'

ସାର୍ ସଫାତ୍ ଆହମେଦ୍ ଖାଁ ନେହେରୁଙ୍କ ମନ୍ତ୍ରୀମଣ୍ଡଳରେ ଯୋଗ-ଦେବାକୁ ମୁସ୍‌ଲିମ୍ ଲିଗ୍‌ରୁ ଇସ୍ତଫା ଦେଇ ବାହାରି ଆସିଥିଲେ । ଅଗଷ୍ଟ ୨୪ ତାରିଖର ମୁହଁ ସଞ୍ଜବେଳେ ସିମଳାର ନିର୍ଜନ ସ୍ଥାନରେ ତାଙ୍କୁ ଆକ୍ରମଣ କରି ସାତଥର ଛୁରିରେ ଭୁଷି ମାରି ଦିଆଗଲା । ଉଚ୍ଚ ବ୍ରିଟିଶ୍ କର୍ତ୍ତୃପକ୍ଷ ଏ ହତ୍ୟା ବିଷୟରେ ରିପୋର୍ଟ୍ ଦେଇଥିଲେ, 'ସ୍ପଷ୍ଟତଃ ରାଜନୈତିକ ।'

ସେପ୍‌ଟେମ୍ବର ୨ ତାରିଖରେ ନେହେରୁ ଭାରତର ପ୍ରଧାନମନ୍ତ୍ରୀ ହେଲେ । କଂଗ୍ରେସର ନବନିର୍ବାଚିତ ସଭାପତି ଜେ.ବି. କୃପାଲାନୀ ଘୋଷଣା କଲେ, 'ଆମର ପ୍ରତିନିଧି ଓ ନେତାମାନେ କ୍ଷମତାର ଦୁର୍ଗକୁ ବଳପୂର୍ବକ ଦଖଲ କରିଛନ୍ତି ।'

ସେହି ସେପ୍‌ଟେମ୍ବର ୨ ତାରିଖରେ ଗାନ୍ଧୀ ନୂଆ ଦିଲ୍ଲୀର ହରିଜନ ବସ୍ତିରେ ଥିଲେ । ସେ ସେଦିନ ଖୁବ୍ ଭୋରରୁ ଉଠି ନେହେରୁଙ୍କ ପାଖକୁ ନୂତନ ସରକାରର କର୍ତ୍ତବ୍ୟ ସୂଚାଇ ପତ୍ର ଖଣ୍ଡିଏ ଲେଖିଥିଲେ । ସେହି ସନ୍ଧ୍ୟାର ପ୍ରାର୍ଥନା ସଭାରେ ସେ କହିଥିଲେ, ଆଜି ଭାରତ ଇତିହାସରେ ଗୋଟିଏ ଶୁଭ ଦିନ । ସେ ବ୍ରିଟିଶଙ୍କଠାରେ କୃତଜ୍ଞତା ଜ୍ଞାପନ କଲେ, କିନ୍ତୁ ଉଲ୍ଲସିତ ହେବା ମାନସିକ ଅବସ୍ଥା ତାଙ୍କର ନଥିଲା । ସେ ଶ୍ରୋତାମାନଙ୍କୁ ନିର୍ଭର ଭାବେ ଶୁଣାଇଦେଲେ, 'ଶୀଘ୍ର ହେଉ ବା ବିଳମ୍ବରେ ହେଉ ପୂର୍ଣ୍ଣ କ୍ଷମତା ଆମ ହାତରେ ଆସି ପଡ଼ିବ, ଯଦି ତୁମମାନଙ୍କର ମୁକୁଟହୀନ ସମ୍ରାଟ୍ ଓ ପ୍ରଧାନମନ୍ତ୍ରୀ ପଣ୍ଡିତ ନେହେରୁ ଓ ତାଙ୍କ ସହକର୍ମୀମାନେ ନିଜ ନିଜର

କର୍ତ୍ତବ୍ୟ ସମାପନ କରିପାରିବେ ।’ ଗାନ୍ଧୀ ଆନ୍ତରିକ କହିଥିଲେ, ମୁସ୍‌ଲିମ୍‌ମାନେ ଅଦ୍ୟାପି ସରକାରରେ ସହଯୋଗ ନ କରିଥିଲେ ହେଁ ସେମାନେ ହିନ୍ଦୁଙ୍କର ଭାଇ ଭାଇ; ରାଗ ହେଲେ, ତା’ର ଭାଇ ଯେସାକୁ ତେସା ମାତରେ ରାଗ ହୁଏ ନାହିଁ ।

କିନ୍ତୁ ଜିନ୍ନା, ସେପ୍‌ଟେମ୍ବର ୨ ତାରିଖକୁ ଶୋକ ଦିବସ ବୋଲି ଘୋଷଣା କଲେ ଏବଂ କଳା ପତାକା ଉଡ଼ାଇବାକୁ ମୁସ୍‌ଲିମ୍‌ମାନଙ୍କୁ ନିର୍ଦ୍ଦେଶ ଦେଲେ । ତହିଁ ଆରଦିନ ଜିନ୍ନା ବମ୍ବେଠାରେ ବକ୍ତୃତାରେ କହିଲେ, ଭାରତରି ବର୍ତ୍ତମାନ ପରିସ୍ଥିତିରେ ରୁଷୀୟମାନେ ଖାଲି ଦେଖଣାହାରି ହୋଇ ରହିବେ ନାହିଁ ; ପୁଣି, ରୁସିଆ ମଧ୍ୟ ଭାରତଠାରୁ ବହୁ ଦୂରରେ ନାହିଁ ।’

ପଞ୍ଜାବର ଜଣେ ବଡ଼ ଜମିଦାର ଓ ମୁସ୍‌ଲିମ୍ ଲିଗ୍ ନେତା ସାର୍ ଫିରୋଜ୍ ଖାନ୍ ନୁନ୍ ମଧ୍ୟ ଏହି ମର୍ମରେ କହିଥିଲେ । ସେ ଦୃଢ଼ ସ୍ୱରରେ ଘୋଷଣା କରିଥିଲେ, ‘ଯଦି ଯୁଦ୍ଧ କରିବାହିଁ ଆମର ନିୟତି, ଏବଂ ଯୁଦ୍ଧକରି ଯଦି ଆମକୁ ଧ୍ୱସ୍ତ ହେବାକୁ ହୁଏ । ତେବେ ରୁସିଆର ମୁଖାପେକ୍ଷୀ ହେବା ବର୍ତ୍ତମାନ ପରିସ୍ଥିତିରେ ଆମର ଏକାନ୍ତ କର୍ତ୍ତବ୍ୟ ।’

ଗାନ୍ଧୀ ଏ କଥାର ମର୍ମ ଠିକ୍ ବୁଝି ପାରିଥିଲେ । ସେ ସେପ୍‌ଟେମ୍ବର ୯ ତାରିଖରେ କହିଲେ, ‘ଏ ପର୍ଯ୍ୟନ୍ତ ଅବଶ୍ୟ ଆମର ଅନ୍ତର୍ବିବାଦ ଆରମ୍ଭ ହୋଇ ନାହିଁ, କିନ୍ତୁ ଅନ୍ତର୍ବିବାଦ ଆଉ ବେଶି ଦୂରରେ ନାହିଁ ।’ ସେପ୍‌ଟେମ୍ବର ମାସ ତମାମ ବମ୍ବେରେ ଛୁରିଭୁଷା ଓ ଗୁଳିମାଡ଼ ଚାଲି ରହିଲା । ମୁସ୍‌ଲିମ୍‌ଙ୍କ ହାତରେ କଳାପତାକା ଦେଖିବା ମାତ୍ରେ ହିନ୍ଦୁମାନେ ସେମାନଙ୍କ ବିରୁଦ୍ଧରେ ଉତ୍ତ୍ୟକ୍ତ ହୋଇ ଉଠିଲେ । ପଞ୍ଜାବରେ ବି ଗଣ୍ଡଗୋଳ ବ୍ୟାପିଗଲା । ବଙ୍ଗ ଓ ବିହାରକୁ ହିଂସାକାଣ୍ଡ ଦୁଲକାଇ ଦେଲା ।

ମୁସ୍‌ଲିମ୍ ଲିଗ୍ ଘୋଷଣା କଲା ଯେ, ସେ ସାଂବିଧାନିକ ସଭାକୁ ମଧ୍ୟ ପରିହାର କରିବ ।

ଦେଶରେ ଏ ଉପଦ୍ରବ ଦେଖି ଓ୍ୱାଭେଲ୍ ଶଙ୍କାକୁଳ ହେଲେ ଏବଂ ନୂତନ ସରକାରରେ ମୁସ୍‌ଲିମ୍ ଲିଗ୍‌ର ସହଯୋଗ ପାଇଁ ଚତୁର୍ଗୁଣରେ ଉଦ୍ୟମ ଚଳାଇଲେ । ଅବଶେଷରେ ଜିନ୍ନା ସମ୍ମତ ହେଲେ ; ଓ ଚାରିଜଣ ମୁସ୍‌ଲିମ୍ ଲିଗ୍ ପ୍ରତିନିଧିଙ୍କ ସହ ଗାନ୍ଧୀ-ବିରୋଧୀ ଜଣେ ଅସ୍ପୃଶ୍ୟସମ୍ପ୍ରଦାୟର ନେତାଙ୍କ ନାମ ଦେଲେ । ମୁସ୍‌ଲିମ୍ ଲିଗ୍ ଏ ପର୍ଯ୍ୟନ୍ତ ନିଜକୁ ଗୋଟିଏ ଧର୍ମାନୁଷ୍ଠାନ ବୋଲି କହି ଆସୁଥିଲା ଏବଂ ଭାରତର ମୁସ୍‌ଲିମ୍‌ଙ୍କ ମୁଖପାତ୍ର

ବୋଲି ନିଜକୁ ଘୋଷିତ କରୁଥିଲି । ଏପରି ସ୍ଥଳେ ଜଣେ ଅସ୍ପୃଶ୍ୟ, ହିନ୍ଦୁଙ୍କ ନାମ ସେ ନିଜପାଇଁ ନିର୍ଦ୍ଦିଷ୍ଟ ଭାଗରେ ଦେଲି କାହିଁକି ? ଏକମାତ୍ର ଉଦ୍ଦେଶ୍ୟ କଂଗ୍ରେସ ଓ ସବର୍ଣ୍ଣ ହିନ୍ଦୁଙ୍କୁ ଉତ୍ୟକ୍ତ କରିବା । ମୁସ୍‌ଲିମ୍ ଲିଗ୍ ଏହି ମନୋବୃତ୍ତି ଧରି ସରକାରରେ ପଶିବା ହେଲି ଅମଙ୍ଗଳର ଶକୁନ । ବସ୍ତୁତଃ ଅର୍ଥ ବିଭାଗ ମନ୍ତ୍ରୀ ଓ ସରକାରରେ ଲିଗ୍‌ର ମୁଖପାତ୍ର, ନବାବଜାଦା ଲିଆକତ୍ ଆଲି ଖାଁ ସ୍ପଷ୍ଟ ଘୋଷଣା କରିଦେଲେ ଯେ ସେ ଏ ସରକାରକୁ ମିଳିତ ସର୍-କାରବୋଲି ସ୍ୱୀକାର କରନ୍ତି ନାହିଁ ଓ ନେହେରୁ ବା ଅନ୍ୟ କଂଗ୍ରେସ ମନ୍ତ୍ରୀଙ୍କ ସଙ୍ଗେ ସହଯୋଗ କରିବାର ନୈତିକ ଦାୟିତ୍ୱ ତାଙ୍କର ନାହିଁ । ଫଳତଃ ସରକାର ହେଲି ଦୁଇଭାଗରେ ବିଭକ୍ତ ଏକ ଅନୁଷ୍ଠାନ—ବିଭେଦ ପୁଣି ଧର୍ମ ଯୋଗୁଁ ।

ଦୁଇଟିଯାକ ସଂପ୍ରଦାୟ ମଧ୍ୟରେ ନିରବଚ୍ଛିନ୍ନ ଭାବେ ଲାଗିରହିଥିବା ହତ୍ୟାକାଣ୍ଡ ବିରୁଦ୍ଧରେ ପ୍ରତ୍ୟହ ଗାନ୍ଧୀ ପ୍ରଚାର କରିବାରେ ଲାଗିଥାନ୍ତି । ଦିନେ ସେ କହିଲେ, 'ଯେଉଁମାନେ ତାଙ୍କୁ ମାରିବାକୁ ଚେଷ୍ଟା କରୁଥିଲେ, ସେମାନଙ୍କୁ ଓଲଟି ମାରିବାକୁ ହିନ୍ଦୁଙ୍କର ବର୍ତ୍ତମାନ ସାହସ ହେଲାଣି ବୋଲି କେହି କେହି ହିନ୍ଦୁ ପୁଲକିତ ହେବାର ବି ଶୁଣୁଛି । ହିନ୍ଦୁମାନେ ପ୍ରତିଶୋଧ ନେବାକୁ ଚେଷ୍ଟା ନ କରି ଘାତୁକ ହାତରେ ପ୍ରାଣ ଦେଉଛନ୍ତି ଶୁଣିଲେ ବରଂ ମୁଁ ଆନନ୍ଦିତ ହୁଅନ୍ତି...।'

ଏ ଦୁର୍ବିପାକ ଭିତରେ ବି ସେ ତାଙ୍କର ଅନ୍ୟ କର୍ମସୂଚୀ ପାସୋରୁ ନ ଥାନ୍ତି ଓ ପ୍ରାର୍ଥନା ସଭାରେ ଓ ହରିଜନରେ ଅଧିକ ଖାଦ୍ୟ ଉତ୍ପାଦନ ଉପରେ ଜୋର ଦେଉଥାନ୍ତି ; ହରିଜନମାନଙ୍କ ବିରୁଦ୍ଧରେ ହେଉଥିବା ଦୁର୍ବ୍ୟବହାରର ପ୍ରତିବାଦ କରୁଥାନ୍ତି : 'ସଂକ୍ରାମକ ବ୍ୟାଧି ଘୋଟିଲେ ସେମାନଙ୍କୁ ମାଡ଼ ହେଉଛି ଓ ସର୍ବସାଧାରଣ କୂପରୁ ପାଣି କାଢ଼ିବାକୁ ବାରଣ କରାହେଉଛି । ସେମାନେ ଅପରିଚ୍ଛନ୍ନ ସ୍ଥଳଆରେ ମୁଣ୍ଡ ଗୋଞ୍ଜି ରହିଛନ୍ତି' । ଲୁଣ ଟିକସ୍ ଏକାବେଳକେ ଉଠିଯାଉ ବୋଲି ସେ ଦାବି କରୁଥାନ୍ତି, କିନ୍ତୁ ଏ ବିଷୟରେ ଟିକଏ ଥୟ ଧରି ଅପେକ୍ଷା କରିବାକୁ ଲୋକଙ୍କୁ ବୁଝାଉଥାନ୍ତି ; ନୂଆ ମନ୍ତ୍ରୀମାନେ ଅନଭ୍ୟସ୍ତ କାର୍ଯ୍ୟରେ ଚପି ହୋଇ ଯାଉଛନ୍ତି ବୋଲି ଲୋକଙ୍କୁ ବୁଝାଉଥାନ୍ତି ।

ଅଧିକାଂଶ କଂଗ୍ରେସ ମନ୍ତ୍ରୀ, ତାଙ୍କର ବହୁ ସହକାରୀ ଓ ପ୍ରାଦେଶିକ ମନ୍ତ୍ରୀ ଓ ଅଫିସରମାନେ ବହୁବାର ଗାନ୍ଧୀଙ୍କ ହରିଜନ ବସ୍ତିକୁ ଆସି ବିଭିନ୍ନ

ବିଷୟରେ ତାଙ୍କର ପରାମର୍ଶ ଓ ସମ୍ମତି ଲୋଡ଼ୁଥାନ୍ତି । ବେଳେ ବେଳେ ତ ଏମାନଙ୍କର ଧାଉଡ଼ି ଦୈନନ୍ଦିନ ବ୍ୟାପାର ହୋଇ ଯାଉଥାଏ । ଗାନ୍ଧୀ ହୋଇଥାନ୍ତି ପ୍ରଧାନମନ୍ତ୍ରୀଙ୍କ ଉପରେ ପ୍ରଧାନ ମନ୍ତ୍ରୀ ।

କୁଷ୍ଠରୋଗୀଙ୍କ ସମସ୍ୟା, ସମୂହ ପ୍ରାର୍ଥନାର ଉପଯୋଗିତା, ଭାରତୀୟ ଜେଲଖାନାମାନଙ୍କର ଅବସ୍ଥା, ଦକ୍ଷିଣ ଆଫ୍ରିକାରେ ବର୍ଣ୍ଣବିଦ୍ବେଷ, ଖାଦ୍ୟ ଉତ୍ପାଦନରେ ଅବହେଳା, ହିନ୍ଦୁ ଧର୍ମରେ ବହୁ ଦେବତା କାହିଁକି ଅଛନ୍ତି—ଏହିପରି ନାନା ବିଭିନ୍ନ ବିଷୟରେ ଗାନ୍ଧୀ ଲେଖା ଚଳାଇଥାନ୍ତି । ଆଶ୍ରମରେ ପ୍ରତିଦିନ କାଲିକି କ'ଣ ରନ୍ଧାହେବ ନିର୍ଦ୍ଦେଶ ଦେଉଥାନ୍ତି ; ବେଳ ମିଳିଲେ ଡାଇରି ବି ଲେଖୁଥାନ୍ତି । ଦିନେ ରାତିରେ ସେ ଡାଇରିରେ ଲେଖିଥିଲେ, 'ଚାରିଆଡ଼େ ନିଆଁ ହୁହୁ ଜଳୁଥିଲା ବେଳେ ମନରେ ଅନାସକ୍ତ ଭାବ ରଖିବା ମସ୍ତ କଠିନ ବ୍ୟାପାର' । ଦିନେ ଜଣେ ବନ୍ଧୁଙ୍କୁ କହିଥିଲେ, 'ଏ ଯେଉଁ ମନସ୍ତାପ ହେଉଛି ତା'କୁ ବିଚଳିତ ନ ହୋଇ ଧୀର ଶାନ୍ତ ଭାବେ ମୁଁ ସହି ନ ପାରୁଛି କାହିଁକି ? ମୋର ସଂଶୟ ହେଉଛି, ୧୨୫ ବର୍ଷ ବଞ୍ଚିବା ସକାଶ ମନର ଯେଉଁ ଅନାସକ୍ତ ଭାବ ରହିବା ଦରକାର ମୋର ତାହା ହୋଇନାହିଁ ।'

ହିନ୍ଦୁ-ମୁସ୍‌ଲିମ୍ ବିଦ୍ବେଷର ମାଡ଼ି ଯାଉଥିବା ନିଆଁ ତାଙ୍କୁ ଅସ୍ଥିର କରି ଦେଉ ନ ଥାଏ । ତଥାପି ମନୁଷ୍ୟ ଚରିତ୍ରରେ ତାଙ୍କର ବିଶ୍ୱାସ ଅଟଳ ହୋଇ ରହିଥାଏ । ଅକ୍ଟୋବର ୧୫ ତାରିଖରେ ସେ ଲେଖିଥିଲେ, 'ଅଳ୍ପଦିନ ତଳେ ବମ୍ବେରେ ଜଣେ ହିନ୍ଦୁ ତା'ର ମୁସ୍‌ଲିମ ବନ୍ଧୁଙ୍କୁ ଆଶ୍ରୟ ଦେଲେ । ସେ ନିଜ ବନ୍ଧୁଙ୍କୁ ଦଙ୍ଗାକାରୀ ହିନ୍ଦୁମାନଙ୍କ ହାତରେ ଦେଇ-ଦେବାକୁ ନାହିଁ କଲେ । ଫଳରେ ଦୁଇଜଣ ଆକ୍ଷରିକ ଅର୍ଥରେ କୁଣ୍ଢିଆ-କୁଣ୍ଢି ହୋଇ ମୃତ୍ୟୁ ବରଣ କଲେ । ଏ ଖବର ମୁଁ ବିଶ୍ୱସ୍ତ ସୂତ୍ରରୁ ପାଇଛି । ବର୍ତ୍ତମାନ ଏ ଯେଉଁ କ୍ରୋଧୋନ୍ମାଦ ଚାଲିଛି ତହିଁରେ ଏଭଳି ମହତ୍ତ୍ୱ ଓ ବୀରତ୍ୱର ଦୃଷ୍ଟାନ୍ତ ଏଇ ଗୋଟିକ ଯେ ମୋ କାନକୁ ଆସିଛି ତାହା ନୁହେଁ । କଲିକତାରେ ସଂପ୍ରତି ଯେଉଁ ପ୍ରବଳ ରକ୍ତପାତ ଘଟିଗଲା ସେଥିରେ ନିଜ ନିଜ ଜୀବନ ବିପନ୍ନ କରି ବହୁ ମୁସ୍‌ଲିମ୍ ନିଜ ନିଜ ହିନ୍ଦୁ ବନ୍ଧୁମାନଙ୍କୁ ରକ୍ଷା କରିବାର ଖବର ଲିପିବଦ୍ଧ ହୋଇଛି ; ହିନ୍ଦୁମାନେ ସେହିପରି ମୁସ୍‌ଲିମ୍‌ଙ୍କୁ ରକ୍ଷା କରିବାର ବିଶ୍ୱାସ-ଯୋଗ୍ୟ ବୃତ୍ତାନ୍ତ ବି ମିଳିଛି । ଯେ କୌଣସି ପରିସ୍ଥିତିରେ, ଓ ଯେ କୌଣସି ସମୟରେ ମନୁଷ୍ୟ ହୃଦୟରେ ଦେବତା

ବାସ କରୁଥିବାର ଏହିପରି ପ୍ରମାଣ ଯଦି ନ ମିଳୁଥାନ୍ତା ତେବେ ସମଗ୍ର ମାନବଜାତି ବିଲୀନ ହୋଇଯାନ୍ତା ।’

ଜନ୍ମଗତ ମାନବଠାରେ ଦେବତ୍ୱ ଆବିଷ୍କାର କରିବା ପାଇଁ ଏଥର ଗାନ୍ଧୀ ଆଶ୍ରମରୁ ବାହାରିଲେ ।

ପୂର୍ବ ବଙ୍ଗର ସୁଦୂର ପ୍ରାନ୍ତରେ ଥିବା ନୋଆଖାଲି ଓ ତ୍ରିପୁରାର ମଫସଲ ଅଞ୍ଚଳରେ, ଅକ୍ଟୋବର ମାସରେ ମୁସ୍‌ଲିମ୍‌ମାନେ ହିନ୍ଦୁଙ୍କ ଉପରେ ବ୍ୟାପକ ଆକ୍ରମଣ କରିଥାନ୍ତି । ସହର ଅଞ୍ଚଳର ହିଂସାକାଣ୍ଡଠାରୁ ମଫସଲର ଏ ଉତ୍ପାତ ମହାତ୍ମାଜୀଙ୍କୁ ଅଧିକ ବିଚଳିତ କରିଥିଲା ପରି ମନେ ହୁଏ । ଏ ପର୍ଯ୍ୟନ୍ତ ଭାରତର ଗ୍ରାମଗହଳରେ ସାଂପ୍ରଦାୟିକ ସଦ୍‌ଭାବ ଅକ୍ଷୁର୍ଣ୍ଣ ଥିଲା । ସାଂପ୍ରଦାୟିକ ବିଦ୍ୱେଷ ଯଦି ମଫସଲ ଅଞ୍ଚଳକୁ ଏଭଳି ମାଡ଼ିଯାଏ ତେବେ ସମଗ୍ର ଭାରତୀୟ ଜାତି ଧ୍ୱଂସ ହେବାର ଆଶଙ୍କା । ଗାନ୍ଧୀ ଗଣ୍ଡଗୋଳର ହରଜମିନ୍‌କୁ ଯିବା ପାଇଁ ସଂକଳ୍ପ କଲେ । ସେଠାରେ ହିଂସାକାଣ୍ଡକୁ ଯଦି ସେ ରୋକି ନ ପାରିବେ ତେବେ ବଞ୍ଚିରହିବା ତାଙ୍କ ପକ୍ଷରେ ନିଷ୍ପ୍ରୟୋଜନ । ବନ୍ଧୁମାନେ ତାଙ୍କୁ ଏ ସଂକଳ୍ପରୁ ନିବର୍ତ୍ତାଇବା ପାଇଁ ଖୁବ୍ ଚେଷ୍ଟା କଲେ । ତାଙ୍କର ସ୍ୱାସ୍ଥ୍ୟ ସେତେବେଳେ ଭଲ ନଥାଏ । ସରକାରର କଂଗ୍ରେସମନ୍ତ୍ରୀ-ମାନେ ତାଙ୍କୁ ନଜର ନିକଟରେ ରହିବାକୁ ଦରକାର କରୁଥାନ୍ତି । ସବୁ ଆପତ୍ତିକୁ ସେ ଗୋଟିଏ ପଦରେ କାଟିଦେଲେ: ‘ମୁଁ ଜାଣୁଛି, ମୁଁ ଯଦି ସେଠିକୁ ନ ଯାଏ ତେବେ ମୋର ମାନସିକ ଶାନ୍ତି ରହିବ ନାହିଁ ।’ ଗଲେ ଯେ ସେ କିଛି ଗୋଟାଏ କରି ପକାଇବେ ଏ ବିଷୟରେ ତାଙ୍କର ସନ୍ଦେହ ବି ଥାଏ । କିନ୍ତୁ ସରଜମିନ୍‌ରେ ପହଞ୍ଚି ଚେଷ୍ଟା ତ କରିବାକୁ ହେବ ! କେହି ତାଙ୍କୁ ଷ୍ଟେସନ୍‌ରେ ଦେଖା କରି ଆଶିଷ ମାଗନ୍ତୁ ନାହିଁ ବୋଲି ସେ ଆଗରୁ ବାରଣ କରି ଦେଲେ । ସେ ଜଣାଇ ଦେଲେ ଏଭଳି ସୌଜନ୍ୟ ପାଇଁ ତାଙ୍କର ମନରେ ଅନୁକୂଳ ଅବସ୍ଥା ନାହିଁ ।

ତଥାପି ବହୁ ସଂଖ୍ୟାରେ ଲୋକେ ଆସି ଷ୍ଟେସନ୍‌ରେ ରୁଣ୍ଡ ହେଲେ । ସରକାର ତାଙ୍କ ପାଇଁ ଗୋଟାଏ ସ୍ପେଶାଲ୍ ଟ୍ରେନ୍‌ର ବ୍ୟବସ୍ଥା କଲେ(ବ୍ରିଟିଶ୍ ବି ଏପରି କରୁଥିଲେ) । ଏଭଳି ସ୍ୱତନ୍ତ୍ର ବ୍ୟବସ୍ଥା କରିବାର କାରଣ, ସେ ମାମୁଲି ଏକ୍‌ସ୍‌ପ୍ରେସ୍ ଗାଡ଼ିରେ ଯାତ୍ରା କଲାବେଳେ ଲୋକେ ତାଙ୍କ ଦର୍ଶନା-ଭିଳାଷରେ ପ୍ରତି ଷ୍ଟେସନରେ ଗାଡ଼ିକୁ ବହୁତ ସମୟ ଅଟକାଇ ଦିଅନ୍ତି ; ଫଳରେ ସେ ଗାଡ଼ି ତ ବହୁ ଘଣ୍ଟା ଲେଟ୍ ହୋଇଯାଏ, ପୁଣି ଉଭୟ ହିଗର

ପରବର୍ତ୍ତୀ ଟ୍ରେନ୍‌ମାନଙ୍କର ସମୟସୂଚୀରେ ବହୁ ବିଭ୍ରାଟ ଘଟେ । ସ୍ପେଶାଲ ଟ୍ରେନ୍ ନିତାନ୍ତ ଯେଉଁ ବଡ଼ ବଡ଼ ସହରର ଷ୍ଟେସନ୍‌ମାନଙ୍କରେ ଅଟକେଇ, ସେଠାର ଲୋକେ ଷ୍ଟେସନ୍‌କୁ ଜାମ କରଦେଲେ ଏବଂ ରେଲ ଲାଇନ୍ ଉପରେ ପଂଖା ପଂଖା ହୋଇ ବସିଗଲେ; ଷ୍ଟେସନ୍ ଘରମାନଙ୍କର ଛାତ ଉପରେ ଚଢ଼ିଗଲେ, ଝରକାର କାଚ ଓ କାଠ ଦୁଆରମାନ ଭାଙ୍ଗି ପକାଇଲେ ଓ ପାଟି ଭୁଣ୍ଡରେ କାନ ଅତଡ଼ା ପକାଇଦେଲେ । ଗାର୍ଡ଼୍ ଥର-ଥର କର ଟ୍ରେନ୍ ଛାଡ଼ିବାକୁ ସିଟି ଦେଉଥାଏ, କିନ୍ତୁ ଟ୍ରେନ୍ ଚକେ ଗଲାବେଳକୁ କିଏ ଆଲାର୍ମ୍ ଚେନ୍ ଭିଡ଼ି ଦିଏ ଯେ, ଟ୍ରେନ୍ ଭିଡ଼ ହେଲା ପରି ଅଟକିଯାଏ । ଗୋଟାଏ ଷ୍ଟେସନ୍‌ରେ ରେଲବାଇ କର୍ତ୍ତୃପକ୍ଷ ନିଆଁ ଲିଭାଳି ପାଇପ୍‌ରୁ ପାଣି ଲୋକଙ୍କ ଉପରକୁ ଛାଡ଼ି ଦେଲେ ଯେ ଗାନ୍ଧୀଙ୍କ ଡବାରେ ପାଣି ଭର୍ତ୍ତି ହୋଇଗଲା । ସେ କଲିକତାରେ ଆସି ପହଞ୍ଚିଲେ ପାଞ୍ଚଘଣ୍ଟା ଡେରିରେ, ବାଟର ହୋ ହା ଓ ଗଣ୍ଡଗୋଳରେ କ୍ଲାନ୍ତ ଓ ଅତିବ ସନ୍ତପ୍ତ ହୋଇ ।

ଯେଉଁ ଦିନ ଗାନ୍ଧୀ ନୂଆ ଦିଲ୍ଲୀ ଛାଡ଼ିଥିଲେ ସେହି ଦିନ, କଲିକତାରେ ଆଉଥରେ ହିନ୍ଦୁ ମୁସଲମାନ ଦଙ୍ଗା ହୋଇ ୩୨ଜଣ ମରିଥାନ୍ତି । ଘଟଣା-ସ୍ଥଳକୁ ସୈନ୍ୟଙ୍କୁ ଡାକିବା ଜରୁରି ହୋଇଥିଲା । ରାତିଦିନ ପୁଲିସ୍ ଓ ମିଲିଟାରି ଗୁଣ୍ଡାଙ୍କୁ ଘଉଡ଼ିବାରେ ବ୍ୟସ୍ତ ରହିଥିଲେ । ଗଣ୍ଡଗୋଳକାରୀମାନେ କିରାସିନ-ବୋମା, ଇଟା ଓ ସୋଡ଼ା ବୋତଲରେ ପରସ୍ପରକୁ ଆକ୍ରମଣ କରୁଥାନ୍ତି । କଲିକତାରେ ପହଞ୍ଚିବାର ପରଦିନ ମାମୁଲି ସୌଜନ୍ୟରେ ଗାନ୍ଧୀ ଅଳ୍ପସମୟ ପାଇଁ ବଙ୍ଗର ବ୍ରିଟିଶ ଗଭର୍ଣ୍ଣର୍ ସାର୍ ଫ୍ରେଡେରିକ୍ ବାରୋଜ୍‌ଙ୍କୁ ଦେଖା-କରିବାକୁ ଗଲେ; ଏବଂ ବଙ୍ଗ ପ୍ରଦେଶର ମୁସ୍‌ଲିମ୍ ପ୍ରଧାନମନ୍ତ୍ରୀ ମିଷ୍ଟର ଏଇଚ. ଏସ୍. ସୁରାବର୍ଦ୍ଦିଙ୍କ ସଙ୍ଗେ ବହୁତ ସମୟ ରହିଲେ । ତପର ଦିନ ଅକ୍‌ଟୋବର ୩୧ ତାରିଖରେ ସେ ପୁଣି ସୁରାବର୍ଦ୍ଦିଙ୍କ ସଙ୍ଗେ ଦେଖା କରିବାକୁ ଗଲେ ଏବଂ ସେଠାରୁ ଦୁହେଁଯାକ କଲିକତାର ଜନମାନବଶୂନ୍ୟ ରାସ୍ତାମାନଙ୍କରେ ମଟରରେ ବୁଲି ଆସିଲେ । ଗତ କେତେଦିନ ହେଲା କର୍‌ପୋରେସନ୍‌ର ମେହେନ୍ତର କାମକୁ ନ ଆସିଥିବାରୁ ରାସ୍ତା ଉପରେ ଦୁଇଫୁଟ ଉଚାରେ ମଇଳା ଜମାହୋଇଥାଏ । ରାସ୍ତାକଡ଼ରେଧାଡ଼ି ଧାଡ଼ିହୋଇ ବହୁତ ଦୋକାନ ଓ ଘର ପୋଡ଼ି ଯାଇଥାଏ ; ଏଥିରୁ କେତେକ ନିକଟରେ ଘଟିଥିବା ଗଣ୍ଡଗୋଳ ବେଳେ, ଓ ବାକୀତକ ଅଗଷ୍ଟ ଗଣ୍ଡଗୋଳ ବେଳର ।

ଗାନ୍ଧୀ ଏ ସବୁ ଦେଖି ଦୁଃଖରେ ଅଭିଭୂତ ହୋଇ ପଡ଼ିଲେ । ସେ କହିଥିଲେ, 'ମଣିଷ କିପରି ଗୋଠବାନ୍ଧି ଉନ୍ମତ୍ତ ହୁଏ ଏବଂ ପଶୁଠାରୁ ହୀନ ଆଚରଣ କରିପାରେ, ତାହା ଦେଖି ମୋର ମନ ଏକାବେଳକେ ଦବିଗଲା' । ତଥାପି ତାଙ୍କ ମନରୁ ଆଶା ଯାଉ ନ ଥାଏ । ସେ ବିଶ୍ବାସ କରୁଥାନ୍ତି ମଣିଷର ଉନ୍ମତ୍ତ ଅବସ୍ଥା ବେଶିଦିନ ଏପରି ରହି ପାରିବ ନାହିଁ । ତାଙ୍କୁ ଜଣାଯାଉଥାଏ, କଲିକତାର ନାଗରିକମାନେ ତାଙ୍କର ଭସ୍ମୀଭବହ ଅନାଗ୍ରହର ସ୍ମୃତିରେ ବିଷାଦଗ୍ରସ୍ତ ଓ ଅନୁତପ୍ତ ହେବାକୁ ଆରମ୍ଭ କଲେଣି ।

ସେ ନୂଆଖାଲି ଯିବା ବାଟରେ କଲିକତାରେ ଅଟକିଥାନ୍ତି । ନୂଆଖାଲିର ମଫସଲ ଅଞ୍ଚଳରେ ମୁସ୍‌ଲିମ୍‌ମାନେ ହିନ୍ଦୁଙ୍କୁ ହତ୍ୟାକରିଥାନ୍ତି, ଜବରଦସ୍ତି ହିନ୍ଦୁଙ୍କୁ ମୁସଲମାନ ଧର୍ମରେ ଦୀକ୍ଷିତ କରିଥାନ୍ତି । ହିନ୍ଦୁ ସ୍ତ୍ରୀ-ଲୋକମାନଙ୍କ ଉପରେ ବଳାତ୍କାର କରିଥାନ୍ତି, ହିନ୍ଦୁମାନଙ୍କର ଘର ଓ ଦେଉଳ ପୋଡ଼ି ପାଉଁଶ କରି ଦେଇଥାନ୍ତି । ସେ ପ୍ରାର୍ଥନା ସଭାରେ କହିଲେ, 'ନାରୀମାନଙ୍କ ପ୍ରତି ପାଶବିକ ଅତ୍ୟାଚାରର କାହାଣୀ ମୋତେ ତୁରନ୍ତ ନୂଆଖାଲି ଯିବାକୁ ଡାକି ଆଣିଛି ।······ବଙ୍ଗଳାରେ ଯେଉଁ ଦୌରାତ୍ମ୍ୟର ନିଆଁ ଜଳି ଉଠିଛି ତାହା ସଂପୂର୍ଣ୍ଣ ରୂପେ ନ ଲିଭିବା ପର୍ଯ୍ୟନ୍ତ ମୁଁ ବଙ୍ଗ-ପ୍ରଦେଶ ଛାଡ଼ିବି ନାହିଁ । ହୁଏତ ମୋତେ ଏଠାରେ ପୂରା ବର୍ଷେ ରହିବାକୁ ପଡ଼ିପାରେ, ବା ଅଧିକ ରହିବାକୁ ପଡ଼ିପାରେ । ପ୍ରୟୋଜନ ହେଲେ, ମୁଁ ଏଇଠାରେ ମରିବାକୁ ତିଆରି ଅଛି । କିନ୍ତୁ ମୁଁ ହାରି ମାନିଯାଇ ଫେରିବି ନାହିଁ । ମୁଁ ବଞ୍ଚିଥିବି, ଲୋକେ ମୋତେ ଆଶା ଓ ଆକାଂକ୍ଷାରେ ଚାହିଁ ରହିଥିବେ, ଅଥଚ ମୁଁ ସେମାନଙ୍କ ପାଇଁ କିଛି କରି ପାରୁ ନଥିବି, ରକ୍ତ-ମାଂସର ଶରୀର ଧରି ବଞ୍ଚିଥାଇ ଏପରି ଅଥର୍ବ ହେବା ଯଦି ସାର ହୁଏ, ତେବେ ମରଣରେ ମୋର ଏ ଆଖି ଦୁଇଟି ବୁଜି ହୋଇଯିବା ମୋ ପକ୍ଷରେ ଖୁବ୍ ଶ୍ରେୟସ୍କର ହେବ ।'

ମହାତ୍ମାଜୀଙ୍କ ମୁହଁରୁ ଏହା ଶୁଣି ସଭାର ବହୁଲୋକ ନିଜ ନିଜ ଆଖିରୁ ଲୁହ ପୋଛୁଥାନ୍ତି ।

କିନ୍ତୁ ଦୁଃଖାର୍ତ୍ତ ମହାତ୍ମାଙ୍କ ପାଇଁ ଏହାଠାରୁ ଘୋରତର ଦୁଃଖ ବିଧାତା ରଖିଥାନ୍ତି । ବଙ୍ଗ ପ୍ରଦେଶର ପ୍ରତିବେଶୀ ବିହାର ପ୍ରଦେଶରେ (ହିନ୍ଦୁ ଜନସଂଖ୍ୟା ୩ କୋଟି ୧୦ଲକ୍ଷ, ମୁସ୍‌ଲିମ୍ ମୋଟ ୫୦ ଲକ୍ଷ ) ନୂଆ-ଖାଲି ଓ ତ୍ରିପୁରାର ସଂବାଦ ପହଞ୍ଚିବାରେ ସେଠାର ସଂଖ୍ୟାଗରିଷ୍ଠ ସଂପ୍ରଦାୟ

ଚାଲି ଯାଇଥାନ୍ତି । ବିହାରରେ ଅକ୍‌ଟୋବର ୨୫ ତାରିଖ 'ନୋଆଖାଲି ଦିବସ' ବୋଲି ପାଳିତ ହେଲା । ବିହାରୀ କଂଗ୍ରେସବାଲାଙ୍କର ବକ୍ତୃତା ଏବଂ ଖବରକାଗଜମାନଙ୍କର ଶୃଙ୍ଖଳାହୀନ ଶିରୋନାମା ବିହାରର ହିନ୍ଦୁମାନଙ୍କ ମନରେ ଅସ୍ୱାଭାବିକ ଉନ୍ମାଦନା ଆଣିଦେଲା । ହଜାର ହଜାର ହିନ୍ଦୁ ସହରର ଗଳିକନ୍ଦି, ଓ ମଫସଲର ଗ୍ରାମମାନଙ୍କରେ 'ରକ୍ତ ପାଇଁ ରକ୍ତ ଚାହିଁ' ବୋଲି ଧ୍ୱନି ଦେଇ ବୁଲିଲେ । ଲଣ୍ଡନ ଟାଇମସ୍‌ର ଦିଲ୍ଲୀ ସମ୍ବାଦଦାତା ଲେଖିଥିଲେ, ପରବର୍ତ୍ତୀ ସପ୍ତାହରେ, ଦଙ୍ଗାକାରୀମାନେ ୪୫୮୦ ଲୋକଙ୍କୁ ହତ୍ୟା କରିଥିବାର ସରକାର ପକ୍ଷରୁ ସାବ୍ୟସ୍ତହୋଇ ପ୍ରକାଶ ହୋଇଥିଲା । ମରିଥିବା ଲୋକଙ୍କ ସଂଖ୍ୟା ଦଶହଜାରରୁ ବେଶି ବୋଲି ଗାନ୍ଧୀ ପରେ ପ୍ରକାଶ କଲେ । ମରିଥିବା ଲୋକ ପ୍ରାୟ ସମସ୍ତେ ମୁସ୍‌ଲିମ୍ ।

ଗାନ୍ଧୀ କଲିକତାରେ ଥିଲାବେଳେ ହିଁ ବିହାର ବର୍ବରତାର ସମ୍ବାଦ ପାଇଲେ । ସେ ଦୁଃଖରେ ମୁହ୍ୟମାନ ହୋଇଗଲେ । ବିହାରୀମାନଙ୍କୁ ସେ ଗୋଟିଏ ବିଜ୍ଞପ୍ତି ଦେଲେ : ମୁଁ ସ୍ୱପ୍ନରେ ସୁଦ୍ଧା ଯେଉଁ ବିହାରର ବଡ଼େଇ କରେ ସେ ମୋର ସମସ୍ତ ଆଶାକୁ ଧୂଳିସାତ୍ କରିଦେଲା ପରି ମନେ ହେଉଛି । କଂଗ୍ରେସ୍‌ରେ ଜଣକେତେ ଶିଖ୍, ମୁସ୍‌ଲିମ୍, ଖ୍ରୀଷ୍ଟିଆନ୍, ପାର୍ସୀ ପ୍ରଭୃତି ଅଛନ୍ତି ବୋଲି କଂଗ୍ରେସ ସମଗ୍ର ଭାରତର ପ୍ରତିନିଧି ବୋଲି ଗର୍ବ କରେ ସିନା, କିନ୍ତୁ ଏହା ପ୍ରକୃତରେ ହିନ୍ଦୁଙ୍କ ଅନୁଷ୍ଠାନ ବୋଲି କ୍ୱାଏଦ୍-ଇ-ଆଜାମ୍ କଂଗ୍ରେସକୁ ବିଦ୍ରୂପ କରି କହନ୍ତି । ଆଜି ବିହାରୀ ହିନ୍ଦୁମାନେ ଯେଉଁ ଦୁର୍ବୃତ୍ତି କରି ବସିଛନ୍ତି ତାହା ଜିନ୍ନାଙ୍କ ବକ୍ତୋକ୍ତିକୁ ସତ୍ୟ ବୋଲି ପ୍ରମାଣିତ କରିପାରେ । ବିହାର କଂଗ୍ରେସର ମର୍ଯ୍ୟାଦା ବଢ଼ାଇବାକୁ ଅତୀତରେ, ବହୁ ତ୍ୟାଗ ସ୍ୱୀକାର କରିଛି । ଆଜି ସେ କଂଗ୍ରେସର କବର ଖୋଳିବାରେ ପ୍ରଥମ ନ ହେଉ ।

ପ୍ରାୟଶ୍ଚିତ୍ତ ସ୍ୱରୂପ, ଗାନ୍ଧୀ ଘୋଷଣା କଲେ, ବଞ୍ଚିରହିବାକୁ ନିତାନ୍ତ ଯେତିକି ଖାଇବା ଦରକାର ସେ ସେତିକିମାତ୍ର ଆହାର କରିବେ, ଆଉ, 'ଦୋଷୀ ବିହାରୀମାନେ ଆତ୍ମଶୁଦ୍ଧି କରିବାକୁ ଯଦି ବାହାରି ନ ପଡ଼ନ୍ତି ତେବେ ପେଟ କାଟୁକାଟୁ ସେ ଆମରଣ ଅନଶନ ଆରମ୍ଭ କରିବେ ।'

ବିହାରର କାଣ୍ଡ ପାଇଁ ବଙ୍ଗଳାରେ ପ୍ରତିଶୋଧ ନିଆଯାଇ ପାରେ ବୋଲି ଆଶଂକା କରି ନେହେରୁ, ପଟେଲ ଓ ମଧ୍ୟବର୍ତ୍ତୀକାଳୀନ ସରକାରର ଦୁଇଜଣ ମୁସ୍‌ଲିମ୍ ମନ୍ତ୍ରୀ ଲିଆକତ୍ ଆଲି ଖାଁ ଓ ଅବଦୁର୍ ରବ୍ ନିସ୍ତାର୍

ଉଡ଼ାଜାହାଜ ଯୋଗେ ତୁରନ୍ତ ଦିଲ୍ଲୀରୁ ଆସି କଲିକତାରେ ପହଞ୍ଚିଲେ । ଲର୍ଡ଼ ଓ୍ୱାଭେଲ୍ ମଧ୍ୟ ଆସିଲେ । ମୁସଲମମାନଙ୍କର ପବିତ୍ର ଇଦ୍ ପର୍ବ ଆଗକୁ ଥାଏ । ସେଇ ସମୟରେ ମୁସ୍‌ଲିମ୍‌ମାନେ ଉତ୍ତେଜିତ ହୋଇ ପାରନ୍ତି ବୋଲି ଭୟ ହୋଇଥିଲା । ଲୋକେ ଶାନ୍ତ ହୋଇ ରହନ୍ତୁ ବୋଲି କେନ୍ଦ୍ର ମନ୍ତ୍ରୀମାନେ ନିବେଦନ କଲେ । ସୈନ୍ୟମାନେ ସହର ଓ ମଫସଲରେ ପହରା ଦେଲେ ।

ଆମରଣ ଅନଶନ ନ କରିବାକୁ ନେହେରୁ ଓ ପଟେଲ୍ ଗାନ୍ଧୀଙ୍କୁ ନିବେଦନ କଲେ । ଦେଶର ଏ ଘୋର ସନ୍ଧିବେଳେ ଦେଶର ଓ ସେମାନଙ୍କର ନିଜର ଗାନ୍ଧୀ ବଞ୍ଚିରହିବା ପ୍ରୟୋଜନ ।

କଲିକତାରୁ ଦୁଇଜଣଯାକ କେନ୍ଦ୍ର ମନ୍ତ୍ରୀ ଉଡ଼ାଜାହାଜ ଯୋଗେ ବିହାର ଗଲେ । ସେଠାରେ ଯାହା ଦେଖିଲେ ଓ ଶୁଣିଲେ ସେଥିରେ ପ୍ରଧାନମନ୍ତ୍ରୀ ନେହେରୁ ପାଗଳପ୍ରାୟ ଧମକ ଦେଲେ, ହିନ୍ଦୁମାନେ ଯଦି ହତ୍ୟା-କାଣ୍ଡରୁ ନିବୃତ୍ତ ନ ରହନ୍ତି ତେବେ ସେ ଆକାଶରୁ ବିହାର ଉପରେ ବୋମା ମାଡ଼ କରାଇବେ । ଗାନ୍ଧୀ ପ୍ରତିବାଦ କଲେ, 'ଏଇ ତ ଥିଲା ବ୍ରିଟିଶଙ୍କ ରୀତି । ମିଲିଟାରୀ ଲଗାଇ ଗଣ୍ଡଗୋଳକୁ ଦବାଇବା ଫଳରେ, ପଣ୍ଡିତ ନେହେରୁ ଓ ତାଙ୍କ ସରକାର ଭାରତର ସ୍ୱାଧୀନତାର ଆଶା ଲୋପ କରିଦେବେ ।' ତହିଁରେ ପୁଣି ଯୋଡ଼ିଲେ, 'କିନ୍ତୁ କଂଗ୍ରେସ ଯଦି ଲୋକଙ୍କ ଉପରେ ପ୍ରଭାବ ହରାଇ ବସିଲାଣି, ତେବେ ଆଉ ପଣ୍ଡିତ ନେହେରୁଙ୍କ ଗୁରୁ କ'ଣ ?'

ନେହେରୁ ଘୋଷଣା କଲେ ଯେ, ବିହାରରେ ଅବସ୍ଥା ଥୟ ପଡ଼ିବା ପର୍ଯ୍ୟନ୍ତ ସେ ବିହାରରେ ରହିବେ । ନଭେମ୍ବର ୫ତାରିଖରେ ଗାନ୍ଧୀ ବିହାର ଠିକଣାରେ ନେହେରୁଙ୍କ ପାଖକୁ ଖଣ୍ଡିଏ ଚିଠି ପଠାଇଲେ । ସେଥିରେ ସେ ଲେଖିଥିଲେ, 'ବିହାରର ସଂବାଦ ମୋତେ ବିଚଳିତ କରି ଦେଇଛି··· । ଯାହା ଶୁଣାଯାଉଛି, ତହିଁର ଅଧେ ବି ଯଦି ସତ ହୁଏ ତେବେ ବିହାର ମନୁଷ୍ୟତା ହରାଇ ବସିଛି··· । ମୋର ଅନ୍ତରରୁ ବାଣୀ ଶୁଭୁଛି, "ନିର୍ବି-ଚାରରେ ଏ ଯେଉଁ ହତ୍ୟା ହେଉଛି ତାହାର ସାକ୍ଷୀ ହେବା ପାଇଁ ତୁ ବଞ୍ଚିରହିବା ଦରକାର ନାହିଁ··· । ଏଇଥିରୁ କ'ଣ ଜଣା ପଡ଼ୁନାହିଁ ଯେ ତୋର ବେଳକାଳ ସରିଗଲାଣି ।' ଏହି କଥାକୁ ଯୁକ୍ତିର ମାନଦଣ୍ଡରେ ଥୋଇବା ଫଳରେ ମୁଁ ପୁଣି ଅନଶନ କରିବା ଆଡ଼କୁ ଟାଣି ହେଉଛି । ନିଜକୁ ରୋକିବାକୁ ମୁଁ କୌଣସି ଯୁକ୍ତି ପାଉନାହିଁ ।'

ଇଦ୍ ଉତ୍ସବ କଲିକତାରେ ଓ ଭାରତର ଅନ୍ୟାନ୍ୟ ଶାନ୍ତିରେ ହୋଇଗଲା । ମହାତ୍ମାଜୀ ବିହାରରୁ ଆଶାଜନକ ସଂବାଦମାନ ପାଇଲେ । ତାଙ୍କର ପ୍ରଥମ କର୍ତ୍ତବ୍ୟ ନୋଆଖାଲିରେ ; ସେଠାରେ ମୁସ୍‌ଲିମ୍‌ଙ୍କ ଉତ୍ପାତରେ ହିନ୍ଦୁମାନେ ଘରଛାଡ଼ି ପଳାଇଯାଉଥାନ୍ତି । ସ୍ୱାଧୀନତା ଓ ଗଣତନ୍ତ୍ରର ଶତ୍ରୁ ଭୟ । ଅହିଂସ ସାହସ ହିଂସାର ପ୍ରତିଷେଧକ । ହିନ୍ଦୁଙ୍କ ଆଗରେ ସାହସ ଦେଖାଇ ସେ ନୋଆଖାଲିର ହିନ୍ଦୁଙ୍କ ମନରେ ସାହସ ସଂଗ୍ରହ କରିବେ । ମୁସ୍‌ଲିମ୍‌ମାନଙ୍କୁ ସେ ପ୍ରଭାବିତ କରିପାରିବେ ନାହିଁ ଜାଣିବା ମଧ୍ୟ ଗାନ୍ଧୀଙ୍କ ପକ୍ଷରେ ସମାନ ଭାବେ ପ୍ରୟୋଜନ ହୋଇଥାଏ । ଯଦି ମୁସ୍‌ଲିମ୍‌ମାନେ ଅହିଂସାମାଣିତ, ପ୍ରତିଶୋଧ ନେବାକୁ ଉଦ୍‌ବେଗ-ହୀନତା ଓ ଭ୍ରାତୃଭାବ ନ ଦେଖାନ୍ତି ତେବେ ସ୍ୱାଧୀନ ଓ ଏକତାବଦ୍ଧ ଭାରତ ସଂଭବ ହେବ କିପରି ?

ଗାନ୍ଧୀ କହିଲେ, 'ଧର, ମୋତେ ଜଣେ ମାରିଦେଲା ; ତେବେ ତାକୁ ମାରିଦେବାଦ୍ୱାରା ତମେ କି ଲାଭ ପାଇବ ? ପୁଣି କଥାଟା ଟିକିଏ ଭଲ କରି ବିଚାର, ବୁଝିବ, ନିଜେ ଗାନ୍ଧୀ ବ୍ୟତୀତ ଗାନ୍ଧୀକୁ ଆଉ କିଏ ମାରି ପାରେ ? ବାହାରର କେହି ତ ମୋର ଆତ୍ମାକୁ ନଷ୍ଟ କରି ପାରିବ ନାହିଁ ।'

ଗାନ୍ଧୀ କ'ଣ ତେବେ ଆଶଂକା କରୁଥିଲେ ଯେ, ନୋଆଖାଲିର କୌଣସି ମୁସ୍‌ଲିମ୍ ତାଙ୍କୁ ହତ୍ୟା କରି ଦେବ, ଏବଂ ପ୍ରତିଶୋଧ ପରାୟଣ ହୋଇ ହିନ୍ଦୁମାନେ ସମଗ୍ର ଭାରତରେ ମୁସ୍‌ଲିମ୍‌ଙ୍କୁ ହତ୍ୟା କରିବାକୁ ଲାଗି-ଯିବେ ?

ନୋଆଖାଲି ଯିବାର ପ୍ରେରଣା ଗାନ୍ଧୀଙ୍କ ପକ୍ଷରେ ଅଦମ୍ୟ ହେଲା । ବିହାର ପାଇଁ ଅନଶନ କରିବାର କଳ୍ପନା ସେ ଛାଡ଼ିଦେଲେ ।

ନଭେମ୍ବର ୬ ତାରିଖ ସକାଳେ ଗାନ୍ଧୀ କଲିକତାରୁ ବାହାରି ନୋଆଖାଲି ଯାତ୍ରା ଆରମ୍ଭ କଲେ । ନୋଆଖାଲି ଭାରତର ସବୁଠାରୁ ଅଗମ୍ୟ ସ୍ଥାନମାନଙ୍କରେ ଅନ୍ୟତମ । ଏହା ଜଳପାଟପୂର୍ଣ୍ଣ, ଗଙ୍ଗା ଓ ବ୍ରହ୍ମପୁତ୍ରର ତ୍ରିକୋଣଭୂମିରେ ଅବସ୍ଥିତ । ସେଠାକୁ ଯିବା ଓ ସେଠାରେ ରହିବା ଘୋର ଅସୁବିଧାପୂର୍ଣ୍ଣ । ଅନୁନ୍ନତ ଭାରତର ପ୍ରତୀକ ବଳଦଗାଡ଼ି ସୁଦ୍ଧା ସେ ଜିଲାର ସଡ଼କମାନଙ୍କରେ ଯାଇପାରେ ନାହିଁ । ଅଧିକାଂଶ ଗାଁକୁ ଯିବାର ଏକମାତ୍ର ଯାନ ହୁଲଡଙ୍ଗା । ନିଉୟର୍କ୍‌ର 'ଇନ୍‌ଷ୍ଟିଚ୍ୟୁଟ୍ ଅବ୍ କରେଣ୍ଟ୍ ଆଫେୟାରସ୍'ର ସମ୍ବାଦଦାତା ଫିଲିପସ୍ ଟ୍ୟାଲବଟ୍‌ଙ୍କୁ

କଲିକତାଠାରୁ, ମହାତ୍ମା ଗାନ୍ଧୀ ତମ୍ବୁପକାଇଥିବା ଗୋଟିଏ ଗ୍ରାମରେ ଯାଇ ପହଞ୍ଚିବା ସକାଶ, ରେଲ୍, ଷ୍ଟିମର୍, ବାଇସାଇକଲ୍, ଦଉଡ଼ଟଣା ଡଙ୍ଗାରେ ଏବଂ ପାଦରେ ଚାଲିଚାଲି ଚାରିଦିନ ଲାଗିଥିଲା । ଆଉ ଘର୍ଘେ ଚାଳିଶ ମାଇଲ । ଏହି ଅଞ୍ଚଳ ଅତି ଜାନାକାର୍ଣ୍ଣ ; ମୋଟ ଲୋକ ସଂଖ୍ୟା ୨୫ ଲକ୍ଷ ; ଏଥିରୁ ଶତକଡ଼ା ଅଶୀ ଭାଗ ମୁସ୍‌ଲିମ୍ । ବାଦବିସଂବାଦ ଓ ସାଂପ୍ରଦାୟିକ ଗଣ୍ଡଗୋଳରେ ଏ ଅଞ୍ଚଳ ସଡ଼ିଯାଇଥାଏ । କେତେକ ଗ୍ରାମ ଏକାବେଳକେ ଧ୍ୱଂସ ହୋଇ ଯାଇଥାଏ ।

ଏହିପରି ଦୁର୍ଦ୍ଦଶାଗ୍ରସ୍ତ ଏହି ଦୁର୍ଗମ ଅଞ୍ଚଳକୁ ଯାଇ ସେଠାରେ ରହିବାର ଶାରୀରିକ କ୍ଳେଶ ଓ ମାନସିକ ଉଦ୍‌ବେଗ ଗାନ୍ଧୀଜୀ ଜାଣିଜାଣି ବରଣ କରିଥାନ୍ତି । ମାସ ପରେ ମାସ ଏଠାରେ କଟାଇ ଏଠାର ଅବସ୍ଥା ସୁଧାରିବାକୁ ସେ ନିରବଚ୍ଛିନ୍ନ ଉଦ୍ୟମ ଲଗାଇ ରଖିଲେ । ଡିସେମ୍ବର ୫ ତାରିଖରେ ସେ ନୂଆଖାଲିରୁ ଲେଖିଥିଲେ, 'ମୁଁ ବର୍ତ୍ତମାନ ଯେଉଁ କାର୍ଯ୍ୟ ହାତରେ ନେଇଛି ତାହା ମୋ ଜୀବନର ସବୁଠାରୁ କଷ୍ଟକର ଓ ଜଟିଳତାପୂର୍ଣ୍ଣ କାର୍ଯ୍ୟ... । ପରିଣାମ ଯାହା ହେଉ ନା କାହିଁକି, ସେଥିପାଇଁ ମୁଁ ପ୍ରସ୍ତୁତ ହୋଇ ରହିଛି । "କର ବା ମର" ଏହି ପ୍ରବଚନକୁ ଏଠାରେ କାର୍ଯ୍ୟରେ ଦେଖାଇ ଦେବାକୁ ହେବ । ଏଠାରେ "କର" ର ଅର୍ଥ : ହିନ୍ଦୁ ଓ ମୁସଲମାନ ଏଠାରେ ଶାନ୍ତି ଓ ସଦ୍‌ଭାବରେ ଏକତ୍ର ରହିବାକୁ ଶିକ୍ଷା କରିବେ । ଯଦି ତାହା ନ ହେବ, ତେବେ ସେଥିପାଇଁ ଉଦ୍ୟମ କରି କରି ମୁଁ ଏଠାରେ ମରିବ ।'

ବଙ୍ଗ ପ୍ରାଦେଶିକ ସରକାରର କେତେକ ମନ୍ତ୍ରୀ ଏବଂ ଗାନ୍ଧୀଙ୍କ ସେକ୍ରେଟାରୀ ଓ ସହକର୍ମୀଙ୍କର ଗୋଟିଏ ଦଳ ଗାନ୍ଧୀଙ୍କ ସଙ୍ଗେ ନୋଆଖାଲି ଯାଇଥାନ୍ତି । ସହକର୍ମୀମାନଙ୍କୁ ସେ ବିଭିନ୍ନ ଗ୍ରାମକୁ ଜଣଜଣ କରି ପଠାଇ-ଦେଲେ, ଏବଂ ନିଜ ପାଖରେ, ବଙ୍ଗଳା କଥା ତାଙ୍କୁ ସମଜାଇବାକୁ ଅଧ୍ୟାପକ ନିର୍ମଳ ବସୁଙ୍କୁ, ତାଙ୍କର ସ୍ଥାୟୀ ଷ୍ଟେନୋଗ୍ରାଫର୍ ପରଶୁରାମଙ୍କୁ, ଓ ମନୁ ଗାନ୍ଧୀଙ୍କୁ ରଖିଲେ । ନିଜ ଖାଦ୍ୟ ତିଆର କରିବା ଓ ନିଜର ମର୍ଦ୍ଦନ କରିବା କାର୍ଯ୍ୟ ସେ ଜିଦ୍‌କରି ନିଜେ କଲେ । ମୁସ୍‌ଲିମ୍‌ଙ୍କ ଦୁର୍ବୃତ୍ତିରୁ ତାଙ୍କୁ ରକ୍ଷା କରିବାକୁ ଦେହରକ୍ଷୀ ପୁଲିସ୍ ତାଙ୍କର ଦରକାର ବୋଲି ବନ୍ଧୁମାନେ ଜଗର କଲେ ; ତାଙ୍କ ଦେହ ପା ବିଷୟ ବୁଝିବାକୁ ତାଙ୍କ ଚିକିତ୍ସକ ଶ୍ରୀମତୀ ସୁଶୀଳା ନାୟାର ତାଙ୍କ ପାଖେ ରହିବା ଦରକାର ବୋଲି ଧରିବସିଲେ । ଗାନ୍ଧୀ ଓଲଟି ଧରିବସିଲେ, ସୁଶୀଳା, ତାଙ୍କ ଭାଇ

ପ୍ୟାରେଲାଲ, ସୁଚେତା କୃପାଲାନୀ, କାନୁ ଗାନ୍ଧୀଙ୍କ ଯୁବତୀ ସ୍ତ୍ରୀ ଆଭା, ଏବଂ କାନୁ ଗାନ୍ଧୀ—ଏ ସମସ୍ତେ ଜଣ ଜଣ ହୋଇ ଗୋଟିଏ ଗୋଟିଏ ଗ୍ରାମରେ ଆଶ୍ରମ କରିବେ । ଏ ଗ୍ରାମଗୁଡ଼ିକରୁ ଅନେକ ପରସ୍ପରଠାରୁ ଦୂର ଏବଂ ଆଗନ୍ତୁକମାନଙ୍କ ପ୍ରତି ସଦ୍‌ଭାବାପନ୍ନ ନ ହେଲେ ବି ଏମାନେ ନିଜର ଆଚରଣ ଓ ପ୍ରେମଦ୍ୱାରା ଗ୍ରାମବାସୀମାନଙ୍କୁ ହିଂସାବୃତ୍ତିରୁ ଫେରାଇ ଅହିଂସା-ପରାୟଣ କରିବେ । ପ୍ୟାରେଲାଲ ଯାଇ ଯେଉଁ ଗ୍ରାମରେ ଆସ୍ଥାନ ପକାଇଥିଲେ ସେଠାରେ ତାଙ୍କୁ ମେଲେରିଆ ହେଲା । ସୁଶୀଳା ଆସି ତାଙ୍କର ଶୁଶ୍ରୂଷା କରନ୍ତେ ବୋଲି ଅନୁମତି ପ୍ରାର୍ଥନା କରି ସେ ଗାନ୍ଧୀଙ୍କ ପାଖକୁ ଚିଠି ଦେଲେ । ଗାନ୍ଧୀ ଉତ୍ତରରେ ଲେଖିଲେ, 'ଯେଉଁମାନେ ଗ୍ରାମରେ ଲୋକସେବା କରିବାକୁ ଯାଉଛନ୍ତି ସେମାନେ କାହା ଉପରେ ନିର୍ଭର ନ କରି ସେଠାରେ ରହିବେ ବା ମରିବେ ବୋଲି ସଂକଳ୍ପ କରିବା ଦରକାର । ନିତାନ୍ତ ଯେ ବେମାର ପଡ଼ିବ ସେ ନିଜ ଉଦ୍ୟମରେ ସେଇଠାରେ ଭଲ ହେବ, ନ ହେଲେ ମରିବ । ତେବେ ଯାଇ ଗ୍ରାମସେବା କରିବାକୁ ଯିବା ସାର୍ଥକ ହେବ । ରୋଗର ଚିକିତ୍ସା ପାଇଁ କର୍ମୀମାନଙ୍କୁ ଘରୋଇ ଚିକିତ୍ସା କରିବାକୁ ହେବ କିମ୍ବା ପ୍ରକୃତିର 'ପଞ୍ଚ ମହାଭୂତ'ଙ୍କ ସାହାଯ୍ୟରେ ଆରୋଗ୍ୟ ଲାଭ କରିବାକୁ ହେବ । ଡକ୍‌ଟର୍ ସୁଶୀଳାଙ୍କ ଭାଗରେ ତ ଗୋଟିଏ ଗ୍ରାମ ପଡ଼ିଛି ; ତାଙ୍କୁ ସେ ଗ୍ରାମର ହାଲଚାଲିକତ୍ ବୁଝିବାକୁ ହେବ । ପୁଣି ଏତେବେଳେ ତାଙ୍କର ଚିକିତ୍ସା ଆମ ଦଳର କର୍ମୀମାନଙ୍କୁ ମିଳିବାର କଥା ନୁହେଁ । ପୂର୍ବବଙ୍ଗର ଗ୍ରାମବାସୀଙ୍କ ସେବା କରିବାକୁ ତାଙ୍କର ଚିକିତ୍ସା-ନୈପୁଣ୍ୟ ପୂର୍ବରୁ ଆବଦ୍ଧ ହୋଇ ଯାଇଛି ।' ଅନ୍ୟମାନଙ୍କ ପ୍ରତି ଯେପରି ନିଜ ପ୍ରତି ସେହିପରି, ସେ ଏହି ନିର୍ମମ, ଅବିଚଳିତ ତ୍ୟାଗ-ବିଧି ଚାଲୁ କରିଥିଲେ ।

ନୋଆଖାଲି-ଯାତ୍ରା ଭିତରେ ଗାନ୍ଧୀ ଗୋଟିକ ପରେ ଗୋଟିଏ କରି ଅଣଚାଳିଶଟି ଗ୍ରାମରେ ରହିଥିଲେ । ଗୋଟିଏ ଗ୍ରାମରୁ ଭୋର ୭ଟାରେ ବାହାରି ସେ ଖାଲି ପାଦରେ ତିନି ଚାରିମାଇଲ ଯାଇ ପାଖ ଗାଁରେ ପହଞ୍ଚନ୍ତି । ସେଠାରେ ଦିନେ, ଦୁଇଦିନ ବା ତିନିଦିନ ରହି ଗ୍ରାମବାସୀଙ୍କ ସଙ୍ଗେ ଅବିଶ୍ରାନ୍ତ କଥାବାର୍ତ୍ତା ଓ ଉପାସନା କରନ୍ତି, ତା'ପରେ ଆଉ ଗୋଟିଏ ଗାଁକୁ ଯା'ନ୍ତି । ଗୋଟିଏ ଗାଁରେ ଯାଇ ପହଞ୍ଚିଲେ, ସେ ଜଣେ କୃଷକର କୁଟୀର (ପ୍ରାୟଶଃ ମୁସଲମାନଙ୍କର) ଦ୍ୱାରରେ ଯାଇ ଠିଆ ହୁଅନ୍ତି, ଏବଂ ନିଜର

ସହଚରମାନଙ୍କ ସହିତ ସେଠାରେ ରହିବାକୁ ମାଗନ୍ତି । ସେଠାରୁ ନାସ୍ତିବାଣୀ ଶୁଣିଲେ ଆଉ କୁଟୀରର ଦ୍ୱାରସ୍ଥ ହୁଅନ୍ତି । ସ୍ୱାମୀଙ୍କୁ ଫଳମୂଳ, ପରିବାପତ୍ର ଓ ମିଳିଲେ ଛେଳି ଦୁଧରେ ତାଙ୍କର ଚଳିଯାଏ । ୧୯୪୬ ନଭେମ୍ବର ୭ ତାରିଖରୁ ୧୯୪୭ ମାର୍ଚ୍ଚ ଦୁଇ ତାରିଖ ପର୍ଯ୍ୟନ୍ତ ସେ ଏହିପରି ଚଳିଲେ । ଏ ବ୍ରତ ଆରମ୍ଭ ହେବାର ଅଳ୍ପଦିନ ପୂର୍ବରୁ ସେ ୭୭ ବର୍ଷ ପାର ହୋଇ ୭୮ ବର୍ଷରେ ପଦାର୍ପଣ କରିଥିଲେ ।

ଚାଲିବାକୁ ଭାରି କଷ୍ଟ ହେଉଥାଏ ; ଗାନ୍ଧୀଙ୍କ ଗୋଡରେ ବାଳିଜଦା-ଖିଆ ଘା ହୋଇଗଲା । କିନ୍ତୁ ସେ ପ୍ରାୟଶଃ ଚଟି ବ୍ୟବହାର କରୁ ନ ଥିଲେ । ଭାରତବାସୀଙ୍କୁ ଅହିଂସାମନ୍ତ୍ରରେ ସେ ଦୀକ୍ଷିତ କରି ନ ପାରିବାରୁ ସିନା ନୋଆଖାଲିର ଗଣ୍ଡଗୋଳ ହେଲା । ତେଣୁ ଏହାର ପ୍ରାୟଶ୍ଚିତ୍ତ ସ୍ୱରୂପ ସେ ନୋଆଖାଲିରେ ତୀର୍ଥଯାତ୍ରା କରୁଥାନ୍ତି । ପ୍ରାୟଶ୍ଚିତ୍ତ କରିବା ଲୋକ ତ ଜୋତା ପିନ୍ଧନ୍ତି ନାହିଁ । ଜୋତା ପିନ୍ଧିବା ବିରୁଦ୍ଧରେ ଏଇ ହେଲା ତାଙ୍କର ଯୁକ୍ତି । ବେଳେବେଳେ ବିରୋଧୀ ଲୋକେ ଗାନ୍ଧୀଙ୍କ ଯିବା ରାସ୍ତାରେ ଭଙ୍ଗାକାଚ, କଣ୍ଟା ଓ ମଇଳା ବିଛାଇ ଦେଉଥିଲେ । ସେ ଏମାନଙ୍କୁ ନିନ୍ଦା କରୁ ନ ଥିଲେ ; ରାଜନୀତିକ ନେତାମାନେ ତାଙ୍କୁ ଏଭଳି ବଦ୍‌ଶିକ୍ଷା ଦେଇଛନ୍ତି ବୋଲି କହୁଥିଲେ । ଅନେକ ଜାଗାରେ ଚଲା ବାଟରେ, ମାଡ଼, ଜଳଆ ଜାଗା ଉପରେ ତିଆରି ହୋଇଥିବା ଛୋଟ ଛୋଟ ପୋଲ ପାର ହେବାକୁ ପଡୁଥିଲା । ୧୦ । ୧୫ ଫୁଟ୍ ଉଚ୍ଚ ବାଉଁଶ ଖୁଣ୍ଟି ଉପରେ ପ୍ରାୟ ଚାରିଇଞ୍ଚ ଗୋଲେଇ ଚାରି ପାଞ୍ଚଟା ବାଉଁଶ ପକାଇ ଏ ପୋଲ ତିଆରି ହୋଇଥାଏ । ଆଡ଼ ବାଉଁଶଗୁଡ଼ିକ ଛୋଟ ଦଉଡ଼ିରେ ବା ଲଇରେ ବନ୍ଧା ହୋଇଥାଏ । ଖିବାଡ଼ିବା ହୋଇ ତିଆରି ହୋଇଥିବା ଏ ପୋଲଗୁଡ଼ିକ ଉପରେ ମଣିଷ ଚାଲିଲେ ହଲୁଥାଏ । ପୋଲର ଗୋଟିଏ ପାଖରେ, ଭରା-ଦେବାକୁ ବାଉଁଶର ଧାରଣା କେଉଁଠି ଥାଏ ତ, କେଉଁଠି ନ ଥାଏ । ଥରେ ଗାନ୍ଧୀଙ୍କ ଗୋଡ଼ ଖସିଗଲା ଯେ ସେ ବହୁତ ତଳେ ଥିବା କାଦୁଅରେ ପଡ଼ିଯାଇଥାନ୍ତେ, ଧୃତିରେ ନିଜର ଭାରସାମ୍ୟ ରଖି ବଞ୍ଚିଗଲେ । ଏଭଳି ପୋଲ ପାର ହେବାରେ ନିପୁଣ ଓ ନିର୍ଭୀକ ହେବା ସକାଶେ, ସେ ତଳୁ ଅଳ୍ପ କେତେଇଞ୍ଚ ଉଚ୍ଚା, ମାଟି ପୋଲ ଯେଉଁଠି ଦେଖୁଥିଲେ ସେଥିରେ ଯିବା ଆସିବା ଅଭ୍ୟାସ କରୁଥିଲେ ।

୧୯୪୬, ନଭେମ୍ବର ୪ ତାରିଖରେ, ମିଷ୍ଟର୍ ଆର୍ଥର୍ ହେଣ୍ଡେର୍ସନ୍, ବିଲାତର କମନ୍ସ୍ ସଭାରେ ବକ୍ତୃତା ଦେଇ କହିଥିଲେ ଯେ, ନୋଆଖାଲି ଓ ତାହାର ଆଖପାଖ ତ୍ରିପୁରା ଜିଲାମାନଙ୍କରେ ଠିକ୍ କେତେ ଲୋକ ମରିଛନ୍ତି ଗଣତି ହୋଇନାହିଁ, କିନ୍ତୁ ମୋଟାମୋଟି ହିସାବରୁ ଜଣାଯାଏ, ଏହା ତିନି ଅଙ୍କ ବିଶିଷ୍ଟ କ୍ଷୁଦ୍ର ସଂଖ୍ୟା ହେବ । ବଙ୍ଗ ସରକାର ଏ ସଂଖ୍ୟା ୨୧୮ ବୋଲି ହିସାବ ପ୍ରକାଶ କରିଥିଲେ । କିନ୍ତୁ କେତେକ ପରିବାର ଉପରେ ନିଜ ଲୋକଙ୍କର ମରିବା ଖବର ଲୁଚାଇ ଦେଇଥିଲେ । ଏହି ଦୁଇ ଜିଲାରେ ୧୮ ହଜାରରୁ ଅଧିକ ଘର ଲୁଟ ହୋଇଥିଲା । ତ୍ରିପୁରାରେ ୯୮୯୫ ଜଣଙ୍କୁ ଜବରଦସ୍ତି ମୁସଲମାନ ଧର୍ମରେ ଦୀକ୍ଷିତ କରାହୋଇଥିଲା ; ନୋଆଖାଲିର ହିସାବରୁ ଜଣାଯାଏ, ଏଠାରେ ଆହୁରି ଅଧିକ ଲୋକଙ୍କୁ ଜବରଦସ୍ତି ମୁସଲମାନ କରାହୋଇଥିଲା । ହଜାର ହଜାର ହିନ୍ଦୁ ମହିଳାଙ୍କୁ ଅପହରଣ କରି ସେମାନଙ୍କ ଇଚ୍ଛା ବିରୁଦ୍ଧରେ ମୁସଲମାନଙ୍କୁ ବିଭା କରା ହୋଇଥିଲା । ଜବରଦସ୍ତି ହିନ୍ଦୁଙ୍କୁ ମୁସଲମାନ କରିବା, ନାରୀହରଣ କରିବା ଘଟଣାମାନଙ୍କ ଯୋଗୁଁ ଗାନ୍ଧୀ ଗଭୀର ବ୍ୟଥା ଅନୁଭବ କରିଥିଲେ ।

ହିନ୍ଦୁ ମହିଳାମାନଙ୍କୁ ମୁସଲମାନ ଦୀକ୍ଷା ଦେଲାବେଳେ, ମୁସଲମମାନେ ସେମାନଙ୍କ କାଚ ବାଡ଼େଇ ଦେଉଥିଲେ ଏବଂ ତାଙ୍କ ମଥାରୁ 'ସୌଭାଗ୍ୟ ଚିହ୍ନ' ସିନ୍ଦୂର ଟୋପା ଲିଭାଇ ଦେଉଥିଲେ । ସ୍ତ୍ରୀଲୋକଙ୍କର ସିନ୍ଦୂର ଟୋପା ଅହିଅ ଲକ୍ଷଣ । ହିନ୍ଦୁ ପୁରୁଷଙ୍କୁ ଦାଢ଼ିମୁଛ ରଖିବା ପାଇଁ, ଓ ଲୁଗା ହିନ୍ଦୁ ଢଙ୍ଗରେ ନ ପିନ୍ଧି ମୁସଲମାନ ଢଙ୍ଗରେ ପିନ୍ଧିବାକୁ, ଓ କୋରାଣ ପଢ଼ିବାକୁ ବାଧ୍ୟ କରା ହୋଇଥିଲା । ହିନ୍ଦୁ ଦେବମୂର୍ତ୍ତିମାନ ଭାଙ୍ଗି ଦିଆଗଲା ଓ ହିନ୍ଦୁ ଦେବଦେବୀ ମନ୍ଦିରମାନଙ୍କର ପବିତ୍ରତା ନଷ୍ଟ କରାଯାଇଥିଲା । ସବୁଠାରୁ ବଡ଼ ଦୁଃଖର କଥା, ଯେଉଁ ହିନ୍ଦୁମାନଙ୍କର ଗୋରୁ ଗାଈ ଥିଲେ ତାକୁ ନିଜ ହାତରେ ହାଣିବାକୁ ସେମାନଙ୍କ ଉପରେ ଜବରଦସ୍ତି କରାଯାଇଥିଲା ଓ ପ୍ରତ୍ୟେକ ହିନ୍ଦୁଙ୍କୁ ଗୋରୁମାଂସ ଖୁଆ ହୋଇଥିଲା । ଯେଉଁ ହିନ୍ଦୁ ଗୋରୁ ମାରିଛି ବା ଗୋମାଂସ ଖାଇଛି ତାଙ୍କୁ ଆଉ ହିନ୍ଦୁ ସଂପ୍ରଦାୟରେ ଗ୍ରହଣ କରାଯିବ ନାହିଁ, ଏଇ ବିଶ୍ବାସରେ ଏପରି କରା ହୋଇଥିଲା ।

ଉପଦ୍ରୁତ ଅଞ୍ଚଳ ଛାଡ଼ି ଅନ୍ୟ ପ୍ରଦେଶରେ ଯାଇ ହିନ୍ଦୁମାନେ ବସବାସ କରିବାକୁ ଗାନ୍ଧୀଜୀ ସେମାନଙ୍କୁ ପ୍ରବର୍ତ୍ତାନ୍ତୁ ବୋଲି, ପ୍ରଥମେ ପ୍ରଥମେ କେତେଜଣ ସହକର୍ମୀ ଗାନ୍ଧୀଙ୍କୁ ସୂଚନା ଦେଇଥିଲେ । ଗାନ୍ଧୀ କିନ୍ତୁ ଏଭଳି

ପରାଜୟ-ମନୋବୃତ୍ତିକୁ ଦୃଢ଼ଭାବେ ପ୍ରତ୍ୟାଖ୍ୟାନ କରିଥିଲେ । ହିନ୍ଦୁ ଅଞ୍ଚଳ ଓ ମୁସ୍‌ଲିମ୍ ଅଞ୍ଚଳ ମଧ୍ୟରେ ଯଦି ଅଧିବାସୀଙ୍କର ବିନିମୟ ହୁଏ, ତେବେ ଭାରତକୁ ଏକଶାସନାଧୀନରେ ରଖିବା ଅସଂଭବ ବୋଲି ପ୍ରମାଣିତ ହୋଇଯିବ । ଗାନ୍ଧୀ-ବାଦର ଗୋଟିଏ ମୌଳିକ ମତର ଏହାଦ୍ୱାରା ଖିଲାପ ହେବ । ସେ ମତଟି ହେଲା : ଯେଉଁ ମାନବଗୋଷ୍ଠୀମାନେ ପରସ୍ପରଠାରୁ ଅଲଗା ହୋଇଛନ୍ତି, କିମ୍ବା ନିଜନିଜକୁ ଅଲଗା ବୋଲି ଭାବୁଛନ୍ତି, ସେମାନଙ୍କ ମଧ୍ୟରେ ଐକ୍ୟ ଅଛି, ନ ଥିଲେ ଅନାୟାସରେ ତାହା ପ୍ରତିଷ୍ଠିତ ହୋଇପାରେ । ଯେଉଁମାନେ ପରସ୍ପର ସମାନ ସେମାନଙ୍କ ମଧ୍ୟରେ ବିକଶିତ ସ୍ନେହ ଓ ମୈତ୍ରୀ ଅପେକ୍ଷା ଯେଉଁମାନେ ସମାନ ନୁହନ୍ତି ସେମାନଙ୍କ ମଧ୍ୟରେ ପ୍ରତିଷ୍ଠିତ ସ୍ନେହ ଓ ମୈତ୍ରୀ ମହତ୍ତର ।

ନୋଆଖାଲିର ସମସ୍ୟା ଅନୁଧ୍ୟାନ କଲାପରେ ଗାନ୍ଧୀ ଉପଲବ୍ଧି କଲେ ଯେ, ପ୍ରତ୍ୟେକ ଗ୍ରାମରେ ଜଣେ ହିନ୍ଦୁ ଓ ଜଣେ ମୁସ୍‌ଲିମ୍‌ଙ୍କୁ ବାଛି ଗ୍ରାମର ମୁଖିଆ କରିବା ଦରକାର । ଏ ଦୁହେଁ ଗ୍ରାମର ପ୍ରତ୍ୟେକ ଅଧିବାସୀର ନିରାପତ୍ତା ପାଇଁ ଦାୟୀ ରହିବେ, ଏବଂ ଦରକାର ହେଲେ, ସେମାନଙ୍କ ପାଇଁ ନିଜର ପ୍ରାଣ ଦେବାକୁ ପ୍ରସ୍ତୁତ ଥିବେ । ଏହି ଉଦ୍ଦେଶ୍ୟରେ ସେ ଉଭୟ ସଂପ୍ରଦାୟର ଲୋକଙ୍କ ସଙ୍ଗେ କଥାବାର୍ତ୍ତା ଚଳାଇଥାନ୍ତି । ଥରେ ସେ ଗୋଟିଏ କୁଟୀରର ଅଙ୍ଗଣରେ ଗୋଟିଏ ମୁସଲମାନ ଗୋଷ୍ଠୀରେ ବସି ଅହିଂସାର ମହତ୍ତ୍ୱ ବିଷୟରେ ବ୍ୟାଖ୍ୟାନ କରୁଥାନ୍ତି । ଏତିକିବେଳେ ସୁଚେତା କୃପାଲିନୀ ତାଙ୍କ ପାଖକୁ କାଗଜ ଟୁକୁରା ଖଣ୍ଡେ ପଠାଇ ଦେଲେ ; ସେଥିରେ ଲେଖାଥିଲା : ଗାନ୍ଧୀଙ୍କ ଡାହାଣକୁ ବସିଥିବା ମୁସଲ୍‌ମାନଟା ବିଗତ ଗଣ୍ଡଗୋଳ ବେଳେ ବହୁ ହିନ୍ଦୁଙ୍କୁ ହତ୍ୟା କରିଛି । ଗାନ୍ଧୀ ବିଷଣ୍ଣ ଭାବେ ଟିକିଏ ହସି ଦେଇ ପୂର୍ବପରି କହି ଚାଲିଲେ । ହତ୍ୟାକାରୀକୁ ଯଦି ଫାଶି ନ ଦେଲ—ଗାନ୍ଧୀ ତ ଫାଶୀଦଣ୍ଡର ବିରୋଧୀ ଥିଲେ—ତେବେ ନିଜର ଉଦାରତା ଗୁଣରେ ଅପରାଧୀର ହୃଦୟ ପରିବର୍ତ୍ତନ କରିବାକୁ ହେବ ହିଁ ହେବ । ଯଦି ହତ୍ୟାକାରୀକୁ ଜେଲଦଣ୍ଡ ଦିଅ, ତେବେ ହତ୍ୟାକାରୀଙ୍କ ସଂଖ୍ୟା ବଢ଼ିବ । ଗାନ୍ଧୀ ବୁଝିଥିଲେ, ହତ୍ୟା କରିବାର ମନୋବୃତ୍ତି ଗୋଟିଏ ସାମାଜିକ ରୋଗ ; ସେଇ ଦୃଷ୍ଟିରେ ସେ ହତ୍ୟାକାଣ୍ଡର ପ୍ରତିବିଧାନ କରିବାରେ ଲାଗିଥିଲେ । ଜଣେ ବା ଦୁଇଜଣ ହତ୍ୟାକାରୀଙ୍କୁ ହତ୍ୟା କରିଦେଲେ ଏ ରୋଗର ସମୂଳ ନିରାକରଣ ହୋଇ ନ ପାରେ । ଯେଉଁ ଅପରାଧୀ ସବୁବେଳେ

ପ୍ରତିଶୋଧର ଆଶଂକାରେ ରହିବ ସେ ବାରମ୍ବାର ହୋଇ ବାରଂବାର ଅପରାଧ କରି ଚାଲିବ । ତେଣୁ ଗାନ୍ଧୀ ଅପରାଧୀକୁ କ୍ଷମା କରିବାର ପକ୍ଷପାତୀ ଥିଲେ ; ଅପରାଧୀଙ୍କୁ ସେ ଅଭୟ ଦେଇଥିଲେ, ଏବଂ ସେମାନଙ୍କୁ କ୍ଷମା କରିବାକୁ ହିନ୍ଦୁମାନଙ୍କୁ ଉଦ୍‌ବୁଦ୍ଧ କରିଥିଲେ । ଅଧିକନ୍ତୁ ସେ ମୁସଲମାନ ହତ୍ୟାକାରୀଙ୍କୁ ସ୍ପଷ୍ଟ ଶୁଣାଇ ଦେଇଥିଲେ ଯେ, ସେମାନଙ୍କ ଅପରାଧରେ ସେ ମଧ୍ୟ ନିଜେ ଅଂଶୀଦାର, ଯେହେତୁ ସେ ଦେଶର ହିନ୍ଦୁ-ମୁସଲମାନଙ୍କ ମଧ୍ୟରେ ଥିବା ବିଦ୍ୱେଷ ଦୂର କରିବାକୁ ଅସମର୍ଥ ହୋଇଛନ୍ତି ।

ପୃଥିବୀରେ ଏଭଳି ବିଦ୍ୱେଷ ପୂର୍ଣ୍ଣ ହୋଇ ରହିଛି; ସାଧାରଣ ଲୋକ ଏ ବିଦ୍ୱେଷର ଶିକାର ; ଏବଂ ସେ ବିଦ୍ୱେଷର କର୍ତ୍ତା ମଧ୍ୟ । 'ମୁଁ ତୁମମାନଙ୍କୁ କହୁଛି, ତୁମ ଶତ୍ରୁଙ୍କୁ ପ୍ରେମ କର, ଯେ ତୁମକୁ ଅଭିଶାପ ଦେଉଛନ୍ତି, ତାଙ୍କୁ ଆଶୀର୍ବାଦ କର ; ଯେ ତୁମକୁ ଘୃଣା କରୁଛନ୍ତି ତାଙ୍କର ତୁମେ ହିତକାରୀ ହୁଅ ; ଯେ ତୁମକୁ ବିଦ୍ୱେଷ କରୁଛନ୍ତି, ତୁମକୁ ନିଗୃହୀତ କରୁଛନ୍ତି, ତାଙ୍କ ପାଇଁ ଭଗବାନଙ୍କ ପାଖେ ପ୍ରାର୍ଥନା କର...... କାରଣ, ଯେ ତୁମକୁ ପ୍ରେମ କରନ୍ତି ତାଙ୍କୁ ତୁମେ ଯଦି ପ୍ରେମ କଲ, ତେବେ ତୁମେ କ'ଣ ଅଧିକା କଲ ଯେ ପୁରସ୍କୃତ ହେବ ।' ପ୍ରଭୁ ଯିଶୁ ଏହା କହିଥିଲେ । ଗାନ୍ଧୀ ତାଙ୍କର କଥାକୁ ନିଜ ଆଚରଣରେ ଦେଖାଇ ଯାଇଛନ୍ତି ।

ନୋଆଖାଲିର ଯେଉଁ ମୁସ୍‌ଲିମ୍‌ମାନଙ୍କୁ ଗାନ୍ଧୀ ଏଭଳି ଆବେଦନ କରୁଥିଲେ, ସେମାନଙ୍କ ମଧ୍ୟରୁ ଅନେକଙ୍କର ପୂର୍ବପୁରୁଷ କେତେପୁରୁଷ ପୂର୍ବେ ହିନ୍ଦୁ ଥିଲେ, ଏବଂ ଅସିର ଭୟରେ ବାଧ୍ୟ ହୋଇ କୋରାଣ ଧରିଥିଲେ । ହୁଏତ ଏହି କାରଣରୁ ସେମାନଙ୍କ ମନରେ ହିନ୍ଦୁସଂସ୍କାରର ଅବଶେଷ ଅଦ୍ୟାପି ଥିଲା ; ହୁଏତ ଗାନ୍ଧୀଙ୍କ ଅହିଂସା ଓ ମୈତ୍ରୀର ବାଣୀ ଧର୍ମ ଓ ସଂପ୍ରଦାୟ ନିର୍ବିଶେଷରେ ସମସ୍ତ ମାନବ ମନରେ ଅନୁକୂଳ ପ୍ରତିକ୍ରିୟା ସୃଷ୍ଟି କରିବାକୁ ସମର୍ଥ ଥିଲା । ଗୋଟିଏ ଦୃଷ୍ଟାନ୍ତ ଏଠାରେ ଉଲ୍ଲେଖଯୋଗ୍ୟ : ଗାନ୍ଧିଜୀ ତାଙ୍କର ଜଣେ ମୁସ୍‌ଲିମ୍ ତରୁଣୀ, ଶିଷ୍ୟା କୁମାରୀ ଆମ୍‌ତୁଲ୍ ସାଲାମ୍‌ଙ୍କୁ ଗୋଟିଏ ଗ୍ରାମକୁ ସେବିକା କରି ପଠାଇଥିଲେ । ଶ୍ରୀମତୀ ସାଲାମ୍ ଦେଖିଲେ, ଗାଁର ମୁସ୍‌ଲିମ୍‌ମାନେ ହିନ୍ଦୁ ପ୍ରତିବେଶୀମାନଙ୍କ ପ୍ରତି ପୂର୍ବପରି ଦୁର୍ବ୍ୟବହାର କରୁଛନ୍ତି । ଫିଲିପସ୍ ଟ୍ୟାଲ୍‌ବଟ୍ ଲେଖିଛନ୍ତି, ଗାନ୍ଧୀଙ୍କ ଆଦର୍ଶ ଅନୁକରଣ କରି ମିସ୍ ସାଲାମ୍ ଜଣାଇ ଦେଲେ ଯେ, ଜଣେ ହିନ୍ଦୁଙ୍କ

ଘରୁ ଅକ୍ଟୋବର ମାସର ଗଣ୍ଡଗୋଳ ବେଳେ ଅପହରଣ କରିଥିବା ପୂଜା-ଖଣ୍ଡା ମୁସ୍‌ଲିମ୍‌ମାନେ ଫେରାଇ ନ ଦେବା ପର୍ଯ୍ୟନ୍ତ ସେ ଅନ୍ନଗ୍ରହଣ କରିବେ ନାହିଁ । ଭାରତୀୟମାନଙ୍କର ବହୁକାଳର ପରଂପରା ଅନୁସାରେ, ଯଦି ଜଣେ ଅନଶନ କଲା, ତେବେ ସେ ଯାହାଙ୍କ ପାଇଁ ଅନଶନ କଲା ସେମାନଙ୍କ ଉପରେ ଗୁରୁତର ସାମାଜିକ ଚାପ ସ୍ୱତଃ ପଡ଼ିଥାଏ । ଖଣ୍ଡାଟି ଆଦୌ ମିଳିଲା ନାହିଁ । ହୁଏତ ଗଣ୍ଡଗୋଳବେଳେ ଯିଏକୁ କିଏ ନେଇ କୌଣସି ପୋଖରୀରେ ପକାଇ ଦେଇଥିଲା । ସେ ବିଷୟରେ କାହାରି କିଛି ମନେ ନଥାଏ । କୁମାରୀ ସାଲିମଙ୍କ ଅନଶନ କରିବାର ପଚିଶ ଦିନଠାରେ ଗାନ୍ଧୀ ଯାଇ ସେ ଗାଁରେ ପହଞ୍ଚିଲା ବେଳକୁ ଗାଁର ମୁସଲମାନମାନେ ବିଚଳିତ ହୋଇ ଯେ କୌଣସି ସର୍ତ୍ତରେ ରାଜି ହେବାକୁ ପ୍ରସ୍ତୁତ ହୋଇଥାନ୍ତି । ସ ଲିମ୍‌ଙ୍କୁ ଦେଖୁଥିବା ଡାକ୍ତର ମତ ଦେଉଥାନ୍ତି ଯେ, ତାଙ୍କର ପ୍ରାଣବାୟୁ ଉଡ଼ିଯିବାକୁ ଆରମ୍ଭ କଲାଣି । ଗାନ୍ଧୀ ବହୁ ଘଣ୍ଟାକାଳ ଗ୍ରାମବାସୀମାନଙ୍କ ସଙ୍ଗେ ଆଲୋଚନା କଲେ । କ୍ୟାବିନେଟ୍ ମିଶନ୍ ସଙ୍ଗେ ଯେ ଭଳି ଗୁରୁତର ଭାବେ ଆଲୋଚନା ଚାଲିଥିଲା, ଏ ଆଲୋଚନା ଗୁରୁତ୍ୱରେ ତା’ରି ସଙ୍ଗେ ସମାନ ହୋଇଥିଲା । ଶେଷରେ ଗାନ୍ଧୀ ଗ୍ରାମର ନେତାମାନଙ୍କୁ ମନାଇଲେ ଯେ, ଭବିଷ୍ୟତରେ ହିନ୍ଦୁମାନଙ୍କ ପ୍ରତି କୌଣସି ଅନାଚାର କରିବେ ନାହିଁ ବୋଲି ସେମାନେ ପ୍ରତିଜ୍ଞାପତ୍ରରେ ଦସ୍ତଖତ କରିଦେବେ ।

ଗାନ୍ଧୀ ବୁଝାଇ ଦେଲେ, ଖଣ୍ଡାଟି ଫେରାଇ ଥିଲେ ମୈତ୍ରୀର ପରିଚୟ ମିଳିଥାନ୍ତା ; ଏ ପ୍ରତିଜ୍ଞାପତ୍ର ବି ସେଇ ମୈତ୍ରୀର ପ୍ରମାଣ ହୋଇ ରହିବ ।

ଘୋର ପ୍ରତିକୂଳ ପରିସ୍ଥିତିରେ ଗାନ୍ଧୀ ଓ ତାଙ୍କ ସହକର୍ମୀମାନେ କାର୍ଯ୍ୟ କରି ଚାଲିଥାନ୍ତି । ଗାନ୍ଧୀ ଆସିବାର ପ୍ରଥମ କେଇଦିନ ଗାନ୍ଧୀଙ୍କ ପ୍ରାର୍ଥନା ସଭାରେ ବହୁ ମୁସଲମାନ ଜମୁଥିଲେ । କଲିକତାର ରାଜନୀତିକ-ମାନେ ଏ ରୀତି ପସନ୍ଦ କଲେ ନାହିଁ, ମୁସ୍‌ଲିମ୍ ମୌଲବୀମାନେ ହିନ୍ଦୁ-କାଫେର୍‌ର ଧର୍ମ ପ୍ରଚାରରେ ମୁସ୍‌ଲିମ୍‌ଙ୍କ ଯୋଗ ଦେବାକୁ ନିନ୍ଦା କରି କହିଲେ । ସେମାନେ ଅଭିଯୋଗ କଲେ ଯେ, ମହାତ୍ମା ଗାନ୍ଧୀ ସତ୍‌ବିଶ୍ୱାସୀ-ମାନଙ୍କୁ ଧର୍ମପଥରୁ ବିଚ୍ୟୁତ କରୁଛନ୍ତି । ବେଳେ ବେଳେ ମହାତ୍ମା ଗାନ୍ଧୀ ପ୍ରାର୍ଥନା ସଭାର କାର୍ଯ୍ୟ ବନ୍ଦ ରଖି, ମୁସ୍‌ଲିମ୍‌ମାନଙ୍କୁ ସଭାର ବାହାରକୁ ଯାଇ ପଶ୍ଚିମଦିଗରେ ଥିବା ମେକ୍‌କା ଆଡ଼କୁ ଚାହିଁ ସେମାନଙ୍କର ନେମାଜ କରିବାକୁ ଦେଉଥାନ୍ତି । ସେ ମୁସ୍‌ଲିମଙ୍କ ପ୍ରତି ଯେପରି ମମତା ଦେଖାଉ-

ଥାନ୍ତି, ତାହା ରାଜନୀତିକ ବା ଧାର୍ମିକ କୌଣସି ମୁସ୍‌ଲିମ୍ ନେତାଙ୍କୁ ଛୁଇଁ ଲାଗୁ ନ ଥାଏ ।

ଗାନ୍ଧୀ ସଭାରେ ହିନ୍ଦୁସ୍ଥାନୀରେ ବକ୍ତୃତା ଦେଉଥାନ୍ତି । ସେ କହିବା ପରେ ଜଣେ ଅନୁବାଦକ ତାଙ୍କ କଥା ବଙ୍ଗଳାରେ ବୁଝାଇ ଦିଅନ୍ତି । ଅନୁବାଦ ଚାଲିଥିଲା ବେଳେ ଗାନ୍ଧୀ ପ୍ରାର୍ଥନା ମଞ୍ଚରେ ବସି ନିଜ ବକ୍ତୃତାର ସାରାଂଶ ଟିପୁଥାନ୍ତି ; ତାହା ପରେ ଖବରକାଗଜରେ ପ୍ରକାଶ ପାଏ । କେତେକ ମୁସ୍‌ଲିମ୍ ଆଶଙ୍କା କରୁଥାନ୍ତି ଯେ, ସେ ସେମାନଙ୍କୁ ଦବାଇବାକୁ ଆସିଛନ୍ତି । ଗାନ୍ଧୀ ସେମାନଙ୍କୁ ବୋଧ ଦେଉଥାନ୍ତି ଯେ, ନିଜ ଜୀବନକାଳ ଭିତରେ ସେ କେବେ କାହାକୁ ଦବାଇ ନାହାନ୍ତି ।

ଗାନ୍ଧୀ ଗୋଟିଏ ସାକ୍ଷାତ୍କାରରେ କହିଥିଲେ, 'ସେନା ଓ ପୁଲିସଙ୍କ ଉପରେ ନିର୍ଭର ନ କରିବାକୁ ମୁଁ ମୋର ଦେଶବାସୀଙ୍କୁ ପରାମର୍ଶ ଦେଇଛି । ଗଣତାନ୍ତ୍ରିକ ଶକ୍ତିକୁ ଜାଗ୍ରତ କରିବାକୁ ହେବ । କିନ୍ତୁ ଗଣତନ୍ତ୍ର ଓ ପୁଲିସ୍ ତଥା ସାମରିକଶକ୍ତିରେ ନିର୍ଭରଶୀଳତା ପରସ୍ପର ଖାପ ଖାଏନାହିଁ ।' ଲୋକଙ୍କ ମନୋବୃତ୍ତିର ସଂସ୍କାର କରି ସାମାଜିକ ନିଦପଣ୍ଡର ପୁନଃପ୍ରତିଷ୍ଠା କରିବାକୁ ସେ ଚାହୁଁଥିଲେ । ଜଣେ ବନ୍ଧୁଙ୍କୁ ସେ କହିଥିଲେ, 'ମୋର ଏହି ଲକ୍ଷ୍ୟ ଯଦି ସିଦ୍ଧ ହୋଇପାରେ, ତେବେ ମୋ ଜୀବନର ଚରମ ସାର୍ଥକତା ହେଲା ବୋଲି ମୁଁ ମନେ କରିବି । ମୁଁ ପରାଜିତର ମନୋବୃତ୍ତି ଧରି ବଙ୍ଗପ୍ରଦେଶରୁ ଫେରି ଯିବାକୁ ଚାହେଁ ନାହିଁ । ଯଦି ନିତାନ୍ତ ଏପରି ହୁଏ ଯେ, ମୁଁ ଏଠାରେ ଜଣେ ଆତତାୟୀ ହାତରେ ପ୍ରାଣ ହରାଇବି, ତେବେ ମୁଁ ହସି ହସି ମରି ପାରିବି ।'

ଦୂରଦୁରାନ୍ତ ଗ୍ରାମମାନଙ୍କରେ ଏକୁଟିଆ ରହିବା ବେଳେ କ'ଣ ନା କ'ଣ ଘଟି ପାରେ ବୋଲି ତାଙ୍କର ଅନ୍ତରଙ୍ଗ ସହକର୍ମୀମାନେ ବି କେବେ କେବେ ଆତଙ୍କିତ ହୋଇ ପଡ଼ୁଥିଲେ । ଗାନ୍ଧୀ ସେମାନଙ୍କୁ ଉପଦେଶ ଦେଉଥିଲେ, ଅକାରଣରେ ବିପଦ ଭିତରକୁ ଲମ୍ଫ ଦିଅ ବୋଲି ତୁମମାନଙ୍କୁ ମୁଁ କହୁନାହିଁ । କିନ୍ତୁ କର୍ତ୍ତବ୍ୟର ସ୍ୱାଭାବିକ ଗତିରେ ଯଦି ବିପଦ ଆସି ପଡ଼ିଲା ତେବେ ହଟି ନ ଯାଇ ତାହାର ସମ୍ମୁଖୀନ ହୁଅ ।

ଜାନୁଆରୀ ୭ ତାରିଖରେ ଗାନ୍ଧୀଙ୍କର ମୌନ ଦିବସ ପଡ଼ୁଥାଏ । ସେ ଦିନ ପ୍ରାର୍ଥନା ସଭାରେ ତାଙ୍କର ବକ୍ତବ୍ୟ ଜଣେ କର୍ମୀ ପଢ଼ି ଶୁଣାଇଲା ବେଳେ ଗାନ୍ଧୀ ତୁନି ହୋଇ ବସି, ମୁଣ୍ଡ ଟୁଙ୍ଗାରି ଯାହା ପଢ଼ା ହେଉଥାଏ

...ଥିରେ ସଇ ଦେଉଥାନ୍ତି । ସେ ଦିନ ସେମାନେ ଥାନ୍ତି କ୍ଷୁଦ୍ର ଚଣ୍ଡୀପୁର ଗ୍ରାମରେ । ଏଠାରେ ଆସି ସେ କାହିଁକି ପହଞ୍ଚିଛନ୍ତି ସେଇ କଥା ଗାନ୍ଧୀ ଲେଖିଥିଲେ : 'ମୁଁ ଗୋଟିଏ ମାତ୍ର ଉଦ୍ଦେଶ୍ୟ ଧରି ଆସିଛି ; ସେଥିରେ ମଳି ଧୂଳି ନାହିଁ । ମୋର ଉଦ୍ଦେଶ୍ୟ, ଭଗବାନଙ୍କ ଅନୁଗ୍ରହରେ ହିନ୍ଦୁ ଓ ମୁସଲମାନଙ୍କର ମନ ନିର୍ମଳ ହେବ, ଏବଂ ଉଭୟ ସମ୍ପ୍ରଦାୟର ପରସ୍ପର ପ୍ରତି ଭୟ ଓ ଆଶଂକା ରହିବ ନାହିଁ । ଆପଣମାନେ ଦୟା କରି, ଭଗବାନଙ୍କଠାରେ ମୋର ଏଇ ଆବେଦନରେ ଯୋଗ ଦିଅନ୍ତୁ ଏବଂ ଏକ ସ୍ୱରରେ କହନ୍ତୁ ଯେ, ଭଗବାନ ଆମ ସମସ୍ତଙ୍କର ହର୍ତ୍ତାକର୍ତ୍ତା ; ସେ ଆମ୍ଭମାନଙ୍କର କାମନା ପୂରଣ କରନ୍ତୁ ।'

ଏଇ ଉଦ୍ଦେଶ୍ୟ ଧରି ସେ ଏତେ ବାଟ କାହିଁକି ଆସିଛନ୍ତି ? ନିଜ ଆଶ୍ରମରେ ଥାଇ ତ ଭଗବାନଙ୍କୁ ଡାକି ହୋଇଥାନ୍ତା । ଏହାର ଜବାବ୍ ଦେଇ ସେ ଲେଖିଥିଲେ, 'ଆପଣମାନଙ୍କ ଭିତରେ ବୁଲିବୁଲି ମୁଁ ମୋର ପାରୁପର୍ଯ୍ୟନ୍ତ, ଆପଣଙ୍କର ଏହି ଗ୍ରାମବାସୀମାନଙ୍କୁ ନିଶ୍ଚିତଭାବେ ଜଣାଇ ଦେବାକୁ ଚାହେଁ ଯେ, ମୋ ମନରେ କାହାରି ପ୍ରତି କୌଣସି ଅସଦ୍‌ଭାବ ନାହିଁ । ତାହା କରିବାକୁ ହେଲେ, ଯେଉଁମାନେ ମୋତେ ଅବିଶ୍ୱାସ କରନ୍ତି ମୋର ତାଙ୍କ ଭିତରେ ରହିବା ଓ ଚଳିବା ଦରକାର ।'

ଏହି ଗ୍ରାମରେ ଗାନ୍ଧୀ ଖବର ପାଇଲେ ଯେ, ଗଣ୍ଡଗୋଳ ବେଳେ ଘରଛାଡ଼ି ପଳାଇ ଯାଇଥିବା ହିନ୍ଦୁମାନେ ନିଜ ନିଜ ଘରକୁ ଫେରିବାକୁ ଆରମ୍ଭ କଲେଣି । ଅପରନ୍ତୁ, ପ୍ରାର୍ଥନା ସଭାମାନଙ୍କରେ ଲୋକଙ୍କର ଯୋଗ ଦେବା କମିବାକୁ ଆରମ୍ଭ କରୁଥାଏ । ଏଥି ଉପରେ ଗାନ୍ଧୀ ଯାହା କହିଥିଲେ ତା'ର ସାରାଂଶ ସେ ଖବରକାଗଜ ପାଇଁ ଏଇଭାବରେ ଲେଖିଥିଲେ : 'କିନ୍ତୁ ଗାନ୍ଧୀ କହିଲେ ଯେ, ଏଥି ହେଲେ ବି ( ପ୍ରାର୍ଥନା ସଭାକୁ ଲୋକ ନ ଆସିଲେ ବି) ସେ ନୈରାଶ୍ୟରେ ନିଜର କର୍ମସୂଚୀ ତ୍ୟାଗ କରିବେ ନାହିଁ । ସଭାକୁ ଲୋକେ ନ ଆସିଲେ ସେ ତାଙ୍କ ଅରଟ ଖଣ୍ଡି ଧରି ଗାଁ ଗାଁରେ ବୁଲି ଲୋକଙ୍କ ପାଖେ ଯାଇ ପହଞ୍ଚିବେ । ଏହା କରିବା ଦ୍ୱାରା ସେ ଭଗବତ୍ ଆରାଧନା କରୁଛନ୍ତି ବୋଲି ମନେ କରନ୍ତି ।'

ଜାନୁଆରୀ ୧୭ ତାରିଖରେ ଖବରକାଗଜମାନଙ୍କରେ ପ୍ରକାଶ ପାଇଲା ଯେ, ଗତ ଛ'ଦିନ ଯାକ ଗାନ୍ଧୀ ୨୪ ଘଣ୍ଟାରୁ କୋଡ଼ିଏ ଘଣ୍ଟା କାମ କରିଥିଲେ । ଏ ଛ'ଦିନରୁ ପ୍ରତ୍ୟେକ ଦିନ ସେ ଗୋଟିଏ ଗୋଟିଏ ନୂଆ

ନୂଆ ଗାଁରେ କଟାଇଥିଲେ । ସେ ଯେଉଁ କୁଟୀରରେ ଯାଇ ରହୁଥିଲେ
ସେଠାକୁ ଉପଦେଶ ଓ ଆଶ୍ୱାସନା ପାଇବାକୁ ଏବଂ ନିଜ ନିଜର ଅପରାଧ
ସ୍ୱୀକାର କରିବାକୁ ଦଳ ଦଳ ହୋଇ ଲୋକ ଆସୁଥାନ୍ତି ।

ନାରାୟଣପୁର ଗ୍ରାମରେ ଜଣେ ମୁସ୍‌ଲିମ୍ ତାଙ୍କୁ ଘରେ ବାସ, ଓ ଦିନରେ ଖାଦ୍ୟ ଯୋଗାଇଥିଲେ । ଗାନ୍ଧୀ ସମସ୍ତଙ୍କ ଆଗେ ତାଙ୍କୁ କୃତଜ୍ଞତା ଜଣାଇଲେ । ଏଭଳି ଆତିଥ୍ୟ କ୍ରମେ ଅଧିକରୁ ଅଧିକ ମିଳୁଥାଏ ।

ତାଙ୍କୁ ଆତିଥ୍ୟ ଦେଇଥିବା ମୁସ୍‌ଲିମ୍ ଭଦ୍ରବ୍ୟକ୍ତି ଗାନ୍ଧୀଙ୍କୁ ପଚାରିଲେ : ସେ ଜିନ୍ନାଙ୍କ ସଙ୍ଗେ ବୁଝାମଣା ନ କରି ଏଭଳି କଷ୍ଟସାଧ୍ୟ ତୀର୍ଥଯାତ୍ରାରେ କାହିଁକି ଶରୀରକୁ ପୀଡ଼ା ଦେଉଛନ୍ତି ? ଗାନ୍ଧୀ ଉତ୍ତର ଦେଲେ : ଲୋକେ ନେତାଙ୍କୁ ଗଢ଼ନ୍ତି । ଲୋକେ ଆଗ ନିଜ ନିଜ ଭିତରେ ସଦ୍‌ଭାବ ପ୍ରତିଷ୍ଠା କରନ୍ତୁ । 'ତା'ପରେ ସେମାନଙ୍କ ମଧ୍ୟରେ ଜାତ ହୋଇଥିବା ପଡ଼ୋଶୀସୁଲଭ ସଦ୍‌ଭାବ ସେମାନଙ୍କ କାର୍ଯ୍ୟ ଓ ମନୋବୃତ୍ତିରେ ପ୍ରତିଫଳିତ ହେବ ·····ଯଦି ତୁମ ପଡ଼ିଶାଘରର ଜଣେ ବେମାର ପଡ଼ିଲା ତେବେ ତା' ପ୍ରତି କ'ଣ କରିବାକୁ ହେବ ସେ କଥା ବୁଝିବା ପାଇଁ କ'ଣ ତୁମେ କଂଗ୍ରେସ କିମ୍ବା ମୁସଲିମ୍ ଲିଗ୍ ଅଫିସ୍‌କୁ ଯାଅ ?'

ଗାନ୍ଧୀଙ୍କୁ ଜଣେ ପଚାରିଲେ, ଲୋକେ ସାକ୍ଷର ହେଲେ ସେମାନଙ୍କ ଭିତରେ ସଦ୍‌ଭାବ ଆସନ୍ତା ନାହିଁ କି ? ଗାନ୍ଧୀ କହିଲେ, ଖାଲି ସାକ୍ଷର ହୋଇଗଲେ ସଦ୍‌ଭାବ ସ୍ୱତଃ ଆସିଯାଏ ନାହିଁ । ଜର୍ମାନ୍‌ମାନେ ତ ସାକ୍ଷର ଥିଲେ, ତେବେ ସେମାନେ ହିଟଲର୍‌ଙ୍କ ଆଗରେ ମୁଣ୍ଡ ନୂଆଇଁ ଦେଲେ କାହିଁକି ? ଗାନ୍ଧୀ କହିଲେ, 'ଖାଲି ସାକ୍ଷର ହେଲେ ବା ବହୁଶ୍ରୁତ ହେଲେ ମଣିଷ ମଣିଷ ହୁଏ ନାହିଁ । ମଣିଷ ହେବାକୁ ବାସ୍ତବଜୀବନର ଉପଯୋଗୀ ଶିକ୍ଷା ଦରକାର । ସବୁ ପଢ଼ିଥିବ, କିନ୍ତୁ ପଡ଼ିଶାଘର ସଙ୍ଗେ ଭାଇ ଭାଇ ହୋଇ ଚଳିବାକୁ ଯଦି ଶିଖି ନ ଥିବ ତେବେ କୋଉ ଲାଭ ?'

ପ୍ରଶ୍ନ—'ଆତ୍ମହତ୍ୟା କରିବି ନା ଆତତାୟୀକୁ ମାରିବି ଏଇ ସଂଶୟ ଯଦି ମନରେ ଜାତ ହୁଏ ତେବେ ଆପଣ କ'ଣ ପରାମର୍ଶ ଦେବେ ?'

ଗାନ୍ଧୀ ସ୍ପଷ୍ଟ ଜବାବ୍ ଦେଲେ, 'ଏଭଳି ସଂଶୟ ସ୍ଥଳେ ଆତ୍ମହତ୍ୟା କରିବା ଶ୍ରେୟସ୍କର ବୋଲି ମୁଁ କହିବି ?'

ଜାନୁଆରି ୨୨ ତାରିଖରେ ପାନିଅଁଲା ଗ୍ରାମରେ ହୋଇଥିବା ପ୍ରାର୍ଥନା ସଭାରେ ପାଞ୍ଚହଜାର ଲୋକ ସମବେତ ହୋଇଥିଲେ । କେତେ

ସପ୍ତାହ ପୂର୍ବେ ଏଇଠାରେ ଗୋଟିଏ ସମ୍ମିଳିତ ଭୋଜ ହୋଇଥିଲା । ଏଥିରେ ହିନ୍ଦୁ, ମୁସଲମାନ ଓ ଅସ୍ପୃଶ୍ୟ ଲୋକେ ଏକ ପଂକ୍ତିରେ ଲଗାଲଗି ହୋଇ ବସିଥିଲେ । ଏଇଠାରେ ଜଣେ କିଏ ପଚାରିଲା, ସାଂପ୍ରଦାୟିକ ଗଣ୍ଡଗୋଳର ମୂଳକାରଣ କ'ଣ ବୋଲି ଆପଣ ମନେ କରନ୍ତି ?'

ଗାନ୍ଧୀ ଉତ୍ତର ଦେଲେ, 'ଉଭୟ ସଂପ୍ରଦାୟର ମୂର୍ଖତା ।'

ନୋଆଖାଲିରେ ଗାନ୍ଧୀ ପ୍ରବ୍ରଜ୍ୟା କରୁଥିବା ବେଳର ସବୁଠାରୁ ବଡ଼ ପ୍ରାର୍ଥନାସଭା ହୋଇଥିଲା ମୁରାଇମ୍‌ଠାରେ, ଜାନୁଆରୀ ୨୪ ତାରିଖରେ । ଏହାର କାରଣ କୁମାରୀ ଅମ୍‌ତୁଲ୍ ସାଲମଙ୍କ ସଫଳ ଅନଶନ ବୋଲି ଗାନ୍ଧୀ କହିଲେ । ଶ୍ରୀମତୀ ସାଲମ୍ ଥିଲେ ଜଣେ ସ୍ୱଧର୍ମନିଷ୍ଠ ମୁସ୍‌ଲିମ୍ ଏବଂ ମହାତ୍ମାଜୀଙ୍କ ଆଶ୍ରମବାସିନୀ ।

ଜାନୁଆରୀ ୨୭ ତାରିଖରେ ପାଲାଠାରେ ଗାନ୍ଧୀଙ୍କୁ ଜଣେ ପଚାରିଲେ, 'ଯଦି ଜଣେ ମହିଳାଙ୍କ ଉପରେ ଆକ୍ରମଣ ହୁଏ, ତେବେ ସେ କ'ଣ କରିବେ ? ଆତ୍ମହତ୍ୟା କରିବା କ'ଣ ତାଙ୍କ ପକ୍ଷରେ ଉଚିତ ହେବ ?'

ଗାନ୍ଧୀ ଉତ୍ତର ଦେଲେ, 'ମୋ ଜୀବନଦର୍ଶନରେ ଆତ୍ମସମର୍ପଣ ପାଇଁ ସ୍ଥାନ ନାହିଁ । ବେଳ ପଡ଼ିଲେ ମହିଳା ଆତ୍ମହତ୍ୟା କରିବ ପଛେ ଆତ୍ମସମର୍ପଣ କରିବା ଉଚିତ ହେବନାହିଁ ।'

ତେବେ କ'ଣ ସେ ସବୁବେଳେ ଗୋଟିଏ ଛୁରୀ ବା ଟିକିଏ ବିଷ ପାଖରେ ରଖିଥିବ ?'

ଗାନ୍ଧୀ ଉତ୍ତର ଦେଲେ, 'କି ଉପାୟ ବା ସତର୍କତା ସେ ଅବଲମ୍ବନ କରିବ ତାହା ମୁଁ କହିପାରିବି ନାହିଁ । ପୁଣି ଏ କ୍ଷେତ୍ରରେ ଆତ୍ମହତ୍ୟାର ସମର୍ଥନ କରିବା ମୂଳରେ ଏହି ବିଶ୍ୱାସ ଅଛି ଯେ, ଆତ୍ମହତ୍ୟା ପାଇଁ ବି ପ୍ରସ୍ତୁତ ଥିବା ମନରେ ମାନସିକ ପ୍ରତିରୋଧର ଏତେ ସାହସ ଓ ମାନସିକ ଶୁଦ୍ଧିର ଏତେ ତେଜ ଥିବ ଯେ, ସେଭଳି ସ୍ତ୍ରୀ ଲୋକ ଉପରେ ବଳାତ୍କାର କରିବାକୁ ଆସୁଥିବା ଲୋକ ତା'କୁ ଦେଖିବା ମାତ୍ରେ ନିରସ୍ତ ହୋଇ ପଡ଼ିବ ।'

ବେଳେବେଳେ ଆର୍ଥନୀତିକ ପ୍ରଶ୍ନମାନ ମଧ୍ୟ ପ୍ରାର୍ଥନା ସଭାରେ ଉତ୍‌ଥାପିତ ହେଉଥିଲା । ଧାନଭାଗ ଜମିରୁ ଜମିମାଲିକ ଯାହା ଅଧା ଭାଗ

ନେଉଛନ୍ତି, ତାଙ୍କୁ କମାଇ ତିନିଭାଗରୁ ଭାଗେ ନେବା ପ୍ରସ୍ତାବ ଠିକ୍ ବୋଲି ଗାନ୍ଧୀ ମନେ କରୁଛନ୍ତି କି ?

ହଁ, ଏ ପ୍ରସ୍ତାବକୁ ସେ ସ୍ୱାଗତ କରୁଛନ୍ତି । 'ଜମି ଆମ ସମସ୍ତଙ୍କ ପ୍ରଭୁ ଗୋପାଳଙ୍କର; ତେଣୁ ଯିଏ ଯାକୁ ଯେ ଚାଷ କରୁଛି ତା'ର ବି ଏହି ଆଦର୍ଶ କାର୍ଯ୍ୟରେ ଗୃହୀତ ହେବା ପର୍ଯ୍ୟନ୍ତ, ଜମିମାଲିକର ଭାଗକୁ କମାଇବା ପାଇଁ ଯେଉଁ ଉଦ୍ୟମ ହେଉଛି ତାହା ଠିକ୍ ହେଉଛି ।' ଜମିମାଲିକଙ୍କ ଭିତରୁ ଅଧିକାଂଶ ଥିଲେ ହିନ୍ଦୁ ; ସେମାନେ ଚଡ଼ାହାରରେ ସଜା ଓ ଧାନଭାଗ ନେଉଥିବା ଗଣ୍ଡଗୋଳର ଅନ୍ୟତମ କାରଣ ହୋଇଥିଲା ।

ଡକ୍ଟର୍ ସୁଶୀଳା ନାୟାରଙ୍କୁ ଚାଙ୍ଗିରଗାଁରେ ରଖାଯାଇଥିଲା । ସେ ନିଜେ ସ୍ଥାପନା କରିଥିବା ସେବାଗ୍ରାମ ହସ୍ପିଟାଲ୍‌କୁ ଫେରି ଯିବାକୁ ଚାହିଁଲେ । କିନ୍ତୁ ଚାଙ୍ଗିର୍ ଗାଁରେ ତାଙ୍କ ହାତରେ ଥିବା ମୁସ୍‌ଲିମ୍ ରୋଗୀମାନେ ସେଠାରେ ରହିବାକୁ ତାଙ୍କୁ ଅନୁନୟ କଲେ । ସେ ସେମାନଙ୍କ କଥାରେ ରହିଲେ । ସେ ରିପୋର୍ଟ୍ ଦେଇଥିଲେ ଯେ, ଅକ୍‌ଟୋବର ମାସରେ ନେଇଥିବା କେତେକ ମାଲମତା ମୁସ୍‌ଲିମ୍‌ମାନେ ମନକୁ ମନ ଫେରାଇ ଦେଉଛନ୍ତି । ଗାନ୍ଧୀ ଏହା ପଢ଼ି କହିଲେ, 'ବଡ଼ ଶୁଭ ସୂଚନା ।' ଏହି ମନୋଭାବ ଯଦି ସଂକ୍ରମିତ ହୁଏ, ତେବେ କୋର୍ଟ କଚେରୀର କାମ କମିଯିବ । ସାମରିକ ଶକ୍ତିଦ୍ୱାରା ଶାନ୍ତି ଲବ୍ଧ ହୋଇଯାଉ ବୋଲି ସେ ଚାହୁଁ ନ ଥିଲେ । ସେ ଚାହୁଁଥିଲେ ଲୋକଙ୍କ ହୃଦୟର ପରିବର୍ତ୍ତନ ।

ଚାରିଜଣ ମୁସ୍‌ଲିମ୍ ଯୁବକ ଭାବ ବିନିମୟ କରିବାକୁ ଗାନ୍ଧୀଙ୍କ କୁଟୀରରେ ଆସି ପହଞ୍ଚିଲେ । ସେମାନେ ସ୍ୱତଃ ଏଭଳି ଆସିବାରୁ ଗାନ୍ଧୀ ଆପ୍ୟାୟିତ ହୋଇଥିଲେ । ଲୋକଙ୍କ ସଙ୍ଗେ ଘନିଷ୍ଠ ସମ୍ପର୍କ ରଖିବାକୁ ସେ ଚାହୁଁଥିଲେ । ପ୍ରସଙ୍ଗକ୍ରମେ ସେ ଏହି ଯୁବକମାନଙ୍କୁ କହିଥିଲେ ଯେ, ନୋଆଖାଲିରେ ମୁସ୍‌ଲିମ୍‌ମାନେ ଯେତେ ହିନ୍ଦୁଙ୍କୁ ମାରି ଦେଇଛନ୍ତି ବୋଲି ବାହାରୁଛି ତାହା ଅତିରଞ୍ଜିତ ସମ୍ବାଦ ; ହଜାର ହଜାର ହିନ୍ଦୁ ମରିଥିବା କଥା ମିଛ । ବିହାରରେ ହିନ୍ଦୁମାନେ, ନୋଆଖାଲିର ମୁସ୍‌ଲିମାନଙ୍କଠାରୁ ଅଧିକ ଜଘନ୍ୟ ଆଚରଣ ଦେଖାଇଛନ୍ତି ବୋଲି ଗାନ୍ଧୀ ମତ ଦେଲେ ।

ଫେବୃଆରୀ ୫ ତାରିଖରେ, ସ୍ୱେଚ୍ଛାସେବକମାନେ ସଭା ପାଇଁ ଗୋଟାଏ ବଡ଼ ମଞ୍ଚ କରି ତା' ଉପରେ ଚାନ୍ଦୁଆ ଟାଣିଥାନ୍ତି । ଚୁଆରେ

ଗୁଡ଼ାଏ ଧନ ଓ ଶ୍ରମ ଅପବ୍ୟୟ କଲ ବୋଲି ଗାନ୍ଧୀ ସ୍ୱେଚ୍ଛାସେବକମାନଙ୍କୁ ଭର୍ତ୍ସନା କଲେ । ପ୍ରାର୍ଥନା ସଭାରେ ସେ କହିଲେ, 'ବସିବାକୁ ଟିକିଏ ଉଚ୍ଚ ଜାଗା, ଏବଂ ମୋର ମେଦ, ମାଂସହୀନ ଏ ହାଡ଼କୁଡ଼କୁ ରଖିବାପାଇଁ ତା' ଉପରେ ଖଣ୍ଡିଏ କଅଁଳିଆ ସଫା ଆସନ ଏତିକିମାତ୍ର ମୋର ଦରକାର ।' ତା'ପରେ ସେ ଦାନ୍ତ ନ ଥିବା ମାଢ଼ି ଦ'ଖାଡ଼ ଦେଖାଇ ହସି ଦେଲେ ।

ଚମ୍ପୂର ଦିନର ସଭାରେ ସେ ଗ୍ରାମ ସଫେଇ ବିଷୟରେ କହିଲେ । ଗ୍ରାମର ଗଳିକନ୍ଦିରେ ଓ ସଡ଼କ ରାସ୍ତାରେ ଖାଲି ପାଦରେ ଚାଲିବାକୁ ତାଙ୍କୁ ସୁଖ ଲାଗେ । ସେମାନେ ରାସ୍ତା ଉପରେ ଛେପ ଥଂକାର ଓ ସିଂଘାଣି ପକାଉଛନ୍ତି କାହିଁକି ? ବାଧ ହୋଇ ତାଙ୍କୁ ବେଳେବେଳେ ଚପଲ ପିନ୍ଧିବାକୁ ପଡୁଛି । ସେ କହିଲେ, ଏକଥା ସତ ଯେ, କାଳକାଳର ଦାରିଦ୍ର୍ୟ ଯୋଗୁଁ ଭାରତରେ ରୋଗ ବାସ କରି ରହିଛି, କିନ୍ତୁ ସ୍ୱାସ୍ଥ୍ୟରକ୍ଷାର ନିୟମ ନମାନିବା ଆମର ଚିରଅଭ୍ୟାସ ହୋଇଯାଇଥିବା ରୋଗ ବୃଦ୍ଧି ପାଇଁ ସମାନଭାବରେ ଦାୟୀ ।

ଧନୀ ମୁସ୍‌ଲିମ୍‌ଙ୍କଠାରୁ ଦରିଦ୍ର ମୁସ୍‌ଲିମ୍‌ମାନେ ଅଧିକ ସଂଖ୍ୟାରେ ଗାନ୍ଧୀଙ୍କ ସଭାମାନଙ୍କରେ ଯୋଗ ଦେଉଥାନ୍ତି । ଗାନ୍ଧୀଙ୍କ ପାଖେ ଖବର ପହଞ୍ଚୁଥାଏ ଯେ, ଧନୀ ଓ ଶିକ୍ଷିତ ମୁସଲିମ୍‌ମାନେ ଏଥିଯୋଗୁଁ ଦରିଦ୍ର ମୁସଲିମ୍‌ଙ୍କୁ ଆର୍ଥନୀତିକ ବାସନ୍ଦର ଭୟ ଦେଖାଉଥାନ୍ତି । ଧନୀ ମୁସ୍‌ଲିମ୍‌ଙ୍କ ପକ୍ଷରୁ ଗାନ୍ଧୀବିରୋଧୀ ବିଜ୍ଞାପନ ପତ୍ର କାନ୍ଥବାଡ଼ରେ ମରା ହେଉଥାଏ । ଫେବୃଆରୀ ୨୦ ତାରିଖରେ ନିପୁରା ଜିଲାର ବିଷ୍‌କଠାଲି ଗ୍ରାମରୁ ଆସିବା ବାଟରେ ଗାନ୍ଧୀ ରମଣୀୟ ବାଉଁଶ ଓ ନଡ଼ିଆ ତୋଟାମାନଙ୍କ ଭିତର ଦେଇ ଫେରୁଥାନ୍ତି । ତାଙ୍କ ନଜରରେ ପଡ଼ିଲା, କେତେଖଣ୍ଡ ବିଜ୍ଞାପନପତ୍ର ଗଛ ଡାଳମାନଙ୍କରେ ଲଗା ହୋଇଛି । ସେ ସବୁରେ ଲେଖା ଥାଏ, 'ବିହାର କଥା ମନେ ପକାଇ ସଙ୍ଗେ ସଙ୍ଗେ ନିପୁରା ଛାଡ଼ି ଚାଲିଯାଅ' ; 'ତୁମକୁ ବାରଂବାର ସାବଧାନ କରାଗଲଣି, ତଥାପି ତୁମେ ଗାଁକୁ ଗାଁ ବୁଲିବାରେ ଲାଗିଛ, ନିଜର ଭଲକୁ ଯଦି ମନ ଅଛି, ଅବିଳମ୍ବେ ଫେରିଯାଅ' ; 'ତୁମକୁ ଲୋକେ ଯେଉଁଠି ଲୋଡ଼ୁଛନ୍ତି ସେଠାକୁ ଯାଅ, ଏଠାରେ ତୁମର ଭଣ୍ଡାମି ଆଉ ବରଦାସ୍ତ କରାଯିବ ନାହିଁ, ପାକିସ୍ଥାନ ପାଇଁ ରାଜି ହୋଇଯାଅ ।'

ଏହାସତ୍ତ୍ୱେ ସଭାମାନଙ୍କରେ ଲୋକଙ୍କର ସଂଖ୍ୟା ବଢ଼ିବାରେ ଲାଗିଥାଏ ।

ଗୋଟିଏ ରବିବାର ଦିନ ରାଇପୁରା ଗ୍ରାମରେ ହିନ୍ଦୁ ସାହୁକାରମାନେ ଦୁଇ ହଜାର ଲୋକଙ୍କୁ ଏକାଠି ବସାଇ ଖାଇବାକୁ ଦେଉଥାନ୍ତି । ଗାନ୍ଧୀ ସେ ଭୋଜି ସଭାରେ ଉପସ୍ଥିତ ଥିଲେ । ସବର୍ଣ୍ଣ ହିନ୍ଦୁ, ମୁସ୍‌ଲିମ୍, ହରିଜନ ଓ ଖ୍ରୀଷ୍ଟିଆନ୍‌ମାନେ ଏକ ପଂକ୍ତିରେ ଖାଇ ବସିଥାନ୍ତି । ଗାଁର ମୁସ୍‌ଲିମ୍ ମୌଲବି ଗାନ୍ଧୀଙ୍କୁ ମସ୍‌ଜିଦ୍ ଭିତରକୁ ଡାକି ନେଲେ ।

ଆଉଠାଏ ଜଣେ ଛାତ୍ର ଗାନ୍ଧୀଙ୍କୁ ପଚାରିଲେ, 'ଇସ୍‌ଲାମ୍ ଓ ଖ୍ରୀଷ୍ଟିଆନ୍ ଧର୍ମ କାଳକ୍ରମେ ସଂସ୍କୃତ ହୋଇ ଆଗେଇ ଚାଲିଛି, କିନ୍ତୁ ହିନ୍ଦୁଧର୍ମ ସ୍ଥାଣୁ ହୋଇ ରହିଛି ବା ପଛକୁ ପଛକୁ ଫେରୁଛି, ଏକଥା ସତ ନୁହେ କି ?' ଗାନ୍ଧୀ ଜବାବ୍ ଦେଲେ, 'ନା, କୌଣସି ଧର୍ମରେ ମୁଁ ବିଶେଷ କିଛି ଅଗ୍ରଗତି ଲକ୍ଷ୍ୟ କରୁନାହିଁ । ପୃଥିବୀର ଧର୍ମମାନେ ଯଦି ଯୁଗକୁ ଚାହିଁ ଆଗେଇ ଯାଉଥାନ୍ତି ତେବେ ପୃଥିବୀ, ବର୍ତ୍ତମାନ ଯେପରି କଳିକନ୍ଦଳରେ ପୂର୍ଣ୍ଣ ହୋଇ ଯୁଦ୍ଧଭୂମି ପରି ହୋଇଛି ସେପରି ହୋଇ ନ ଥାନ୍ତା ।'

ଜଣେ ପ୍ରଶ୍ନକର୍ତ୍ତା ପଚାରିଲେ, 'ଈଶ୍ୱର ଯଦି ଏକ ତେବେ ଧର୍ମ ଏକ ହେବା ଉଚିତ ନୁହେଁ କି ?'

ଗାନ୍ଧୀ ଉତ୍ତର ଦେଲେ, 'ଗଛରେ ଲକ୍ଷଲକ୍ଷ ପତ୍ର ଅଛି । ପୃଥିବୀରେ ଯେତେ ନରନାରୀ ସେତେ ଧର୍ମ ରହିଛି । କିନ୍ତୁ ସମସ୍ତଙ୍କର ଚେର, ପୋଷକ ଏକ, ଭଗବାନ୍ ।'

ଖଣ୍ଡେ କାଗଜରେ ପ୍ରଶ୍ନ ଲେଖି ଗାନ୍ଧୀଙ୍କୁ ବଢ଼ାଇ ଦିଆଗଲା : 'ସରକାର ଦ୍ୱାରା ସ୍କୁଲମାନଙ୍କ ପାଇଁ ମଞ୍ଜୁର ହୋଇଥିବା ପାଠ୍ୟତାଲିକାରେ ଧର୍ମଶିକ୍ଷା ସ୍ଥାନ ପାଇବା ଉଚିତ କି ? ଧର୍ମ ଶିକ୍ଷା ସୁଗମ କରିବା ପାଇଁ ବିଭିନ୍ନ ଧର୍ମାବଲମ୍ବୀ ପିଲାଙ୍କ ପାଇଁ ଭିନ୍ନ ଭିନ୍ନ ଶିକ୍ଷାଳୟ ରହିବା ଆପଣ ପସନ୍ଦ କରନ୍ତି କି ?'

ଗାନ୍ଧୀ ଉତ୍ତର ଦେଲେ, 'ଗୋଟିଏ ରାଷ୍ଟ୍ରର ସମସ୍ତେ ଏକ ଧର୍ମାବଲମ୍ବୀ ହେଲେ ସୁଦ୍ଧା ସରକାର ଧର୍ମକୁ ପୋଷଣ ବା ନିୟନ୍ତ୍ରଣ କରିବା ଠିକ୍ ବୋଲି ମୁଁ କହିବି ନାହିଁ । ମୋର ବିଶ୍ୱାସ, ଧର୍ମ ବିଷୟରେ ସରକାର ମୁଣ୍ଡ ପୂରାଇବା କୌଣସି କାଳେ ଓ କୌଣସି ସ୍ଥଳେ ସମର୍ଥିତ ହେବନାହିଁ । ଧର୍ମ ସମ୍ପୂର୍ଣ୍ଣ ବ୍ୟକ୍ତିଗତ ବ୍ୟାପାର··· । ଧର୍ମାନୁଷ୍ଠାନମାନଙ୍କୁ ସରକାର

ପୂର୍ଣ୍ଣତଃ ବା ଆଂଶିକଭାବେ ଅର୍ଥ ସାହାଯ୍ୟ କରିବାର ମଧ୍ୟ ମୁଁ ବିରୋଧୀ । ମୁଁ ଜାଣେ, ଯେଉଁ ଧର୍ମସମ୍ପ୍ରଦାୟ ବା ଅନୁଷ୍ଠାନ ନିଜ ଧର୍ମଶିକ୍ଷା ଦେବା ସକାଶେ ଖର୍ଚ୍ଚ ନିଜେ ଉଠାଇ ପାରୁନାହାନ୍ତି ସେମାନେ ସତ୍‌ଧର୍ମରୁ ଦୂରରେ ଅଛନ୍ତି । ଏହାର ଅର୍ଥ ନୁହେ ଯେ, ସରକାରଙ୍କ ପରିଚାଳିତ ସ୍କୁଲମାନଙ୍କରେ ନୀତିଶିକ୍ଷା ଦିଆ ନ ଯିବ । ମୌଳିକ ନୀତିଗୁଡ଼ିକ ସବୁ ଧର୍ମରେ ସମାନ ।’

ପର୍ଦ୍ଦାପ୍ରଥା ବିରୁଦ୍ଧରେ ତୁଣ୍ଡ ନ ଫିଟାଇବାକୁ ତାଙ୍କର ଦୋଷ-ବାଛୁଥିବା ମୁସ୍‌ଲିମ୍‌ମାନେ ଗାନ୍ଧୀଙ୍କୁ ସାବଧାନ କରାଇଥାନ୍ତି । ହିନ୍ଦୁଟାର କେଡ଼େ ସାହସ, ତାଙ୍କ ସ୍ତ୍ରୀଲୋକଙ୍କୁ ମୁହଁରୁ ପର୍ଦ୍ଦା କାଢ଼ ବୋଲି କହିବ ? ଏହା ସତ୍ତ୍ୱେ ଗାନ୍ଧୀ ପର୍ଦ୍ଦାପ୍ରଥା ବିରୁଦ୍ଧରେ କହୁଥାନ୍ତି । ପର୍ଦ୍ଦା ଦ୍ୱାରା ସ୍ତ୍ରୀଲୋକ-ମାନଙ୍କୁ ଅଲଗା କରି ରଖିବା ଗୋଟାଏ ପ୍ରକାର ହିଂସାନୀତି ; ଏଇଥିରୁ ନାନାପ୍ରକାର ଜବରଦସ୍ତିର ଉତ୍ପତ୍ତି ହୁଏ ।

୧୯୪୭ ମାର୍ଚ୍ଚ ୨ ତାରିଖରେ ଗାନ୍ଧୀ ନୋଆଖାଲି ଛାଡ଼ି ବିହାର ପ୍ରଦେଶ ଅଭିମୁଖେ ଯାତ୍ରା ଆରମ୍ଭ କଲେ । ସେ ପୁଣି ଫେରିବେ ବୋଲି କହିଗଲେ, କାରଣ ନୋଆଖାଲିରେ ତାଙ୍କର କାର୍ଯ୍ୟ ଶେଷ ହୋଇ ନ ଥାଏ । ସେ ନୋଆଖାଲିରେ ହିନ୍ଦୁ ମୁସ୍‌ଲିମ୍‌ଙ୍କର ଭ୍ରାତୃତ୍ୱ ସୁପ୍ରତିଷ୍ଠିତ କରିପାରି ନ ଥାନ୍ତି । ଉଭୟ ସଂପ୍ରଦାୟ ମଧ୍ୟରେ ସୁସମ୍ପର୍କ ବଢ଼ିଥିବାର ଆଖିକୁ ଦିଶୁଥିଲା, କିନ୍ତୁ ଯେତିକ ହୋଇଥିଲା ତାହା ଯଥେଷ୍ଟ ନ ଥିଲା ।

ନୋଆଖାଲିରେ ଗାନ୍ଧୀଙ୍କର କାମ ଥିଲା ଲୋକଙ୍କ ମନରେ ଶାନ୍ତି ଓ ଅକ୍ଷୋଭ ପୁନଃ ପ୍ରତିଷ୍ଠିତ କରିବା ; ତା’ ହେଲେ ହିନ୍ଦୁମାନେ ଘରକୁ ଫେରି ନିର୍ଭୟରେ ରହିପାରିବେ । ଏବଂ ମୁସଲମାନମାନେ ତାଙ୍କୁ ପୁଣି ଆକ୍ରମଣ କରିବାକୁ ମନ କରିବେ ନାହିଁ । କିନ୍ତୁ ବିକାରଟା ମର୍ମକୁ ଭେଦି ରହିଥିଲା । ଯାହାହେଉ, ଗାନ୍ଧୀଙ୍କ ଚିକିତ୍ସାଫଳରେ ବିଷବ୍ରଣର ଉଦ୍‌ଗମ ଘନ ଘନ ହେବା ବନ୍ଦ ହୋଇଗଲା, ଓ ଯାହା ବା ହେଲା ତାହାର ଉପଶମ ସହଜ ହୋଇପାରିଲା । ତେଣୁ ବ୍ୟାଧିର ସମୂଳ ଉତ୍ପାଟନ ବିଷୟରେ ଗାନ୍ଧୀ ନିରାଶ ହେଲେ ନାହିଁ । ସେ ଅନୁଭବ କଲେ, ବାହାରୁ ରାଜନୀତିକ ପରିପ୍ରଚାର-ଦ୍ୱାରା ଉଦ୍‌ବେଜିତ ନ ହେଲେ, ସ୍ଥାନୀୟ ଲୋକେ ଅକ୍ଷୁବ୍‌ଧ ଭାବେ ଶାନ୍ତିରେ ରହିପାରିବେ ।

ଗାନ୍ଧୀଙ୍କ ପ୍ରତି ନୋଆଖାଲିର ଡାକ ବଡ଼ ଜରୁରି ଆଦେଶ ପରି ହୋଇ ପଡ଼ିଥିଲା । ସେ ଦିଲ୍ଲୀରେ ଥାଇ ନୋଆଖାଲି ଅଧିବାସୀଙ୍କ ପାଖକୁ

ଗୋଟାଏ ନିର୍ଦ୍ଦେଶ ଚଠାଇ ପାରିଥାନ୍ତେ, ବା ନୋଆଖାଳି ଘଟଣା ଉ[illegible]ଥିଁ ତାଙ୍କ ମନର ପ୍ରତିକ୍ରିୟା ସଭାରେ ପ୍ରକାଶ କରି ଧର୍ମ ଉପଦେଶ ଦେଇ ନିଜର କର୍ତ୍ତବ୍ୟ ସାଙ୍ଗ କରି ପାରିଥାନ୍ତେ । କିନ୍ତୁ ସେ ଥିଲେ କାମର ମଣିଷ, କର୍ମଯୋଗୀ । ତାଙ୍କର ଦୃଢ଼ବିଶ୍ୱାସ, ଆମେ ଯାହା କରୁଥାଉଁ, ଓ ଯାହା କରିପାରନ୍ତେ, ଏଇ ଦୁଇଟି ଭିତରେ ଯେଉଁ ପାର୍ଥକ୍ୟ ରହିଲା ତା'କୁ ଦୂର କରିପାରିଲେ ପୃଥିବୀର ବହୁ ସମସ୍ୟାର ସମାଧାନ ହୋଇପାରନ୍ତା । ତାଙ୍କ ଜୀବନ ତମାମ ନିଜ କାର୍ଯ୍ୟରେ ସେ ଏଇ ପାର୍ଥକ୍ୟ ଦୂର କରିବାକୁ ଦୃଢ଼ ପ୍ରଯତ୍ନ କରୁଥିଲେ । ଏ କ୍ଷେତ୍ରରେ ବି ସେ ଯେତେ ପାରିଲେ ସେତେ କହିବାରେ କୁଣ୍ଠିତ ହୋଇ ନ ଥିଲେ ।

———

# ଷୋଡ଼ଶ ପରିଚ୍ଛେଦ

## ପାଶ୍ଚାତ୍ୟ ଦେଶକୁ ଏସିଆର ସନ୍ଦେଶ

୧୯୪୬, ନଭେମ୍ବର ମାସର ଶେଷ ଭାଗରେ ବିଲାତର ପ୍ରଧାନ-ମନ୍ତ୍ରୀ ଯ୍ୟାଟ୍‌ଲି, ନେହେରୁ, ଭାରତର ପ୍ରତିରକ୍ଷାମନ୍ତ୍ରୀ ବଳଦେବ ସିଂହ, ଜିନ୍ନା ଓ ଲିଆକତ୍ ଆଲିଙ୍କୁ ତାଙ୍କ ୧୦ ନମ୍ବର ଡାଉନିଂ ଷ୍ଟ୍ରୀଟ୍ ସରକାରୀ ବାସଭବନକୁ, ଗୋଟିଏ ଜରୁରି ଆଲୋଚନା ପାଇଁ ଡକାଇଲେ ।

ପ୍ରସ୍ତାବିତ ସାଂବିଧାନିକ ସଭା ଡିସେମ୍ବର ୯ ତାରିଖରେ ନୂଆ ଦିଲ୍ଲୀଠାରେ ବସିବ ବୋଲି କଥା ହୋଇଥାଏ; କିନ୍ତୁ ଇତିମଧ୍ୟରେ ଜିନ୍ନା ବାରଂବାର ଘୋଷଣା କରୁଥାନ୍ତି ଯେ, ମୁସ୍‌ଲିମ୍ ଲିଗ୍ ଏ ସାଂବିଧାନିକ ସଭାକୁ ବର୍ଜନ କରିବ । ଡାଉନିଂ ଷ୍ଟ୍ରୀଟ୍‌ରେ ଯ୍ୟାଟ୍‌ଲି ବସାଉଥିବା ଆଲୋଚନା ସଭାର ଉଦ୍ଦେଶ୍ୟ ଥାଏ, ମୁସ୍‌ଲିମ୍ ଲିଗ୍‌କୁ ସାଂବିଧାନିକ ସଭାରେ ଯୋଗ ଦେବାସକାଶ ପ୍ରବର୍ତ୍ତାଇବା । ମୁସ୍‌ଲିମ୍ ଲିଗ୍ ଯୋଗ ନ ଦେବା ଫଳରେ ଯଦି ସାଂବିଧାନିକ ସଭା ମୁଖ୍ୟତଃ କଂଗ୍ରେସୀ ଅନୁଷ୍ଠାନ ହୋଇଯାଏ, ତେବେ

କେବଳ କଂଗ୍ରେସ ହାତରେ ସାର୍ବଭୌମ କ୍ଷମତା ଅର୍ପଣ କରିଦେଇ, ଭାରତ ଛାଡ଼ି ଚାଲିଯିବା ଇଂଲଣ୍ଡ ପକ୍ଷରେ କପରି ସମ୍ଭବ ହେବ ବୋଲି ପ୍ରଶ୍ନ ଉଠିଥାଏ ।

ପ୍ରଥମେ, କ୍ୟାବିନେଟ ମିଶନ୍‌ର ମେ, ୧୬ ତାରିଖ (୧୯୪୬) ଯୋଜନାକୁ ମୁସ୍‌ଲିମ୍ ଲିଗ୍ ଗ୍ରହଣ କରିଥିଲା; ଅର୍ଥାତ୍, ସାଂବିଧାନିକ ସଭାରେ ଯୋଗ ଦେବ ବୋଲି ସେତେବେଳେ ରାଜି ହୋଇଥିଲା । ପରେ କିନ୍ତୁ ସାଂବିଧାନିକ ସଭାରେ ଯୋଗ ଦେବା ବିଷୟରେ ଦେଇଥିବା ସମ୍ମତି ପ୍ରତ୍ୟାହାର କଲା ।

ଯେଉଁ କାରଣ ଦର୍ଶାଇ ଜିନ୍ନା ମୁସ୍‌ଲିମ୍ ଲିଗ୍‌ର ସମ୍ମତି ପ୍ରତ୍ୟାହାର କରିନେଲେ, ତା' ଉପରେ ବହୁ ତର୍କ ଆଲୋଚନା ହେଲା ଏବଂ କଂଗ୍ରେସ ଓ ମୁସ୍‌ଲିମ୍ ଲିଗ୍—ଉଭୟ ଅନୁଷ୍ଠାନ ମଧ୍ୟରେ ବିଦ୍ୱେଷ ଚରମସୀମାରେ ପହଞ୍ଚିଲା । ଏଭଳି ହେବାର କାରଣ କ'ଣ ?

କ୍ୟାବିନେଟ୍ ମିଶନ ଯୋଜନାର ୧୯ ଦଫାରେ ଦରଜ କରାଯାଇଥିଲା ଯେ, ସାଂବିଧାନିକ ସଭାର ପ୍ରାରମ୍ଭିକ ଅଧିବେଶନ ନୂଆ ଦିଲ୍ଲୀଠାରେ ଆନୁଷ୍ଠାନିକ ଭାବେ ଅଳ୍ପ ସମୟପାଇଁ ବସିବ ଏବଂ ତା ପରେ ତିନୋଟି ବିଭାଗରେ ବିଭକ୍ତ ହୋଇଯିବ । ପ୍ରତ୍ୟେକ ବିଭାଗ ଗୋଟିଏ ଗୋଟିଏ ପ୍ରଦେଶ-ଗୋଷ୍ଠୀ ପାଇଁ ସମ୍ବିଧାନ ପ୍ରଣୟନ କରିବାର ଭାର ନେବ । ଭାରତର ପ୍ରଦେଶମାନଙ୍କୁ ତିନୋଟି ଗୋଷ୍ଠୀରେ କ୍ୟାବିନେଟ୍ ମିଶନ୍ ପୁଞ୍ଜୀଭୂତ କରିଥିଲେ । ପ୍ରଥମ ଗୋଷ୍ଠୀରେ ରହିଥିଲା ମଧ୍ୟ ଖଣ୍ଡ— ଭାରତର ହୃତ୍‌ପିଣ୍ଡ; ଏଥିରେ ହିନ୍ଦୁମାନେ ସଂଖ୍ୟା-ବହୁଳ । ଉତ୍ତର ପଶ୍ଚିମ ସୀମାନ୍ତ ପ୍ରଦେଶ, ସିନ୍ଧ ଓ ପଞ୍ଜାବକୁ ନେଇ ଦ୍ୱିତୀୟ ଗୋଷ୍ଠୀ ଗଠିତ ହୋଇଥିଲା ; ଏଥିରେ ମୁସ୍‌ଲିମ୍‌ଙ୍କ ସଂଖ୍ୟା ଖୁବ୍ ବେଶି; ଉତ୍ତର ପୂର୍ବର ପ୍ରଦେଶ ଦୁଇଟି ବଙ୍ଗ ଓ ଆସାମକୁ ନେଇ ତୃତୀୟ ଗୋଷ୍ଠୀ ଗଠିତ ହୋଇଥିଲା ।

ସାଂବିଧାନିକ ସଭାର ପ୍ରତ୍ୟେକ ବିଭାଗ ନିଜର ପ୍ରଦେଶ-ଗୋଷ୍ଠୀ ପାଇଁ ସଂବିଧାନ ପ୍ରଣୟନ କରିବ ବୋଲି ବ୍ୟବସ୍ଥା ହୋଇଥିଲା । କିନ୍ତୁ ଗୋଟିଏ ଗୋଷ୍ଠୀର କୌଣସି ପ୍ରଦେଶ ଯଦି ସେହି ଗୋଷ୍ଠୀ ପାଇଁ ପ୍ରଣୀତ ସଂବିଧାନକୁ ଗ୍ରହଣ କରିବାକୁ ଅସମ୍ମତ ହୁଏ ତେବେ ସେ ସେହି ଗୋଷ୍ଠୀରୁ ବାହାରିଯାଇ ପାରିବ ବୋଲି ସର୍ତ୍ତ ରହିଥିଲା ।

ଉଦାହରଣ ସ୍ୱରୂପ, ହିନ୍ଦୁ-ବହୁଳ ଆସାମ ମୁସ୍‌ଲିମ୍ ପ୍ରଧାନ ବଙ୍ଗ ସଙ୍ଗେ ସାଂବିଧାନିକ ସଭାର ତୃତୀୟ ବିଭାଗରେ ବସି ତୃତୀୟ ଗୋଷ୍ଠୀ ପାଇଁ ସଂବିଧାନ ପ୍ରଣୟନ କରିବାରେ ଭାଗ ନେବ ବୋଲି ବ୍ୟବସ୍ଥା ଥିଲେ-ହେଁ, ପ୍ରଣୀତ ସଂବିଧାନ ଗ୍ରହଣ କରିବାକୁ ଯଦି ଆସାମୀ ରାଜି ନ ହୁଏ ତେବେ ଏ ଗୋଷ୍ଠୀରୁ ବାହାରି ଯାଇ ପାରିବ ବୋଲି ବାଟ ରଖା ହୋଇ-ଥିଲା । ବାହାରି ଯାଇ, ଅସାମ ଗୃହେଲେ ଏକୁଟିଆ ହୋଇ ରହିପାରେ, କିମ୍ବା ପ୍ରଥମ ପ୍ରଦେଶ ଗୋଷ୍ଠୀରେ ମିଶି ଯାଇ ପାରେ ବୋଲି ସ୍ୱାଧିକାର ପାଇଥିଲା । ସାଂବିଧାନିକ ସଭାର ତିନୋଟି ବିଭାଗ ନିଷ୍ପନ୍ନ ହେବ ବୋଲି କ୍ୟାବିନେଟ୍ ମିଶନ୍ ବ୍ୟବସ୍ଥା କରିଥିଲେ, କିନ୍ତୁ ନିର୍ଦ୍ଦିଷ୍ଟ ପ୍ରଦେଶଗୋଷ୍ଠୀରେ ରହିବା ନ ରହିବାର ସ୍ୱାଧୀକାର ପ୍ରଦେଶମାନଙ୍କୁ ଛାଡ଼ି ଦେଇଥିଲେ ।

ଗାନ୍ଧୀ କ୍ୟାବିନେଟ୍ ମିଶନ୍‌ର ଏ ବ୍ୟବସ୍ଥାର ବିରୋଧ କରିଥିଲେ । ସେ କହିଲେ, ପ୍ରଦେଶ-ଗୋଷ୍ଠୀରୁ କୌଣସି ପ୍ରଦେଶ ଅଲଗା ହୋଇ ଯାଇପାରେ ବୋଲି ଯେଉଁ ସର୍ତ୍ତ ରହିଛି ତାହା ନିରର୍ଥକ ; କ୍ୟାବିନେଟ୍ ମିଶନ୍ ବ୍ୟବସ୍ଥାରେ ବସ୍ତୁତଃ ପ୍ରତି ପ୍ରଦେଶକୁ ନିଜ ଗୋଷ୍ଠୀଭୁକ୍ତ ହୋଇ ରହିବାକୁ ପ୍ରଚ୍ଛନ୍ନ ଭାବେ ବାଧ କରାଯାଉଛି । ପ୍ରଦେଶକୁ ଅଲଗା ରହିବାକୁ ଯେଉଁ ସ୍ୱାଧୀକାର ଦିଆ ହୋଇଛି ତାହା ଯଦି ପ୍ରକୃତରେ ଦିଆ ହୋଇଛି ତେବେ ଯେଉଁ ପ୍ରଦେଶ ଅଲଗା ହୋଇ ଯିବାର ସଂଭାବନା ତା'କୁ ଗୋଟାଏ ଗୋଷ୍ଠୀରେ ବସାଇ ସଂବିଧାନ ପ୍ରଣୟନ କରିବାକୁ କହିବା ପଣ୍ଡଶ୍ରମ ମାତ୍ର । ସେ ଏକଥା ଆହୁରି ବୁଝାଇ କହିଲେ , ବଙ୍ଗ ପ୍ରଦେଶର ତ, ତୃତୀୟ ବିଭାଗରେ, ମୁସଲମାନ ସଂଖ୍ୟାଗରିଷ୍ଠତା ଖୁବ୍ ରହିବ । ଏଥିରେ ଯେଉଁ ସଂବିଧାନ ପ୍ରଣୀତ ହେବ ସେଥିରେ ଆସାମକୁ ବାଧ କରି ଯୋଗ ଦେବାକୁ କୁହାଯିବାର ଅର୍ଥ କ'ଣ ? ପୁଣି ଉତ୍ତରପଶ୍ଚିମ ସୀମାନ୍ତ ପ୍ରଦେଶ ମୁସଲମାନ-ବହୁଳ ହେଲେ ସୁଦ୍ଧା ସେଥିର ମୁସଲିମ୍-ମାନେ ଜିନ୍ନାଙ୍କର ବିରୋଧୀ । ଏପରି ସ୍ଥଳେ ପଞ୍ଜାବ ଓ ସିନ୍ଧୁ ସଙ୍ଗେ, ଉତ୍ତର-ପଶ୍ଚିମ ସୀମାନ୍ତ ପ୍ରଦେଶକୁ ଏକ ଗୋଷ୍ଠୀଭୁକ୍ତ କରାଯିବ କାହିଁକି ?

ଜିନ୍ନାଙ୍କୁ ସନ୍ତୁଷ୍ଟ କରିବାକୁ ହିଁ କ୍ୟାବିନେଟ୍ ମିଶନ୍ ଯୋଜନାରେ ପ୍ରଦେଶମାନଙ୍କର ବିଭାଗ ଓ ଗୋଷ୍ଠୀ ବ୍ୟବସ୍ଥା ରଖାଯାଇଥିଲା । ଏହା-ଦ୍ୱାରା ଜିନ୍ନାଙ୍କ ପାକିସ୍ଥାନ-ଦାବି ଆଠପଣ ବା ସ୍ୱଳ୍ପପଣରେ ମାନି ନିଆ ଯାଇଥିଲା । ଏହାଦ୍ୱାରା ଭାରତକୁ ବସ୍ତୁତଃ ତିନୋଟି ରାଷ୍ଟ୍ରରେ ବିଭକ୍ତ କରି

କେନ୍ଦ୍ରୀୟ ରାଷ୍ଟ୍ରମାନଙ୍କ ମିଳିତ ସରକାରର କଳ୍ପନା କରାଯାଇଥିଲା । ଏଇଥି ପାଇଁ ଗାନ୍ଧୀ ଏଥିର ବିରୋଧ କଲେ ।

ଗାନ୍ଧୀ ନୋଆଖାଲିରେ ଥିବା ସମୟରେ ପ୍ରତିବେଶୀ ଆସାମ ପ୍ରଦେଶର କଂଗ୍ରେସ ଅନୁଷ୍ଠାନ ପ୍ରତିନିଧି ପଠାଇ ଏ ବିଷୟରେ ଗାନ୍ଧୀଙ୍କ ପରାମର୍ଶ ଲୋଡ଼ିଥିଲେ । ଗାନ୍ଧୀ ଏମାନଙ୍କୁ ଦୃଢ ଓ ସ୍ପଷ୍ଟ ଭାବରେ କହିଥିଲେ ଯେ, ତୁଙ୍କ କଂଗ୍ରେସ ନେତାମାନେ କହିଥିଲେ ସୁଦ୍ଧା ଆସାମ, କ୍ୟାବିନେଟ୍ ଯୋଜନାର ବିଭାଗ ବ୍ୟବସ୍ଥା ଗ୍ରହଣ ନ କରୁ ଏବଂ ତୃତୀୟ ବିଭାଗରେ ବଙ୍ଗ ସଙ୍ଗେ ବସି ସଂବିଧାନ ପ୍ରଣୟନ କରିବାକୁ ନ ଯାଉ ।

ଗାନ୍ଧୀଙ୍କ ଏହି ପରାମର୍ଶ ଫଳରେ ଯେଉଁ ସଂକଟ ଉପୁଜିଲା ତାହାର ସମାଧାନ କରିବାକୁ, ନେହେରୁ, ବଳଦେବ ସିଂହ, ଜିନ୍ନା ଓ ଲିଆକତ୍ ଅଲି ଡିସେମ୍ବରର ପ୍ରଥମ ସପ୍ତାହରେ ଲଣ୍ଡନକୁ ତୁରନ୍ତ ଡାକରା ପାଇ ଉଡ଼ାଜାହାଜ ଯୋଗେ ଯାଇଥିଲେ ।

ଏଇଥର ଲଣ୍ଡନରେ ଥିବା ଭିତରେ ଜିନ୍ନା ପ୍ରକାଶ୍ୟରେ ଘୋଷଣା କଲେ ଯେ, ହିନ୍ଦୁ ରାଷ୍ଟ୍ର ଓ ମୁସ୍‌ଲିମ୍ ରାଷ୍ଟ୍ର ଏହିପରି ଦୁଇ ଭାଗରେ ଭାରତ ବିଭକ୍ତ ହେଉ ବୋଲି ସେ ଚାହାନ୍ତି । ଚର୍ଚ୍ଚିଲଙ୍କ ଆଶଂକା ଯଥାର୍ଥ ବୋଲି କହି ସେ ଘୋଷଣା କଲେ, ତାହା ନ ହେଲେ, 'ଭାରତରେ ଅନ୍ତର୍ବିପ୍ଳବ ଓ ହାଣକାଟ ଲାଗିଯିବା ପରି ମନେ ହୁଏ । ଜିନ୍ନା ଏ ଯେଉଁ ଅନ୍ତର୍ବିପ୍ଳବ ଓ ହାଣକାଟର ସଂଭାବନା କଥା କହିଲେ, ତାହା ତାଙ୍କର ଆଶଂକା ନୁହେଁ, ତାଙ୍କର କର୍ମସୂଚୀ ବୋଲି ଜାଣିବାକୁ ବାକି ନ ଥିଲା ।

ଭାରତରେ ଏତେବେଳକୁ ଏତେ ଦଙ୍ଗାହାଙ୍ଗାମା ହୋଇ ସାରିଥାଏ ଯେ, ବ୍ରିଟିଶ୍ ସରକାର ଆଶଙ୍କା କରୁଥାନ୍ତି, କ୍ୟାବିନେଟ୍ ମିଶନ୍ ଯୋଜନାରେ କଳ୍ପିତ ଆଠପଣିଆ ବା ଚୌଦପଣିଆ ପାକିସ୍ଥାନ ଯଦି ଜିନ୍ନା ନ ପାନ୍ତି ତେବେ ଆହୁରି ଭୀଷଣଭାବେ ଦଙ୍ଗାହାଙ୍ଗାମା ଲାଗିଯିବ । କିନ୍ତୁ ପ୍ଲାଟଲି, ବହୁ ଚେଷ୍ଟା ଚରିତ୍ର କରି କଂଗ୍ରେସ ଓ ଲିଗ୍‌ର ମନ୍ତ୍ରୀମାନଙ୍କୁ ଡାଉନିଂଷ୍ଟ୍ରୀଟ୍‌କୁ ଆଣିବାରେ ସଫଳ ହେଲେ ହେଁ, ଏମାନଙ୍କ ସଙ୍ଗେ ଆଲୋଚନା ସଫଳ ହେଲା ନାହିଁ । କଂଗ୍ରେସ ଓ ମୁସ୍‌ଲିମ୍ ଲିଗ୍‌ର ଆଭିମୁଖ୍ୟରେ ବିଭେଦ ପୂର୍ବପରି ରହିଲା ।

ଏହା ଦେଖି ପ୍ଲାଟ୍‌ଲି ଡିସେମ୍ବର ୬ ତାରିଖରେ ଜଣାଇଦେଲେ ଯେ, ଯଦି ଭାରତର ସାଂବିଧାନିକ ସଭା ମୁସଲିମ୍ ଲିଗର ବିନା

ସହଯୋଗରେ ସଂବିଧାନ ପ୍ରଣୟନ କରେ ତେବେ, 'ବିଲାତ ସରକାରର ସମ୍ବିଧାନକୁ ନ ଗ୍ରହଣଥିବା କୌଣସି ପ୍ରଦେଶ ଉପରେ ଲଦି ଦେବାକୁ ଇଚ୍ଛା ନ କରିବା ସ୍ୱାଭାବିକ ।'

ଏହାର ଅର୍ଥ, ସାଂବିଧାନିକ ସଭା ଯେଉଁ ସଂବିଧାନ ପ୍ରଣୟନ କରିବ ତାକୁ ଭାରତରେ ଗୋଟିଏ ଅଂଶ ଗ୍ରହଣ କଲବେଳକୁ ଆଉ ଗୋଟିଏ ଅଂଶ ପ୍ରତ୍ୟାଖ୍ୟାନ କରିବ । ପୁଣି ସେଇ ଭାରତ ବିଭାଗ କଥା ।

ଲଣ୍ଡନରୁ ଫେରିବାର ଅଳ୍ପଦିନ ପରେ ନେହେରୁ, ନୂଆ ଦିଲ୍ଲୀରୁ ନୋଆଖାଲିର ଶ୍ରୀରାମପୁରକୁ ଦୀର୍ଘଯାତ୍ରା କଲେ ଏବଂ ସେଠାରେ ଅବସ୍ଥାନ କରୁଥିବା ମହାତ୍ମା ଗାନ୍ଧୀଙ୍କୁ, ୧୯୪୬ ଡିସେମ୍ବର ୨୭ ତାରିଖରେ, ଡାଉନିଂଷ୍ଟ୍ରୀଟ୍‌ରେ ହୋଇଥିବା ଆଲୋଚନା ବିଫଳ ହେବାର ଗୁରୁତ୍ୱ ବିଷ ରେ ଅବଗତ କଲେ ।

ଗାନ୍ଧୀ କିନ୍ତୁ ଏଥିରେ ବିଚଳିତ ନ ହୋଇ ଆସାମକୁ ଓ ପଞ୍ଜାବର ଶିଖ୍‌ମାନଙ୍କୁ ଯେଉଁ ପରାମର୍ଶ ଦେଇଥିଲେ ତାହାର ପୁନରାବୃତ୍ତି କଲେ । ସେ କହିଲେ, କ୍ୟାବିନେଟ୍ ମିଶନ୍‌ର ସାଂବିଧାନିକ ସଭାର ବିଭାଗ ଓ ପ୍ରଦେଶ-ଗୋଷ୍ଠୀ ବ୍ୟବସ୍ଥାରେ କଂଗ୍ରେସ ରାଜି ନ ହେଉ । ସେ ମନେ କରୁଥିଲେ ଯେ ଏହା ମୂଳରେ ଭାରତକୁ ଭାଗ ଭାଗ କରିବାର ଅଭିସନ୍ଧି ରହିଛି । ଯେଉଁ ଯୋଜନାଦ୍ୱାରା ଭାରତ ଭାଗ ଭାଗ ହେବାର ଆଶଂକା, ସେପରି କୌଣସି ଯୋଜନା ସେ ଗ୍ରହଣ କରିବାକୁ ଆଦୌ ରାଜି ନ ଥିଲେ ।

କିନ୍ତୁ ଗାନ୍ଧୀଙ୍କ ବିରୋଧ ସତ୍ତ୍ୱେ ନିଖିଳ ଭାରତ କଂଗ୍ରେସ କମିଟି ୧୯୪୭, ଜାନୁଆରି ୬ ତାରିଖରେ ବସି ସାଂବିଧାନିକ ସଭାର ବିଭାଗୀ-କରଣ ବ୍ୟବସ୍ଥା ଗ୍ରହଣ କରିନେଲେ । ଏ ପ୍ରସ୍ତାବ ସପକ୍ଷରେ ୯୯, ଓ ବିପକ୍ଷରେ ୫୨ ଭୋଟ ହୋଇଥିଲା ।

କଂଗ୍ରେସରେ ଗାନ୍ଧୀଙ୍କ ପ୍ରଭାବ କ୍ଷୀଣ ହୋଇ ଆସୁଥାଏ ।

ରାଜନୈତିକ ନେତାଙ୍କ କାରସାଦି ଏବଂ ସାଂବିଧାନିକ ବ୍ୟବସ୍ଥା-ଦ୍ୱାରା ହିନ୍ଦୁ ମୁସଲମାନଙ୍କ ମଧ୍ୟରେ ସୁସଂପର୍କ ଏକାବେଳକେ ଛିନ୍ନଭିନ୍ନ ହୋଇଯିବା ପୂର୍ବରୁ, ସେମାନଙ୍କ ମଧ୍ୟରେ ପୂର୍ବରୁ ଥିବା ସୁସମ୍ପର୍କକୁ ପୁନଃସ୍ଥାପିତ କରିବା ଉଦ୍ଦେଶ୍ୟରେ ଗାନ୍ଧୀ ନୋଆଖାଲି

ଯାହା କହିଥିଲେ । ଭାରତକୁ ଦୁଇଭାଗରେ ବିଭକ୍ତ କରିଦେଲେ ଯେଉଁ ଭୟାବହ ପରିଣାମ ହେବ ତାହାର କଳନା କରି ଗାନ୍ଧୀ ବ୍ୟସ୍ତ ହୋଇ ଯାଇଥିଲେ । ୧୯୪୯, ଅକ୍ଟୋବର ୧୬ ତାରିଖରେ ପ୍ରଧାନ ମନ୍ତ୍ରୀ ନେହେରୁ ଆମେରିକାର ନିଉୟର୍କରେ ସ୍ୱୀକାର କରିଥିଲେ ଯେ ପାକିସ୍ଥାନର ସୃଷ୍ଟିଫଳରେ ସମଗ୍ର ଭାରତରେ ଯେଉଁ ଭୟାବହ ପରିସ୍ଥିତି ଉପୁଜିବ ତାହା ଯଦି ସେ ଆଗରୁ କଳନା କରିପାରିଥାନ୍ତେ ତେବେ ପାକିସ୍ଥାନ ପ୍ରତିଷ୍ଠା ବିରୁଦ୍ଧରେ ସେ ଶେଷ ପର୍ଯ୍ୟନ୍ତ ଲଢ଼ିଥାନ୍ତେ ।

ମନେ ହୁଏ, ଗାନ୍ଧୀ ନିଜ ଅନ୍ତରର ପ୍ରେରଣାରେ ଏହି ଭୟାବହ ପରିଣାମକୁ ଆଗରୁ କଳି ପାରିଥିଲେ । ଭାରତ ଭାଗ ଭାଗ ହୋଇଯିବା ଫଳରେ ଲକ୍ଷ ଲକ୍ଷ ଭାରତୀୟଙ୍କର ହିଂସାତ୍ମକ କାଣ୍ଡରେ ମୃତ୍ୟୁ ହେଲା । ଦେଢ଼କୋଟି ଆଶ୍ରୟପ୍ରାର୍ଥୀଙ୍କୁ ଘରଦ୍ୱାର ଛାଡ଼ି ଅନିଶ୍ଚିତ ଅବସ୍ଥାରେ ସୁଦୂର ଭବିଷ୍ୟତରେ ଶାନ୍ତି ପାଇବା ଆଶାରେ ଅରକ୍ଷ ହୋଇ ବୁଲିବାକୁ ପଡ଼ିଲା । ଭାରତର ବିଭକ୍ତୀକରଣ ଯୋଗୁଁ କାଶ୍ମୀର ସମରର ସୂତ୍ରପାତ ହେଲା । ଧର୍ମର ଭିତ୍ତିରେ ଜାତି ଦୁଇ ଭାଗରେ ବିଭକ୍ତ ହେବା ଫଳରେ ଯେଉଁ ସାଂପ୍ରଦାୟିକ ବିଦ୍ୱେଷ ଚିରକାଳ ଲାଗି ରହିଲା ପରି ଲାଗୁଛି ତାହାର କି ଭୟାବହ ପରିଣତି ଭବିଷ୍ୟତରେ ହେବ ତାହା କିଏ କହିବ ?

ଗାନ୍ଧୀଙ୍କ ଭବିଷ୍ୟତ ଦୃଷ୍ଟି କଂଗ୍ରେସ ନେତାମାନଙ୍କର ନ ଥିଲା, ତଥାପି ସେମାନେ ବି ମୋଟାମୋଟି ଉପଲବ୍ଧି କରି ପାରିଥିଲେ ଯେ ଭାରତ ବିଭାଗର ଫଳ ମଙ୍ଗଳଜନକ ହେବ ନାହିଁ । ଏପରି ସ୍ଥଳେ ମାଉଣ୍ଟବ୍ୟାଟେନ୍‌ଙ୍କ ଡିସେମ୍ବର ୬ ତାରିଖ ବିଜ୍ଞପ୍ତିରେ ସେମାନେ ରାଜି ହୋଇଗଲେ କିପରି ?

୧୯୪୬ ଖ୍ରୀଷ୍ଟାବ୍ଦରେ କଂଗ୍ରେସ ସଭାପତି ମୌଲାନା ଆଜାଦ୍, ନେହେରୁଙ୍କ ଉପସ୍ଥିତିରେ ମୋତେ କହିଥିଲେ ଯେ, ଭାରତର ବିଭକ୍ତୀକରଣ ପ୍ରସ୍ତାବକୁ ସେ ଆଦୌ ପସନ୍ଦ କରୁ ନ ଥିଲେ ମଧ୍ୟ, ମୁସ୍‌ଲିମ୍‌ମାନେ ତାହା ଚାହୁଁଥିବା ସ୍ଥଳେ ସେ ଏ ସମ୍ଭାବନାକୁ ଏକାବେଳେ ଉଡ଼ାଇ ଦେଇ ପାରୁ ନାହାନ୍ତି । କିନ୍ତୁ ସେ କହିଲେ, 'ବିବାହ ପୂର୍ବରୁ ଛାଡ଼ପତ୍ର' କଥା ପକାଇବା ତାଙ୍କର ମତ ନୁହେଁ । ପ୍ରଥମେ ଉଭୟ ସମ୍ପ୍ରଦାୟ ସ୍ୱାଧୀନ ଭାରତରେ ଏକାଠି ଚଳିବାକୁ ଚେଷ୍ଟା କରିବା ଦରକାର ; ଯଦି ଚଳି ନ ହେବ ତେବେ ଯଥା ସମୟରେ ଅଲଗା ଅଲଗା ହେବା କଥା ପଡ଼ିପାରିବ ।

ସେ ତ ୧୯୪୨ର କଥା । ଇତି ମଧ୍ୟରେ ନେହରୁ, ପଟେଲ, ଆଜାଦ୍ ପ୍ରମୁଖ କଂଗ୍ରେସ ନେତାମାନେ 'ବିବାହ'ର ଯଥେଷ୍ଟ ଅନୁଭୂତି ପାଇ ସାରିଥିଲେ । ମୁସ୍‌ଲିମ୍ ଲିଗ୍‌ର ପ୍ରତିନିଧିମାନଙ୍କ ସଙ୍ଗେ ସେମାନେ ଏକାଠି ସରକାର ଗଢ଼ି ସେମାନଙ୍କର ଗତିବିଧି ବେଶ୍ ଲକ୍ଷ୍ୟ କରିଥିଲେ । ପରିଷ୍କାର ଜଣା ପଡ଼ିଲା ଯେ ମୁସ୍‌ଲିମ୍ ଲିଗ୍ କେବଳ ମିଳିତ ସରକାରକୁ ଭାଙ୍ଗିବା ନିମନ୍ତେ ଏଥିରେ ଯୋଗ ଦେଇଛନ୍ତି । ମୁସ୍‌ଲିମ୍ ଲିଗ୍ ସଙ୍ଗେ ସହଯୋଗ କରିବାକୁ ଚେଷ୍ଟା କରି ଯେଉଁ ଦୁଃଖଦାୟକ ଅଭିଜ୍ଞତାମାନ ଅର୍ଜନ କଲେ ସେଥିରେ କଂଗ୍ରେସ ନେତାମାନଙ୍କ ଧୈର୍ଯ୍ୟଚ୍ୟୁତି ହେଲା । କଂଗ୍ରେସ ଓ ଲିଗର ସହଯୋଗରେ ସେମାନଙ୍କର ଯାହା ବା ଆଶା ଥିଲା ସେତକ ନଷ୍ଟ ହୋଇଗଲା ।

କିନ୍ତୁ ଗାନ୍ଧୀଙ୍କର ହିନ୍ଦୁମୁସ୍‌ଲମାନ ସହୃଦୟତାରେ ଆସ୍ଥା ଲୋପ ହୋଇ ନଥାଏ । ଏହାଦ୍ୱାରା ପାକିସ୍ଥାନର ଅପୂମାରମ୍ଭ ହେଉଛି ବୋଲି ଜାଣି ସୁଦ୍ଧା ନେହେରୁ ଓ ପଟେଲ, ସାଂବିଧାନିକ ସଭା ତିନିଭାଗ ହୋଇ ବସି ବିଭିନ୍ନ ଗୋଷ୍ଠୀ ପାଇଁ ସମ୍ବିଧାନ ପ୍ରଣୟନ କରିବା ବ୍ୟବସ୍ଥାରେ ମଙ୍ଗି ଯାଇଥାନ୍ତି । ମଙ୍ଗି ନ ଗଲେ ଗୃହବିବାଦ ଅବଶ୍ୟଂଭାବୀ ବୋଲି ସେମାନଙ୍କର ହୃଦ୍‌ବୋଧ ହୋଇଥାଏ । ସେମାନେ ଆଶା କରୁଥାନ୍ତି ଯେ ଭାରତବର୍ଷ ତିନୋଟି ରାଷ୍ଟ୍ରପୁଞ୍ଜରେ ବିଭକ୍ତ ହୋଇ ସଂବିଧାନ ଗଢ଼ି କେନ୍ଦ୍ରରେ ମିଳିତ ସରକାର ସ୍ଥାପନା କରିଦେଲେ ଜିନ୍ନା ସନ୍ତୁଷ୍ଟ ହୋଇ-ଯିବେ ଏବଂ ପାକିସ୍ଥାନ ପାଇଁ ଜିଦ୍ ଛାଡ଼ିଦେବେ ।

ବ୍ରିଟିଶ୍ ସରକାର ୧୯୪୭, ଫେବ୍ରୁୟାରି ୨୦ ତାରିଖରେ ପରବର୍ତ୍ତୀ ପଦକ୍ଷେପ ନେଲେ । ସେଦିନ ପ୍ରଧାନମନ୍ତ୍ରୀ ଆଟ୍‌ଲି କମନ୍‌ସ୍ ସଭାରେ ଘୋଷଣା କଲେ ଯେ ବ୍ରିଟିଶ୍ ସରକାର 'ଜୁନ୍, ୧୯୪୮ ପୂର୍ବରୁ ଯେ କୌଣସି ଦିନ' ଭାରତ ଛାଡ଼ି ଚାଲି ଆସିବେ । ସଂଗେ ସଂଗେ ସମ୍ବାଦ ପ୍ରକାଶ ପାଇଲା ଯେ ଲର୍ଡ୍ ମାଉଣ୍ଟବ୍ୟାଟେନ୍ ଲର୍ଡ୍ ଓ୍ୱାଭେଲଙ୍କ ପରିବର୍ତ୍ତେ ଭାରତର ବଡ଼ଲାଟ୍ ହୋଇ ଆସିବେ । ଲର୍ଡ୍ (ଆର୍ଚ୍ଚିବଲ୍ ଲୁଇ) ମାଉଣ୍ଟବ୍ୟାଟେନ୍ ମହାରାଣୀ ଭିକ୍‌ଟୋରିଆଙ୍କର ଜଣେ ପଣନାତି । ସେ ଭାରତର ବିଂଶତିତମ ଓ ଶେଷ ଭାଇସରୟ ହେବେ ।

ଭାରତ ଛାଡ଼ି ଆସିବାର ତାରିଖ ତ ବ୍ରିଟିଶ ସରକାର ସ୍ଥିର କରି-ଦେଲେ । କିନ୍ତୁ ଶାସନଭାର କାହା ହାତରେ ଦେଇ ଆସିବେ ? ଲର୍ଡ୍

୮ . କୁ ଲରେନସ୍ ଲେଖିଛନ୍ତି, ଏହି ଗୁରୁତ୍ୱପୂର୍ଣ୍ଣ ବିଷୟରେ ଯ୍ୟାଟ୍‌ଲିଙ୍କର ସିଦ୍ଧାନ୍ତ, 'ସେତେ ସ୍ପଷ୍ଟ ନ ଥିଲା ।' ଯ୍ୟାଟ୍‌ଲି ତାଙ୍କ ବିବୃତିରେ କହିଥିଲେ ଯେ ଏ ବିଷୟରେ ମହାମହିମ ସମ୍ରାଟଙ୍କ ସରକାର ଯଥାସମୟରେ ନିଷ୍ପତ୍ତି କରିବେ : ହୁଏତ, କୌଣସି ପ୍ରକାରେ ଗଠିତ ଏକ କେନ୍ଦ୍ର ସରକାରକୁ କ୍ଷମତା ହସ୍ତାନ୍ତରିତ ହୋଇପାରେ, କିମ୍ବା କେତେକ ଅଞ୍ଚଳରେ 'ବର୍ତ୍ତମାନ ଥିବା ପ୍ରଦେଶିକ ସରକାରମାନଙ୍କୁ' ସାର୍ବଭୌମ କ୍ଷମତା ଦିଆଯାଇ ପାରେ, 'କିମ୍ବା ଭାରତୀୟମାନଙ୍କର ସ୍ୱାର୍ଥର ଅନୁକୂଳ ଅନ୍ୟ ଯେଉଁ ପ୍ରକାର ସଂସ୍ଥା-ମାନ ଯୁକ୍ତିଯୁକ୍ତ ମନେ ହେବ ତାଙ୍କୁ କ୍ଷମତା ହସ୍ତାନ୍ତର କରାଯାଇ ପାରେ ।'

କାହାକୁ କ୍ଷମତା ହସ୍ତାନ୍ତରିତ ହେବ ସେ ବିଷୟ ଅସ୍ପଷ୍ଟ ରଖା-ଯାଇଥିବାର ଅନୁଭବ କରୁଥିଲେ ହେଁ, ନେହେରୁ ଯ୍ୟାଟଲିଙ୍କ ଏ ବିବୃତିକୁ ମୋଟାମୋଟି ଭାବେ 'ବିଜ୍ଞତାପୂର୍ଣ୍ଣ ସାହସିକ ପଦକ୍ଷେପ' ବୋଲି ସ୍ୱାଗତ କଲେ । ସେ କହିଲେ, ଏହାଦ୍ୱାରା ବ୍ରିଟିଶ୍ ସରକାରଙ୍କ ପ୍ରକୃତ ମତଲବ୍ ବିଷୟରେ 'ସମସ୍ତ ସଂଶୟ ଓ ସଂଦେହ' ଦୂର ହେଲା ।

କଂଗ୍ରେସ କାର୍ଯ୍ୟକାରୀ କମିଟି ମାର୍ଚ୍ଚ ପ୍ରଥମ ସପ୍ତାହରେ ବସି ଆନୁଷ୍ଠାନିକ ଭାବେ ଯ୍ୟାଟ୍‌ଲିଙ୍କର ନୂଆ ଘୋଷଣାକୁ ସ୍ୱାଗତ କଲେ ଏବଂ କ୍ଷମତା 'ହସ୍ତାନ୍ତରୀକରଣ' ତୁରନ୍ତ ହେବାକୁ ଥିବା ଦୃଷ୍ଟିରୁ ସମାଧାନ-ଆଲୋଚନା ପାଇଁ ମୁସ୍‌ଲିମ୍ ଲିଗ୍‌କୁ ନିମନ୍ତ୍ରଣ କଲେ । ତାହାଁ ସଂଗେ ସଂଗେ କାର୍ଯ୍ୟକାରୀ କମିଟି ଜନାକୀର୍ଣ୍ଣ ପଞ୍ଜାବ ପ୍ରଦେଶରେ ହେଉଥିବା ବ୍ୟାପକ ହତ୍ୟାକାଣ୍ଡ ବିଷୟରେ ଆଲୋଚନା କଲେ । ପଞ୍ଜାବରେ ଘଟୁଥିବା ହିଂସାକାଣ୍ଡରେ ବ୍ୟଥିତ ହେବା ସଂଗେ ସଂଗେ ଏହାର ଗୁରୁତ୍ୱ ଦୃଷ୍ଟିରୁ କାର୍ଯ୍ୟକାରୀ କମିଟି ପ୍ରସ୍ତାବ କଲେ ଯେ 'ପଞ୍ଜାବକୁ ଏଭଳି ଦୁଇଟି ପ୍ରଦେଶରେ ବିଭକ୍ତ କରିବାକୁ ହେବ ଯେପରି କି ବହୁସଂଖ୍ୟାରେ ମୁସ୍‌ଲିମ ଅଧିବାସୀ ଥିବା ଅଞ୍ଚଳ, ବହୁ ସଂଖ୍ୟାରେ ହିନ୍ଦୁ ଥିବା ଅଞ୍ଚଳରୁ ପୃଥକ୍ ହୋଇ ରହିବ ।'

ପଞ୍ଜାବର ପରିସ୍ଥିତି ଅମଙ୍ଗଳର ସୂଚକ ହୋଇଥାଏ । ଭାରତ ଓ ବ୍ରହ୍ମଦେଶର ସେକ୍ରେଟାରୀ ଅବ୍ ଷ୍ଟେଟ୍ କମନସ୍ ସଭାରେ, ୧୯୪୭, ମେ ୨୧ ତାରିଖରେ ଏ ସଂପର୍କୀୟ ପ୍ରଶ୍ନର ଉତ୍ତର ଦେଇ କହିଥିଲେ ଯେ, ନଭେମ୍ବର ୧୮, ୧୯୪୬ରୁ ମେ ୧୮, ୧୯୪୭ ମଧ୍ୟରେ ଦଂଗା ହାଂଗାମରେ

୪୦୧୪ ଭାରତୀୟଙ୍କର ମୃତ୍ୟୁ ହୋଇଥିଲା; ସେଥିରୁ ୩୦୨୪ ଜଣ କେବଳ ପଞ୍ଜାବରେ, ହିନ୍ଦୁ ମୁସଲମ୍ ଓ ଶିଖଙ୍କ ଗଣ୍ଡଗୋଳରେ ମରିଥିଲେ ।

ବଂଗର ପଶ୍ଚିମକୁ ଥିବା ବିହାରରେ ଘଟୁଥିବା ହିଂସାକାଣ୍ଡରେ ବିଚଳିତ ହୋଇ ଗାନ୍ଧୀ ବଂଗରୁ ବିହାର ଯାତ୍ରା କଲେ । ବିହାରରେ ପହଞ୍ଚି, ଦିନେ ବି ବିଶ୍ରାମ ନ ନେଇ ସେ ପ୍ରଦେଶ ଭିତରେ ଗସ୍ତ ଆରମ୍ଭ କରିଦେଲେ । ଗ୍ରାମ ଓ ସହରମାନଙ୍କରେ ବୁଲି ବୁଲି ସେ ବିହାରର ହିନ୍ଦୁମାନଙ୍କୁ ଭର୍ତ୍ସନା କରି ଲାଗିଲେ । ବିହାରୀମାନେ,'କ୍ଷଣିକ ଉନ୍ମାଦନାରେ ନିଜେ ଯେ ମଣିଷ ଏ କଥା ଭୁଲି ଯାଇଥିଲେ' ବୋଲି ଗାନ୍ଧୀ କହୁଥାନ୍ତି ।

ଦିନେ ସେ ଘଣ୍ଟା ଘଣ୍ଟା ଧରି ହିନ୍ଦୁ ଓ ମୁସ୍‌ଲମ୍‌ଙ୍କ ସଙ୍ଗେ କଥାବାର୍ତ୍ତା ହୋଇ ଅଦ୍ୟାପି କିପରି ଉଭୟ ସମ୍ପ୍ରଦାୟ ଭିତରେ ଉତ୍ତେଜନା ଲାଗି ରହିଛି ତାହାର ବିବରଣୀ ଶୁଣିଥିଲେ । ତାଙ୍କ ସଙ୍ଗେ କଥାବାର୍ତ୍ତା ହୋଇ ଜଣେ ବି ହିନ୍ଦୁ ବା ମୁସଲମ୍ ତାଙ୍କୁ କହିପାରିଲେ ନାହିଁ ଯେ, 'ସାଂପ୍ରଦାୟିକ ଗଣ୍ଡଗୋଳ ଥମ୍ପି ଯାଇ ପୂର୍ବାବସ୍ଥା ଫେରି ଆସିଛି ।' ରୁଦ୍ଧ ଉତ୍ତେଜନା ଓ ଗଣ୍ଡଗୋଳର ବୃତ୍ତାନ୍ତ ଶୁଣି ଶୁଣି ଗାନ୍ଧୀଙ୍କର ଏତେ ମାନସିକ ଶ୍ରାନ୍ତ ହୋଇ-ଥିଲା ଯେ ସେ ସାଂଧ୍ୟଉପାସନା ପୂର୍ବରୁ ଟିକିଏ ଶୋଇ ପଡ଼ି ପ୍ରକୃତିସ୍ଥ ହୋଇଥିଲେ ।

ଆଉ ଦିନେ ସେ ଉପାସନାସ୍ଥଳକୁ ଗୋଟିଏ ମଟରଗାଡ଼ିରେ ଆସି, ମଟରଗାଡ଼ିରେ ଆସିଥିବାରୁ ସଭାରେ ମାଫି ମାଗିଲେ । ସେ କହିଲେ, ବିହାରୀମାନେ 'ମଣିଷକୁ ସମ୍ବର୍ଦ୍ଧନା କରିବା ନାମରେ ଯେପରି ବ୍ୟତିବ୍ୟସ୍ତ କରି ପକାଉଛନ୍ତି, ତାହା ଛାଡ଼ି ନିଜର ଆତ୍ମସମ୍ମାନ ରଖି ଧୀର ସ୍ଥିର ଭାବେ ସମ୍ବର୍ଦ୍ଧନା ଜଣାଇବାକୁ ଶିଖିବା ଉଚିତ ।' ସେଦିନ ହଜାର ହଜାର ଲୋକ ତାଙ୍କ ଆଡ଼କୁ ଧସେଇ ପଶି ତାଙ୍କୁ ଛୁଇଁବାକୁ ଓ ତାଙ୍କ ଗୋଡ଼ ତଳେ ମୁଣ୍ଡିଆ ମାରିବାକୁ ଚେଷ୍ଟା କରିଥାନ୍ତି ।

ଗାନ୍ଧୀଜୀ ଯେଉଁଠାକୁ ଯାଉଥାନ୍ତି ସେଠାରେ ନିଜକୃତ ପାପ ପାଇଁ ଅନୁତପ୍ତ ହେବାକୁ ଓ ଅପହରଣ କରିଥିବା ସମ୍ପତ୍ତି ଆଦି ପ୍ରତ୍ୟର୍ପଣ କରିବାକୁ ବା ତହିଁର କ୍ଷତିପୂରଣ କରିବାକୁ ଲୋକଙ୍କୁ ପ୍ରବର୍ତ୍ତାଉଥାନ୍ତି । ସେ ନିର୍ଦ୍ଦେଶ ଦେଉଥାନ୍ତି, ଯେଉଁ ମୁସ୍‌ଲମ୍ ରମଣୀମାନଙ୍କୁ ଅପହରଣ କରିଛ ସେମାନଙ୍କୁ ଫେରାଇ ଦିଅ, ଯେଉଁ ସମ୍ପତ୍ତି ଲୁଟ୍ କରିଛ ବା ନଷ୍ଟ କରିଛ ସେଥିପାଇଁ କ୍ଷତିପୂରଣ କର ।

ହିନ୍ଦୁମାନେ ଯାହା କରିଛନ୍ତି ସେଥିପାଇଁ ସେମାନଙ୍କୁ ନିନ୍ଦା କରିବା ବନ୍ଦ କର ବୋଲି ତାଗିଦ୍ କରି ଜଣେ ହିନ୍ଦୁ ମହାତ୍ମାଜୀଙ୍କ ପାଖକୁ ଟେଲିଗ୍ରାମ ପଠାଇଥିଲେ । ପ୍ରାର୍ଥନାସଭାରେ ଏହି ଟେଲିଗ୍ରାମ କଥା ଉଲ୍ଲେଖ କରି ଗାନ୍ଧୀ କହିଲେ, 'ମୋର ଜାତିଭାଇ ହିନ୍ଦୁମାନେ ବା ଅନ୍ୟ ଯେକୌଣସି ଲୋକ ଯେଉଁ ଅନ୍ୟାୟ କରୁଛନ୍ତି ତାକୁ ଯଦି ମୁଁ ସମର୍ଥନ କରେ ତେବେ ମୁଁ ନିଜକୁ ହିନ୍ଦୁ ବୋଲି କହିବା ଅଧିକାରରୁ ବଂଚିତ ହେବି ।' ପଞ୍ଜାବର ହିନ୍ଦୁମାନଙ୍କୁ ହତ୍ୟା କରାଗଲା ବୋଲି ବିହାରର ମୁସ୍‌ଲିମ୍‌ଙ୍କ ଉପରେ ତାହାର ପ୍ରତିଶୋଧ ନ ନେବାକୁ ସେ ବିହାରୀ ହିନ୍ଦୁଙ୍କୁ ତାଗିଦ୍ କରିଥିଲେ ।

ଗାନ୍ଧୀ ଜାଣୁଥାନ୍ତି ଯେ, ତାଙ୍କୁ ଯେଉଁ ହିନ୍ଦୁମାନେ ସମ୍ମାନ ଦେଖାଉଥାନ୍ତି ସେମାନଙ୍କୁ ବି ତାଙ୍କ ପ୍ରେମର ବାଣୀ ଉତ୍ତ୍ୟକ୍ତ କରୁଥାଏ । ତଥାପି ପ୍ରତି ସଭାରେ ସେ ବିପର୍ଯ୍ୟସ୍ତ ମୁସ୍‌ଲିମ୍‌ଙ୍କୁ ସାହାଯ୍ୟ କରିବା ସକାଶେ ଚାନ୍ଦା ସଂଗ୍ରହ କରୁଥାନ୍ତି । ପାଟଣାରେ ଗୋଟିଏ ସଭାରେ ଦୁଇ ହଜାର ଟଙ୍କା ସଂଗୃହୀତ ହୋଇଥିଲା, ଏବଂ ବହୁ ସ୍ତ୍ରୀଲୋକ ଦେହରୁ ଅଳଙ୍କାର କାଢ଼ି ମହାତ୍ମାଜୀଙ୍କୁ ଅର୍ପଣ କରିଥିଲେ ।

କୌଣସି ସ୍ଥାନରେ ବକ୍ତୃତା ଦେବା ପୂର୍ବରୁ, ଗାନ୍ଧୀ ସେ ଅଞ୍ଚଳର ମୁସଲମାନ ବସ୍ତିରେ ବୁଲୁଥିଲେ ଓ ଯେଉଁ ମୁସଲମାନ ପରିବାରର ଲୋକେ ହାଣକାଟରେ ମରିଥିଲେ ବା ଘାଇଲ ହୋଇଥିଲେ ସେମାନଙ୍କ ପରିବାରରେ ଯାଇ ସାନ୍ତ୍ୱନା ଦେଉଥିଲେ । ବିହାରର ହତ୍ୟାକାଣ୍ଡର ବିଭୀଷିକା ବିଷୟରେ ସେ ଯେତେ ଯେତେ ଅଧିକ ଜାଣିଲେ, ସେ ତେତେ ତେତେ ଅଧିକ ଅଭିଭୂତ ହେଲେ । ସେ ଘୋଷଣା କଲେ, 'ଉଭୟ ସଂପ୍ରଦାୟର ଲୋକଙ୍କ ଭିତରେ ପୂର୍ଣ୍ଣ ସଦ୍‌ଭାବ ଆସି, ସେମାନେ ତାଙ୍କର (ଗାନ୍ଧୀଙ୍କର) ସେବା ଆଉ ଦରକାର କରୁନାହାନ୍ତି ବୋଲି ସେ ନ ବୁଝିବା ପର୍ଯ୍ୟନ୍ତ' ସେ ବିହାର ପ୍ରଦେଶରୁ ଯିବେ ନାହିଁ । ଗାନ୍ଧୀ ଜିଦ୍ କଲେ, ହିନ୍ଦୁମାନେ ଭୟରେ ପଳାଇ ଯାଇଥିବା ମୁସ୍‌ଲିମ୍‌ମାନଙ୍କୁ ନିଜେ ଯାଇ ଡାକି ଆଣନ୍ତୁ, ଯେଉଁମାନଙ୍କର ଘର ପୋଡ଼ିଛନ୍ତି ସେମାନଙ୍କ ଘର ତୋଳି ଦିଅନ୍ତୁ, ଓ ଯେଉଁ ମୁସ୍‌ଲିମ୍‌ଙ୍କର ବ୍ୟବସାୟ ବାଣିଜ୍ୟ, ଦୋକାନପଣ ନଷ୍ଟ କରି ଦେଇଛନ୍ତି, ନିଜ ଖର୍ଚ୍ଚରେ ସେ ସବୁ ପୁଣି ତିଆରି ଦିଅନ୍ତୁ । ଯେଉଁ ହିନ୍ଦୁମାନେ ହିଂସାକାଣ୍ଡରେ ଲିପ୍ତ ଥାଇ ସରକାର ହାତରେ ଅପରାଧୀ ହୋଇଛନ୍ତି ସେମାନେ ଆସି ପୁଲିସ ଓ ମାଜିଷ୍ଟ୍ରେଟ୍‌ଙ୍କ ପାଖେ ଆତ୍ମସମର୍ପଣ କରନ୍ତୁ ବୋଲି ଗାନ୍ଧୀ ଆହ୍ୱାନ କରୁଥାନ୍ତି ।

ଯେଉଁ ଦିନ ଗାନ୍ଧୀଜୀ ମସୁର ସହରରେ ପଦାର୍ପଣ କଲେ ସେଦିନ 'ଦଙ୍ଗାଗୋଳ ଅଭିଯୋଗରେ ଓ୍ୱାରେଣ୍ଟ ଜାରି ହୋଇଥିବା ପଚିଶ ଜଣ ଲୋକ ଆସି ପୁଲିସ୍ ଥାନାରେ ଆତ୍ମ ସମର୍ପଣ କଲେ' ବୋଲି ଗାନ୍ଧୀ ସଭାରେ ପ୍ରକାଶ କରିଥିଲେ । ଗାନ୍ଧୀ କହିଥିଲେ, 'ଯଦି କୌଣସି ଆସାମୀଙ୍କର ପୁଲିସ ବା ମାଜିଷ୍ଟ୍ରେଟ୍‌ଙ୍କ ଆଗେ ହାଜର ହେବାକୁ ସାହସ ନ ହେଉଛି, ତେବେ ସେମାନେ ତାଙ୍କ ପାଖକୁ, 'ସୀମାନ୍ତ' ଗାନ୍ଧୀ ଗଫର ଖାଁଙ୍କ ପାଖକୁ ବା ଭାରତୀୟ ଜାତୀୟ ବାହିନୀର ସେନାପତି ସାହନବାଜଙ୍କ ପାଖକୁ ଆସି ନିଜର ଅପରାଧ ସ୍ୱୀକାର କରିପାରନ୍ତି । ସୀମାନ୍ତ ଗାନ୍ଧୀ ଓ ସେନାପତି ସାହନବାଜ ବିହାର ଗସ୍ତରେ ଗାନ୍ଧୀଙ୍କ ସହଯାତ୍ରୀ ହୋଇଥାନ୍ତି ।

ଗାନ୍ଧୀଙ୍କ ମଟରଗାଡ଼ି ବିହାରର ମଫସଲ ରାସ୍ତାରେ ଯାଉଥିବା ବେଳେ ଦଳ ଦଳ ହୋଇ ହିନ୍ଦୁ ତାଙ୍କ ଗାଡ଼ିକୁ ହାତ ଦେଖାଇ ଅଟକାଉଥାନ୍ତି ଏବଂ ମୁସ୍‌ଲିମ୍‌ଙ୍କୁ ସାହାଯ୍ୟ କରିବା ସକାଶ ଧନ ଦାନ କରୁଥାନ୍ତି । ହିଂସା କାଣ୍ଡ ବନ୍ଦ କରିବାର ବାଟ ଏଇ ; ପୁଲିସ୍ ବା ମିଲିଟାରୀ ସାହାଯ୍ୟରେ ହିଂସାକାଣ୍ଡ ଓ ହିଂସାବୃତ୍ତିକୁ ରୋକିବା ଅସଂଭବ ।

ହିନ୍ଦୁମାନେ ମୁସ୍‌ଲିମ୍‌ଙ୍କ ଦୋକାନ ଓ ବ୍ୟବସାୟ-ପ୍ରତିଷ୍ଠାନକୁ ବଏକଟ୍ କରିଥାନ୍ତି । ଏଭଳି ଅନୁଦାରତା ତ୍ୟାଗ କରିବାକୁ ଗାନ୍ଧୀ ହିନ୍ଦୁମାନଙ୍କୁ ଅନୁରୋଧ କରିଥିଲେ । ମୁସ୍‌ଲିମ୍‌ମାନଙ୍କୁ ଅଭୟ ଦେବା ସକାଶେ ହିନ୍ଦୁମାନେ ନିଜର ଦୋଷ ପ୍ରକାଶ୍ୟରେ ସ୍ୱୀକାର କରନ୍ତୁ ବୋଲି ସେ ସଭାରେ ଆହ୍ୱାନ କରିଥିଲେ । 'କିନ୍ତୁ ସେ ଦୁଃଖର ସହିତ କହିଥିଲେ ଜଣେ ବି ହିନ୍ଦୁ ନିଜର ଦୋଷ ସ୍ୱୀକର କରି ମୁସ୍‌ଲିମ୍‌ମାନଙ୍କୁ ଆଶ୍ୱସ୍ତ କରିବାକୁ ବାହାରିଲେ ନାହିଁ··· । ଏପରି ସ୍ଥଳେ ମୁସ୍‌ଲିମ୍‌ମାନେ ନିଜ ନିଜ ଗାଁକୁ ପ୍ରତ୍ୟାବର୍ତ୍ତନ କରିବାକୁ ଡରିବାରେ ବିସ୍ମିତ ହେବାର କାରଣ ନାହିଁ ।' ଗାନ୍ଧୀଜୀ ସଭାରେ ସମସ୍ତଙ୍କୁ ସାବଧାନ କରିଦେଲେ ଯେ ଏପରି କଲେ, 'ଭାରତୀୟମାନେ ସ୍ୱାଧୀନତା ରୂପ ସୁବର୍ଣ୍ଣମୟ ଫଳରୁ ବଞ୍ଚିତ ହେବାର ଆଶଂକା ଅଛି ।' ହିନ୍ଦୁ ଓ ଶିଖଙ୍କ ଉପରେ ମୁସଲମାନଙ୍କ ତରଫରୁ ଯେଉଁ ଅତ୍ୟାଚାର ହେଉଥିଲା ତାହାର ପ୍ରତିଶୋଧ ବିହାରର ମୁସଲମାନଙ୍କ ଉପରେ ନେବା ପାଇଁ ବିହାରୀ ହିନ୍ଦୁଙ୍କ ମଧ୍ୟରେ ପୁଣି ଉତ୍ତେଜନା ଦେଖାଯାଉଥାଏ । ମହାତ୍ମାଜୀ ହୃଦୟର ଆବେଗରେ ସତର୍କ କରିଥିଲେ, 'ପୁଣି ଯଦି ତୁମେମାନେ ପାଗଳାମି କରି

ବସ, ତେବେ ମୋତେ ଆଗରୁ ନାଶ କରିଦେବା ଦରକାର ।' ଏହା ଗାନ୍ଧୀଜୀଙ୍କର ବିହାରରେ ଗସ୍ତ କରିବାର ଚତୁର୍ଥ ସପ୍ତାହର ଘଟଣା ।

ନୌବାହିନୀର ଶୁଭ୍ର ପୋଷାକ ପରିହିତ ସୁଶ୍ରୀ ଲର୍ଡ୍ ମାଉଣ୍ଟ୍-ବ୍ୟାଟେନ୍, ତାଙ୍କ ପତ୍ନୀ ଏଡ଼ୱିଇନାଙ୍କ ସହିତ ୧୯୪୭, ମାର୍ଚ୍ଚ ୨୨ତାରିଖରେ ନୂଆ ଦିଲ୍ଲୀକୁ ଭାଇସ୍‌ରୟ ହୋଇ ଆସିଲେ ; ଭାଇସ୍‌ରୟ ଓ ଭାଇସ୍‌ରୟ-ପତ୍ନୀଙ୍କ ଲୋକ-ଆକର୍ଷଣୀ ଶକ୍ତି ଏବଂ ନିରାଡମ୍ବର ବ୍ୟବହାର, ଏବଂ ଭାଇସ୍‌ରୟଙ୍କ ପ୍ରଥମ ରାଜନୀତିକ ବିବୃତିର ଢଙ୍ଗ ଯୋଗୁଁ ଜନସାଧାରଣଙ୍କ ମନରେ ଏ ଦୁହିଙ୍କ ବିଷୟରେ ଖୁବ୍ ଭଲ ଧାରଣା ହୋଇଥିଲା । କିନ୍ତୁ ଜିନ୍ନା, ମାଉଣ୍ଟବ୍ୟାଟେନ୍ ନୂଆ ଦିଲ୍ଲୀରେ ପହଞ୍ଚିବାର ୨୪ ଘଣ୍ଟା ପରେ ସର୍ବସାଧାରଣରେ ଘୋଷଣା କରିଦେଲେ ଯେ ଭାରତ ବିଭାଗ ହିଁ ବର୍ତ୍ତମାନ ସମସ୍ୟାର ଏକମାତ୍ର ସମାଧାନ ; ତାହା ନ ହେଲେ ଦେଶ 'ଭୟାନକ ବିପଦ'ର ସମ୍ମୁଖୀନ ହେବ ।

ନୂଆ ଦିଲ୍ଲୀରେ ପହଞ୍ଚିବାର ଚାରିଦିନ ଭିତରେ ମାଉଣ୍ଟ୍‌ବ୍ୟାଟେନ୍ ଗାନ୍ଧୀ ଓ ଜିନ୍ନାଙ୍କୁ ବଡ଼ଲାଟ-ଭବନକୁ ନିମନ୍ତ୍ରଣ କଲେ । ଗାନ୍ଧୀ ବିହାରର ଅଭ୍ୟନ୍ତର ଅଞ୍ଚଳରେ ଗସ୍ତ କରୁଥାନ୍ତି । ସେଠାରୁ ଉଡ଼ାଜାହାଜ ଯୋଗେ ଗାନ୍ଧୀଙ୍କୁ ନୂଆ ଦିଲ୍ଲୀକୁ ଆଣିବା ନିମନ୍ତେ ଭାଇସ୍‌ରୟ ପ୍ରସ୍ତାବ ଦେଲେ । କିନ୍ତୁ ଗାନ୍ଧୀ କହିଲେ, ଦେଶର କୋଟି କୋଟି ଜନତା ଯେଉଁ ଯାନକୁ ବ୍ୟବହାର କରୁଛନ୍ତି ତାକୁ ଇ ସେ ପସନ୍ଦ କରନ୍ତି । ପାଟଣାରୁ ରେଳ ଛାଡ଼ିବା ପୂର୍ବରୁ ଗାନ୍ଧୀଜୀ ରେଳ-ପ୍ଲାଟଫର୍ମରେ ହରିଜନଙ୍କୁ ସାହାଯ୍ୟ ଦେବା ସକାଶ ପାଣ୍ଠି ସଂଗ୍ରହ କରିଥିଲେ ।

ମାର୍ଚ୍ଚ ୩୧ ତାରିଖରେ ଗାନ୍ଧୀ ମାଉଣ୍ଟବ୍ୟାଟେନଙ୍କ ସହିତ ୨ ଘଣ୍ଟା ୧୫ ମିନିଟ କାଳ କଥାବାର୍ତ୍ତା ହୋଇଥିଲେ ।

ତତ୍ପର ଦିନ ଗାନ୍ଧୀ ଏସୀୟ ସୁସଂପର୍କ ସମ୍ମିଳନୀକୁ ଯାଇଥିଲେ ; ଏହି ସମ୍ମିଳନୀ ମାର୍ଚ୍ଚ ୨୩ ତାରିଖରୁ ନୂଆ ଦିଲ୍ଲୀରେ ବସିଥାଏ । ଏସିଆର ଅଧିକାଂଶ ଦେଶରୁ ଓ ସୋଭିଏଟ୍ ୟୁନିଅନ୍ ଅନ୍ତର୍ଭୁକ୍ତ ପାଞ୍ଚଟି ଗଣତନ୍ତ୍ର ରାଷ୍ଟ୍ରରୁ ପ୍ରତିନିଧି ଆସି ଏଥିରେ ଯୋଗ ଦେଇଥାନ୍ତି । ସମ୍ମିଳନୀରେ ଭାଷଣ ଦେବାକୁ ଅନୁରୋଧ ହୁଅନ୍ତେ ଗାନ୍ଧୀ କହିଲେ, ତହିଁ ଆରଦିନ ସମ୍ମିଳନୀର ସମାବର୍ତ୍ତନ ଦିବସରେ ସେ ଭାଷଣ ଦେବେ ; ଆଜ ଯଦି ପ୍ରତିନିଧିମାନେ ତାଙ୍କୁ କିଛି ପ୍ରଶ୍ନ ପଚାରନ୍ତି ତେବେ ସେ ଉତ୍ତର ଦେବାକୁ ଚେଷ୍ଟା କରିବେ ।

ପ୍ରଶ୍ନ ହେଲା : ସମଗ୍ର ପୃଥିବୀକୁ ନେଇ ଗୋଟିଏ ରାଷ୍ଟ୍ର ଗଠିତ ହେବାରେ ସେ ବିଶ୍ୱାସ କରନ୍ତି କି ? ସେ ଭଳି ରାଷ୍ଟ୍ର ପୃଥିବୀର ବର୍ତ୍ତମାନ ପରିସ୍ଥିତିରେ କାର୍ଯ୍ୟକାରୀ ହୋଇ ପାରିବ କି ?

ଗାନ୍ଧୀ ଉତ୍ତର ଦେଲେ, 'ସମଗ୍ର ପୃଥିବୀ ଯଦି ଏକ ରାଷ୍ଟ୍ରଭୁକ୍ତ ନ ହୁଏ ତେବେ ଏ ପୃଥିବୀରେ ବଞ୍ଚି ରହିବାକୁ ମୁଁ ଇଚ୍ଛିବି ନାହିଁ । ମୋର ଜୀବଦ୍ଦଶାରେ ଏ ଲକ୍ଷ୍ୟ ପୂରଣ ହେଉ ବୋଲି ମୁଁ ଆନ୍ତରିକ କାମନା କରେ । ମୋର ଆଶା, ଏସୀୟ ରାଷ୍ଟ୍ରମାନଙ୍କର ଯେଉଁ ପ୍ରତିନିଧିମାନେ ଏ ସମ୍ମିଳନୀରେ ଯୋଗ ଦେଇଛନ୍ତି ସେମାନେ ସମସ୍ତେ ସମଗ୍ର ପୃଥିବୀକୁ ନେଇ ଏକ ରାଷ୍ଟ୍ର ଗଢ଼ିବା ଦିଗରେ ଯଥାସାଧ୍ୟ ଚେଷ୍ଟା କରିବେ ।' 'ଦୃଢ଼ ସଂକଳ୍ପ' କରି ଯଦି ସମସ୍ତେ କାମରେ ଲାଗିଯାନ୍ତି ତେବେ ଏ ସ୍ୱପ୍ନ ସତ୍ୟରେ ପରିଣତ ହୋଇ-ପାରିବ ।

ସମଗ୍ର ଏସିଆକୁ ନେଇ ଏକ ସ୍ଥାୟୀ ସଂସ୍ଥା ଗଢ଼ିବାର ଉପାଦେୟତା ବିଷୟରେ ଚୀନ୍‌ର ଜଣେ ପ୍ରତିନିଧି ଗୋଟିଏ ପ୍ରଶ୍ନ ପଚାରିଲେ । ଏହାର ଉତ୍ତର ଦେବାକୁ ଯାଇ ଗାନ୍ଧୀ ପ୍ରଶ୍ନର ପ୍ରସଙ୍ଗଠାରୁ ବହୁ ଦୂରକୁ ଭାସିଯାଇ ତାଙ୍କ ମନରେ ସେତେବେଳେ ଯେଉଁ ଭାବ ପ୍ରବଳ ହୋଇ ରହିଥିଲା ତା'ରି ଉପରେ କହି ଚାଲିଲେ । ସେ କହିଲେ, 'ଆଜି ଭାରତର ଯେଉଁ ଅବସ୍ଥା ଦେଖୁଥାଇଁ ଏ ପ୍ରସଙ୍ଗରେ ସେ କଥା ମୋତେ ଉଠାଇବାକୁ ପଡ଼ିବାରୁ ମୁଁ ଦୁଃଖିତ । ଆମେ ନିଜ ଭିତରେ କିପରି ସଦ୍‌ଭାବ ରଖି ରହିବୁଁ ତାହା ଜାଣି ପାରୁନାହୁଁ··· । ଆମେ ତ ବିଚାରବୁଦ୍ଧି ଆଣେ ଜଙ୍ଗଲର ରୀତି ଗ୍ରହଣ କଲେଣିବୁଁ । ଆମରି ଏ ଦୁର୍ଦ୍ଦଶାରୁ ଆପଣମାନେ ଆମ ବିଷୟରେ ମନ୍ଦ ଧାରଣା ଧରି ନିଜ ନିଜ ଦେଶକୁ ଫେରିଯାଆନ୍ତୁ ବୋଲି ମୁଁ ଚାହୁଁନାହିଁ ।'

ତା'ପରେ ଏସିଆର ସମସ୍ୟା ପ୍ରତି ଦୃଷ୍ଟି ଫେରାଇ ସେ ଆରମ୍ଭ କଲେ, 'ଏସିଆର ସବୁ ରାଷ୍ଟ୍ରର ପ୍ରତିନିଧିମାନେ ଏଠାରେ ସମବେତ ହୋଇଛନ୍ତି । ଆପଣମାନେ କ'ଣ ଇଉରୋପ, ଆମେରିକା ବା ଅନ୍ୟ ଅଣ-ଏସୀୟ ରାଷ୍ଟ୍ରମାନଙ୍କ ବିରୁଦ୍ଧରେ ଲଢ଼େଇ କରିବା ଉଦ୍ଦେଶ୍ୟରେ ଏଠାରେ ସମବେତ ହୋଇଛନ୍ତି ? ମୁଁ ଦୃଢ଼ ଭାବେ କହିପାରେ ଯେ ଏହା ଆପଣ-ମାନଙ୍କର ଉଦ୍ଦେଶ୍ୟ ନୁହେଁ । ଭାରତର ଆଦର୍ଶ ଏହା ନୁହେଁ··· । କିନ୍ତୁ ପ୍ରତ୍ୟେକ ପାଶ୍ଚାତ୍ୟ ଦେଶ ଯେଉଁଭଳି ସ୍ୱାଧୀନତା ଉପଭୋଗ କରୁଛନ୍ତି, ଏସିଆର ରାଷ୍ଟ୍ରମାନେ ସେହିପରି ସ୍ୱାଧୀନତା ଉପଭୋଗ କରିବେ ବୋଲି

ମହାତ୍ମାଙ୍କୁ ଦୃଢ଼ ସଂକଳ୍ପ ନ ଧରି ଯଦି ଆମେ ଏ ସମ୍ମିଳନୀରୁ ଫେରିଯାଉଁ, ତେବେ ସମ୍ମିଳନୀର ଉଦ୍ଦେଶ୍ୟ ସାର୍ଥକ ହେବ ନାହିଁ । ମୋର ଏହା କହିବାର ତାତ୍ପର୍ଯ୍ୟ, ଆଜି ଯେଉଁ ସମ୍ମିଳନୀ ବସିଛି ଏହିପରି ସମ୍ମିଳନୀ ପ୍ରତିବର୍ଷ ନିୟମିତ ଭାବେ ବସୁ । ଏହା କେଉଁଠି ବସିବ ବୋଲି ଯଦି ଆପଣମାନେ ମୋତେ ପଚାରନ୍ତି, ତେବେ ମୁଁ କହିବି ଭାରତ ହିଁ ଏଭଳି ସମ୍ମିଳନୀର ଯଥାର୍ଥ ସ୍ଥାନ ।'

ତତ୍ପର ଦିନ ସେ ପ୍ରତିଶ୍ରୁତି ଦେଇଥିବା ଅନୁସାରେ ସମ୍ମିଳନୀରେ ତାଙ୍କର ଭାଷଣ ଦେଲେ । ପ୍ରଥମେ ତାଙ୍କୁ ଇଂରେଜିରେ କହିବାକୁ ପଡ଼ୁ-ଥିବାରୁ ସେ ଦୁଃଖ ପ୍ରକାଶ କଲେ । ସେ ସ୍ୱୀକାର କଲେ ଯେ, ଭାଷଣର ବିଷୟ ବସ୍ତୁ ଉପରେ ତାଙ୍କର ଚିନ୍ତାକୁ ସଂହତ କରିବାକୁ ଥିବା ଇଚ୍ଛା, ସମୟାଭାବରୁ ସେ ପୂରଣ କରି ପାରିନାହାନ୍ତି । ସଭାକୁ ଆସିବା ବାଟରେ, ସେ କେତୋଟି ସୂଚନା ଟିପିବା ପାଇଁ ଗଙ୍ଗାଙ୍କୁ ଖଣ୍ଡିଏ କାଗଜ ଓ ପେନ୍‌ସିଲ ମାଗିଥିଲେ । 'ପେନ୍‌ସିଲ୍ ପରିବର୍ତ୍ତେ ମୋତେ ମିଳିଲା ଗୋଟିଏ କଲମ । ମୁଁ କେତୋଟି କଥା ଟିପିବାକୁ ଚେଷ୍ଟା କରିଥିଲି । କିନ୍ତୁ ଆପଣ-ମାନେ ଶୁଣି ଦୁଃଖିତ ହେବେ ଯେ ସେ କାଗଜ ଟିକକ ବି ମୋ ପାଖରେ ନାହିଁ । ଯାହା ହେଉ ମୁଁ ଯାହା କହିବାକୁ ଚାହିଁଥିଲି ତାହା ମୋର ପୂରା ମନେ ଅଛି ।'

ଏହିପରି ଆରମ୍ଭ କରି ସେ ଏଣୁ ତେଣୁ ଗପିବାକୁ ଲାଗିଲେ ସେମାନେ ଗୋଟିଏ ନଗରୀରେ ସମବେତ ହୋଇଛନ୍ତି, କିନ୍ତୁ ନଗରୀମାନଙ୍କୁ ନେଇ ଭାରତ ଗଠିତ ନୁହେଁ । ଭାରତର ଅସଲ ମର୍ମବାଣୀ ରହିଛି ତା'ର ଗ୍ରାମମାନଙ୍କରେ ବିଶେଷକରି ଗ୍ରାମମାନଙ୍କର ଅସ୍ପୃଶ୍ୟ ଜାତି ଲୋକଙ୍କ କୁଟୀରରେ । ଏକଥା ସ୍ୱୀକାର କରିବାକୁ ହେବ ଯେ ଭାରତର ଗ୍ରାମମାନେ ଆଜି ଖତଗଦା ପରି ହୋଇ ଯାଇଛନ୍ତି । ସେଥିରେ ବାସ କରୁଥିବା ଲୋକଙ୍କର ଦୟନୀୟ ଅବସ୍ଥା ; ସେମାନଙ୍କ ଆଖିରେ ଜ୍ୟୋତି ନାହିଁ । କିନ୍ତୁ ଏଇ ଜ୍ୟୋତିହୀନ ଗ୍ରାମବାସୀଙ୍କ ଠାରେ ହିଁ ରହିଛି ଭାରତର ପାରଂପରିକ ଜ୍ଞାନର ଭଣ୍ଡାର ।

ତା' ପରେ ସେ କହି ଚାଲିଲେ : ଏବେ ପ୍ରାଚ୍ୟ ଦେଶମାନେ ପାଶ୍ଚାତ୍ୟ ଦେଶର ସଂସ୍କୃତିରେ ପ୍ରଭାବିତ ହୋଇଛନ୍ତି । କିନ୍ତୁ ପାଶ୍ଚାତ୍ୟ ଦେଶମାନେ ସନାତନ ସତ୍ୟର ସଂକେତ ପ୍ରଥମେ ଏଇ ପ୍ରାଚ୍ୟ ଦେଶମାନଙ୍କଠୁ ହିଁ ପାଇ-

ଥିଲେ—ଜୋରୋଆଷ୍ଟର୍, ବୁଦ୍ଧ, ମୋଜେସ୍, ଯୀଶୁ, ମହମ୍ମଦ, କୃ[redacted] ରାମ ଓ ଆଉ କେତେ ଅପେକ୍ଷାକୃତ ଶ୍ରେଷ୍ଠ ଶ୍ରେଷ୍ଠ ମହାପୁରୁଷଙ୍କଠାରୁ ।

ମାନବଜାତିକୁ ଏସିଆର ଯୁଗଯୁଗ ବ୍ୟାପୀ ସନ୍ଦେଶ କ'ଣ ତାହା ହୃଦୟଙ୍ଗମ କରିବା ନିମନ୍ତେ ଗାନ୍ଧୀ ସଦସ୍ୟମାନଙ୍କୁ ଆହ୍ୱାନ କରି କହିଲେ, ପାଶ୍ଚାତ୍ୟ ମାପକାଠିରେ ପାଣ୍ଡିତ୍ୟ ଅର୍ଜନ କରିବା ଏସିଆର ଆଦର୍ଶ ନୁହେଁ, କି ଆଣବିକ ବୋମାର ଆବିଷ୍କାର ବା ପ୍ରୟୋଗ କରି ପ୍ରତିପତ୍ତି ଅର୍ଜିବା ଏସିଆର କାମ୍ୟ ନୁହେ । ପାଶ୍ଚାତ୍ୟ ଦେଶମାନଙ୍କୁ ଆମର ଯଦି କୌଣସି ସନ୍ଦେଶ ଦେବାର ଥାଏ ତେବେ ତାହା ହେଉଛି ପ୍ରେମର ସନ୍ଦେଶ, ସତ୍ୟର ସନ୍ଦେଶ । ଏହା କହି ସେ ହଠାତ୍ ନିବେଦନ କଲେ, 'ମୁଁ ଆପଣମାନଙ୍କର ବୁଦ୍ଧି ଓ ବିଚାର ପାଇଁ ଖାଲି ଯେ ଏସବୁ ଉପସ୍ଥାପିତ କରୁଛି ତାହା ନୁହେଁ, ମୁଁ ଆପଣଙ୍କ ହୃଦୟ ଉପରେ ପ୍ରଭାବ ପକାଇବାକୁ ଚାହେଁ ।'

ସେ ଆଶା ପ୍ରକାଶ କଲେ ଯେ 'ଏସିଆର ପ୍ରେମ ଓ ସତ୍ୟର ସନ୍ଦେଶ ଦିନେ ପାଶ୍ଚାତ୍ୟ ଦେଶମାନଙ୍କ ମନକୁ ପ୍ରଭାବିତ କରିବ । ପାଶ୍ଚାତ୍ୟ ଦେଶମାନେ ବର୍ତ୍ତମାନ ସନାତନ ସତ୍ୟ ଓ ଜ୍ଞାନକୁ ଖୋଜି ହେଉଛନ୍ତି ।'

ଗାନ୍ଧୀଙ୍କର ଏ ଭାଷଣଟି ଭାଷଣର ଅଙ୍ଗ ସୌଷ୍ଠବଦୃଷ୍ଟିରୁ ଉଚ୍ଚ କୋଟିର ହୋଇ ନ ଥିଲା, କିନ୍ତୁ ଏ ଭାଷଣଟିରେ ବହୁତଗୁଡ଼ିଏ ଉଚ୍ଚ-କୋଟିର ଜ୍ଞାନ ସନ୍ନିବେଶିତ ହୋଇଥିଲା ଏବଂ ଗାନ୍ଧୀ ଦର୍ଶନର ମର୍ମ କଥା ଏଥିରେ ଥିଲା । ଏଡ଼େ ସରଳ ନିରାଡ଼ମ୍ବର ଭାଷାରେ, ହୃଦୟରୁ ବାହାରି-ଥିବା ଏଭଳି କଥା ସଦସ୍ୟମାନଙ୍କ ମଧ୍ୟରୁ ଅଧିକାଂଶ ବୋଧହୁଏ ବହୁଦିନ ହେଲା ଶୁଣି ନ ଥିଲେ ।

ମାର୍ଚ୍ଚ ୩୧ ଓ ଏପ୍ରିଲ ୧୨ ଭିତରେ ଗାନ୍ଧୀ ମାଉଣ୍ଟ୍‌ବ୍ୟାଟେନ୍‌ଙ୍କ ସଙ୍ଗେ ଛ'ଥର କଥାବାର୍ତ୍ତା ହୋଇଥିଲେ । ଜିନ୍ନା ମଧ୍ୟ ସେତିକି ଥର କଥାବାର୍ତ୍ତା କରିଥିଲେ । ଭାଇସ୍‌ରୟ ଖୁବ୍ କଠିନ ପରିଶ୍ରମ କରୁଥାନ୍ତି ।

କଥାବାର୍ତ୍ତା କେଉଁ ବିଷୟରେ ହୋଇଥିଲା ? ଲଣ୍ଡନର ରୟେଲ୍ ଏମ୍ପାୟାର୍ ସୋସାଇଟିର ପରିଷଦରେ ୧୯୪୮, ଅକ୍ଟୋବର୍ ୬ ତାରିଖରେ ମାଉଣ୍ଟ୍‌ବ୍ୟାଟେନ୍ ଭାଷଣ ଦେଇଥିଲେ । ସେ ଦିନକୁ ମାଉଣ୍ଟବ୍ୟାଟେନ୍ ଭାରତରେ ତାଙ୍କ କାର୍ଯ୍ୟ ଶେଷ କରିଥାନ୍ତି । ଗାନ୍ଧୀ ଓ ଜିନ୍ନାଙ୍କ ସଙ୍ଗେ ତାଙ୍କ କଥାବାର୍ତ୍ତା ବିଷୟରେ ସେ ସେଇ ଭାଷଣରେ କହିଥିଲେ, 'ମୁଁ ସେମାନଙ୍କୁ ଡ଼ାକିଛି, ସେମାନଙ୍କ ସଙ୍ଗେ ଏତୁ ତେଣୁ କଥାବାର୍ତ୍ତା ପକାଇ ସେମାନଙ୍କ

ପ୍ରକୃତ ବିଢ଼ବାକୁ ଆଗ ଚେଷ୍ଟା କରିଥିଲି । ଗାନ୍ଧୀଙ୍କଠାରୁ ଦକ୍ଷିଣ ଆଫ୍ରିକାରେ ତାଙ୍କ ରହଣିର ପ୍ରଥମ କେତେ ବର୍ଷର କଥା ଶୁଣିଲି; ଜିନ୍ନା ଲଣ୍ଡନରେ ପ୍ରଥମେ ଯାଇ ପହଁଚିବା ବେଳର କଥା କହିଲେ । ମୋ ପ୍ରଥମ ଜୀବନର କେତେକ କଥା ମଧ୍ୟ ମୁଁ ତାଙ୍କ ଦୁହିଁଙ୍କୁ ଶୁଣାଇଲି । ଏହିପରି କଥାବାର୍ତ୍ତା କରିବା ଫଳରେ, ସେମାନେ କି ପ୍ରକାରର ଲୋକ ଜାଣି, ମୁଁ ଭାରତୀୟ ସମସ୍ୟା ବିଷୟ ତାଙ୍କ ଆଗେ ଉତ୍‌ଥାପନ କଲି ।'

ସମସ୍ୟାଟି ଥିଲା ଗୁରୁତର ଓ ଜଟିଳ । ୪୦ କୋଟି ଲୋକଙ୍କର ଭବିଷ୍ୟତ, ଭାରତର ଭାଗ୍ୟ, ନା ସମଗ୍ର ଏସିଆର ଭାଗ୍ୟ ଏହି ସମସ୍ୟାର ସମାଧାନ ଉପରେ ନିର୍ଭର କରୁଥିଲା । ମାଉଣ୍ଟ୍‌ବ୍ୟାଟେନ୍‌ଙ୍କ ଉପରେ ଭାର ଦିଆ ହୋଇଥିଲା, ବ୍ରିଟେନ୍‌କୁ ଜୁନ୍ ୧୯୪୮ ପୂର୍ବରୁ ଭାରତର ଦାୟିତ୍ୱରୁ ମୁକ୍ତ କରିବା । ଏଥିପାଇଁ ବ୍ରିଟିଶ ସରକାର ଯେଉଁ କାର୍ଯ୍ୟସୂଚୀ ପ୍ରସ୍ତୁତ କରିଥିଲେ ତଦନୁସାରେ, ମାଉଣ୍ଟ୍‌ବ୍ୟାଟେନ୍ ୧୯୪୭ର ଶେଷ ସୁଦ୍ଧା ସମାଧାନର ସୂତ୍ର ବାହାର କରିବାର କଥା । ତାହା ହେଲେ ବ୍ରିଟିଶ ସରକାର ପାର୍ଲିଆମେଣ୍ଟ୍‌ରେ ଆବଶ୍ୟକ ଆଇନ୍ ପାସ୍ କରାଇ ଜୁନ, ୧୯୪୮ ପୂର୍ବରୁ ଭାରତକୁ ପୂର୍ଣ୍ଣ ମୁକ୍ତି ଦେବାକୁ ଯଥେଷ୍ଟ ସମୟ ପାଇବେ । କିନ୍ତୁ ମାଉଣ୍ଟ୍‌ବ୍ୟାଟେନ୍, ରୟେଲ ଏମ୍ପାୟାର୍ ସୋସାଇଟିର ପରିଷଦରେ କହିଲେ, ସେ ଭାରତକୁ ଯିବାପରେ ଦେଖିଲେ ବ୍ରିଟିଶ୍ ସରକାରଙ୍କ କାର୍ଯ୍ୟସୂଚୀ ଧରି ଚାଲିଲେ ଅଯଥା ବିଳମ୍ବ ହେବ ଏବଂ ବହୁ ଅନିଷ୍ଟ ଘଟିଯିବ । ମାଉଣ୍ଟ୍‌ବ୍ୟାଟେନଙ୍କ ପରାମର୍ଶଦାତାମାନେ ମଧ୍ୟ ସେଇ ମତ ଦେଲେ । ୧୯୪୬, ଅଗଷ୍ଟ ୧୬ତାରିଖକୁ ଜିନ୍ନା ପ୍ରତ୍ୟକ୍ଷ କର୍ମ ଦିବସ ବୋଲି ଘୋଷଣା କରିବାଠାରୁ ଭାରତରେ ଗଣ୍ଡଗୋଳ ଆରମ୍ଭ ହୋଇଥାଏ । ତା'ର ପରେ ପରେ ନୋଆଖାଲିରେ ହିନ୍ଦୁମାନଙ୍କର ସମୂହ ହତ୍ୟା, ଓ ତା'ର ପ୍ରତିକ୍ରିୟାରେ ବିହାରରେ ମୁସଲମାନଙ୍କ ଉପରେ ପ୍ରତିଶୋଧ; ତା' ପରେ ମୁସ୍‌ଲିମ୍‌ମାନେ ପଞ୍ଜାବର ରାଓଲପିଣ୍ଡିଠାରେ ୯ ହ ଶିଖଙ୍କୁ ହତ୍ୟା କଲେ; ତାପରେ ଲାଗିଲା ଉତ୍ତର ପଶ୍ଚିମ ସୀମାନ୍ତ ପ୍ରଦେଶରେ ଆନ୍ଦୋଳନ । ମାଉଣ୍ଟ୍‌ବ୍ୟାଟେନ୍ ଏସବୁ ଉଲ୍ଲେଖ କରି ତାଙ୍କ ଭାଷଣରେ କହିଲେ, 'ମୁଁ ଭାରତକୁ ଯାଇ ଦେଖିଲି, ହତ୍ୟା ଓ ହିଂସାକାଣ୍ଡର ପରିସର କ୍ଷିପ୍ରଗତିରେ ବଢ଼ି ଚାଲିଛି; ବୁଝିଲି, ଶୀଘ୍ର ଯଦି ଏହା ବନ୍ଦ କରି ନଯାଏ ତେବେ ଭାରତର କଳ୍ପନାତୀତ ବିପର୍ଯ୍ୟୟ ହୋଇଯିବ ।'

ତା'ପରେ ମାଉଣ୍ଟ୍‌ବ୍ୟାଟେନ୍ କହିଲେ, 'ମୋର ନିଜର [illegible]ବୋଧ ହୋଇଥିଲା ଯେ, କ୍ୟାବିନେଟ୍ ମିଶନ୍ ୧୯୪୬, ମେ ୧୬ ତାରିଖରେ ଯେଉଁ ଯୋଜନା କରିଥିଲେ ତଦନୁସାରେ ଭାରତକୁ ମିଳିତ ରାଷ୍ଟ୍ର କରି ରଖିଥିଲେ, ଭାରତର ହିନ୍ଦୁ ମୁସଲମାନ ଶିଖ୍ ପ୍ରଭୃତି ସମସ୍ତଙ୍କ ସମସ୍ୟାର ସୁସମାଧାନ ହୋଇଥାନ୍ତା ।' କିନ୍ତୁ ଏ ଯୋଜନା କାର୍ଯ୍ୟକାରୀ କରିବାକୁ ହେଲେ ପ୍ରତ୍ୟେକ ସଂପ୍ରଦାୟର ସଦ୍‌ଭାବ ଓ ସହଯୋଗ ରହିବା ଦରକାର । କିନ୍ତୁ, 'ଜିନ୍ନା ପ୍ରଥମରୁ ପରିଷ୍କାର ଭାବେ କହି ରଖିଥାନ୍ତି ଯେ ସେ ବଞ୍ଚିଥିବା ପର୍ଯ୍ୟନ୍ତ ଭାରତକୁ ଏକରାଷ୍ଟ୍ର କରିରଖିବାରେ କେବେ ରାଜି ହେବେ ନାହିଁ । ସେ ଭାରତ ଭାଗ ଭାଗ ହେଉ ବୋଲି ଚାହୁଁଥିଲେ, ଏବଂ ପାକିସ୍ଥାନର ପ୍ରତିଷ୍ଠା ବିଷୟରେ ଜିଦ୍ ଧରିଥିଲେ ।' ଅପରପକ୍ଷେ କଂଗ୍ରେସ ଚାହୁଁଥିଲା ଅବିଭକ୍ତ ଭାରତୀୟ ରାଷ୍ଟ୍ର । କିନ୍ତୁ, ମାଉଣ୍ଟ୍‌ବ୍ୟାଟେନ୍ ପ୍ରକାଶ କରିଥିଲେ, ଗୃହବିବାଦ ଏଡ଼ିବା ପାଇଁ କଂଗ୍ରେସ ନେତାମାନେ ଭାରତ ଭାଗ ଭାଗ ହେବା ପ୍ରସ୍ତାବକୁ ଗ୍ରହଣ କରିବା ସକାଶେ ରାଜି ହେଲେ । ଭାଇସ୍‌ରୟଙ୍କର 'ପୂର୍ଣ୍ଣ ବିଶ୍ୱାସ ହୋଇଥିଲା ଯେ (ଭାରତ ଭାଗ ଭାଗ ନ ହେଲେ) ମୁସ୍‌ଲିମ୍ ଲିଗ୍ ନିଶ୍ଚୟ ଲଢ଼ିଥାନ୍ତେ ।'

କିନ୍ତୁ ଭାରତ ଭାଗ ଭାଗ ହେବ କିପରି ? ବିସ୍ତୀର୍ଣ୍ଣ ଅମୁସଲମାନ ଅଞ୍ଚଳ ପାକିସ୍ଥାନର ଅନ୍ତର୍ଭୁକ୍ତ ହେଉ, ଏ ବିଷୟରେ କଂଗ୍ରେସ ଆଦୌ ରାଜି ହେଲେ ନାହିଁ । ମାଉଣ୍ଟ୍‌ବ୍ୟାଟେନ୍ କହିଲେ, 'ଏଥିରୁ ସ୍ୱତଃ ନିଷ୍ପତ୍ତି କରିବାକୁ ହେଲା ଯେ ପଞ୍ଜାବ ଓ ବଙ୍ଗ ଏହି ପ୍ରଧାନ ପ୍ରଦେଶ ଦୁଇଟିକୁ ଭାଗ ଭାଗ କରିବାକୁ ହେବ ।'

ରୟେଲ୍ ଏମ୍ପାୟାର ସୋସାଇଟି ସମକ୍ଷରେ କରିଥିବା ଏହି ଐତିହାସିକ ପର୍ଯ୍ୟାଲୋଚନାରେ ମାଉଣ୍ଟ୍‌ବ୍ୟାଟେନ୍ କହିଥିଲେ, 'କଂଗ୍ରେସ ଆପାତତଃ ଭାରତ ବିଭାଗରେ ରାଜି ବୋଲି ମୋତେ କହିଛନ୍ତି ଶୁଣି ଜିନ୍ନା ଖୁବ୍ ଖୁସି ହେଲେ । କିନ୍ତୁ ମୁଁ ଯେତେବେଳେ କହିଲି ଯେ ଭାରତ ବିଭାଗ କରିବାକୁ ହେଲେ ପଞ୍ଜାବ ଓ ବଙ୍ଗଳାକୁ ବିଭାଗ କରିବା ଯୁକ୍ତିଯୁକ୍ତ ହେବ, ସେତେବେଳେ ଜିନ୍ନା ଏକାବେଳକେ ବିବ୍ରତ ହୋଇ ପଡ଼ିଲେ । ଏ ଦୁଇଟି ପ୍ରଦେଶର ବିଭାଗ ବିରୁଦ୍ଧରେ ସେ ମୋ ଆଗେ ଖୁବ୍ ବଳବତ୍ତର ଯୁକ୍ତି ବାଢ଼ିଲେ । ସେ କହିଲେ, ଏ ଦୁଇଟି ପ୍ରଦେଶର ସ୍ୱତନ୍ତ୍ର ଜାତୀୟ ସଂହତି ଅଛି ; ଯାହାଙ୍କୁ ଭାଙ୍ଗି ଦେଲେ ସେ ସଂହତି ନଷ୍ଟଭ୍ରଷ୍ଟ ହୋଇଯିବ ।

ମୁଁ ... କଲି, କିନ୍ତୁ କହିଲି ଯେ ସେ ଯେଉଁ ଯୁକ୍ତି ସବୁ ବାଢ଼ିଲେ ତାହା ଶୁଣି ତ ଭାରତକୁ ବିଭାଗ କରିବା ଅତି ଅନିଷ୍ଟକର ହେବ ବୋଲି ମୁଁ ବିଚାରୁଛି । ମୋ କଥାର ବିରୋଧ କରି ସେ ଭାରତ ବିଭାଗର ଯୁକ୍ତିଯୁକ୍ତତା ବିଷୟରେ ଯୁକ୍ତି ବାଢ଼ିଲେ, ଓ ମୁଁ ତାଙ୍କର ଯୁକ୍ତି ଧରି ବଙ୍ଗ ଓ ପଞ୍ଜାବର ବିଭାଗ ଯୁକ୍ତିଯୁକ୍ତ ବୋଲି କହିଲି, ଏହିପରି ଆମେ ଦୁହେଁ ମେଡ଼ି ଗୁଡ଼ିଏ ଘଣ୍ଟା ଖୁବ୍ ବେଙ୍ଗଳା ବୁଲିଲୁଁ । ଶେଷରେ ସେ ବୁଝିଲେ ଯେ, ହୁଏତ ତାଙ୍କୁ ପଞ୍ଜାବ ଓ ବଙ୍ଗଳାକୁ ଭାଗ ଭାଗ ନ କରି ଏକୀଭୂତ ଭାରତରାଷ୍ଟ୍ରକୁ ଗ୍ରହଣ କରିବାକୁ ପଡ଼ିବ, କିମ୍ବା ଭାରତକୁ ଦୁଇଭାଗ କଲେ ବଙ୍ଗଳା ଓ ପଞ୍ଜାବ ଦୁଇଭାଗ ହେବାରେ ରାଜି ହେବାକୁ ହେବ । ବାଧ୍ୟ ହୋଇ ସେ ଦ୍ଵିତୀୟ ସମାଧାନ ଗ୍ରହଣ କଲେ ।

୧୯୪୭, ଏପ୍ରିଲରେ ଗାନ୍ଧୀ ଭାରତକୁ କୌଣସି ପ୍ରକାର ଖଣ୍ଡବିଖଣ୍ଡ କରିବାକୁ ରାଜି ହୋଇ ନ ଥିଲେ ଏବଂ ମଲା ପର୍ଯ୍ୟନ୍ତ ଭାରତର ବିଭାଗୀ-କରଣକୁ ସମର୍ଥନ କରି ନ ଥିଲେ ।

ଏପ୍ରିଲ ୧୫ ତାରିଖରେ, ମାଉଣ୍ଟ୍‌ବ୍ୟାଟେନ୍ ଅନୁରୋଧ କରିବାରୁ ଗାନ୍ଧୀ ଓ ଜିନ୍ନା ଦୁହେଁ ଗୋଟିଏ ମିଳିତ ବିବୃତି ଦେଇଥିଲେ । 'ସଂପ୍ରତି ଯେଉଁ ବେଆଇନ୍ ଓ ହିଂସାତ୍ମକ କାଣ୍ଡମାନ ଘଟି ଭାରତର ସୁନାମକୁ କଳଙ୍କିତ କରୁଛି' ତାକୁ ଏ ଦୁହେଁ ଏ ବିବୃତିରେ ନିନ୍ଦା କରିଥିଲେ ଏବଂ 'ରାଜନୀତିକ ଉଦ୍ଦେଶ୍ୟ ସାଧନ କରିବାକୁ କସ୍ମିନ୍‌କାଳେ ବଳପ୍ରୟୋଗ ବା ହିଂସାକାଣ୍ଡ'ର ଆଶ୍ରୟ ନେବା ଉଚିତ ନୁହେଁ ବୋଲି ଦୃଢ଼ଭାବେ ଘୋଷଣା କରିଥିଲେ । ତାଙ୍କର ରାଜନୀତିକ ଉଦ୍ଦେଶ୍ୟ ସାଧିତ ନ ହେଲେ ଭାରତ ଗୃହବିବାଦ ଓ ହାଣକାଟରେ ଛିନ୍ନଛିନ୍ନ ହୋଇଯିବ ବୋଲି ପକ୍ଷେକାଳ ଲାଗି ମାଉଣ୍ଟ୍‌ବ୍ୟାଟେନ୍‌ଙ୍କର ହୃଦ୍‌ବୋଧ କରାଇବା ପରେ, ଜିନ୍ନା ଏଭଳି ବିବୃତିରେ ଦସ୍ତଖତ କରିଥିଲେ !

ଏହି ପକ୍ଷକଯାକ ଗାନ୍ଧୀ ଦିଲ୍ଲୀ କିଙ୍ଗ୍‌ସ୍‌ୱେର ହରିଜନବସ୍ତିରେ ବାସ କରିଥିଲେ ଏବଂ ସେଠାରେ ପ୍ରତି ସଂଧ୍ୟାରେ ପ୍ରାର୍ଥନା ସଭା କରିଥିଲେ । କୋରାନରୁ କେତେକ ଅଂଶ ସଭାରେ ପାରାୟଣ କଲେ କାହାର କୌଣସି ଆପତ୍ତି ଅଛି କି ବୋଲି ସେ ପ୍ରଥମ ସନ୍ଧ୍ୟାର ସଭାରେ ପଚାରିଥିଲେ । ସଭାରେ ଉପସ୍ଥିତ ବହୁ ଲୋକ ଆପତ୍ତି ଅଛି ବୋଲି ଜଣାଇ ହାତ ଟେକିଲେ । ସେମାନେ କହିଲେ, ହିନ୍ଦୁଙ୍କ ପ୍ରାର୍ଥନା ସଭାରେ ଇସ୍‌ଲାମ୍

ଧର୍ମପୁସ୍ତକରୁ ପାରାୟଣ କରିବା ଅଧିକାର ଗାନ୍ଧୀଙ୍କର ନାହିଁ । ତହୁଁ [illegible] ପ୍ରାର୍ଥନା ସଭା ଭାଙ୍ଗିଦେଲେ । ଦ୍ୱିତୀୟ ସନ୍ଧ୍ୟାରେ ସଭାରେ ସେ ପୁଣି ସେଇ ପ୍ରଶ୍ନକଲେ, ପୁଣି ଆପତ୍ତି ଉଠିଲା, ଏବଂ ପୁଣି ସେ ଏ ସଭାରେ ଉପାସନା କରିବେ ନାହିଁ ବୋଲି ନାହିଁକରି ସଭା ଭାଙ୍ଗି ଲେଲେ । ତୃତୀୟ ସଂଧ୍ୟାରେ ପୁଣି ସେଇଆ ହେଲା ।

ଚତୁର୍ଥ ସଂଧ୍ୟାରେ କେହି ଆପତ୍ତି କଲେ ନାହିଁ । ଆପାତତଃ ଆପତ୍ତିକାରୀମାନେ ଏ ସଭାକୁ ବର୍ଜନ କରି ଦେଇଥିଲେ । ଚତୁର୍ଥ ଦିନ କେହି ଆପତ୍ତି ନ ଉଠାଇବାରେ ଗାନ୍ଧୀ କହିଲେ, ପୂର୍ବର ତିନି ଦିନଯାକ କେତେଜଣଙ୍କ ପରିବର୍ତ୍ତେ ସଭାରେ ସମସ୍ତେ ଯଦି କୋରାନ ପାଠ କରିବା ବିରୁଦ୍ଧରେ ମତ ଦେଇଥାନ୍ତେ, ତେବେ ସେ କୋରାନ୍ ପାରାୟଣ କରିଥାନ୍ତେ । 'ଆପତ୍ତିକାରୀମାନେ ତାଙ୍କୁ ମାରିଦେବାକୁ ଉଦ୍ୟତ ହେଲେ ବି ସେ ଭଗବାନଙ୍କ ନାମ ବ୍ୟାହୃତି କରି କରି ସେମାନଙ୍କ ହାତରେ ମରିବାକୁ ପ୍ରସ୍ତୁତ ଥିଲେ । କିନ୍ତୁ ସଭାର ଲୋକେ ଦୁଇଦଳ ହୋଇଗଲେ । କେତେଜଣ କୋରାନ ପାଠ କରିବାରେ ଆପତ୍ତି ଉଠାଇଲେ, ଅନ୍ୟମାନେ ତାହା ପାଠ କରାଯାଉ ବୋଲି ମତ ଦେଲେ । ଉଭୟଙ୍କ ମଧ୍ୟରେ ସଂଘର୍ଷ ଲାଗିଯିବା ଉପକ୍ରମରେ ସେ କୋରାନ ପାଠ ନ କରି ପ୍ରାର୍ଥନା ସଭା ଭାଙ୍ଗି ଦେଇଥିଲେ । ଯାହାହେଉ ଆଜି ଦେଖାଯାଉଛି, ଅହିଂସାର ଜୟ ହୋଇଛି ।'

ଏଇ ସମୟରେ ଗାନ୍ଧୀଜୀ ବହୁ କ୍ରୋଧାନ୍ୱିତ ଓ ଧମକପୂର୍ଣ୍ଣ ଚିଠି ପାଇଥିଲେ । ଏଥିରୁ କେତେକ ଚିଠି ଥିଲା ବେନାମୀ । ଗୋଟିଏ ଚିଠିରେ ଅଭିଯୋଗ ହୋଇଥିଲା ଯେ ଗାନ୍ଧୀ ଜଣେ ବିଧର୍ମୀ ହିନ୍ଦୁ; ଆଉ ଗୋଟିକରେ ଥିଲା, ସେ ଜଣେ ମୁସ୍‌ଲିମ୍ ପଞ୍ଚମବାହିନୀର ଲୋକ, ହିନ୍ଦୁବୋଲି ପରିଚୟ ଦେଉଥିବା ପ୍ରଚ୍ଛନ୍ନ ମୁସ୍‌ଲିମ୍ । ତୃତୀୟ ଚିଠିରେ ତାଙ୍କୁ 'ମହମଦ୍ ଗାନ୍ଧୀ' ବୋଲି ସମ୍ବୋଧନ କରାହୋଇଥିଲା ।

ଗାନ୍ଧୀ ଏ ସବୁ ଚିଠି କଥା ଉଲ୍ଲେଖ କରି ପ୍ରତିଯୁକ୍ତି କଲେ, 'ଭଗବାନଙ୍କର ନାମ ଆରବ୍ ଭାଷାରେ ନେଲି ବୋଲି ପାପ କାହିଁକି ହେବ ?' ହିନ୍ଦୁ-ମୁସ୍‌ଲିମ୍ ମୈତ୍ରୀ ଥିଲା ଗାନ୍ଧୀଙ୍କ ଜୀବନର ଲକ୍ଷ୍ୟ । 'ଯଦି ହିନ୍ଦୁସ୍ଥାନ କେବଳ ହିନ୍ଦୁଙ୍କର ଦେଶ, ଓ ପାକିସ୍ଥାନ କେବଳ ମୁସ୍‌ଲିମ୍‌ଙ୍କର ଦେଶ ହୋଇ ରହେ ତେବେ ଏ ଦୁଇ ଦେଶରୁ ଖାଲି ବିଷ ଝରିବ ।'

ଏପ୍ରିଲ୍ ୧୩ ତାରିଖରେ ଗାନ୍ଧୀ ବିହାରକୁ ଫେରିଗଲେ ।

ବର୍ତ୍ତମାନ ପରିସ୍ଥିତିରେ ଅହିଂସାର ପ୍ରଚାର କରିବା ଓ ସାଂପ୍ରଦାୟିକ ବିଦ୍ୱେଷ ଦୂରକରିବା ଏକମାତ୍ର ସାର୍ଥକ ରାଜନୀତିକ କାର୍ଯ୍ୟ ବୋଲି ଗାନ୍ଧୀ ମନେ କରୁଥାନ୍ତି । ହିନ୍ଦୁ ଓ ମୁସ୍‌ଲିମ୍ ଏକ ସଙ୍ଗେ ଶାନ୍ତିରେ ବାସ କରୁଛନ୍ତି ବୋଲି ଯଦି ସେ ପ୍ରତ୍ୟକ୍ଷଭାବେ ପ୍ରମାଣ କରି ନ ପାରିବେ, ତେବେ ଜିନ୍ନାଙ୍କ ସନ୍ଦେହ ଯଥାର୍ଥ ବୋଲି ପ୍ରମାଣିତ ହେବ ଏବଂ ପାକିସ୍ଥାନ ଅବଶ୍ୟଂଭାବୀ ହୋଇପଡ଼ିବ । ଭାରତ ବିଭାଗ ବିରୁଦ୍ଧରେ ଯେତେ ଚମତ୍କାର ଯୁକ୍ତି ଦେଖାଇଲେ ବି ମାଉଣ୍ଟ୍‌ବ୍ୟାଟେନ୍ ବଶ ହୋଇଯିବେ ନାହିଁ । ହିନ୍ଦୁ ମୁସ୍‌ଲିମ୍ ସୌହାର୍ଦ୍ଦ୍ୟର ସୁସ୍ପଷ୍ଟ ପ୍ରମାଣ ଦେବାକୁ ହେବ ।

ମାଉଣ୍ଟ୍‌ବ୍ୟାଟେନ୍ ଓ ବି୍ଟେନ୍‌ର ମତ, ଓ କଂଗ୍ରେସର ଯେଉଁ ନେତାମାନେ ଅଖଣ୍ଡ ଭାରତର ଆଶା ହରାଇଥାନ୍ତି ସେମାନଙ୍କ ମନୋବୃତ୍ତି ବିରୁଦ୍ଧରେ ଗାନ୍ଧୀ ଯେଉଁ ଯୁଦ୍ଧ ଲଗାଇଥାନ୍ତି ତହିଁରେ ଯଶସ୍ୱୀ ହେବାକୁ ହେଲେ ବିହାର, ବଙ୍ଗଳା ବା ପଞ୍ଜାବରେ ଅହିଂସାର ଜୟ ହେବା ଦରକାର । ଏ କ୍ଷେତ୍ରରେ ଲୋକଙ୍କୁ ଗୋଟାଏ ବିଷମ ସମସ୍ୟାର ସମାଧାନ କରିବାକୁ ହେବ— ସେମାନଙ୍କ ଭୋଟ ଦ୍ୱାରା ନୁହେଁ, ସେମାନଙ୍କ ଆଚରଣ ଦ୍ୱାରା । ଗାନ୍ଧୀଙ୍କର ଅଦ୍ୟାପି ବିଶ୍ୱାସ ଥାଏ, ସେ ଲୋକଙ୍କର ଆଚରଣ ବଦଳାଇ ଦେଇ ପାରିବେ । ବର୍ତ୍ତମାନର ଅସଲ ପ୍ରଶ୍ନ : ଭାରତ-ବର୍ଷ କ'ଣ ଗୋଟିଏ ଜାତି ନା ବିବଦମାନ ଧର୍ମସଂପ୍ରଦାୟମାନେ ବାସ କରୁଥିବା ଏକ ଦେଶ ?

ଅତୀତ ଶତାବ୍ଦୀମାନଙ୍କର ପ୍ରଭାବ ବର୍ତ୍ତମାନ ଉପରେ ପଡ଼େ । ସମଗ୍ର ପୃଥିବୀ ପ୍ରତି ଏହା ଗୋଟିଏ ସବୁଠାରୁ ଜଘନ୍ୟ ଅଭିଶାପ । ଭାରତରେ ସପ୍ତଦଶ, ଅଷ୍ଟାଦଶ ଓ ଊନବିଂଶ ଶତାବ୍ଦୀର ପ୍ରଭାବ ଜୀବନ୍ତ ରହି ବିଂଶ-ଶତାବ୍ଦୀକୁ ଜର୍ଜରିତ କରୁଛି । ଆଧୁନିକ ଯୁଗର ଶିଳ୍ପ ବିପ୍ଳବ ଓ ଜାତୀୟତା ଭାବର ଉନ୍ମେଷ ପୂର୍ବରୁ ଧର୍ମାନ୍ଧତା, ପ୍ରାଦେଶିକତା, କ୍ଷୁଦ୍ର କ୍ଷୁଦ୍ର ରାଜାମାନଙ୍କ ପ୍ରତି ଆନୁଗତ୍ୟ, ଇଉରୋପକୁ ଯେପରି ଦୁର୍ବଳ ଓ ଭେଦଭାବ-କ୍ଳାନ୍ତ କରି ଦେଇଥିଲା, ଭାରତର ଅବସ୍ଥା ବର୍ତ୍ତମାନ ସେହିପରି ହୋଇଥାଏ । ଭାରତର ୪୦ କୋଟି ଲୋକଙ୍କ ଭିତରେ ମୋଟେ ୩୦ ଲକ୍ଷ ଶିଳ୍ପକାରଖାନାର ଶ୍ରମିକ । ଦେଶରେ ସଂହତିର ଅଭାବ, ଅଥଚ ସଂହତି ଆଣିବାକୁ ଲୋକଙ୍କ ଉପରେ ଯଥେଷ୍ଟ ପ୍ରଭାବ ପକାଇବା ଭଳି ନେତା କେହି ନ ଥାନ୍ତି । ଅନୁନ୍ନତ ଦେଶର ଲୋକଙ୍କ ଭିତରେ ନାନା କାରଣରୁ ପରସ୍ପରଠାରୁ ବିଚ୍ଛିନ୍ନ

ହେବାର କାରଣ ସବୁବେଳେ ଘଟୁଥାଏ ; ଏ ଗତି ରୋକି ସମସ୍ତଙ୍କୁ ଏକତ୍ରିତ କରିବା ସକାଶେ ଯେଭଳି ପ୍ରବଳ ଜାତୀୟ ଚେତନା ଦରକାର, ଭାରତବର୍ଷରେ ତାହାର ଉନ୍ମେଷ ସେ ଯାଏଁ ହୋଇ ନ ଥାଏ । ସମସ୍ତଙ୍କୁ ଜାତୀୟ ଭାବରେ ଉଦ୍‌ବୁଦ୍ଧ କରି ଏକ କରିବାକୁ ସମସ୍ତଙ୍କଠାରୁ ପ୍ରଭାବଶାଳୀ ନେତା ସେତେବେଳର ଭାରତରେ ଏକମାତ୍ର ମହାତ୍ମାଗାନ୍ଧୀ ; କିନ୍ତୁ ସେ ଦୂର ଅତୀତର ପ୍ରଭାବରୁ ମୁକ୍ତ ନ ଥାନ୍ତି, ସମସ୍ୟାମୟ ବର୍ତ୍ତମାନରେ ଘାଣ୍ଟି ହେଉଥାନ୍ତି, ଏବଂ ଏତେ ଉଚ୍ଚ ଆଦର୍ଶ ଧରିଥାନ୍ତି ଯାହାକୁ ଗ୍ରହଣ କରିବାକୁ ବର୍ତ୍ତମାନର ପରିସ୍ଥିତି ଅନୁକୂଳ ନ ଥାଏ ।

ଜିନ୍ନାଙ୍କର ଏକମାତ୍ର ବଳ, ଗୃହ ବିବାଦର ଧମକ । ଯେଉଁ ଦଙ୍ଗାଗୋଳ ସବୁ ହୋଇଯାଇଥାଏ, ତହିଁରୁ ଏହି ଗୃହବିବାଦର ପୂର୍ବାଭାସ ମିଳୁଥାଏ । ଭାରତର ଏକତା ରକ୍ଷା କରିବାର ଏକମାତ୍ର ଆଶା ଥାଏ, ଲୋକଙ୍କୁ ହିଂସା ଓ ବିଦ୍ୱେଷରୁ ନିବର୍ତ୍ତାଇ ରଖିବାରେ । ଲୋକେ ଶାନ୍ତ ରହିଲେ ଜିନ୍ନାଙ୍କ ଗୃହବିବାଦ ଧମକ ବୃଥା ବୋଲି ପ୍ରମାଣିତ ହୁଅନ୍ତା ।

ଗାନ୍ଧୀ ଏହି କାର୍ଯ୍ୟରେ ଏକାକୀ, କିନ୍ତୁ ହତୋତ୍ସାହ ନ ହୋଇ ଲାଗିଗଲେ ।

ଭାରତ ଏକ ଜାତି କି ନୁହେଁ ପ୍ରମାଣ କରିଦେବାକୁ ଇତିହାସ ଆହ୍ୱାନ କରୁଥାଏ ।

---

## ସପ୍ତଦଶ ପରିଚ୍ଛେଦ

### ବିଷାଦମୟ ବିଜୟ

ଏପ୍ରିଲ୍ ମାସରେ ବିହାରରେ ଭାରି ଗରମ । ଏ ଗରମରେ ବିହାରର ଗ୍ରାମମାନଙ୍କରେ ବେଶୀ ଗସ୍ତ କରିବାର ପରିଶ୍ରମ ଗାନ୍ଧୀଙ୍କ ପକ୍ଷରେ ଅସହ୍ୟ ହେଉଥାଏ । କିନ୍ତୁ କରାଯାଏ କ'ଣ ? ଯଦି ହିନ୍ଦୁମାନେ ନିଜର ଦୁଷ୍କୃତି ପାଇଁ ଅନୁତାପ ନ କରନ୍ତି, ଏବଂ ଉପୁରେ ଘରଗୁଡ଼ି ପକାଇ ଯାଇଥିବା ମୁସ୍‌ଲିମ୍‌ମାନଙ୍କୁ ଫେରାଇ ନ ଆଣନ୍ତି, ତେବେ ତାଙ୍କୁ ଗରମ ସତ୍ତ୍ୱେ ଗସ୍ତ କରିବାକୁ ହେବ ହିଁ ହେବ । ସେ ଖଣ୍ଡିଏ ଚିଠି ପାଇଲେ, ଯେଉଁଥିରେ ତାଙ୍କୁ ପରାମର୍ଶ ଦିଆ ହୋଇଥିଲା କି, ସେ କୃଷ୍ଣଙ୍କ ପରି ଏ ଶେଷ ଜୀବନରେ ବଣକୁ ଚାଲିଯାନ୍ତୁ ; ତାଙ୍କ ଅହିଂସା ନୀତିରେ ଦେଶର ଆଉ ଆସ୍ଥା ନାହିଁ ; ଆହୁରି ମଧ୍ୟ, ଗାନ୍ଧୀ ଯେଉଁ ଭଗବଦ୍‌ଗୀତାକୁ ମାନନ୍ତି ତାହା ବି ଗାନ୍ଧୀଙ୍କ ଅହିଂସାର ନିର୍ଦ୍ଦେଶ ଦେଇନାହିଁ । ଗାନ୍ଧୀ ପାଟଣାରେ ତାଙ୍କ ଉପାସନା-ସଭାରେ ଏ ଚିଠିର ଉଲ୍ଲେଖ କରିଥିଲେ ।

ଏହି ସମୟରେ ଗାନ୍ଧୀ ଶୁଣିଥିଲେ ଯେ ନୋଆଖାଲିରେ ପୁଣି ଗୋଳ ହୋଇଛି ।

ଏ ସବୁ ସତ୍ତ୍ୱେ ଏଭଳି କେତେକ ଘଟଣା ଘଟୁଥାଏ, ଯାହା ଯୋଗୁଁ ଗାନ୍ଧୀଜୀ ଉତ୍ସାହିତ ହେଉଥାନ୍ତି । ଗାନ୍ଧୀଙ୍କ ନିର୍ଦ୍ଦେଶରେ ଜେନେରାଲ୍ ଶାହ ନବାଜ ବିହାରରେ ରହିଥିଲେ । ସେ ଜଣେ ମୁସ୍‌ଲିମ୍ ଓ ସୁଭାଷ ବୋଷଙ୍କ ଭାରତୀୟ ଜାତୀୟ ବାହିନୀର ଜଣେ ସେନାପତି ଭାବେ ଖ୍ୟାତି ଅର୍ଜିଥିଲେ । ଗାନ୍ଧୀ ବିହାରକୁ ଫେରିବା ପରେ ଶାହ ନବାଜ ତାଙ୍କୁ ଜଣାଇଲେ ଯେ ମୁସ୍‌ଲିମ୍‌ମାନେ ତାଙ୍କ ଗାଁମାନଙ୍କୁ ଫେରିବାକୁ ଆରମ୍ଭ କରିଛନ୍ତି ଏବଂ ହିନ୍ଦୁ ଓ ଶିଖ୍‌ମାନେ ସେମାନଙ୍କୁ ସାହାଯ୍ୟ କରୁଛନ୍ତି । ଜଣେ ଶିଖ୍‌ଙ୍କୁ ମୁସଲିମ୍‌ମାନେ ତାଙ୍କ ମସ୍‌ଜିଦ୍‌କୁ ନିମନ୍ତ୍ରଣ କରିଥିଲେ ।

ଏ ଖବର ପାଇ ଗାନ୍ଧୀ ଅନୁଭବ କଲେ, 'ହିନ୍ଦୁମାନେ ଯଦି ଅଚ୍ଛା ହିନ୍ଦୁ ହୋଇ ବିପର୍ଯ୍ୟସ୍ତ ମୁସ୍‌ଲିମ୍‌ମାନଙ୍କୁ ସାହାଯ୍ୟ କରନ୍ତି, ତେବେ ଗୃହଆଡ଼କୁ ଜାଳଦେବା ଭଳି ଯେଉଁ ନିଆଁ ବାହାରିଛି, ତାହା ବନ୍ଦ ହୋଇଯିବ ।' ବିହାର ଗୋଟିଏ ବଡ଼ ପ୍ରଦେଶ । ଏହାର ଆଦର୍ଶ ନିଶ୍ଚୟ ଅନ୍ୟମାନଙ୍କୁ ପ୍ରଭାବିତ କରିବ । ବିହାରରେ ଶାନ୍ତି ପୁନଃ ପ୍ରତିଷ୍ଠିତ ହେଲେ, କଲିକତାର ଓ ଅନ୍ୟ ସ୍ଥାନମାନଙ୍କର ଗଣ୍ଡଗୋଳ 'ମିଳେଇ' ଯିବ । ଗାନ୍ଧୀ କହିଲେ ତାଙ୍କ ମା' 'ଜଣେ ନିରକ୍ଷର ଗାଉଁଲି ସ୍ତ୍ରୀଲୋକ' ତାଙ୍କୁ ଶିଖାଇଥିଲେ ଯେ, ପରମାଣୁରେ ବ୍ରହ୍ମାଣ୍ଡ ପ୍ରତିବିମ୍ବିତ ହୁଏ; ସେ ଯଦି ନିଜର ବେଷ୍ଟନୀକୁ ସଜାଡ଼ି ନେବେ, ତେବେ ବ୍ରହ୍ମାଣ୍ଡ ଆପେ ଆପେ ସଜାଡ଼ି ହୋଇଯିବ ।

ଦିଲ୍ଲୀକୁ ଫେରିବା ପାଇଁ ନେହେରୁ ଗାନ୍ଧୀଙ୍କ ପାଖକୁ ଟେଲିଗ୍ରାମ କଲେ । ମେ, ପହିଲା ତାରିଖରେ କଂଗ୍ରେସ କାର୍ଯ୍ୟକାରୀ କମିଟି ବସି ଗୋଟାଏ ଗୁରୁତର ନିଷ୍ପତ୍ତି କରିବାର ଥାଏ । ଗାନ୍ଧୀ ନିର୍ଧୂମ ଖରାଦିନେ ରେଳ ଯୋଗେ ପାଟଣାଠାରୁ ଦିଲ୍ଲୀ ପାଞ୍ଚଶ ମାଇଲ୍ ଯାତ୍ରା କଲେ ।

ଇତିମଧ୍ୟରେ ମାଉଣ୍ଟ୍‌ବ୍ୟାଟେନ୍ ଖୁବ୍ ପରିଶ୍ରମ କରୁଥାନ୍ତି । ସେ ବିଭିନ୍ନ ପ୍ରଦେଶକୁ ଗସ୍ତ କରି ନେତାମାନଙ୍କ ସହିତ କଥାବାର୍ତ୍ତା କରୁଥାନ୍ତି, ଏବଂ ଭାରତର ଭବିଷ୍ୟତ ସମସ୍ୟାମାନଙ୍କ ବିଷୟରେ ଖବର ସଂଗ୍ରହ କରୁଥାନ୍ତି । ତାଙ୍କର ଚିନ୍ତା ଯେତେ ଯେତେ ପାକଳ ହେଲା, ସେ ବୁଝିଲେ ଯେ, ପାକିସ୍ଥାନ ବ୍ୟତୀତ ଅନ୍ୟ ଗତି ନାହିଁ ।

ମାଉଣ୍ଟ୍‌ବ୍ୟାଟେନ୍ ଏହି ସିଦ୍ଧାନ୍ତ କରି କଂଗ୍ରେସ ଦଳକୁ ପଚାରିଲେ : ଭାରତ-ବିଭାଗରେ ଏମାନେ ରାଜି ନା ନାହିଁ ? ଏପ୍ରିଲ୍ ୨୧ ତାରିଖରେ ଯୁକ୍ତ ପ୍ରଦେଶର ରାଜନୀତିକ ସମ୍ମିଳନୀରେ ନେହେରୁ କହି ସାରିଥାନ୍ତି, 'ଯଦି ମୁସ୍‌ଲିମ୍‌ଲିଗ୍ ଚାହାନ୍ତି ପାକିସ୍ଥାନ ହେଉ; କିନ୍ତୁ ଏଇ ସର୍ତ୍ତରେ ଯେ ଭାରତର ଯେଉଁ ଅଞ୍ଚଳ ସବୁ ପାକିସ୍ଥାନରେ ମିଶିବାକୁ ନ ଚାହାନ୍ତି ସେଭଳି କୌଣସି ଅଞ୍ଚଳ ପାକିସ୍ଥାନରେ ମିଶୁ ବୋଲି ମୁସ୍‌ଲିମ୍ ଲିଗ୍ ଦାବି କରି ପାରିବେ ନାହିଁ ।'

କଂଗ୍ରେସ କାର୍ଯ୍ୟକାରୀ କମିଟି ନେହେରୁଙ୍କର ଏ ମତ ସମର୍ଥନ କରିବେ ନାହିଁ ?

ଗାନ୍ଧୀ ଏ ମତର ବିରୋଧୀ ଥିଲେ । ପଟେଲ ଦୋଦୋପାଞ୍ଚ ହେଉଥିଲେ । ଜିନ୍ନାଙ୍କ ଧମକ୍ କାର୍ଯ୍ୟରେ ଦେଖାନ୍ତୁ ବୋଲି ତାଙ୍କର ଇଚ୍ଛା ଥିଲା । ସେ ବିଚାରୁଥିଲେ, କେନ୍ଦ୍ର ସରକାରର ଶକ୍ତିବଳରେ ସେ ମୁସଲିମ୍-ମାନଙ୍କ ଦୌରାତ୍ମ୍ୟର ମୁକାବିଲା କରିବେ । କିନ୍ତୁ ଶେଷରେ ସେ ବି ପାକିସ୍ଥାନ ପ୍ରସ୍ତାବରେ ମଙ୍ଗିଗଲେ । ଦୁଇବର୍ଷ ଛ ମାସ ପରେ ସେ ଏହାର କାରଣ କହିଥିଲେ, 'ଯେତେବେଳେ ଏଭଳି ଅବସ୍ଥା ଆସି ପହଞ୍ଚିଲା ଯେ ଅଖଣ୍ଡ ଭାରତ ପାଇଁ ଜିଦ୍ କରୁ କରୁ ସର୍ବସ୍ୱ ହରାଇବାକୁ ପଡ଼ିବ, ସେତେବେଳେ ମୁଁ ଭାରତବିଭାଗରେ ମଙ୍ଗିଗଲି ।' ଗୃହବିବାଦର ସମ୍ମୁଖୀନ ହେବାକୁ ପଡ଼ିପାରେ, ସ୍ୱାଧୀନତା-ପ୍ରାପ୍ତିର ଆଶା ସମୂଳେ ଲୋପହୋଇ ଯାଇପାରେ— ଏଇ ଭୟରେ କଂଗ୍ରେସ ପାକିସ୍ଥାନ ଗଠନ ପ୍ରସ୍ତାବରେ ମଙ୍ଗିଗଲା ।

ସ୍ୱାଧୀନତାର ବିନିମୟରେ କଂଗ୍ରେସ ପାକିସ୍ଥାନରୂପ ଚଡ଼ା ମୂଲ୍ୟ ଦେବାକୁ ବାଧ ହେଲା ।

ଗାନ୍ଧୀଜୀ ନିଜର କ୍ଷୋଭ ଓ ଅସନ୍ତୋଷକୁ ଗୋପନ କରି ରଖିଲେ ନାହିଁ । ମେ, ସାତ ତାରିଖରେ ଦିଲ୍ଲୀର ହରିଜନ ବସ୍ତିରେ ହୋଇଥିବା ପ୍ରାର୍ଥନା-ସଭାରେ ସେ ପ୍ରକାଶ କଲେ, 'କଂଗ୍ରେସ ପାକିସ୍ଥାନ ଦାବି ଗ୍ରହଣ କରିଛି, ଏବଂ ପଞ୍ଜାବ ଓ ବଙ୍ଗ ପ୍ରଦେଶ ଭାଗ ଭାଗ ହେଉ ବୋଲି ଦାବି କରିଛି । ମୁଁ ସବୁବେଳେ ଭାରତ-ବିଭାଗର ବିରୋଧୀ ଥିଲି, ଆଜି ବି କୌଣସି ପ୍ରକାରରେ ଭାରତ ଖଣ୍ଡ ଖଣ୍ଡ ହେବାର ବିରୋଧ କରୁଛି । କିନ୍ତୁ ମୋର ସ୍ଥିର୍ କ'ଣ ? ମୋର ଯେତିକି କରିବାର ସଂଭବ ମୁଁ କରିଛି । ମୁଁ ଏ ଭାରତ ବିଭାଗ ପରିକଳ୍ପନାରୁ ଆଡ଼େଇ ହୋଇ ଯାଇଛି । ଭଗବାନଙ୍କ ବ୍ୟତୀତ କେହି ମୋତେ ଏଭଳି ପ୍ରସ୍ତାବରେ ମଙ୍ଗାଇ ପାରିବେ ନାହିଁ ।'

ଗାନ୍ଧୀ ମାଉଣ୍ଟ୍‌ବ୍ୟାଟେନ୍‌ଙ୍କ ସଙ୍ଗେ ସାକ୍ଷାତ୍ କରିବାକୁ ଗଲେ । ସେ ପରାମର୍ଶ ଦେଲେ, ବ୍ରିଟିଶ୍ ସରକାର ତାଙ୍କ ସୈନ୍ୟସାମନ୍ତ ଧରି ଭାରତରୁ ବାହାରିଯା'ନ୍ତୁ, ଓ 'ଅନିର୍ଦ୍ଦିଷ୍ଟ ଭବିଷ୍ୟତ ଗର୍ଭରେ ଭାରତକୁ ଛାଡ଼ି ଦିଅନ୍ତୁ, ଗଣ୍ଡଗୋଳ ହେଉ ବା ଅରାଜକତା ହେଉ ।' ଗାନ୍ଧୀ କହିଲେ, ଯଦି ବ୍ରିଟିଶରାଜ ଭାରତକୁ ଏଭଳି ଛାଡ଼ିଯାଏ, ତେବେ ହୁଏତ କିଛିକାଳ ପାଇଁ ବିଭ୍ରାଟ ଲାଗି ରହିବ; 'ହୁଏତ ଆମକୁ ଅଗ୍ନିପରୀକ୍ଷାର ସମ୍ମୁଖୀନ ହେବାକୁ ପଡ଼ିବ, କିନ୍ତୁ ଏ ଅଗ୍ନି-ପରୀକ୍ଷାରେ ଆମେ ଶୁଦ୍ଧ, ନିଷ୍କଳଙ୍କ ହୋଇ-ଯିବା ।'

ମାଉଣ୍ଟ୍‌ବ୍ୟାଟେନ୍‌ଙ୍କର ନଗ୍ନ-ବସ୍ତୁନିଷ୍ଠ ସାମରିକ ମନୋବୃତ୍ତି; ସେ ଏଭଳି ଅନିଶ୍ଚିତ ସଂଭାବନା ଉପରେ ଭବିଷ୍ୟତକୁ ଛାଡ଼ି ଦେବାକୁ ରାଜି ହେଲେ ନାହିଁ । କିନ୍ତୁ ଖାଲି ଯେ ଅଧିକାଂଶ ଲୋକେ ନିଜର ବ୍ୟକ୍ତିଗତ ସୁଖ ଦୁଃଖ ଦୈବ ଉପରେ ଛାଡ଼ି ଦିଅନ୍ତି ତାହା ନୁହେଁ, ଯୁଦ୍ଧ ବେଳେ ରାଷ୍ଟ୍ର-ମାନେ ତ ଅନିଶ୍ଚିତ ସଂଭାବନାରେ ଜୁଆ ଖେଳିଲା ପରି ନିଜ ସେନାଙ୍କ ଜୀବନକୁ ଯୁଦ୍ଧଭୂମିରେ ପାଣି ଛଡ଼େଇ ଦିଅନ୍ତି । ପ୍ରତ୍ୟେକ ଯୁଦ୍ଧରେ ବୁଝି ବିଚାରି ଅନିଶ୍ଚିତ ସଂଭାବନାରେ ଲଢ଼ିବାକୁ ହୁଏ । ଯାହା ବା ବିଚାର ଓ ବୁଝାବୁଝି ହୁଏ ତାହା ପୂରାପୂରି କଳ୍ପନାସର୍ବସ୍ୱ । ଗାନ୍ଧୀଙ୍କ ମତରେ ଭାରତର ବିଭକ୍ତୀକରଣ ପୂର୍ଣତଃ ଅମଙ୍ଗଳକର ; ୧୯୪୦ ଖ୍ରୀଷ୍ଟାବ୍ଦରେ ବ୍ରିଟେନ୍ ହିଟଲର୍ ପାଖେ ଆତ୍ମସମର୍ପଣ କରିଥିଲେ ବ୍ରିଟେନ୍ ପକ୍ଷରେ ତାହା ଯେତିକି ଅମଙ୍ଗଳକର ହୋଇଥାନ୍ତା, ଏହି ସେତିକି । ଏପରି ସ୍ଥଳେ ଭାରତର ବିଭକ୍ତୀକରଣ ମାନିଯିବା ପରିବର୍ତ୍ତେ, ଧନ ଜୀବନର ସମସ୍ତ କ୍ଷତିକୁ ମୁଣ୍ଡ ପୋତି ଦେବା ପାଇଁ ଗାନ୍ଧୀ ରାଜି ଥିଲେ ।

ଗାନ୍ଧୀ ବ୍ରିଟିଶ ସରକାରକୁ ଯେଉଁ ପରାମର୍ଶ ଦେଲେ, ତାହାର ଭାବାତ୍ମକ ବିଚାରମାନ ଉପରେ ଦିଆଗଲା । ବସ୍ତୁତଃ ଗାନ୍ଧୀଙ୍କ ସରଳ ନୀତିବାଦ ଭିତରେ ସୂକ୍ଷ୍ମ ରାଜନୀତିକ ଦୃଷ୍ଟି ଲୁଚି ରହିଥିଲା । ବ୍ରିଟିଶ ଗଲା-ବେଳେ ତ ଭାରତକୁ ଅରାଜକ କରି ଯାନ୍ତେ ନାହିଁ । କୌଣସି ଗୋଟାଏ ସରକାର ତ ରହନ୍ତା । ଭାରତକୁ ବିଶୃଙ୍ଖଳ ଅବସ୍ଥାରେ ଛାଡ଼ିଯିବାକୁ ଗାନ୍ଧୀ ଯାହା କହିଲେ, ତା'ର ଭିତରି ଅର୍ଥ ଭାରତକୁ କଂଗ୍ରେସ ହାତରେ ଦେଇ ଯାଅ । ବ୍ରିଟିଶ ଯଦି ଏଥିରେ ରାଜି ନ ହୋଇଥାନ୍ତେ ତେବେ ସରକାରରୁ ଓହରି ଆସିବାକୁ ଗାନ୍ଧୀ କଂଗ୍ରେସକୁ ନିର୍ଦ୍ଦେଶ ଦେଇଥାନ୍ତେ । ଫଳତଃ ଭାରତରେ ଶାନ୍ତି ରକ୍ଷା କରିବାର ଦାୟିତ୍ୱ ବ୍ରିଟିଶଙ୍କ ଉପରେ ପଡ଼ିଥାନ୍ତା; ବ୍ରିଟିଶ ସରକାର ଯେ କୌଣସି ମତେ ଏ ଦାୟିତ୍ୱରୁ ମୁକ୍ତିଲାଭ କରିବାକୁ ଚାହୁଁଥିଲେ ।

ଗାନ୍ଧୀ ବ୍ରିଟିଶଙ୍କ ଆଗରେ ଯୋଡ଼ିଏ ପ୍ରସ୍ତାବ ପରୋକ୍ଷଭାବେ ଥୋଇ ଦେଲେ, ଏଥିରୁ ଗୋଟିଏ ବାଛି ନେବାକୁ—ଏ ବିଷମ ପରିସ୍ଥିତିରେ ଭାରତର ଶାସନଭାର କଂଗ୍ରେସ ହାତରେ ଦିଅ ବା ନିଜ ହାତରେ ରଖ ।

ଗାନ୍ଧୀ ଭଲ କରି ବୁଝିଥିଲେ ଯେ, ବ୍ରିଟିଶରାଜ ଯଦି ପାକିସ୍ଥାନ ପ୍ରତିଷ୍ଠା କରି ନ ଯାନ୍ତି ତେବେ ପାକିସ୍ଥାନର ସୃଷ୍ଟି ସଂଭବ ନୁହେଁ ; ଏବଂ

କଂଗ୍ରେସ ଯଦି ରାଜି ନ ହୁଏ ତେବେ ବ୍ରିଟିଶ ରାଜ ପାକିସ୍ଥାନ ପ୍ରତିଷ୍ଠା କରିବାକୁ ଆଗେଇବେ ନାହିଁ; ସଂଖ୍ୟାଗରିଷ୍ଠ କଂଗ୍ରେସର ବିରୁଦ୍ଧରେ ଯାଇ, କେବଳ ଜିନ୍ନା ଓ ସଂଖ୍ୟାଲଘିଷ୍ଠ ମୁସଲିମ୍‌ଙ୍କୁ ପ୍ରୀତ କରିବାପାଇଁ ବ୍ରିଟିଶ୍ ରାଜ ପାକିସ୍ଥାନ ସର୍ଜନା କରିବାକୁ ଯିବା ସଂଭବ ନୁହେଁ । ତେଣୁ କଂଗ୍ରେସ ପାକିସ୍ଥାନ ପ୍ରସ୍ତାବ ଗ୍ରହଣ କରିବା ଅନୁଚିତ ବୋଲି ଗାନ୍ଧୀ ମତ ଦେଇଥିଲେ ।

କିନ୍ତୁ କେହି ତାଙ୍କ କଥା ଶୁଣିଲେ ନାହିଁ । ଗାନ୍ଧୀଙ୍କର ଜଣେ ଅନ୍ତରଙ୍ଗ ସହଚର ଲେଖିଛନ୍ତି, 'ଆମ ନେତାମାନେ ଆନ୍ଦୋଳନ କରି କରି କ୍ଳାନ୍ତ ହୋଇ ଯାଇଥିଲେ ଏବଂ ସେମାନଙ୍କର ଦୂରଦର୍ଶିତା ନ ଥିଲା ।' ସ୍ୱାଧୀନତା ପ୍ରାପ୍ତିରେ ବିଳମ୍ବ ହୋଇଯିବ ବୋଲି କଂଗ୍ରେସ-ନେତାମାନଙ୍କର ଭୟ ହେଲା । ଶେଷରେ ଅଖଣ୍ଡ ଭାରତର ସ୍ୱାଧୀନତା ଅର୍ଜନ କରିବା କଳ୍ପନାରେ, ଦୁଇଭାଗରେ ବିଭକ୍ତ ଭାରତର ସ୍ୱାଧୀନତା ତୁରନ୍ତ ମିଳିଯାଉ ବୋଲି ଗାନ୍ଧୀ ଲାଳାୟିତ ନ ହୋଇ ବିଳମ୍ବ କରିବାକୁ ଇଚ୍ଛା କରୁଥିଲେ ।

୧୯୪୮ର ଗ୍ରୀଷ୍ମଋତୁରେ ମୁଁ ନେହେରୁ, ପଟେଲ ଓ ଅନ୍ୟ କଂଗ୍ରେସ ନେତାମାନଙ୍କୁ ପଚାରିଲି : କଂଗ୍ରେସ ପାକିସ୍ଥାନକୁ ସ୍ୱୀକାର କଲାବେଳେ, ଗାନ୍ଧୀ କଂଗ୍ରେସକୁ ନ ରୋକିଲେ କାହିଁକି ? ଯୁକ୍ତି ଓ ତାଙ୍କ ବ୍ୟକ୍ତିତ୍ୱର ପ୍ରଭାବରେ କଂଗ୍ରେସ ଯଦି ରାଜି ହୋଇ ନ ଥାନ୍ତା ତେବେ ତ ସେ ଅନଶନ କରି କଂଗ୍ରେସର ତ୍ରୁଟି ଧରି ମନାଇ ପାରିଥାନ୍ତେ ।

ସେମାନେ ସମସ୍ତେ ଏକ ସ୍ୱରରେ ଉତ୍ତର ଦେଲେ, ଅତି ଗୁରୁତର ବିଷୟରେ ବି କାହାକୁ ବଳାଜୋର କରି ମଙ୍ଗାଇବା ଗାନ୍ଧୀଙ୍କ ନୀତି ନ ଥିଲା । ଏକଥା ସତ, କିନ୍ତୁ ମୋ ପ୍ରଶ୍ନର ଯଥାର୍ଥ ଉତ୍ତର ପାଇଁ ଆଉ ଟିକିଏ ଭିତରକୁ ଯିବାକୁ ହେବ । କଂଗ୍ରେସ ପାକିସ୍ଥାନ ପ୍ରସ୍ତାବରେ ରାଜି ହୋଇ ସରକାରୀ କ୍ଷମତାରେ ସ୍ଥାୟୀ ହେଲେ । ତା' ନ କରି ଯଦି ପାକିସ୍ଥାନ ପ୍ରସ୍ତାବ ପ୍ରତ୍ୟାଖ୍ୟାନ କରିଥାନ୍ତେ, ତେବେ କଂଗ୍ରେସ ନେତାମାନଙ୍କୁ ସରକାରରୁ ବାହାରିଯାଇ, ଯତ୍ରତତ୍ର ଘୂରିନାଗି ଚେଷ୍ଟା କରି ଲୋକଙ୍କ ହିଂସାତ୍ମକ ମନୋଭାବ ବଦଳାଇ, ଦେଶରେ ଶାନ୍ତିସ୍ଥାପନ କରିବାକୁ ପଡ଼ିଥାନ୍ତା । ଗାନ୍ଧୀ ଦେଖିଲେ ଏ କଷ୍ଟ ବରଣ କରିବାକୁ ନେତାମାନଙ୍କର ଧୈର୍ଯ୍ୟ ନ ଥିଲା କି ଏ କାର୍ଯ୍ୟସୂଚୀରେ ବିଶ୍ୱାସ ନ ଥିଲା । ହୁଏତ ସେ

କଂଗ୍ରେସ-ନେତାମାନଙ୍କୁ ପ୍ରବର୍ତ୍ତାଇ କାର୍ଯ୍ୟକାରୀ କମିଟିରେ ନିଜର ମତ ଗ୍ରହଣ କରାଇ ନେଇ ପାରିଥାନ୍ତେ; କିନ୍ତୁ ତାଙ୍କ କର୍ମସୂଚୀରେ ସେମାନଙ୍କର ଉତ୍ସାହପୂର୍ଣ୍ଣ ସହଯୋଗ ପାଇବା ସଂଭବ ନ ଥିଲା । ହିନ୍ଦୁ ଓ ମୁସ୍‌ଲିମ୍-ମାନଙ୍କୁ ପରସ୍ପର ସୌହାର୍ଦ୍ଦ୍ୟ ରଖି ଚଳିବା କାର୍ଯ୍ୟ ସେ ନିଜେ କରି ଦେଖାଇ ଦେଇଥିଲେ ଯାଇ କଂଗ୍ରେସ ନେତାଙ୍କର ତାଙ୍କ କଥାରେ ବିଶ୍ୱାସ ଜାତ ହୋଇଥାନ୍ତା । ଏ ପ୍ରମାଣ ଦେଖାଇବା କାର୍ଯ୍ୟ ସେମାନେ ଗାନ୍ଧୀଙ୍କ ଉପରେ ଲଦି ଦେଇ ଆଡ଼େଇ ହୋଇ ରହିଥାନ୍ତେ । ଗାନ୍ଧୀ ଏ ଦାୟିତ୍ୱ ନିଜ ମୁଣ୍ଡରେ ନେଇଥାନ୍ତେ, କିନ୍ତୁ ସେଥିପାଇଁ ସମୟ ଯେ ଅତି ଅଳ୍ପ !

ଗାନ୍ଧୀ ତରତରରେ ଦୀର୍ଘପଥ ଅତିକ୍ରମ କରି କଲିକତାରେ ଯାଇ ପହଞ୍ଚିଲେ । ପାକିସ୍ଥାନ ପ୍ରସ୍ତାବ କାର୍ଯ୍ୟକାରୀ କରିବାକୁ ହେଲେ ବଙ୍ଗପ୍ରଦେଶକୁ ହିନ୍ଦୁସ୍ଥାନ ଓ ପାକିସ୍ଥାନ ମଧ୍ୟରେ ବାଣ୍ଟିବାକୁ ହେବ । ଏପରି ବିଭାଜନର ଭୟାବହ ପରିଣତି ବିଷୟରେ ଯଦି ସେ ବଙ୍ଗ ପ୍ରଦେଶ ମୁସ୍‌ଲିମ୍‌ମାନଙ୍କ ହୃଦ୍‌ବୋଧ କରାଇପାରିବେ, ବଙ୍ଗଳାର ହିନ୍ଦୁମାନଙ୍କ ମଧ୍ୟରେ ବଙ୍ଗ-ବିଭାଗ ବିଷୟରେ ଯେଉଁ ଅନୁକୂଳ ମନୋବୃତ୍ତି ବଢ଼ିବାକୁ ଆରମ୍ଭ କରିଛି ତାକୁ ଯଦି ରୋକି ପାରିବେ, ତେବେ ହୁଏତ ସେ ପାକିସ୍ଥାନର ପ୍ରତିଷ୍ଠା ରଦ୍ କରିପାରିବେ । ଏହି ଉଦ୍ଦେଶ୍ୟରେ ଗାନ୍ଧୀ କଲିକତାରେ କାର୍ଯ୍ୟ ଆରମ୍ଭ କଲେ ।

କଲିକତାର ଗୋଟିଏ ସଭାରେ ସେ ପଚାରିଲେ, ଓପରେ ଥିବା ନେତାମାନେ ଯଦି ବିପଥଗାମୀ ହୁଅନ୍ତି, ତେବେ ତଳେ ଥିବା ଜନତାଙ୍କ ସଦ୍‌ବୃତ୍ତି କଣ ଜାଗିଉଠି ଉପରବାଲାଙ୍କ ଅନିଷ୍ଟକାରୀ ପ୍ରଭାବକୁ ରୋକି ପାରିବ ନାହିଁ ?... ଲୋକଙ୍କର ଏହି ସଦ୍‌ବୃତ୍ତି ଜାଗ୍ରତ ହେବ ଏବଂ ନେତାମାନଙ୍କୁ ବାଟକୁ ଆଣି ପାରିବ ବୋଲି ତାଙ୍କର ଆଶା ଥାଏ ।

ଗାନ୍ଧୀ ଦର୍ଶାଇଲେ, ବଙ୍ଗଳାର ହିନ୍ଦୁ ମୁସଲମାନ ଉଭୟଙ୍କର ଭାଷା ଏକ, ସଂସ୍କୃତି ବି ଏକ । ଏହା ଏକ ହୋଇ ରହୁ । ଲର୍ଡ଼ କର୍ଜନ୍ ବଙ୍ଗ ବିଚ୍ଛେଦ କଲାବେଳେ ବଙ୍ଗର ଲୋକେ ଆନ୍ଦୋଳନ କରି ସମଗ୍ର ବଙ୍ଗକୁ ଏକ କରିଥିଲେ । ବର୍ତ୍ତମାନ ଜିନ୍ନା ଯେବେ ତାକୁ ଦୁଇଖଣ୍ଡ କରିବା ପୂର୍ବରୁ ବଙ୍ଗବାସୀ କ'ଣ ଜିନ୍ନାଙ୍କ ପ୍ରତିରୋଧ କରିବେ ନାହିଁ ?

କଲିକତାରେ ଛ'ଦିନ କଟାଇ ଗାନ୍ଧୀ ବିହାର ଗଲେ । ପ୍ରଚଣ୍ଡ ଗ୍ରୀଷ୍ମ ସତ୍ତ୍ୱେ ସେ ଗ୍ରାମମାନଙ୍କରେ ବୁଲିଲେ । ସବୁଠାରେ ସେ ଏକ କଥା

କହୁଥାନ୍ତି : 'ହିନ୍ଦୁମାନେ ଯଦି ମୁସଲମାନମାନଙ୍କୁ ଭ୍ରାତୃଭାବ ଦେଖାଇବେ, ତେବେ ବିହାରର ମଙ୍ଗଳ ହେବ, ଭାରତର ମଙ୍ଗଳ ହେବ ଏବଂ ସମଗ୍ର ପୃଥିବୀର ମଙ୍ଗଳ ହେବ ।'

ମେ, ୨୫ ତାରିଖରେ ନେହେରୁଙ୍କ ଡାକରା ପାଇ ଗାନ୍ଧୀ ପୁଣି ନୂଆ ଦିଲ୍ଲୀକୁ ଫେରିଗଲେ । ଏତେବେଳକୁ ମାଉଣ୍ଟବ୍ୟାଟେନ୍ ତାଙ୍କ ମନର ସିଦ୍ଧାନ୍ତ କରି ସାରି ଉଡ଼ାଜାହାଜ ଯୋଗେ ଲଣ୍ଡନକୁ ଯାଇଥାନ୍ତି । ଜନରବ ଶୁଣାଯାଉଥାଏ ଯେ, ଭାରତ ଦୁଇଭାଗରେ ବିଭକ୍ତ ହେବ, ଏବଂ ଏ ମର୍ମରେ ବ୍ରିଟିଶ୍ ସରକାରଙ୍କ ଯୋଜନା ଅଳ୍ପଦିନରେ ଘୋଷିତ ହେବ । ଏଭଳି ହେଉଛି କାହିଁକି ବୋଲି ଗାନ୍ଧୀ ବିସ୍ମିତ ହେଲେ । କ୍ୟାବିନେଟ୍ ମିଶନ୍ ୧୯୪୬, ମେ ୧୬ ତାରିଖର ଯୋଜନାରେ ଭାରତର ବିଭକ୍ତି-କରଣ ଓ ପାକିସ୍ଥାନ ପ୍ରସ୍ତାବକୁ ଅଗ୍ରାହ୍ୟ କରିଥିଲେ । ଏହା ଭିତରେ ଏପରି କ'ଣ ହୋଇଛି ଯେ କ୍ୟାବିନେଟ୍ ମିଶନ୍‌ର ନିଷ୍ପତ୍ତି ପରିବର୍ତ୍ତିତ ହେଉଛି ? କ'ଣ ଦଙ୍ଗାହାଙ୍ଗାମା ଯୋଗୁଁ ? ତେବେ କ'ଣ ବ୍ରିଟିଶ୍ ସରକାର ଗୁଣ୍ଡାଗିରି ଆଗରେ ମୁଣ୍ଡ ନୁଆଇଁ ଦେଉଛନ୍ତି ? ଗାନ୍ଧୀ କହିଲେ, 'ମୁଁ ଅଦ୍ୟାପି ଆଶା କରି ରହିଛି ଯେ, ଗତବର୍ଷ ମେ ୧୬ ତାରିଖରେ କ୍ୟାବି-ନେଟ୍ ମିଶନ୍ ଯେଉଁ ବିବୃତି ଦେଇଛନ୍ତି ତାହାର ଭାଷା ଓ ଭାବକୁ ବ୍ରିଟିଶ ସରକାର ବାଳପ୍ରମାଣେ ଏପଟ ସେପଟ କରିବେ ନାହିଁ...... ।'

ଡକ୍ଟର୍ ସୁଶୀଳା ନାୟାର କହିଥିଲେ, 'ବାପୁ ଭାରତ-ବିଭାଗ ବନ୍ଦ କରିବା ପାଇଁ ଅତ୍ୟଧିକ ଆୟାସ ସ୍ୱୀକାର କରୁଛନ୍ତି ।' ପାକିସ୍ଥାନ ପ୍ରତି ସରକାରୀ ଓ କଂଗ୍ରେସ ମହଲରେ ଯେଉଁ ଅନୁକୂଳ ବାୟୁମଣ୍ଡଳ ସୃଷ୍ଟି ହୋଇଥାଏ ତାକୁ ବଦଳାଇ ଦେବାକୁ ସେ ଅଦ୍ୟାପି ଅଦମ୍ୟ ଚେଷ୍ଟା କରୁଥାନ୍ତି । ଏହା ଫଳରେ ଯଦିବା ତାଙ୍କର ମୃତ୍ୟୁ ହୁଏ ତେବେ ତାଙ୍କର କ୍ଷତି କ'ଣ ? ସେ କହିଥିଲେ, 'ବର୍ତ୍ତମାନ ଭାରତ ଯେଉଁ ନୂଆ ରୂପ ନେଉଛି, ସେଥିରେ ମୋର ସ୍ଥାନ ନାହିଁ ।' ଏହା କହିଲାବେଳେ ଭାବାବେଶରେ ତାଙ୍କର କଣ୍ଠ ରୁଦ୍ଧ ହୋଇ ଯାଉଥାଏ । 'ମୁଁ ୧୨୫ ବର୍ଷ ବଞ୍ଚିବି ବୋଲି ଯେଉଁ ଆଶା ରଖିଥିଲି ତାହା ଛାଡ଼ି ସାରିଲିଣି । ହୁଏତ ମୁଁ ଆଉ ବର୍ଷେ ବା ଦୁଇବର୍ଷ ଥାଇବି । କିନ୍ତୁ ସେଥିରେ ଯାଏ ଆସେ କେତେ ? ବର୍ତ୍ତମାନ ଭାରତ ଯେପରି ହିଂସାର ପ୍ରବାହରେ ବୁଡ଼ିଯିବା ପରି ଦିଶୁଛି, ଯଦି ତାହା ହୁଏ, ତେବେ ମୋର ବଞ୍ଚିରହିବାକୁ ଆଦୌ ଇଚ୍ଛା ନାହିଁ ।'

କିନ୍ତୁ ସେ ବେଶି ସମୟ ଏପରି ନୈରାଶ୍ୟ ଧରି ରହିପାରିଲେ ନାହିଁ । ସେଥିପାଇଁ, ଚୀନ୍ ରାଷ୍ଟ୍ରଦୂତ ଡକ୍ଟର ଲୋ-ଚିଆ-ଲୁଏନ୍‌ଙ୍କୁ ଧରି ଗାନ୍ଧୀଙ୍କ ହରିଜନ ବସ୍ତିସ୍ଥ କୁଟୀରକୁ ଆସିଲେ । ଡକ୍ଟର୍ ଲୋ ପଚାରିଲେ, 'ଭାରତର ଭବିଷ୍ୟତ ବିଷୟରେ ଆପଣ କ'ଣ ଭାବୁଛନ୍ତି ?'

ଗାନ୍ଧୀ କହିଲେ, 'ମୋ ମନରେ ଅଦମ୍ୟ ଆଶା । ଆମେ ଏତେ କାଳ ବଞ୍ଚିରହି ଏତେ ଯେ ପରିଶ୍ରମ କରିଛୁଁ ତାହା କ'ଣ ଏତେ ନିରର୍ଥକ ଯେ, ଆମେ ସମସ୍ତେ ବର୍ବର ପାଲଟିଯିବୁ ? ଅବଶ୍ୟ ବଙ୍ଗ, ବିହାର ଓ ପଞ୍ଜାବରେ ହୋଇଥିବା ନିରର୍ଥକ ରକ୍ତପାତ ଆଡ଼କୁ ଦୃଷ୍ଟି ଦେଲେ ଆମେ ବର୍ବର ପାଲଟିଯାଉଛୁଁ ବୋଲି ଜଣାପଡ଼ୁଛି । କିନ୍ତୁ ମୁଁ ମନେ କରୁଛି, ଆମେ ବିଦେଶୀ ଦାସତ୍ୱରୁ ମୁକ୍ତ ହେବା ସମୟ ଆସନ୍ନ ହେବାରୁ, ଆମ ଭିତରେ ଥିବା ସବୁ ମଇଳା ଓ ଫେଣ ବାହାରକୁ ବାହାରି ପଡ଼ୁଛି । ଗଙ୍ଗା-ନଦୀରେ ବଢ଼ି ହେଲା ବେଳେ ପାଣି ଗୋଳିଆ ହୋଇଯାଏ ; ତଳର ମଇଳା ବାହାରକୁ ବାହାରି ଆସେ । କିନ୍ତୁ ବଢ଼ି ଛାଡ଼ିଗଲେ, ପାଣି ପରିଷ୍କାର, ନୀଳବର୍ଣ୍ଣ ହୋଇଯାଏ ; ସେ ପାଣିକୁ ଚାହିଁଲେ ଆଖିକୁ ସୁଖ ଲାଗେ । ମୁଁ ସେଇ ଆଶାରେ ବଞ୍ଚିଛି । ଭାରତର ଲୋକେ ବର୍ବର ହୋଇ ଯିବେ ଏହା ଦେଖିବାକୁ ମୁଁ ଚାହେଁ ନାହିଁ ।'

ତେଣେ ମାଉଣ୍ଟ୍‌ବ୍ୟାଟେନ୍ ଲଣ୍ଡନରେ ଭାରତକୁ ଦୁଇଭାଗ କରିବାର ଯୋଜନା ଉପରେ କାମ ଚଳାଇଥାନ୍ତି ।

ମାଉଣ୍ଟ୍‌ବ୍ୟାଟେନ୍-ଯୋଜନାରେ ଖାଲି ଭାରତର ଦ୍ୱିଖଣ୍ଡିକରଣର ବ୍ୟବସ୍ଥା ନ ଥାଏ ; ବଙ୍ଗ, ପଞ୍ଜାବ ଓ ଆସାମର ଲୋକମତ ଅନୁକୂଳ ହେଲେ ଏହି ପ୍ରଦେଶମାନ ମଧ୍ୟ ଦୁଇଭାଗ କରାଯିବ ବୋଲି ସେ ପ୍ରସ୍ତାବ ଦେଇଥାନ୍ତି । ବଙ୍ଗ ଓ ପଞ୍ଜାବର ନବ-ନିର୍ବାଚିତ ବ୍ୟବସ୍ଥାସଭାରେ ଭୋଟ ହୋଇ ଏ ପ୍ରଦେଶମାନଙ୍କର ମତ ନିଆଯିବ ବୋଲି ବ୍ୟବସ୍ଥା ଥାଏ । ଯଦି ବଙ୍ଗବ୍ୟବସ୍ଥା ସଭାରେ ବଙ୍ଗ-ବିଭାଗ ସପକ୍ଷରେ ଭୋଟ ହୁଏ, ତେବେ ଆସାମର ମୁସ୍‌ଲିମ୍-ସଂଖ୍ୟାଗରିଷ୍ଠ ସିଲ୍‌ହଟ ଜିଲାରେ ଗଣଭୋଟ ହୋଇ ତାହା ବଙ୍ଗର ମୁସ୍‌ଲିମ୍-ଅଂଶରେ ଯୋଗ କରାଯିବ କି ନାହିଁ ନିଷ୍ପତ୍ତି କରାଯିବ ବୋଲି ମାଉଣ୍ଟ୍‌ବ୍ୟାଟେନ୍ ପ୍ରସ୍ତାବ ଦେଇଥାନ୍ତି ।

ମାଉଣ୍ଟ୍‌ବ୍ୟାଟେନ୍-ଯୋଜନାରେ ଆହୁରି ମଧ୍ୟ ଉଲ୍ଲେଖ ଥାଏ ଯେ, 'ଭାରତର ବିଭିନ୍ନ ସଂପ୍ରଦାୟମାନେ ଆପୋଷ ଆଲୋଚନା କରି ଯଦି

ଭାରତକୁ ଅଖଣ୍ଡ କରି ରଖନ୍ତୁ, ତେବେ ଏ ଯୋଜନାରେ ତାହାର ଅନ୍ତରାୟ ହେଲି ଭଳି କିଛି ନାହିଁ ।'

ତେଣୁ ଏ ଯୋଜନା ଉଭୟ ପ୍ରକାର ସିଦ୍ଧାନ୍ତ ପାଇଁ ବାଟ ଖୋଲି ରଖିଥିଲି, ଏବଂ ବ୍ରିଟେନ୍ ପକ୍ଷରୁ ଆଇନ୍‌ଗତଭାବେ ବାଧ୍ୟ କଲାପରି କିଛି ନ ଥିଲି । ବଙ୍ଗ ଓ ପଞ୍ଜାବ ବ୍ୟବସ୍ଥା ସଭା ଇଚ୍ଛା କଲେ ଅବିଭକ୍ତ ହୋଇ ରହିବାକୁ ସିଦ୍ଧାନ୍ତ କରିପାରନ୍ତି ; ସେପରି ହେଲେ ଭାରତର ବିଭକ୍ତୀକରଣ ବା ପାକିସ୍ଥାନର ପ୍ରଶ୍ନ ବି ଉଠିବ ନାହିଁ । ପୁଣି ବ୍ୟବସ୍ଥା ଥିଲି ଯେ, ଏବେ ପାକିସ୍ଥାନ ପ୍ରତିଷ୍ଠା ହେବାର ହେଲେ ବି ଏହା ପରେ, ମୂଳ-ଭାରତ ସଙ୍ଗେ ମିଶିଯାଇ ପାରେ ।

ଇଂଲଣ୍ଡ ଛାଡ଼ିବା ପୂର୍ବରୁ ମାଉଣ୍ଟ୍‌ବ୍ୟାଟେନ୍ ପାର୍ଲିମେଣ୍ଟ୍‌ର ବିରୋଧୀ ଦଳ-ନେତା ଚର୍ଚ୍ଚିଲଙ୍କ ସଙ୍ଗେ ସାକ୍ଷାତ କରିଥିଲେ ଓ କମନ୍‌ସ ସଭାରେ ଏ ଯୋଜନାକୁ ଚର୍ଚ୍ଚିଲ ସମର୍ଥନ କରିବେ ବୋଲି ତାଙ୍କଠାରୁ ପ୍ରତିଶ୍ରୁତି ପାଇଥିଲେ ।

୧୯୪୭ ଜୁନ୍ ୨ ତାରିଖରେ, ଏ ଯୋଜନା ଘୋଷିତ ହେବାର ପ୍ରାକ୍‌କାଳରେ ହରବର୍ଟ୍ ଏଲ. ମାଥ୍ୟୁସ୍ 'ନିଉୟର୍କ୍ ଟାଇମସ୍' ସଂବାଦପତ୍ରକୁ ଟେଲିଗ୍ରାମ ପଠାଇଥିଲେ, 'ବର୍ତ୍ତମାନ ମିଷ୍ଟର୍ ଗାନ୍ଧୀ କଣ କରିବେ ତାହାହିଁ ପ୍ରଧାନ ଚିନ୍ତାର ବିଷୟ ; କାରଣ ସେ ଯଦି "ଆମରଣ ଅନଶନ" କରିବାକୁ ସିଦ୍ଧାନ୍ତ କରି ବସନ୍ତି ତେବେ ଏ ଯୋଜନା ସମୂଳେ ଅକାମୀ ହୋଇ ଯାଇପାରେ ।'

ତହିଁ ଆରଦିନ ପ୍ରଧାନମନ୍ତ୍ରୀ ଏଟ୍‌ଲି ଏ ଯୋଜନାକୁ କମନ୍‌ସ ସଭାରେ ପ୍ରକାଶ କଲେ, ଏବଂ ମାଉଣ୍ଟ୍‌ବ୍ୟାଟେନ୍ ନୂଆ ଦିଲ୍ଲୀରୁ ବେତାର ଯୋଗେ ଘୋଷଣା କରିଦେଲେ । ବେତାର ଘୋଷଣାରେ ବ୍ରିଟିଶ୍ ସମ୍ରାଟଙ୍କର ଶେଷ ପ୍ରତିନିଧି ସ୍ପଷ୍ଟଭାବେ ଜଣାଇ ଦେଲେ, 'ଏକଥା କହିବା ବାହୁଲ୍ୟମାତ୍ର ଯେ ଭାରତର କୌଣସି ପ୍ରଦେଶ ଭାଗ ଭାଗ ହେବାର ମୁଁ ଯେତିକି ବିରୋଧୀ, ସମଗ୍ର ଭାରତର ଦ୍ୱିଖଣ୍ଡୀକରଣର ସେତିକି ବିରୋଧୀ ।' ସେ ଏକଥା ଜାଣନ୍ତି ଯେ, ଏ ଯୋଜନା ପଚିଶଲକ୍ଷ ଶିଖ୍‌ଙ୍କୁ ଏପାଖ ସେପାଖ କରି ଦେଉଥିବାରୁ ଦୋଷଶୂନ୍ୟ ନୁହେଁ । ପଞ୍ଜାବ ପ୍ରଦେଶକୁ ଯେତେ ବୁଦ୍ଧି ବିସ୍ତର ଗାର କାଟିଲେ ବି ଯୁଦ୍ଧକୁଶଳ ଶିଖ୍‌ଜାତିର ବହୁ ଲୋକ ଅନିଚ୍ଛାସତ୍ତ୍ୱେ ପାକିସ୍ଥାନ ପଟେ ରହିଯିବେ ।

ନେହେରୁ, ପଟେଲଙ୍କ ସମେତ ସମଗ୍ର କଂଗ୍ରେସ କାର୍ଯ୍ୟକାରୀ କମିଟି ଏ ଯୋଜନାକୁ ପୂର୍ବରୁ ଗ୍ରହଣ କରି ସାରିଥିଲେ । ଜୁନ୍ ୧୫ ତାରିଖରେ ନିଖିଳ ଭାରତ କଂଗ୍ରେସ କମିଟି ନୂଆ ଦିଲ୍ଲୀଠାରେ ବସି କାର୍ଯ୍ୟକାରୀ କମିଟିର ସୁପାରିସକୁ ଅନୁମୋଦନ କରିବାଦ୍ୱାରା ଏହା ସମଗ୍ର କଂଗ୍ରେସର ସିଦ୍ଧାନ୍ତ ହୋଇଗଲା । କାର୍ଯ୍ୟକାରୀ ସମିତିର ସୁପାରିସ ସପକ୍ଷରେ ହେଲା ୧୫୩ ଭୋଟ; ଓ ବିପକ୍ଷରେ ମାତ୍ର ୨୯ ଭୋଟ; କେତେଜଣ କୌଣସି ପକ୍ଷରେ ଭୋଟ ନଦେଇ ତୂନି ରହିଗଲେ ।

ଏ ପ୍ରସ୍ତାବ ଗୃହୀତ ହେବା ପରେ କଂଗ୍ରେସ ସଭାପତି ଅଧ୍ୟାପକ ଜେ· ବି· କ୍ରିପଲାନୀ ଗୋଟିଏ ସଂକ୍ଷିପ୍ତ ଭାଷଣ ଦେଇ କଂଗ୍ରେସ କାହିଁକି ଏ ପ୍ରସ୍ତାବ ଗ୍ରହଣ କଲା ବୁଝାଇ ଦେଇଥିଲେ ।

ସେ କହିଥିଲେ, 'ହିନ୍ଦୁ ଓ ମୁସ୍‌ଲିମ୍ ସମ୍ପ୍ରଦାୟମାନେ ଭୟାବହ ହିଂସାକାଣ୍ଡ ଭିଆଇବାରେ ପରସ୍ପରକୁ ବଳିଯାଇଛନ୍ତି····· । ମୁଁ ନିଜେ ଜାଣେ ନିଜ ନିଜ ପିଲାଙ୍କୁ ଧରି ସ୍ତ୍ରୀଲୋକମାନେ, ମୋଟରେ ୧୦୭ଜଣ ଗୋଟାଏ କୂଅକୁ ଡେଇଁପଡ଼ି ଇଜ୍ଜତ ରକ୍ଷା କରି ମରଣ ବରଣ କରିଥିଲେ । ଆଉ ଠାଏ, ଗୋଟିଏ ଦେବାଳୟରେ, ପଚାଶ ଜଣ ଯୁବତୀଙ୍କୁ, ଏହି ଉଦ୍ଦେଶ୍ୟରେ, ତାଙ୍କ ନିଜ ନିଜ ଅଭିଭାବକମାନେ ମାରି ପକାଇଥିଲେ··· । ଏହି ରୋମହର୍ଷଣ ଅଭିଜ୍ଞତା ଯୋଗୁଁ ଏ ପ୍ରସ୍ତାବ ବିଷୟରେ ମୁଁ ପ୍ରଭାବିତ ହୋଇଛି, ଏଥିରେ ସନ୍ଦେହ ନାହିଁ । କେତେକ ସଦସ୍ୟ ଅଭିଯୋଗ କରିଛନ୍ତି ଯେ, ଆମେ ଭୟରେ ତ୍ରସ୍ତ ହୋଇ ଏ ପ୍ରସ୍ତାବ ଗ୍ରହଣ କରି ନେଉଛୁଁ । ଏ ଅଭିଯୋଗ ସତ୍ୟ ବୋଲି ମୋତେ ସ୍ୱୀକାର କରିବାକୁ ପଡୁଛି; କିନ୍ତୁ ଯେଉଁ ଭାବରେ ଏ ଅଭିଯୋଗ ହୋଇଛି ତାହା ଯଥାର୍ଥ ନୁହେଁ । ଯେଉଁମାନେ ମରିଛନ୍ତି ତାଙ୍କ ଯୋଗୁଁ, ତାଙ୍କ ବିଧବା ପତ୍ନୀମାନଙ୍କ ବିଳାପ ଯୋଗୁଁ, ବାପମା-ଛେଉଣ୍ଡ ପିଲାଙ୍କ ଚିତ୍କାର ଯୋଗୁଁ ବା କେତେଗୁଡ଼ାଏ ଘର ପୋଡ଼ିଗଲା ବୋଲି ଆମେ ଡରିଯାଇନାହୁଁ । ଆମ ଭୟର ଅସଲ କାରଣ, ଯଦି ଏହି ସ୍ଥିତି ଲାଗି ରହେ, ଆମେ ପ୍ରତିଶୋଧପ୍ରବଣ ହୋଇ ପରସ୍ପରର ପ୍ରାଣ ଓ ଇଜ୍ଜତ ନେବାରେ ଲାଗିରହୁ, ତେବେ ଆମେ ଆସ୍ତେ ଆସ୍ତେ ନରମାଂସ-ଭକ୍ଷକଙ୍କର ସ୍ଥିତି ଧରିଯିବା, ବା ଆହୁରି ତଳସ୍ତରକୁ ଖସିଯିବା । ପ୍ରତ୍ୟେକ ନୂଆ ସାଂପ୍ରଦାୟିକ ଗଣ୍ଡଗୋଳରେ, ପୂର୍ବ ଗଣ୍ଡଗୋଳର ବୀଭତ୍ସ କାଣ୍ଡ ସବୁ

ଦୁର୍ବୃତ୍ତିର ଆଦର୍ଶ ଓ ମାନଦଣ୍ଡ ହୋଇଯାଉଛି ।' ପ୍ରତ୍ୟେକ ହିଂସାକାଣ୍ଡରେ ଏହି ଝଂସ୍କୃତିର ସତ୍ୟ ଆତ୍ମପ୍ରକାଶ କରେ ।

କ୍ରିପଲାନୀ ପୁଣି କହିଲେ, 'ମୁଁ ଗତ ୩୦ ବର୍ଷ ହେଲା ମହାତ୍ମାଜୀଙ୍କ ସହକର୍ମୀ ହୋଇ ଆସିଛି । ଚମ୍ପାରଣ ଆନ୍ଦୋଳନ ବେଳେ ମୁଁ ତାଙ୍କ ସଙ୍ଗେ ମିଶିଥିଲି । ତାଙ୍କ ପ୍ରତି ଆନୁଗତ୍ୟରେ ମୁଁ କେବେଁ ହଲଚଲ ହୋଇନାହିଁ । ମୁଁ ବ୍ୟକ୍ତିଗତଭାବେ ତାଙ୍କର ଅନୁଚର ନଥିଲି, ମୁଁ ଥିଲି ରାଜନୀତିରେ ତାଙ୍କର ଅନୁଗତ । ବେଳେବେଳେ ମୋର ତାଙ୍କ ସଙ୍ଗେ ମତଭେଦ ହୁଏ କିନ୍ତୁ ମୋର ଯୁକ୍ତିସିଦ୍ଧ ମତଠାରୁ ତାଙ୍କର ରାଜନୀତିକ ସ୍ୱତଃସ୍ଫୂର୍ତ୍ତି ପ୍ରେରଣା ଅଧିକ ନିର୍ଭୁଲ ଥିବାର ମୁଁ ପରେ ଉପଲବ୍ଧି କରେ । ବର୍ତ୍ତମାନ ମଧ୍ୟ ମୁଁ ଅନୁଭବ କରୁଛି, ତାଙ୍କ ମନର ପରମ ନିର୍ଭୟତା ଯୋଗୁଁ ସେ ଯାହା କହୁଛନ୍ତି ତାହା ଠିକ୍ ଏବଂ ମୁଁ ଯେଉଁ ଦୃଷ୍ଟିକୋଣରୁ ସମସ୍ୟାଟିକୁ ଦେଖୁଛି ତାହା ଦୋଷଦୁଷ୍ଟ ।

'ତେବେ ମୁଁ ବର୍ତ୍ତମାନ ତାଙ୍କ ସାଙ୍ଗେ ନାହିଁ କାହିଁକି ? ତାହାର କାରଣ, ସେ ସମୂହ ଭାବରେ ସମଗ୍ର ଦେଶରୁ ହିଂସା ମନୋବୃତ୍ତି ଦୂର କରିବାକୁ କୌଣସି ଉପାୟର ସନ୍ଧାନ କରି ପାରି ନାହାନ୍ତି ବୋଲି ମୋର ମନେ ହେଉଛି । ସେ ଯାହା ହେଉ, ଗାନ୍ଧୀ ଶାନ୍ତି ଓ ସଦ୍‌ଭାବ ପାଇଁ ଯେଉଁ ଡାକ ଦେଉଥିଲେ, ଜାତି ତାକୁ ଶୁଣିଲା ନାହିଁ ।'

ଗାନ୍ଧୀ ଏ କଥା ଜାଣିଥିଲେ । ସେ କହିଥିଲେ, 'ମୁସ୍‌ଲିମ୍‌ଙ୍କୁ ଛାଡ଼ି, ଭାରତର ଅନ୍ୟମାନେ ବି ଯଦି ମୋ କଥାରେ ରହିଥାନ୍ତେ, ତେବେ ମୁଁ ପ୍ରସ୍ତାବିତ ଭାରତ-ବିଚ୍ଛେଦକୁ ବନ୍ଦ କରି ଦେବା ପାଇଁ ଉପାୟ ବତାଇ ପାରିଥାନ୍ତି······। ଏ ପ୍ରସ୍ତାବ ବିରୋଧରେ ନେତୃତ୍ୱ ଦେବାକୁ ଅନେକେ ମୋତେ ଅନୁରୋଧ କରୁଛନ୍ତି; କିନ୍ତୁ ଯେଉଁମାନେ ଏ ଅନୁରୋଧ କରୁଛନ୍ତି ସେମାନଙ୍କର ମୋର ମନୋବୃତ୍ତିରେ ସମାନତା ନାହିଁ । କେବଳ ଏ ପ୍ରସ୍ତାବର ବିରୋଧ ହେବା ଉଚିତ, ଏତିକରେ ମାତ୍ର ସ୍ୱାଙ୍କର ମୋର ମନର ମେଳ··· ପ୍ରେମ ଓ ଅସୂୟା ଏକାଠି ମିଶିବ କିମିତି ?'

ଗାନ୍ଧୀଙ୍କ ପାଖକୁ ଯେଉଁ ଚିଠିପତ୍ର ଆସୁଥାଏ ସେଥିରୁ ଶତକଡ଼ା ପଞ୍ଚାନବେ ଭାଗ ଥାଏ ଗାଳିଗୁଲଜ ଓ ଘୃଣାପୂର୍ଣ୍ଣ । ହିନ୍ଦୁମାନଙ୍କ ଚିଠିରେ ଅଭିଯୋଗ ହେଉଥାଏ ଯେ, ସେ ମୁସ୍‌ଲିମଙ୍କ ପ୍ରତି ପକ୍ଷପାତ କରୁଛନ୍ତି;

ମୁସ୍‌ଲମ୍‌ମାନଙ୍କ ଶଠିରେ ଦାବ ହେଉଥାଏ, ସେ ପାକସ୍ଥାନ କରାଇ ନ ଦେବାକୁ ଯେଉଁ ଉଦ୍ୟମ କରୁଛନ୍ତି ତାଙ୍କୁ ବନ୍ଦ କରନ୍ତୁ ।

ତିଳକଙ୍କ ଜନ୍ମଭୂମିରୁ ଗୋଟିଏ ମରହଟ୍ଟା ଦମ୍ପତି ଗାନ୍ଧୀଙ୍କ ପାଖକୁ ଆସିଲେ ଓ ହରିଜନବସ୍ତି ପାଖରେ ବସା ନେଇ ରହିଲେ । ସେମାନେ ଅନଶନ ଆରମ୍ଭ କରି ଗାନ୍ଧୀଙ୍କୁ ଜଣାଇଦେଲେ ଯେ, ପାକସ୍ଥାନ ଗଠନ ପ୍ରସ୍ତାବ ପ୍ରତ୍ୟାଖ୍ୟାତ ନ ହେବା ପର୍ଯ୍ୟନ୍ତ ସେମାନଙ୍କର ଅନଶନ ଚାଲୁ ରହିବ । ଲଗ ଲଗ ଦୁଇ ଦିନ ପ୍ରାର୍ଥନା ସଭାରେ ସେ ଏମାନଙ୍କୁ ନିବର୍ତ୍ତି-ଯିବାକୁ ବୁଝାଇଲେ । ଗାନ୍ଧୀ ଏ ଦୁହିଙ୍କୁ ପଚାରିଲେ, ତୁମେ ମୁସ୍‌ଲମ୍‌ଙ୍କୁ ଘୃଣା କର ବୋଲି ପାକିସ୍ଥାନଗଠନ ବିରୁଦ୍ଧରେ ଅନଶନ କରିଛ, ନା ମୁସ୍‌ଲମ୍‌ଙ୍କୁ ଶ୍ରଦ୍ଧା କର ବୋଲି ? ଯଦି ମୁସ୍‌ଲମଙ୍କ ପ୍ରତି ତୁମର ଘୃଣା ତେବେ ଏଭଳି ଅନଶନ କରିବା ଉଚିତ ନୁହେଁ; ଯଦି ତାଙ୍କ ପ୍ରତି ଶ୍ରଦ୍ଧା, ତେବେ ଅନଶନ ଭାଙ୍ଗି ଯାଅ ତୁମ ହିନ୍ଦୁ ଭାଇମାନଙ୍କୁ ବୁଝାଅ, ମୁସ୍‌ଲମ୍‌ଙ୍କୁ ତୁମ ପରି ଶ୍ରଦ୍ଧା କରିବେ । ତରୁଣ ଦମ୍ପତି ଗାନ୍ଧୀଙ୍କ ଯୁକ୍ତି ଶୁଣି ଅନଶନ ତ୍ୟାଗ କଲେ ।

ହିନ୍ଦୁମାନଙ୍କର ମୁସ୍‌ଲମଙ୍କ ପ୍ରତି ଯଥେଷ୍ଟ ଶ୍ରଦ୍ଧା ନଥାଏ, କି ମୁସ୍‌ଲମଙ୍କର ହିନ୍ଦୁମାନଙ୍କଠାରେ ଯଥେଷ୍ଟ ବିଶ୍ୱାସ ନଥାଏ । ତେଣୁ ହିନ୍ଦୁ ମୁସ୍‌ଲମଙ୍କ ମଧ୍ୟରେ ଭାରତ ଭାଗଭାଗ ହୋଇ ବଣ୍ଟା ହେବା ଦରକାର ହେଉଥାଏ ।

ଭାରତର ବିଭକ୍ତିକରଣକୁ ଗାନ୍ଧୀ 'ଆଧ୍ୟାତ୍ମିକ ବିପର୍ଯ୍ୟୟ' ବୋଲି ମନେ କରୁଥାନ୍ତି । ଅପର ପକ୍ଷେ ହିନ୍ଦୁ ମୁସ୍‌ଲମ୍‌ଙ୍କ ମଧ୍ୟରେ ରକ୍ତାକ୍ତ ସଂଘର୍ଷ ପାଇଁ ଆୟୋଜନ ଚାଲୁଥିବାର ସେ ଲକ୍ଷ୍ୟ କରୁଥାନ୍ତି । ଏପରି ଅବସ୍ଥାରେ ଭାରତବିଭାଗ ନ ହେଲେ 'ସାମରିକ ନିରଙ୍କୁଶ ଶାସନ'ର ସମ୍ଭାବନା ଅଛି ବୋଲି ତାଙ୍କୁ ଜଣାଯାଉଥାଏ । ଯଦି ତା' ହୁଏ, ତେବେ 'ସ୍ୱାଧୀନତାକୁ ଚିର ବିଦାୟ' ଦେବାକୁ ପଡ଼ିପାରେ ବୋଲି ଗାନ୍ଧୀ ଜାଣୁଥାନ୍ତି । ଏ ସବୁ ସତ୍ତ୍ୱେ ସେ କହିଲେ, 'ମୋର ଅନ୍ତରଙ୍ଗ ବନ୍ଧୁମାନେ ଯାହା କରିଛନ୍ତି, ଓ ବର୍ତ୍ତମାନ କରୁଛନ୍ତି ସେଥିରେ ମୋର ମତ ନାହିଁ ।'

ଗାନ୍ଧୀ ମନୋବିଷାଦରେ କହିଲେ, 'ବତିଶ ବର୍ଷର ତପସ୍ୟା ଓ ସାଧନାର ଅପଯଶରେ ଉପସଂହାର ହେଲା ।' ୧୯୪୭, ଅଗଷ୍ଟ ୧୫ ତାରିଖରେ ଭାରତ ସ୍ୱାଧୀନ ହେବ ବୋଲି ଘୋଷିତ ହେଲା । କିନ୍ତୁ ଏ

ବିଜୟ ହେବ ମିରସ ରାଜନୀତିକ ବ୍ୟବସ୍ଥାଟିଏ ମାତ୍ର । ଏହା ଫଳରେ ଇଂରେଜମାନେ ଯେଉଁଠାରେ ବସୁଥିଲେ, ସେଠାରେ ଭାରତୀୟ ବସିବେ ; ୟୁନିଅନ୍ ଜ୍ୟାକ୍ ଯେଉଁଠାରେ ଉଡ଼ୁଥିଲା ସେଠାରେ ତିରଙ୍ଗା ପତାକା ଉଡ଼ିବ । ପରିବର୍ତ୍ତନ ଏତିକି ମାତ୍ର । ଏହା ହେବ ସ୍ୱାଧୀନତାର ଗୁଞ୍ଜନ ନ ଥିବା ବୁଢ଼ା ଚଢ଼େଇ । ଏ ଯେଉଁ ବିଜୟ ହେବ, ଏହା ବିଷାଦ-ଭରା । ଏ ବିଜୟରେ ସେନା ନିଜର ସେନାପତିଙ୍କୁ ହରାଇଲେ ।

ଗାନ୍ଧୀ ଘୋଷଣା କଲେ, 'ମୁଁ ଅଗଷ୍ଟ ୧୫ର ଉତ୍ସବରେ ଯୋଗ ଦେଇ ପାରିବି ନାହିଁ ।'

ସ୍ୱାଧୀନତାର ବିଧାଣୀଙ୍କ ପ୍ରତି ସ୍ୱାଧୀନତା ଦୁଃଖଦାୟକ ହେଲା । ଜାତିର ପିତା ଜାତିର ଗତିରେ ନିରାଶ ହେଲେ । ସେ କହିଲେ, 'ମୋ ଦେଶର ଲୋକେ, ଅହିଂସାନୀତିକୁ ଆଦର କରିଛନ୍ତି ବୋଲି ମୁଁ ନିଜକୁ ନିଜେ ଠକାଇଥିଲି··· ।' ଭାରତୀୟମାନେ ଅହିଂସାକୁ ଦଗା ଦେଇଦେଲେ । ଗାନ୍ଧୀଙ୍କ ଦୃଷ୍ଟିରେ ଭାରତୀୟ ସ୍ୱାଧୀନତାଠାରୁ ଅହିଂସା ଥିଲା ଅଧିକ ଗୁରୁତ୍ୱପୂର୍ଣ୍ଣ ।

ରୟେଲ୍ ଏମ୍ପାୟାର୍ ସୋସାଇଟିର ପରିଷଦରେ ୧୯୪୮, ଅକ୍ଟୋବର ୬ତାରିଖ ଦିନ ମାଉଣ୍ଟ୍‌ବ୍ୟାଟେନ୍ କହିଥିଲେ ଯେ, ଭାରତରେ ଗାନ୍ଧୀଙ୍କୁ ଲୋକେ, 'ରୁଜ୍‌ଭେଲ୍ଟ୍, ଚର୍ଚ୍ଚିଲଙ୍କ ଭଳି ବଡ଼ ବଡ଼ ରାଷ୍ଟ୍ରନୀତିଜ୍ଞ ସଙ୍ଗେ ତୁଳନା କରନ୍ତି ନାହିଁ । ସେମାନେ ତାଙ୍କୁ ମନେ ମନେ ମହମ୍ମଦ ଓ ଯିଶୁଖ୍ରୀଷ୍ଟଙ୍କ ସମକକ୍ଷ ବୋଲି ବିଚାରନ୍ତି ।' ଲକ୍ଷ ଲକ୍ଷ ଲୋକ ତାଙ୍କୁ ଭକ୍ତି ଓ ସମ୍ମାନ ଦେଖାନ୍ତି । ଜନତା ତାଙ୍କର ଗୋଡ଼ତଳେ ମୁଣ୍ଡିଆ ମାରନ୍ତି ଏବଂ ତାଙ୍କ ପାଦଧୂଳି ମୁଣ୍ଡରେ ଲଗାନ୍ତି । କିନ୍ତୁ ତାଙ୍କୁ ଭକ୍ତି ଦେଖାଇବା ସଙ୍ଗେ ତାଙ୍କର ନିର୍ଦ୍ଦେଶକୁ ଅବଜ୍ଞା କରନ୍ତି । ଭାରତୀୟମାନେ ତାଙ୍କ ଶରୀରକୁ ପବିତ୍ର ମନେ କରନ୍ତି, କିନ୍ତୁ ତାଙ୍କ ବ୍ୟକ୍ତିତ୍ୱକୁ ତୁଚ୍ଛ ବୋଲି ତ୍ୟାଗ କରନ୍ତି । ସେମାନେ ବାହାରର ଖୋଳକୁ ମୁଣ୍ଡରେ ଲଗାଇ ଭିତରର ସାରକୁ ଗୋଡ଼ରେ ଦଳି ଦିଅନ୍ତି । ଭାରତୀୟମାନେ ଗାନ୍ଧୀଙ୍କୁ ବିଶ୍ୱାସ କରନ୍ତି କିନ୍ତୁ ତାଙ୍କ ନୀତିକୁ ନୁହେଁ ।

ଅଗଷ୍ଟ ୧୫ ତାରିଖର ସ୍ୱାଧୀନତା ଦିବସରେ ଗାନ୍ଧୀ କଲିକତାରେ ରକ୍ତ ଦଙ୍ଗାଗୋଳର ପ୍ରତିରୋଧ କରୁଥିଲେ । ସେଦିନତମାମ ସେ ଅନଶନ କଲେ ଓ ଭଗବତ୍ ଉପାସନାରେ କଟାଇଲେ । ସେଦିନ ସେ ଜାତିକୁ

କୌଣସି ସନ୍ଦେଶ ଶୁଣାଇଲେ ନାହିଁ । ନୂତନ ଜାତୀୟ ଜୀବନର ଆନୁଷ୍ଠାନିକ ଉଦ୍‌ଘାଟନ ଉତ୍ସବରେ ଯୋଗଦେବା ସକାଶ ରାଜଧାନୀ ଦିଲ୍ଲୀକୁ ଯିବା ନିମନ୍ତେ ତାଙ୍କୁ ସନିର୍ବନ୍ଧ ଅନୁରୋଧ ହୋଇଥିଲା, ସେ କିନ୍ତୁ ଯିବାକୁ ମଙ୍ଗିଲେ ନାହିଁ । ସେ ତପୂରଥଳ ରାଜକୁମାରୀ ଅମୃତ କଉରଙ୍କ ପାଖକୁ ଲେଖିଥିଲେ, 'ମୋ ମନ ଭିତର ଘାଣ୍ଟି ହେଉଛି' । ଭାରତର ସବୁଆଡ଼େ ଆନନ୍ଦ ଉତ୍ସବ ଲାଗିଥାଏ, କିନ୍ତୁ ଗାନ୍ଧୀ ଥାନ୍ତି ବିଷାଦଗ୍ରସ୍ତ ହୋଇ । ସେ ସନ୍ଦିହାନ ହୋଇ ପଚାରିଥିଲେ, 'ମୋ ମନ ଭିତରେ କ'ଣ ଗୋଟାଏ ଭ୍ରାନ୍ତି ରହିଛି, ନା ସତରେ ଆମର ଗୋଟାଏ କିଛି ବିପର୍ଯ୍ୟୟର ସୂତ୍ରପାତ ହେଉଛି ?'

ଭାରତ ସ୍ୱାଧୀନତା ପାଇଲା, କିନ୍ତୁ ଗାନ୍ଧୀଙ୍କ ମନ ବିଭ୍ରାନ୍ତ ଓ ବିକ୍ଷୁବ୍ଧ ହୋଇ ରହିଲା । ଗୀତାର ଅନାସକ୍ତ ଭାବ ତାଙ୍କ ମନରେ ଦୃଢ଼ ହୋଇ ରହିପାରିଲା ନାହିଁ । ସେ ପ୍ରକାଶ୍ୟରେ କହିଦେଲେ, 'ସ୍ଥିତଧୀ ଅବସ୍ଥାରୁ ମୁଁ ବର୍ତ୍ତମାନ ବହୁଦୂରରେ ଅଛି ।'

କିନ୍ତୁ ନିଜ ଉପରେ ଆସ୍ଥା ସେ ଛାଡ଼ି ନ ଥିଲେ କି ଜଙ୍ଗଲରେ ଯାଇ ଗୁହାରେ ରହିବାକୁ ବିଚାରି ନ ଥିଲେ । ସେ ଦୃଢ଼ ଭାବରେ କହିଥିଲେ, 'ଯେଉଁ ଉଦ୍ଦେଶ୍ୟ ସ୍ୱଭାବତଃ, ନ୍ୟାୟସଙ୍ଗତ, ତାହାର ସାଫଲ୍ୟ ଆଶା ଏକାବେଳକେ ନାହିଁ ବୋଲି କୁହାଯାଇ ନ ପାରେ ।'

ଗାନ୍ଧୀଜୀ ଅମୃତ କଉରଙ୍କ ପାଖକୁ ଅଗଷ୍ଟ ୨୯ ତାରିଖରେ ଲେଖିଥିଲେ, 'ମାନବର ମାନବିକତାରେ ତୁମେ କେବେହେଁ ଆସ୍ଥା ହରାଇବ ନାହିଁ । ମାନବ ସମାଜ ଗୋଟାଏ ମହାସମୁଦ୍ର ପରି । ସମୁଦ୍ରର କେତେ ବୁନ୍ଦା ମାତ୍ର ପଙ୍କିଳ ହେଲେ ସମଗ୍ର ସମୁଦ୍ର ପଙ୍କିଳ ହୋଇ ଯାଏ ନାହିଁ ।'

ଗାନ୍ଧୀଙ୍କର ମାନବ ଚରିତ୍ର ଉପରେ ଆସ୍ଥା ଅକ୍ଷୁଣ୍ଣ ଥିଲା, ଭଗବାନଙ୍କଠାରେ ବିଶ୍ୱାସ ବି ଅକ୍ଷୁଣ୍ଣ ଥିଲା । ତେଣୁ ତାଙ୍କ ନିଜଠାରେ ବି ପୂର୍ଣ୍ଣ ଆସ୍ଥା ଥିଲା । ଗୋଟିଏ ପ୍ରାର୍ଥନା ସଭାରେ ସେ ସଭାସଦମାନଙ୍କୁ ଆଶ୍ୱାସନାର ବାଣୀ ଶୁଣାଇଥିଲେ, 'ମୁଁ ଆଜନ୍ମ ଯୋଦ୍ଧା ; ପରାଜୟ କ'ଣ ମୁଁ ଜାଣେ ନାହିଁ ।'

ଭାରତ-ବିଚ୍ଛେଦ କାର୍ଯ୍ୟରେ ତ ହୋଇଗଲା ; କିନ୍ତୁ 'ନିଷ୍କଳୁଷ ଆଚରଣଦ୍ୱାରା ଅନିଷ୍ଟର ଲାଘବ କରାଯାଇପାରେ ଏବଂ ଅନିଷ୍ଟରୁ ଇଷ୍ଟର ଆହରଣ କରାଯାଇ ପାରେ' ବୋଲି ସେ କହିଥିଲେ ।

ନ୍ତି ସେ ତଥାପି ଆଶା କରୁଥାନ୍ତି ଯେ, ତାଙ୍କ ଆତ୍ମବିଶ୍ୱାସର ପ୍ରଭାବ ଲୋକଙ୍କ ଉପରେ ପଡ଼ିବ । କିନ୍ତୁ କିପରି ? ସେ କହିଥିଲେ, 'ମୁଁ ବର୍ତ୍ତମାନ ଅଧୀର ହେଉଛି ।' ସେ ନିରନ୍ତର ଆତ୍ମପରୀକ୍ଷା କରୁଥାନ୍ତି । ନିଜକୁ ନିଜେ ପ୍ରଶ୍ନ କରୁଥାନ୍ତି, 'ସତେ କ'ଣ ମୁଁ ଦେଶକୁ ବିପଥରେ ଚଳାଇ ନେଇଛି ?'

ତାଙ୍କଠାରୁ କମ୍ ମହତ୍ତ୍ୱବିଶିଷ୍ଟ ବ୍ୟକ୍ତି ମନେ ମନେ ରାଗିଥାନ୍ତେ, ମନରେ ତିକ୍ତତାକୁ ସ୍ଥାନ ଦେଇଥାନ୍ତେ ଓ ଯେଉଁମାନେ ତାଙ୍କ ଉଦ୍ଦେଶ୍ୟ ପଣ୍ଡ କରିଛନ୍ତି ସେମାନଙ୍କୁ ହଇରାଣରେ ପକାଇବାକୁ ଷଡ଼୍‌ଯନ୍ତ୍ର କରିଥାନ୍ତେ । ଗାନ୍ଧୀ କିନ୍ତୁ ସେପରି ନ କରି ଆତ୍ମପରୀକ୍ଷା କରିବାରେ ଲାଗିଲେ ; ବିଚାରିଲେ, ଯାହା ହେଲା ହୁଏତ ତାଙ୍କରି ଦୋଷରୁ ହେଲା ।

ସେ କୁରସେଦ୍ ନଓରୋଜୀଙ୍କ ପାଖକୁ ଲେଖିଥିଲେ, 'ମୁଁ ଆପଣଙ୍କ ଭଗବଦ୍ ପ୍ରାର୍ଥନାର ପୁନରାବୃତ୍ତି କରୁଛି—ମୋର ଆତ୍ମଜ୍ଞାନ ହେଉ, ମୁଁ ଶାନ୍ତି ପାଏ । ଏହା ବଡ଼ କଠିଣ କାମ, କିନ୍ତୁ ମୁଁ ଏଥିପାଇଁ ଚେଷ୍ଟା ଚଳାଇଛି ।'

ସେ ଭଗବାନ୍‌ଙ୍କୁ ଡାକିଲେ, 'ଭଗବନ୍ ! ତମସୋ ମା ଜ୍ୟୋତିର୍ଗମୟ—ମୋତେ ଅନ୍ଧାରରୁ ଆଲୁଅକୁ ନିଅ' ।

ତାଙ୍କର ୭୮ ତମ ଜନ୍ମଦିବସ ଆଗରେ ଥାଏ । ସେ ଯେଉଁ ସଂସାର ଗଢ଼ିଥିଲେ ତାହାର କେତେକାଂଶ ଭାଙ୍ଗି ରୁଜି ତାଙ୍କ ଗୃହପାଖେ ପଡ଼ିଥାଏ । ସେ ପୁଣି ସବୁ ନୂଆ କରି ଗଢ଼ିବେ ! କଂଗ୍ରେସଟା ଅନ୍ତିମାବାରେ ରାଜନୀତିକ ଦଳ ହୋଇଗଲା ; ଗଠନମୂଳକ କାର୍ଯ୍ୟ କରି ଦେଶର ଉନ୍ନତି କରିବାରେ ଯିଏ ନିଜକୁ ଲଗାଇବାକୁ ହେବ । ଅହିଂସାତ୍ମକ ଭାବେ, ଭଗବାନଙ୍କଠାରେ ବିଶ୍ୱାସ ରଖି, ହିଂସାତ୍ମକ ବିପ୍ଳବ ପନ୍ଥାରୁ ଦୂରରେ ରହି ସମସ୍ତଙ୍କୁ ସମାନ ସୁଯୋଗ ଓ ସୁବିଧା ଦେବା ଲକ୍ଷ୍ୟ ଥିବା ସାମ୍ୟବାଦର ତାରିଫ୍ କରି ସେ ହରିଜନ ପତ୍ରିକାରେ ଦୁଇଟି ପ୍ରବନ୍ଧ ଲେଖିଲେ । ତାଙ୍କର ଶରୀର ସ୍ଥବିର ହୋଇ ଯାଇଥିଲେ ହେଁ ମନ ଥାଏ ଯୌବନର ଉତ୍ସାହରେ ଭରି, ଅଭିଜ୍ଞତାରେ ସେ ବୃଦ୍ଧ ହେଲେ ହେଁ, ବିଶ୍ୱାସରେ ଥାନ୍ତି ଯୁବକ । ଭବିଷ୍ୟତ ପାଇଁ ଯୋଜନାରେ ବିଭୋର ରହି ସେ ଅତୀତର ଦୁଃଖ ଓ ଦୁର୍ଗତିର ଚାପ ତାଙ୍କଠାରୁ ଦୂର ହୋଇଗଲା ।

ସେ କଲିକତାରେ ଥାନ୍ତି । ତାଙ୍କୁ ଗୋଟିଏ ମୁସ୍‌ଲିମ୍‌ର ଘରକୁ

ନିଆଗଲା । ଘରଟି ଯେଉଁ ଅଞ୍ଚଳରେ ସେ ଅଞ୍ଚଳର ସବୁ ପଥର ସଦ୍ୟ ରକ୍ତପାତରେ ଘସଡ଼ା ହୋଇଥାଏ; ସେ ଅଞ୍ଚଳର ବାୟୁମଣ୍ଡଳ ଘରପୋଡ଼ି ଧୂଆଁରେ ଉତ୍ତପ୍ତ ହୋଇଯାଇଥାଏ । ଘରଟିର ମୁସ୍‌ଲିମ୍ ପରିବାର ତାଙ୍କୁ ସୌଜନ୍ୟ ଦେଖାଇଲେ । ସେଇଠାରୁ ସେ ଅମୃତକଉରଙ୍କ ପାଖକୁ ଲେଖିଥିଲେ, 'ଏ ମୁହୂର୍ତ୍ତରେ ମୁଁ କାହାରି ଶତ୍ରୁ ନୁହେଁ' । ଭ୍ରାତୃତ୍ୱର କ୍ଷୁଦ୍ରତମ ଅନୁଭୂତିରେ ତାଙ୍କର ଯେଉଁ ଆନନ୍ଦ ହେଲା, ତାହା ଗୋଟାଏ ଦେଶର ରାଜନୀତିକ ସ୍ୱାଧୀନତା ପ୍ରାପ୍ତି ଅପେକ୍ଷା ତାଙ୍କ ପକ୍ଷରେ ଅଧିକ ଉପଭୋଗ୍ୟ ହୋଇଥିଲା ।

ଏହି କ୍ଷୁଦ୍ର ଘରେ ସେ ଥିଲାବେଳେ ବହୁ ଶୋକସନ୍ତପ୍ତ ଲୋକ ତାଙ୍କ ପାଖକୁ ଆସିଲେ । ଗାନ୍ଧୀ ସେମାନଙ୍କ ଆଖିରୁ ଲୁହ ପୋଛି ଦେଲେ । ଅନ୍ୟମାନଙ୍କୁ ସେ ଯେଉଁ ସାନ୍ତ୍ୱନା ଦେଲେ ସେଥିରେ ତାଙ୍କ ନିଜ ମନ ଶାନ୍ତ ହେଲା । ତାଙ୍କ ନୂତନ କର୍ମସୂଚୀ ସେ ଏଇଠାରେ ଆବିଷ୍କାର କଲେ । ଏହା ତାଙ୍କର ଚିରାଚରିତ କର୍ମ : ଅନ୍ୟର ଯନ୍ତ୍ରଣାର ଅପନୋଦନ କରିବା, ପ୍ରେମର ବାର୍ତ୍ତା ପ୍ରଚାର କରିବା, ଏବଂ ସମସ୍ତଙ୍କୁ ନିଜର ଓ ପରସ୍ପରର ଆପଣାର କରିବା ।

ଆସିସିର ସେଣ୍ଟ୍ ଫ୍ରାନ୍‌ସିସ୍ ତାଙ୍କ ବଗିଚାରେ ମାଟି କୋଡୁଥାନ୍ତି, ଜଣେ ଆସି ପଚାରିଲେ, 'ଆଜି ସନ୍ଧ୍ୟାରେ ଆପଣ ମରିବେ ବୋଲି ଯଦି ଏଇଲାଗେ ଆପଣଙ୍କୁ ଖବର ମିଳେ ତେବେ ଆପଣ କ'ଣ କରିବେ ?'

ସେଣ୍ଟ୍ ଫ୍ରାନ୍‌ସିସ୍ ଉତ୍ତର ଦେଲେ, 'ମୋର ବଗିଚାର ମାଟିକୋଡ଼ା କାମଟା ସାରିଦେବି ।'

ଗାନ୍ଧୀ ଯେଉଁ ବଗିଚାରେ ଜୀବନ ତମାମ କାମ କରି ଆସିଥିଲେ ସେଇ ବଗିଚାର ମାଟି କୋଡ଼ିବାରେ ଲାଗିଲେ । ପାପୀମାନେ ବଗିଚା ଭିତରେ ଟେକା ପଥର ଓ ଅଳିଆ ପକାଇଥାନ୍ତି । ଗାନ୍ଧୀ ମାଟି କୋଡ଼ିବାରେ ଓ ଏ ଅଳିଆ ଓ ପଥର ବାଛିବାରେ ଲାଗିଗଲେ ।

ଦୃଢ଼ ପ୍ରତିଜ୍ଞା ଧରି କାର୍ଯ୍ୟରେ ଲାଗିବା ଥିଲା ଗାନ୍ଧୀଙ୍କର ନୈରାଶ୍ୟ ଓ ବିପର୍ଯ୍ୟୟର ପ୍ରତିଷେଧକ ଔଷଧ । ଏକନିଷ୍ଠ ହୋଇ ନିଜର କାର୍ଯ୍ୟରେ ଲାଗିବାଦ୍ୱାରା ସେ ମାନସିକ ଶାନ୍ତି ପାଉଥିଲେ ।

———

## ଅଷ୍ଟାଦଶ ପରିଚ୍ଛେଦ

### ଗାନ୍ଧୀ ନିଜ ବଗିଚାରେ ମାଟିକୋଡ଼ିବାରେ ଲାଗିଲେ

ବ୍ରିଟିଶ ଭାରତ ଛାଡ଼ି ଚାଲି ଯାଇଥାନ୍ତି । ରାଜମାନଙ୍କ ଦୃଷ୍ଟିରେ ସେମାନେ ଥିଲେ ସପଠ । ଭାରତୀୟ କାନ୍ଥରେ ଲେଖା ହୋଇଥିବାର ସେମାନେ ପଢ଼ିପାରିଲେ, ଲେଖାଅଛି, 'ତୁମ ଦିନ କାଳ ସରିଲା ।' ଏ ଲେଖା ଥିଲା ଗାନ୍ଧୀଙ୍କର ନିଜ ହସ୍ତାକ୍ଷରରେ ।

ଭାରତୀୟଙ୍କ ଇଚ୍ଛାରେ ଲର୍ଡ଼ ମାଉଣ୍ଟ୍‌ବ୍ୟାଟେନ୍ ଭାରତର ଗଭର୍ଣ୍ଣର୍-ଜେନେରାଲ ହୋଇ ରହିଲେ । ପାକିସ୍ଥାନର ମଧ୍ୟ ସେ ଗଭର୍ଣ୍ଣର୍‌ଜେନେରାଲ ରହିବେ ବୋଲି ମୁସ୍‌ଲିମ୍ ଲିଗ୍ ରାଜି ହୋଇଥିଲା । ତାହା ହେଲେ ସେ ଉଭୟ ରାଷ୍ଟ୍ରର ବନ୍ଧୁତ୍ୱର ପ୍ରତୀକ ହୋଇଥାନ୍ତେ । କିନ୍ତୁ ଜିନ୍ନା ନିଜର ପ୍ରତିଶ୍ରୁତି ଛାଡ଼ି ନିଜେ ପାକିସ୍ଥାନର ଗଭର୍ଣ୍ଣର ଜେନେରାଲ ହୋଇଗଲେ ।

ପାକିସ୍ଥାନ ଯୋଗୁଁ ଭାରତ ଦୁଇଖଣ୍ଡ ହେଲା । ନିଜେ ପାକିସ୍ଥାନ ମଧ୍ୟ ଦୁଇଖଣ୍ଡରେ ବିଭକ୍ତ ହୋଇଗଲା । ଭାରତର ଉତ୍ତର-ପଶ୍ଚିମରେ ରହିଲେ ପାକିସ୍ଥାନର ୩ କୋଟି ୮୦ ଲକ୍ଷ ଅଧିବାସୀ ; ଓ ଉତ୍ତର-ପୂର୍ବରେ ରହିଲେ ୪ କୋଟି ୫୦ ଲକ୍ଷ ଅଧିବାସୀ । ଏ ଦୁଇ ଭାଗ ମଧ୍ୟରେ ରହିଲା, ୮୦୦ ମାଇଲ୍ ବ୍ୟବଧାନ—୮୦୦ ମାଇଲ ଯାକ ଭାରତୀୟ ରାଷ୍ଟ୍ରର ଅଧିକୃତ ।

ମୁସ୍‌ଲିମ୍ ପାକିସ୍ଥାନରେ ଏକାଧିକ କୋଟି ହିନ୍ଦୁ ଓ ଶିଖ୍ ରହିଲେ, ଓ ଭାରତର ୩୩ କୋଟି ଅଧିବାସୀଙ୍କ ଭିତରେ ରହିଲେ, ୪ କୋଟି ୨୦ ଲକ୍ଷ ମୁସ୍‌ଲିମ୍ ।

୫୬୫ ଦେଶୀୟ ରାଜ୍ୟ ଭିତରୁ ୫୫୦ ନିର୍ବିରୋଧରେ ଭାରତ ସଙ୍ଗେ ମିଶିଗଲେ । ତେରନାଟି ଦେଶୀୟ ରାଜ୍ୟ ପାକିସ୍ଥାନରେ ମିଶିଲେ । ଅଧିକାଂଶ ମହାରାଜା ଓ ନବାବ୍ ଚଢ଼ାହାରରେ ପେନ୍‌ସନ୍ ପାଇ ସଖିକଣ୍ଢେଇ ହୋଇ ରହିଲେ । ତାଙ୍କ ପାଟହାତୀମାନେ ବେକାର ହୋଇ ବୁଲିଲେ ।

ଭାରତକୁ ଦୁଇଖଣ୍ଡରେ ବିଭକ୍ତ କରିବା ଫଳରେ କେତେ ପରିବାର ବି ଦୁଇଭାଗ ହୋଇଗଲେ । ଶିଳ୍ପ କାରଖାନା ଗୋଟାଏ ପଟେ ରହିଲା ତ, ତାହାର କଞ୍ଚାମାଲ ରହିଲା ଆର ପଟେ । ଶସ୍ୟ ଗୋଟାଏ ପଟେ ରହିଲା ତ ତାହାର ବିକ୍ରୀ ହେବା ବଜାର ରହିଲା ଆରପଟେ । ସେନା ଦୁଇଭାଗ ହେଲା ; ରାଜକୋଷ ଦୁଇ ଭାଗରେ ବଣ୍ଟା ହେବ ବୋଲି ନିଷ୍ପତ୍ତି ହେଲା । ପାକିସ୍ଥାନର ଅମୁସଲିମ୍‌ମାନେ ନିଜ ଭବିଷ୍ୟତ ବିଷୟରେ ସନ୍ଦିହାନ ହେଲେ ; ଭାରତର ମୁସଲିମ୍‌ମାନଙ୍କ ମନରେ ଆତଙ୍କ ଖେଳିଲା । ଦୁଇଟି ଯାକ ନୂତନ ରାଷ୍ଟ୍ରରେ, ଶାସନ ଅଧିକାର ପାଇଥିବା ସଂଖ୍ୟାଗରିଷ୍ଠ ସଂପ୍ରଦାୟ ଏବଂ ଭୀତତ୍ରସ୍ତ ସଂଖ୍ୟାଲଘିଷ୍ଠ ସଂପ୍ରଦାୟଙ୍କ ମଧ୍ୟରେ ସାଙ୍ଗେ ସାଙ୍ଗେ ହାଣକାଟ ଲାଗିଗଲା ।

ଭାରତ ଅଖଣ୍ଡ ରହିଥିଲେ ହୁଏତ ଲୋକେ ନିରୁପଦ୍ରବ ହୋଇ ରହିପାରିଥାନ୍ତେ । ଖଣ୍ଡଖଣ୍ଡ ହୋଇଯିବାରୁ ପ୍ରାଣଧାରକ ଧମନୀ ସବୁ ଛିଣ୍ଡି-ଗଲା ଓ ତା' ଭିତରୁ ବହିଲା ନରରକ୍ତ ଓ ସାଂପ୍ରଦାୟିକ ବିଦ୍ୱେଷର ବିଷ ।

କଲିକତା ସହିତ ବଙ୍ଗଦେଶର ପଶ୍ଚିମଭାଗ ରହିଲା ଭାରତରେ ; ପୂର୍ବବଙ୍ଗ ଗଲା ପାକିସ୍ଥାନକୁ । ଖାସ୍ କଲିକତାରେ ଶତକଡ଼ା ୨୩ ଭାଗ ମୁସଲିମ୍ । ସ୍ୱାଧୀନତା ମିଳିବା ସାଙ୍ଗେ ସାଙ୍ଗେ କଲିକତାରେ ଲାଗିଗଲା ହିନ୍ଦୁ ମୁସଲମାନଙ୍କର ଦଙ୍ଗା ।

ସାଂପ୍ରଦାୟିକ ଗଣ୍ଡଗୋଳ ଆରମ୍ଭ ହୁଏ କିପରି ? ୧୯୩୮, ଏପ୍ରିଲ୍ ୧୭ ତାରିଖରେ ତିନି ଜଣ ହିନ୍ଦୁ ଓ ଜଣେ ମୁସଲମାନ ବମ୍ବେଇର ନର୍ଥବ୍ରୁକ୍ ଉଦ୍ୟାନରେ ଭୂଇଁରେ ବସି ତାସ ଖେଳୁଥିଲେ । ସେମାନେ ମଦ ଖାଇଥାନ୍ତି । ଖେଳରେ କଳିକଜିଆ ଲାଗିଲା । ସରକାରୀ ରିପୋର୍ଟରେ ପରେ ପ୍ରକାଶ ପାଇଲା, 'ଏଇ କଳିକଜିଆରୁ ହଠାତ୍ ନଗରରେ ହିନ୍ଦୁ ମୁସଲମାନ ମାଡ଼ପିଟ୍‌ର ଜନରବ ବ୍ୟାପିଗଲା, ଲୋକେ ଆତଙ୍କିତ ହୋଇ ପଡ଼ିଲେ । ଗୁଣ୍ଡାମାନଙ୍କୁ ପିହଲି ପଡ଼ିଲା । ନଗରର ବିଭିନ୍ନ ସ୍ଥାନରେ ବିକ୍ଷିପ୍ତ ଭାବେ ଚାଲିଲା ମାଡ଼ପିଟ, ଲୁଟତରାଜ ଓ ଟେକାମାଡ......। ମାରାତ୍ମକ ଅସ୍ତ୍ର ଧରି ବାହାରିବା ନିଷିଦ୍ଧ ହେଲା, ଏବଂ ହିନ୍ଦୁ ଓ ମୁସଲିମଙ୍କ ଶବ-ଶୋଭାଯାତ୍ରା ପାଇଁ ଅଲଗା ଅଲଗା ରାସ୍ତା ନିର୍ଦ୍ଦିଷ୍ଟ ହେଲା । ପ୍ରୟୋଜନ ହେଲେ ସାଙ୍ଗେ ସାଙ୍ଗେ ବାହାରିବାକୁ ସୈନ୍ୟଙ୍କୁ ପ୍ରସ୍ତୁତ କରି ରଖାଗଲା...। ଯେଉଁ ସଂଘର୍ଷ ଖୁବ୍ ଗୁରୁତର ହୋଇଯିବ ବୋଲି ଆଶଙ୍କା କରାଯାଉଥିଲା

ତାଙ୍କ ଅଳ୍ପ ସମୟ ଭିତରେ ଆୟତ୍ତ ହୋଇଗଲା । ତଥାପି ହାବଡ଼ାଷ୍ଟେଟ୍‌କା ମାଡ଼ପିଟ ଆଉ କେତେଦିନ ପର୍ଯ୍ୟନ୍ତ ଲାଗି ରହିଲା । ଏ ଉତ୍ପାତରେ ମୋଟ ୧୪ ଜଣ ମଲେ ଓ ୪୮ ଜଣ ଘାଉଡ଼ ହୋଇଥିଲେ ।' ପୁଲସ୍ ୨୪୮ ଜଣଙ୍କୁ ଗିରଫ୍ କରିଥିଲେ ।

ସେ ୧୯୩୮ର କଥା । ପାକିସ୍ଥାନ ହୋଇ ନ ଥାଏ । ଦେଶରେ ସ୍ୱାଭାବିକ ଶାନ୍ତ ଅବସ୍ଥା ଥାଏ । ୧୯୪୭ର ଅବସ୍ଥା ଅଲଗା । ହିନ୍ଦୁ ମୁସ୍‌ଲିମ୍‌ଙ୍କ ମଧ୍ୟରେ ତିକ୍ତତା ଚରମକୁ ଚଢ଼ିଯାଇଥିଲା । ଏତେବେଳେ, ବିଶେଷ କରି, ଲୋକେ କଦର୍ଯ୍ୟ ବସ୍ତିମାନଙ୍କରେ ଖୁନ୍ଦାଖାନ୍ଦି ହୋଇ ରହିଥିବା କଲିକତାରେ, ଗୋଟିଏ ମୁସ୍‌ଲିମ୍ ଟୋକା ହିନ୍ଦୁ ଟୋକାର ବାଳ ଟିକିଏ ଭିଡ଼ିଦେଲେ, ବା ହିନ୍ଦୁ ଟୋକାଟାଏ ମୁସ୍‌ଲିମ୍ ଟୋକାକୁ ପଦେ ଗାଳି ଦେଇଦେଲେ, ମାରାତ୍ମକ ସଂଘର୍ଷ ତେଜି ଉଠିବାର ସମ୍ଭାବନା ଥାଏ । ବିକ୍ଷୋଭ ଓ ଦାରିଦ୍ର୍ୟ ଲୋକଙ୍କୁ ଏପରି ଶୁଖିଲା କାଠ ଭଳି କରି ଦେଇଥାଏ ଯେ, ଟିକେକେରେ ହାଉ କରି ଜଳିଉଠିବ ।

ଏଇଭଳି ତାତିକରି ରହିଥିବା ଲୋକଙ୍କ ଉପରେ ଗାନ୍ଧୀ ଶାନ୍ତିର ଶୀତଳ ଜଳ ସିଞ୍ଚିବାକୁ ଆରମ୍ଭ କରିଥାନ୍ତି ।

୧୯୪୭ ଅଗଷ୍ଟ ୯ ତାରିଖରେ ଗାନ୍ଧୀ କଲିକତାରେ ଆସି ପହଞ୍ଚିଥିଲେ । ୧୯୪୬, ଅଗଷ୍ଟ ୧୬ରେ ଜିନ୍ନା ପ୍ରତ୍ୟକ୍ଷ କର୍ମ ଦିବସ ଘୋଷଣା କଲାଦିନୁଁ ପୂରା ଏକବର୍ଷ କଲିକତା ରକ୍ତାକ୍ତ ସଂଘର୍ଷରେ ବ୍ୟତିବ୍ୟସ୍ତ ହୋଇ ଯାଇଥାଏ । ଗାନ୍ଧୀ ଓ ବଙ୍ଗର ଭୂତପୂର୍ବ ପ୍ରଧାନମନ୍ତ୍ରୀ ଏଇଚ୍. ଏସ୍. ସହିଦ୍‌ର୍ଦ୍ଦି, ଏକସଙ୍ଗେ ସାଂପ୍ରଦାୟିକ ଉନ୍ମାଦଗ୍ରସ୍ତ ରାସ୍ତାମାନଙ୍କରେ ବୁଲି ବୁଲି ବୁଲିଲେ । ହାଣକାଟ ଲାଗିଥିବା ଅଞ୍ଚଳକୁ ଦୁହେଁ ଯାକ ସାଙ୍ଗରେ କାହାକୁ ନ ନେଇ ମଟରରେ ଗଲେ ; ସହିଦ୍‌ର୍ଦ୍ଦି ଗାଡ଼ି ଚଳାଉଥାନ୍ତି ଏବଂ ଗାନ୍ଧୀ ଥାନ୍ତି ଗାଡ଼ିର ଏକମାତ୍ର ସବାରି । ସେମାନେ ଯେଉଁଠି ଯାଇ ପହଞ୍ଚୁଥାନ୍ତି ସେଠାରୁ ହିଂସାବୃତ୍ତି ପାଣିଫାଟି ଯାଉଥାଏ । ହଜାର ହଜାର ମୁସ୍‌ଲିମ୍ ଓ ହିନ୍ଦୁ କୁଣ୍ଢାକୁଣ୍ଢି ହୋଇ 'ମହାତ୍ମା ଗାନ୍ଧୀ କି ଜୟ, ହିନ୍ଦୁ ମୁସ୍‌ଲିମ୍ ଜିନ୍ଦା ରହେ' ବୋଲି ଚିତ୍କାର କରୁଥାନ୍ତି । ଗାନ୍ଧୀଙ୍କ ନିତ୍ୟନୈମିତ୍ତିକ ପ୍ରାର୍ଥନା ସଭାରେ ଉଭୟ ସଂପ୍ରଦାୟର ହଜାର ହଜାର ଲୋକ ଭାଇ ଭାଇ ପରି ଏକ ସଙ୍ଗେ ବସୁଥାନ୍ତି । ଅଗଷ୍ଟ ୧୪ ତାରିଖ ପରେ କଲିକତାରେ କୌଣସି ଗୋଳମାଳ ହେବାର ଖବର ବାହାରିଲା ନାହିଁ । ଗାନ୍ଧୀ

ସାଂପ୍ରଦାୟିକ ଉତ୍ପାତକୁ ଥଣ୍ଡା କରିଦେଲେ । 'ଖବରକାଗଜମାନେ ଜନୈକ ପରିଶ୍ରାନ୍ତ ଯାଦୁକରଙ୍କର ଜୟଜୟକାର କଲେ ।

ଅଗଷ୍ଟ ୩୧ ତାରିଖ ରାତିରେ ଗାନ୍ଧୀଜୀ ଜଣେ ମୁସ୍‌ଲିମ୍ ଘରେ ଶୋଇଥାନ୍ତି । ପ୍ରାୟ ୧୦ଟା ରାତିରେ ବାହାରେ କ୍ରୁଦ୍ଧ ଚିତ୍କାର ଶୁଣାଗଲା । ଗାନ୍ଧୀ ଧୀରଭାବେ ଶୋଇ ରହିଲେ । ସର୍ବବର୍ଦ୍ଧି ଏବଂ ମହାତ୍ମାଙ୍କ ଏକାଧିକ ନାରୀ-କର୍ମୀ ଘରେ ପଶିବାକୁ ଚେଷ୍ଟା କରୁଥିବା ଗୁଣ୍ଡାଙ୍କୁ ଥଣ୍ଡା କରିବାକୁ କୁହାପୋଛା କରୁଥିବାର ଗାନ୍ଧୀଙ୍କୁ ଶୁଣାଗଲା । ଫଳ କିଛି ହେଲା ନାହିଁ । କାଚ ଭାଙ୍ଗିବାର ଶବ୍ଦ ହେଲା । ଟେକାମାଡ଼ ଓ ବାଧାରେ ଝରକାର କାଚ ଗୁଣ୍ଡୁଗୁଣ୍ଡା ହୋଇ ଯାଇଥାଏ । ଦଳେ ଲୋକ ଘରଭିତରେ ପଶି ଦୁଆରକୁ ଗୋଇଠା ମାଇଲେ । ଗାନ୍ଧୀ ଶେଯରୁ ଉଠି ତାଙ୍କ କୋଠରୀର ଦୁଆର ମେଲାଇଲେ । ଉନ୍ମତ୍ତ ଗୁଣ୍ଡାମାନଙ୍କର ସେ ସମ୍ମୁଖୀନ ହେଲେ , ସେମାନଙ୍କୁ ହାତ ଯୋଡ଼ି ନମସ୍କାର ହେଲେ । ତାଙ୍କ ଉପରକୁ ଖଣ୍ଡେ ଇଟା ଫୋପଡ଼ା ହେଲା । ଇଟାଖଣ୍ଡ ଗାନ୍ଧୀଙ୍କ ପାଖରେ ଠିଆ ହୋଇଥିବା ଜଣେ ମୁସ୍‌ଲିମ୍ ବନ୍ଧୁଙ୍କ ଦେହରେ ବାଜିଲା । ଗୁଣ୍ଡାଙ୍କ ଭିତରୁ ଜଣେ ଗୋଟାଏ ଠେଙ୍ଗାରେ ପାହାରେ ପିଟିଲା ଯେ ତାହା ଗାନ୍ଧୀଙ୍କ ମୁଣ୍ଡରେ ବାଜିବାରୁ ଅଳ୍ପକେ ଖସିଗଲା । ଗାନ୍ଧୀ ମନସ୍ତାପରେ ମୁଣ୍ଡ ହଲାଇଲେ । ଏତିକିବେଳେ ପୁଲିସ୍ ଆସି ପହଞ୍ଚିଲେ ; ନିଜ ଶୋଇବା ଘରକୁ ଚାଲିଯିବା ପାଇଁ ପୁଲିସ୍ ଗାନ୍ଧୀଙ୍କୁ ଅନୁରୋଧ କଲେ । ତା'ପରେ ପୁଲିସ୍ ଅଫିସର୍‌ମାନେ ଗୁଣ୍ଡାମାନଙ୍କୁ ଜବରଦସ୍ତି ବାହାରକୁ ନେଇଗଲେ । ଏତିକିବେଳେ ଜଣେ ମୁସ୍‌ଲିମ୍ ମୁଣ୍ଡରେ ପଟି ବନ୍ଧା ହୋଇଥିବାର ଦେଖି, ହିନ୍ଦୁମାନେ ତା'କୁ ଛୁରୀ ମାରିଛନ୍ତି ବୋଲି ମନେ କରି ମୁସ୍‌ଲିମ୍ ଜନତା ଉତ୍ତ୍ୟକ୍ତ ହୋଇ ଉଠିଥାନ୍ତି । ସେମାନଙ୍କୁ ଘଉଡ଼ିବାକୁ ଲୁହବୁହା ଗ୍ୟାସ୍ ପ୍ରୟୋଗ ହେଲା ।

ଗାନ୍ଧୀ ସ୍ଥିର କଲେ, ଅନଶନ କରିବେ ।

ଖବରକାଗଜମାନଙ୍କୁ ସେପ୍‌ଟେମ୍ବର ପହିଲା ତାରିଖରେ ବିବୃତି ଦେଇ ଗାନ୍ଧୀଜୀ କହିଲେ, 'ଉତ୍ତ୍ୟକ୍ତ ହୋଇ ଚିତ୍କାର କରୁଥିବା ଜନତା ଆଗରେ ଆସି ଠିଆ ହେଲେ ସବୁବେଳେ କାମ ଦେଖାଏ ନାହିଁ । ଅନ୍ତତଃ କାଲି ରାତିରେ ତ ଏହା କାମ ଦେଖାଇଲା ନାହିଁ । ମୋ ମୁହଁର କଥା ଯାହା କରି ନ ପାରିଲା, ମୋ ଅନଶନ ତାହା କରିବ ବୋଲି ଆଶା କରେ । କଲିକତାର ବିବଦମାନ ଗୋଷ୍ଠୀଙ୍କ ହୃଦୟକୁ ମୋ ଅନଶନ ଯଦି ସ୍ପର୍ଶ

କରିବ ତେବେ ଏହାର ପ୍ରଭାବ ପଞ୍ଜାବରେ ଗଣ୍ଡଗୋଳକାରୀଙ୍କ ଉପରେ ମଧ୍ୟ ପଡ଼ିପାରେ । ତେଣୁ ଆଜି ରାତ୍ରି ୮ଟା ୧୫ ମିନିଟ୍‌ଠାରୁ ମୁଁ ଅନଶନ ଆରମ୍ଭ କରିବି । କଲିକତାକୁ ସ୍ୱାଭାବିକ ଅବସ୍ଥା ଫେରିଲେ ଯାଇ ଅନଶନ ଭାଙ୍ଗିବି ।'

ସ୍ଥିର ହେଲା ଆମରଣ ଅନଶନ । କଲିକତାକୁ ସ୍ୱାଭାବିକ ଅବସ୍ଥା ନ ଫେରିଲେ ମହାତ୍ମାଜୀ ଦେହତ୍ୟାଗ କରିବେ ।

ସେପ୍‌ଟେମ୍ବର ୨ ତାରିଖରେ ବହୁ ଅନୁଷ୍ଠାନର ପ୍ରତିନିଧିଦଳ ଓ ଅନ୍ୟାନ୍ୟ ଲୋକଙ୍କର ଧାଡ଼ି ଲାଗିଲା ଗାନ୍ଧୀଙ୍କ ବାସସ୍ଥାନକୁ । ସେମାନେ କହିଲେ, ମହାତ୍ମାଜୀଙ୍କ ପ୍ରାଣରକ୍ଷା କରିବାକୁ ସେମାନେ ସବୁକିଛି କରିବାକୁ ତିଆର । ଗାନ୍ଧୀ ବୁଝାଇଦେଲେ, ଏ ମନୋବୃତ୍ତି ଠିକ୍ ନୁହେଁ । 'ଲୋକଙ୍କର ବିବେକକୁ ଜାଗ୍ରତ କରିବାକୁ, ଓ ମନର ଆଳସ୍ୟ ଦୂର କରିବାକୁ ସେ ଅନଶନ କରିଥାନ୍ତି' ବୋଲି ଗାନ୍ଧୀ ଏମାନଙ୍କୁ ବୁଝାଇଲେ । ଲୋକଙ୍କ ହୃଦୟ ପରିବର୍ତ୍ତନ ହେଲେ ଯାଇ, ତାହାର ଆନୁଷଙ୍ଗିକ ଭାବେ ତାଙ୍କ ଜୀବନ ରହି ଯାଇପାରେ ।

ସେପ୍‌ଟେମ୍ବର ୪ ତାରିଖରେ ମ୍ୟୁନିସିପାଲ୍ କର୍ତ୍ତୃପକ୍ଷ ଗାନ୍ଧୀଙ୍କୁ ଜଣାଇଲେ ଯେ, ବିଗତ ୨୪ ଘଣ୍ଟାଯାକ କଲିକତାରେ ପୂର୍ଣ୍ଣ ଶାନ୍ତି ରହିଛି । ସେମାନେ ଆଉରି ଜଣାଇଲେ ଯେ, ସାଂପ୍ରଦାୟିକ ସଦ୍‌ଭାବ ରକ୍ଷା ବିଷୟରେ ନିଜ ଆନ୍ତରିକତାର ପ୍ରମାଣ ସ୍ୱରୂପ ଉତ୍ତର କଲିକତାର ୫୦୦ଶହ ପୁଲିସ୍‌-ବାଲା ଗାନ୍ଧୀଙ୍କ ପ୍ରତି ମମତା ଦେଖାଇ ୨୪ ଘଣ୍ଟିଆ ଅନଶନ ଆରମ୍ଭ କରିଛନ୍ତି ଓ ଅନଶନ ଭିତରେ ବି ଡିଉଟି କରୁଛନ୍ତି । ଏମାନଙ୍କ ମଧ୍ୟରେ ବ୍ରିଟିଶ୍ ପୁଲିସ ଅଫିସର୍‌ମାନେ ବି ଅଛନ୍ତି । ଦେଖିବାକୁ ଝଗଡ଼ା ଦୁର୍ଦ୍ଧାନ୍ତ ଗୁଣ୍ଡାସର୍ଦ୍ଦାରମାନେ ଆସି ଗାନ୍ଧୀଙ୍କ ଖଟପାଖେ ବସି କାନ୍ଦିଲେ, ଏବଂ ଭବିଷ୍ୟତରେ କୌଣସି ପ୍ରକାର ଗୁଣ୍ଡାମି କରିବେ ନାହିଁ ବୋଲି ଶପଥ କଲେ । ସହରର ହିନ୍ଦୁ, ମୁସଲିମ ଓ ଖ୍ରୀଷ୍ଟିଆନ ସଂପ୍ରଦାୟର ମୁରବିଶ୍ରେଣୀୟ ଲୋକେ, ଶ୍ରମିକ, ବଣିକ ଓ ଦୋକାନଦାରମାନେ ଗାନ୍ଧୀଙ୍କ ପାଖେ ଜବାବ୍ କଲେ ଯେ, ଭବିଷ୍ୟତରେ କଲିକତାରେ ଆଉ କୌଣସି ଗଣ୍ଡଗୋଳ ହେବ ନାହିଁ । ଗାନ୍ଧୀ ସେମାନଙ୍କ କଥାରେ ବିଶ୍ୱାସ କଲେ କିନ୍ତୁ କହିଲେ ଯେ, ଏଥର ସେ ଲିଖିତ ପ୍ରତିଶ୍ରୁତି ଚାହାନ୍ତି । ପ୍ରତିଶ୍ରୁତି ପତ୍ରରେ ଯେଉଁମାନେ ଦସ୍ତଖତ କରିବେ, ସେମାନେ ଆଗରୁ ଏତିକି ଜାଣି ରଖିବା ଦରକାର ଯେ, ଏ ଲିଖିତ ପ୍ରତିଶ୍ରୁତିର ଯଦି ଖିଲାପ ହୁଏ ତେବେ ଗାନ୍ଧୀ 'ଅଣବାହୁଡ଼ା

ଅନଶନ' କରିବେ ; ସେଇଥିରେ ତାଙ୍କର ମୃତ୍ୟୁ ହେବ, ପୃଥିବୀର କୌଣସି ପ୍ରଲୋଭନ ତାଙ୍କୁ ଟଳାଇ ପାରିବ ନାହିଁ ।

ନଗରର ନେତାମାନେ ଏ ବିଷୟରେ ମସୁଧା କରିବାକୁ ଫେରି-ଗଲେ । ବଡ଼ ଗୁରୁତର ସମସ୍ୟା; ସେମାନେ ନିଜର ଦାୟିତ୍ୱ ବିଷୟରେ ସମ୍ପୂର୍ଣ୍ଣ ଅବହିତ ହୋଇଥାନ୍ତି । ଯାହାହେଉ, ଶେଷରେ ସେମାନେ ପ୍ରତିଜ୍ଞା ପତ୍ର ତିଆରି କରି ସେଥିରେ ଦସ୍ତଖତ କଲେ । ସେପ୍‌ଟେମ୍ବର ୪ ତାରିଖରେ ରାତି ୯ଟା ୧୫ ମିନିଟ୍‌ରେ ଗାନ୍ଧୀ ମିଠା କମଳାର ଗ୍ଲାସେ ରସ ସହାବର୍ଦ୍ଦିଙ୍କ ହାତରୁ ଗ୍ରହଣ କରି ପିଇଲେ । ଏଥର ସେ ୭୩ ଘଣ୍ଟା ଅନଶନ କରି-ଥିଲେ ।

ଯୁଦ୍ଧ ପରେ ମାସ ମାସ ଧରି ପଞ୍ଜାବ ଓ ଅନ୍ୟ ପ୍ରଦେଶମାନଙ୍କରେ ସାଂପ୍ରଦାୟିକ ଗଣ୍ଡଗୋଳ ଓ ହାଣକାଟ ଲାଗି ରହିଲା । କିନ୍ତୁ କଲିକତା ନଗରବାସୀ ଗାନ୍ଧୀଙ୍କୁ ଲିଖିତ ପ୍ରତିଶ୍ରୁତି ଦେବା ଦିନୁଁ କଲିକତା ଏବଂ ବଙ୍ଗର ଦୁଇ ଭାଗ ଯାକରେ କୌଣସି ଗଣ୍ଡଗୋଳ ହେଲା ନାହିଁ । ବଙ୍ଗାଳୀ-ମାନେ ତାଙ୍କ ଜବାବ ରକ୍ଷା କଲେ ।

ସେପ୍‌ଟେମ୍ବର ୭ ତାରିଖରେ ଗାନ୍ଧୀ କଲିକତା ଛାଡ଼ି ପଞ୍ଜାବ ଯିବା ବାଟରେ ନୂଆ ଦିଲ୍ଲୀ ଯାତ୍ରା କଲେ । ଗାନ୍ଧୀଙ୍କ ଉଦ୍ୟାନର ଆଉ ପାଖରେ କୋଡ଼ି ଓ ଘାସବଗ୍ଚ ଦରକାର ଥାଏ ।

ନୂଆ ଦିଲ୍ଲୀ ଷ୍ଟେସନ୍‌ରେ ସର୍ଦ୍ଦାର ବଲ୍ଲଭଭାଇ ପଟେଲ, ରାଜକୁମାରୀ ଅମୃତ କଉର ପ୍ରମୁଖ ଗାନ୍ଧୀଙ୍କୁ ଭେଟିଲେ । ସେମାନଙ୍କ ମୁହଁ ବିଷାଦରେ ଭରି ଯାଇଥାଏ । ଦିଲ୍ଲୀରେ ହାଣକାଟ ଚାଲିଥିଲା । ପଞ୍ଜାବରେ ମୁସ୍‌ଲିମ୍‌ଙ୍କ ଉତ୍ପାତ ଯୋଗୁଁ ଶିଖ୍ ଓ ହିନ୍ଦୁ ଶରଣାର୍ଥୀମାନେ ପଳାଇ ଆସି ଦିଲ୍ଲୀରେ ରୁଣ୍ଡ ହୋଇଥାନ୍ତି । ମହାତ୍ମା ଯେଉଁ ହରିଜନ ବସ୍ତିରେ ରହୁଥିଲେ ତା'କୁ ଏହି ଶରଣାର୍ଥୀମାନେ ଦଖଲ କରିଥାନ୍ତି । ତେଣୁ ଗାନ୍ଧୀଙ୍କୁ ବିରଳା ଭବନରେ ରହିବାକୁ ପଡ଼ିବ ବୋଲି ସର୍ଦ୍ଦାରଜୀ ପ୍ରମୁଖ ଗାନ୍ଧୀଙ୍କୁ ଜଣାଇଲେ । ଗାନ୍ଧୀ ଏ ଭବନକୁ କହୁଥିଲେ, 'ପ୍ରାସାଦୋପମ ବିରଳା ନିବାସ' ।

ଗାନ୍ଧୀଙ୍କ କୋଠରୀ ବିରଳା ଭବନର ତଳ ମହଲାରେ, ଭୂଇଁରୁ ପ୍ରାୟ ଏକଫୁଟ ଉଚ୍ଚରେ । କୋଠରୀଟିର ଲମ୍ବ ଓସାର ପ୍ରାୟ ୨୫ ଫୁଟରେ ୧୭ ଫୁଟ । ଏହାର ପାଖକୁ ଲାଗି ଗୋଟିଏ ଗାଧୁଆ ଘର । ଗାନ୍ଧୀ ଆସି ପହଞ୍ଚିବାରେ ସେ କୋଠରୀରେ ଥିବା ସମସ୍ତ ଆସବାବ୍‌ପତ୍ର ବାହାର

କଟାଉଥିଲେ । ଦେଖା କରିବାକୁ ଯେ ଆସନ୍ତି, ତାଙ୍କୁ ତଳେ ବସିବାକୁ ପଡ଼େ ; ଗାନ୍ଧୀ ଶୁଅନ୍ତି, କୋଠରୀର ବାହାର ବାରଣ୍ଡାରେ । ଗୋଟିଏ ଇଲେକଟ୍ରିକ୍ ଚୁଲି ଓ ଗୋଟିଏ ଇଲେକ୍‌ଟ୍ରିକ୍ ଲାଇଟ ତାଙ୍କ ବ୍ୟବହାର ପାଇଁ ଦିଆ ହୋଇଥାଏ । ଭବନର ଡାହାଣ ପଟେ ଗାନ୍ଧୀ ପ୍ରାର୍ଥନା ସଭା କରନ୍ତି ; କୋଠରୀଟି ସେଇ ପଟେ, ବିରଳା ଭବନର ଗୋଟିଏ କଣରେ । ଗାନ୍ଧୀ ନିଜ କୋଠରୀରୁ ଗୋଟିଏ ଉଚ୍ଚ ଝରକାବାଟେ ବାହାରି ତଳକୁ ଆସନ୍ତି, ଏବଂ ଦୁଇପଟେ ନାଲି କୁଣ୍ଡା-ପଥରର ଖୁଣ୍ଟି ଥିବା ଲମ୍ବା ରାସ୍ତାର ଆରପଟେ ଥିବା ସଭା ମଣ୍ଡପକୁ ଯାଆନ୍ତି । ଦୁଇପଟର ଖୁଣ୍ଟିମାନଙ୍କ ଉପରେ ଫୁଲର ଲଟି ଘଞ୍ଚ ଭାବରେ ମାଡ଼ି ଗୋଟିଏ କୁଞ୍ଜ ପରି ହୋଇଥାଏ ।

ବିରଳା ଭବନରେ ପହଞ୍ଚି ଗାନ୍ଧୀ ଶୁଣିଲେ ଯେ, ବଜାରରେ ସଜ ପରିବା ବା ଫଳ ମିଳୁନାହିଁ । ଦିଲ୍ଲୀରେ ଗଣ୍ଡଗୋଳ କରିଥିବା ଯୋଗୁଁ ବାହାରୁ ଅତ୍ୟାବଶ୍ୟକ ପଣ୍ୟଦ୍ରବ୍ୟ ଆସିବା ବନ୍ଦ ହୋଇଯାଇଥାଏ । ଗାନ୍ଧୀ କହିଲେ, ଦିଲ୍ଲୀ ଦିଶୁଛି 'ମୁର୍ଦ୍ଦାରଙ୍କର ନଗରୀ' ପରି ।

ପ୍ରବଳ ଉତ୍ସାହରେ, କୌଣସି ବାଧା ନ ମାନି, ଦିଲ୍ଲୀ ଓ ପଞ୍ଜାବକୁ ପ୍ରକୃତିସ୍ଥ କରିବା କାର୍ଯ୍ୟରେ ଗାନ୍ଧୀ ମନ ପ୍ରାଣ ଦେଇ ଲାଗିଗଲେ । ଏ କାମ ଆଗରେ ଆଉ କୌଣସି କାମ ତାଙ୍କୁ ବଡ଼ ଜଣା ପଡ଼ିଲା ନାହିଁ । ପୂର୍ବେ ତାଙ୍କ ରକ୍ତଗ୍ରୁପ ପରୀକ୍ଷା କରିବାକୁ ସେ ଡାକ୍ତରମାନଙ୍କୁ ଅନୁମତି ଦେଇ-ଥିଲେ । ଏଥର ସେ କହିଲେ, 'ମୋ ପାଇଁ ଲାଗନାହିଁ । ମୋତେ କାମ କରିବାକୁ ହେବ । ମୋର ରକ୍ତଗ୍ରୁପ କିପରି ଅଛି, ଜାଣିବାକୁ ମୁଁ ଚାହେଁ ନାହିଁ । ଡାକ୍ତରମାନେ କହିଥିଲେ, 'ତାଙ୍କ ଦେହର ରକ୍ତ ସଂଚଳନ-ପ୍ରଣାଳୀ ଗତ ଦଶବର୍ଷ ଭିତରେ ଟିକିଏ ବି ଖରାପ ହୋଇନାହିଁ । ଏବଂ ଦଶବର୍ଷ ପୂର୍ବେ ତାଙ୍କର ମୁହଁ ଓ ଦେହର ଚମ ଯେତେ କୁଞ୍ଚୁକୁଞ୍ଚୁ ହୋଇଥିଲା ତହିଁରୁ ଟିକିଏ ବି ଅଧିକ କୁଞ୍ଚିତ ହୋଇ ନାହିଁ । ଜଣେ ଚକ୍ଷୁ ବିଶେଷଜ୍ଞ ୧୯୩୯ରେ ତାଙ୍କ ଆଖିରେ ଗୋଟିଏ ମୋତିଆବିନ୍ଦୁ ଦେଖିଥିଲେ, ତାହା ଯୁଆ ଭିତରେ ନ ବଢ଼ି ସେଇମିତି ଥାଏ । ଟାଣ ଶବ୍ଦ ହେଲେ ତାଙ୍କ କାନକୁ ଖରାପ ଲାଗୁଥାଏ । ପ୍ରତିଦିନ ରାତିରେ ପାଞ୍ଚ ଛ'ଘଣ୍ଟା ଏବଂ ଦିନରେ ଅଧଘଣ୍ଟାରୁ ଘଣ୍ଟେ ପର୍ଯ୍ୟନ୍ତ ସେ ଶୋଉଥାନ୍ତି । ସବୁବେଳେ ତାଙ୍କର ଗାଢ଼ ନିଦ ହେଉଥାଏ ଏବଂ ସେ ପ୍ରାୟ କେବେହେଁ ବଳବଳଉ ନ ଥାନ୍ତି । ଥରେ ସେ ରାତିରେ ଶୋଇଥିଲା ବେଳେ ଦୁଇ ହାତଯାକ ଟେକି କଣ ଧରିବା ପରି

ଅବଲମ୍ବ କଲେ । ନିଦ ଭାଙ୍ଗିଲା ପରେ କ'ଣ ସ୍ୱପ୍ନ ଦେଖୁଥିଲେ କି ବୋଲି ଡକ୍ଟର ସୁଶୀଳା ନାୟାରଙ୍କ ପଚାରିବାରେ ସେ କହିଲେ, ଗୋଟାଏ କାନ୍ଥରେ ଚଢ଼ୁଥିଲେ । ପ୍ରତ୍ୟହ ସକାଳେ ଉଠିଲା ପରେ ସେ ସତେଜ ଓ ଉତ୍ସାହପୂର୍ଣ୍ଣ ଜଣାଯାଉଥିଲେ ।

ରାଜନୀତିକ ପରିସ୍ଥିତି ଯୋଗୁଁ ମନରେ ତୀବ୍ର ବେଦନା ହେଉଥିଲେ ହେଁ ସେ ପୂର୍ବପରି ତାଙ୍କ ଶରୀରର ଖୁବ୍ ଯତ୍ନ ନେଉଥାନ୍ତି । ବାହାରେ ୧୦୦ ବା ୧୦୧ ଡିଗ୍ରୀ (ଫାରେନହିଟ) ତାପ ଥିଲାବେଳେ ବି ସେ ଖୁବ୍ ଗରମ ପାଣିରେ ୧୦ ଠାରୁ ୨୦ ମିନିଟ୍ ବସି ରହିବାକୁ ସୁଖ ପାଉଥିଲେ । ବେଳେ ବେଳେ ଗରମ ପାଣିରେ ବସିବା ଫଳରେ ତାଙ୍କ ମୁଣ୍ଡ ଧରୁଥିଲା । ଘରେ ପାଣିକଳରୁ ଝିରି ଝିରି ପାଣି ପଡ଼ିବାର ବ୍ୟବସ୍ଥା ଥିଲେ ସେ ଗରମ ପାଣିରୁ ଉଠି ସେଇ କୃତ୍ରିମ ବର୍ଷଣ ଯନ୍ତ୍ରତଳେ ଥଣ୍ଡା ପାଣିରେ ଗାଧୁଆ ଶେଷ କରୁଥିଲେ ।

ଏଇ କେତେ ମାସର କଠିଣ କାୟିକ ପରିଶ୍ରମ ଏବଂ ଗଭୀର ମାନସିକ ଉଦ୍‌ବେଗ ବେଳେ ସେ ପୂର୍ବ ଅପେକ୍ଷା କମ୍ ଖାଉଥିଲେ । ତାଙ୍କର ନୀତି ଥିଲା : ବେଶି କାମ ପଡ଼ିଲେ କମ୍ ଖାଅ । ଏତେବେଳେ ତ ବହୁତ କାମ କରିବାର ଥାଏ ।

ବିରଳା ଭବନରେ ରହିବାର ପହିଲି ପ୍ରଥମ ଦିନ ଗାନ୍ଧୀ ଓଖଲାଠାରେ ଡକ୍ଟର୍ ଜାକିର ହୋସେନଙ୍କୁ ଦେଖିବାକୁ ଯାଇଥିଲେ । ଓଖଲା ନଈ ଦିଲ୍ଲୀଠାରୁ ୧୪ ମାଇଲ ଦୂରରେ ଥିବା ଗୋଟିଏ ଗ୍ରାମ ।

ଜାକିର ହୋସେନ ଜଣେ ସୌମ୍ୟବପୁ ପଣ୍ଡିତ, ତାଙ୍କର ବିଶ୍ଳେଷଣ-ବୁଦ୍ଧି ଓ ଚରିତ୍ର ଖୁବ୍ ମହତ୍ ; ସେ ଓଖଲାଠାରେ ଜାମିଆ ମିଲିଆ ଇସ୍‌ଲାମିଆ ବୋଲି ଗୋଟିଏ ଧର୍ମସାପେକ୍ଷ ବିଦ୍ୟାଳୟର ମୁଖ୍ୟ ହୋଇ-ଥାନ୍ତି । ଗାନ୍ଧୀ ଏହି ବିଦ୍ୟାଳୟ ପାଇଁ ନିଜେ ଚାନ୍ଦା ସଂଗ୍ରହ କରିଥିଲେ । ଏହି ଡକ୍ଟର୍ ଜାକିର ହୋସେନଙ୍କୁ ଗାନ୍ଧୀ ତାଙ୍କ ଜାତୀୟ ମୌଳିକ ଶିକ୍ଷା ସଂସ୍ଥାର ସଭାପତି ନିଯୁକ୍ତ କରିଥିଲେ । ଯେଉଁ ସମ୍ମିଳନୀରେ ଗାନ୍ଧୀ ଜାକିର ହୁସେନଙ୍କୁ ସଭାପତି ନିଯୁକ୍ତ କଲେ, ସେଥିରେ ଡକ୍ଟର ହୋସେନଙ୍କ ବ୍ୟତୀତ ଅନ୍ୟ ସମସ୍ତ ସଭାସଦ୍ ଗାନ୍ଧୀଙ୍କ ମୌଳିକ ଶିକ୍ଷାନୀତିକୁ ଗ୍ରହଣ କରିଥିଲେ ।

ଓଖଲା ବିଦ୍ୟାଳୟ କେତେଗୁଡ଼ିଏ ନବନିର୍ମିତ, କ୍ଷୁଦ୍ର, ସଫାସୁତୁରା ଘରରେ ହେଉଥାଏ । ଏ ଅଞ୍ଚଳଟି ମୁସ୍‌ଲିମ୍ ସଂସ୍କୃତି ଓ ପରଂପରାର ସ୍ମୃତିରେ ପୂର୍ଣ୍ଣ ଏବଂ ଏଥିରେ ବହୁ ମୋଗଲ ଦୁର୍ଗ ଓ ମସଜିଦ୍‌ର ଭଗ୍ନାବଶେଷ ଅବସ୍ଥିତ । ୧୯୪୭, ଅଗଷ୍ଟ ମାସରେ ଉତ୍ତେଜିତ ହିନ୍ଦୁ ଓ ଶିଖ୍‌ଙ୍କ ବିକ୍ଷୁବ୍ଧ ସମୁଦ୍ର ଏ ବିଦ୍ୟାଳୟଟିକୁ ଗ୍ରାସ କରିବାକୁ ବସିଥିଲା । ସେତେବେଳେ ହିନ୍ଦୁ ଓ ଶିଖ୍‌ମାନଙ୍କର ଯେଉଁଭଳି ମନୋବୃତ୍ତି ହୋଇଥାଏ, ସେଥିରେ ମୁସଲିମ୍‌ଙ୍କ ନାମ ପଡ଼ିଲେ ଏମାନେ ହିତାହିତ ଜ୍ଞାନ ହରାଇ ଦେଉଥାନ୍ତି; ମୁସ୍‌ଲିମ୍ ଲୋକ ଓ ମୁସ୍‌ଲିମ୍ ସ୍ମୃତିସ୍ତମ୍ଭ ବା ଘରଦ୍ୱାର ସବୁ ସମାନଭାବରେ ଜଘନ୍ୟ ମନେ ହେଉଥାଏ । ରାତିତମାମ ବିଦ୍ୟାଳୟର ଶିକ୍ଷକ ଓ ଛାତ୍ରମାନେ ନିଜର ହତା ଜଗି ରହିଥାନ୍ତି, ପ୍ରତିମୁହୂର୍ତ୍ତରେ ଆକ୍ରମଣର ଆଶଂକା ଥାଏ । ବିଦ୍ୟାଳୟ ହତାର ସବୁତକ ଆଲୁଅ ଲିଭାଇ-ଦିଆ ହୋଇଥାଏ । ବିଦ୍ୟାଳୟ ହତାର ଚାରିପଟେ ବୃତ୍ତାକାରରେ ମୁସ୍‌ଲିମ୍ ଗ୍ରାମମାନ ଜଳୁଥାଏ; ମୁସ୍‌ଲିମ୍ ଗୃହମାନଙ୍କରୁ ହୁଳା ହୁଳା ହୋଇ ନିଆଁ ବାହାରୁଥାଏ । ବିଦ୍ୟାଳୟର ନିକଟରେ ଯମୁନା ନଦୀ । ପ୍ରତି ରାତିରେ ବିଦ୍ୟାଳୟର ଅନ୍ତେବାସୀମାନେ ଶୁଣୁଥାନ୍ତି, ଆକ୍ରମଣକାରୀଙ୍କଠାରୁ ରକ୍ଷା ପାଇବା ପାଇଁ ମୁସ୍‌ଲିମ୍‌ମାନେ ଖପ୍ ଖପ୍ କରି ନଈକୁ ଡେଇଁ ପଡ଼ୁଥାନ୍ତି । କିନ୍ତୁ ତାଙ୍କୁ ଗୋଡ଼ାଉଥିବା ଲୋକେ ମଧ୍ୟ ତାଙ୍କ ପଛରେ ନଈକୁ ଡେଇଁଥାନ୍ତି; ନଈ ଭିତରେ ଧରାପରା ଲାଗେ । ରକ୍ଷାପାଇବାକୁ ପଳାଇ ଆସିଥିବା ଲୋକଙ୍କୁ ଆକ୍ରମଣକାରୀମାନେ ପାଣିରେ ମାଡ଼ି ମାରିଦିଅନ୍ତି; ନ ହେଲେ, ଛୁରୀରେ ତୋଟି କାଟି ଦିଅନ୍ତି ଯେ ପ୍ରାଣବିକଳରେ ବିଚରା ଶେଷ ଚିତ୍କାର କରି ଚିରକାଳ ପାଇଁ ତୁନି ହୋଇଯାଏ । ଆକ୍ରମଣକାରୀଙ୍କ ଦଳ କ୍ରମେ କ୍ରମେ ବିଦ୍ୟାଳୟର ନିକଟବର୍ତ୍ତୀ ହେଉଥାନ୍ତି । ଦିନେ, ରାତିର ଘୋର ଅନ୍ଧାରରେ ଗୋଟାଏ ଟ୍ୟାକ୍‌ସି ଜାମିଆ ମିଲିଆ ହତା ଭିତରେ ପଶିଗଲା; ତହିଁରୁ ଓହ୍ଲାଇ ପଡ଼ିଲେ ସ୍ୱୟଂ ଜବାହାରଲାଲ ନେହେରୁ । ଦିଲ୍ଲୀକୁ ଘେରି ରହିଥିବା ଉନ୍ମତ୍ତ ଲୋକଙ୍କ ଘେର ଭେଦ କରି ସେ ଏକୁଟିଆ ଟ୍ୟାକ୍‌ସିରେ ଆସିଥାନ୍ତି, ଡକ୍ଟର୍ ହୋସେନ୍ ଓ ତାଙ୍କ ଛାତ୍ରଙ୍କ ସାଙ୍ଗେ ଯଦି ଆକ୍ରମଣ ହେଲେ ସେମାନଙ୍କୁ ରକ୍ଷା କରିବାକୁ ।

ମୁସ୍‌ଲିମ୍ ବିଦ୍ୟାଳୟ ଏଭଳି ବିପଦରେ ପଡ଼ିଥିବାର ଶୁଣିବାମାତ୍ରେ ଗାନ୍ଧୀ ଗୋଟିଏ ମଟରଗାଡ଼ିରେ ଆସି ପହଞ୍ଚିଲେ ଓ ବିଦ୍ୟାଳୟରେ ଘଣ୍ଟେ

କାଳ ରହି ଡକ୍ଟର ହୋସେନ୍, ତାଙ୍କ ଶିକ୍ଷକ ଓ ଗୁରୁମାନଙ୍କ ସହିତ କଥାବାର୍ତ୍ତା କରି ଫେରି ଆସିଲେ । ଗାନ୍ଧୀଙ୍କ ପାଦ ପଡ଼ିବାରେ ଜାମିଆ ମିଲିଆ ପବିତ୍ର ହୋଇଗଲା । ତା'ପରେ ଏହା ଉପରେ କୌଣସି ବିପତ୍ତି ପଡ଼ିଲା ନାହିଁ ।

ସେଇଦିନ ସେ ବାସଚ୍ୟୁତମାନଙ୍କର ଏକାଧିକ ଶିବିରକୁ ବୁଲି ଯାଇଥିଲେ । ସାଙ୍ଗରେ ସଶସ୍ତ୍ର ପୁଲିସ୍ ନେବାକୁ ତାଙ୍କୁ ବହୁତ ପ୍ରବର୍ତ୍ତାଗଲା ; କୁହାଗଲା ଯେ, ହିନ୍ଦୁ ଓ ଶିଖ୍‌ମାନେ ତାଙ୍କୁ ମୁସଲିମ୍‌ପକ୍ଷପାତୀ ବୋଲି ଆକ୍ରମଣ କରିପାରନ୍ତି, ହିନ୍ଦୁ ବୋଲି ତାଙ୍କୁ ମୁସ୍‌ଲିମ୍‌ମାନେ ଆକ୍ରମଣ କରି-ପାରନ୍ତି, ଓ ଯେଉଁମାନେ ଘରୁ ସ୍ତ୍ରୀଲୋକ ଅପହୃତ ହୋଇଥିବାରୁ, ମଣିଷ ମରିଥିବାରୁ ପାଗଳା ହୋଇଯାଇଛନ୍ତି ସେମାନେ ବିନାକାରଣରେ ତାଙ୍କୁ ଆକ୍ରମଣ କରିପାରନ୍ତି । କିନ୍ତୁ ଗାନ୍ଧୀ ଏ ସବୁ ନ ଶୁଣି, ସାଥିରେ ସଶସ୍ତ୍ର ପ୍ରହରୀ ନ ନେଇ ଗଲେ ।

ପ୍ରାଣର ଭୟ ଓ ସ୍ୱାସ୍ଥ୍ୟର ବିପଦକୁ ଜଳାଞ୍ଜଳି ଦେଇ ଗାନ୍ଧୀ ଅସାଧାରଣ ଶକ୍ତି ଓ ସାମର୍ଥ୍ୟ ଆହରଣ କରି ଦିଲ୍ଲୀ ନଗରୀ ଭିତରେ ଦିନକୁ ବହୁବାର ଏପଟ ସେପଟ ହେଲେ ; ସେ ଚଣ୍ଡଗୋଳ ଲାଗିଥିବା ଅଞ୍ଚଳରେ ଗସ୍ତ କରୁଥାନ୍ତି, ସହର ଭିତରେ ଓ ବାହାରେ ସ୍ଥାପିତ ହୋଇଥିବା ବାସ୍ତୁହରାଙ୍କ ଶିବିରରେ ବୁଲୁଥାନ୍ତି ଓ ହଜାର ହଜାର ବାସଚ୍ୟୁତ ଉଦ୍‌ବେଗ ଜନତାଙ୍କୁ ଦିନକେ ବହୁବାର ବିଭିନ୍ନ ସ୍ଥାନରେ ବକ୍ତୃତା ଦେଉଥାନ୍ତି । ସେପ୍‌ଟେମ୍ବର ୨୦ ତାରିଖ ଦିନ ପ୍ରାର୍ଥନା ସଭାରେ ସେ କହିଲେ, 'ଆଜି ଏ ବର୍ଷାବେଳେ ଦିଲ୍ଲୀ, ପୂର୍ବ ପଞ୍ଜାବ (ଭାରତ), ଓ ପଶ୍ଚିମ ପଞ୍ଜାବ (ପାକିସ୍ଥାନ)ର ନିରାଶ୍ରୟ ବାସ୍ତୁହରାଙ୍କ କଥା ମୋର ମନେ ପଡ଼ୁଛି । ମୁଁ ଶୁଣିଛି, ୫୭ ମାଇଲ୍ ଲମ୍ବା ଗୋଟାଏ ଧାଡ଼ିରେ ହିନ୍ଦୁ ଓ ଶିଖ୍ ଆଶ୍ରୟଚ୍ୟୁତ ଲୋକେ ଭାରତ ଆଡ଼େ ପଶ୍ଚିମ ପଞ୍ଜାବରୁ ଆସୁଛନ୍ତି । ଏ ଦୁର୍ଗତି ଏମାନଙ୍କର କିପରି ହେଲା ବିଗିଲା ବେଳକୁ ମୋ ମୁଣ୍ଡ କ'ଣ ହୋଇଯାଉଛି । ପୃଥିବୀର ଇତିହାସରେ ଏଭଳି ଦୁର୍ଘଟଣାର ପଟାନ୍ତର ନାହିଁ । ଏ ଘଟଣାରେ ମୋ ମୁଣ୍ଡ ଲଜ୍ଜାରେ ନଇଁ ଯାଉଛି, ତୁମମାନଙ୍କର ମଧ୍ୟ ନଇଁ ଯିବା ଉଚିତ ।'

ଗାନ୍ଧୀ ଏକଥା ଅତିରଞ୍ଜିତ କରି କହି ନ ଥିଲେ । ୫୭ ମାଇଲ ଲମ୍ବା ଧାଡ଼ି କଥା ସେ ଯାହା କହିଥିଲେ ତାହା ଥରେ ନୁହେଁ, ଏହିପରି

କେତେ ଥର ଲମ୍ବ ଲମ୍ବ ଧାଡ଼ିରେ ଅନ୍ତତଃ ଦେଢ଼ କୋଟି ଲୋକ ପଶ୍ଚିମ ପାକିସ୍ଥାନରୁ ଶହ ଶହ ମାଇଲ ଆସି ଭାରତକୁ ଆସିଥିଲେ । ସେମାନେ ଆସି ସାଙ୍ଗେ ସାଙ୍ଗେ ଯେ ନୂଆ ଘର ବା ଜୀବନଯାପନ କରିବାର ନୂଆ ସୁବିଧା ସୁଯୋଗ ପାଇଥିଲେ ତାହା ନୁହେଁ । ସେମାନେ ଆସି ମୁଣ୍ଡ ଗୁଞ୍ଜିବାକୁ ବାସ ପାଇଲେ ନାହିଁ, ଅନେକେ ମଲେ ଓ ରୋଗଗ୍ରସ୍ତ ହୋଇ ଅକର୍ମଣ୍ୟ ହୋଇଗଲେ । ପଞ୍ଜାବର ଯେଉଁ ଅଂଶ ପାକିସ୍ଥାନର ଭାଗରେ ପଡ଼ିଲା, ସେଥିରୁ କୋଟି ସଂଖ୍ୟାରେ ହିନ୍ଦୁ ଓ ଶିଖ୍ ମୁସଲମାନଙ୍କ ଛୁରୀ ଓ ଠେଙ୍ଗାର ଭୟରେ ପଳାଇ ଆସିଲା ବେଳକୁ, ଅନୁରୂପ ସଂଖ୍ୟାରେ ମୁସ୍‌ଲିମ୍, ହିନ୍ଦୁ ଓ ଶିଖ୍‌ଙ୍କ ଛୁରୀ ଓ ଲାଠିର ଭୟରେ ପାକିସ୍ଥାନ ଅଭିମୁଖେ ପଳାଉଥାନ୍ତି । ପୁଲିସ୍ ଏମାନଙ୍କୁ ରକ୍ଷା କରିବା କଥାର କଥା ହୋଇଯାଇଥାଏ । ପୁଲିସ୍, ଏପରିକି ମିଲିଟାରୀ ମଧ୍ୟ, ପଛରୁ ଆକ୍ରମଣ କରିବାକୁ ଗୋଡ଼ାଇଥିବା ଦୁର୍ବୃତ୍ତଙ୍କ ସଙ୍ଗେ ସମଭାବାପନ୍ନ ହୋଇ ଅନେକ ସମୟରେ ପଳାତକ-ମାନଙ୍କୁ ଲୁଣ୍ଠନ ଓ ହତ୍ୟା କରିବାରେ ସହାୟ ହେଉଥାନ୍ତି ।

ଧାଡ଼ି ଧରି ପୁଲିସ୍‌ଙ୍କଦ୍ୱାରା ନାମକୁ ମାତ୍ର 'ରକ୍ଷିତ' ହୋଇ ଯେଉଁ-ମାନେ ଆସୁଥାନ୍ତି ସେମାନଙ୍କ ସଙ୍ଗେ କେତେଜଣ କ୍ଳାନ୍ତଶ୍ରାନ୍ତ ପୁଲିସବାଲା ଓ କେତେଜଣ ସ୍ୱେଚ୍ଛାସେବକ ଥାନ୍ତି । କିନ୍ତୁ ଆହୁରି ଅନେକ ଲୋକ ବିଶୃଂଖଳଭାବେ ଆତଙ୍କରେ ବାବନାଭୂତ ପରି ପଳାଇ ଆସୁଥାନ୍ତି । ସେମାନେ ନିଜ ନିଜ ବଳଦଗାଡ଼ିରେ ମାଲମତା ଓ ପିଲାପିଲିଙ୍କୁ ଲଦି ପଳାଉଥାନ୍ତି । ଯେଉଁମାନଙ୍କର ମୂଳରୁ ବଳଦଗାଡ଼ି ନ ଥିଲା ବା ଯେଉଁମାନଙ୍କ ବଳଦଗାଡ଼ି ଅପହୃତ ହୋଇଥିଲା, ସେମାନେ ଚାଲିଚାଲି ପଳାଉଥାନ୍ତି । ପରିବାରର ସମସ୍ତେ ଘରଠାରୁ ଦୂରକୁ ପ୍ରାଣରକ୍ଷା କରିବାକୁ ଧାଇଁଥାନ୍ତି, ସମର୍ଥ ଲୋକେ ପିଲାଙ୍କୁ ଓ ରୋଗୀଙ୍କୁ ଡୋଲିରେ ବୁହାଇଥାନ୍ତି, ଓ ବୁଢ଼ାଙ୍କୁ କାନ୍ଧରେ ବସାଇଥାନ୍ତି । ଅନେକ ସମୟରେ ପଳାତକମାନେ ରୋଗୀଙ୍କୁ ଧୂଳିପୂର୍ଣ୍ଣ ରାସ୍ତା କଡ଼ରେ ମରିବାକୁ ପକାଇଦେଇ ପଳାଇ ଯାଉଥାନ୍ତି । କଲେରା, ବସନ୍ତ ଏବଂ ଅନ୍ୟ ନାନାପ୍ରକାର ରୋଗ ପଳାତକମାନଙ୍କୁ ଦୈବଦଣ୍ଡ ପରି ଯନ୍ତ୍ରଣା ଦେଉଥାଏ । ଦିନ ଦିନ ଓ ହପ୍ତା ହପ୍ତା ଧରି ପୁଲିସ୍ 'ରକ୍ଷିତ' ଧାଡ଼ିମାନ ଆସ୍ତେ ଆସ୍ତେ ଆଗେଇଥାନ୍ତି, ବାଟରେ ମୁର୍ଦ୍ଦାରଙ୍କୁ ପକାଇ ଦେଇ ଆସୁଥାନ୍ତି ତାଙ୍କ ରାସ୍ତାର ଚିହ୍ନ ସ୍ୱରୂପ । ଧାଡ଼ି ଧରି ଚାଲିଥିବା ଲୋକଙ୍କ ଉପରେ ସାରଗୁଣା ଉଡ଼ୁଥାନ୍ତି, ପଥଶ୍ରାନ୍ତ ଓ ରୁଗ୍‌ଣ ପଳାତକମାନେ ପଛରେ

ପଡ଼ିଗଲେ ଖାଇବେ ବୋଲି । ଅଳ୍ପ କେତୋଟି ପରିବାର ଶୀଘ୍ର ରହିବାକୁ କିଛି କିଛି ପାଥେୟ ଧରି ଆସିଥାନ୍ତି । ଅନେକ ସମୟରେ ଏତକ ଚୋରି ଯାଉଥାଏ, ଏବଂ ବଳୁଆ ଲୋକେ ଛଡ଼େଇ ନେଉଥାନ୍ତି । ଯାହାଙ୍କର ଚୋରି ଯାଉଥାଏ, ସେମାନେ ଉପବାସ ରହନ୍ତି ; ଯେ ଚୋରେଇ ନେଇଥାନ୍ତି ସେମାନେ ଚୋରି ମାଲରେ ଦିନେ ଦୁଇଦିନ ବଂଚିଯାନ୍ତି । ବେଳେବେଳେ ବିପରୀତ ଦିଗକୁ ଯାଉଥିବା ଦୁଇ ଦଳ ରାସ୍ତାରେ ପରସ୍ପରର ନିକଟରେ ବାଧା କରନ୍ତି ଓ ସେଇଠାରେ ଉନ୍ମତ୍ତଭାବେ ଧରାଧରି ମରାମରି ଲାଗିଯାଏ ।

ନେହେରୁ ସରକାର ଦିଲ୍ଲୀ ବାହାରେ ସାହାଯ୍ୟ କେନ୍ଦ୍ରମାନ ସ୍ଥାପନ କରିଥିଲେ ; ଓ ଦିଲ୍ଲୀକୁ ଆସୁଥିବା ନିରାଶ୍ରିତ ଲୋକଙ୍କୁ ସେଇଠାରେ ଅଟକାଇ ସେମାନଙ୍କର ହେପାଜତ କରୁଥିଲେ । କିନ୍ତୁ ହଜାର ହଜାର ଲୋକ ଅଟେଇରୁ ଖସି ଦିଲ୍ଲୀରେ ପଶୁଥାନ୍ତି ଏବଂ ଜବରଦସ୍ତି କରି ଯାହା ପାଉଥାନ୍ତି, ତାହା ଖାଉଥାନ୍ତି । ଏମାନେ ରାସ୍ତାରେ ଦିଲ୍ଲୀବାସୀଙ୍କ ଦାଣ୍ଡ-ଦୁଆରେ, ଅଗଣାରେ, ସଡ଼କ ଦାଢ଼ରେ, ନର୍ଦ୍ଦମାକଡ଼ରେ, ଓ ବିଚ ରାସ୍ତା ଉପରେ ଶୋଉଥାନ୍ତି । ସେମାନେ ଶ୍ରାନ୍ତ ହୋଇ ପିଚୁ ରାସ୍ତାରେ ପଡ଼ିଥିଲା ବେଳେ ଅସାବଧାନ ମଟର ଡ୍ରାଇଭର୍‌ମାନେ ତାଙ୍କ ଉପରେ ଗାଡ଼ି ମଡ଼େଇ ପଳାଇବାର ବି ବେଳେବେଳେ ଘଟିଥିଲା ।

ପାକିସ୍ଥାନକୁ ପଳାଇଥିବା ମୁସ୍‌ଲିମରି ଦିଲ୍ଲୀରେ ଥିବା ଘର ଏହି ବାସଚ୍ୟୁତ ଲୋକଙ୍କର ନ୍ୟାଯ୍ୟ ସମ୍ପତ୍ତି ବୋଲି ବିବେଚିତ ହେଉଥାଏ ; ଏମାନେ ଏ ଘରସବୁ ଅଧିକାର କରି ଯାଉଥାନ୍ତି, ମୁସଲମ୍‌ମାନଙ୍କ ଦୋକାନ ଲୁଟି କରି ନେଉଥାନ୍ତି । ମୁସ୍‌ଲିମ୍‌ମାନେ ଯେଉଁଠାରେ ବାଧା ଦେବାକୁ ବସନ୍ତି ସେଠାରେ ହାଣକାଟ ଆରମ୍ଭ ହୋଇଯାଏ । ଆଦିମ-ବାସୀଙ୍କ ଅବସ୍ଥାରେ ପତିତ ଏହି ବାସଚ୍ୟୁତମାନେ ଆଦିମବାସୀଙ୍କ ଢଙ୍ଗରଙ୍ଗ ଧରିଥାନ୍ତି ।

ମୁର୍ଦ୍ଦାର ଓ ମଭୁଆଳପୂର୍ଣ୍ଣ ଏହି ନଗରୀରେ ମହାତ୍ମା ଗାନ୍ଧୀ ଶାନ୍ତି ଓ ମୈତ୍ରୀର ବାଣୀ ପ୍ରଚାର କରିବାକୁ ଲାଗିଲେ । ସେ କହିଲେ, 'ମୁସ୍‌ଲିମ୍-ମାନେ ଉତ୍ପୀଡ଼ିତ ହେଲେ ବି ପଳାଇ ନ ଯାଇ ରହନ୍ତୁ । ଯେଉଁ ହିନ୍ଦୁ ଶିଖ୍‌ମାନେ ମୁସ୍‌ଲିମ୍‌ଙ୍କୁ ପୀଡ଼ା ଦେଉଛନ୍ତି ସେମାନେ ଧର୍ମର ଅମର୍ଯ୍ୟାଦା କରୁଛନ୍ତି ଏବଂ ଭାରତର ଅପୂରଣୀୟ ଅନିଷ୍ଟ କରୁଛନ୍ତି ।' ଯେଉଁମାନେ ବିନା ଲାଇସେନ୍‌ସରେ ବନ୍ଧୁକ ପ୍ରଭୃତି ରଖିଛନ୍ତି, ସେମାନେ ସେ ସବୁ ଆଣି

ତାଙ୍କ ପାଖେ ଦାଖଲ କରନ୍ତୁ ବୋଲି ସେ ମାଗୁଥାନ୍ତି । 'ଲୋକେ ସ୍ୱଇଚ୍ଛାରେ ଅଳ୍ପ କେତୋଟା ବନ୍ଧୁକ ଓ ପିସ୍ତଲ ମୋତେ ଦେବାକୁ ଆରମ୍ଭ କଲେଣି ।'

ମୁଖ୍ୟତଃ ହିନ୍ଦୁ ଓ ଶିଖମାନେ ଥିବା ଗୋଟିଏ ପ୍ରାର୍ଥନା ସଭାରେ ଗାନ୍ଧୀ କହିଲେ, 'ମୁଁ ହିନ୍ଦୁ ଓ ଶିଖମାନଙ୍କଉପରେ ସର୍ବପ୍ରଥମେ ଦୋଷାରୋପ କରୁଛି, ଆପଣମାନେ ମୋତେ ଏଥିପାଇଁ କ୍ଷମା ଦେବାକୁ ପଡ଼ିବ । ଭାରତରେ ରାଷ୍ଟ୍ରର ଅନୁରକ୍ତ ନାଗରିକ ହୋଇ ରହିବାକୁ ଯେଉଁ ମୁସ୍‌ଲିମମାନେ ଚାହାନ୍ତି ସେମାନେ ନିଜନିଜ ଘରକୁ ଫେରି ସେଥିରେ ଶାନ୍ତିରେ, ନିରାପଦଭାବେ ନ ରହିଲି ପର୍ଯ୍ୟନ୍ତ, ଏବଂ ବାସ ଛାଡ଼ିଚାଲି ଆସିଥିବା ହିନ୍ଦୁ ଓ ଶିଖ୍‌ମାନେ ସେମାନଙ୍କ ନିଜ ନିଜ ଘରକୁ ଫେରି ନ ଯିବା ପର୍ଯ୍ୟନ୍ତ ମୁଁ ଥୟ ହୋଇ ରହି ପାରିବି ନାହିଁ । କିନ୍ତୁ ହିନ୍ଦୁ ଓ ଶିଖ୍‌ମାନେ ପାକିସ୍ଥାନକୁ ଫେରିଯିବାକୁ ଡରୁଥାନ୍ତି, ଓ ଯେଉଁ ମୁସ୍‌ଲିମ୍‌ମାନେ ଘରଛାଡ଼ି ପାକିସ୍ଥାନକୁ ପଳାଇ ଯାଇଥାନ୍ତି ଏବଂ ଯେଉଁମାନଙ୍କୁ ଫେରି ଆସିବା ପାଇଁ ଗାନ୍ଧୀ ଆହ୍ୱାନ କରୁଥାନ୍ତି, ସେମାନଙ୍କ ଘର ଛାଡ଼ିବାକୁ ହିନ୍ଦୁ ଓ ଶିଖ୍‌ମାନେ ଚାହୁଁ ନ ଥାନ୍ତି ।

ପ୍ରବଳ ସ୍ରୋତର ପ୍ରତିକୂଳରେ ଗାନ୍ଧୀ ଏକା ହୋଇ ଠିଆ ହୋଇଥାନ୍ତି ।

ରାଷ୍ଟ୍ରୀୟ ସେବକ ସଙ୍ଘ ଯୁଦ୍ଧ-ମନୋଭାବାପନ୍ନ ଗୋଟିଏ ସୁଶୃଙ୍ଖଳ ଅନୁଷ୍ଠାନ । ଦିନେ ଏ ସଙ୍ଘର ପାଞ୍ଚଶହ ସଭ୍ୟଙ୍କର ଗୋଟିଏ ସଭାକୁ ଗାନ୍ଧୀ ଯାଇଥିଲେ । ଏ ସଙ୍ଘର ସଭ୍ୟମାନେ ଉତ୍କଟଭାବେ ମୁସ୍‌ଲିମବିରୋଧୀ । ଗାନ୍ଧୀ ମୁସ୍‌ଲିମଙ୍କୁ ରକ୍ଷା କରିବା ନିମନ୍ତେ ଚେଷ୍ଟା କରୁଥିବାରୁ, ଏମାନଙ୍କ ମଧ୍ୟରୁ ଅନେକେ ଗାନ୍ଧୀଙ୍କର ମଧ୍ୟ ଘୋର ବିରୋଧୀ ଥିଲେ । ଗାନ୍ଧୀ ଏମାନଙ୍କ ସଭାରେ କହିଲେ ଯେ, ସେମାନେ ଯଦି ମୁସ୍‌ଲିମଙ୍କ ପ୍ରତି ଅନୁଦାର ହୁଅନ୍ତି ତେବେ ସେମାନେ ନିଜେ ହିନ୍ଦୁ ଧର୍ମକୁ ଧ୍ୱଂସ କରିବେ । ପାକିସ୍ଥାନ ହିନ୍ଦୁଙ୍କ ପ୍ରତି ଦୁର୍ବ୍ୟବହାର କରିବା ହେତୁ ସେମାନେ ଏଠାରେ ମୁସ୍‌ଲିମଙ୍କ ପ୍ରତି ଦୁର୍ବ୍ୟବହାର କରିବା ଉଚିତ ନୁହେଁ । 'ଯେସାକୁ ତେସା ନୀତି ଧର୍ମସମ୍ମତ ନୁହେଁ ।' ହଁ, ସେ ମୁସ୍‌ଲିମଙ୍କର ବନ୍ଧୁ, କିନ୍ତୁ ସେ ଯେ ଶିଖ୍ ଓ ହିନ୍ଦୁଙ୍କର ବନ୍ଧୁ ! 'ଉଭୟ ପକ୍ଷ ଉନ୍ମତ୍ତ ହୋଇଗଲା ପରି ମନେ ହେଉଛି । ଫଳରେ ଉଭୟ ପକ୍ଷର ଧ୍ୱଂସ ଓ ଦୁରବସ୍ଥା ବ୍ୟତୀତ କିଛି ଲାଭ ହେବ ନାହିଁ ।' ଗାନ୍ଧୀ କହିଲେ, ରାଷ୍ଟ୍ରୀୟ ସେବକ ସଂଘ 'ଗୋଟିଏ ସୁସଂଗଠିତ ଓ ସୁଶୃଂଖଳ ଅନୁଷ୍ଠାନ । ଏମାନେ ଏମାନଙ୍କର ଶକ୍ତି ଭାରତର ହିତରେ ବା ଅହିତରେ

ବନିଯୋଗ କର ପାରନ୍ତି ।' ଗାନ୍ଧୀ ପରିଷ୍କାର କହିଦେଲେ ଯେ, ରାଷ୍ଟ୍ରୀୟ ସେବକ ସଂଘ ବିରୁଦ୍ଧରେ ଅଭିଯୋଗ ହେଉଛି । ଏମାନେ ଗଣ୍ଡଗୋଳ ଭିଆଉଛନ୍ତି ଏବଂ ମୁସଲମାନଙ୍କ ହାଣାକଟା ପାଇଁ ଲୋକଙ୍କୁ ମତାଉଛନ୍ତି ବୋଲି ଦୋଷାରୋପ ହେଉଛି । 'ଏ ଅଭିଯୋଗ ସବୁ ଭିତିହୀନ ବୋଲି ଆପଣମାନଙ୍କ ସଦାଚରଣଦ୍ୱାରା ଆପଣମାନେ ଦେଖାଇ ଦେବା ଉଚିତ ।'

ଭାଷଣ ଦେବା ପରେ, କେହି ଇଚ୍ଛା କଲେ ପ୍ରଶ୍ନ ପଚାରିପାରନ୍ତି ବୋଲି ଗାନ୍ଧୀ କହିଲେ । ଗୋଟିଏ ପ୍ରଶ୍ନ ଓ ତା'ର ଉତ୍ତର ସମ୍ବାଦ ବିବରଣୀରେ ଲିପିବଦ୍ଧ ହୋଇଥିଲା ।

ପ୍ରଶ୍ନ—'ପାପ କରିଥିବା ଲୋକକୁ ହତ୍ୟା କରିବା ହିନ୍ଦୁଧର୍ମ-ସମ୍ମତ କି ?'

ଗାନ୍ଧୀ ଉତ୍ତର ଦେଲେ, 'ଜଣେ ପାପୀ ଆଉ ଜଣେ ପାପୀକୁ ଦଣ୍ଡ ଦେଇ ନ ପାରେ । ଦଣ୍ଡ ଦେବା ସରକାରର କାର୍ଯ୍ୟ, ଲୋକ ସାଧାରଣର ନୁହଁ ।'

୧୯୪୭, ଅକ୍ଟୋବର ୨ ତାରିଖ ଗାନ୍ଧୀଙ୍କ ୭୮ତମ ଜନ୍ମଦିବସ । ଲେଡ଼ି ମାଉଣ୍ଟ୍‌ବ୍ୟାଟେନ୍ ଓ ବୈଦେଶିକ ରାଷ୍ଟ୍ରଦୂତମାନେ ତାଙ୍କୁ ଶୁଭେଚ୍ଛା ଜଣାଇବାକୁ ଆସିଥିଲେ । ବିଦେଶରୁ ଓ ଭାରତର ବିଭିନ୍ନ ପ୍ରାନ୍ତରୁ ତାଙ୍କ ପାଖକୁ ବଡ଼ାବଡ଼ା ଟେଲିଗ୍ରାମ ଆସିଥାଏ । ବହୁ ମୁସ୍‌ଲିମ୍ ତାଙ୍କ ପାଖକୁ ଅଭିନନ୍ଦନବାର୍ତ୍ତା ପଠାଇଥାନ୍ତି ; ଧନିକମାନେ ଟଙ୍କା ପଠାଇଥାନ୍ତି, ନିରାଶ୍ରିତମାନେ ଫୁଲ ପଠାଇଥାନ୍ତି । ଗାନ୍ଧୀ ପଚାରିଲେ, 'ଏ ଅଭିନନ୍ଦନ-ବାର୍ତ୍ତାମାନ କେଉଁଠି କି ଆସିଛି ? ଏଠାକୁ ଶୋକବାର୍ତ୍ତା ପଠାଇବା ଉପଯୁକ୍ତ ହୋଇ ନ ଥାନ୍ତା କି ? ମୋ ହୃଦୟରେ ସନ୍ତାପ ବ୍ୟତୀତ ଆଉ କିଛି ନାହିଁ । ସମୟ ଥିଲା, ଯେତେବେଳେ ମୁଁ ନିର୍ଦ୍ଦେଶ ଦେଲେ, ଜନତା ତାକୁ ମାନି-ନେଉଥିଲେ । ଆଜି ମୁଁ ଏକାକୀ ଅରଣ୍ୟରୋଦନ କରୁଛି··· । ବେଶି ଦିନ ବଞ୍ଚିବାର ସମସ୍ତ କାମନା ମୋର ଲୋପ ହେଲାଣି, ୧୨୫ ବର୍ଷ ବଞ୍ଚିବା ତ କାହିଁ ବାଟର କଥା······। ଅସୂୟା ଓ ହତ୍ୟା ବାୟୁମଣ୍ଡଳକୁ କଳୁଷିତ କଲାବେଳେ ମୁଁ ଜୀବନ ଧରି ରହି ପାରିବି ନାହିଁ··· । ତେଣୁ ମୁଁ ଆପଣ-ମାନଙ୍କ ସଙ୍ଗେ ଅନୁଯୋଗ କରୁଛି, ବର୍ତ୍ତମାନର ପାଗଳାମି ସମସ୍ତେ ଛାଡ଼ନ୍ତୁ ।'

ସେ ହତୋତ୍ସାହ ହୋଇ ନ ଥିଲେ, ଅସହାୟତା ଅନୁଭବ

କରୁଥିଲେ ମାତ୍ର । ସେ କହୁଥିଲେ, 'ବର୍ବର ହୋଇଯାଇଥିବା ମନୁଷ୍ୟର ହତ୍ୟାକାଣ୍ଡ ଅସହାୟଭାବେ ଚାହିଁ ରହିବାକୁ ମୋତେ ବଞ୍ଚାଇ ରଖିବା ଅପେକ୍ଷା "ଏ ଦୁଃଖମୟ ସଂସାର"ରୁ ମୋତେ ନେଇଯିବାକୁ ମୁଁ ସର୍ବବ୍ୟାପୀ ମହାଶକ୍ତିଙ୍କୁ ନିବେଦନ କରୁଛି । ଯଦି ମୋ'ଦ୍ୱାରା ତାଙ୍କର କୌଣସି ଉଦ୍ଦେଶ୍ୟ ସାଧିତ ହେବ ବୋଲି ସେ ଚାହାନ୍ତି, ତେବେ ଆଉ କେତେ ଦିନ ସେ ମୋତେ ସଂସାରରେ ରଖି ପାରନ୍ତି ।'

ଅପରିଷ୍କାର ହୋଇ ପଡ଼ିଥିବା ଶରଣାର୍ଥୀ-ଶିବିରମାନଙ୍କୁ ସେ ଦେଖିବାକୁ ଗଲେ । ଯେଉଁ ଶରଣାର୍ଥୀମାନେ ଅସ୍ପୃଶ୍ୟ ଜାତିର ନୁହନ୍ତି ସେମାନେ ମଇଳା ସଫା କରିବାକୁ ନାରାଜ ହେଲେ । ହିନ୍ଦୁମାନଙ୍କର ଏ ଦୁର୍ବଳତା ଯୋଗୁଁ ସେ ଭର୍ତ୍ସନା କଲେ । ଶୀତ ଦିନ ପାଖେଇ ଆସୁଥାଏ । ବାସ୍ତୁହରାଙ୍କ ପାଇଁ କମ୍ବଳ, ରେଜେଇ ଓ ଚାଦର ପାଇଁ ସେ ନିବେଦନ କଲେ ।

ପଞ୍ଜାବ ଭାରତର ଶସ୍ୟାଗାର । ଗଣ୍ଡଗୋଳ ଯୋଗୁଁ ପାଚିଲା ଧାନ ଓ ଗହମ କ୍ଷେତରେ ଲେସି ହୋଇଯାଇଥାଏ । ଭାରତ ପୂର୍ବବର୍ଷ ଅପେକ୍ଷା ଏ ବର୍ଷ ଖାଦ୍ୟାଭାବ ଅଧିକ ଅନୁଭବ କରୁଥାଏ । ତଥାପି ଗାନ୍ଧୀ ଖାଦ୍ୟ ପଡ଼ି-ପ୍ରଥାକୁ ବିରୋଧ କରୁଥାନ୍ତି । ସେ କହୁଥାନ୍ତି ଯେ, ପଡ଼ି ପ୍ରଥା ଚାଲୁ ହେଲେ କ୍ଷମତା ଗୋଟାଏ ଜାଗାରେ ରୁଦ୍ଧ ହୋଇଯିବ, ସରକାରର ଲାଲଫିତା-କାରବାରରେ ଲୋକେ ହଇରାଣ ହେବେ, ବେପାରୀମାନେ ଦର ବଢ଼ାଇବା ପାଇଁ ଖାଦ୍ୟଶସ୍ୟ ଗୋଦାମରେ ଲୁଚାଇଦେବେ, ଏବଂ ପଡ଼ି ବାଣ୍ଟିବାବାଲା ଦୁର୍ନୀତି କରିବେ ।

ଶରଣାର୍ଥୀଙ୍କ ପାଇଁ କେତେଖଣ୍ଡ କମ୍ବଳ ପାଇଥାନ୍ତି, ସେ ପ୍ରତ୍ୟହ ସନ୍ଧ୍ୟାର ପ୍ରାର୍ଥନାସଭାରେ ଘୋଷଣା କରୁଥାନ୍ତି । କହୁଥାନ୍ତି, ରେଜେଇ ଅପେକ୍ଷା କମ୍ବଳ ଦେବା ଭଲ, କାରଣ ରେଜେଇ କାକରରେ ଓଦା ହୋଇଯିବ । ଯେଉଁ ରେଜେଇ ମିଳୁଥାଏ, ରାତିରେ ତା' ଉପରେ ପୁରୁଣା ଖବରକାଗଜ ଢାଙ୍କି ଦେବାକୁ ସେ ଶରଣାର୍ଥୀଙ୍କୁ ପରାମର୍ଶ ଦେଉଥାନ୍ତି ।

ଗାନ୍ଧୀଙ୍କର ଆଶା ଥିଲା, ସେ ଦିଲ୍ଲୀରୁ ପଞ୍ଜାବ ଯା'ନ୍ତେ । କିନ୍ତୁ ଦିଲ୍ଲୀକୁ ସ୍ୱାଭାବିକ ଅବସ୍ଥା ଫେରି ନ ଥାଏ । ଜଣେ ମୁସ୍‌ଲିମ୍ ଦୋକାନୀ, ଅବସ୍ଥା ଥଣ୍ଡା ପଡ଼ିଗଲାଣି ବିଚାରି ନିଜ ଦୋକାନର ଝରକା ମେଲାଇ ଦେଲେ ; ସାଙ୍ଗେ ସାଙ୍ଗେ ତାଙ୍କ ଦେହରେ ଗୁଳି ବାଜି ସେ ପ୍ରାଣ ହରାଇଲେ ।

ଦିନେ ସନ୍ଧ୍ୟାରେ ଗାନ୍ଧୀ ଦିଲ୍ଲୀ କେନ୍ଦ୍ର ଜେଲକୁ ଗଲେ ଏବଂ ୩ହଜାର ବନ୍ଦୀଙ୍କ ସଭାରେ ପ୍ରାର୍ଥନା ଆରମ୍ଭ କଲେ । ସେଠାରେ ସେ ହସି ହସି କହିଲେ, 'ମୁଁ ନିଜେ ଜଣେ ପୁରୁଣା କଏଦୀ ।'

ସେ ପଚାରିଲେ, 'ସ୍ୱାଧୀନ ଭାରତରେ ଜେଲଖାନା ସବୁ କିପରି ପରିଚାଳିତ ହେବ ?' ନିଜେ ପ୍ରଶ୍ନର ଉତ୍ତର ଦେଇ କହିଲେ, 'ପ୍ରତ୍ୟେକ ଅପରାଧୀଙ୍କୁ ରୋଗୀ ବୋଲି ବିଚାରିବାକୁ ହେବ, ଏବଂ ଜେଲଖାନାମାନ ଏଇଭଳି ରୋଗୀଙ୍କ ଚିକିତ୍ସା ଓ ଆରୋଗ୍ୟବିଧାନର ଚିକିତ୍ସାଳୟ ହେବ ।' ଉପସଂହାରରେ ସେ ଆଶା ପ୍ରକାଶ କଲେ ଯେ, ଜେଲଖାନାରେ ହିନ୍ଦୁ, ଶିଖ୍ ଓ ମୁସ୍‌ଲିମ୍ କଏଦୀମାନେ ଭାଇଭାଇପରି ଚଳିବେ ।

କଲିକତାରୁ ଭଲ ସମ୍ବାଦ ଆସିଥାଏ । ବିରଳା ଭବନ ହତାର ପ୍ରାର୍ଥନା ସଭାରେ ଗାନ୍ଧୀ ପଚାରିଲେ, କଲିକତାର ଶାନ୍ତିପୂର୍ଣ୍ଣ ଉଦାହରଣ ଦିଲ୍ଲୀ ଅନୁକରଣ କରିବ ନାହିଁ କାହିଁକି ?

କୋରାନରୁ କେତୋଟି ସୂକ୍ତ ପଢ଼ା ହେବାରେ କାହାରି ଆପତ୍ତି ଅଛି କି ବୋଲି ପ୍ରତି ସନ୍ଧ୍ୟାର ପ୍ରାର୍ଥନାସଭାରେ ଗାନ୍ଧୀ ପଚାରୁଥାନ୍ତି । ପ୍ରାୟ ପ୍ରତିଦିନ ଦୁଇ ତିନିଜଣ ଆପତ୍ତି କରନ୍ତି । ତାପରେ ଗାନ୍ଧୀ ପଚାରନ୍ତି, ସଭାରେ ଉପସ୍ଥିତ କେହି ଏହି ଆପତ୍ତିକାରୀଙ୍କ ବିରୁଦ୍ଧରେ ଅସୂୟା ପୋଷଣ କରିବେ କି ? କରିବେ ନାହିଁ ବୋଲି ସମସ୍ତେ ନାହିଁ କରନ୍ତି । ତା'ପରେ ସେ ପଚାରନ୍ତି, ଆପତ୍ତିକାରୀମାନେ କୋରାନ ପାଠବେଳେ ତୁନି ରହିବେ ତ ? ସେମାନେ 'ହଁ ରହିବେ' ବୋଲି କହନ୍ତି । ତା'ପରେ ଗାନ୍ଧୀ କୋରାନ ପାଠ କରନ୍ତି । ସହିଷ୍ଣୁତା ଓ ଶୃଙ୍ଖଳାର ଶିକ୍ଷା ଏହିପରି ଦିଆ ହେଉଥାଏ । ସମସ୍ତେ କୌଣସି ଏକ କଥାରେ ଏକମତ ହେବେ ବୋଲି ଗାନ୍ଧୀ ଆଶା କରୁ ନ ଥାନ୍ତି । କିନ୍ତୁ ସେ ଆଶା କରୁଥାନ୍ତି ଯେ, ମତବିରୋଧ ସତ୍ତ୍ୱେ ସମସ୍ତେ ଅହିଂସା-ନୀତି ମାନି ରହିବେ ।

ନୂଆ ନୂଆ ଶରଣାର୍ଥୀମାନେ ବର୍ବରତାର ମର୍ମନ୍ତୁଦ କାହାଣୀ ଧରି ଆସୁଥାନ୍ତି । ଜଣକଠାରୁ ଶୁଣିବାକୁ ମିଳିଲା ଯେ, ଗୋଟାଏ ଲୋକ ଗୋଟିଏ ଶିଶୁକୁ ଗୋଡ଼ ଧରି ଓହଳାଇଲା ଓ ହଲାଇ ହଲାଇ ତା' ମୁଣ୍ଡକୁ ଗୋଟାଏ କାନ୍ଥରେ ପିଟି ଦେଲା । ଆଉ ଜଣେ କହିଲା, ଦୁଇ ଜଣ ମଣିଷ ଗୋଟାଏ ପିଲାର ଗୋଟାଏ ଗୋଟାଏ ଗୋଡ଼ ଧରି ତା'କୁ ଦ୍ୱିଫାଳ କରି ଚିରି ଦେଲେ । ଦଳେ ମୁସ୍‌ଲିମ୍ ଗୋଟାଏ ଗାଁକୁ ଘେରାଉ କଲେ । ବହୁ ହିନ

ସେମାନଙ୍କୁ ପ୍ରତିରୋଧ କଲା ପରେ ଗାଁର ଶିଖ୍ ଓ ହିନ୍ଦୁ ଅଧିବାସୀମାନେ ଗାଁରୁ ବାହାର ମୁସ୍‌ଲିମ୍‌ଙ୍କଠାରେ ଆତ୍ମସମର୍ପଣ କଲେ । ଗାଁର କୂଅ ପାଖପଟେ ଥିବା ବାଡ଼ା ଭିତରେ ଗାଁର ସ୍ତ୍ରୀଲୋକମାନେ ରହିଥାନ୍ତି । ମୁସ୍‌ଲିମ୍‌ମାନେ ସେମାନଙ୍କୁ ନେବାକୁ ଆଗେଇବାର ଦେଖି ଜଣେ ସ୍ତ୍ରୀଲୋକ କୂଅ ଭିତରକୁ ଡେଇଁ ପଡ଼ିଲା ; ତା' ଦେଖାଦେଖି ଆଉ ଜଣେ ଡେଇଁ ପଡ଼ିଲା । ଏହିପରି ପାଞ୍ଚମିନିଟ ଭିତରେ ୭୩ ଜଣ ସ୍ତ୍ରୀଲୋକ ଜଣକ ଉପରେ ଜଣେ ଡେଇଁ ସେହି କୂଅରେ ବୁଡ଼ି ମଲେ ।

ଏ କଥା ସବୁ ପ୍ରଚାର ହେବାରେ ନୂଆ ହାଣାକଟା ଚାଲିଲା । ଧରି କେତେଜଣ ମୁସ୍‌ଲିମ୍, ହିନ୍ଦୁ ବୋଲି ହିନ୍ଦୁଙ୍କୁ ମାରି ପକାଇଲେ, ଏବଂ ଅଧିକାଂଶ ମୁସଲମାନ ସେମାନଙ୍କ ଏହି କାର୍ଯ୍ୟରେ ଦୋଷ ଦେଖିଲେ ନାହିଁ । ଯଦି ବୋଲି ହିନ୍ଦୁମାନେ ଯଦି, ପ୍ରତ୍ୟେକ ମୁସଲମାନଙ୍କୁ ମୁସଲମାନ ବୋଲି ଘୃଣା କରନ୍ତି, ଅବିଶ୍ୱାସ କରନ୍ତି, ଓ ମାରିବାକୁ ଇଚ୍ଛା କରନ୍ତି, ତେବେ ସେମାନେ ତ ମୁସ୍‌ଲିମଙ୍କ ପରି ଜଘନ୍ୟ ହୋଇଯିବେ । (ହିନ୍ଦୁମାନେ ଆଗ କରି ମୁସ୍‌ଲିମଙ୍କୁ ମାଇଲେ ମଧ୍ୟ ଏଇ ଧାରାରେ ଯୁକ୍ତି ହୋଇପାରେ । ) ପୁଣି, ମୁସ୍‌ଲିମ୍‌ମାନେ ଆଗ କରି ଅତ୍ୟାଚାର ଆରମ୍ଭ କରିଥିଲେ ବୋଲି ପ୍ରମାଣ ଦେଖାଇ ହିନ୍ଦୁମାନେ ଯଦି ନିଜ ଅତ୍ୟାଚାରକୁ ଦୋଷାବହ ନୁହେ ବୋଲି ଯୁକ୍ତି କରନ୍ତି ? ତେବେ ତ ସେମାନେ ମୁସ୍‌ଲିମ୍‌ଙ୍କ ସଙ୍ଗେ ସମାନ ଭାବେ ପାପଭାଗୀ ହେଲେ । ଏହି ପାପ କରିଥିବାରୁ ତ ସେମାନେ ମୁସ୍‌ଲିମ୍‌ଙ୍କୁ ଘୃଣା କରୁଥିଲେ, ଏବେ ନିଜେ କଲେ କ'ଣ ? ସେମାନେ ତ ନିଜ ଅତ୍ୟାଚାରୀଙ୍କ ଦୁର୍ବୃତ୍ତତାର ଅଧୀନ ହୋଇଗଲେ !

ପ୍ରତିଶୋଧ ଭୟରେ, ଭାରତର ମୁସ୍‌ଲିମ୍‌ମାନେ ପାକିସ୍ଥାନକୁ ପଳାଇଯିବା ସକାଶ ସିଦ୍ଧାନ୍ତ କଲେ । ସେଇ ପ୍ରତିହିଂସା ଭୟରେ ପାକିସ୍ଥାନର ହିନ୍ଦୁ ଓ ଶିଖ୍‌ମାନେ ଭାରତକୁ ପଳାଇ ଆସୁଥାନ୍ତି । ଗୋଟାଏ ବିଶାଳ ଅଞ୍ଚଳ ଘୃଣା, ହତ୍ୟା ଓ କୋଟି ଲୋକଙ୍କର ପଳାୟନରେ ମଗ୍ନ ହୋଇ ଯାଉଥାଏ । ଯାହାରି ଭିତରେ କଟିବସ୍ତ୍ରପିନ୍ଧା ଗୋଟିଆ ମଣିଷଟି ଠିଆ ହୋଇ ସବୁ ସୁଧାରିଦେବାକୁ ଚେଷ୍ଟା କରୁଥାନ୍ତି । ସେ କହୁଥାନ୍ତି, ପ୍ରତିଶୋଧକୁ ପ୍ରତିଶୋଧ, ମୁଣ୍ଡକୁ ମୁଣ୍ଡ, ଏଇ ନୀତି ଯଦି ଚାଲିରହେ ତେବେ ଭାରତ ଧ୍ୱଂସ ହୋଇଯିବ ।

ଲେଡ଼ି ମାଉଣ୍ଟ୍‌ବ୍ୟାଟେନ୍ ଗୋଟିଏ ଶରଣାର୍ଥୀ ଶିବିର ଦେଖିବାକୁ

ଯାଇଥିଲେ । ସେ ଗାନ୍ଧୀଙ୍କ ପାଖକୁ ଗୋଟିଏ ବାର୍ତ୍ତା ଦେଇ ପଠାଇଲେ : ଶରଣାର୍ଥୀମାନେ ଗାନ୍ଧୀଙ୍କୁ ଦେଖିବାକୁ ଚାହୁଁଥାନ୍ତି । ଅନ୍ୟ ଶିବିରମାନଙ୍କରୁ ବି ଏଇପରି ଡାକରା ଆସିଲା—ହିନ୍ଦୁଙ୍କ ଶିବିରରୁ ଓ ମୁସ୍‌ଲିମ୍‌ଙ୍କ ଶିବିରରୁ । ସେ ଯେତେଠାକୁ ଯାଇ ପାରିଲେ ଗଲେ । ଦୁଇଲକ୍ଷ ବାସ୍ତୁହରା ପୂର୍ବ-ପଞ୍ଜାବର କୁରୁକ୍ଷେତ୍ର ଶିବିରରେ ରୁଣ୍ଡି ହୋଇ ରହିଥାନ୍ତି ; ପୁଣି ପ୍ରତ୍ୟହ ପଶ୍ଚିମ ପଞ୍ଜାବରୁ ଆହୁରି ଲୋକ ଆସି ମିଶୁଥାନ୍ତି । କଂଗ୍ରେସ କାର୍ଯ୍ୟକାରୀ କମିଟିର ଗୋଟିଏ ବୈଠକରେ ଗାନ୍ଧୀଙ୍କର ଯୋଗ ଦେବାର ଥାଏ, ତେଣୁ ସେ ରେଡ଼ିଓଦ୍ୱାରା ୧୯୪୭, ନଭେମ୍ବର ୧୨ ତାରିଖରେ କୁରୁକ୍ଷେତ୍ର ଶିବିରକୁ ନିଜର ବାର୍ତ୍ତା ଶୁଣାଇଲେ, 'ତୁମମାନଙ୍କର ଦୋଷ ଓ ତ୍ରୁଟି ପ୍ରତି ତୁମମାନଙ୍କର ଦୃଷ୍ଟି ଆକର୍ଷଣ କଲେ ମୁଁ ତୁମମାନଙ୍କର ପ୍ରକୃତ ସେବା କରିପାରିବି । ମୋର ଜୀବନର ବ୍ରତ ସେଇଆ । ଦୋଷ ଓ ତ୍ରୁଟି ଦେଖାଇବା ହିଁ ପ୍ରକୃତ ବନ୍ଧୁତ୍ୱର ଲକ୍ଷଣ । ମୁଁ ଖାଲି ତୁମର ସେବା କରିବାକୁ ଚାହେଁ ନାହିଁ, ଭାରତର ସେବା କରିବାକୁ ଚାହେଁ ନାହିଁ, ମୋର ସେବା ସମଗ୍ର ପୃଥିବୀକୁ ବ୍ୟାପୁ ବୋଲି ମୁଁ ଚାହେଁ । ଜାତି ବା ଧର୍ମର ପ୍ରତିବନ୍ଧକ ମୁଁ ମାନେ ନାହିଁ । ଯଦି ତୁମେମାନେ ତୁମ ଦୋଷଗୁଡ଼ିକ ଦୂର କରିପାରିବ, ତେବେ ତୁମେ ଖାଲି ତୁମର ମଙ୍ଗଳ କରିବ ନାହିଁ, ସମଗ୍ର ପୃଥିବୀର ମଙ୍ଗଳ କରିବ ।

'ତୁମମାନଙ୍କ ମଧ୍ୟରୁ ଏତେ ଲୋକଙ୍କର ମୁଣ୍ଡ ଗୁଞ୍ଜିବାକୁ ସ୍ଥାନ ନାହିଁ ଶୁଣି ମୋ ମନରେ ଆଘାତ ହେଉଛି । ଏହା ବାସ୍ତବିକ ବଡ଼ ଅଭାବ, ବିଶେଷ କରି ଶୀତ ଦିନେ······। ତୁମେମାନେ ଶିବିରରେ ଶୃଙ୍ଖଳା ରଖିବାକୁ ନିଷ୍ଠାପୂର୍ବ ସାହାଯ୍ୟ କରିବ······। ଶିବିରର ସଫେଇ କାମ ତୁମେମାନେ ନିଜ ହାତକୁ ନେବା ଉଚିତ । ମୁଁ ତୁମମାନଙ୍କୁ ସନିର୍ବନ୍ଧ ଅନୁରୋଧ କରୁଛି······ସ୍ତ୍ରୀ, ପୁରୁଷ, ବାଳକବାଳିକା ସମସ୍ତଙ୍କୁ, କୁରୁକ୍ଷେତ୍ରକୁ ସଫା ରଖ······। ଖାଇବାକୁ ଯାହା ମିଳୁଛି ବାଣ୍ଟିକରି ଖାଅ । ଯେତିକି ମିଳୁଛି ସେତିକିରେ ସନ୍ତୁଷ୍ଟ ହୁଅ ·····। ନିଜ ପାଇଁ ନ ବଞ୍ଚି ପରହିତପାଇଁ ବଞ୍ଚିବା ତୁମର କର୍ତ୍ତବ୍ୟ । ଆଳସ୍ୟରେ ମନୁଷ୍ୟର ଚରିତ୍ର ନଷ୍ଟ ହୋଇଯାଏ ।' ଗାନ୍ଧୀ ସୂତାକାଟିବା ପାଇଁ ଶରଣାର୍ଥୀମାନଙ୍କୁ ଉଦ୍‌ବୋଧିତ କଲେ ।

ଦିଲ୍ଲୀରେ ହାବଡ଼ାଝଟକା ଧ୍ୱଂସାକାଣ୍ଡ ଲାଗି ରହିଥାଏ । ପ୍ରଥମେ ଯେଉଁ ଗଣ୍ଡଗୋଳ ହୋଇଥିଲା ସେଥିରେ ୧୩୭ଟା ମସ୍‌ଜିଦ୍ ନଷ୍ଟ କରା

ହୋଇଥିଲା । କେତୋଟି ମସ୍‌ଜିଦ୍‌କୁ ମନ୍ଦିରରେ ପରିଣତ କରି ସେଗୁଡ଼ିକରେ ଦେବମୂର୍ତ୍ତିମାନ ପ୍ରତିଷ୍ଠିତ ହୋଇଥିଲେ । ଗାନ୍ଧୀ କହିଲେ, 'ଧର୍ମ ଆସ୍ଥାନମାନଙ୍କୁ ଏପରି ଅପବିତ୍ର କରିବା ହିନ୍ଦୁଧର୍ମ ଓ ଶିଖ ଧର୍ମ ପକ୍ଷରେ ନିନ୍ଦନୀୟ ।' ସେ ଗୋଟିଏ ଶିଖ୍ ଅନୁଷ୍ଠାନରେ ଯୋଗ ଦେବାକୁ ଯାଇଥିଲେ । ସେଥିରେ ଲକ୍ଷେ ଶ୍ମଶ୍ରୁଧାରୀ ଶିଖ ଓ ସେମାନଙ୍କ ପରିବାର-ବର୍ଗ ଯୋଗ ଦେଇଥାନ୍ତି । ମୁସ୍‌ଲିମ୍‌ମାନଙ୍କ ପ୍ରତି ସେମାନେ ଯେଉଁ ହିଂସାକାଣ୍ଡ କରିଥିଲେ ତାକୁ ଗାନ୍ଧୀ ସେଠାରେ ନିନ୍ଦା କଲେ । ସେ କହିଲେ, ଶିଖ୍‌ମାନେ ମଦ ଖାଉଛନ୍ତି, ଦଙ୍ଗାହେଙ୍ଗାମା କରୁଛନ୍ତି । 'ନିଜ ହୃଦୟକୁ ପବିତ୍ର କର, ଦେଖିବ, ପ୍ରତି ସଂପ୍ରଦାୟର ଲୋକେ ତୁମର ଅନୁକରଣ କରିବେ ।'

ଗାନ୍ଧୀ ଭାରତ ସରକାରଙ୍କୁ ମଧ୍ୟ ସମାଲୋଚନା କରିଥିଲେ । ମ୍ୟାଡ଼ାମ୍ ଏଡ୍‌ମଣ୍ଡ୍ ପ୍ରିଭ୍ୟାଟ୍‌ଙ୍କ ପାଖକୁ ପଠାଇଥିବା ଚିଠିରେ ସେ ଲେଖିଥିଲେ, 'ବ୍ରିଟିଶ୍‌ଙ୍କ ଅମଳରେ ଯୁଦ୍ଧ ସରଂଜାମ କିଣିବାରେ ବେଜାୟ ଟଙ୍କା ଖର୍ଚ୍ଚ ହେଉଛି ବୋଲି ଆମର ରାଷ୍ଟ୍ରନାୟକମାନେ ଦୁଇ ପୁରୁଷ ହେଲା ଗାଳି ଦେଇ ଆସୁଥିଲେ । କିନ୍ତୁ ଏବେ ରାଜନୀତିକ ଦାସତ୍ୱରୁ ଆମେ ମୁକ୍ତ ହେବା ପରେ, ଆମର ସାମରିକ ଖର୍ଚ୍ଚ ବଢ଼ିଛି, ଏବଂ ଆହୁରି ବଢ଼ିଲା ପରି ଜଣାଯାଉଛି । ଏଥିରେ ଆମେ ଗର୍ବ ଅନୁଭବ କରୁଛୁ । ଆମ ବ୍ୟବସ୍ଥା ସଭାମାନଙ୍କରେ ଯୁଦ୍ଧ ବିରୁଦ୍ଧରେ ଜଣେ କେହି ପାଟି ଫିଟାଉ ନାହାନ୍ତି ।' ସେ ଯୁଦ୍ଧକୁ 'ପାଶ୍ଚାତ୍ୟ ସଭ୍ୟତାର ବାହାର ଚାକଚକ୍ୟର ବିଚାରହୀନ ଅନୁକରଣ' ବୋଲି କହିଥିଲେ । ତଥାପି ସେ ଆଶା ପ୍ରକାଶ କରିଥିଲେ ଯେ, ଭାରତ 'ଏ ମୃତ୍ୟୁତାଣ୍ଡବରୁ ଉଦ୍ଧାର' ପାଇବ ଏବଂ ନୀତି ବାଦର ସେହି ଶିଖରକୁ ଚଢ଼ିବ, ଯହିଁରେ ଚଢ଼ିବାକୁ ୧୯୧୫ ଠାରୁ ଲଗାଏତ ୩୨ ବର୍ଷ କାଳ ଏହା ଅହିଂସାର ତାଲିମ (ଏ ତାଲିମ୍ ଅସଂପୂର୍ଣ୍ଣ ହୋଇଥିଲେ ସୁଦ୍ଧା) ଫଳରେ ଯୋଗ୍ୟ ହୋଇଛି ।

ଗାନ୍ଧୀ ଆହୁରି ଲେଖିଥିଲେ, 'ଯେତେବେଳେ କହିବା ପ୍ରୟୋଜନ, ସେତେବେଳେ ସତ୍ୟ କହିବାକୁ ପଡ଼ିବ, ଅପ୍ରିୟ ହେଲେ ବି... । ଭାରତରେ ହିନ୍ଦୁମାନେ କରୁଥିବା ଅନ୍ୟାୟକୁ ହିନ୍ଦୁମାନେ, ସମସ୍ତଙ୍କୁ ଶୁଭିବା ଭଳି କହିବା ଦରକାର ; ତେବେ ଯାଇ ପାକିସ୍ଥାନରେ ମୁସ୍‌ଲିମ୍‌ମାନେ କରୁଥିବା ଅତ୍ୟାଚାରର ରୋକ ହେବ ବା ଏକାବେଳକେ ବନ୍ଦ

ହୋଇଯିବ ।' ଗାନ୍ଧୀ ହିନ୍ଦୁ ହୋଇଥିବାରୁ ହିନ୍ଦୁମାନଙ୍କୁ ଅତି ତୀବ୍ର ଭାବରେ ନିନ୍ଦା କରି ପାରୁଥିଲେ ।

---

# ଊନବିଂଶ ପରିଚ୍ଛେଦ

## ଭାରତର ଭବିଷ୍ୟତ୍

ବାସ୍ତବ ପ୍ରତିକାରର ସୂଚନା ନ ଦେଇ ଗାନ୍ଧୀ କୌଣସି ବିଷୟରେ ପ୍ରତିକୂଳ ମନ୍ତବ୍ୟ ଦେଉ ନ ଥିଲେ । ସେ କଂଗ୍ରେସ ଦଳକୁ ଓ ସ୍ୱାଧୀନ ଭାରତର ନୂଆ ସରକାରକୁ କେତେକ ବିଷୟରେ ସମାଲୋଚନା କରିଥିଲେ ; ସମାଲୋଚନା କରିଥିବା ବିଷୟରେ ପ୍ରତିକାରର ସେ କି ପ୍ରସ୍ତାବ ଦେଇଥିଲେ ?

ଗାନ୍ଧୀ ତୁରନ୍ତ ଦେଖି ପାରିଥିଲେ ଯେ, ଭାରତର ସ୍ୱାଧୀନତା ପ୍ରାପ୍ତି ସଙ୍ଗେ ସଙ୍ଗେ ଭାରତରେ ସ୍ୱାଧୀନତାର ପ୍ରଶ୍ନ ଉଠୁଛି । ଭାରତ ବର୍ଷ ପ୍ରକୃତ ଗଣତାନ୍ତ୍ରିକ ରାଷ୍ଟ୍ର ହୋଇ କିପରି ରହି ପାରିବ ?

ଭାରତରେ କ୍ଷମତାଶାଳୀ ଦଳ ହୋଇ ମାତ୍ର ଗୋଟିଏ, କଂଗ୍ରେସ ଦଳ । ଏହା ଗାନ୍ଧୀ, ନେହେରୁ ଓ ପଟେଲଙ୍କ ଦଳ ବୋଲି ଭାରତରେ ଖୁବ୍ ଗୌରବ ଲାଭ କରିଥାଏ । ଏହି ଦଳ ସ୍ୱାଧୀନତା ପାଇଁ ଲଢ଼ି ବ୍ରିଟିଶଙ୍କଠାରୁ ସ୍ୱାଧୀନତା ହାସଲ କରିଥାଏ । ହିନ୍ଦୁ ମହାସଭା ଓ କମ୍ୟୁନିଷ୍ଟ ଦଳ ପ୍ରଭୃତି ଦଳର ମର୍ଯ୍ୟାଦା, କଂଗ୍ରେସ ତୁଳନାରେ ଖୁବ୍ ନ୍ୟୁନ ଥାଏ ।

ଗାନ୍ଧୀ ଏ ବିଷୟରେ ଗଭୀର ଚିନ୍ତା କରିଥିଲେ : କଂଗ୍ରେସ ଦଳ ସରକାରକୁ ବାଟ ଦେଖାଇ ପାରିବ ତ ? ଏହାର ନିୟନ୍ତ୍ରଣ କରି ପାରିବ ତ ? ସେ ସୋଭିଏଟ୍ ୟୁନିଅନ୍, ଫ୍ରାଙ୍କୋଙ୍କ ସ୍ପେନ୍ ବା ଅନ୍ୟ ନିରଙ୍କୁଶ ଶାସକ-ମାନଙ୍କ ସରକାରର ଆଭ୍ୟନ୍ତରୀଣ ଅବସ୍ଥା ବିଷୟରେ ବିଶେଷ ଅନୁଧ୍ୟାନ

କରି ନ ଥିଲେ, କିନ୍ତୁ ସେ ନିଜର ସ୍ୱତଃଉତ୍ସରିତ ଅନୁଭୂତିରେ ଏ ବିଷୟରେ ଏଭଳି କେତେକ ସିଦ୍ଧାନ୍ତ କରି ପାରିଥିଲେ, ଯାହା ଅନ୍ୟମାନେ କରିବାକୁ ବହୁ ଅଭିଜ୍ଞତା ଓ ବିଶ୍ଳେଷଣ ପ୍ରୟୋଜନ ହୁଏ । ସେ ଉପଲବ୍ଧି କରିଥିଲେ ଯେ, ଦେଶରେ ଗୋଟିଏ ମାତ୍ର ରାଜନୀତିକ ଦଳ ରହିଲେ, ନ ରହିଲା ପରି ହୋଇଯିବ ; କାରଣ, ସରକାର ଓ ରାଜନୀତିକ ଦଳ ଏକ ହୋଇଗଲେ, ରାଜନୀତିକ ଦଳ ନିରର୍ଥକ ହୋଇଯିବ ଏବଂ ନାମକୁ ମାତ୍ର ରହିବ ।

ଭାରତର ଏକମାତ୍ର ପ୍ରଧାନ ରାଜନୀତିକ ଦଳ, କଂଗ୍ରେସର, ଚିନ୍ତାରେ ଯଦି ସ୍ୱାଧୀନତା ନ ରହେ; ଏହା ଯଦି ସରକାରର ଦୋଷଗୁଣ ବାଛିବାରେ ଜାଗ୍ରତଆର ନ ହୁଏ, ତେବେ ସରକାର ସ୍ୱୈରାଚାରୀ ଆଭିମୁଖ୍ୟ ଧରିଲେ ବାଧା ଦେବ କିଏ ?

ନିରପେକ୍ଷ ସମାଲୋଚନା ଓ ବଳିଷ୍ଠ ବିରୋଧ ନ ହେଲେ ଗଣତନ୍ତ୍ର ପ୍ରାଣହୀନ ହୋଇଯାଏ ।

ରାଜନୀତିକ ସମାଲୋଚନା ଓ ବିରୋଧ ନ ରହିଲେ, ଜାତିର ବିଚାର ବୁଦ୍ଧି, ସଂସ୍କୃତି ଓ ଜନସାଧାରଣଙ୍କର ନୈତିକତା ନିସ୍ତେଜ ହୋଇଯାଏ । ରାଜନୀତି କ୍ଷେତ୍ରରୁ ପ୍ରଭାବଶାଳୀ ବ୍ୟକ୍ତିମାନେ ଆଡ଼େଇ ହୋଇଯାନ୍ତି, ଓ ଗ୍ରେଟଲୋକେ ବାହାର ସରକାରର ଗୋଡ଼ାଣିଆ ହୋଇ ରହନ୍ତି । ନେତାମାନେ ଭୀରୁ, ଖୋସାମତକାରୀ ଓ ମେରୁଦଣ୍ଡହୀନ 'ହାଁ ଜି' ଲୋକଙ୍କଦ୍ୱାରା ବେଷ୍ଟିତ ହୋଇ ରହନ୍ତି ; ଏମାନେ ନେତାମାନଙ୍କ କଥାରେ ନିର୍ବିଚାରରେ ହଁ ମାରିବାରୁ ଗୋଟାଏ ଭ୍ରାନ୍ତ ଧାରଣା ହୋଇଯାଏ ଯେ, ନେତାମାନଙ୍କ ମାହାତ୍ମ୍ୟ ଯୋଗୁଁ ଦେଶ ସେମାନଙ୍କୁ ଶ୍ରଦ୍ଧାଞ୍ଜଳି ଦେଉଛି ।

ଗାନ୍ଧୀଙ୍କର ପୃଷ୍ଠପୋଷକତା ଓ ନିରପେକ୍ଷ ସମ୍ବାଦପତ୍ରମାନଙ୍କ ସହଯୋଗ ପାଇ କଂଗ୍ରେସ ଦଳ ଭାରତକୁ ଏ ଦୁର୍ଗତିରୁ ରକ୍ଷା କରି ପାରିବ ତ ?

୧୯୪୭ ନଭେମ୍ବର ୧୫ ତାରିଖରେ, ଗାନ୍ଧୀଙ୍କ ଉପସ୍ଥିତିରେ କଂଗ୍ରେସ ସଭାପତି ଅଧ୍ୟାପକ ଜେ. ବି. କୃପାଲନୀ ନିଖିଳ ଭାରତ କଂଗ୍ରେସ କମିଟିକୁ ଜଣାଇ ଦେଲେ ଯେ, ସେ ସଭାପତି ପଦରୁ ଇସ୍ତଫା ଦେଉଛନ୍ତି । ସରକାର ତାଙ୍କର ପରାମର୍ଶ ଲୋଡ଼ୁ ନ ଥାନ୍ତି, ଏବଂ ସରକାରୀ ନୀତି ଓ

କାର୍ଯ୍ୟ ବିଷୟରେ ତାଙ୍କୁ ବିଶ୍ୱାସ କରି କିଛି ନ ଥାନ୍ତି । କ୍ରିପଲାନୀ କହିଲେ, 'ଆଜି ଯେ ସରକାରରେ ଅଛନ୍ତି, ତାଙ୍କର କ୍ଷମତାର ଉତ୍ସ କଂଗ୍ରେସ ଦଳ, କଂଗ୍ରେସର ସଭାପତିଙ୍କୁ ଅବଜ୍ଞା କରିବାଦ୍ୱାରା ସରକାର କଂଗ୍ରେସକୁ ଅବଜ୍ଞା କରୁଛନ୍ତି ।' କ୍ରିପଲାନୀ କହିଲେ ଯେ, ଏ ପରିସ୍ଥିତିରେ ତାଙ୍କର ଇସ୍ତଫା ଦେବା ଉଚିତ ବୋଲି ଗାନ୍ଧିଜୀ ମଧ୍ୟ ଅନୁଭବ କରୁଛନ୍ତି ।

ସରକାରର ନେତୃତ୍ୱରେ ଥାନ୍ତି ନେହେରୁ ଓ ପଟେଲ । ସେମାନେ ମଧ୍ୟ କଂଗ୍ରେସ ଦଳର ନେତା । ସେମାନଙ୍କର କଂଗ୍ରେସ ଉପରେ ପ୍ରଭାବ ଥିବାରୁ ଏବଂ ସେମାନେ ଲୋକପ୍ରିୟ ହୋଇଥିବାରୁ ସେମାନେ କଂଗ୍ରେସ ଅନୁଷ୍ଠାନ ଉପରେ ଆଧିପତ୍ୟ ଜାହିର କରି ପାରୁଥାନ୍ତି । ସେମାନେ ହିଁ ହୋଇଥାନ୍ତି କଂଗ୍ରେସ । ଏପରିସ୍ଥଳେ କଂଗ୍ରେସ-ସଭାପତି ତାଙ୍କ ନିରଙ୍କୁଶ କ୍ଷମତାରେ ଲଗାମ ଦିଅନ୍ତୁ ବୋଲି ସେମାନେ ରାଜି ହୁଅନ୍ତେ କେମିତିକେ ? ସେମାନେ ଯାହା ବା କରୁଛନ୍ତି, ସେଥିରେ ହାଁ କରିବାର କ୍ଷମତା ସେମାନେ ସ୍ୱାଙ୍କୁ ଦେବେ କାହିଁକି ?

କ୍ରିପଲାନୀଙ୍କ ପରେ କଂଗ୍ରେସର କିଏ ସଭାପତି ହେବ ତାହା ଗୋଟିଏ ଗୁରୁତର ସମସ୍ୟା ହୋଇଗଲା । ସରକାରଙ୍କୁ ସବୁ ବିଷୟରେ ମାନିଯିବାଭଳି ଜଣେ ସାକ୍ଷିଗୋପାଳ ଯଦି କଂଗ୍ରେସର ସଭାପତି ନିର୍ବାଚିତ ହୁଅନ୍ତି ତେବେ ସରକାରର ବଳିଷ୍ଠ ରାଜନୀତିର ବିରୋଧ ଲୋପ ହେବାର ସୂତ୍ରପାତ ହୋଇଯିବ ।

ନୂଆ ସଭାପତିଙ୍କ ନାମ ଠିକ୍ କରିବାକୁ କଂଗ୍ରେସ କାର୍ଯ୍ୟକାରୀ କମିଟିର ଯେଉଁ ବୈଠକ ବସିଲା ସେଥିରେ ମହାତ୍ମାଜୀ ଉପସ୍ଥିତ ଥିଲେ । ସେଦିନ ତାଙ୍କର ମୌନ ଦିବସ । ନୂଆ ସଭାପତିଙ୍କ ମନୋନୟନ ପତ୍ର ଦାଖଲ କରିବାକୁ ଡାକରା ହୁଅନ୍ତେ ସେ ଖଣ୍ଡିଏ ଛୋଟ କାଗଜ ଟୁକୁରାରେ ତାଙ୍କ ମନୋନୀତ ପ୍ରାର୍ଥୀଙ୍କ ନାମ ଲେଖି ନେହେରୁଙ୍କ ହାତକୁ ବଢ଼ାଇ ଦେଲେ । ନେହେରୁ କାଗଜଟି ଧରି ବଡ଼ ପାଟିରେ ପଢ଼ିଦେଲେ ; ନରେନ୍ଦ୍ରଦେବ । ସେ ସାମ୍ୟବାଦୀ ଗୋଷ୍ଠୀର ନେତା । ନେହେରୁ ନରେନ୍ଦ୍ର-ଦେବଙ୍କ ମନୋନୟନ ଅନୁମୋଦନ କଲେ ; କିନ୍ତୁ ବାକୀ ସମସ୍ତେ ବିରୋଧ କଲେ ।

ସେ ପର୍ଯ୍ୟନ୍ତ ସାମ୍ୟବାଦୀମାନେ କଂଗ୍ରେସ ଦଳଭୁକ୍ତ ଥାନ୍ତି । କିନ୍ତୁ ସେମାନଙ୍କର ମତବାଦରେ ଓ ରାଜନୀତିକ ଦୃଷ୍ଟିକୋଣରୁ ଦକ୍ଷିଣପନ୍ଥୀ

କଂଗ୍ରେସ୍ର ନେତାଙ୍କ ସଙ୍ଗେ ବିରୋଧ ଥାଏ । କେତେକଙ୍କ ସଙ୍ଗେ ବ୍ୟକ୍ତିଗତ ବିରୋଧ ବି ଥାଏ । ବୋଧହୁଏ ଏଇ କଥା ସବୁ ବିଚାରକୁ ନେଇ ଗାନ୍ଧୀ ବିଶ୍ୱାସ କରୁଥିଲେ ଯେ, ନରେନ୍ଦ୍ର ଦେବ କଂଗ୍ରେସ ସଭାପତି ହେଲେ, ସାମ୍ୟବାଦୀମାନେ ସରକାରଙ୍କର କେତେକ ଜନବିରୋଧୀ ଅଭିମୁଖ୍ୟର ବିରୋଧ କରିପାରିବେ ।

କାର୍ଯ୍ୟକାରୀ କମିଟିର ସକାଳଓଳି ବୈଠକ ୧୦ଟାବେଳେ ସାଙ୍ଗ ହେଲା । କୌଣସି ନିଷ୍ପତ୍ତି ନିଆ ହୋଇ ନ ଥାଏ ।

ଦି’ପହରେ ନେହେରୁ ଓ ପଟେଲ ରାଜେନ୍ଦ୍ର ପ୍ରସାଦଙ୍କୁ ଡକାଇଲେ, ଏବଂ ଗାନ୍ଧୀଙ୍କ ସଙ୍ଗେ ପରାମର୍ଶ ନ କରି, କଂଗ୍ରେସ ସଭାପତି ପଦ ପାଇଁ ପ୍ରାର୍ଥୀ ହେବାକୁ ରାଜେନ୍ଦ୍ର ପ୍ରସାଦଙ୍କୁ ପ୍ରବର୍ତ୍ତାଇଲେ । ଡକ୍ଟର ପ୍ରସାଦ, କାର୍ଯ୍ୟକାରୀ କମିଟିର ଜଣେ ମେମ୍ବର ଥିଲେ । ସେ ଓକାଲତି କଲାବେଳେ ୧୯୧୭ ଖ୍ରୀଷ୍ଟାବ୍ଦରେ, ଚମ୍ପାରଣର ନୀଳଚାଷୀଙ୍କ ଆନ୍ଦୋଳନ ବେଳେ ଗାନ୍ଧୀଙ୍କ ସଙ୍ଗେ ପ୍ରଥମେ ପରିଚିତ ହୋଇଥିଲେ ।

ସେଦିନ ଗୋଟାକବେଳେ ରାଜେନ୍ଦ୍ର ପ୍ରସାଦ ବିରଳା ଭବନକୁ ଯାଇ ଗାନ୍ଧୀଙ୍କୁ ଭେଟିଲେ ଏବଂ ନେହେରୁ, ପଟେଲଙ୍କ ପ୍ରସ୍ତାବ ବିଷୟରେ ଗାନ୍ଧୀଙ୍କୁ କହିଲେ । ଗାନ୍ଧୀ କହିଲେ, ‘ମୋତେ ଏ ପ୍ରସ୍ତାବ ଭଲ ବୋଧ ହେଉନାହିଁ ।’

ଡକ୍ଟର ପ୍ରସାଦ ଏହି ଦିନର ଘଟଣା ବିଷୟରେ ପରେ କହିଥିଲେ, ‘ଏହା ପୂର୍ବରୁ କେବେ ଗାନ୍ଧୀଙ୍କ ମତର ବିରୋଧ କରିବାକୁ ମୁଁ ସାହସ କରିବାର ମନେ ପଡ଼ୁନାହିଁ । କେତେବେଳେ କମିତି ତାଙ୍କ ସଙ୍ଗେ ମୋର ମତର ଅମେଳ ହେଲେ, ମୁଁ ମନେ କରେଁ ଯେ, ସେ ଯାହା କହୁଛନ୍ତି ତାହା ନିଶ୍ଚୟ ଠିକ ହୋଇଥିବ ଏବଂ ତେଣୁ ମୋ ମତ ଛାଡ଼ି ମୁଁ ତାଙ୍କର ଅନୁଗାମୀ ହୁଏ ।’

ଏଥର ମଧ୍ୟ ପ୍ରସାଦ ଗାନ୍ଧୀଙ୍କ ସଙ୍ଗେ ରାଜି ହେଲେ ଏବଂ ସଭାପତି ନିର୍ବାଚନ ପାଇଁ ଦେଇଥିବା ମନୋନୟନ-ପତ୍ର ପ୍ରତ୍ୟାହାର କରି ନେବେ ବୋଲି ପ୍ରତିଶ୍ରୁତି ଦେଲେ ।

ପରେ କିନ୍ତୁ ସେ ନେହେରୁ ଓ ପଟେଲଙ୍କ ମତାଣରେ ପୁଣି ମତ ବଦଳାଇଲେ ଓ ନୂଆ କଂଗ୍ରେସ-ସଭାପତି ହେଲେ । ସେ ଜଣେ ଭଦ୍ର, ବିନୟୀ, ମୃଦୁମତିଆ, ସଦୁଦ୍ଦେଶ୍ୟ-ସମ୍ପନ୍ନ ମହାନୁଭବ ବ୍ୟକ୍ତି । ତାଙ୍କର

ପ୍ରବୃତ୍ତି ସେବା କରିବାରେ, ନେତୃତ୍ୱ ଦେବାରେ ନୁହେଁ । ସେତେବେଳକୁ ତାଙ୍କର ବୟସ ତେଷଠି ।

ଏହା ଫଳରେ ଗାନ୍ଧୀଙ୍କର କଂଗ୍ରେସ ଅନୁଷ୍ଠାନରେ ପରାଜୟ ହେଲା, ଏବଂ ତାଙ୍କୁ ହରାଇଲେ ସରକାରରେ ଥିବା ମୁଖ୍ୟ ବ୍ୟକ୍ତିମାନେ ।

ଏଥର ଗାନ୍ଧୀଜୀ ଗୋଟିଏ ନୂଆ ବାଟ ଧରିବାକୁ ବାହାରିଲେ ।

୧୯୪୭, ଡିସେମ୍ବର ମାସର ପ୍ରଥମାର୍ଦ୍ଧରେ ଗାନ୍ଧୀଜୀ, ସରକାରର ବାହାରେ ଥିବା ତାଙ୍କର ଅତି ବିଶ୍ୱସ୍ତ ସହକର୍ମୀମାନଙ୍କୁ ନେଇ ପର୍ଯ୍ୟାୟକ୍ରମେ କେତୋଟି ଆଲୋଚନା ସଭା କରାଇଥିଲେ । ଏହି ସହକର୍ମୀମାନେ ଥିଲେ ତାଙ୍କର ରଚନାତ୍ମକ କର୍ମୀ । ଗତ କେତେବର୍ଷ ଭିତରେ ଗାନ୍ଧୀଜୀ, ଅସ୍ପୃଶ୍ୟତା ନିବାରଣ, ଜାତୀୟ ଭାଷାରୂପେ ହିନ୍ଦୁସ୍ତାନୀର ପ୍ରଚାର, ମୌଳିକ ଶିକ୍ଷାର ପ୍ରବର୍ତ୍ତନ, କୁଟୀର ଶିଳ୍ପର ଉନ୍ନତି, ଓ ସୂତାକଟାର ପ୍ରସାର ପାଇଁ ଯେଉଁ ବିଭିନ୍ନ ଅନୁଷ୍ଠାନମାନ ସ୍ଥାପନ କରି ଚଳାଉଥିଲେ, ଏହି କର୍ମୀମାନେ ସେଇଥିରେ କାମ କରୁଥାନ୍ତି । ରଚନାତ୍ମକ କର୍ମୀମାନେ ଅହିଂସାକୁ ବ୍ରତ ରୂପେ ଗ୍ରହଣ କରିଥିଲେ । ଗାନ୍ଧୀ ଯେ କେବଳ ରାଜନୈତିକ ସ୍ୱାଧୀନତା ପ୍ରାପ୍ତିର ପ୍ରଧାନ ବିଧାୟକ ଥିବାରୁ ଏମାନେ ତାଙ୍କର ଅନୁଗତ ହୋଇ ରହିଥିଲେ, ତାହା ନୁହେ ; ଏମାନେ ବିଶ୍ୱାସ କରୁଥିଲେ ଯେ, ଏକମାତ୍ର ଗାନ୍ଧୀଙ୍କ ରୀତିରେ ହିଁ ଭାରତର ସମାଜ ସଂସ୍କାର ଓ ସାମାଜିକ ଉନ୍ନୟନ ସଂଭବ ହେବ ।

ଗାନ୍ଧୀ ଏସବୁ ଅନୁଷ୍ଠାନକୁ ଏକାଠି କରିବାକୁ ଚାହିଁଲେ । କିନ୍ତୁ ରଚନାତ୍ମକ କର୍ମୀମାନଙ୍କୁ ସଂଘବଦ୍ଧ ହେବାକୁ ଚାହିଁଲେ ହେଁ, ସେ ଇଚ୍ଛା କରୁ ନ ଥିଲେ ଯେ ଏମାନେ କେବେ କ୍ଷମତା-ରାଜନୀତିରେ ଯୋଗ ଦେବେ । ସେପରି ହେଲେ ରଚନାତ୍ମକ କର୍ମର ସର୍ବନାଶ ହୋଇଯିବ । ଗାନ୍ଧୀ କହିଲେ, 'ସେ ଆଶଂକା ନ ଥିଲେ, ମୁଁ ତ କ୍ଷମତା-ରାଜନୀତିରେ ଯୋଗ ଦେଇ ମୋ ଢଙ୍ଗରେ ସରକାରକୁ ଚଳାଇବାକୁ ଚେଷ୍ଟା କରିଥାନ୍ତି । ଆଜି ଯେଉଁମାନେ ସରକାରର ମଙ୍ଗ ଧରିଛନ୍ତି ସେମାନେ ଆଗ୍ରହରେ ଆଡ଼େଇ ହୋଇଯାଇ ମୋତେ ସ୍ଥାନ ଛାଡ଼ି ଦେଇଥାନ୍ତେ । ସେ ଯାହାହେଉ, ଆଜି ସେମାନେ ସରକାରର ଦାୟିତ୍ୱରେ ଅଛନ୍ତି ଏବଂ କେବଳ ନିଜର ବିଚାର-ବୁଦ୍ଧିରେ ନିର୍ଭର ରଖି ଶାସନ ଚଳାଉଛନ୍ତି ।

ଗାନ୍ଧୀ ନିଜର ବନ୍ଧୁମାନଙ୍କୁ ନିର୍ଭର ଭାବେ କହିଲେ, 'ମୁଁ ଶାସନ

କ୍ଷମତା ନିଜ ହାତକୁ ନେବାକୁ ଚାହେଁ ନାହିଁ । କ୍ଷମତାକୁ ଛାଡ଼, ଶୁଦ୍ଧମନରେ ଓ ନିଃସ୍ୱାର୍ଥ ଭାବେ ଭୋଟଦାତାମାନଙ୍କ ସେବା କରି ପାରିଲେ ଆମେ ସେମାନଙ୍କ ଉପରେ ପ୍ରଭାବ ପକାଇ ପାରିବା ଓ ସେମାନଙ୍କୁ ଠିକ୍ ବାଟରେ ଚଳାଇ ପାରିବା । ଏହାଦ୍ୱାରା, ଆମେ ସରକାରୀ କ୍ଷମତା ହାତକୁ ନେବା-ଦ୍ୱାରା ଆମକୁ ଯେତେ ଶକ୍ତି ମିଳିଥାନ୍ତା, ତହିଁରୁ ଅଧିକ ଶକ୍ତି ମିଳିପାରିବ । ଏପରି ଗୋଟାଏ ସମୟ ଆସିପାରେ ଯେତେବେଳେ ଲୋକେ ନିଜେ ଅନୁଭବ କରିବେ ଏବଂ ତାଙ୍କ ଆଡ଼ୁ ଦାବି କରିବେ ଯେ, ସେମାନେ ଆମ ବ୍ୟକ୍ତିତ ଆଉ କେହି ଶାସନ କ୍ଷମତାରେ ରହିବାକୁ ଚାହାନ୍ତି ନାହିଁ । ସେତେବେଳେ ଆମେ ଶାସନ କ୍ଷମତାକୁ ଯିବା ନା ନାହିଁ ବିଚାରିବା ବେଳ ଆସିବ । ଖୁବ୍ ସମ୍ଭବ ସେତେବେଳକୁ ମୁଁ ବଞ୍ଚି ନ ଥିବି ।

କଂଗ୍ରେସକୁ ନେତୃତ୍ୱ ଦେବାକୁ ଅସମର୍ଥ ହୋଇ, ଗାନ୍ଧୀ ଗୋଟିଏ ନୂଆ ଅନୁଷ୍ଠାନ ଗଢ଼ିବାକୁ କଳ୍ପନା କଲେ । ଏ ଅନୁଷ୍ଠାନ ସରକାର ଉପରେ ଚାପ ପକାଇବ, ଓ ଆବଶ୍ୟକ ହେଲେ ନିଜେ ସରକାରୀ ଦାୟିତ୍ୱ ବହନ କରିବ । ଏ ଅନୁଷ୍ଠାନ ରାଜନୀତିରେ ରହିବ, କିନ୍ତୁ ଆକଟ ନ ପଡ଼ିଲେ ଶାସନ କ୍ଷମତା ହାତକୁ ନେବନାହିଁ । ନିଜେ ଭୋଟ ପାଇବାକୁ ଚେଷ୍ଟା ନ କରି ଏହା 'ବିଚାରି ବୁଝି ଭୋଟ ଦେବାକୁ' ଜନତାକୁ ଶିକ୍ଷା ଦେବ । ଗାନ୍ଧୀ ଏହି କର୍ମ-ଯୋଜନା ରଚନାତ୍ମକ କର୍ମୀଙ୍କ ଆଗେ ଉପସ୍ଥାପିତ କଲେ ।

ସେ କହିଲେ, 'ସାବାଳକ ଭୋଟ ପ୍ରଥା ଚାଲୁ ହେଉଥିବାରୁ; ଆମେ ଯଦି ଠିକ୍ ଭାବେ କାମ କରି ପାରିବା, ତେବେ ଆମର ଲୋକଙ୍କ ଉପରେ ଏତେ ପ୍ରଭାବ ପଡ଼ିବ ଯେ, ଆମେ ଯାହାଙ୍କୁ ମନୋନୀତ କରିବା ସେ ହିଁ ଜୟଯୁକ୍ତ ହେବେ ।' ଏ କାର୍ଯ୍ୟରେ ସାହାଯ୍ୟ କରିବା ସକାଶ ଗାନ୍ଧୀ ବୁଦ୍ଧିଜୀବୀ ଲୋକଙ୍କୁ ଏ ସଂସ୍ଥାକୁ ଆକୃଷ୍ଟ କରିବାକୁ ଚାହିଁଲେ । ରଚନାତ୍ମକ କର୍ମୀଙ୍କ ସମ୍ମିଳନୀରେ ସେ କହିଲେ, 'ଆମ ଦେଶର ଶିକ୍ଷିତ ସଂପ୍ରଦାୟର ଦେଶପ୍ରାଣତାର ଅଭାବ ନାହିଁ । ହୃଦୟର ପ୍ରେରଣାଦ୍ୱାରା ବିବେକ ସବୁ-ବେଳେ ଚାଳିତ ହୁଏ । ଶିକ୍ଷିତ ଲୋକଙ୍କ ବିବେକକୁ ପ୍ରଭାବିତ କରିବା ସକାଶ ଆମେ ସେମାନଙ୍କ ହୃଦୟକୁ ଯଥେଷ୍ଟ ଭାବେ ଆବେଦନ କରି ନ ଥାଇଁ ।' ଏହାହିଁ ହେଉଛି ଗାନ୍ଧୀଙ୍କ ଶସ୍ତ୍ରାଧାରର ଚାବିକାଠି : ହୃଦୟ ଓ ମନ ଏକ, କିନ୍ତୁ ହୃଦୟ ମନକୁ ଚାଳିତ କରେ ।

ଜଣେ ସଭାସଦ ପଚାରିଲେ, 'କଂଗ୍ରେସ ଦଳ ବା କଂଗ୍ରେସ ଦଳ-ଚାଳିତ ସରକାର ରଚନାତ୍ମକ କର୍ମ କରି ନ ପାରିବ କାହିଁକି ?'

ଗାନ୍ଧୀ ଖୋଲାଖୋଲି ଉତ୍ତର ଦେଲେ, 'କାରଣ, କଂଗ୍ରେସବାଲାଙ୍କର ରଚନାତ୍ମକ କର୍ମରେ ବିଶେଷ ଆଗ୍ରହ ନାହିଁ । ଆମକୁ ଏକଥା ସମ୍ୟକ୍ ଉପଲବ୍ଧି କରିବାକୁ ହେବ ଯେ ଆମେ ଯେଉଁ ସର୍ବୋଦୟର ସ୍ୱପ୍ନ ଦେଖୁଥାଇଁ ତାହା ଆଜିର କଂଗ୍ରେସଦଳଦ୍ୱାରା ହେବା ସଂଭବ ନୁହେଁ ।'

ଗାନ୍ଧୀ ଜୋର ଦେଇ କହିଲେ, 'ଆଜି ଦେଶରେ ଯେଉଁଭଳି ଦୁର୍ନୀତି ଘୋଟିଛି ତାହା ଦେଖି ମୋର ଭୟ ହେଉଛି । ପ୍ରତ୍ୟେକ ଲୋକ ଯଥେଷ୍ଟ ଷ୍ଟୋଟ ନିଜ ଅଧିକାରରେ ରଖିବାକୁ ଚାହୁଁଛନ୍ତି, କାରଣ ଷ୍ଟୋଟରୁ କ୍ଷମତାର ଉଦ୍ଭବ । (ହିପ୍‌ଲମ୍ମା ବିସ୍ତାରିଭାବେ ସମସ୍ୟାଟିର ବ୍ୟାଖ୍ୟା କରିଥିଲେ । ସେ କହିଲେ, ବର୍ତ୍ତମାନର ସମସ୍ୟା ହେଉଛି 'ସରକାରୀ ଲାଲଫିତା, ସ୍ୱାର୍ଥସାଧନ ନିମନ୍ତେ ଅସତ୍ ଉପାୟ ଅବଲମ୍ବନ, ଦୁର୍ନୀତି, ଉତ୍କୋଚ ଦାନ ଓ ଗ୍ରହଣ, କଳାବଜାର ଓ ଲାଭଖୋର ମନୋବୃତ୍ତି ।') ତେଣୁ ଗାନ୍ଧୀ ଜୋର ଦେଇ କହିଲେ, 'ସରକାରୀ କ୍ଷମତାକୁ ଯିବାକଥା ମନରୁ ପୋଛିଦିଅ, ତେବେ ଯାଇ ତୁମେ କ୍ଷମତାରେ ଥିବା ଲୋକଙ୍କୁ ନିୟନ୍ତ୍ରିତ କରି ପାରିବ ଏବଂ ତାଙ୍କୁ ସତ୍‌ପଥରେ ରଖି ପାରିବ... ଇନ୍ଦୁଡ଼ଶାଳରେ ଆମ ସ୍ୱାଧୀନତା-ଶିଶୁର ତଣ୍ଟି ଚିପି ଦେବାକୁ ଯେଉଁ ଦୁର୍ନୀତି ଉଦ୍ୟତ ହୋଇଛି ତାକୁ ଲୋପ କରିବାର ଅନ୍ୟ ଉପାୟ ନାହିଁ ।'

ଗାନ୍ଧୀ ଅନୁଭବ କରିଥିଲେ, ଯେଉଁମାନେ କ୍ଷମତାଲାଳସାରୁ ମୁକ୍ତ, ସେଇମାନେହିଁ କ୍ଷମତାସୀନ ଲୋକଙ୍କର ବିରୋଧ କରିବାକୁ ସର୍ବତୋଭାବେ ସମର୍ଥ । ସରକାରୀ କଳ ବିଷୟରେ ତାଙ୍କର ଯେଉଁ ସ୍ୱଳ୍ପ ଅଭିଜ୍ଞତା ଥିଲା ସେଥିରୁ ସେ ଉପଲବ୍ଧି କରିଥିଲେ, ବ୍ୟବସ୍ଥାପକ ଓ ଜଜ୍‌ମାନେ କ୍ଷମତା-ଉତ୍ସର ଅତି ନିକଟବର୍ତ୍ତୀ ଥିବାରୁ ସରକାରୀ କର୍ତ୍ତୃପକ୍ଷଙ୍କୁ ରୋକିବା ବା ସମାଲୋଚନାରେ ରଖିବାକୁ ସମର୍ଥ ହୁଅନ୍ତି ନାହିଁ । ତାଙ୍କ ମତରେ, ଯେଉଁ-ମାନେ ସରକାରର ପୂରା ବାହାରେ ରହିବେ ସେଇମାନେହିଁ ସରକାରକୁ ରୋକିବାକୁ ଓ ବାଟରେ ରଖିବାକୁ ସମର୍ଥ ହେବେ ।

କିନ୍ତୁ ଗାନ୍ଧୀଙ୍କର ଉପରୋକ୍ତ ଉକ୍ତି ସଙ୍ଗେ ଏକଥା ମନେ ରଖିବାକୁ ହେବ ଯେ, ଭାରତର ଜନତାଙ୍କ ମନରେ ସେ ଯେଉଁ ଉଚ୍ଚ ଆସନ ପାଇ-ଥିଲେ ତା' ସତ୍ତ୍ୱେ ସେ ସରକାରର କ୍ଷମତାକୁ ରୋକିବାକୁ ବା ଠିକ୍

ରାସ୍ତାରେ ଚଳାଇବାକୁ ସମର୍ଥ ହୋଇ ନ ଥିଲେ—ଏ ସରକାରର ପୁଣି ଜନ୍ମ ହୋଇଥିଲା ତାଙ୍କ ନଜର ଉଦ୍ୟମରେ, ଏବଂ ଏ ସରକାରରେ ଯେଉଁମାନେ ସର୍ବମସ୍ତ କର୍ତ୍ତା ଥିଲେ ସେମାନେ ଗାନ୍ଧୀଙ୍କ ଗୋଡ଼ତଳର ଲୋକ ।

———

# ତ୍ରିଂଶ ପରିଚ୍ଛେଦ

## ଅନ୍ତିମ ଅନଶନ

ଜଣେ ଇଂରେଜ ବନ୍ଧୁ, ରିଚାର୍ଡ୍ ସିମଣ୍ଡ୍ସ୍ ନଭେମ୍ବର, ୧୯୪୭ରେ ନୂଆଦିଲ୍ଲୀଠାରେ ଟାଇଫଏଡ୍ ଜରରେ ପଡ଼ିଲେ । ସିମଣ୍ଡ୍ସ୍ ବଙ୍ଗଳାରେ ଦୁର୍ଗତଙ୍କର ସାହାଯ୍ୟ କରୁଥିବା ବେଳେ, ସେଇଠାରେ ଗାନ୍ଧୀଙ୍କ ସଙ୍ଗେ ପରିଚିତ ହୋଇଥିଲେ । ଗାନ୍ଧୀ ରୋଗୀଙ୍କୁ ଆଣି ବିରଳା ଭବନରେ ରଖିଲେ ।

ଜଣେ ଡାକ୍ତର ରୋଗୀଙ୍କ ପାଇଁ ବ୍ରାଣ୍ଡି ବ୍ୟବସ୍ଥା କଲେ । ବିରଳା ଭବନ ଖୋଜା ଖୋଜି କରିବାରେ ବୋତଲେ ବ୍ରାଣ୍ଡି ବାହାରିଲା । ବ୍ରାଣ୍ଡି ଦିଆଯିବ କି ନାହିଁ ବୋଲି ଗାନ୍ଧୀଙ୍କୁ ପଚାରିବାରେ, ସେ ନିଶାନିବାରଣର ନିବିଡ଼ ପକ୍ଷପାତୀ ହୋଇଥିବା ସତ୍ତ୍ୱେ, ସିମଣ୍ଡ୍ସ୍‌ଙ୍କୁ ବ୍ରାଣ୍ଡି ଦିଆଯିବାରେ ତାଙ୍କର ଆପତ୍ତି ନାହିଁ ବୋଲି କହିଲେ । ପରେ ସିମଣ୍ଡ୍ସ୍‌ଙ୍କୁ ଶେରି (ଏକପ୍ରକାର ମଦ୍ୟ) ଦିଆଯିବାକୁ ଡାକ୍ତର ବ୍ୟବସ୍ଥା ଦେବାରେ ବି, ଗାନ୍ଧୀ ପୂର୍ବପରି ଉଦାରତା ଦେଖାଇଲେ ।

ଖ୍ରୀସ୍‌ମାସ୍ ନିକଟବର୍ତ୍ତୀ ହେବାରେ, ସିମଣ୍ଡ୍ସ୍‌ଙ୍କ କୋଠରୀକୁ 'ହଲି' ଡାଳରେ, ଓ ବିବିଧ ରଙ୍ଗର ତୋରଣ ଓ ମାଳରେ ଭୂଷିତ କରିବାକୁ, କେତେଜଣ ଭାରତୀୟ ଖ୍ରୀଷ୍ଟିଆନ୍ ବାଳିକାଙ୍କୁ ବରାଦ କଲେ । ଖ୍ରୀସ୍‌ମାସ୍

ଦିବସର ପୂର୍ବ ସନ୍ଧ୍ୟାରେ, ମହାତ୍ମାଜୀଙ୍କ ନିର୍ଦ୍ଦେଶରେ ସେଇ ବାଳିକାମାନେ ଆସି ଖ୍ରୀସ୍‌ମାସ୍ ଗୀତ ଗାଇ ସିମଣ୍ଡ୍‌ସ୍‌ଙ୍କୁ ଶୁଣାଇଥିଲେ ।

ଗାନ୍ଧୀ ପ୍ରତ୍ୟହ ଅନ୍ତତଃ କେତେ ମିନିଟ୍ ରୋଗୀଙ୍କ ପାଖେ କଟାଉଥାନ୍ତି, ଦିନେ ଦିନେ ତାଙ୍କ ପାଖେ ବହୁତ ବେଳ ରହିଯାନ୍ତି । ଡାକ୍ତର ରୋଗୀଙ୍କର ଚିକିତ୍ସାରେ ନିଯୁକ୍ତ ଥାନ୍ତି ; ଗାନ୍ଧୀ ଏଥିନେଇ ଏତିକି-ମାତ୍ର ହସ୍ତକ୍ଷେପ କରିଥିଲେ ଯେ, ରୋଗୀଙ୍କ ତଳ ପେଟରେ ସେ ମାଟି-ପଟି ଦିଆଉଥିଲେ । ଆଉ ରୋଗୀଙ୍କର ସ୍ୱାସ୍ଥ୍ୟ ଫେରାଇ ଆଣିବାରେ ସେ ମୁଖ୍ୟତଃ ଏତିକି କରିଥିଲେ ଯେ, ତାଙ୍କ ପାଖରେ ଆସି ବସିବାତକ ସେ ତାଙ୍କୁ ହସାଉଥାନ୍ତି ।

ସିମଣ୍ଡ୍‌ସ୍ କାଶ୍ମୀର ଯାଇଥିଲେ, ତେଣୁ ସେ ଗାନ୍ଧୀଙ୍କ ସଙ୍ଗେ କାଶ୍ମୀର ବିଷୟରେ ଆଲୋଚନା କରିବାକୁ ସୁଯୋଗ ଖୋଜୁଥାନ୍ତି । ଗାନ୍ଧୀଙ୍କ ମୌନ ଦିବସ ବ୍ୟତୀତ ଅନ୍ୟ କୌଣସି ଦିନ ତାଙ୍କୁ ଏ ସୁଯୋଗ ମିଳେ ନାହିଁ । ଅନ୍ୟ ଦିନମାନଙ୍କରେ ଗାନ୍ଧୀ ତାଙ୍କ ପାଖରେ ଆସି ପହଞ୍ଚିବା ବେଳୁଁ ଯିବା ପର୍ଯ୍ୟନ୍ତ ତାଙ୍କୁ ରହସିଆ ଗପ କହି ଓ କୌତୁକ କରି ହସାଉଥାନ୍ତି । ସେ ମନେ କରୁଥାନ୍ତି, କାଶ୍ମୀର ସମସ୍ୟା ଏତେ ଗୁରୁତର ଯେ, ରୋଗୀ ସେଥିରେ ମୁଣ୍ଡ ଖେଳାଇବା ଉଚିତ ନୁହେଁ ।

ମନୋରମ କାଶ୍ମୀର ଉପତ୍ୟକା ସହିତ କାଶ୍ମୀର ରାଜ୍ୟ ପୃଥିବୀର ଶୀର୍ଷରେ ଭାରତର ଉତ୍ତର ସୀମାନ୍ତରେ ଅବସ୍ଥିତ । ଏହାର ହିନ୍ଦୁ ମହାରାଜା ରାଜ୍ୟର ୮ ଲକ୍ଷ ହିନ୍ଦୁ ପ୍ରଜା, ୩୨ ଲକ୍ଷ ମୁସ୍‌ଲିମ୍ ପ୍ରଜାଙ୍କ ଉପରେ ରାଜୁତି କରୁଥିଲେ । ହିନ୍ଦୁ ବା ମୁସଲମାନ କାହାରି ମଙ୍ଗଳ ପ୍ରତି ତାଙ୍କର ଦୃଷ୍ଟି ନ ଥିଲା ; ସେ ପ୍ରଜାଙ୍କୁ ଶାସନରେ କୌଣସି ଅଧିକାର ଦେଇ ନ ଥିଲେ । ୧୯୪୭, ସେପ୍‌ଟେମ୍ବର ମାସରେ ପାକିସ୍ଥାନ ସରକାରଙ୍କ ସାହାରେ ଆଫଗାନିସ୍ଥାନ ଓ ଉତ୍ତର ପଶ୍ଚିମ ସୀମାନ୍ତ ପ୍ରଦେଶର ମଧ୍ୟବର୍ତ୍ତୀ ଅଞ୍ଚଳରେ ବାସ କରୁଥିବା ଦୁର୍ଦ୍ଧର୍ଷ ଯୁଦ୍ଧପ୍ରିୟ ଆଦିବାସୀ ମୁସଲମାନମାନେ କାଶ୍ମୀର ଭିତରେ ଅନଧିକାର ପ୍ରବେଶ କରି ତଣ୍ଡବଗୋଳ କଲେ ; ସ୍ପଷ୍ଟ ପରେ ପାକିସ୍ଥାନ ସରକାରଙ୍କ ସୈନ୍ୟ-ବାହିନୀ ମଧ୍ୟ କାଶ୍ମୀର ଆକ୍ରମଣ କଲେ । ଅସହାୟ ଓ ଆତଙ୍କିତ ହୋଇ କାଶ୍ମୀର ମହାରାଜା ତାଙ୍କ ରାଜ୍ୟ, ଭାରତର ଅନ୍ତର୍ଭୁକ୍ତ ହେଉ ବୋଲି ଭାରତ ସରକାରଠାରେ ଆବେଦନ କଲେ । ଅକ୍ଟୋବର ୨୯ ତାରିଖରେ ଭାରତ ସରକାର ଇସ୍ତାହାର ପ୍ରକାଶ

କରି ଆନୁଷ୍ଠାନିକ ଭାବେ କାଶ୍ମୀରକୁ ଭାରତର ଅନ୍ତର୍ଭୁକ୍ତ କଲେ ; ତପୂର୍ବରେ ମହାରାଜା ଶେଖ୍ ଅବ୍ଦୁଲଙ୍କୁ କାଶ୍ମୀରର ପ୍ରଧାନମନ୍ତ୍ରୀ ନିଯୁକ୍ତ କଲେ । ଯାଙ୍କୁ ସେ ବହୁଦିନ ହେଲା ବନ୍ଦୀ କରି ରଖିଥିଲେ । ନୂଆଦିଲ୍ଲୀର କର୍ତ୍ତାମାନେ ସାଙ୍ଗେ ସାଙ୍ଗେ ଆକାଶ ପଥରେ ଓ ସ୍ଥଳ ପଥରେ କାଶ୍ମୀରକୁ ସୈନ୍ୟ ପ୍ରେରଣ କଲେ । ଆକାଶ ପଥରେ ଭାରତରୁ ସୈନ୍ୟ ନ ଯାଇ-ଥିଲେ ପାକିସ୍ଥାନ ସରକାର କାଶ୍ମୀରକୁ ଦଖଲ କରି ନିଜର ରାଷ୍ଟ୍ରର ସାମିଲ କରି ଦେଇଥାନ୍ତେ । ଭାରତର ସେନା ଯାଇ ପହଞ୍ଚିବାରେ କାଶ୍ମୀର ଓ ଜାମୁ (ଏହା ମଧ୍ୟ କାଶ୍ମୀର ମହାରାଜାଙ୍କ ଅଧୀନ ଥିଲା ) ଭାରତ ଓ ପାକିସ୍ଥାନ ମଧ୍ୟରେ ଗୋଟିଏ ଶ୍ରେଷ୍ଠକାଠର ସମର-କ୍ଷେତ୍ର ହୋଇଗଲା । ଏ ସମର ଫଳରେ ଭାରତ ଓ ପାକିସ୍ଥାନ ଦୁଇଟି ଯାକ ନୂତନ ରାଷ୍ଟ୍ରର ଧନ, ଜନ, ଯୁଦ୍ଧ ସରଞ୍ଜାମ ଓ ଧୈର୍ଯ୍ୟର ଅପଚୟ ଘଟିଲା । ମୁସଲମମାନେ ଯାକୁ 'ଧର୍ମ ସମର' ଆଖ୍ୟା ଦେଲେ ।

ଖ୍ରୀସ୍‌ମାସ୍ ଦିବସରେ ବେତାର ଭାଷଣ ଦେଇ ମହାତ୍ମା ଗାନ୍ଧୀ ଆଦିବାସୀ ଆକ୍ରମଣକାରୀଙ୍କୁ ଘଉଡ଼ିବା ସକାଶ ଭାରତସରକାର ସେନା ମୁତୟନ କରି ଠିକ୍ କରିଛନ୍ତି ବୋଲି ଘୋଷଣା କଲେ । କାଶ୍ମୀର ଓ ଜାମୁକୁ ଭାରତ ଓ ପାକିସ୍ଥାନ ମଧ୍ୟରେ ବାଣ୍ଟି ଦେବାକୁ ହେଉଥିବା ପ୍ରସ୍ତାବକୁ ସେ ନାପସନ୍ଦ କଲେ ଏବଂ ନେହେରୁ ଏ ବିଷୟରେ ଜାତିସଂଘ-ଠାରେ ଅଭିଯୋଗ କରିଥିବାରୁ ଦୁଃଖ ପ୍ରକାଶ କଲେ । ବ୍ରିଟିଶ୍ ଶାନ୍ତିବାଦୀ ହୋରେସ୍ ଆଲେକ୍‌ଜାଣ୍ଡାର୍‌ଙ୍କୁ ଏହାର କାରଣ ବୁଝାଇ ସେ କହିଥିଲେ ଯେ, ଜାତି ସଂଘର ରାଷ୍ଟ୍ରମାନେ ଆନ୍ତର୍ଜାତୀୟ କ୍ଷମତା-ରାଜନୀତିରେ ଭାସି ଯାଇ କାଶ୍ମୀରପ୍ରଶ୍ନର ଯଥାଯଥ ଫଇସଲା କରିବେ ନାହିଁ । ତେଣୁ ଗାନ୍ଧୀ ପ୍ରସ୍ତାବ ଦେଲେ, ଭାରତ ଓ ପାକିସ୍ଥାନ 'ନିରପେକ୍ଷ ଭାରତୀୟଙ୍କ ସହ-ଯୋଗରେ ଏ ବିବାଦ ଆପୋଷରେ ତୁଟାଇ ଦିଅନ୍ତୁ' । ଏହା ହେଲେ ଜାତିସଂଘର 'ଭାରତୀୟ ପ୍ରତିନିଧି ତାଙ୍କର ଅଭିଯୋଗ ସସମ୍ମାନେ ଜାତି-ସଂଘରୁ ଉଠାଇ ଆଣି ପାରିବେ ।' ଭାରତ ଓ ପାକିସ୍ଥାନଙ୍କର ଆପୋଷ ଆଲୋଚନା ଯଦି ବିଫଳ ହୁଏ, ତେବେ ଜଣେ ବା ଦୁଇଜଣ ଇଂରେଜ ରାଷ୍ଟ୍ରନୀତିଜ୍ଞ ଏ ବିଷୟରେ ମଧ୍ୟସ୍ଥ ହୋଇପାରନ୍ତି ବୋଲି ଗାନ୍ଧୀ କଳ୍ପନା କରିଥିଲେ । ହୋରେସ୍ ଆଲେକ୍‌ଜାଣ୍ଡର୍‌ଙ୍କ ସଙ୍ଗେ ଆଲୋଚନା ବେଳେ ଗାନ୍ଧୀ ବ୍ରିଟିଶ ଶ୍ରମିକ ସରକାରଙ୍କର ଜଣେ ମନ୍ତ୍ରୀ ଫିଲିପ୍ ନୋଏଲ୍

ବେକରଙ୍କ ନାମକରଣ କରି ସେ ମଧ୍ୟସ୍ଥ ହେଲେ ଉଭୟ ପକ୍ଷ ଗ୍ରହଣ କରି ପାରନ୍ତି ବୋଲି କହିଥିଲେ । ସେ ମଧ୍ୟ ବିଚାରିଥିଲେ ଯେ, ବିବାଦ ଉପୁଜିଥିବା ଅଞ୍ଚଳର ଅଧିବାସୀଙ୍କ ଗଣଭୋଟରେ ଏ ବିବାଦର ନିଷ୍ପତ୍ତି ହୋଇପାରିବ ।

କିନ୍ତୁ ଭାରତ ସରକାର ମଧ୍ୟସ୍ଥି ବା ଆପୋଷସମାଧାନ ପ୍ରସ୍ତାବ ଗ୍ରହଣ କଲେ ନାହିଁ ; ଜାତିସଂଘରେ ଭାରତ ଓ ପାକିସ୍ତାନ ପକ୍ଷରୁ ତିକ୍ତ ବାଦାନୁବାଦ ଅସରନ୍ତି ଭାବେ ଲାଗି ରହିଲା । ଉଭୟ ରାଷ୍ଟ୍ରର ବିରୋଧ ବଢ଼ିଲା ଓ ସାମରିକ ଖର୍ଚ୍ଚ ବଢ଼ିଲା ।

ଗାନ୍ଧୀ ସବୁବେଳେ ଉଚ୍ଚରାଜନୀତି ସଙ୍ଗେ ଶ୍ରେଷ୍ଠ ସ୍ତରର ରାଜନୀତିକୁ ମିଶାଇ ଦିଅନ୍ତି । ଦିନେ ସେ ନେହେରୁଙ୍କ ସହିତ କାଶ୍ମୀର ବିଷୟରେ ଆଲୋଚନା କଲେ ଓ ତହିଁ ଆର ଦିନ ସେ ଗୋଟିଏ ଗ୍ରାମକୁ ଯାଇ, 'ଗୃହପାଳିତ ପଶୁଙ୍କ ଗୋବର' ସଙ୍ଗେ ମଣିଷର ଗୁହକୁ ମିଶାଇ କିପରି 'ଉତ୍କୃଷ୍ଟ ସାର' କରିବାକୁ ହେବ ସେ ବିଷୟରେ ଗ୍ରାମବାସୀଙ୍କୁ ପରାମର୍ଶ ଦେଇ ଲାଗିଲେ । ସେ ପୁଣି ପରାମର୍ଶ ଦେଲେ, ଗ୍ରାମବାସୀମାନେ ଗୋରୁଙ୍କର ଅଧିକ ଯତ୍ନ ନେବାକୁ ହେବ । ହିନ୍ଦୁମାନେ ଆପତ୍ତି କଲେ ଯେ, ମୁସଲିମ୍-ମାନେ ଗୋରୁ ମାରନ୍ତି ; ଗାନ୍ଧୀ କହିଲେ, କିନ୍ତୁ ହିନ୍ଦୁମାନେ ଗୋରୁଙ୍କୁ 'ଅଯତ୍ନ କରି ତାଙ୍କୁ ଟିକିଏ ଟିକିଏ କରି' ମାରୁଛନ୍ତି । ଗ୍ରାମବାସୀମାନେ ତାଙ୍କୁ ଯେଉଁ ଅଭିନନ୍ଦନ ପତ୍ର ଦେଇଥିଲେ, ସେଥିରେ ଅହିଂସାର ମହତ୍ତ୍ୱର ତାରିଫ୍ କରିଥିଲେ । ଗାନ୍ଧୀ ଉତ୍ତରରେ କହିଲେ, 'ଏ ଅଭିନନ୍ଦନ ପତ୍ର କିପରି ତିଆରି ହୁଏ ତାହା ମୋତେ ଜଣା । ଜଣେ କିଏ ବସି ମନରୁ ଫାନ୍ଦି ଗୁଡ଼ାଏ ଲେଖି ଦିଅନ୍ତି ଓ ଆଉ ଜଣେ କିଏ ଯାକୁ ଶୁଆ ପରି ପଢ଼ି ଶୁଣାଇ ଦିଏ । ଏତିକରେ କାମ ସରେ ।' ସେମାନେ କ'ଣ କାର୍ଯ୍ୟରେ ଅହିଂସା ପାଳୁଛନ୍ତି ? 'ମଣିଷର ଚିନ୍ତା, କଥା ଓ କାର୍ଯ୍ୟରେ ସାମଞ୍ଜସ୍ୟ ରହିବା ଦରକାର ।'

ଏହି ମାପକାଠିରେ ଗାନ୍ଧୀ ଥିଲେ ମହାନ୍; ସ୍ୱାଧୀନତା ପୂର୍ବରୁ ସେ ଯାହା ଥିଲେ, ସ୍ୱାଧୀନତା ପରେ ତହିଁରୁ ମହତ୍ତର ହୋଇଥିଲେ । କେତେକ ମାସ ଭାରତରେ କଟାଇ ବିଦାୟ ନେବାର ଠିକ୍ ପୂର୍ବରୁ, ନିଉୟର୍କ କମ୍ୟୁନିଟି ଚର୍ଚ୍ଚର ରେଭରେଣ୍ଡ୍ ଡକ୍ଟର ଜନ୍ ହେଇନସ୍ ହୋମସ୍ ଗାନ୍ଧୀଙ୍କ ପାଖକୁ ଲେଖି ପଠାଇଥିଲେ, 'ଆପଣଙ୍କ ଅତୁଳନୀୟ ଜୀବନର ଏଇ ଶେଷ କେତୋଟି ମାସ ଆପଣଙ୍କ ମହତ୍ତ୍ୱର ଶୀର୍ଷବିନ୍ଦୁ ଓ

ମୁକ୍ତି ବୋଲି ମୁଁ ମନେ କରେ । ବର୍ତ୍ତମାନର ବିଷମ ପରିସ୍ଥିତିରେ ଆପଣ ଯେତେ ମହାନ୍ ହୋଇ ପାରିଛନ୍ତି, ପୂର୍ବେ ଏତେ ହୋଇ ନ ଥିଲେ ।' ଡକ୍ଟର୍ ହୋମ୍ସ୍ ଗାନ୍ଧୀଙ୍କ ସଙ୍ଗେ ଯୁଦ୍ଧ ଆଗରୁ କଥାବାର୍ତ୍ତା ହୋଇଥିଲେ ଓ ତାଙ୍କ ମନର ଭାବ ବୁଝିଥିଲେ । ସେ ମହାତ୍ମାଙ୍କୁ ତାଙ୍କ ଚିଠିରେ ଆହୁରି ଲେଖି-ଥିଲେ, 'ମୁଁ ଜାଣେ, ଆପଣ ସମ୍ପ୍ରତି ଘଟିଥିବା ବିପର୍ଯ୍ୟୟ ଯୋଗୁଁ ଅତି ବିଷଣ୍ଣ ହୋଇଛନ୍ତି, ପ୍ରାୟଶଃ ମନସ୍ତାପରେ ଭାଙ୍ଗି ପଡ଼ୁଛନ୍ତି । କିନ୍ତୁ ଆପଣ କେବେହେଁ ମନେ କରନ୍ତୁ ନାହିଁ ଯେ, ଏ ବିପର୍ଯ୍ୟୟଦ୍ୱାରା ଆପଣଙ୍କ ଜୀବନର ସାଧନା ବିଫଳ ହୋଇଗଲା ।'

୧୯୪୭, ଜାନୁଆରି ୧୧ ତାରିଖର 'ହରିଜନ'ରେ ରେଭରେଣ୍ଡ୍ ହୋମ୍ସ୍‌ଙ୍କ ଏହି ପ୍ରଶସ୍ତି 'ଏହାର କ'ଣ ମୁଁ ଯୋଗ୍ୟ ?' ଶିରୋନାମା ତଳେ ପ୍ରକାଶ କରି ଗାନ୍ଧୀ ଏହାର ଜବାବରେ ଲେଖିଥିଲେ, 'ମୁଁ ମନେ କରୁଛି, ମୋ ନାମରେ ଯାହା ଲେଖା ହୋଇଛି ତାହା ପ୍ରମାଣିତ ହୋଇ ପାରିବ ନାହିଁ ।' ସେହି ତାରିଖର ହରିଜନରେ ଗାନ୍ଧୀ ଆଉ ଖଣ୍ଡିଏ ଚିଠି ପ୍ରକାଶ କରିଥିଲେ ; ଏହା ଆସିଥିଲା ଜଣେ ୟୁରୋପିଆନ୍ ବନ୍ଧୁଙ୍କଠାରୁ, ଗାନ୍ଧୀଙ୍କୁ ସାନ୍ତ୍ୱନା ଦେବା ସକାଶେ । ବୈଦେଶିକ ବନ୍ଧୁ ଲେଖିଥିଲେ, 'ମୁଁ ନିଜେ ନିଜ ପକ୍ଷରୁ ଏହା ଲେଖୁଛି । ମୋର ବିଶ୍ୱାସ, କୋଟି କୋଟି ଲୋକଙ୍କର ବି ଏହା ହୃଦୟର କଥା । ମନୁଷ୍ୟ ଜାତିର ମୁକ୍ତି ପାଇଁ ଯାହା ଏକାନ୍ତ ପ୍ରୟୋଜନ ବୋଲି ଆପଣ ଅନୁଭବ କରିଥିଲେ, ସେହି ଅହିଂସା ପାଇଁ ଆପଣ ଆପଣ-ଙ୍କର ସମଗ୍ର ଜୀବନ ଉତ୍ସର୍ଗ କରିଥିବାରୁ ମୁଁ ଆପଣଙ୍କଠାରେ ଗଭୀର ଭାବେ କୃତଜ୍ଞ । ସେହି କଥା ଆପଣଙ୍କୁ ଜଣାଇ ଦେବା ମୋର ଏକାନ୍ତ କର୍ତ୍ତବ୍ୟ ବୋଲି ମୁଁ ମନେ କରୁଛି ।'

ଗାନ୍ଧୀ ଏହାର ଉତ୍ତରରେ ଲେଖିଲେ, 'ମୁଁ ନିଜେ ବାହାରକୁ ଦେଖାଇବା ଭଳି କୌଣସି ବୀରତ୍ୱବ୍ୟଞ୍ଜକ ଅହିଂସାର କାର୍ଯ୍ୟ ନିଜେ କରି ଦେଖାଇଛି ବୋଲି ମନେ ମନେ ଗର୍ବ ଅନୁଭବ କରୁନାହିଁ ; ଆପଣଙ୍କ ପରି ବନ୍ଧୁମାନେ ମୋ ବିଷୟରେ ଏଭଳି ଉଚ୍ଚ ଧାରଣା କରନ୍ତି ବୋଲି ମଧ୍ୟ ମୁଁ ଭୁଲେ ନାହିଁ । ମୋ ପାଇଁ ମୁଁ ଏତିକିମାତ୍ର କହିପାରେ ଯେ, ମୁଁ ମୁହୂର୍ତ୍ତେ ମାତ୍ର ବ୍ୟତିକ୍ରମ ନକରି ସେହି ଅହିଂସାର ମାର୍ଗରେ ଚାଲି ରହିଛି ।'

ଏ ସଂପର୍କରେ ଗାନ୍ଧୀଙ୍କ ମନୋଭାବ ସଂଯତ ଓ ବିନୟପୂର୍ଣ୍ଣ ଥିଲା । କିନ୍ତୁ ସେ ତାଙ୍କ ଜୀବନର ବ୍ରତରେ ଏଭଳି ତନ୍ମୟ ହୋଇଥିଲେ ଯେ, ନିଜ

ବିଷୟରେ ବ୍ୟକ୍ତି-ନିରପେକ୍ଷ ଧାରଣା କରିବା ତାଙ୍କ ପକ୍ଷରେ ସଂଭବ ହେଉ ନ ଥିଲା । ଇତିହାସର ପରିପ୍ରେକ୍ଷିତରେ ସେ ନିଜକୁ ନ ଦେଖି ପାରିବା ସ୍ୱାଭାବିକ । ଅନ୍ୟମାନଙ୍କର ବିଫଳତା ଯୋଗୁଁ ସେ ଏତେ ହତାଶ ହୋଇ ଯାଇଥିଲେ ଯେ, ନିଜର ସଫଳତାର ଯଥାଯଥ ମୂଲ୍ୟାୟନ କରି ପାରି ନ ଥିଲେ ।

ଯିଶୁଖ୍ରୀଷ୍ଟଙ୍କ ମହତ୍ତ୍ୱ ତାଙ୍କୁ କ୍ରୁଶରେ ବସାଇଥିବା ବା ତାଙ୍କୁ ଅପବାଦ ଦେଇଥିବା ଲୋକଙ୍କ କାର୍ଯ୍ୟଦ୍ୱାରା ନିର୍ଣ୍ଣୟ କରିବା କ'ଣ ଠିକ୍ ହେବ ?

ଗାନ୍ଧୀ ଏତେ ମହତ୍ ଥିଲେ ଯେ, କାର୍ଯ୍ୟରେ ସଫଳତା ହାସଲ୍ କରିବା ତାଙ୍କ ପକ୍ଷରେ ସଂଭବ ନ ଥିଲା । ତାଙ୍କର ଆଦର୍ଶ ଥିଲା ଅତି ଉଚ୍ଚ ଏବଂ ତାଙ୍କର ଅନୁଗାମୀମାନେ ଥିଲେ ଅତି ମାତ୍ରାରେ ମାନବୀୟ ଦୋଷଦୁଷ୍ଟ ଏବଂ ଅଦୃଢ଼ ।

ଗାନ୍ଧୀ ଖାଲି ଭାରତରେ ନଥିଲେ । ଭାରତରେ ତାଙ୍କର ଯେଉଁ ବିଫଳତା ହେଲା ତାହା ଲେଶ ମାତ୍ରାରେ, ସେ ସମଗ୍ର ପୃଥିବୀକୁ ଦେଇଥିବା ସନ୍ଦେଶକୁ ନ୍ୟୂନ କରି ପାରିବ ନାହିଁ । ତାଙ୍କର ତେଜ ଭାରତରେ ଏକା-ବେଳକେ ମଉଳି ଗଲେ ବି ସମଗ୍ର ପୃଥିବୀରେ ଖୁବ୍ ଦେଦୀପ୍ୟମାନ ହୋଇ-ପାରେ । ଶେଷରେ କିନ୍ତୁ ସେ ସମଗ୍ର ପୃଥିବୀରେ ଏବଂ ଭାରତରେ ମଧ୍ୟ ଚିରଞ୍ଜୀବନ୍ତ ହୋଇ ରହିବାର ଆଶା ଅଛି ।

ଗାନ୍ଧୀଙ୍କ ଚିନ୍ତାର ଧାରା ଓ ଚିନ୍ତାନୁସାରୀ ତାଙ୍କର କାର୍ଯ୍ୟ ହିଁ ପ୍ରଣି-ଧାନର ଯୋଗ୍ୟ । ତାଙ୍କ କାର୍ଯ୍ୟ ତାଙ୍କ ନିକଟତମ ପ୍ରତିବେଶୀଙ୍କଠାରେ କି ସଦ୍ୟଫଳ ଦେଖାଇଲା ତାହା ତାଙ୍କ ମୂଲ୍ୟାୟନ କଲାବେଳେ ବିଚାର୍ଯ୍ୟ ନୁହେଁ ।

ଯିଶୁ ହୁଏତ ମନେ କରିଥିବେ ଯେ, ଈଶ୍ୱର ତାଙ୍କ ପ୍ରତି ନିର୍ଦ୍ଦୟ ହୋଇଗଲେ; ଗାନ୍ଧୀ ହୁଏତ ମନେ କରିଥିଲେ ଯେ, ତାଙ୍କ ନିଜ ଲୋକେ ତାଙ୍କୁ ପାସୋରି ଦେଲେ । କିନ୍ତୁ ଇତିହାସ ତାଙ୍କୁ ଯେଉଁ ଦୃଷ୍ଟିରେ ଦେଖିବ ତାହା ଇତିହାସକୁ ରୂପ ଦେଉଥିବା ଲୋକେ ଆଗରୁ ଅନୁମାନ କରିପାରିବା ସଂଭବ ନୁହେ ।

ମଣିଷ କେଡ଼େ ଉଚ୍ଚ ତାହା ଗୁହିଁବା ଲୋକର ଆଖିକୁ ଦିଶେ । ବ୍ୟତିବ୍ୟସ୍ତ ଓ ବିଷାଦଗ୍ରସ୍ତ ହୋଇ, ଯେଉଁମାନେ ତାଙ୍କୁ ପୂଜା କରୁଥିଲେ,

ତାଙ୍କଠାରୁ ବାଧା ପାଇ, ଗାନ୍ଧୀ ଜାଣି ପାରି ନଥିବେ ଜୀବନର ଶେଷ କେଇ ମାସରେ ସେ ମହତ୍ତ୍ୱର କେଉଁ ଶିଖରକୁ ଉଠିଥିଲେ । ଏଇ ସମୟ ଭିତରେ ଯାହା କରିଥିଲେ ତାହାର ମୂଲ୍ୟ ଯେ କୌଣସି ମାନବ ଗୋଷ୍ଠୀରେ ଅକଳନୀୟ । ସଚରାଚର ଆମେ ଯାହା ଦେଖୁଁ ତା'ଠାରୁ ଅଲଗା, ଉନ୍ନତ ଜୀବନଧାରାର ଗୋଟିଏ ଜୀବନ୍ତ ଦୃଷ୍ଟାନ୍ତ ସେ ଭାରତରେ ଦେଖାଇ ଦେଇଥିଲେ । ସେ ଦେଖାଇ ଦେଲେ ଯେ, ସମାଜରେ ଲୋକେ ଭାଇ ଭାଇ ହୋଇ ଚଳି ପାରିବେ ; ସେ ଦେଖାଇ ଦେଲେ ଯେ, ହାତରେ ନରରକ୍ତ ବୋଳି ହୋଇଥିବା ମନୁଷ୍ୟ-ପଶୁ ମୁହୂର୍ତ୍ତିକ ପାଇଁ ହେଲେ ବି, ଅନ୍ତରର ଡାକକୁ କାନ ଡେରି ପାରେ । ଏଇ ପୁଣ୍ୟ ମୁହୂର୍ତ୍ତଗୁଡ଼ିକ ମଝିରେ ମଝିରେ ନ ଆସୁଥିଲେ ମାନବର ନିଜ ଉପରେ ଆସ୍ଥା ରହନ୍ତା ନାହିଁ । ସାଧାରଣ ଜୀବନର ତମସାଚ୍ଛନ୍ନ ସ୍ଥିତି ସଙ୍ଗେ ସମାଜ, କାଳ କାଳକୁ ଏହି ମୁହୂର୍ତ୍ତିମାନଙ୍କର ଝଲକର ତୁଳନା କରୁଥିବ ।

ଗାନ୍ଧୀ ଅନଶନ କରିବା ଫଳରେ କଲିକତାକୁ ଶାନ୍ତିପୂର୍ଣ୍ଣ ସ୍ୱାଭାବିକ ଅବସ୍ଥା ଫେରି ଆସିଲା ; ସେ ଆସି ପହଞ୍ଚିବାରୁ ଦିଲ୍ଲୀରେ ଲାଗିଥିବା ବ୍ୟାପକ ହାଣକାଟ ବନ୍ଦ ହୋଇ ଯାଇ କେଉଁଠି କେମିତି ମାତ୍ର ଟିକିଏ ଟିକିଏ ଗଣ୍ଡଗୋଳର ଅବଶେଷ ରହିଲା ; ଅଳ୍ପ ସମୟ ପାଇଁ ସେ ଡକ୍ଟର ଜାକୀର ହୋସେନ୍‌ଙ୍କ ଓଖଲା ବିଦ୍ୟାଳୟରେ ପାଦ ଦେବା ଫଳରେ, ସେ ଅନୁଷ୍ଠାନ ଧ୍ୱଂସାକାଣ୍ଡରୁ ମୁକ୍ତ ହୋଇଗଲା ; ପାପାଚରଣରେ ଅଭ୍ୟସ୍ତ ଦୁର୍ବୃତ୍ତମାନେ ତାଙ୍କ ପାଦତଳେ ଅସ୍ତ୍ର ଶସ୍ତ୍ର ଥୋଇଦେଲେ ; ହିନ୍ଦୁମାନେ ଅସନ୍ତୁଷ୍ଟ ନ ହୋଇ କୋରାନର ଆବୃତ୍ତି ଶୁଣିଲେ, ହିନ୍ଦୁର ତୁଣ୍ଡରୁ କୋରାନର ବ୍ୟାହୃତି ଶୁଣି ମୁସଲମାନେ ପ୍ରତିବାଦ କଲେ ନାହିଁ—ଏହି ସବୁ ଘଟଣା ମନୁଷ୍ୟର ସ୍ମୃତିରେ କାଳ କାଳକୁ ରହିବ ; ଯେଉଁମାନଙ୍କ କାର୍ଯ୍ୟ ଦେଖି ମନେ ହେବ ଯେ, ସେମାନେ ଏ ସବୁ ପାସୋରି ପକାଇଛନ୍ତି, ସେମାନଙ୍କୁ ମଧ୍ୟ ଏ ଘଟଣା ସବୁ ଉଦ୍‌ବୁଦ୍ଧ କରିବ ଏବଂ ଏହାର ସ୍ମୃତି ସେମାନଙ୍କ ମନକୁ ଆନ୍ଦୋଳିତ କରିବ । ଏହି ସବୁ ଘଟଣା ହେଉଛି ବିଶ୍ବର-ବୁଦ୍ଧିର ବୀଜ ଓ ଆଶାର ଉତ୍ସ ।

୧୯୪୮ ଜାନୁୟାରୀ ତେର ତାରିଖରେ ଗାନ୍ଧୀ ତାଙ୍କ ଜୀବନର ଶେଷ ଅନଶନ ଆରମ୍ଭ କଲେ ; ଏହା ଭାରତର ହୃଦୟରେ ମହତ୍ତ୍ୱର ଗୋଟିଏ ଆଲେଖ୍ୟ ଅଙ୍କିତ କରିଦେଲା ।

ଦିଲ୍ଲୀର ହାଣକାଟ ବନ୍ଦ ହୋଇ ଯାଇଥାଏ ; ଗାନ୍ଧୀ ଦିଲ୍ଲୀ ନଗରୀରେ ଅବସ୍ଥାନ କରିବାର ଫଳ ହୋଇଥାଏ । ତଥାପି ତାଙ୍କର 'ମାନସିକ ଯନ୍ତ୍ରଣା' ହେଉଥାଏ । ସେ କହିଥିଲେ, 'ଡକ୍ଟର ଜାକୀର ହୁସେନ୍‌ଙ୍କ ପରି ଲୋକେ, ତଥା ସହୀଦ୍ ସରୱର୍ଦ୍ଦି (ବଙ୍ଗର ଭୂତପୂର୍ବ ପ୍ରଧାନମନ୍ତ୍ରୀ)ଙ୍କ ପରି ଲୋକେ, ଦିଲ୍ଲୀ ସହରରେ ମୋ ପରି ସ୍ୱଚ୍ଛନ୍ଦ ଓ ନିରାପଦ ଭାବେ ଯିବା ଆସିବା କରି ପାରିବେ ନାହିଁ, ଏକଥା ମୋ ପକ୍ଷେ ଅସହ୍ୟ ହେଉଛି ।' ଗାନ୍ଧୀଙ୍କର ଇଚ୍ଛା ଥିଲା, ସେ ପାକିସ୍ଥାନ ଯାଇ ସେଠାର ହିନ୍ଦୁ ଓ ଶିଖ୍‌ଙ୍କର ସହାୟ ହୁଅନ୍ତେ, କିନ୍ତୁ ଦିଲ୍ଲୀର ମୁସଲମାନମାନେ ପୂର୍ଣ୍ଣ ପ୍ରତିକାର ନ ପାଇଥିବା ସ୍ଥଳେ, ସେ କେଉଁ ମୁହଁରେ ପାକିସ୍ଥାନ ଯିବେ ? ସେ କହିଲେ, 'ମୁଁ ଅସହାୟ ବୋଲି ଅନୁଭବ କରୁଛି । ଜୀବନରେ କେବେହେଁ ଏଭଳି ଅସହାୟତାକୁ ବରଦାସ୍ତ କରିନାହିଁ ।'

ତେଣୁ ସେ ଅନଶନ କରିବାକୁ ସଂକଳ୍ପ କଲେ । ଏହା ହେବ ଆମରଣ, 'ପୂର୍ଣ୍ଣ' ଅନଶନ । ସେ କହିଲେ, 'ଏ ସଂକଳ୍ପ ମୋ ଅନ୍ତରରୁ ଗୋଟାଏ ଝଲକରେ ବାହାରି ପଡ଼ିଲା ।' ସେ ନେହେରୁ ଓ ପଟେଲଙ୍କ ସଙ୍ଗେ ପରାମର୍ଶ କରି ନ ଥିଲେ, କି ତାଙ୍କ ଡାକ୍ତରଙ୍କୁ ବି ପଚାରି ନ ଥିଲେ । ପରିସ୍ଥିତି ଭଲ ଆଡ଼କୁ ଗଲାବେଳେ ସେ ଅଧୀର ଭାବେ ଏ ସଂକଳ୍ପ କରି ପକାଇଲେ ବୋଲି ଅଭିଯୋଗ ହେବାରେ ଗାନ୍ଧୀ ଜବାବ୍ ଦେଲେ ଯେ, ସେ ଖୁବ୍ ଧୈର୍ଯ୍ୟ ଧରି ହାଣକାଟ ଆରମ୍ଭ ହେବାଦିନୁଁ ବର୍ଷେ ହେଲା ଅପେକ୍ଷା କରି ରହିଥିଲେ, କିନ୍ତୁ ସାଂପ୍ରଦାୟିକ ହାଣକାଟର ମନୋଭାବ ଏ ପର୍ଯ୍ୟନ୍ତ ଦେଶତମାମ ପୂରି ରହିଛି । ମଣିଷ ପକ୍ଷେ ଯାହା ସମ୍ଭବ ସେ ସବୁ ଉଦ୍ୟମ କରି ସାରିଲାପରେ ମୁଁ ନାଚାର ହୋଇ···ମୋର ମୁଣ୍ଡକୁ ଭଗବାନ୍‌ଙ୍କ କୋଡ଼ରେ ରଖି ଦେଇଛି···ଭଗବାନ୍ ମୋତେ ଏ ଅନଶନର ପ୍ରେରଣା ଦେଇଛନ୍ତି···। ଅନଶନ ଚାଲିଥିବା ଯାକ ଭଗବାନ ମୋତେ ମନୋବଳ ଦିଅନ୍ତୁ ; ଜୀବନକୁ ଲୋଭ କରି, ମୁଁ ତରତର ହୋଇ, ଉପଯୁକ୍ତ ସମୟର ଆଗରୁ ଅନଶନ ବନ୍ଦ କରି ନ ଦିଏଁ ଭଗବାନଙ୍କଠାରେ ଆମ ସମସ୍ତଙ୍କର ଏତିକିମାତ୍ର ନିବେଦନ ହେଉ ।'

ପ୍ରଥମ ଦିନ ଗାନ୍ଧୀଜୀ ଘୋଷଣା କଲେ, ଏ ଅନଶନର ଉଦ୍ଦେଶ୍ୟ, 'ସମସ୍ତଙ୍କର ବିବେକବୁଦ୍ଧି' ଜାଗ୍ରତ କରିବା—ସମସ୍ତେ ବୋଇଲେ, ଭାରତର ହିନ୍ଦୁ ଓ ମୁସଲମାନ, ଏବଂ ପାକିସ୍ଥାନର ମୁସଲମାନ । 'ଏମାନେ ସମସ୍ତେ

ବା ସ୍ୟାଙ୍କ ଭିତରୁ କୌଣସି ଏକ ସମ୍ପ୍ରଦାୟର ବିବେକ ଯଦି ଉଦ୍‌ବୁଦ୍ଧ ହୁଏ, ତେବେ ମୁଁ ଜାଣୁଛି, ଆଶ୍ଚର୍ଯ୍ୟଜନକ ଫଳ ଫଳିବ । ଉଦାହରଣ ସ୍ୱରୂପ, ଯଦି କେବଳ ଶିଖ୍‌ମାନେ ମୋ ନିବେଦନ ଗ୍ରହଣ କରନ୍ତି ତେବେ ମୁଁ ପୂର୍ଣ୍ଣ ସନ୍ତୋଷ ଲାଭ କରିବି ।' ତାହାହେଲେ ସେ ଯାଇ ପଞ୍ଜାବର ଶିଖ୍‌ଙ୍କ ଗହଣରେ ବାସ କରିବେ ।

ଗାନ୍ଧୀ ଜୋର ଦେଇ କହିଲେ, 'ଦିଲ୍ଲୀ ଯେ କ୍ରମେ ଆମ ଆୟତ୍ତରୁ ଚାଲି ଯାଉଛି ଏକଥା ପରିଷ୍କାର ଜଣା ପଡ଼ୁଛି' । ତାଙ୍କର ଭୟ ହେଉଥାଏ ଯେ, ଭାରତର ରାଜଧାନୀରେ ଯେ କୌଣସି ଦିନ ହଠାତ୍ ହାଣକାଟ ଆରମ୍ଭ ହୋଇଯାଇପାରେ । 'ଯଦି ଦିଲ୍ଲୀ ଆମ ଅକ୍ତିଆରରୁ ଯାଏ ତେବେ ଭାରତ ଯିବ, ଏବଂ ତାହାଁ ସଙ୍ଗେ ସଙ୍ଗେ ବିଶ୍ୱଶାନ୍ତିର ଶେଷ ଆଶା ଯିବ ।' ପାକିସ୍ଥାନର ରାଜଧାନୀ କରାଚୀରେ ଏବଂ ପାକିସ୍ଥାନର ଅନ୍ୟ କେତେକ ସ୍ଥାନରେ ହିନ୍ଦୁମାନଙ୍କୁ ହତ୍ୟା କରାହୋଇଥାଏ ; ଗାନ୍ଧୀ, ଆଙ୍ଗୁଠିରେ ଗଣନା କଲାପରି, ମନରେ ନିଶ୍ଚିତ ଆଶଂକା କଲେ ଯେ, ଆଉ ଥରେ ହାଣକାଟର ଜୁଆର ମାଡ଼ି ଆସିବ । ପଶ୍ଚିମ ପଞ୍ଜାବରୁ ଆସିଥିବା ବାସ୍ତୁହରା-ମାନେ ଦିଲ୍ଲୀ ଅଧିବାସୀ ମୁସଲିମ୍‌ମାନଙ୍କୁ ସେମାନଙ୍କ ନିଜ ଘରମାନଙ୍କରୁ ତଡ଼ିବାରେ ଲାଗିଥାନ୍ତି । ସେମାନେ ଧମକାଉଥିବାର ଶୁଣାଯାଉଥାଏ ଯେ, ଦିଲ୍ଲୀ ନଗରୀରୁ ସେମାନେ ପ୍ରତ୍ୟେକ ମୁସ୍‌ଲିମ୍ ଅଧିବାସୀଙ୍କୁ ନିର୍ବାସିତ କରିବେ । ଗାନ୍ଧୀ କହିଲେ, 'ଅନ୍ତର ଭିତରେ ଝଡ଼ ଆରମ୍ଭ ହେଲାଣି ; ହଠାତ୍ ଦିନେ ତାହା ବାହାରକୁ ବାହାରି ପଡ଼ିବ ।'

କାହାକୁ କିଛି ନ କହି ଏହି ସମସ୍ୟା ବିଷୟରେ ତାଙ୍କ ମନ ତିନି-ଦିନ କାଳ ଘାରିହି ହେଉଥିଲା । ଶେଷରେ ଯେତେବେଳେ ସେ ଅନଶନ କରିବାକୁ ସିଦ୍ଧାନ୍ତ କଲେ, ସେତେବେଳେ ତାଙ୍କ ମନରେ ଶାନ୍ତି ଆସିଲା । ବହୁ ମାସପରେ ପ୍ରଥମ କରି ତାଙ୍କ ମନ ଥୟ ହେଲା ।

ସେ ଜାଣୁଥାନ୍ତି ଯେ, ଏ ଅନଶନ ଫଳରେ ତାଙ୍କର ମୃତ୍ୟୁ ହୋଇପାରେ । କିନ୍ତୁ ସେ ବିଚାରୁଥାନ୍ତି, 'ମୃତ୍ୟୁ ହେଲେ ବରଂ ଭଲ, ମୁଁ ସମ୍ମାନର ସହିତ ଏ ସମସ୍ୟାରୁ ଉଦ୍ଧାର ପାଇଯିବି । ମୁଁ ଅସହାୟଭାବେ ବଞ୍ଚିଁଥିବି, ଅଥଚ ଭାରତ, ହିନ୍ଦୁ ଧର୍ମ, ଇସ୍‌ଲାମ୍ ଓ ଶିଖ୍‌ଧର୍ମରେ ଘୋର କଳଙ୍କ ଲାଗିଯିବ, ଏ ଦଶା ମୃତ୍ୟୁଠାରୁ କୌଣସି ଗୁଣେ ଭଲ ନୁହେଁ ।' ସେ ପରିଷ୍କାର ଜଣାଇଦେଲେ, ତାଙ୍କର ହିତାକାଂକ୍ଷୀମାନେ ଅନଶନ

ଭାଙ୍ଗିବାକୁ ପ୍ରବର୍ତ୍ତାଇବା ସକାଶ ବିରଳା ଭବନକୁ ଧାଉଡ଼ି ନ ଲଗାନ୍ତୁ ; ସେମାନେ ତାଙ୍କ ପାଇଁ ଚିନ୍ତିତ ବି ନ ହୁଅନ୍ତୁ । ସେ ଜଣାଇଦେଲେ, 'ମୁଁ ଭଗବାନଙ୍କ ଆଶ୍ରୟରେ ଅଛି ।' ତାଙ୍କ ପାଇଁ ଉତ୍କଣ୍ଠିତ ନ ହୋଇ ବନ୍ଧୁମାନେ 'ନିଜ ନିଜ ଅନ୍ତର ଭିତରକୁ ଆଲୋକ-ବର୍ତ୍ତିର ମୁହଁ ବୁଲାନ୍ତୁ । ଆମ ସମସ୍ତଙ୍କର ନିଜ ନିଜ ମନକୁ ବାଡ଼ିବା ପାଇଁ, ପରୀକ୍ଷା କରିବା ପାଇଁ, ସମୟ ଆସି ପହଞ୍ଚିଛି ।'

ଅନଶନର ପ୍ରଥମ ଦିନ ସେ ସଂଧ୍ୟାବେଳର ପ୍ରାର୍ଥନା ସଭାକୁ ଚାଲି କରି ଆସିଲେ ଏବଂ ସବୁଦିନ ପରି ପ୍ରାର୍ଥନା ପରିଚାଳିତ କଲେ । ହସି ହସି ସେ ପ୍ରାର୍ଥନା-ସଭାରେ କହିଲେ, 'ଖାଇ ସାରିବାପରେ ପ୍ରଥମ ୨୪ ଘଣ୍ଟାରେ ଅନଶନ ଯୋଗୁଁ ଦେହ ଦୁର୍ବଳ ହୁଏନାହିଁ ।' ଏ ଅନଶନ ପାଇଁ ଦାୟୀ କିଏ ବୋଲି ଖଣ୍ଡିଏ କାଗଜରେ ଲେଖି ଜଣେ ସଭା-ମଣ୍ଡପକୁ କାଗଜ ଖଣ୍ଡି ପଠାଇଦେଲେ । ଗାନ୍ଧୀ ଜବାବ ଦେଲେ, କେହି ଦାୟୀ ନୁହନ୍ତି ; 'କିନ୍ତୁ ହିନ୍ଦୁ ଓ ଶିଖ୍‌ମାନେ ଯଦି ଦିଲ୍ଲୀରୁ ମୁସଲମ୍‌ଙ୍କୁ ବିତାଡ଼ିତ କରିଦେବେ ବୋଲି ଜିଦ୍ ଧରି ବସନ୍ତି ତେବେ ସେମାନେ ଭାରତର ଓ ନିଜ ନିଜ ଧର୍ମର ଦ୍ରୋହୀ ହେବେ । ସେଇ ଆଶଂକା ମୋତେ ବ୍ୟଥା ଦେଉଛି ।' ସେ କହିଲେ, 'ମୁଁ ମୁସ୍‌ଲିମ୍‌ଙ୍କ ପାଇଁ ଏ ଅନଶନ କରୁଛି ବୋଲି କେହି କେହି ମୋତେ ବିଦ୍ରୂପ କରୁଛନ୍ତି । ସେମାନଙ୍କ ବିଦ୍ରୂପ ଯଥାର୍ଥ । ବସ୍ତୁତଃ ମୋର ଜୀବନ ତମାମ ମୁଁ ସଂଖ୍ୟାଲଘୁଙ୍କର, ତଥା ବିପଦରେ ପଡ଼ିଥିବା ଲୋକଙ୍କର ପକ୍ଷ ସମର୍ଥନ କରିଆସିଛି । ସେପରି କରିବା ପ୍ରତ୍ୟେକ ଲୋକର କର୍ତ୍ତବ୍ୟ ବୋଲି ମୁଁ ମନେକରେ···।'

ସେ ଘୋଷଣା କଲେ, 'ମୁଁ ଚାହୁଁଛି, ପ୍ରତ୍ୟେକେ ନିଜ ନିଜ ହୃଦୟରୁ କଲ୍‌ବଷ ଦୂର କରନ୍ତୁ । ପାକିସ୍ଥାନର ମୁସ୍‌ଲିମ୍‌ମାନେ ଯାହା କରନ୍ତୁ, ସେଥିରେ ଆମର କିଛି ଯାଏ ଆସେ ନାହିଁ । ହିନ୍ଦୁ ଓ ଶିଖ୍‌ମାନେ ରବୀନ୍ଦ୍ରଙ୍କ ପ୍ରିୟ ସଂଗୀତ ମନେ ପକାନ୍ତୁ :

'ଯଦି ତୋ'ର ଡାକ ଶୁନେ କେଉ ନା ଆସେ
ତବେ ଏକଲା ଚଲୋ ରେ ;
ଏକଲା ଚଲୋ, ଏକଲା ଚଲୋ, ଏକଲା ଚଲୋ ରେ ।'

ଦିଲ୍ଲୀ ଅବସ୍ଥା ଯଦି 'ଯଥାର୍ଥରେ' ଥଣ୍ଡା ପଡ଼ିବ ତେବେ ଯାଇ ସେ ଅନଶନ ଭାଙ୍ଗିବେ ।

ଅନଶନର ଦ୍ୱିତୀୟ ଦିନ, ପ୍ରାର୍ଥନା ସଭାକୁ ନ ଯିବା ପାଇଁ ଡାକ୍ତର-ମାନେ ପରାମର୍ଶ ଦେଲେ । ସଭାରେ ପଠିତ ହେବାପାଇଁ ଗାନ୍ଧୀଜୀ ଗୋଟିଏ ବାର୍ତ୍ତା ଡାକଦେଲେ ; କିନ୍ତୁ ସଭା ଆରମ୍ଭ ହେଲା ବେଳକୁ ସେ ସ୍ଥିର କଲେ, ସଭାରେ ଯୋଗ ଦେବେ । ସେ ଆସିଲେ ଓ ପ୍ରାର୍ଥନା ସଂଗୀତ ଓ ଧର୍ମ-ଗ୍ରନ୍ଥମାନଙ୍କରୁ ସୂକ୍ତମାନ ଗୀତ ହେବା ପରେ ବକ୍ତୃତା ଦେଲେ । ସେ କହିଲେ, 'ବହୁତ ନିବେଦନ ଓ ବାର୍ତ୍ତା ଆସି ମୋ ଉପରେ ଅଜାଡ଼ି ପଡ଼ୁଛି । ସବୁଠାରୁ ଅଧିକ ଆନନ୍ଦଦାୟକ ବାର୍ତ୍ତା ଆସିଛି ପାକିସ୍ଥାନର ଲାହୋରରେ ଥିବା ମୃଦୁଳା ସରାଭାଇଙ୍କଠାରୁ ।' ସେ ତାର କରିଛନ୍ତି ଯେ, ସେଠାରେ ଥିବା ଗାନ୍ଧୀଙ୍କର ବନ୍ଧୁମାନେ ଅନେକେ—ଏମାନଙ୍କ ଭିତରେ ମୁସ୍‌ଲିମ୍‌ଲିଗ୍ ଓ ପାକିସ୍ଥାନ ସରକାରର କେତେକ ବନ୍ଧୁ ବି ଅଛନ୍ତି— ତାଙ୍କ ନିରାପତ୍ତା ପାଇଁ ବଡ଼ ଉତ୍କଣ୍ଠିତ । ଗାନ୍ଧୀଙ୍କ ଅନଶନ ଭାଙ୍ଗିବା ପାଇଁ ଏମାନେ କ'ଣ କରି ପାରିବେ ଜାଣିବାକୁ ଚାହାନ୍ତି ।

ଗାନ୍ଧୀ ଏ ତାରବାର୍ତ୍ତାର ଉତ୍ତରରେ ଯାହା ପଠାଇଥିଲେ ତାହା ଶୁଣାଇଦେଲେ : 'ଆତ୍ମଶୁଦ୍ଧି ନିମନ୍ତେ ଏ ଅନଶନ ଆରମ୍ଭ ହୋଇଛି । ଏହି ଉଦ୍ଦେଶ୍ୟରେ ଯେଉଁମାନଙ୍କର ଶ୍ରଦ୍ଧା ଓ ସହାନୁଭୂତି, ସେମାନେ ଆତ୍ମଶୁଦ୍ଧିରେ ଲାଗନ୍ତୁ ବୋଲି ମୋର ନିବେଦନ···।' ସେ ପୁଣି କହିଲେ, 'ଧର ଯଦି ଭାରତର ଉଭୟ ରାଷ୍ଟ୍ରରେ ଆତ୍ମଶୁଦ୍ଧିର ଉଦ୍ୟମ ଦସ୍ତୁରମତେ ଆରମ୍ଭ ହୋଇଯିବ, ତେବେ ପାକିସ୍ଥାନ ହୋଇଯିବ ଯଥାର୍ଥ ପାକ୍, ଶୁଦ୍ଧ ଓ ନିର୍ମଳ···ଏଭଳି ପାକିସ୍ଥାନର କେବେହେଲେ ବିନାଶ ହେବ ନାହିଁ । ଯଦି ତାହା ହୁଏ, ତେବେ ଯାଇ ଭାରତ ବିଚ୍ଛେଦକୁ ପାପ ବୋଲି ମୁଁ ଯାହା କହିଥିଲି ସେଥିପାଇଁ ଅନୁତପ୍ତ ହେବି । କିନ୍ତୁ ଅଦ୍ୟାପି ଭାରତର ଦ୍ୱିଖଣ୍ଡୀ-କରଣକୁ ମୁଁ ପାପ ବୋଲି ମନେ କରୁଛି···।'

ଗାନ୍ଧୀ ତାଙ୍କ ପିଲାଦିନର ଗୋଟିଏ କଥା ଉଲ୍ଲେଖ କଲେ । ତାଙ୍କ ବାପା ଅନ୍ୟ ଧର୍ମାବଲମ୍ବୀମାନଙ୍କ ସଙ୍ଗେ ଆଲୋଚନା କରୁଥିବାର ଶୁଣି ଗାନ୍ଧୀ ଭାରତରେ ବାସ୍ତବ ସାଂପ୍ରଦାୟିକ ସଦ୍‌ଭାବର ସ୍ୱପ୍ନ ଦେଖୁଥିଲେ । 'ମୋର ସେ ସ୍ୱପ୍ନ ସତ୍ୟ ହୋଇଛି ବୋଲି ମୋ' ଜୀବନର ଶେଷଭାଗରେ ଯଦି ମୁଁ ଦେଖନ୍ତି, ତେବେ ମୋର ପିଲାଦିନର ସ୍ୱପ୍ନ ସତ୍ୟ ହେଲା ବୋଲି ମୁଁ ଆଜି ମଧ୍ୟ ପିଲାଙ୍କ ପରି ଆନନ୍ଦରେ ନାଚନ୍ତି ।' ସେପରି ହେଲେ, ୧୨୫ ବର୍ଷ

ବଞ୍ଚିବେ ବୋଲି ସେ ଆଗେ ଯେଉଁ ଆକାଂକ୍ଷା କରିଥିଲେ, ସେ ଆକାଂକ୍ଷା ପୁଣି ଉଜ୍ଜୀବିତ ହୁଅନ୍ତା ।

ସାମ୍ବାଦିକମାନଙ୍କୁ ସେ ଯଥାର୍ଥ ଭାବେ ଶୁଣାଇଦେଲେ, 'ଯେତେ ଶୀଘ୍ର ସଂଭବ ଏ ଅନଶନ ଭାଙ୍ଗି ଯାଉ ବୋଲି ମୁଁ ଆଦୌ ଇଚ୍ଛା କରୁନାହିଁ । ମୂର୍ଖପରି ମନର ଆବେଗରେ ମୁଁ ଯେଉଁ ବଡ଼ ଆଶା ବାନ୍ଧି ବସିଛି, ତାହା ଯଦି ଆଦୌ ସଫଳ ନ ହୁଏ ଏବଂ ଏ ଅନଶନ ଆଦୌ ନ ଭାଙ୍ଗେ, ତେବେ ମୁଁ ବିଚଳିତ ହେବିନାହିଁ । ଲୋକଙ୍କର ହୃଦୟ ପରିବର୍ତ୍ତନ ପାଇଁ ଯେତେ ସମୟ ଆବଶ୍ୟକ, ସେତେ ସମୟ ପର୍ଯ୍ୟନ୍ତ ଧୈର୍ଯ୍ୟ ଧରି ଅପେକ୍ଷା କରିବାକୁ ମୁଁ ତିଆରି ଅଛି । କିନ୍ତୁ ଖାଲି ମୋ ପ୍ରାଣ ବଞ୍ଚାଇବେ ବୋଲି ଯଦି ମୋ ଦେଶବାସୀ ଉପରି ମନରେ ମୋତେ ପ୍ରତିଶ୍ରୁତି ଦେଇପକାନ୍ତି, ତେବେ ମୁଁ ଘୋର ବ୍ୟଥା ଅନୁଭବ କରିବି ।'

ଏଥରର ଅନଶନ ବେଳେ ତାଙ୍କ ହୃତ୍‌ପିଣ୍ଡ ଓ ରକ୍ତଚାପ ପ୍ରଭୃତି ପରୀକ୍ଷା କରି ଦେଖିବାକୁ ଗାନ୍ଧୀ ଡାକ୍ତରମାନଙ୍କୁ ଅନୁମତି ଦେଇ ନ ଥିଲେ । ସେ ସେମାନଙ୍କୁ କହିଲେ, 'ମୁଁ ନିଜକୁ ଭଗବାନ୍‌ଙ୍କଠାରେ ସମର୍ପି ଦେଇଛି ।' କିନ୍ତୁ ବମ୍ବେର ହୃଦ୍‌ରୋଗ-ବିଶାରଦ ଡକ୍ଟର୍ ଗିଲ୍‌ଡର୍ ପ୍ରତିବାଦ କଲେ— ତାଙ୍କ ସ୍ୱାସ୍ଥ୍ୟ ବିଷୟରେ ଦୈନିକ ବିଜ୍ଞପ୍ତି ପ୍ରକାଶ କରିବାକୁ ଡାକ୍ତରମାନେ ଚାହାନ୍ତି ; ସେମାନେ ଯଦି ଗାନ୍ଧୀଙ୍କ ପରୀକ୍ଷା କରିବାକୁ ଅନୁମତି ନ ପାନ୍ତି ତେବେ ଯଥାର୍ଥ ବିଜ୍ଞପ୍ତି ପ୍ରକାଶ କରିବା ଅସଂଭବ ହୋଇପଡ଼ିବ । ଏ ଯୁକ୍ତିର ଯଥାର୍ଥତା ଗାନ୍ଧୀଜୀ ବୁଝିଲେ ଓ ନିଜର ମତ ପରିବର୍ତ୍ତନ କଲେ । ଡକ୍ଟର ସୁଶୀଲା ନାୟାର୍ ଗାନ୍ଧୀଜୀଙ୍କୁ ଜଣାଇଲେ, ତାଙ୍କ ପରିସ୍ରାରେ କିଛି ଅମ୍ଳାଂଶ ଥିବାର ବାହାରିଛି ।

ଗାନ୍ଧୀ ଜବାବ୍ ଦେଲେ, 'ମୋର ଭଗବତ୍ ବିଶ୍ୱାସ ଯଥେଷ୍ଟ ନ ଥିବାରୁ ଏପରି ହୋଇଛି ।'

ଡକ୍ଟର୍ ନାୟାର୍ ପ୍ରତିବାଦ କଲେ, 'ଏହା ତ ଗୋଟାଏ ରାସାୟନିକ ପଦାର୍ଥ ; ବିଶ୍ୱାସ ସଙ୍ଗେ ଏହାର କ'ଣ ଅଛି ?'

ଗାନ୍ଧୀଜୀ ଡକ୍ଟର୍ ନାୟାର୍‌ଙ୍କ ଆଡ଼େ ଚାହିଁଲେ, କିନ୍ତୁ ମନ ଯାଇ ଥାଏ ବହୁ ଦୂରରେ । ଶେଷରେ ସେ କହିଲେ, 'ବିଜ୍ଞାନର ପରିସର ଅତି ସୀମାବଦ୍ଧ । ମାନବଜୀବନର ବହୁ ତଥ୍ୟ ଅଦ୍ୟାପି ବିଜ୍ଞାନର ଅଜ୍ଞାତ । ତୁମ

ରସାୟନ-ବିଦ୍ୟା ଯେତିକି ଦୂର ଯାଇଛି, ଭଗବାନଙ୍କ ରାଜ୍ୟ ତା'ଠାରୁ ଢେର ଅଧିକ ବିସ୍ତୃତ ।'

ସେ ପାଣି ପିଇ ପାରୁ ନ ଥାନ୍ତି , ପାଣି ପିଇଲେ ବାନ୍ତି ମାଡୁଥାଏ । ବାନ୍ତି ରୋକିବାକୁ ପାଣି ସାଙ୍ଗେ କେତେ ଟୋପା ଲେମ୍ବୁରସ ବା ଟିକିଏ ମହୁ ମିଶାଇବାକୁ ସେ ରାଜି ହେଉ ନ ଥାନ୍ତି । ମୂତ୍ରାଶୟ ସ୍ୱଚ୍ଛନ୍ଦଭାବେ କାର୍ଯ୍ୟ କରୁ ନ ଥାଏ । ସେ ବଡ଼ ଦୁର୍ବଳ ହୋଇ ପଡ଼ିଥାନ୍ତି । ଶରୀରର ଓଜନ ଦିନକୁ ଦୁଇ ପାଉଣ୍ଡ କରି କମି ଯାଉଥାଏ ।

ତୃତୀୟ ଦିନ ସେ ଡାକ୍ତରଙ୍କ ପରାମର୍ଶରେ ଡ଼ୁସ୍ ନେବାକୁ ରାଜି ହେଲେ । ପ୍ରଚୁର ଲୁଣପାଣି ଡ଼ୁସ୍ ଦିଆଗଲା । ସେଇ ରାତି ପାହାନ୍ତିଆ ୨ଟା ୩୦ ମିନଟରେ ସେ ନିଦରୁ ଉଠି ଗରମ ପାଣିରେ ଗାଧୋଇବାକୁ ଗଲେ । ଗରମ ପାଣି ଟବ୍‌ରେ ବସିଥିବା ବେଳେ ସେ ତାଙ୍କ ସେକ୍ରେଟାରୀ ପ୍ୟାରେଲାଲଙ୍କୁ ଖଣ୍ଡେ ଚିଠି ଡାକଦେଲେ—୫୫ କୋଟି ଟଙ୍କା ପାକିସ୍ଥାନକୁ ଦେଇ ପକାଇବା ସକାଶେ ଚିଠିରେ ଭାରତ ସରକାରଙ୍କୁ ଅନୁରୋଧ କରାଗଲା । ଭାରତରୁ ପାକିସ୍ଥାନ ଅଲଗା ହେଲା ବେଳେ ଅବିଭକ୍ତ ଭାରତ ସରକାରର ତହବିଲ୍‌ରୁ ପାକିସ୍ଥାନ ଏତିକି ପାଇବ ବୋଲି କଥା ହୋଇଥିଲା । ଭାରତ ସରକାର ଟଙ୍କାଦେବାରେ ଟାଳଟୁଳ କରୁଥାନ୍ତି । ପାକିସ୍ଥାନର ପ୍ରାପ୍ୟ ତୁରନ୍ତ ଦେଇ ଦେବାକୁ ଗାନ୍ଧୀ ଜିଦ୍ କରୁଥାନ୍ତି । ଚିଠିଟି ଡାକି ଦେବା ପରେ ଗାନ୍ଧୀଙ୍କର ମୁଣ୍ଡ ବୁଲେଇଲା । ପ୍ୟାରେଲାଲ୍ ତାଙ୍କୁ ପାଣି ଟବ୍‌ରୁ ଟେକି ନେଇ ଗୋଟିଏ ଚଉକିରେ ବସାଇ ଦେଲେ । ତାଙ୍କର ଓଜନ ୧୦୭ ପାଉଣ୍ଡକୁ କମି ଯାଇଥାଏ; ରକ୍ତଚାପ ହୋଇଥାଏ ୧୪୦କୁ ୯୮ ।

ଭାରତ ସରକାର ପାକିସ୍ଥାନର ପ୍ରାପ୍ୟ ସାଙ୍ଗେ ସାଙ୍ଗେ ଦେଇ ଦେଲେ ।

ବିରଳାଭବନର ବାହାର ବାରଣ୍ଡାର ଆବୃତ ହୋଇଥିବା ଗୋଟିଏ ଅଂଶରେ ଖଣ୍ଡିଏ ଖଟ ପଡ଼ିଥାଏ । ସେ ଦିନଯାକ ସେ ସେଇ ଖଟରେ ପଡ଼ି ରହିଲେ । ଅଧିକାଂଶ ସମୟ ସେ ଜାକିଜୁକି ହୋଇ ବସି ରହିଥାନ୍ତି—ମା' ପେଟରେ ପିଲା ଯେଉଁଭଳି ଢଙ୍ଗରେ ଥାଏ ସେହିପରି—ଆଣ୍ଠୁ ଯୋଡ଼ିକ ଜାକି ହୋଇ ପେଟରେ ଲାଗିଥାଏ, ଓ ହାତ ଯୋଡ଼ିକର ପାପୁଲି ମୁଠା ହୋଇ ଗୁଡିରେ ରହିଥାଏ । ମୁଣ୍ଡ ସମେତ ସମଗ୍ର ଶରୀର

ଖଣ୍ଡିଏ ଖଦଡ଼ ଚଦରରେ ଆବୃତ ହୋଇଥାଏ, କେବଳ ମୁହଁ ବାହାରକୁ ଦିଶୁଥାଏ । ସେ ଆଖି ବୁଜିଥାନ୍ତି ; ମନେ ହେଉଥାଏ ସେ ଶୋଇଛନ୍ତି ବା ଅର୍ଦ୍ଧଚେତନ ଅବସ୍ଥାରେ ଆଖି ମୁଜି ରହିଛନ୍ତି । ତାଙ୍କ ବସିଥିବା ଜାଗାରୁ ଦଶ ଫୁଟ ଦୂରରେ ମଣିଷଙ୍କର ଧାଡ଼ି ଅନବରତ ଲାଗିଥାଏ । ଭାରତୀୟ ଓ ବିଦେଶୀ ଲୋକେ ତାଙ୍କ ଆଡ଼କୁ ଚାହିଁ ଚାହିଁ ସେଇ ଧାଡିରେ ଜଣକ ପରେ ଜଣେ ଯାଉଥାନ୍ତି । ସମସ୍ତଙ୍କ ମୁହଁରେ ସମବେଦନା । ଏମାନଙ୍କ ଭିତରୁ ଅନେକେ କାନ୍ଦି ପକାଉଥାନ୍ତି, ଅସ୍ପଷ୍ଟ ସ୍ୱରରେ ଭଗବାନଙ୍କୁ ଡାକୁଥାନ୍ତି ଏବଂ ଗାନ୍ଧୀଙ୍କୁ ସମ୍ମାନ ଦେଖାଇ ହାତ ଯୋଡ଼ୁଥାନ୍ତି, କିନ୍ତୁ ଗାନ୍ଧୀ ଆଖି ବୁଜି ବସିଥିବାରୁ ଏ ସବୁ କିଛି ଦେଖୁ ନ ଥାନ୍ତି । ତାଙ୍କ ମୁହଁରେ ଭୀଷଣ ଯନ୍ତ୍ରଣା ଅଙ୍କିତ ହୋଇଥାଏ । କିନ୍ତୁ ଶୋଇଥିଲାବେଳେ ବା ଅର୍ଦ୍ଧଚେତନ ଅବସ୍ଥାରେ ଥିଲାବେଳେ ଏ ଯନ୍ତ୍ରଣା ଅନ୍ତରର ମହତ୍ତ୍ୱରେ ଉଦ୍‌ଭାସିତ ହେଉଥାଏ । ଈଶ୍ୱରାନୁରକ୍ତିର ପ୍ରଭାବରେ ଏ ଯନ୍ତ୍ରଣାର ଦାଉ ମରି ଯାଇଥିଲା ପରି ଜଣା ପଡୁଥାଏ ; ଉଦ୍ଦେଶ୍ୟର ମହତ୍ତ୍ୱରେ ଏହାର ପ୍ରକୋପ ବହୁତ କମି ଯାଇଥିଲା ପରି ଦିଶୁଥାଏ । ତାଙ୍କ ଅନ୍ତରରେ ଦୃଢ଼ ପ୍ରତ୍ୟୟ ହୋଇଥାଏ ଯେ, ସେ ଦେଶରେ ଶାନ୍ତି ପାଇଁ କିଛି ସାଧନା କରୁଛନ୍ତି, ତେଣୁ ଶରୀରର ଯନ୍ତ୍ରଣା ସତ୍ତ୍ୱେ ସେ ହୃଦୟରେ ଶାନ୍ତି ଅନୁଭବ କରୁଥାନ୍ତି ।

ସନ୍ଧ୍ୟା ପାଞ୍ଚଟାରେ ସନ୍ଧ୍ୟା-ପ୍ରାର୍ଥନା । ସେତେବେଳକୁ ତାଙ୍କର ତନ୍ଦ୍ରା ପୂରା ଭାଙ୍ଗି ଯାଇଥାଏ । କିନ୍ତୁ ପ୍ରାର୍ଥନା-ସଭା-ମଣ୍ଡପକୁ ଚାଲି କରି ଯିବାକୁ ତାଙ୍କର ସାମର୍ଥ୍ୟ ନ ଥାଏ । ତେଣୁ ତାଙ୍କ ବସିବାଠାରୁ ସେ ସଭାସଦମାନଙ୍କୁ କିଛି କହିବାକୁ ତାଙ୍କ ଖଟ ପାଖରେ ମାଇକ୍ରୋଫୋନ୍ ରଖାଗଲା ଓ ସଭା ସ୍ଥଳରେ ଲାଉଡ୍‌ସ୍ପିକର୍ ଟଙ୍ଗାଗଲା । ତାଙ୍କ ଭାଷଣ ଅଲ୍ ଇଣ୍ଡିଆ ରେଡିଓଦ୍ୱାରା ସମଗ୍ର ଭାରତରେ ପ୍ରଚାରିତ ହେବାର ବ୍ୟବସ୍ଥା ମଧ୍ୟ ହେଲା ।

ଦୁର୍ବଳ ସ୍ୱରରେ ସେ କହିବାକୁ ଆରମ୍ଭ କଲେ, 'ଅନ୍ୟମାନେ କ'ଣ କରୁଛନ୍ତି ସେ ବିଷୟରେ ଭାବ ହୁଅ ନାହିଁ । ପ୍ରତ୍ୟେକ ପୁରୁଷ ଓ ସ୍ତ୍ରୀ ନିଜ ଅନ୍ତର ଭିତରେ ସନ୍ଧାନ କରନ୍ତୁ, ଏବଂ ଯଥାସାଧ୍ୟ ନିଜ ନିଜର ହୃଦୟକୁ ନିଷ୍କଳଙ୍କ କରନ୍ତୁ । ମୋ'ର ପୂର୍ଣ୍ଣ ବିଶ୍ୱାସ, ପ୍ରତେକେ ଯଦି ନିଜ ନିଜର ଅନ୍ତରକୁ ଯଥେଷ୍ଟ ପରିମାଣରେ ଶୁଦ୍ଧ କରିବ, ତେବେ

ତୁମ୍ଭେମାନେ ଭାରତର ସମସ୍ୟା ସମାଧାନ କରିବାରେ ସହାୟ ହୋଇ ପାରିବ ଓ ମୋ ଅନଶନର ଦିନ କମାଇ ପାରିବ ··· । ତେଣୁ ବର୍ତ୍ତମାନ ତୁମର ଏକମାତ୍ର ଚିନ୍ତାର ବିଷୟ, ନିଜର ଆତ୍ମଶୁଦ୍ଧି କରି ଭାରତର ମଙ୍ଗଳ ବିଧାନ କରିବା··· । ମୃତ୍ୟୁର କବଳରୁ କେହି ନିଷ୍କୃତି ପାଇବେ ନାହିଁ ; ତେବେ ମୃତ୍ୟୁକୁ ଏତେ ଭୟ କାହିଁକି ? ବସ୍ତୁତଃ ଆମକୁ ସାଂସାରିକ ଦୁଃଖ ଯନ୍ତ୍ରଣାରୁ ଉଦ୍ଧାର କରୁଥିବା ହେତୁ, ମୃତ୍ୟୁ ଆମର ମଙ୍ଗଳ କରେ ।'

ସେ ଆଉ ଅଧିକ କହି ପାରିଲେ ନାହିଁ । ତାଙ୍କ ସନ୍ଦେଶର ଅବଶିଷ୍ଟାଂଶ ଅନ୍ୟ ଜଣେ ତାଙ୍କ ପାଇଁ ପଢ଼ି ଶୁଣାଇଦେଲେ । ସାଂବାଦିକ-ମାନେ ତାଙ୍କୁ କେତୋଟି ପ୍ରଶ୍ନ ପଚାରିଥିଲେ ; ତାହାର ଉତ୍ତର ସେ ନିଜ ଢଙ୍ଗରେ ଦେଉଥାନ୍ତି ।

ଜଣେ ସାଂବାଦିକ ପଚାରିଥିଲେ, 'ଭାରତ-ରାଷ୍ଟ୍ରରେ କୌଣସି ପ୍ରକାର ଗଣ୍ଡଗୋଳ ବର୍ତ୍ତମାନ ଲାଗି ନ ଥିବା ସ୍ଥଳେ ଆପଣ କାହିଁକି ଅନଶନ କରିଛନ୍ତି ?'

ଗାନ୍ଧୀଜୀ ଉତ୍ତର ଦେଲେ, 'ମୁସ୍‌ଲିମ୍ ଅଧିବାସୀମାନଙ୍କ ଘର ଜବର-ଦଖଲ କରିବାକୁ ଦଳେ ଲୋକ ଜମାଏତ୍‌ବଦ୍ଧ ହୋଇ ଦୃଢ଼ ଉଦ୍ୟମ ଲଗାଇବା ଗଣ୍ଡଗୋଳ ନୁହେଁ ତ ଆଉ କ'ଣ ? ଏଥିରେ ବିଚଳିତ ନ ହୋଇ ରହିବା କ'ଣ ସମ୍ଭବ ? ଗଣ୍ଡଗୋଳ ଏପରି ଗୁରୁତର ହୋଇଗଲା ଯେ, ଅନିଚ୍ଛାସତ୍ତ୍ୱେ ପୁଲିସ୍‌କୁ ଲୁହବୁହା ଗ୍ୟାସ୍ ପ୍ରୟୋଗ କରିବାକୁ ପଡ଼ିଲା, ସାମାନ୍ୟ ଗୁଳି ବର୍ଷଣ ବି କରିବାକୁ ପଡ଼ିଲା । ତେବେ ଯାଇ ଲୋକେ ଛିନ୍‌ଛତ୍ର ହେଲେ । ପୁଲିସ୍ ଅବଶ୍ୟ ଲୋକଙ୍କୁ ଲକ୍ଷ୍ୟ କରି ଗୁଳି ନ ଫୁଟାଇ ସେମାନଙ୍କ ମୁଣ୍ଡ ଉପରେ ଫାଙ୍କା ଆବାଜ କରିଥିଲେ । ପୁଲିସ୍‌ର ଆଗକୁ ନ ବାହାରି, ଭିତରେ ପେଞ୍ଚ କରି ଆନ୍ଦୋଳନକାରୀମାନେ ଗୋଟିକଠାରୁ ପ୍ରତ୍ୟେକ ମୁସ୍‌ଲିମ୍ ଅଧିବାସୀଙ୍କୁ ଦିଲ୍ଲୀରୁ ବିତାଡ଼ିତ କରି ସାରିବା ପର୍ଯ୍ୟନ୍ତ ଅପେକ୍ଷା କରିବା ମୋ ପକ୍ଷରେ ନିର୍ବୋଧତା ହୋଇ ନ ଥାନ୍ତା କି ? ଏଭଳି କାର୍ଯ୍ୟ ଲୋକଙ୍କୁ ତିଳ ତିଳ କରି ମାରିବା ସଙ୍ଗେ ସମାନ ବୋଲି ମୁଁ ମନେ କରେ ।'

ଭାରତର ଉପପ୍ରଧାନମନ୍ତ୍ରୀ ବଲ୍ଲଭଭାଇ ପଟେଲ ଆଭ୍ୟନ୍ତରୀଣ

ଶାନ୍ତି ରକ୍ଷା ଦାୟିତ୍ୱରେ ଥାନ୍ତି । ସେ ମୁସଲମାନଙ୍କ ବିରୋଧୀ ବୋଲି କେହି କେହି ଅଭିଯୋଗ କରୁଥାନ୍ତି । ଗାନ୍ଧୀଜୀ ବଲ୍ଲଭଭାଇଙ୍କ ମନୋବୃତ୍ତିର ବିରୋଧରେ ଅନଶନ କରିଛନ୍ତି ବୋଲି ଆଶଂକା ପ୍ରକାଶିତ ହୋଇଥାଏ । ଗାନ୍ଧୀଜୀ ଏହା ଅସ୍ୱୀକାର କରି କହିଲେ, ମୋତେ ଓ ନେହେରୁଙ୍କୁ ଗୋଟାଏ ପଟେ ଓ ପଟେଲଙ୍କୁ ଆରପଟେ କରି ଆମ ଭିତରେ ବିଭେଦ ସୃଷ୍ଟି କରିବାକୁ ଉଦ୍ୟମ ହେଉଥିଲା ପରି ମୋତେ ଲାଗୁଛି ।

ଚତୁର୍ଥ ଦିନ ଗାନ୍ଧୀଙ୍କର ନାଡ଼ିର ଗତି ଅନିୟମିତ ହେଲା । ହୃତ୍‌ପିଣ୍ଡର ଆକୁଞ୍ଚନ ପ୍ରସାରଣର ଗତି ବାରିବା ପାଇଁ ଫଟୋ ଉଠାଇବା ସକାଶ ସେ ଡାକ୍ତରମାନଙ୍କୁ ଅନୁମତି ଦେଲେ ଏବଂ ଆଉ ଥରେ ଡ଼ୁସ୍ ନେଇଲେ । ଲେମ୍ବୁରସ ପକାଇ ପାଣିମୁନ୍ଦେ ପିଅନ୍ତୁ ବୋଲି ମୌଲାନା ଆବୁଲ୍ କାଲାମ ଆଜାଦ୍ ଗାନ୍ଧୀଜୀଙ୍କୁ ଅନୁରୋଧ କରି ବ୍ୟର୍ଥ ହେଲେ । ଗାନ୍ଧୀ ଆଦୌ ପାଣି ପିଉ ନ ଥାନ୍ତି, କି ଆଦୌ ପରିସ୍ରା ହେଉ ନ ଥାଏ । ଡାକ୍ତରମାନେ ତାଙ୍କୁ ଚେତାଇ ଦେଲେ ଯେ ଅନଶନ ଶେଷ ପର୍ଯ୍ୟନ୍ତ ସେ ହୁଏତ ବଞ୍ଚି ଯାଇପାରନ୍ତି, କିନ୍ତୁ ଅନଶନ ଫଳରେ ତାଙ୍କ ସ୍ୱାସ୍ଥ୍ୟର ସ୍ଥାୟୀ ଓ ଗୁରୁତର ଅନିଷ୍ଟ ହେବାର ଆଶଂକା ଅଛି । ଗାନ୍ଧୀ ଏଥିକୁ ଭ୍ରୂକ୍ଷେପ କଲେ ନାହିଁ । ନିଜ ଖଟରୁ ମାଇକ୍ରୋଫୋନ ସାହାଯ୍ୟରେ ପ୍ରାର୍ଥନା ସଭାକୁ ସନ୍ଦେଶ ଦେଲାବେଳେ ବିଢ଼େଇ କଲେ ଯେ, ପୂର୍ବଦିନ ଅପେକ୍ଷା ସେଦିନ ତାଙ୍କ ସ୍ୱର ଅଧିକ ଟାଣୁଆ ହେଉଥିଲା । ସେ ଦୃଢ଼ଭାବେ ଘୋଷଣା କଲେ, 'ଅନଶନର ଚତୁର୍ଥ ଦିନରେ ଏଭଳି ସୁସ୍ଥ ମୁଁ ଆଉ କେବେ ରହି ନ ଥିଲି । ଏ ପରିସ୍ଥିତିରେ ମୋର ରକ୍ଷକ କାହିଁକି, ମୋର ନିୟାମକ ହେଉଛନ୍ତି ଅମୋଘ ଓ ସର୍ବଶକ୍ତିମାନ ପରମେଶ୍ୱର । ଡାକ୍ତର ଓ ଡାକ୍ତରାଣୀମାନେ ଯାହା କିଛି ଲକ୍ଷଣ ଦେଖି, ଯାହା କିଛି ଆଶଙ୍କା ପ୍ରକାଶ କରନ୍ତୁ ପଛେ, ମୋର ଏ ଦୁର୍ବଳ ଶରୀରଦ୍ୱାରା ଭଗବାନଙ୍କର କୌଣସି ଉଦ୍ଦେଶ୍ୟ ସଫଳ ହେବାର ଯଦି ଥିବ, ତେବେ ସେ ମୋର ଏ ଶରୀରକୁ ନିଶ୍ଚୟ ରକ୍ଷା କରିବେ । ମୁଁ ସର୍ବତୋଭାବେ ତାଙ୍କରି ଆଶ୍ରିତ । ତେଣୁ, ମୃତ୍ୟୁ ବା ସ୍ୱାସ୍ଥ୍ୟର ସ୍ଥାୟୀ ଅନିଷ୍ଟ ଯାହା ହେଉ ପଛେ, ମୁଁ ଡରୁନାହିଁ । ମୋର ବିଶ୍ୱାସ, ମୋର ଏ ଉକ୍ତି ମୋ' ଅନ୍ତରର କଥା ବୋଲି ଆପଣମାନେ ବିଶ୍ୱାସ କରିବେ । ତେବେ, ଡାକ୍ତର ବନ୍ଧୁମାନେ ଯେଉଁ ଚେତାବନୀ ଦେଉଛନ୍ତି, ତାହା ମୋର ଦେଶବାସୀଙ୍କୁ ଭେଦଭାବ ଭୁଲି

ତୁରନ୍ତ ଏକତାବଦ୍ଧ ହେବାକୁ ପ୍ରେରଣା ଦେବ ବୋଲି ମୁଁ ମନେ କରୁଛି, ଅବଶ୍ୟ ଯଦି ସେମାନେ ମୋଠାରୁ ଆଉ କେତେ ଦିନ ସେବା ପାଇବାକୁ ଇଚ୍ଛୁକ ଥା'ନ୍ତି ।'

ପ୍ରତ୍ୟହ ମାଇକ୍ରୋଫୋନ୍ ସାହାଯ୍ୟରେ ପ୍ରାର୍ଥନା ସଭାକୁ ଦୁଇମିନିଟ୍ ତାଙ୍କ ବାଣୀ ଶୁଣାଇବାକୁ ସେ ଜିଦ୍ କରୁଥାନ୍ତି । ପରେ ସ୍ୱର ଅସ୍ପଷ୍ଟ ହେବାରୁ ସେ ଆଗରୁ ଡାକ ଦେଇଥିବା ସନ୍ଦେଶ, ତାଙ୍କର ଜଣେ ସହକର୍ମୀ ସଭାରେ ପାଠ କରିବାକୁ ପଡ଼ିଲା । ଭାରତ ସରକାର ପାକିସ୍ଥାନକୁ ତାର ପଞ୍ଚାବନକୋଟି ଟଙ୍କା ଦେଉଥାନ୍ତି । ଗାନ୍ଧୀ ଆଶା କରୁଥାନ୍ତି, ଏହା ଫଳରେ ଭାରତ ଓ ପାକିସ୍ଥାନ ମଧ୍ୟରେ ଉପୁଜିଥିବା କାଶ୍ମୀର ସମସ୍ୟା ସମେତ ସମସ୍ତ ମତାନ୍ତରର ସସମ୍ମାନ ସମାଧାନ ହୋଇଯିବ । 'ବର୍ତ୍ତମାନର ଶତ୍ରୁତା ବଦଳରେ ସୌହାର୍ଦ୍ଦ୍ୟ ପ୍ରତିଷ୍ଠିତ ହେବ···ଟଙ୍କା ଦେଇପକାଇ ଭାରତ ସରକାର ଯେଉଁ ସଦ୍ଭାବ ଦେଖାଇଲେ ତାହାର ପ୍ରତିକ୍ରିୟାରେ ପାକିସ୍ଥାନ ନିଜର ସଦ୍ଭାବ କି ରୂପରେ ଦେଖାଇବ ?'

ଜାନୁଆରି ୧୭ ତାରିଖରେ କମିଯାଉଥିବା ଗାନ୍ଧୀଙ୍କର ଓଜନ ୧୦୭ ପାଉଣ୍ଡରେ ସ୍ଥିର ହୋଇ ରହିଲା । ବୋଧହୁଏ ଇଞ୍ଜେକ୍ସନ୍ ଦେବା ଫଳରେ ତାଙ୍କ ଶରୀରର ଜଳାଭାବ ପୂରିତ ହେଉଥାଏ । କିନ୍ତୁ ତାଙ୍କର ଦେହ ଉକୁଟି ହେଉଥାଏ ଓ ସେ ଅସ୍ଥିର ହେଉଥାନ୍ତି । ତତ୍‌ସତ୍ତ୍ୱେ ସେ କେତେ ଘଣ୍ଟା ଲଗାଏତ ସ୍ଥିରଭାବରେ ରହି ବିଶ୍ରାମ କଲେ ବା ଶୋଇ ପଡ଼ିଲେ । ନେହେରୁ ତାଙ୍କ ପାଖକୁ ଆସି କାନ୍ଦିଲେ । ମୁସ୍‌ଲିମ୍ ଅଧିବାସୀମାନେ ନିଜ ଘରକୁ ଫେରିବା ପାଇଁ, ଦିଲ୍ଲୀର ପରିସ୍ଥିତି ଅନୁକୂଳ ହେଲାଣି କି ନାହିଁ ଦେଖି ଆସିବାକୁ ଗାନ୍ଧୀ ପ୍ୟାରେଲାଲଙ୍କୁ ପଠାଇଲେ । ରାଜାରାଜୁଡ଼ାଙ୍କ ପାଖରୁ, ପାକିସ୍ଥାନର ମୁସଲମାନଙ୍କ ପାଖରୁ, ଏବଂ ଭାରତର ପ୍ରତ୍ୟେକ ପ୍ରାନ୍ତରୁ ଶହ ଶହ ଟେଲିଗ୍ରାମ ଆସୁଥାଏ । ଗାନ୍ଧୀ ଆଶ୍ୱସ୍ତ ହେଉଥାନ୍ତି । କିନ୍ତୁ ସେ ଦିନ ସେ ଯେଉଁ ଲିଖିତ ବିବୃତି ଦେଲେ ତଦ୍ୱାରା ସେ ସମସ୍ତଙ୍କୁ ସାବଧାନ କରିଦେଲେ : 'ମୁଁ ବର୍ତ୍ତମାନ ମୋ ଜୀବନର ଗୋଟିଏ ପୁଣ୍ୟ ସନ୍ଧିକ୍ଷଣରେ ପହଞ୍ଚିଛି, ଏତେବେଳେ ମୋ'ର ଅନଶନ ଭଙ୍ଗ କରିବା ପାଇଁ ମୋତେ ମିଥ୍ୟା-ପ୍ରବୋଧ ଦେଲେ ଦେଶର ରାଜା ମହାରାଜାମାନେ, ହିନ୍ଦୁ ଶିଖ ଆଦି ସମସ୍ତେ, ନିଜର ମଙ୍ଗଳ କରିବେ ନାହିଁ, କି ଭାରତର ସମୁହ ମଙ୍ଗଳ କରିବେ ନାହିଁ ।

ସେମାନେ ସମସ୍ତେ ଜାଣିବା ଉଚିତ ଯେ, ମୋର ଆତ୍ମାର ଶାନ୍ତି ପାଇଁ ମୁଁ ଅନଶନ କଲାବେଳେ, ଯତ୍‌ପରୋନାସ୍ତି ଆନନ୍ଦ ଉପଭୋଗ କରେ । ଏ ପର୍ଯ୍ୟନ୍ତ ମୁଁ ଯେତେ ଆନନ୍ଦ ଅନୁଭବ କରୁଥିଲି, ଏ ଅନଶନ ଫଳରେ ତାହାଁରୁ ଯଥେଷ୍ଟ ଅଧିକ ଆନନ୍ଦ ପାଉଛି । ଯେଉଁମାନେ ଅନ୍ତରର ସହିତ ଅନୁଭବ କରୁଛନ୍ତି ଯେ, ସେମାନଙ୍କ ଜୀବନର ଗତି ସଇତାନ ଆଡ଼ୁ ବାହାରି ପରମେଶ୍ୱରଙ୍କ ଆଡ଼କୁ ବାଗେଇଛି, ସେଇମାନଙ୍କ ବ୍ୟତୀତ ଅନ୍ୟ କେହି ମୋର ଏହି ଅନଶନଜନିତ ଆନନ୍ଦରୁ ମୋତେ ବଞ୍ଚିତ କରିବାକୁ ଉଦ୍ୟମ ନ କରନ୍ତୁ, ଏହାହିଁ ମୋର ନିବେଦନ ।'

ଜାନୁଆରୀ ୧୮ ତାରିଖରେ ଗାନ୍ଧୀଙ୍କ ଶରୀରର ଅବସ୍ଥା ଆଉ ଟିକିଏ ଭଲ ଜଣାଗଲା । ଆସ୍ତେ ଆସ୍ତେ ତାଙ୍କୁ ଟିକିଏ ଘଷି ଦେବାକୁ ସେ ଅନୁମତି ଦେଲେ । ଓଜନ ସେଇ ୧୦୭ ପାଉଣ୍ଡରେ ଥାଏ ।

୧୩ ତାରିଖ ଦିନ ଏଗାରଟାରେ ସେ ଅନଶନ ଆରମ୍ଭ କରିବା ବେଳୁଁ, ନବନିର୍ବାଚିତ କଂଗ୍ରେସ-ସଭାପତି ରାଜେନ୍ଦ୍ରପ୍ରସାଦଙ୍କ ବାସଭବନରେ ବିଭିନ୍ନ ସଂପ୍ରଦାୟ, ରାଜନୀତିକ ସଂସ୍ଥା ଓ ବାସ୍ତୁହରାଦଳର ପ୍ରତିନିଧିମାନେ ଏକତ୍ରିତ ହୋଇ ବିବଦମାନ ଗୋଷ୍ଠୀଙ୍କ ଭିତରେ ସ୍ଥାୟୀ ଶାନ୍ତି ଆଣିବା ପାଇଁ ପ୍ରଚେଷ୍ଟା କରୁଥାନ୍ତି । ଏକ ପ୍ରତିଜ୍ଞା ପତ୍ରରେ ବିଭିନ୍ନ ସଂପ୍ରଦାୟ ଓ ଗୋଷ୍ଠୀର ବ୍ୟକ୍ତିମାନଙ୍କ ଦସ୍ତଖତ ସଂଗ୍ରହ କରିବାରେ ମାତ୍ର ଏମାନେ ଲାଗି ନ ଥାନ୍ତି । ଏଭଳି ପ୍ରତିଜ୍ଞାପତ୍ରରେ ଗାନ୍ଧୀଙ୍କର ମନବୋଧ ହେବ ନାହିଁ ବୋଲି ଏମାନେ ଜାଣିଥାନ୍ତି । ପ୍ରତିନିଧିମାନେ ଆନ୍ତରିକ ଶପଥ ନେବେ ଏବଂ ଶପଥ ନେବା ପୂର୍ବରୁ ନିଜର ହୃଦ୍‌ବୋଧ କରାଇଥିବେ ଯେ ଏ ଶପଥ ତାଙ୍କ ଦଳ ବା ଅନୁଷ୍ଠାନର ସମସ୍ତେ ଯଥାଯଥ ଭାବେ ପାଳନ କରିବେ । ଭଲ ରକମ ନ ବୁଝି ମୁରବିରକା ଶପଥ ଗ୍ରହଣ କରି ଗାନ୍ଧୀଙ୍କ ଅନଶନ ଭଙ୍ଗ କରାଯାଇ ପାରେ ; କିନ୍ତୁ ଶପଥରେ ନିଷ୍ଠା ଓ ଆନ୍ତରିକତା ନ ଥିଲେ ଗାନ୍ଧୀଜୀ ତାହା ଅନତିବିଳମ୍ବେ ସହଜେ ଜାଣି ପାରିବେ, ଏବଂ ଜାଣିଲେ ସେ ଆମରଣ ଅନଶନ ପୁଣି ଆରମ୍ଭ କରି ପାରନ୍ତି ; ଆଉ ଯେତେ ଚେଷ୍ଟା କଲେ ବି ତାଙ୍କର ଏ ସଂକଳ୍ପ ଭାଙ୍ଗି ହେବନାହିଁ । ଏହିପରି ଚିନ୍ତା କରି ପ୍ରତିନିଧିମାନେ ନିଜର ଗୁରୁ ଦାୟିତ୍ୱ ଉପଲବ୍ଧି କରିଥାନ୍ତି ଓ ସାଙ୍ଗେ ସାଙ୍ଗେ ଶପଥ ପତ୍ରରେ ଦସ୍ତଖତ କରି ଦେବାକୁ ଡରି, ନିଜ ଦଳର ଲୋକଙ୍କ ସଙ୍ଗେ ଏବଂ ନିଜ ବିବେକ ସଙ୍ଗେ ମସୁଧା କରିବାକୁ ଫେରି ଯାଉଥାନ୍ତି ।

ଅବଶେଷରେ, ୧୮ ତାରିଖ ସକାଳେ ରାଜେନ୍ଦ୍ର ପ୍ରସାଦଙ୍କ ବାସଭବନରେ, ପ୍ରତିନିଧିସ୍ଥାନୀୟ ନେତାମାନେ ନିଜ ନିଜ ଦଳର ଲୋକଙ୍କ ସଙ୍ଗେ ମସୁଧା କରି ସାରି, ଏବଂ ନିଜେ ନିଜେ ପୁଙ୍ଖାନୁପୁଙ୍ଖ ବିଚାର କରି ଶପଥ ପତ୍ରର ଚିଠା କଲେ ଓ ସେଥିରେ ଦସ୍ତଖତ ଦେଲେ । ଏମାନଙ୍କ ଭିତରୁ ଶତାଧିକ ପ୍ରତିନିଧି ସେଇଠାରୁ ସିଧା ବିରଳାଭବନକୁ ବାହାରିଲେ । ନେହେରୁ ଓ ଆଜାଦ ଆଗରୁ ଯାଇ ବିରଳା ଭବନରେ ଥାନ୍ତି । ଦିଲ୍ଲୀର ସର୍ବୋଚ୍ଚ ପୁଲିସ୍ ଅଫିସର ଓ ତାଙ୍କ ସହକାରୀ ମଧ୍ୟ ସେଠାରେ ଉପସ୍ଥିତ ଥାନ୍ତି । ଏ ଦୁହେଁ ମଧ୍ୟ ଶପଥ ପତ୍ରରେ ଦସ୍ତଖତ କରି ଆସିଥାନ୍ତି । ହିନ୍ଦୁ, ମୁସ୍‌ଲିମ, ଶିଖ୍, ଖ୍ରୀଷ୍ଟିଆନ୍ ଇତ୍ୟାଦି ପ୍ରମୁଖ ସଂପ୍ରଦାୟ-ମାନଙ୍କର ମୁଖ୍ୟପାନ ଲୋକେ ଆସିଥାନ୍ତି । ହିନ୍ଦୁମହାସଭା ଏବଂ ରାଷ୍ଟ୍ରୀୟ ସ୍ୱୟଂସେବକ ସଂଘର ନେତାମାନେ ମଧ୍ୟ ଥାନ୍ତି ।

ଦିଲ୍ଲୀରେ ଥିବା ପାକିସ୍ଥାନୀ ହାଇକମିସନର୍ ଜନାବ୍ ଜାହିଦ୍ ହୁସେନ୍ ସାହେବ ମଧ୍ୟ ଆସିଥାନ୍ତି ।

ରାଜେନ୍ଦ୍ର ପ୍ରସାଦ ମହାତ୍ମାଜୀଙ୍କ ସଙ୍ଗେ କଥାବାର୍ତ୍ତା ଆରମ୍ଭ କଲେ । ସେ କହିଲେ ଯେ, ଯେଉଁ ଶପଥ-ପତ୍ର ସ୍ୱୀକୃତ ହୋଇଛି ସେଥିରେ ପ୍ରତିଜ୍ଞା ଅଛି ଏବଂ ନିର୍ଦ୍ଦିଷ୍ଟ କାର୍ଯ୍ୟସୂଚୀ ପାଳନ କରିବାର ଶପଥ ଅଛି । ଯେଉଁ ଶପଥ ନିଆଯାଇଛି ତାହା ସ୍ପଷ୍ଟ ଓ ନିର୍ଦ୍ଦିଷ୍ଟ । ରାଜେନ୍ଦ୍ରପ୍ରସାଦ ଶପଥ-ପତ୍ରର ପ୍ରଥମ ଦଫା ପଢ଼ି ଶୁଣାଇଦେଲେ : 'ମୁସ୍‌ଲମ୍‌ମାନଙ୍କ ଧନ, ଜୀବନ ଓ ଧର୍ମଗୃହର ସୁରକ୍ଷା କରିବାକୁ ଆମ୍ଭେମାନେ ଶପଥ ନେଉଛୁ । ଆମେ ଦୃଢ଼ ଜବାବ୍ ଦେଉଛୁ ଯେ, ଯେଉଁଭଳି ଘଟଣାମାନ ଦିଲ୍ଲୀରେ ଘଟିଯାଇଛି, ତାହାର ପୁନରାବୃତ୍ତି ହେବ ନାହିଁ ।'

ଗାନ୍ଧୀ ଶୁଣି, ମୁଣ୍ଡ ଟୁଙ୍ଗାରିଲେ ।

ରାଜେନ୍ଦ୍ରପ୍ରସାଦ ପଢ଼ି ଲାଗିଲେ, ଦ୍ୱିତୀୟ ଦଫା—'ଆମେ ଗାନ୍ଧୀଜୀଙ୍କୁ ପ୍ରତିଶ୍ରୁତି ଦେଉଛୁ ଯେ, ସବୁ ବର୍ଷ ପରି ଏ ବର୍ଷ ମଧ୍ୟ ଖ୍ୱାଜା କୁତବୁଦ୍ଦିନ ମଜାର୍ ଯାତ୍ରା ଅନୁଷ୍ଠିତ ହେବ ।' ଏହି ଯାତ୍ରା ଦିଲ୍ଲୀ ସହରର ସୀମାର କିଛି ଦୂରରେ ପ୍ରତି ବର୍ଷ ହୁଏ ।

ଶପଥ-ପତ୍ରରେ ନିର୍ଦ୍ଦିଷ୍ଟ ଘଟଣାର ଉଲ୍ଲେଖ ଥିବା ଶୁଣି ଗାନ୍ଧୀଜୀଙ୍କ ମୁଖ ଉଜ୍ଜ୍ୱଳ ହୋଇଗଲା ପରି ଜଣାଗଲା ।

ରାଜେନ୍ଦ୍ର ପ୍ରସାଦ ଆଗେଇଲେ :

'ଦିଲ୍ଲୀର ସବ୍‌ଜିମଣ୍ଡି, କରୋଲ୍ ବାଗ୍, ପାହାଡ଼–ଗଞ୍ଜ ଆଦି ଅଞ୍ଚଳରେ ପୂର୍ବେ ମୁସ୍‌ଲିମ୍‌ମାନେ ଯେପରି ସ୍ୱଚ୍ଛନ୍ଦ ଭାବେ ଯାତାୟାତ କରୁଥିଲେ, ଏଥର ସେପରି କରି ପାରିବେ ।

'ଯେଉଁ ମସ୍‌ଜିଦମାନଙ୍କରୁ ମୁସ୍‌ଲିମ୍‌ଙ୍କୁ ବିତାଡ଼ିତ କରି ହିନ୍ଦୁ ଓ ଶିଖ୍‌ମାନେ ଦଖଲ କରୁଛନ୍ତି, ତାହା ମୁସ୍‌ଲିମ୍‌ମାନଙ୍କୁ ପ୍ରତ୍ୟର୍ପଣ କରାଯିବ । ଦିଲ୍ଲୀର ଯେଉଁ ଅଞ୍ଚଳମାନ ମୁସ୍‌ଲିମ୍ ବସତି ପାଇଁ ନିର୍ଦ୍ଦିଷ୍ଟ ସେଥିରେ ଅନ୍ୟ କେହି ଜବରଦସ୍ତି ପଶି ପାରିବେ ନାହିଁ ।

'ପଳାଇ ଯାଇଥିବା ମୁସ୍‌ଲିମ୍‌ମାନେ ନିର୍ଭୟରେ ଫେରି ଆସି ପୂର୍ବ-ପରି ସେମାନଙ୍କ ବ୍ୟବସାୟ ବାଣିଜ୍ୟ ଚାଲୁ କରି ପାରିବେ ।'

ଶପଥ ପତ୍ରରେ ଗାନ୍ଧୀଜୀଙ୍କୁ ପ୍ରତିଶ୍ରୁତି ଦିଆ ହୋଇଥାଏ, 'ଏହି କାର୍ଯ୍ୟମାନ ଆମ୍ଭମାନଙ୍କ ବ୍ୟକ୍ତିଗତ ଉଦ୍ୟମରେ ସାଧିତ ହେବ ଏବଂ ଏଥିପାଇଁ ପୁଲିସ୍ ବା ମିଲିଟାରିର ସାହାଯ୍ୟ ଦରକାର ହେବ ନାହିଁ ।'

ଏହି ଶପଥ ପତ୍ର ପାଠକରି ସାରି ଅନଶନ ଭାଙ୍ଗିବା ସକାଶ, ରାଜେନ୍ଦ୍ର ପ୍ରସାଦ ମହାତ୍ମାଙ୍କୁ ନିବେଦନ କଲେ ।

ସେଇଦିନ ସକାଳେ ସବ୍‌ଜିମଣ୍ଡିଠାରେ ୧୫୦ ଜଣ ମୁସ୍‌ଲିମ୍ ଅଧିବାସୀଙ୍କର ସ୍ୱଗୃହ-ପ୍ରତ୍ୟାଗମନ ଶୋଭାଯାତ୍ରାକୁ ହିନ୍ଦୁମାନେ ସ୍ୱାଗତ କରିଥିଲେ ଏବଂ ସେମାନଙ୍କର ଅତିଥି-ଅଭ୍ୟର୍ଥନା କରିଥିଲେ । ଉଭୟ ସଂପ୍ରଦାୟ ମଧ୍ୟରେ ଏହିପରି ଭ୍ରାତୃଭାବ ପୁନଃ-ପ୍ରତିଷ୍ଠାର ମର୍ମସ୍ପର୍ଶୀ ବିବରଣୀ ଜଣେ ହିନ୍ଦୁ ପ୍ରତିନିଧି ଗାନ୍ଧୀଙ୍କୁ ଶୁଣାଇଲେ ।

ରାଜେନ୍ଦ୍ର ପ୍ରସାଦଙ୍କର ବାସଭବନରେ ଚାଲିଥିବା ଆଲୋଚନାର ଗତି ବିଷୟରେ ଗାନ୍ଧୀଜୀଙ୍କୁ ଅବହିତ କରାଯାଇଥିଲା । ଯେଉଁ ଯେଉଁ ବିଷୟରେ ପ୍ରତିଶ୍ରୁତି ଶପଥ ପତ୍ରରେ ଦିଆଗଲା, ତନ୍ମଧ୍ୟରୁ କେତେକ ଗାନ୍ଧୀ ନିଜ ଆଡ଼ୁ ଆଗରୁ ସୂଚାଇଥିଲେ ।

ତାଙ୍କର ନିର୍ଦ୍ଦେଶ ପାଳିତ ହେବାରେ ସନ୍ତୁଷ୍ଟ ହୋଇ ଗାନ୍ଧୀ ତାଙ୍କୁ ସାକ୍ଷାତ୍ କରିବାକୁ ଆସିଥିବା ନେତାମାନଙ୍କୁ କହିଲେ ଯେ, ସେମାନଙ୍କର ପ୍ରତିଜ୍ଞାମାନ ତାଙ୍କ ମନକୁ ଛୁଇଁଛି । 'କିନ୍ତୁ କେବଳ ଦିଲ୍ଲୀରେ ସାଂପ୍ରଦାୟିକ ସଦ୍‌ଭାବ ପ୍ରତିଷ୍ଠା କରିବାକୁ ଦାୟୀ ରହି ଯଦି ଆପଣମାନେ ପ୍ରତିଶ୍ରୁତି ଦେଉଥାନ୍ତି, ତେବେ ଏ ପ୍ରତିଶ୍ରୁତି ମୂଲ୍ୟହୀନ । ସେପରି ହେଲେ ମୁଁ ମନେ କରିବି, ଓ ଆପଣମାନେ ମଧ୍ୟ ଦିନେ ନିଜେ ବୁଝିବେ ଯେ, ଅନଶନ ଭଙ୍ଗ

କରି ମୁଁ ନିନ୍ତ ଭୁଲ କଲି ।' ଆହ୍ଲାବାଦରେ ସାଂପ୍ରଦାୟିକ ଗଣ୍ଡଗୋଳ ହୋଇଥିବାର ସମ୍ବାଦ ଖବରକାଗଜରେ ବାହାରିଥାଏ । ଗାନ୍ଧୀ କହିଲେ, ହିନ୍ଦୁ ମହାସଭା ଓ ଆର୍‌· ଏସ୍‌· ଏସ୍‌·ର ପ୍ରତିନିଧିମାନେ ଏଠାରେ ଉପସ୍ଥିତ ଅଛନ୍ତି ଓ ଶପଥପତ୍ରରେ ମଧ୍ୟ ଦସ୍ତଖତ କରିଛନ୍ତି । 'ଯଦି ସେମାନେ ଆନ୍ତରିକତାର ସହିତ ଏ ଶପଥପତ୍ରରେ ସ୍ୱାକ୍ଷର କରିଛନ୍ତି ତେବେ ଦିଲ୍ଲୀ ବାହାରେ ଯେଉଁ ପାଗଳାମିର କାଣ୍ଡମାନ ଘଟୁଛି ସେଥିପ୍ରତି ସେମାନେ ଉଦାସୀନ ହୋଇ କଦାପି ରହି ପାରିବେ ନାହିଁ ।' ଏହି ଦୁଇ ଅନୁଷ୍ଠାନ ସାଂପ୍ରଦାୟିକ ଗଣ୍ଡଗୋଳରେ ଲିପ୍ତ ଥିବାର ସ୍ପଷ୍ଟ ସଙ୍କେତ ଗାନ୍ଧୀ ଏତଦ୍ଦ୍ୱାରା ଦେଲେ । ସେ ପୁଣି କହିଲେ, 'ଭାରତବର୍ଷର ହୃତ୍‌ପିଣ୍ଡରେ ଦିଲ୍ଲୀ ଅବସ୍ଥିତ ଏବଂ ଆପଣମାନେ ପ୍ରତ୍ୟେକେ ଦିଲ୍ଲୀ ସହରର ମୁଖ୍ୟସ୍ଥାନୀୟ ବ୍ୟକ୍ତି । ହିନ୍ଦୁ, ଶିଖ ଓ ମୁସଲମାନ ପରସ୍ପରର ଭାଇ ଏ କଥା ଆପଣମାନେ ଯଦି ସମଗ୍ର ଭାରତକୁ ଚେତାଇଦେଇ ନ ପାରିବେ, ତେବେ ଭାରତ ଓ ପାକିସ୍ଥାନ ଉଭୟ ରାଷ୍ଟ୍ରର ଦୁର୍ଗତି ହେବ—ଏହା ଆପଣମାନେ ଭଲକରି ଉପଲବ୍ଧି କରନ୍ତୁ । ଭାରତ ଓ ପାକିସ୍ଥାନ ଯଦି ପରସ୍ପରର ବିରୋଧ କରନ୍ତି, ତେବେ ଭାରତର ଅବସ୍ଥା କ'ଣ ହେବ ଆପଣମାନେ ଅବଧାରଣ କରନ୍ତୁ ।'

ଏହା କହୁ କହୁ ଗାନ୍ଧୀ ଭାବାବେଗରେ ବିହ୍ୱଳ ହୋଇ ପଡ଼ିଲେ ; ଆଉ କିଛି କହି ପାରିଲେ ନାହିଁ । ତାଙ୍କର ଗ୍ରେଚଡ଼ା ପଡ଼ି ଯାଇଥିବା ଦୁଇ ଗାଲରେ ଲୁହର ଧାର ବହିଲା । ଦର୍ଶକମାନେ ମଧ୍ୟ କାନ୍ଦି ପକାଇଲେ ; ଅନେକେ ଭେଁ ଭେଁ କରି କାନ୍ଦିଲେ ।

କିଛି କ୍ଷଣ ପରେ ନିଜକୁ ସଂଯତ କରି ଗାନ୍ଧୀଜୀ ପୁଣି କହିବାକୁ ଆରମ୍ଭ କରନ୍ତେ, ତାଙ୍କର ସ୍ୱର ଏତେ କ୍ଷୀଣ ହେଲା ଯେ, ସେ ଫୁସଫୁସ୍‌ କରି ଯାହା କହିଲେ ତାହା ଡକ୍ଟର୍‌ ସୁଶୀଲା ନାୟାର୍‌ ତାଙ୍କ ମୁହଁ ପାଖେ କାନ ପାରି ଶୁଣି, ବାଡ଼ ପାଟିରେ ସମସ୍ତଙ୍କ ଆଗେ ଆବୃତ୍ତି କଲେ । ଗାନ୍ଧୀ ପଚାରିଲେ, 'ଆପଣମାନେ କ'ଣ ମୋ ପ୍ରତି ପ୍ରତାରଣା କରୁଛନ୍ତି ? କମିତି ମୋ ପ୍ରାଣଟା ରକ୍ଷା ହୋଇଯାଉ, ଖାଲି ଏଇ ମତଲବ୍‌ରେ କ'ଣ ଏ ଶପଥ କରିଛନ୍ତି ? ଦିଲ୍ଲୀରେ ଶାନ୍ତି ରକ୍ଷା କରିବାର ଦାୟିତ୍ୱ ସେମାନେ ନିଜେ ନେଇ, ପାକିସ୍ଥାନ ଯାଇ ସେଠାରେ ଶାନ୍ତି ସ୍ଥାପନ ପାଇଁ ଉଦ୍ୟମ କରିବାକୁ, ମୋତେ ମୁକ୍ତ କରିବାକୁ ଆପଣମାନେ ପ୍ରସ୍ତୁତ ତ ? ମୁସ୍‌ଲିମ୍‌ମାନେ କ'ଣ ହିନ୍ଦୁଙ୍କୁ ବିଧର୍ମୀ ଓ ପିତୁଳା-ପୂଜକ ବୋଲି ଘୃଣା କରି ବଧାର୍ହ ବୋଲି ମନେ କରନ୍ତି ?'

ଏଥର ମୌଲନା ଆଜାଦ୍ ଓ ମୌଲବୀମାନେ ବାପୁଙ୍କ ଗାନ୍ଧୀଙ୍କୁ ନିଶ୍ଚିତ ଭାବେ ଜଣାଇଲେ ଯେ, ମୁସ୍‌ଲିମ୍‌ମାନଙ୍କର ହିନ୍ଦୁଙ୍କ ପ୍ରତି ଏଭଳି ମନୋଭାବ ଇସଲାମ୍‌ସମର୍ଥିତ ନୁହେଁ । ଆର୍. ଏସ୍. ଏସ୍. (ରାଷ୍ଟ୍ରୀୟ ସ୍ୱୟଂସେବକ ସଂଘ) ଓ ହିନ୍ଦୁ ମହାସଭା ତରଫରୁ ଗଣେଶ ଦତ୍ତ, ଅନଶନ ଭାଙ୍ଗିବାକୁ ଗାନ୍ଧୀଙ୍କୁ ନିବେଦନ କଲେ । ପାକିସ୍ଥାନର ରାଷ୍ଟ୍ରଦୂତ ମଧ୍ୟ ମହାତ୍ମା ଗାନ୍ଧୀଙ୍କୁ କେତେ ପଦ ସୌହାର୍ଦ୍ଦ୍ୟପୂର୍ଣ୍ଣ କଥା କହିଲେ । ଜଣେ ଶିଖ ପ୍ରତିନିଧି ଶିଖ୍‌ମାନଙ୍କ ତରଫରୁ ପ୍ରତିଶ୍ରୁତି ଦେଲେ ।

ଏସବୁ ଶୁଣି ଗାନ୍ଧୀ ତୂନି ହୋଇ ଚିନ୍ତାପୂର୍ଣ୍ଣ ହୃଦୟରେ ତାଙ୍କ ଖଟଟିରେ ବସି ରହିଲେ । ସମବେତ ନେତୃବୃନ୍ଦ ତାଙ୍କ ନିଷ୍ପତ୍ତି ଶୁଣିବାକୁ ଉନ୍ମୁଖ ରହିଥାନ୍ତି । କିଛି ସମୟ ପରେ ସେ ଶୁଣାଇଦେଲେ ଯେ, ଏଥର ଅନଶନ ଭାଙ୍ଗିବାକୁ ସେ ରାଜି । ପାର୍ସୀ, ମୁସ୍‌ଲିମ ଏବଂ ଜାପାନୀ ଧର୍ମଶାସ୍ତ୍ରରୁ ସୂକ୍ତିମାନ ପାରାୟଣ କରାଗଲା । ଶେଷରେ ବୋଲା ହେଲା ହିନ୍ଦୁ ସୂକ୍ତି :

‘ଅସତୋ ମା ସଦ୍‌ଗମୟ
ତମସୋ ମା ଜ୍ୟୋତିର୍ଗମୟ
ମୃତ୍ୟୋର୍ମା ଅମୃତଂ ଗମୟ ।’

‘ମୋତେ ଅସତ୍ ମାର୍ଗରୁ ସନ୍‌ମାର୍ଗକୁ ନିଅ ; ଅନ୍ଧାରରୁ ଆଲୁଅକୁ ନିଅ ; ମୃତ୍ୟୁରୁ ଅମୃତକୁ ନିଅ ।’

ଗାନ୍ଧୀଙ୍କ ଗହଣରେ ଥିବା ନାରୀ-କର୍ମୀମାନେ, ଗୋଟିଏ ହିନ୍ଦୁଭଜନ ଓ ଗାନ୍ଧୀଙ୍କ ପ୍ରିୟ ଖ୍ରୀଷ୍ଟିଆନ୍ ଭଜନ ( ଯେତେବେଳେ ଦେଖେ ମୁହିଁ ସେ ବିଚିତ୍ର କ୍ରୁସ ) ଗାଇଲେ ।

ତତ୍ପରେ ୮ ଆଉନ୍‌ସ କମଳାରସ ଥିବା ଗୋଟିଏ ଗ୍ଲାସ ଗାନ୍ଧୀଙ୍କ ହାତକୁ ବଢ଼ାଇ ଦେଲେ, ଗାନ୍ଧୀ ଆସ୍ତେ ଆସ୍ତେ ସେତକ ପିଇଲେ ।

ସେ କହିଲେ, ଯଦି ଶପଥପତ୍ର ଯଥାର୍ଥ ପାଳିତ ହୁଏ, ତେବେ ଲୋକ-ସେବା କରିବାକୁ ୧୨୫ ବର୍ଷ ବଞ୍ଚିରହିବା ସକାଶ ତାଙ୍କର ପୂର୍ବେ ଥିବା ଆକାଂକ୍ଷା ପୁନର୍ଜୀବିତ ହେବ । ସେ ଶୁଣାଇଲେ, ‘ପଣ୍ଡିତମାନଙ୍କ ମତରେ ମନୁଷ୍ୟ-ଜୀବନର ଅବଧି ଅନ୍ତତଃ ୧୨୫ ବର୍ଷ ; କେହି କେହି କହନ୍ତି ୧୩୩ ବର୍ଷ ।’

ସେଇ ଅପରାହ୍ଣରେ ଗାନ୍ଧୀ ଆର୍ଥର୍ ମୁର୍‌ଙ୍କ ସଙ୍ଗେ କଥାବାର୍ତ୍ତା ହୋଇଥିଲେ । ବ୍ରିଟିଶ୍ କଂପାନୀଦ୍ୱାରା ପରିଚାଳିତ ‘ଷ୍ଟେଟ୍‌ସ୍‌ମ୍ୟାନ’ ପତ୍ରିକାର ସେ ପୂର୍ବେ ଥିଲେ ସଂପାଦକ । ମୁର୍ ଲେଖିଛନ୍ତି, ମୋ ସାକ୍ଷାତ୍ ବେଳେ ସେ

ପ୍ରଫୁଲ୍ଲ ଓ କୌତୁକ-ପ୍ରବଣ ଥିଲେ । ମୋ ସଙ୍ଗେ କଥାବାର୍ତ୍ତା ବେଳେ ତାଙ୍କର ଆଗ୍ରହ ଥିଲା ମୋ ବିଷୟରେ, ତାଙ୍କ ନିଜ ପ୍ରତି ନୁହେଁ । ମୋ' ଅନ୍ତରର ଚିନ୍ତା ଜାଣିବାକୁ ସେ ମୋତେ ତନ୍ନ ତନ୍ନ କରି ନାନା ପ୍ରଶ୍ନ ପଚାରୁଥିଲେ ।'

ସେଦିନ ସକାଳେ ଗାନ୍ଧୀଜୀଙ୍କ ନିଦ୍ରାଭଙ୍ଗ ହେବାରେ ସେ ଶୁଣିଥିଲେ, ଗାନ୍ଧୀଙ୍କ ପ୍ରତି ସହାନୁଭୂତିରେ ନେହେରୁ ସନ୍ଧ୍ୟା ପର୍ଯ୍ୟନ୍ତ ଉପବାସ ରହିବାକୁ ସଂକଳ୍ପ କରିଥାନ୍ତି । ଏହା ଶୁଣି ସେ ପ୍ରଧାନମନ୍ତ୍ରୀଙ୍କୁ ବିରଳାଭବନକୁ ଡକାଇଥିଲେ । ନେତାମାନେ ଶପଥ ନେବା ପରେ ଗାନ୍ଧୀଜୀ ଅନଶନ ଭଙ୍ଗ କରିନ୍ତେ, ନେହେରୁ ବ୍ୟଙ୍ଗ ଭର୍ତ୍ସନା କରି କହିଲେ, 'ଦେଖିଲ, ମୋ ଉପବାସଟା କେମିତି ଭଣ୍ଡୁର କରି ଦେଲେ ! ମୁଁ ଦିନ ତମାମ ଉପବାସ କରିବି ବୋଲି ସଂକଳ୍ପ କରିଥିଲି । ଏବେ ବାପୁ ଅନଶନ ଭାଙ୍ଗି ଦେଲେ ଯେ, ମୋତେ ଯଥାସମୟ ପୂର୍ବରୁ ମୋ ଅନଶନ ଭାଙ୍ଗିବାକୁ ପଡ଼ିବ ।'

ଗାନ୍ଧୀଙ୍କୁ ଭାରି ଖୁସି ଲାଗିଲା । ଓପରଓଳି ନେହେରୁଙ୍କ ପାଖକୁ ସରକାରୀ ଫଇସଲା ସକାଶେ କେତେକ କାଗଜପତ୍ର ପଠାଇବା ସଙ୍ଗେ ସେ ଖଣ୍ଡିଏ ବ୍ୟକ୍ତିଗତ ଚିଠି ପଠାଇଲେ ; ସେଥିରେ ନେହେରୁ ଅନଶନ ଭାଙ୍ଗି ସାରିବେଣି ବୋଲି ଆଶା ପ୍ରକାଶ କଲେ । ଗାନ୍ଧୀ ପୁଣି ଲେଖିଥିଲେ, 'ଭଗବାନ୍ କରନ୍ତୁ, ତୁମେ ବହୁକାଳ ଭାରତର ମଣି ହୋଇ ରହ ।' ହିନ୍ଦୁସ୍ଥାନୀରେ ଜବାହର ମାନେ ମଣି ।

ସନ୍ଧ୍ୟାବେଳେ ପ୍ରାର୍ଥନା ସଭାରେ ଗାନ୍ଧୀ କହିଲେ, ତାଙ୍କୁ ଯେଉଁ ଶପଥ-ପତ୍ର ଦିଆ ହେଲା ସେଥିରୁ ସେ ବୁଝିଛନ୍ତି ଯେ, 'ପରିସ୍ଥିତି ଯେତେ ପ୍ରତିକୂଳ ହେଲେ ବି, ଭାରତର ହିନ୍ଦୁ, ମୁସ୍‌ଲିମ୍, ଶିଖ, ଖ୍ରୀଷ୍ଟିଆନ୍ ଓ ଇହୁଦୀଙ୍କ ମଧ୍ୟରେ ପୂର୍ଣ୍ଣ ସଦ୍‌ଭାବ ରହିବ; ଏହା କସ୍ମିନ୍‌କାଳେ ଭାଜିବ ନାହିଁ ?

ପାକିସ୍ଥାନର ବୈଦେଶିକ ମନ୍ତ୍ରୀ ସାର୍ ମହମ୍ମଦ ଜାଫ୍ରୁଲ୍ଲା ଖାଁ ଲେକ୍‌ସକ୍‌ସେସ୍‌ଠାରେ ବସିଥିବା ମିଳିତ ଜାତିସଂଘର ନିରାପତ୍ତା କାଉନ୍‌ସିଲ୍‌ରେ ଜଣାଇଲେ ଯେ, 'ଗାନ୍ଧୀଙ୍କ ଅନଶନ ଫଳରେ ଭାରତ ଓ ପାକିସ୍ଥାନ ଉଭୟ ରାଷ୍ଟ୍ରରେ ସଦ୍‌ଭାବ ଓ ସୌହାର୍ଦ୍ଦ୍ୟର ଆକାଙ୍‌କ୍ଷା ପ୍ରବଳ ଜୁଆର ପରି ମାଡ଼ିଯାଇଛି ।'

ଭାରତ ଓ ପାକିସ୍ଥାନର ବିଚ୍ଛେଦକ ସୀମାରେଖା ଭାରତର ହୃତ୍‌ପିଣ୍ଡରେ ନ ଶୁଖିଥିବା କଞ୍ଚା ଘା ପରି ରହିଛି ; ଏ ପରିସ୍ଥିତିରେ ଉଭୟ ରାଷ୍ଟ୍ର ମଧ୍ୟରେ ସଦ୍‌ଭାବ ପ୍ରତିଷ୍ଠିତ ହେବା ମୁସ୍‌କିଲ୍ କଥା । କିନ୍ତୁ ଗାନ୍ଧୀଙ୍କ ଶେଷ ଅନଶନ ଅସଂଭବକୁ ସଂଭବ କଲା । ଖାଲି ଯେ ଦିଲ୍ଲୀ ଥଣ୍ଡା ପଡ଼ିଲା ତାହା ନୁହେଁ, ଏହି ଅନଶନ ଫଳରେ ଉଭୟ ରାଷ୍ଟ୍ରରେ ସାଂପ୍ରଦାୟିକ ଗଣ୍ଡଗୋଳ ଓ ହିଂସାକାଣ୍ଡ ଏକାବେଳକେ ବନ୍ଦ ହୋଇଗଲା ।

ସମଗ୍ର ପୃଥିବୀରେ ବ୍ୟାପ୍ତ ସାଂପ୍ରଦାୟିକ ସଂଘର୍ଷ ଓ ହିଂସାକାଣ୍ଡ ଯେ କେତେକାଂଶରେ (ମାତ୍ର ଦୁଇଟି ରାଷ୍ଟ୍ରରେ) ବନ୍ଦ ହୋଇଗଲା, ତାହା ଜଣେ ଲୋକର ନୈତିକବଳର ସ୍ମାରକୀ ସ୍ୱରୂପ ଚିରକାଳ ରହିବ । ଏ ଜଣକର ନିଜ ଜୀବନ ପ୍ରତି ଆସକ୍ତିଠାରୁ ଜନସେବା କରିବାର ଆଗ୍ରହ ଥିଲା ଅଧିକ । ଗାନ୍ଧୀ ଜୀବନକୁ ଭଲ ପାଉଥିଲେ ଏବଂ ଜୀଇ ରହିବାକୁ ଇଚ୍ଛା ବି କରୁଥିଲେ । କିନ୍ତୁ ମୃତ୍ୟୁ ବରଣ କରିବାକୁ ସତତ ପ୍ରସ୍ତୁତ ଥିବାରୁ ସେ ଜନସେବା କରିବାର ସାମର୍ଥ୍ୟ ବାରଂବାର ଫେରି ପାଉଥିଲେ ; ଏଇ ତ୍ୟାଗରେ ଥିଲା ଜୀବନ-ସଂବେଗ । ଶେଷ ଅନଶନ ଭାଙ୍ଗିବାର ପରବର୍ତ୍ତୀ ବାରଟିଯାକ ଦିନ ସେ ଆନନ୍ଦରେ କଟାଇଥିଲେ ଏବଂ ତାଙ୍କ ମନ ପ୍ରଫୁଲ୍ଲ ଥିଲା । ମନରୁ ହତାଶ ଭାବ ଦୂର ହୋଇ ଯାଇଥିଲା ଏବଂ ଭବିଷ୍ୟତ କର୍ମସୂଚୀର କଳ୍ପନା ତାଙ୍କ ମନରେ ପୂରି ରହିଥିଲା । ମୃତ୍ୟୁ ବରଣ କରିବାକୁ ଯାଇ ସେ ନବଜୀବନର ସଂଧାନ ପାଇଥିଲେ ।

---

# ଏକବିଂଶ ପରିଚ୍ଛେଦ

## ଶେଷ ଅଙ୍କ

ଅନଶନ ଭାଙ୍ଗିବାର ପରଦିନ ତାଙ୍କୁ ଗୋଟିଏ ଚଉକିରେ ବସାଇ ପ୍ରାର୍ଥନା ସଭାକୁ ଟେକିକରି ନିଆ ହୋଇଥିଲା । ତାଙ୍କ ସ୍ୱର ଖୁବ୍ ଅସ୍ପଷ୍ଟ ଭାବେ ଶୁଣାଯାଉଥାଏ । ଭାଷଣଦେଇ ସେ କହିଲେ, ହିନ୍ଦୁ ମହାସଭାର ଜଣେ କର୍ମକର୍ତ୍ତା ଦିଲ୍ଲୀ ଶପଥପତ୍ରକୁ ଅଗ୍ରାହ୍ୟ କରି ଦେଇଛନ୍ତି । ହିନ୍ଦୁ ମହାସଭା,

ଭାରତରେ ହିନ୍ଦୁ-ପ୍ରାଧାନ୍ୟ ରହିବା ଉଚିତ ବୋଲି ବିଶ୍ୱାସ କରୁଥିଲେ । ଏହି ମହାସଭାର ପୃଷ୍ଠପୋଷକତାରେ ରାଷ୍ଟ୍ରୀୟ ସ୍ୱୟଂସେବକ ସଂଘ ନାମକ ଲଢ଼ୁଆ ଅନୁଷ୍ଠାନ ଗଢ଼ି ଉଠିଥିଲା । ହିନ୍ଦୁ ମହାସଭାର ନେତାଙ୍କ ଶପଥ ପ୍ରତ୍ୟାଖ୍ୟାନ କଥା ପ୍ରକାଶ କରି ଗାନ୍ଧୀ କହିଲେ ଯେ ତାଙ୍କୁ ଏଥିଯୋଗୁଁ ଗଭୀର ଦୁଃଖ ହେଉଛି ।

ତତ୍ପର ଦିନ ମଧ୍ୟ ତାଙ୍କୁ ଚଉକରେ ବସାଇ ଟେକି କରି ପ୍ରାର୍ଥନା ସଭାକୁ ନେବାକୁ ପଡ଼ିଲା । ପ୍ରାର୍ଥନା ପରେ ସେ ସବୁଦିନ ପରି ଭାଷଣ ଦେଇ କହିଲେ, ତାଙ୍କର ଆଶା ସେ ଶୀଘ୍ର ତାଙ୍କ ଶାରୀରିକ ସାମର୍ଥ୍ୟ ଫେରିପାଇବେ ଏବଂ ଶାନ୍ତିପ୍ରତିଷ୍ଠା ଉଦ୍ଦେଶ୍ୟରେ ପାକିସ୍ଥାନ ଯାତ୍ରା କରିବେ ।

ପ୍ରଶ୍ନୋତ୍ତର ବେଳରେ ଜଣେ ଅର୍ଜି କଲେ, ଗାନ୍ଧୀ ନିଜକୁ ଭଗବାନଙ୍କ ଅବତାର ବୋଲି ଘୋଷଣା କରନ୍ତୁ । ଗାନ୍ଧୀ ଅବସାଦରେ ଟିକିଏ ହସି କହିଲେ, 'ବସ, ବସ, ତୁମ୍ଭେ ପଡ଼' ।

ଗାନ୍ଧୀ ବକ୍ତୃତା ଦେଉଛନ୍ତି, ଏହି ସମୟରେ ଗୋଟାଏ ବିସ୍ଫୋରଣର ଶବ୍ଦ ଶୁଣାଗଲା । ଗାନ୍ଧୀ ପଚାରିଲେ, 'ସେ୍ଟ କ'ଣ ?' କହିଲେ, 'ସେ୍ଟ କ'ଣ ମୁଁ ତ ଜାଣି ପାରୁନାହିଁ ।' ସଭାରେ ଥିବା ଲୋକେ ଆତଙ୍କିତ ହୋଇ ପଡ଼ିଲେ । ଗାନ୍ଧୀ କହିଲେ, 'ସେ ବିଷୟରେ ମୁଣ୍ଡ ଖେଳାଅ ନାହିଁ । ମୋ କଥା ଶୁଣ ।'

ନିକଟରେ ଥିବା ହତା-କାନ୍ଥ ଉପରୁ ଗାନ୍ଧୀଙ୍କୁ ଲକ୍ଷ୍ୟକରି ଗୋଟାଏ ହାତବୋମା ଫିଙ୍ଗା ହୋଇଥିଲା ।

ତତ୍ପର ଦିନ ଗାନ୍ଧୀ ପ୍ରାର୍ଥନା ସଭାକୁ ଚାଲିକରି ଆସିଲେ । ପ୍ରାର୍ଥନା ପାଇଁ ସମବେତ ହୋଇଥିବା ଜନତାକୁ ସେ କହିଲେ, କାଲିର ଦୁର୍ଘଟଣାରେ ସେ ଅବିଚଳିତ ରହିଥିବାରୁ ତାଙ୍କ ପାଖକୁ ବହୁ ସଂଖ୍ୟାରେ ଅଭିନନ୍ଦନ-ବାର୍ତ୍ତା ଆସି ପହଞ୍ଚିଛି । 'ମୁଁ ମନେ କରିଥିଲି ସୈନିକମାନେ ବୋମା ପକାଇବା ଅଭ୍ୟାସ କରୁଛନ୍ତି । ତେଣୁ ମୋତେ ପ୍ରଶଂସା କରିବାର କୌଣସି କାରଣ ନାହିଁ । ଯଦି ଏହିପରି ଗୋଟାଏ ବୋମା ପକାଇବା ଫଳରେ ମୋର ମୃତ୍ୟୁ ହୁଏ ଓ ମୃତ୍ୟୁ ବେଳରେ ମୋର ମୁହଁରେ ହସ ଉକୁଟି ଥାଏ ଏବଂ ହତ୍ୟାକାରୀ ପ୍ରତି ଲେଶମାତ୍ର ଅସୂୟା ମୋ ମୁହଁରେ ପ୍ରତିବିମ୍ବିତ ନ ହୋଇଥାଏ, ତେବେ ମୁଁ ପ୍ରଶଂସା ପାଇବାର ଉପଯୁକ୍ତ ହୋଇପାରେ । ଯେଉଁ କୁପଥଗାମୀ ଯୁବକ ଏହି ବୋମାଟା ଫୋପାଡ଼ିଛି, ତାହା ପ୍ରତି କାହାରି

ମନ୍ଦଭାବ ହେବା ଉଚିତ ନୁହେଁ । ହୁଏତ, ମୁଁ ହିନ୍ଦୁ ଧର୍ମର ଶତ୍ରୁ ବୋଲି ସେ ଭାବୁଛି ।'

ଗାନ୍ଧୀ ପୁଣି କହିଲେ, 'ଯେଉଁ ଯୁବକ ଏହା କରିଛି, ତାହାର ବୁଝିବା ଉଚିତ, ଯେ ତା' ମତର ଯେଉଁମାନେ ବିରୋଧ କରନ୍ତି, ସେମାନେ ମାନେ ମାନେ ଦୁଷ୍ଟ ବା ନିନ୍ଦନୀୟ ନୁହନ୍ତି ।' ଏଭଳି ବିପଥଗାମୀ ଯୁବକ-ମାନଙ୍କର ଯେଉଁମାନେ ସମର୍ଥକ ସେମାନେ ଏଭଳି କାର୍ଯ୍ୟରୁ ଓହରିଯା'ନ୍ତୁ ବୋଲି ସେ ସନିର୍ବନ୍ଧ ନିବେଦନ କଲେ । 'ହିନ୍ଦୁ ଧର୍ମକୁ ରକ୍ଷା କରିବାର ମାର୍ଗ ଏହି ନୁହେ ; ମୋର କର୍ମପନ୍ଥାରେ ହିଁ ହିନ୍ଦୁଧର୍ମର ପୋଷଣ ସମ୍ଭବ ।'

ଶିଖମାନେ ଆସି ଗାନ୍ଧୀଙ୍କ ସଙ୍ଗେ ଦେଖା କଲେ ଏବଂ ତାଙ୍କୁ ଦୃଢ଼ଭାବେ ଜଣାଇଲେ ଯେ ଆକ୍ରମଣକାରୀ ଶିଖଜାତିର ଲୋକ ନୁହେଁ । ଗାନ୍ଧୀ ପଚାରିଲେ, 'ସେ ଶିଖ ହେଉ, ହିନ୍ଦୁ ହେଉ, ବା ମୁସ୍‌ଲିମ୍ ହେଉ, ସେଥିରେ ଯାଏ ଆସେ କେତେ ? ସଂପ୍ରଦାୟ ନିର୍ବିଶେଷରେ, ଏଭଳି ପ୍ରତ୍ୟେକ କୁକର୍ମକାରୀଙ୍କର ମୁଁ ମଙ୍ଗଳ କାମନା କରେଁ ।'

ଜଣେ ଅଶିକ୍ଷିତା ବୃଦ୍ଧା ବୋମା ପକାଇଥିବା ଯୁବକକୁ ଜକଟ-ମକଟ କରି ଧରିଥିଲା ଏବଂ ପୁଲିସ୍ ନ ଆସିବା ପର୍ଯ୍ୟନ୍ତ ତାକୁ ଛାଡ଼ି ନ ଥିଲା । ଗାନ୍ଧୀ 'ପାଠ ନ ପଢ଼ିଥିବା ଭଉଣୀର ସତ୍ ସାହସ'କୁ ତାରିଫ୍ କଲେ । ଯୁବକଟି ପ୍ରତି ପୁଲିସ୍-ହାଜତରେ କୌଣସି ପ୍ରକାର ଉତ୍ପୀଡ଼ନ ଯେପରି ନ ହୁଏ ସେଥିକୁ ଦୃଷ୍ଟି ଦେବା ନିମନ୍ତେ ସେ ପୁଲିସ୍ ଆଇ. ଜି.ଙ୍କୁ ଅନୁରୋଧ କଲେ । ଉତ୍ପୀଡ଼ନ ନ କରି, ତା'କୁ ସତ୍‌ଚିନ୍ତା ଓ ସତ୍‌କର୍ମ ପ୍ରତି ଆକୃଷ୍ଟ କରିବାକୁ ପୁଲିସ୍ ଚେଷ୍ଟା କରିବା ଉଚିତ ବୋଲି ସେ ମତ ଦେଲେ । 'ଦୁର୍ବୃତ୍ତ' ଉପରେ ପ୍ରାର୍ଥନା ସଭାରେ ଥିବା କେହି ରାଗ କରନ୍ତୁ ନାହିଁ ବୋଲି ସେ ନିର୍ଦ୍ଦେଶ ଦେଲେ । ଗାନ୍ଧୀ କହିଲେ, 'ତୁମ୍ଭେମାନେ ତା'କୁ ଦୟା କରିବା ଉଚିତ ।'

ଏହି ଯୁବକର ନାମ ମଦନଲାଲ । ସେ ବାସଚ୍ୟୁତ ହୋଇ ପଞ୍ଜାବରୁ ପଳାଇ ଆସିଥିବା ଲୋକଙ୍କ ଭିତରୁ ଜଣେ ; ଦିଲ୍ଲୀର ଗୋଟିଏ ମସ୍‌ଜିଦରେ ସେ ଆଶ୍ରୟ ନେଇଥିଲା । ଗାନ୍ଧୀଙ୍କ ଇଚ୍ଛାର ଚାପରେ, ପୁଲିସ ମସ୍‌ଜିଦ୍‌ମାନଙ୍କରୁ ଅମୁସଲମାନଙ୍କୁ ଘଉଡ଼ିବା ଫଳରେ ସେ ନିଜ ଆଶ୍ରୟ-ସ୍ଥଳରୁ ବଂଚିତ ହୋଇଥିଲା ।

ସେସନ୍-ବିଚାରବେଳେ ମଦନଲାଲ କହିଲା, 'ପାକିସ୍ଥାନରେ

ମର୍ମନ୍ତୁଦ ଘଟଣାମାନ ଘଟିବାର ମୁଁ ସ୍ୱଚକ୍ଷୁରେ ଦେଖିଛି । ପଞ୍ଜାବର ସହରମାନଙ୍କରେ ଓ ଖାସ୍ ଦିଲ୍ଲୀରେ ଦକ୍ଷିଣିଆ ସୈନିକମାନେ ପଞ୍ଜାବର ହିନ୍ଦୁମାନଙ୍କୁ ଗୁଳି କରି ମାରି ଦେବାର ମଧ୍ୟ ମୁଁ ଆଖିରେ ଦେଖିଛି ।'

ଗାନ୍ଧୀଙ୍କୁ ହତ୍ୟା କରିବାକୁ ଷଡ଼ଯନ୍ତ୍ର କରୁଥିବା ଦଳେ ଯୁବକଙ୍କ ମେଳରେ ଆସାମୀ ମଦନଲାଲ ମିଶିଥିଲା । ହାତବୋମା ଲକ୍ଷ୍ୟଭ୍ରଷ୍ଟ ନ ବାଜିବାରୁ ଏବଂ ମଦନଲାଲ ଗିରଫ୍ ହେବାରେ ତା'ର ଷଡ଼ଯନ୍ତ୍ର-ସାଥୀ ନାଥୁରାମ ବିନାୟକ ଗଡ଼୍‌ସେ ଦିଲ୍ଲୀକୁ ଆସିଲା । ଯାର ବୟସ ୩୫, ତିଳକଙ୍କ ମରହଟ୍ଟା-ଦେଶର ପୁନା ସହରରୁ ପ୍ରକାଶିତ ହିନ୍ଦୁମହାସଭାର ସାପ୍ତାହିକ ମୁଖପତ୍ରର ସେ ଥିଲା ସଂପାଦକ ଓ ପ୍ରକାଶକ । ସେ ଜାତିରେ ଥିଲା ଉଚ୍ଚକୋଟୀର ଚିତ୍‌ପାବନ ବ୍ରାହ୍ମଣ ।

ପରେ ଗଡ଼୍‌ସେ, ମଦନଲାଲ ଓ ଅନ୍ୟ ସାତଜଣଙ୍କ ଅପରାଧର ବିଚାର ଏକ ସଙ୍ଗେ ହେଲା । ଛ'ମାସରୁ ଅଧିକ କାଳ ବିଚାର ଚାଲିଲା । ମଦନଲାଲ, ଅନ୍ୟ କାରଣମାନଙ୍କ ସଙ୍ଗେ ନିଜ ଅପରାଧର କାରଣ ବୋଲି ଦର୍ଶାଇଲା ଯେ ଭାରତ ସରକାର ପାକିସ୍ଥାନକୁ ୫୫ କୋଟି ଟଙ୍କା ଦେଇଦେବାର ଶୁଣି ସେ ଉତ୍ତ୍ୟକ୍ତ ହୋଇଥିଲା । ଗଡ଼୍‌ସେ ତା'ର ଇଜାହାରରେ କହିଲା, 'ହିନ୍ଦୁଧର୍ମ ଉପରେ ଯେଉଁ ଅତ୍ୟାଚାର ଚାଲିଥାଏ, ସେ ବିଷୟ ଚିନ୍ତାର ଦୁଃଖରେ ଭାବି ଭାବି ମୁଁ ବସିଥାଏ । ବାହାରୁ ମୁସଲିମ୍‌ଙ୍କ ଉପଦ୍ରବ ଏବଂ ଭିତରୁ ଗାନ୍ଧୀଙ୍କ ଠେଲା ଖାଇ ଖାଇ ହିନ୍ଦୁ ଧର୍ମର ଭବିଷ୍ୟତ କି ଭଳି ଅନ୍ଧକାରମୟ ଓ ଦୁର୍ଦ୍ଦଶାକ୍ରାନ୍ତ ହେବ, ମୁଁ ବସି ଭାବୁ ଭାବୁ···ହଠାତ୍ ସଂକଳ୍ପ କରି ବସିଲି, ଗାନ୍ଧୀଙ୍କ ବିରୁଦ୍ଧରେ ଚରମ କାର୍ଯ୍ୟାନୁଷ୍ଠାନ କରିବି ।'

ଗାନ୍ଧୀଙ୍କ ଶେଷ ଅନଶନର ସଫଳତା ଗଡ଼୍‌ସେକୁ ବିଶେଷ ଭାବେ ଉତ୍ତ୍ୟକ୍ତ କରିଥିଲା । ମସ୍‌ଜିଦ୍‌ମାନଙ୍କରୁ ବାସ୍ତୁହରାମାନଙ୍କୁ ତଡ଼ିବା ପାଇଁ ଗାନ୍ଧୀ ଜିଦ୍ କରିବାରୁ ଗଡ଼୍‌ସେ ତାତି ଯାଇଥାଏ । ମୁସଲିମ୍‌ମାନଙ୍କୁ କୌଣସି କଥା ପାଇଁ ଦାୟୀ ନ କରି, ସବୁଥିପାଇଁ ହିନ୍ଦୁଙ୍କୁ ଗାନ୍ଧୀ ଦାୟୀ କରିବାରୁ ଗଡ଼୍‌ସେ ବିଗିଡ଼ିଗଲା ।

ଦିଲ୍ଲୀ ଆସି ସେ ବିରଳା ଭବନ ଚଉହଦ୍ଦରେ ଲଙ୍ଗର ପଙ୍ଗର ହେଉଥାଏ । ସେ ପିନ୍ଧିଥାଏ ଗୋଟେ ଖାକି କୁରୁତା । କୁରୁତାର ପକେଟ୍‌ରେ ସେ ଗୋଟାଏ ଛୋଟ ପିସ୍ତଲ ରଖିଥାଏ ।

୧୯୪୮, ଜାନୁଆରୀ ୨୫ ତାରିଖ, ରବିବାରର ପ୍ରାର୍ଥନା ସଭାରେ, ସବୁଦିନ ତୁଳନାରେ ବହୁ ଅଧିକ ସଂଖ୍ୟକ ଲୋକ ସମବେତ ହୋଇଥାନ୍ତି । ଗାନ୍ଧୀ ଖୁବ୍ ଆନନ୍ଦିତ ହୋଇଥାନ୍ତି । ସେ ଜନତାକୁ ପରାମର୍ଶ ଦେଲେ, ସେମାନେ ଏଥର ଏଣିକି ବସିବାକୁ ନଡ଼ାର ଆସନ ଆଣିବେ ଓ ତା' ଉପରେ ମୋଟା ଖଦଡ଼ ଗୁଦର ପାରି ବସିବେ । କାରଣ, ଶୀତଦିନେ ତଳେ ବସିବାକୁ ଭାରି କଷ୍ଟ ହେବ ; ତଳଟା ଏ ଦିନେ କାକର ଓ ସନ୍ତସନ୍ତିଆ । ସେ ଆହୁରି କହିଲେ, ଦିଲ୍ଲୀରେ ହୃଦୟର ପୁନର୍ମିଳନ ସଂଘଟିତ ହୋଇଛି ବୋଲି ହିନ୍ଦୁ ଓ ମୁସ୍‌ଲିମ୍ ବନ୍ଧୁମାନେ ତାଙ୍କୁ କହିବାରୁ, ତାଙ୍କ ମନରେ ଖୁବ୍ ଆନନ୍ଦ ହୋଇଛି । ପରିସ୍ଥିତିରେ ଏଭଳି ଉନ୍ନତି ହେବା ସ୍ଥଳେ, ପ୍ରାର୍ଥନା ସଭାକୁ ଆସୁଥିବା ପ୍ରତି ହିନ୍ଦୁ ଓ ଶିଖ୍ ଭାଇ 'ଅନ୍ତତଃ ଜଣେ ଲେଖାଏଁ ମୁସଲିମ୍ ଭାଇଙ୍କୁ' ସାଙ୍ଗରେ ଆଣିଲେ ହୁଅନ୍ତା ନାହିଁ କି ? ଭ୍ରାତୃତ୍ୱର ବାସ୍ତବ ପ୍ରମାଣ ଏହାଦ୍ୱାରା ମିଳନ୍ତା ବୋଲି ଗାନ୍ଧୀଜୀ ମନେ କରୁଥାନ୍ତି ।

କିନ୍ତୁ ମଦନଲାଲ ଓ ଗଡ୍‌ସେଙ୍କ ପରି ହିନ୍ଦୁମାନେ ଏବଂ ତାଙ୍କ ମତବାଦର ପୃଷ୍ଠପୋଷକମାନେ ହିନ୍ଦୁଙ୍କ ପ୍ରାର୍ଥନା ସଭାରେ ମୁସ୍‌ଲିମ ଆସି ବସିବାରେ, ଏବଂ ଏ ସଭାରେ କୋରାନରୁ କେତେକାଂଶ ପଢ଼ା ହେବାରେ ଚଟି ଯାଇଥାନ୍ତି । ସେମାନେ ଆହୁରି ମଧ୍ୟ ଆଶା କରୁଥାନ୍ତି ଯେ ଗାନ୍ଧୀଙ୍କର ମୃତ୍ୟୁହେଲେ ବଳପ୍ରୟୋଗ କରି ଭାରତ ଓ ପାକିସ୍ଥାନକୁ ପୁଣି ଏକ କରିବାର ବାଟ ଫିଟିଯିବ । ସେମାନେ ଭାବୁଥାନ୍ତି, ଗାନ୍ଧୀଙ୍କୁ ନିକାସ କରିଦେଲେ ମୁସଲିମଙ୍କ ପିଠିରେ ପଡ଼ିବାକୁ କେହି ରହିବେ ନାହିଁ, ମୁସଲିମ୍‌ମାନେ ଅରକ୍ଷ ହୋଇଯିବେ । ଏହି ଉଦ୍‌ଭ୍ରାନ୍ତ ଲୋକେ ଏତିକି ବୁଝିପାରିଲେ ନାହିଁ ଯେ, ଗାନ୍ଧୀଙ୍କୁ ହତ୍ୟା କରିବାଦ୍ୱାରା ବିପରୀତ ଫଳ ଫଳିବ ଓ ମୁସଲମାନ-ବିରୋଧୀମାନେ ଶାନ୍ତି ଶୃଙ୍ଖଳାକୁ ଅବଜ୍ଞା କରି କେତେ ମାରାତ୍ମକ ହୋଇ ପାରନ୍ତି ତାହା ଦେଶବାସୀ ଦେଖି ତଟସ୍ଥ ହୋଇଯିବେ ।

ଅନଶନ ପରେ ପରିସ୍ଥିତି ଥଣ୍ଡା ହୋଇଯିବା ସତ୍ତ୍ୱେ, ନୂତନ ଓ ଅଭିଜ୍ଞତାହୀନ ସରକାର ବିଷମ ପରିସ୍ଥିତିର ନିଶ୍ଚୟ ସମ୍ମୁଖୀନ ହେବେ ବୋଲି ଗାନ୍ଧୀ ଜାଣୁଥାନ୍ତି । ଦେଶ ଶାସନ କରିବାକୁ କଂଗ୍ରେସର ସାମର୍ଥ୍ୟ ଉପରେ ତାଙ୍କର ଆସ୍ଥା ଲୋପ ହୋଇଥାଏ । ପ୍ରଧାନମନ୍ତ୍ରୀ ନେହେରୁ ଓ ଉପପ୍ରଧାନମନ୍ତ୍ରୀ ପଟେଲ, ସରକାରର ଏହି ଦୁଇ ଖୁଣ୍ଟ ନେତାଙ୍କ ଉପରେ

ଘରଚର ଭବିଷ୍ୟତ ସମ୍ପୂର୍ଣ୍ଣ ନିର୍ଭର କରେ ବୋଲି ସେ ଜାଣୁଥାନ୍ତି । କିନ୍ତୁ ଏ ଦୁହିଙ୍କର ମତ ସବୁବେଳେ ମିଳୁ ନ ଥାଏ । ଏ ଦୁହିଙ୍କର ମନୋବୃତ୍ତି ସମ୍ପୂର୍ଣ୍ଣ ବିପରୀତ । ଦୁହିଙ୍କ ଭିତରେ ସଂଘର୍ଷ ଇତି ମଧ୍ୟରେ ହୋଇଥିବାର ଦେଖି ଗାନ୍ଧୀ ବ୍ୟଥିତ ହେଉଥାନ୍ତି । ଏମାନଙ୍କ ସଂଘର୍ଷ ଏପରି ସ୍ତରକୁ ଉଠିଥାଏ ଯେ, ନେହେରୁ ଓ ପଟେଲ ସରକାରରେ ଏକାଠି ରହି କାମ କରି ପାରିବେ କି ନାହିଁ ବୋଲି ଗାନ୍ଧୀଙ୍କର ସଂଶୟ ହେଉଥାଏ । ଯୁାଙ୍କ ମଧ୍ୟରୁ ଜଣଙ୍କୁ ପସନ୍ଦ କରିବାକୁ ବାଧ୍ୟ ହେଲେ ଗାନ୍ଧୀ ହୁଏତ ନେହେରୁଙ୍କୁ ପସନ୍ଦ କରିଥାନ୍ତେ । ପୁରାତନ ସହକର୍ମୀ ଏବଂ ସୁଚତୁର ଶାସକ ବୋଲି ପଟେଲଙ୍କୁ ତାରିଫ୍ କରିବାସତ୍ତ୍ୱେ ଗାନ୍ଧୀଙ୍କର ନେହେରୁଙ୍କ ପ୍ରତି ଗଭୀର ଶ୍ରଦ୍ଧା ଥାଏ; ନେହେରୁ ହିନ୍ଦୁ ଓ ମୁସଲମାନଙ୍କ ପ୍ରତି ସମଦୃଷ୍ଟି ସଂପନ୍ନ ବୋଲି ସେ ଦୃଢ଼ବିଶ୍ୱାସ କରିଥାନ୍ତି । କିନ୍ତୁ ରାଜନୀତି କ୍ଷେତ୍ରରେ ପଟେଲ ହିନ୍ଦୁଙ୍କ ଆଡ଼କୁ ଢଳିବାର ସନ୍ଦେହ ପ୍ରକାଶ ପାଇଥାଏ ।

ଭାବି ଭାବି ଗାନ୍ଧୀ ଶେଷରେ ସିଦ୍ଧାନ୍ତ କଲେ, ନେହେରୁ ଓ ପଟେଲ ଉଭୟେ ଉଭୟଙ୍କ ପକ୍ଷରେ ଅପରିହାର୍ଯ୍ୟ । ଯୁାଙ୍କ ଭିତରୁ ଯେ କେହି ଜଣେ ସରକାରରୁ ବାହାରିଗଲେ ସରକାର ବିଶେଷଭାବେ ଦୁର୍ବଳ ହୋଇପଡ଼ିବ । ତେଣୁ ଗାନ୍ଧୀ ନେହେରୁଙ୍କ ପାଖକୁ ଇଂରେଜୀରେ ଖଣ୍ଡିଏ ଚିଠି ଲେଖିଲେ ; ସେ ଓ ପଟେଲ, ଦେଶର ମଙ୍ଗଳ ନିମନ୍ତେ, ପରସ୍ପର ମିଳିମିଶି ଚଳିବାକୁ ପଡ଼ିବ । ଜାନୁଆରୀ ୩୦ ତାରିଖ ଅପରାହ୍ଣ ୪ଟା ବେଳେ ପଟେଲ ବିରଳା-ଭବନକୁ ଆସିଥିଲେ, ଗାନ୍ଧୀଙ୍କର ଏହି ଅଭିମତ ଓ ଉପଦେଶ ଶୁଣିବା ସକାଶ ।

୫ଟା ବାଜି ୫ମିନଟ୍ ହୋଇଯିବାର ଦେଖି ସଭାର ସମୟ ଟପିଗଲା ବୋଲି ଗାନ୍ଧୀ ବ୍ୟସ୍ତ ହୋଇ, ପଟେଲଙ୍କୁ ବିଦାୟ ଦେଲେ ଏବଂ ଆଭା ଓ ମନୁଙ୍କ କାନ୍ଧରେ ଭରାଦେଇ ସଭାସ୍ଥଳୀକୁ ତରତର ହୋଇ ବାହାରିଲେ । ଉପାସନାପାଇଁ ସମବେତ ଜନତାଙ୍କ ସାମନା ଧାଡ଼ିରେ ନାଥୁରାମ ଗଡ୍‌ସେ ଥିଲା ; ପକେଟରେ ହାତ ଭର୍ତ୍ତିକରି ସେ ତା'ର ଛୋଟିଆ ପିସ୍ତଲଟା ଧରିଥାଏ । ଯେଉଁ ସେସନ୍ ବିଚାରରେ ଗଡ୍‌ସେକୁ ଫାସୀଦଣ୍ଡ ହେଲା, ସେହି ବିଚାରବେଳେ ସେ ଇଜାହାର ଦେଇଥିଲା ଯେ, ବ୍ୟକ୍ତିଗତଭାବେ ଗାନ୍ଧୀଙ୍କ ପ୍ରତି ତା'ର କୌଣସି ଅସୂୟା ନ ଥିଲା ; 'ପିସ୍ତଲରୁ ଗୁଳି ଫୁଟାଇବା

ପୂର୍ବରୁ, ମୁଁ ବସ୍ତୁତଃ ତାଙ୍କୁ ଭକ୍ତିରେ ନମସ୍କାର ହୋଇଥିଲି ଓ ତାଙ୍କର କୁଶଳ କାମନା କରିଥିଲି ।'

ଗଡ୍‌ସେର ନମସ୍କାର ଏବଂ ସମବେତ ଜନତାର ଭକ୍ତିପୂର୍ଣ୍ଣ ପ୍ରଣତି ଗ୍ରହଣ କରି ଗାନ୍ଧୀ ହାତ ଯୋଡ଼ିଲେ ଏବଂ ହସି ହସି ସମସ୍ତଙ୍କୁ ଆଶୀର୍ବାଦ ଦେଲେ । ଠିକ୍ ସେଇ ସମୟରେ ଗଡ୍‌ସେ ପିସ୍ତଲ୍‌ର ଘୋଡ଼ାକୁ ଟିପିଦେଲା, ଗାନ୍ଧୀ ପଡ଼ିଗଲେ ଏବଂ 'ହା ରାମ' ବୋଲି ଅସ୍ପଷ୍ଟ ସ୍ୱରରେ ଉଚ୍ଚାରଣ କରି ପ୍ରାଣ ହରାଇଲେ ।

———

